# ଭାଷା ଓ ଲିପି

## ଓଡ଼ିଆ ଲିପି ବିକାଶ ଆଲୋଚନା ସଂକଳନ

ସଂକଳନ ଓ ସଂପାଦନା

**ଡ. ବିଜୟଲକ୍ଷ୍ମୀ ମହାନ୍ତି**

Hindi
Urdu
Rangpuri
Chittagonian
Assamese
Sylheti
Bhojpuri
Maithili
Rohingya
Bengali-Assamese
Sadri
Magahi
Bihari
Konkoni
Goan
Marathi
Deccan
Bengali
Chhattisgarhi
Bagheli
Awadhi
Romani
Odia
Fijan hindi
Eastcentral zone
Sanskrit
Southern zone
Central zone
Kumaoni
Garhwali
Eastern zone
Bhili
Bhilali
Wagadi
Nepali
Dogri
Kangri
Mandeali
Mahasui
Northern zone
Sinhala
Maldivian
Indic
Indo-Aryan
Sindhi
Kashmiri
Northwestern zone
Punjabi
Seraiki
Mirapuri
Hindko
Mina

ଅ କ ର ଣ
ଆ ଚ ଲ ନ
ଇ ଟ ସ ମ
ଉ ତ ହ
ଏ ପ
ଓ



ଭାଷା ଓ ଲିପି ସଂକଳନ ଗ୍ରନ୍ଥ ଓଡ଼ିଆ ବର୍ଣ୍ଣମାଳା ବିକାଶ ସମ୍ବନ୍ଧରେ ତଥ୍ୟସମ୍ବଳିତ ଏକ ଉପାଦେୟ ଗ୍ରନ୍ଥ। ଓଡ଼ିଆ ଲିପି ବା ବର୍ଣ୍ଣମାଳାକୁ ନେଇ ଓଡ଼ିଆରେ ଏପରି ସଂକଳନ ବୋଧହୁଏ ପ୍ରଥମ।

ଏହି ସଂକଳନରେ ବିଗତ ପ୍ରାୟ ଶହେ ବର୍ଷରୁ ଊର୍ଦ୍ଧ୍ୱକାଳ ସମୟ ସୀମା ମଧ୍ୟରେ ଲିପି ବିକାଶର ଐତିହାସିକ ବିବରଣୀ ଏବଂ ଆଧୁନିକ ଓଡ଼ିଆ ବର୍ଣ୍ଣମାଳାର ସ୍ୱରୂପ ଗଠନକୁ କେନ୍ଦ୍ରକରି ପ୍ରସ୍ତାବିତ ବିଭିନ୍ନ ସମସ୍ୟାଗୁଡ଼ିକର ଶୃଙ୍ଖଳିତ ବିଶ୍ଳେଷଣାତ୍ମକ ଅନୁଶୀଳନ ସମ୍ପର୍କରେ ଲେଖାଯାଇଥିବା ୪୧ ଜଣ ଆଗ୍ରହୀ ଆଲୋଚକଙ୍କର ୫୦ଟି ପ୍ରବନ୍ଧ ସ୍ଥାନିତ। ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଆ ବର୍ଣ୍ଣମାଳା ଶିକ୍ଷା ଦେବା ପାଇଁ ରଚିତ ମଧୁସୂଦନ ରାଓଙ୍କ 'ବର୍ଣ୍ଣବୋଧ' ପୁସ୍ତକରୁ ଆରମ୍ଭ କରି ଏକବିଂଶ ଶତାବ୍ଦୀର କମ୍ପ୍ୟୁଟରୀକରଣ ଓ ଡିଜିଟାଇଜେସନ୍ ଯୁଗରେ ଓଡ଼ିଆ ବର୍ଣ୍ଣମାଳାର ଚୂଡ଼ାନ୍ତ ସ୍ୱରୂପ ନିର୍ଦ୍ଧାରଣ ସକାଶେ ଆଜିର ଭାଷାଭିଜ୍ଞ ଚିନ୍ତାଶୀଳ ବ୍ୟକ୍ତିବିଶେଷଙ୍କ ସୁଚିନ୍ତିତ ମତାମତକୁ ଅତ୍ୟନ୍ତ ଗୁରୁତ୍ୱର ସହ ବିଚାରକୁ ନେଇ ଉପସ୍ଥାପିତ କରାଯାଇଛି।

ଆଶା ଓ ବିଶ୍ୱାସ, ପ୍ରବନ୍ଧଗୁଡ଼ିକର ବିବରଣୀ, ବିଶ୍ଳେଷଣ ଓ ମତାମତ ବର୍ଣ୍ଣମାଳା ସମ୍ପର୍କରେ ପାଠକମାନଙ୍କୁ ଆଗ୍ରହୀ କରିବା ସହିତ ସମସ୍ୟା ସମାଧାନ ଦିଗରେ ନୂତନ ଭାବରେ ଚିନ୍ତାକରି ଚୂଡ଼ାନ୍ତ ନିଷ୍କର୍ଷରେ ଉପନୀତ ହେବା ପାଇଁ ପଥ ସୁଗମ କରିବ।



# ଭାଷା ଓ ଲିପି

## ଓଡ଼ିଆ ଲିପି ବିକାଶ ଆଲୋଚନା ସଂକଳନ

ସଂକଳନ ଓ ସଂପାଦନା

ଡ. ବିଜୟଲକ୍ଷ୍ମୀ ମହାନ୍ତି




ବିଦ୍ୟା

ଭାଷା ଓ ଲିପି
ଓଡ଼ିଆ ଲିପି ବିକାଶ ଆଲୋଚନା ସଂକଳନ

ସଂକଳନ ଓ ସଂପାଦନା :
ଡକ୍ଟର ବିଜୟଲକ୍ଷ୍ମୀ ମହାନ୍ତି

ପ୍ରକାଶକ : ବିଦ୍ୟା
୧୫୭୩, ଭକ୍ତମଧୁ ନଗର, ଭୁବନେଶ୍ୱର -୭୫୧୦୩୦
ଫୋନ୍ : (୦୬୭୪) ୨୩୫୦୨୮୯

ଅକ୍ଷର : ଶାରଳା ଗ୍ରାଫିକ୍ସ
ନିକୋପାର୍କ ରୋଡ଼, ଭୁବନେଶ୍ୱର-୧୨

ମୁଦ୍ରଣ : ପ୍ରିଣ୍ଟ-ଟେକ୍ ଅଫ୍‌ସେଟ୍
ଚନ୍ଦକା ଇଣ୍ଡଷ୍ଟ୍ରିଆଲ୍ ଏରିଆ, ଭୁବନେଶ୍ୱର-୨୪

ପ୍ରଚ୍ଛଦ : ଅଶୋକ କୁମାର ଓଝା

ସଂସ୍କରଣ : ପ୍ରଥମ ସଂସ୍କରଣ -୨୦୧୭

ମୂଲ୍ୟ : ଟ. ୩୫୦/-

**bhāsā o lipi**
(Anthology of Essays on Odia Script)
Compiled and Edited by :
**Dr. Bijayalaxmi Mohanty**
Publisher : **Vidya**
1573, Bhaktamadhu Nagar,
Bhubaneswar-751030
Ph.(0674)2350289
D.T.P : **Sarala Graphics**
Nicco Park Road, Bhubaneswar-12
Printed at : **Print-Tech Offset Pvt. Ltd.**
Chandaka Industrial Area, Bhubaneswar-24
Cover : Ashok Kumar Ojha
1st Edition **2017**
Price **₹ 350/-**

# ଉତ୍ସର୍ଗ

*ମୋର ମାତୃପ୍ରତୀମ ଶାଶୁ ଶ୍ରୀମତୀ ଶ୍ରଦ୍ଧା ଦେବୀଙ୍କ ସ୍ମୃତିରେ ଏବଂ ମମତାମୟୀ ଖୁଡ଼ୀଶାଶୁ ଶ୍ରୀମତୀ ସୁଲୋଚନା ଦେବୀଙ୍କ ଉଦ୍ଦେଶ୍ୟରେ ପ୍ରସ୍ତୁତ ଭାଷା ଓ ଲିପି ସଂକଳନଟି ଉତ୍ସର୍ଗୀକୃତ ।*

ସ୍ନେହାଧୀନା

**ବିଜୟଲକ୍ଷ୍ମୀ**

# ସାରଳା ମାଳଶ୍ରୀ

ଆପଦେ ଖଣ୍ଡନି ମାଗୋ ବିପଦ ନାଶେନୀ
ଦୁଃସହ ଦୁର୍ଗତିରୁ ଫେଡ କାନ୍ତାୟେନୀ ।
ପରମ ଯୋଗେଶ୍ୱରୀ ଗୋ ଆଦି ଯେ ଅପର୍ଣ୍ଣା
ମହାମାୟେ ମାହେଶ୍ୱରୀ ଅନାଦି ଅନ୍ନପୂର୍ଣ୍ଣା ।
ଦୁର୍ଗତି ତାରେଣୀ ମାଗୋ ଆପଦ ଖଣ୍ଡଣୀ
ଦୁଃସହ ଦୁର୍ଗତି ନାଶି ଉଦ୍ଧର ଗୋସାମଣୀ ।
ବିଂଝଗିରି ବାସେନୀ ମାଗୋ ପରଦୁଃଖେ ଦୁଃଖୀ
ଦୁର୍ଗତି ତାରେଣୀ ମାଗୋ ଶରଦ ଚନ୍ଦ୍ରମୁଖୀ ।
ଲୋହିତ କର୍କଶ ବଦନୀ ମାଗୋ ଅଭୟେ ମଙ୍ଗଳା
କରୁଣା ବତ୍ସଳୀ ମାଗୋ ତୁହି ସେ ସର୍ବମଙ୍ଗଳା ।

xxx xxx xxx

ମମ ସର୍ବ ପାପ ମାଗୋ ମମ ଆପଦ ଖଣ୍ଡି
ସଦା ସନ୍ତତି ଦେଉ ମାଗୋ ମଙ୍ଗଳ ଚଣ୍ଡୀ ।
ଦଧି ବାମନ ଅନୁକୂଳ ସମସ୍ତ ଅନୁକୂଳେ
ଜଗତ୍ର ଯେକେ ଯାତ୍ରା ମାଗୋ ତୁହି ସର୍ବ ମଙ୍ଗଳେ ।
ତବ ପଦ୍ମପାଦେ ଯେ ବିନୟ ଭଗତି
ଜୟ ଜୟ ଦୁର୍ଗା ମାଗୋ ଅନ୍ନପୂର୍ଣ୍ଣା ପାର୍ବତି ।
କରନ୍ତି ଚରଣେ ଯେ ବିନୟେ ଦୟିନୀ
ବଦନ୍ତି ସାରଳା ଦାସ କବି ଶୂଦ୍ର ମୁନି ।

[ସାରଳା ଦାସ ରଚନା ସମ୍ଭାର
ସଂକଳନ ଓ ସମ୍ପାଦନା : ଯତୀନ୍ଦ୍ର ମୋହନ ମହାନ୍ତି]




| | | ପୃଷ୍ଠା |
|---|---|---|
| | ମୁଖବନ୍ଧ | ୯ |
| | ଉପକ୍ରମଣିକା : ଓଡ଼ିଆ ଲିପି ଓ ବର୍ଣ୍ଣମାଳା | ୧୩ |
| ୧. | ଅର୍ଜୁନ ଚରଣ ହେମ୍ବ୍ରମ୍ | |
| | ରଘୁନାଥଙ୍କ ଜୀବନ ଦର୍ଶନ : ଅଲଚିକି | ୪୩୮ |
| ୨. | ଉଦୟନାଥ ଷଡ଼ଙ୍ଗୀ | |
| | ଓଡ଼ିଆ ଅକ୍ଷର ଓ କେସ୍‌ର ବର୍ତ୍ତମାନ ଅବସ୍ଥା | ୧୨୨ |
| ୩. | କୁଞ୍ଜ ବିହାରୀ ତ୍ରିପାଠୀ | |
| | ଓଡ଼ିଆ ଲିପିତତ୍ତ୍ୱ | ୨୨୨ |
| | ଓଡ଼ିଆ ବର୍ଣ୍ଣମାଳା ଓ ତାହାର ଉଚ୍ଚାରଣ ବିଧି | ୨୩୦ |
| ୪. | କୈଳାସଚନ୍ଦ୍ର ଟିକାୟତରାୟ | |
| | ଓଡ଼ିଆ ଭାଷାର ବୈଶିଷ୍ଟ୍ୟ | ୩୭୧ |
| ୫. | ଖଗେଶ୍ୱର ମହାପାତ୍ର | |
| | ଓଡ଼ିଆ ଲିପି ଓ ବନାନ ରୀତି | ୩୩୮ |
| ୬. | ଗିରିଜା ଶଙ୍କର ରାୟ | |
| | ବର୍ଣ୍ଣ ଓ ଅକ୍ଷର | ୧୭୫ |
| ୭. | ଗୋକୁଳାନନ୍ଦ ଦାସ | |
| | ଭାଷା ଓ ଲିପି | ୩୫୭ |
| ୮. | ଗୋପୀନାଥ ନନ୍ଦଶର୍ମା | |
| | ଓଡ଼ିଆ ବର୍ଣ୍ଣ ଓ ସନ୍ଧି ନିର୍ଣ୍ଣୟ | ୧୩୦ |
| ୯. | ଗୋଲୋକ ବିହାରୀ ଧଳ | |
| | ଲିପି | ୨୦୬ |
| | ସିଲେବ୍‌ଲ୍ ବା ଅକ୍ଷର | ୨୧୨ |
| | ଅଭିଲେଖର ଭାଷାତାତ୍ତ୍ୱିକ ମୂଲ୍ୟ | ୨୧୫ |
| ୧୦. | ଚିନ୍ମୟ କୁମାର ହୋତା | |
| | ଅକ୍ଷର ସହ ସମ୍ପର୍କ | ୪୧୪ |

ପୃଷ୍ଠା


୧୧. ତାରିଣୀ ଚରଣ ରଥ

**ଓଡ଼ିଆ ଲିପି** ୭୪

୧୨. ଦେବୀପ୍ରସନ୍ନ ପଟ୍ଟନାୟକ

**ଓଡ଼ିଆ ଲିପି** ୨୮୧

**ଭାରତୀୟ ଲିପିମାଳା : ପଠନ ପାଇଁ ଏକ ପରିଚାଳନାଗତ କୌଶଳ** ୨୮୮

୧୩. ନୀଳକଣ୍ଠ ଦାସ

**ଓଡ଼ିଆ ବର୍ଣ୍ଣ ବିଚାରର ସଂକ୍ଷିପ୍ତ ସୂଚନା** ୧୯୧

**ଓଡ଼ିଆ ବର୍ଣ୍ଣ ଓ ଲିପି** ୨୦୨

୧୪. ନୀଳାଦ୍ରି ଭୂଷଣ ହରିଚନ୍ଦନ

**ଓଡ଼ିଆ ଲିପି ସଂସ୍କାରର ଔଚିତ୍ୟ** ୩୮୬

୧୫. ପରମାନନ୍ଦ ଆଚାର୍ଯ୍ୟ

**ଭୁବନେଶ୍ୱରର ଓଡ଼ିଆ ତାମିଲ ଶିଳାଲିପି** ୨୭୬

୧୬. ପୀତାମ୍ବର ପ୍ରଧାନ

**ଓଡ଼ିଆ ଲିପିସଂସ୍କାରର ଏକ ଦୃଷ୍ଟିଭଙ୍ଗୀ** ୮୭

୧୭. ପ୍ରଦୀପ ମହାପାତ୍ର

**ଇଣ୍ଟରନେଟ୍‌ରେ ଓଡ଼ିଆ ଲିପି ଓ ଭାଷା** ୪୨୧

୧୮. ବିଜୟ ପ୍ରସାଦ ମହାପାତ୍ର

**ଓଡ଼ିଆ ଲିପିର ଇତିବୃତ୍ତ** ୨୯୫

**ଓଡ଼ିଆ ଅକ୍ଷର** ୩୧୪

**ଓଡ଼ିଆ ବନାନ ପରମ୍ପରା** ୩୨୭

୧୯. ବିଜୟଲକ୍ଷ୍ମୀ ମହାନ୍ତି

**ଲିପିହୀନ ଭାଷା ପାଇଁ ଲିପି** ୪୨୫

୨୦. ବିନାୟକ ମିଶ୍ର

**ବର୍ଣ୍ଣମାଳା ଓ ଧ୍ୱନିତତ୍ତ୍ୱ** ୧୫୨

୨୧. ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ

**ଓଡ଼ିଆ ଲିପି** ୩୬୭

୨୨. ଭଗବାନ ପତି

**ଓଡ଼ିଆ ବର୍ଣ୍ଣମାଳା ଓ ଲିପିସଂସ୍କାର** ୯୦

ପୃଷ୍ଠା


୨୩. ଭଗବାନ ପ୍ରକାଶ
‘ବର୍ଣ୍ଣହରଣ’, ‘ବର୍ଣ୍ଣବୋଧ’ ଓ ଲିପିସଂସ୍କାର ୬୫
୨୪. ମଧୁସୂଦନ ରାଓ
ବର୍ଣ୍ଣବୋଧ ୪୭
୨୫. ମାୟାଧର ନନ୍ଦ
ବର୍ଣ୍ଣୋତ୍ପତ୍ତି ୮୩
୨୬. ଯନ୍ତ୍ରଣା ପରୀକ୍ଷିତ
ଓଡ଼ିଆ ଲିପିର ଉତ୍ପତ୍ତି ଓ ବିକାଶଧାରା ୩୭୯
୨୭. ରଙ୍ଗାଧର ମହାପାତ୍ର
ନାଇଲ ଭାଷା : ଏକ ପ୍ରୟାସ ୪୫୧
୨୮. ରାମ ଶଙ୍କର ରାୟ
ଲିପି ସଂସ୍କାର ୧୧୩
୨୯. ଲୁଇ ବ୍ରେଲ ଓ ଓଡ଼ିଆ ଭାରତୀ ବ୍ରେଲ (ସଂଗୃହୀତ) ୪୫୬
୩୦. ଶେଖ୍ ମନସୁର
ଓଡ଼ିଆ ବର୍ଣ୍ଣମାଳା ସଂସ୍କାର ୧୦୫
୩୧. ସଦାନନ୍ଦ ନାୟକ
ଓଡ଼ିଆ ବର୍ଣମାଳାର ଶେଷ ବର୍ଣ : ଏକ ଉତ୍ତର ୩୯୪
ଓଡ଼ିଆ ବର୍ଣସଂଖ୍ୟା : ଏକ ନିର୍ଦ୍ଧାରଣ ୩୯୮
୩୨. ସତ୍ୟନାରାୟଣ ରାଜଗୁରୁ
ଓଡ଼ିଆ ଲିପିର କ୍ରମବିକାଶ ୨୩୯
ଉତ୍କଳୀୟ ଲିପି ସଂସ୍କାର ୨୬୫
୩୩. ସୁଧୀର ଚନ୍ଦ୍ର ମହାନ୍ତି
ଓଡ଼ିଆରେ ଅଫିସ କାର୍ଯ୍ୟ ୪୧୬
୩୪. ସୁଶାନ୍ତ ମିଶ୍ର
ହୋ ଜନଜାତି ୪୪୧
୩୫. ସୂର୍ଯ୍ୟନାରାୟଣ ଦାଶ
ବର୍ଣ୍ଣ ପ୍ରକରଣ ୧୮୪
୩୬. ହରପ୍ରସାଦ ଦାସ
ପାହିଲା ଅନ୍ଧାର ରଜନୀ ୫୮

ପୃଷ୍ଠା


୩୭. ହରିଶ୍ଚନ୍ଦ୍ର ବଡ଼ାଳ

ଓଡ଼ିଆ ବର୍ଣ୍ଣମାଳା ଓ ମୁଦ୍ରଣ-ସମସ୍ୟା ୧୧୭

୩୮. ହିମାଂଶୁ କୁମାର ହୋତା

ଓଡ଼ିଆ ବର୍ଣ୍ଣମାଳାର ଶେଷ ବର୍ଣ୍ଣ ୩୯୧

୩୯. କ୍ଷେତ୍ରବାସୀ ମାନ୍‌ସେଠ୍

ରୋମାନ୍ ଲିପିରେ ମୌଖିକ ଆଦିବାସୀ ଭାଷା ୪୪୩

୪୦. ଜନ୍ ବିମ୍‌ସ

The Art of writing ୪୬୧

୪୧. ଜି.ଏ. ଗ୍ରୀୟରସନ୍

Oriya Written Character ୪୬୭


ପରିଶିଷ୍ଟ -୧


(i) ଭାରତୀୟ ଭାଷା ୪୭୦

(ii) ୟୁକିପିଡିଆରୁ ସଂଗୃହୀତ ଅକ୍ଷର ଓ ମାତ୍ରା ଚାର୍ଟ ୪୭୨

(iii) ୟୁକିପିଡ଼ିଆରୁ ସଂଗୃହୀତ ପ୍ରାଚୀନ ବ୍ରାହ୍ମୀ ଲିପିରୁ ଉଦ୍ଭୂତ

ପ୍ରଚଳିତ ଓଡ଼ିଆ, ଦେବନାଗରୀ, ବଙ୍ଗଳା ଓ ତେଲଗୁ ଲିପି ୪୭୩

(iv) କମ୍ପ୍ୟୁଟରୀକରଣ ଲିପି ୪୭୪

(v) କମ୍ପ୍ୟୁଟରୀକରଣ ଲିପିରେ ବନାନ ବିଭ୍ରାଟ ନମୂନା ୪୭୫

(vi) ବିଭିନ୍ନ ଆଦିବାସୀ ଭାଷାରେ ପ୍ରସ୍ତୁତ ଲିପି ୪୭୬


ପରିଶିଷ୍ଟ - ୨


(ii) ପ୍ରବନ୍ଧ ଉତ୍ସ ୪୭୭

(ii) ଓଡ଼ିଆ ଲିପି ସଂପର୍କିତ ନିର୍ବାଚିତ ପୁସ୍ତକ ତାଲିକା ୪୮୫


---

# ମୁଖବନ୍ଧ

ଭାଷା ସର୍ବଜନଗ୍ରାହ୍ୟ ଏକ ଅନୁଭୂତି ଏବଂ ଏହା ଶ୍ରୋତାର ଉପସ୍ଥିତି ଓ ପ୍ରତିକ୍ରିୟାର ଅପେକ୍ଷା ରଖେ । ଭାଷା ବ୍ୟବହାର ପାଇଁ ବକ୍ତା ଓ ଶ୍ରୋତା ଉଭୟଙ୍କ ଉପସ୍ଥିତି କାମ୍ୟ । ଭାଷା ଶ୍ରାବ୍ୟ, ଦୃଶ୍ୟ ନୁହେଁ । ବକ୍ତାର ମୁଖ ନିସୃତ ଧ୍ୱନି ଶ୍ରୋତାର କର୍ଣ୍ଣରେ ପ୍ରବେଶ କରିବା ପରେ ତାହା କର୍ମ ସଂପାଦନରେ ପ୍ରବୃତ୍ତ ହୁଏ । ଅନ୍ୟ କଥାରେ ଭାଷା ହିଁ ମନୁଷ୍ୟ ପାଇଁ ଭାବ ପ୍ରକାଶର ପ୍ରଭାବଶାଳୀ ମାଧ୍ୟମ । ଦାର୍ଶନିକ ଡେକାର୍ଟ କହନ୍ତି, "ଭାଷାକୁ ପାଇ ମଣିଷ ଧନ୍ୟ ହୋଇଛି । ମଣିଷ ମଣିଷ ହୋଇପାରିଛି" । କାରଣ ଭାଷା ହିଁ ମଣିଷକୁ ଜୀବ ଜଗତରେ ଶ୍ରେଷ୍ଠ ସ୍ଥାନ ପ୍ରଦାନ କରିଛି ।

ମଣିଷ ଜୀବନରେ ଭାଷାର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିବା ସତ୍ତ୍ୱେ ଏହାର ସୃଷ୍ଟିର କାରଣ ଆଜି ବି ଅସ୍ପଷ୍ଟ ଏବଂ ଏ ବିଷୟରେ ବହୁ ମତଭେଦ ରହିଥିବା ଦେଖାଯାଏ । ଭାଷା ବହୁ ପ୍ରାଚୀନ ଓ ପ୍ରଥମରେ ଏହା କଥିତ ରୂପରେ ରହିଥିବା ଅନୁମିତ ହୁଏ । ଭାଷାର ଉତ୍ପତ୍ତି ସମ୍ବନ୍ଧରେ ଆଲୋଚନା କରି ଭାଷାବିତ୍‌ମାନେ ଏହାର ଲିଖିତ ରୂପର ଆରମ୍ଭ ସମୟକୁ ପ୍ରାୟ ଖ୍ରୀ.ପୂ. ୩୫୦୦ ରୁ ଖ୍ରୀ.ପୂ. ୩୦୦୦ ବର୍ଷ ମଧ୍ୟରେ ସ୍ଥିର କରିଛନ୍ତି (କ୍ରିଷ୍ଟାଲ୍, ୧୯୮୬) । ଭାଷାବିତ୍‌ମାନେ ଅନୁମାନ କରିଥାନ୍ତି ଯେ ଆରମ୍ଭରେ ମଣିଷ ସମାଜ ସମ୍ଭବତଃ କ୍ଷୁଦ୍ର କ୍ଷୁଦ୍ର ଦଳରେ ବସବାସ କରୁଥିଲେ ଏବଂ ସେମାନଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନ ନିମନ୍ତେ ସେମାନେ ସୀମିତ ସଂଖ୍ୟକ ଭାଷା-ସଂକେତ ବ୍ୟବହାର କରୁଥିଲେ । କିନ୍ତୁ କାଳକ୍ରମେ ବିଭିନ୍ନ ଦଳ ପରସ୍ପରର ସଂପର୍କରେ ଆସିବା ପରେ ସେମାନଙ୍କର ଜୀବନଯାପନର ପଦ୍ଧତି ଅଧିକ ଜଟିଳ ହେବାରେ ଲାଗିଲା । ଫଳରେ ଭାବପ୍ରକାଶ ନିମନ୍ତେ ସେମାନେ ହୁଏତ ଅଧିକ ଜଟିଳ ଭାଷା-ସଂକେତର ଆବଶ୍ୟକତା ଅନୁଭବ କଲେ । ତେଣୁ ଅନୁମାନ କରାଯାଇପାରେ ଯେ ମଣିଷ ସମାଜ ଆରମ୍ଭ ହେବାବେଳେ ଭାଷା-ସଂକେତଗୁଡ଼ିକ କେବଳ ଦୃଶ୍ୟ-ସଂକେତ ହୋଇ ରହିଥିବ ଏବଂ କାଳକ୍ରମେ ଯେତେବେଳେ ଜଟିଳ ଭାବ ପ୍ରକାଶ ପାଇଁ ଏଗୁଡ଼ିକ ଯଥେଷ୍ଟ ହୋଇନଥିବ ସେତେବେଳେ ମଣିଷ ମୁଖ ନିସୃତ ଧ୍ୱନି ଗୁଡ଼ିକୁ ଲିଖିତ ସାଙ୍କେତିକ ଚିହ୍ନ ସାହାଯ୍ୟରେ ବ୍ୟବହାର କରିବାକୁ ଉଦ୍ୟମ ହୋଇଥିବ ।

ଭାଷା ଇତିହାସରେ ଭାଷା ସୃଷ୍ଟି ସମ୍ବନ୍ଧୀୟ ପ୍ରାମାଣିକ ତଥ୍ୟ ଆଜିବି ରହସ୍ୟମୟ । ମଣିଷ ଶିଶୁ ଜନ୍ମ ହେବା ପରେ ଶିଶୁ ଅବସ୍ଥାରେ ସ୍ୱଳ୍ପ ସମୟ ଅବଧିରେ ସ୍ୱତଃ ନିଜ ପରିବେଶରୁ ଭାଷାକୁ କିପରି ଯେ ଆହରଣ କରେ ତାହା ଏବେ ବି ଏକ ବିସ୍ମୟ ହୋଇରହିଛି । ଜୀବନ ସହିତ ଭାଷାର ସଂପର୍କ । ବଞ୍ଚିଥିବା ମଣିଷ ହିଁ କେବଳ ଭାଷାକୁ ନିତ୍ୟ ନୂତନ ଭାବରେ ସୃଷ୍ଟି ଓ ପ୍ରୟୋଗ କରିପାରେ । ମଣିଷର ନିଶ୍ୱାସ ପ୍ରଶ୍ୱାସରେ ପ୍ରବହମାନ ବାୟୁ ଭାଷାର ବାହକ । ପ୍ରବହମାନ ନିଶ୍ୱାସ ବାୟୁ ଦ୍ୱାରା ସୃଷ୍ଟ ଧ୍ୱନି କେବଳ ଶ୍ରାବ୍ୟ, ଏହା ନା ଦୃଶ୍ୟ ନା ସ୍ପର୍ଶ୍ୟ । କିନ୍ତୁ ଶ୍ରାବ୍ୟ ଭାଷାକୁ ଦୃଶ୍ୟ ରୂପରେ ପ୍ରକାଶ କରିବା ପାଇଁ ପ୍ରୟାସ ଜାରି ହେବାର ସମୟ ଏଇ ମାତ୍ର ପ୍ରାୟ ଦୁଇ ହଜାର ବର୍ଷ ତଳର ଘଟଣା । ଅନ୍ୟ କଥାରେ ଶ୍ରାବ୍ୟ ଭାଷାର ଦୃଶ୍ୟରୂପ ହେଉଛି ଏହାର ଲିଖନ ରୂପ ବା ଭାଷାର ଲିପି । ଅର୍ଥାତ୍ ସଂପ୍ରତି କଥିତ ଓ ଲିଖିତ ଭାବରେ ଭାଷାର ଦୁଇଟି ପ୍ରଧାନ ପ୍ରକାଶ୍ୟ ରୂପ ଅଛି । ଭାଷା ପ୍ରୟୋଗ କ୍ଷେତ୍ରରେ ଦୁଇଟିଯାକ ରୂପର ବିଶେଷ ଆବଶ୍ୟକତା ଓ ପ୍ରଚଳନ ରହିଛି । ଭାଷା ଗୁଡ଼ିକର କଥିତ ଓ ଲିଖିତ ରୂପ ତଥା ଧ୍ୱନି ଓ ଅକ୍ଷର ମଧ୍ୟରେ କେତେକ ସ୍ଥଳରେ ସମନ୍ୱୟତା ପରିଲକ୍ଷିତ ହେଲେ ମଧ୍ୟ ଅଧିକାଂଶ ସ୍ଥଳରେ ସମନ୍ୱୟତା ରକ୍ଷା ନହେବା ଲକ୍ଷ୍ୟ କରାଯାଇଥାଏ । ଫଳସ୍ୱରୂପ ବହୁ ଭାଷାର ସ୍ୱତନ୍ତ୍ର ଲିଖନ ରୂପ ବା ଲିପି ଥିବା ବେଳେ ଏକାଧିକ ଭାଷା ପାଇଁ ଗୋଟିଏ ଲିପି ପ୍ରଚଳନ ହେବା ମଧ୍ୟ ଦେଖାଯାଏ ।

କଥିତ ରୂପରେ ଓଡ଼ିଆ ଭାଷାର ସୃଷ୍ଟି ବହୁ ପ୍ରାଚୀନ ହେଲେ ହେଁ ଏହି ଭାଷାର ପ୍ରାଚୀନତମ ଲିଖିତ ରୂପର ନମୂନା ସ୍ୱରୂପ ସ୍ୱୀକୃତ ହୋଇଛି ଧଉଳି ଓ ଜଉଗଡ଼ରୁ ପ୍ରାପ୍ତ ଖ୍ରୀ.ପୂ. ୩ୟ ଶତାବ୍ଦୀରେ ବ୍ରାହ୍ମୀଲିପିରେ ଖୋଦିତ ଅଶୋକଙ୍କ ଶିଳାଲିପି ଅନୁଶାସନ । ଏହା ପରବର୍ତ୍ତୀ ଓଡ଼ିଆରେ ଅନ୍ୟତମ ପ୍ରାଚୀନ ନମୂନା ହେଉଛି ଖ୍ରୀ.ପୂ. ୧ମ ଶତକରେ ଭୁବନେଶ୍ୱର ସ୍ଥିତ ଖଣ୍ଡଗିରି ନିକଟବର୍ତ୍ତୀ ଉଦୟଗିରିରୁ ପ୍ରାପ୍ତ ଖାରବେଳଙ୍କ ଶିଳାଲେଖ । ଅର୍ଥାତ୍ ବ୍ରାହ୍ମୀଲିପିରେ ଲିଖିତ ଓଡ଼ିଆ ଭାଷାର ପ୍ରାଚୀନତମ ସ୍ୱରପ ଖ୍ରୀଷ୍ଟପୂର୍ବ ୩ୟ ଓ ୧ମ ଶତାବ୍ଦୀର ଶିଳାଲେଖରେ ଲିପିବଦ୍ଧ ଏବଂ ତାହାର କ୍ରମବିକଶିତ ଆଧୁନିକ ରୂପ ଆଜିର ଓଡ଼ିଆ ଲିପିରେ ପରିଦୃଶ୍ୟ ଓ ବିକାଶପ୍ରାପ୍ତ ।

ଓଡ଼ିଆ ଲିପି ତଥା ବର୍ଣ୍ଣମାଳା ସଂକ୍ରାନ୍ତ ବିଭିନ୍ନ ସମସ୍ୟାର ଉତ୍ଥାପନ, ବିଶ୍ଳେଷଣ ଓ ତତ୍‌ସମ୍ବନ୍ଧୀୟ ସମାଧାନର ସୂତ୍ର ଅନ୍ୱେଷଣ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବାର ଆଗ୍ରହ ଏବଂ ଏକ ସ୍ଥାନରେ ଲିପିର ଉଦ୍ଭବ, କ୍ରମବିକାଶ ଓ ପ୍ରୟୋଗ ବିଧି ସଂବନ୍ଧୀୟ ତଥ୍ୟାବଳୀକୁ ଏକତ୍ର ସୁଲଭ୍ୟ କରିବାର ଇଚ୍ଛା ମତେ ଏପରି ସଂକଳନଟିଏ ପ୍ରସ୍ତୁତ କରିବାକୁ ଅନୁପ୍ରେରିତ

କରିଛି । ଆଶା, ସଂକଳନରେ ସ୍ଥାନିତ ନିର୍ବାଚିତ ପ୍ରବନ୍ଧ ଗୁଡ଼ିକର କାଳାନୁସାରୀ ଆଲୋଚନା ଓଡ଼ିଆ ବର୍ଣ୍ଣମାଳା ସମସ୍ୟା ସମାଧାନ ଦିଗରେ ଆଲୋକପାତପୂର୍ବକ ଏକ ସୁଶୃଙ୍ଖଳିତ ସର୍ବଜନଗ୍ରାହ୍ୟ ନିଷ୍କର୍ଷରେ ଉପନୀତ ହେବା ପାଇଁ ପଥ ସୁଗମ କରିବ । ସଂକଳନଟିକୁ ପ୍ରାମାଣିକ ଭାବରେ ଗ୍ରହଣ ଯୋଗ୍ୟ କରିବା ପାଇଁ ଆବଶ୍ୟକ ସ୍ଥଳେ ସଚିତ୍ର କରାଯାଇଛି ।

**ଭାଷା ଓ ଲିପି** ସଂକଳନରେ ଉନ୍ନବିଂଶ ଶତାବ୍ଦୀର ସତୁରୀ ଦଶକ ଠାରୁ ଆରମ୍ଭ କରି ଏକବିଂଶ ଶତାବ୍ଦୀର ପ୍ରଥମ ଦଶକ ସମୟ ସୀମା ମଧ୍ୟରେ ଓଡ଼ିଆ ଭାଷାର ଲିପି ସଂବନ୍ଧୀୟ ଆଲୋଚନା ପ୍ରତି ଆଗ୍ରହ ପ୍ରକାଶ କରିଥିବା ୪୧ ଜଣ ଲେଖକ ତଥା ଆଲୋଚକଙ୍କର ୫୦ଟି ରଚନା ଅନ୍ତର୍ଭୁକ୍ତ । ସଂକଳନ ଅନ୍ତର୍ଗତ ଆଲୋଚନା ଗୁଡ଼ିକରେ ମୁଖ୍ୟତଃ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଦିଗ ଦୃଷ୍ଟି ଆକର୍ଷଣ କରେ । ଗୋଟିଏ ହେଉଛି, ଓଡ଼ିଆ ଲିପିର ଐତିହାସିକ କ୍ରମବିକାଶ, ଯାହା ଖ୍ରୀ.ପୂ. ୩ୟ ଶତାବ୍ଦୀରୁ ଆରମ୍ଭ ହୋଇ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଚୂଡ଼ାନ୍ତ ରୂପ ନେଇଛି ଏବଂ ଅନ୍ୟଟି ଓଡ଼ିଆ ଲିପି ସଂସ୍କାର, ଯାହା ଆଜି ଅବଧି ଚୂଡ଼ାନ୍ତ ରୂପ ପାଇପାରିନାହିଁ ଏବଂ ଆଜି ବି ଓଡ଼ିଆ ଲିପି ତଥା ବର୍ଣ୍ଣମାଳାର ଚୂଡ଼ାନ୍ତ ରୂପ ସ୍ଥିରିକୃତ ନ ହୋଇ ପାରି ପ୍ରକାଶ ଅପେକ୍ଷାରେ । ପଞ୍ଚଦଶ ଶତାବ୍ଦୀ ପରବର୍ତ୍ତୀ ବିଗତ ପ୍ରାୟ ୫୦୦ ବର୍ଷ ଧରି ଓଡ଼ିଆ ଲିପିମାଳା ବା ବର୍ଣ୍ଣମାଳା ବିଭିନ୍ନ ପରିବର୍ତ୍ତନ, ପ୍ରସ୍ତାବନା ଓ ସଂସ୍କାର ପ୍ରସ୍ତାବର ପାହାଚ ଅତିକ୍ରମ କରିସାରିଥିଲେ ମଧ୍ୟ ଏହାର ଚୂଡ଼ାନ୍ତ ରୂପ ତଥାପି ଅସମାହିତ । ଆଜିର ଆଧୁନିକ ବିଜ୍ଞାନସମ୍ମତ ଟେକ୍ନୋଲୋଜି ଓ କମ୍ପ୍ୟୁଟରୀକରଣ ଯୁଗରେ ମଧ୍ୟ ନିର୍ଦ୍ଦିଷ୍ଟ ଧ୍ୱନି ପଦ୍ଧତି ଅବଲମ୍ବନ ମାଧ୍ୟମରେ ଓଡ଼ିଆ ବର୍ଣ୍ଣମାଳା ଓ ଅକ୍ଷର ପଦ୍ଧତିର ସର୍ବଜନଗ୍ରାହ୍ୟ ଶୃଙ୍ଖଳିତ ରୂପ ପ୍ରକାଶ ଯେପରି ସତେକି ଦୁଃସାଧ୍ୟ ହୋଇପଡ଼ିଛି । ତଥାପି ପ୍ରୟାସ ଜାରି ରଖିବାକୁ ଏପରି ସଂକଳନର ଆବଶ୍ୟକତା ଜରୁରୀ ମନେହୁଏ ।

**ଭାଷା ଓ ଲିପି** ସଂକଳନରେ ଯେଉଁ ଲେଖକମାନଙ୍କର ରଚନାକୁ ନିର୍ବାଚିତ କରି ସ୍ଥାନିତ କରିଛି ସର୍ବପ୍ରଥମେ ସେମାନଙ୍କ ପ୍ରତି ମୁଁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ସଂକଳନ ସଂପାଦନାରେ ଭାଷାବିତ୍ ଡ.ଦେବୀପ୍ରସନ୍ନ ପଟ୍ଟନାୟକଙ୍କର ସମୟୋପଯୋଗୀ ପରାମର୍ଶ ଓ ପ୍ରୋତ୍ସାହନ ନିମନ୍ତେ ତାଙ୍କ ପ୍ରତି କୃତଜ୍ଞତା ସ୍ୱୀକାର କରୁଛି । ସଂକଳନର ବିଷୟବସ୍ତୁ ନିର୍ବାଚନ ସମୟରେ ଭୁବନେଶ୍ୱର ସ୍ଥିତ ସୃଜନଶୀଳ ସଂସ୍ଥା ସୃଜନୀକାର ପ୍ରତିଷ୍ଠାତା ଡ.ନିଖିଳ ମୋହନ ପଟ୍ଟନାୟକ ଓ ଶ୍ରୀମତୀ ପୁଷ୍ପଶ୍ରୀ ପଟ୍ଟନାୟକଙ୍କର ସ୍ୱତଃପ୍ରବୃତ ସହଯୋଗ ମୋତେ ଅଭିଭୂତ କରିଛି । ଦୁହିଁଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ଯେଉଁ

ସଂସ୍ଥା, ପତ୍ରପତ୍ରିକା, ଗ୍ରନ୍ଥ ଓ ବିଭିନ୍ନ ଦୈନିକ ସଂବାଦପତ୍ର ସଂସ୍ଥା ବା ଅନ୍ୟାନ୍ୟ ସୂତ୍ରରୁ କୌଣସି ଅଙ୍କନ ବା ଆବଶ୍ୟକୀୟ ତଥ୍ୟ ମତେ ସଂଗ୍ରହ କରିବାକୁ ପଡ଼ିଛି ସେ ସମସ୍ତଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଇବା ମୋର କର୍ତ୍ତବ୍ୟ । ଏହି ପରିପ୍ରେକ୍ଷୀରେ ରାଜ୍ୟ ସଂଗ୍ରହାଳୟର କର୍ତ୍ତୃପକ୍ଷ, ଦୈନିକ **ସମାଜ**, ଦୈନିକ **ସଂବାଦ** ଓ ଦୈନିକ **ପ୍ରମେୟ**ର କର୍ତ୍ତୃପକ୍ଷ, ଉତ୍କଳ ସାହିତ୍ୟ ସମାଜର ସଭାପତି ପ୍ରଫେସର ବିଜୟାନନ୍ଦ ସିଂହ, ଓଡ଼ିଶା ସାହିତ୍ୟ ଏକାଡେମୀ, ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ପ୍ରଭୃତିଙ୍କ ଠାରୁ ପାଇଥିବା ସହଯୋଗ ପାଇଁ ସେମାନଙ୍କୁ ମୁଁ କୃତଜ୍ଞତା ଜଣାଉଛି । ସଂକଳନ ପ୍ରସ୍ତୁତିରେ ତଥ୍ୟ ଓ ଚିତ୍ର ସଂଗ୍ରହ ପାଇଁ ଇଣ୍ଟରନେଟ୍ ଓ ଉଇକିପେଡ଼ିଆର ସାହାଯ୍ୟ ମତେ ଉପକୃତ କରିଛି ଓ ସେଥିପାଇଁ ମୁଁ ଋଣ ସ୍ୱୀକାର କରୁଛି। ସଂକଳନର ପ୍ରେସ୍ କପି ପ୍ରସ୍ତୁତିରେ **ଶାରଳା ଗ୍ରାଫିକ୍ସ**ର ସୁପ୍ରିୟା ଦାଶଙ୍କ ଆନ୍ତରିକ ସାହାଯ୍ୟ ଓ ସହଯୋଗ ଏବଂ ମୁଦ୍ରଣ କାର୍ଯ୍ୟରେ **ପ୍ରିଣ୍ଟ-ଟେକ୍ ଅଫସେଟ୍**ର କର୍ମକର୍ତ୍ତାଗଣଙ୍କର ସଦିଚ୍ଛା ଓ ସହଯୋଗ ନିମନ୍ତେ ସେମାନେ ମୋର ବିଶେଷ ଧନ୍ୟବାଦର ପାତ୍ର ।

**ଭାଷା ଓ ଲିପି** ଗ୍ରନ୍ଥ ପ୍ରସ୍ତୁତ କରିବାରେ ଆମ ପରିବାରର ସମସ୍ତ ସଦସ୍ୟ, ଯେଉଁମାନେ ମତେ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ ବିଭିନ୍ନ ଭାବରେ ସହଯୋଗପୂର୍ବକ ମୋର ଶ୍ରମ ଲାଘବ କରିବାରେ ସହାୟକ ହୋଇଛନ୍ତି ସେମାନଙ୍କ ପ୍ରତି ମୋର ଆନ୍ତରିକ ସ୍ନେହ ଓ ସଦିଚ୍ଛା ପ୍ରକାଶ କରୁଛି । ପାଠକମାନଙ୍କ ବିଚାରରେ ଗ୍ରନ୍ଥରେ ଯଦି କୌଣସି ତ୍ରୁଟି ବା ବ୍ୟତିକ୍ରମ ସେମାନଙ୍କର ଦୃଷ୍ଟିଗୋଚର ହୁଏ, ସେ ବିଷୟରେ ମତେ ଜଣାଇଲେ ମୁଁ ବାଧିତ ହେବା ସହିତ ତାହାର ବିହିତ ବ୍ୟବସ୍ଥା କରିବାକୁ ଯଥାସାଧ ଚେଷ୍ଟିତ ହେବି ।

ଏହି ଅବସରରେ 'ବିଦ୍ୟା' ପ୍ରକାଶନ ସଂସ୍ଥାର ପ୍ରତିଷ୍ଠାତା ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି, ଯାହାଙ୍କ ପ୍ରେରଣା ମତେ ପୁସ୍ତକ ରଚନା କ୍ଷେତ୍ରରେ ସର୍ବଦା ଅନୁପ୍ରାଣିତ କରିଆସିଛି, ସେହି ଅମର ଆତ୍ମାର ସ୍ମୃତି ପ୍ରତି ଅନ୍ତରର ଶ୍ରଦ୍ଧା ନିବେଦନ କରୁଛି ।

ଭକ୍ତମଧୁ ନଗର,
ଭୁବନେଶ୍ୱର-୩୦

ବିଜୟଲକ୍ଷ୍ମୀ ମହାନ୍ତି

# ଓଡ଼ିଆ ଲିପି ଓ ବର୍ଣ୍ଣମାଳା

ମନୁଷ୍ୟ ହିଁ ଭାଷା କ୍ଷମତାର ଅଧିକାରୀ। ମନୁଷ୍ୟର ମୁଖ ନିସୃତ ଧ୍ୱନିକୁ ନେଇ ଭାଷାର ଗଠନ। ଭାଷାର ମୌଳିକ ବସ୍ତୁ ଧ୍ୱନି। ମୁଖ ନିସୃତ ପ୍ରାଣବାୟୁ ପ୍ରବାହରୁ ଏହାର ସୃଷ୍ଟି। ଧ୍ୱନି କ୍ଷଣସ୍ଥାୟୀ। ଏଗୁଡ଼ିକ ମଧ୍ୟ ବର୍ଣ୍ଣ, ଏହା ଉଚ୍ଚାରିତ, ଶ୍ରାବ୍ୟ କିନ୍ତୁ ଅଦୃଶ୍ୟ। ଅଦୃଶ୍ୟ କ୍ଷଣସ୍ଥାୟୀ ଧ୍ୱନିକୁ ଲିପି ସାହାଯ୍ୟରେ ସ୍ଥାୟୀ ରୂପ ଦେବାକୁ ଚେଷ୍ଟା କରାଯାଇଆସିଛି ପ୍ରାଚୀନ କାଳରୁ। ଅଦୃଶ୍ୟ ଜୀବନ୍ତ ଧ୍ୱନିର ପ୍ରତିନିଧିତ୍ୱ କରୁଥିବା ଚିତ୍ରରୂପ ବା ସଂକେତ ଚିହ୍ନଗୁଡ଼ିକ ହେଉଛି ଭାଷାର ଲିପି। ଲିପିଗୁଡ଼ିକ ନିର୍ଦ୍ଦିଷ୍ଟ ଭାଷାଗତ, ଅର୍ଥାତ୍ ପ୍ରତ୍ୟେକ ଭାଷାର ଥାଏ ନିଜସ୍ୱ ଧ୍ୱନି ଓ ଲିଖନ ପ୍ରଣାଳୀ। ତେବେ ଏକାଧିକ ଭାଷାର ଲିପିରେ ସାଦୃଶ୍ୟ ରହିବା ସମ୍ଭବ। କେହି କେହି ଲିପିବିତ୍ ସଂକେତ ଚିହ୍ନକୁ ଚିତ୍ରଲିପି ମଧ୍ୟ କହିଥାନ୍ତି।

ପ୍ରାଚୀନ କାଳରୁ ପ୍ରଚଳିତ ଧ୍ୱନି ସମୂହର ଲିପି ବା ସଙ୍କେତ ଚିହ୍ନ ସମୟାନୁକ୍ରମେ ବିବର୍ତ୍ତିତ ହୋଇଆସିଛି। ଯେହେତୁ ଭାଷା ପରିବର୍ତ୍ତନଶୀଳ ଏହାର ଲିପିରେ ମଧ୍ୟ ପରିବର୍ତ୍ତନ ଘଟିବା ସ୍ୱାଭାବିକ। ଭାଷବିତ୍ ଧଳ କହନ୍ତି 'ଲିପି ସୃଷ୍ଟିର ଇତିହାସ ଖୁବ୍ ସ୍ପଷ୍ଟ ନୁହେଁ'। ତେବେ ଲିପି ହେଉଛି ଭାଷାର ଲିଖନ ପଦ୍ଧତି। ଭାଷା ଇତିହାସରେ ଭାଷା ସୃଷ୍ଟି ତୁଳନାରେ ଲିପି ବା ଲିଖନ ପଦ୍ଧତି ସୃଷ୍ଟିର ଇତିହାସ ମାତ୍ର ଅଳ୍ପ କେତେଦିନ ତଳର କଥା। ଲିପି ସୃଷ୍ଟିର ଇତିହାସରେ ତିନି ପ୍ରକାର ଲିଖନ ପଦ୍ଧତି ରହିଥିବାର ସୂଚନା ମିଳେ। ଇଜିପ୍ଟ, ସୁମେର ଓ ଚୀନ୍‌ରେ ଜନ୍ମଲାଭ କରିଥିବା ଲିପି ଏକ ପ୍ରକାରର ଥିବା ଜଣାଯାଏ। ଗ୍ରୀକ୍ ଓ ଫୋନେସିଆନମାନଙ୍କ ସାହାଯ୍ୟରେ ଇଜିପ୍ଟର ଲିପି ବିକଶିତ ହୋଇ କାଳକ୍ରମେ ଆଜି ବ୍ୟବହୃତ ହେଉଥିବା ଲିପିରେ ପରିଣତ ହୋଇଛି। ଖ୍ରୀ.ପୂ. ୩୦୦୦ ବର୍ଷ ପୂର୍ବେ ଇଜିପ୍ଟର ଲିଖନ ଶୈଳୀରେ ବ୍ୟବହୃତ ଚିତ୍ରାକ୍ଷରକୁ ଇଂରାଜୀରେ ହିଏରୋଗ୍ଲିଫ (hieploglyph) କୁହାଯାଏ (ଧଳ, ୧୯୭୬) ଏବଂ ଏହା ମଧ୍ୟ ଏକପ୍ରକାରର ଲିପି।

ସୁମେରୀୟମାନଙ୍କ ଦ୍ୱାରା ପ୍ରଚଳିତ ଏକ ଲିପି ହେଉଛି କ୍ୟୁନିଫର୍ମ ଲିପି। କ୍ୟୁନିଫର୍ମ ଲିପିରେ ଲିଖିତ ଅକ୍ଷରଗୁଡ଼ିକର ଆକାର ତିନିକୋଣିଆ ବା ତ୍ରିପାର୍ଶ୍ୱିକ ହୋଇଥିବାରୁ ଏହାକୁ 'ବାଣମୁଖ' ବୋଲି ମଧ୍ୟ କୁହାଯାଏ। କିନ୍ତୁ ଏହି ଲିପିର ବ୍ୟବହାର ଚତୁର୍ଥ ଖ୍ରୀଷ୍ଟାବ୍ଦର ସମୟକୁ ଅଚଳ ହୋଇ ଯାଇଥିଲା। ଲିପିର ଇତିହାସରେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟରେ

ଇଜିପ୍‌ସୀୟ ଲିପି ବିଭିନ୍ନ ଭାବରେ ବିକଶିତ ହୋଇ ବ୍ୟବହୃତ ହେଉଥିବାର ସୂଚନା ମିଳେ। ଇଂରାଜୀ, ଗ୍ରୀକ୍, ରୁଷ୍ ଓ ସଂସ୍କୃତ ପ୍ରଭୃତି ଭାଷାମାନଙ୍କର ଲିପି ଇଜିପ୍‌ସୀୟ ଲିପି ଦ୍ୱାରା ପ୍ରଭାବିତ। ଇଜିପ୍‌ସୀୟ ଲିପି ମଧ୍ୟ ଆରାମାଇକ୍, ଆରବିକ୍ ଏବଂ ସେମିଟିକ୍ ପ୍ରଭୃତି ଭାଷାମାନଙ୍କ ପାଇଁ ନାନା ଭାବରେ ପରିବର୍ତ୍ତିତ ହୋଇ ପ୍ରଚଳିତ ହୋଇଥିଲା।

ଆନୁମାନିକ ଖ୍ରୀ.ପୂ ୩୦୦୦ ବର୍ଷ ପୂର୍ବେ ସିନ୍ଧୁ ଉପତ୍ୟକାର ମହେଞ୍ଜୋଦାରୋ ସ୍ତୂପାଞ୍ଚଳରେ (ବର୍ତ୍ତମାନ ପାକିସ୍ଥାନରେ ଅବସ୍ଥିତ) ୧୯୨୦ ମସିହାରେ ଭୂଖନନ ଫଳରେ ଆବିଷ୍କୃତ ହୋଇଥିଲା ଏକ ଅମୂଲ୍ୟ ନିଦର୍ଶନ ଯାହା 'ମହେଞ୍ଜୋଦାରୋ ଲିପି' ନାମରେ ଜଣାଯାଏ। ପ୍ରାଚୀନ ମାନବ ସଭ୍ୟତାର ନିଦର୍ଶନ ସ୍ୱରୂପ ମହେଞ୍ଜୋଦାରୋରୁ ପ୍ରାପ୍ତ ହୋଇଥିଲା ସେ ଯୁଗରେ ବ୍ୟବହୃତ ମୃତ୍ତିକା ନିର୍ମିତ ମୁଦ୍ରା ଓ ବିଭିନ୍ନ ଗୃହ ଉପକରଣ ଏବଂ ସେଥିରେ ଖୋଦିତ ଲିପି ଆକାରର ବିଭିନ୍ନ ସାଙ୍କେତିକ ଚିହ୍ନ। ଲିପି ଆକୃତିର ସେହି ସାଙ୍କେତିକ ଚିହ୍ନରୁ ସେ ସମୟରେ ଚିତ୍ର ସାହାଯ୍ୟରେ ଯେ ଭାବ ପ୍ରକାଶ କରାଯାଉଥିଲା ତାହାର ପ୍ରମାଣ ମିଳେ। ସୈନ୍ଧବ ଉପତ୍ୟକାରୁ ମିଳିଥିବା ଏହି ଚିତ୍ରଲିପି ବା ଚିତ୍ରାକ୍ଷର ପୃଥିବୀର ପ୍ରାଚୀନତମ ଲିପିର ନମୂନା ଭାବରେ ସ୍ୱୀକୃତ। କିନ୍ତୁ ଆଜି ପର୍ଯ୍ୟନ୍ତ ଏହି ପ୍ରାଚୀନତମ ଲିପିର ପ୍ରାମାଣିକ ପାଠୋଦ୍ଧାର ହୋଇପାରିନାହିଁ (କ୍ରିଷ୍ଟାଲ ୧୯୮୭)। ମହେଞ୍ଜୋଦାରୋ ଲିପି ଓ ଅଶୋକଙ୍କର ଶିଳାଲିପି ମଧ୍ୟରେ ପ୍ରାୟ ୨୦୦୦ ବର୍ଷରୁ ଅଧିକ କାଳ ବ୍ୟବଧାନ ରହିଥିବା ଏବଂ ଏହି ସମୟ ମଧ୍ୟରେ ଅନ୍ୟ କୌଣସି ପ୍ରାଚୀନତର ଲିପି ଆବିଷ୍କୃତ ହୋଇ ନଥିବାରୁ ପ୍ରାଚ୍ୟ ଖଣ୍ଡରୁ ପ୍ରାପ୍ତ ଅଶୋକଙ୍କ ଶିଳାଲେଖରେ ବ୍ୟବହୃତ ବ୍ରାହ୍ମୀ ଲିପି ଆଜି ବି ପ୍ରାଚୀନତମ ଲିପି ଭାବରେ ସ୍ୱୀକୃତି ପାଇବାର ଗୌରବ ଲାଭ କରିଆସିଛି (ରାଜଗୁରୁ ୧୯୮୦)।

ପୃଥିବୀରେ ପ୍ରଚଳିତ ବିଭିନ୍ନ ଲିପିର ଇତିହାସ ଅନୁଶୀଳନ କରି ଲିପିବିତ୍‌ମାନେ ଶିରିୟାବାସୀଙ୍କୁ ଅକ୍ଷରର ଉଦ୍ଭାବକ ରୂପେ ଗ୍ରହଣ କରିଥାନ୍ତି। ଗ୍ରୀକ୍ ଭାଷାରେ ଲେଖକ ପ୍ଲିନୀ (Pliny) କହନ୍ତି, "ଲିପିଜ୍ଞାନ ସକାଶେ ଆମ୍ଭେମାନେ ପ୍ରାଚୀନ ଆଶିରୀୟ ଜାତି (Assyrians) ଠାରେ କୃତଜ୍ଞ" (ରାଜଗୁରୁ, ୧୯୮୨)। ଆଶିରୀୟମାନଙ୍କ ମଧ୍ୟରେ ଦୁଇପ୍ରକାର ଚିତ୍ରାକ୍ଷର ପ୍ରଚଳିତ ଥିଲା। ପ୍ରଥମଟି ହେଲା ମିଶର ଦେଶରେ ପ୍ରଚଳିତ ଲିପିର ଅନୁକରଣରେ ଗଠିତ ଚିତ୍ରଲିପି (heiroglyphic characters)। ଏ ଲିପି ସାଧାରଣତଃ 'ଶରଶୀର୍ଷ-ଲିପି' (Cuneiform କିମ୍ବା Arrow headed characters) ନାମରେ ପରିଚିତ। ଦ୍ୱିତୀୟ ଲିପିଟି 'ଶୃଙ୍ଖଳାକ୍ଷର' (Cursive କିମ୍ବା Hieractic) ନାମରେ ଚିହ୍ନିତ (ରାଜଗୁରୁ,

୧୯୮୨)। ଶୃଙ୍ଖଳାକ୍ଷର ଓ ଶରଶୀର୍ଷ ଲିପି ମଧ୍ୟରେ ପ୍ରଧାନ ପାର୍ଥକ୍ୟ ହେଉଛି, ପ୍ରଥମଟି ଡାହାଣରୁ ବାମକୁ ଏବଂ ଦ୍ୱିତୀୟଟି ବାମରୁ ଡାହାଣକୁ ଲେଖାଯାଏ। ଶୃଙ୍ଖଳାକ୍ଷର ସହିତ ଫିନିଶିୟାନ (Phaenician), ପଲମିରେନ (Palmyrene), ବେବିଲୋନିୟାନ (Bobylonian) ପ୍ରଭୃତି ଅକ୍ଷରର ଯଥେଷ୍ଟ ସାମଞ୍ଜସ୍ୟ ରହିଥିବାର ଜଣାଯାଏ।

ବେବିଲୋନର ପ୍ରାଚୀନ ଅଞ୍ଚଳର ଖନନ ସ୍ଥାନରୁ ଏବଂ ନିମ୍ରଣ୍ଡ (Nimrond) ନାମକ ସ୍ଥାନରୁ ପ୍ରାପ୍ତ ମୃତ୍ତିକା ପାତ୍ରରେ ଖୋଦିତ ଶରଶୀର୍ଷ ବା କ୍ୟୁନିଫର୍ମ ଲିପିର କେତୋଟି ନମୂନା ମିଳିଥିବାର ଜଣାଯାଏ। ଊନବିଂଶ ଶତାବ୍ଦୀର ପ୍ରାରମ୍ଭ କାଳରେ ଆଫ୍ରିକାର ନୀଳନଦୀ ମୁହାଣ ଅଞ୍ଚଳରେ ଅବସ୍ଥିତ ରଷୀଦ ନାମକ ସ୍ଥାନରୁ ରୋସେଉ (Rosetta) ଶିଳାଲେଖ ଆବିଷ୍କୃତ ହେବାପରେ ସେହି ଶିଳାଲେଖ ସାହାଯ୍ୟରେ ମିଶର ଓ ବେବିଲୋନର ପ୍ରାଚୀନତମ ଲିପିଗୁଡ଼ିକର ପାଠୋଦ୍ଧାର ହେବା ସମ୍ଭବପର ହୋଇଥିଲା। ଫରାସୀ ଲିପିବିତ୍ ଜାଁନ ଫ୍ରାଙ୍କୋଇସ ଚାମ୍ପୋଲିୟନ (Jean Francois Champollion) ୧୮୨୨ ମସିହାରେ ରୋସେଉ ଶିଳାଲିପିର ନିର୍ଭୁଲ ପାଠୋଦ୍ଧାର କରିଥିଲେ (ରାଜଗୁରୁ, ୧୯୮୨)।

ଭୂମଧ୍ୟସାଗରୀୟ ଅଞ୍ଚଳରୁ ଆର୍ଯ୍ୟମାନେ ପୃଥିବୀର ବିଭିନ୍ନ ସ୍ଥାନକୁ ଯାଇ ଉପନିବେଶ ସ୍ଥାପନ କରିବା ସମୟରେ ଭାରତବର୍ଷକୁ ମଧ୍ୟ ଆସି ଉପନିବେଶ ସ୍ଥାପନ କରିଥିଲେ। ସେମାନଙ୍କ ଆଗମନ ପୂର୍ବରୁ ଭାରତବର୍ଷରେ ବହୁକାଳ ଧରି ଦ୍ରାବିଡ଼ୀୟ ଗୋଷ୍ଠୀ ସିନ୍ଧୁନଦୀ ଉପତ୍ୟକା ଅଞ୍ଚଳରେ ବସତି ସ୍ଥାପନ କରି ରହିଥିବାର ପ୍ରମାଣ ମିଳେ। ସିନ୍ଧୁ ଉପତ୍ୟକାର ମହେଞ୍ଜୋଦାରୋ, ଚାହ୍ନୁଦାରୋ, ହରପ୍ପା ପ୍ରଭୃତି ଅଞ୍ଚଳର ଖନନ ସ୍ଥାନରୁ ପ୍ରାଗ୍ଐତିହାସିକ ଯୁଗର ଯେଉଁସବୁ ନୂତନ ତଥ୍ୟ ଓ ଦୁର୍ବୋଧ ଚିତ୍ରଲିପି ଆବିଷ୍କୃତ ହୋଇଥିଲା, ସେହିସବୁ ତଥ୍ୟ ଭିତ୍ତିରେ ସେହି ଅଞ୍ଚଳମାନଙ୍କରେ ୫ ହଜାର ବର୍ଷ ପୂର୍ବେ ବାସ କରୁଥିବା ଉନ୍ନତ ସଭ୍ୟତାସମ୍ପନ୍ନ ଦ୍ରାବିଡ଼ୀୟ ଜନଗୋଷ୍ଠୀଙ୍କ ସମ୍ବନ୍ଧରେ ପ୍ରମାଣ ମିଳିଥାଏ (ରାଜଗୁରୁ ୧୯୮୦)।

ଭାରତବର୍ଷରେ ଦ୍ରାବିଡ଼ୀୟ ସଭ୍ୟତାର ଅବସ୍ଥିତି ସମୟରେ ଏସିଆ ମହାଦେଶର ଚୀନ ଓ ତିବତ ଅଞ୍ଚଳରେ ମଧ୍ୟ ଉନ୍ନତ ସଭ୍ୟଗୋଷ୍ଠୀଙ୍କର ବସତି ରହିଥିଲା। ସେଠାରେ ପ୍ରଚଳିତ ଆଦିମ ସଭ୍ୟ ଗୋଷ୍ଠୀଙ୍କର ଚିତ୍ରଲିପି ସମ୍ବନ୍ଧରେ ଚିକାଗୋ ବିଶ୍ୱବିଦ୍ୟାଳୟର ପ୍ରଫେସର କ୍ରିଲ (Prof. Herrlee Glesser Creel) କହନ୍ତି, "ସବୁ ସମୟରେ ଅକ୍ଷରର ଜନ୍ମ ବିବରଣୀ ରହସ୍ୟ-ଜାଲରେ ସମାବୃତ। ଆଦିମ ମାନବ ଏ ବିଦ୍ୟା କି ଉପାୟରେ ଶିକ୍ଷା କଲା ତାହା ଧାର୍ଯ୍ୟ କରିବା ସମ୍ଭବ ନୁହେଁ। ତଥାପି ଏକଥା ସ୍ପଷ୍ଟ ଯେ, ଚିତ୍ରାଙ୍କନ

ସାହାଯ୍ୟରେ ହିଁ ପୃଥିବୀରେ ଆଦ୍ୟତମ ଲିପି ରୂପ ଧାରଣ କଲା। ଚୀନ୍‌ରେ ପ୍ରଚଳିତ ଅକ୍ଷର ତା'ର ଏକ ସ୍ପଷ୍ଟ ନିଦର୍ଶନ। ଚୀନର ପ୍ରାକ୍-ପ୍ରସ୍ତର ଯୁଗ (Early Neolithic Age) ରେ ନିର୍ମିତ ସୁନ୍ଦର ଆକୃତି ବିଶିଷ୍ଟ ମୃଣ୍ମୟ ପାତ୍ରରେ ଅଙ୍କିତ ଚିହ୍ନଗୁଡ଼ିକରୁ ଏହାର ଆଭାଷ ମିଳେ (ରାଜଗୁରୁ, ୧୯୮୨)। ସେହି ଚିହ୍ନଗୁଡ଼ିକ ମଧ୍ୟରୁ କେତୋଟି ପଶୁପକ୍ଷୀ ଓ ମନୁଷ୍ୟର ରୂପ ମଧ୍ୟ ଧାରଣ କରିଥିଲା"।

ଚୀନ ଦେଶର ଚିତ୍ରଲିପିରେ ମନୁଷ୍ୟ ଭାବନାର ଏପରି ପ୍ରତିଫଳନ ହୋଇଥିଲା ଯେ ସେଠାର ଶିଳ୍ପୀ ଓ କଳାକାରମାନେ ତୂଳିକା ମାଧ୍ୟମରେ ଗୋଟିଏ ଗୋଟିଏ ଅକ୍ଷର ସାହାଯ୍ୟରେ ଗୋଟିଏ ଗୋଟିଏ ଶବ୍ଦ ବା ବାକ୍ୟ ଲେଖି ଭାବ ପ୍ରକାଶ କରୁଥିଲେ। ଏସବୁ ଚିତ୍ରଲିପି ବା ଚିତ୍ରାକ୍ଷର ସେମାନେ ମୃତ୍ତିକା ପାତ୍ର, କାଷ୍ଠ, ପଥର, ଧାତୁ ଏବଂ ଅସ୍ଥି ପ୍ରଭୃତି ଫଳକରେ ପ୍ରାଚୀନ ସମୟରୁ ଅଙ୍କିତ କରୁଥିଲେ। ଚୀନ୍‌ରେ ବ୍ୟବହୃତ ଶବ୍ଦାକ୍ଷର ବା ଯୁକ୍ତ-ଶବ୍ଦାକ୍ଷରଗୁଡ଼ିକ ମଣିଷର ଜଟିଳରୁ ଜଟିଳତର ଭାବ ପ୍ରକାଶ କରିବାକୁ ସକ୍ଷମ। କ୍ରିଲ୍‌ଙ୍କ ମତରେ ଚୀନ ଦେଶର ଜଳବାୟୁ ପ୍ରଭାବରେ ଚୀନବାସୀଙ୍କର ଅନୁନାସିକ ଉଚ୍ଚାରଣ ନିୟନ୍ତ୍ରିତ ହୋଇଥାଏ ଏବଂ କାଳକ୍ରମେ ସେମାନଙ୍କର ଯୁକ୍ତ ଶବ୍ଦାକ୍ଷରର ଲିଖନ ଭଙ୍ଗୀ ଏପରି ଜଟିଳ ସ୍ୱର-ନିୟମକୁ ଅନୁସରଣ କଲା ଯେ ଯୁକ୍ତ ଶବ୍ଦାକ୍ଷରର ଚିତ୍ର ସଂକେତଗୁଡ଼ିକ କ୍ରମଶଃ ଜଟିଳାକୃତି ଧାରଣ କଲା। ଚୀନ୍‌ରେ ପ୍ରାୟ ୪୦୦୦୦ ପ୍ରକାରର ଚିତ୍ରାକ୍ଷର ପ୍ରଚଳିତ ଥିବାର ଜଣାଯାଏ ଏବଂ ପୂର୍ବେ ଏହି ଅକ୍ଷରଗୁଡ଼ିକ ପାରମ୍ପରିକ ରୀତିରେ ସ୍ତମ୍ଭ ମଧ୍ୟରେ ଉପରୁ ତଳକୁ ଓ ଡାହାଣରୁ ବାମକୁ ଲେଖିବା ପଦ୍ଧତି ଅନୁସୃତ ହେଉଥିଲା। କିନ୍ତୁ ପରବର୍ତ୍ତୀ ସମୟରେ ଏହାର ଲିଖନ ପ୍ରଣାଳୀ ସିଧା ଧାଡ଼ିରେ ବାମରୁ ଡାହାଣକୁ ଲେଖିବାର ପଦ୍ଧତି ଅନୁସରଣ କରାଯାଉଛି। (ଚୀନ ଦେଶର ଶବ୍ଦାକ୍ଷର କୌଣସି ଧ୍ୱନି ସୂଚିତ ଚିହ୍ନ ବା ସଂକେତ ଗ୍ରହଣ ନ କରି ସିଧାସଳଖ ଭାବ ନିର୍ଦ୍ଦେଶ କରୁଥିବାରୁ ସେଗୁଡ଼ିକୁ ଭାବଲେଖ ବା ଭାବାକ୍ଷର ନାମରେ ନାମକରଣ କରାଯାଇଥିବା କଥା କହନ୍ତି ରାଜଗୁରୁ।)

ରାଜଗୁରୁଙ୍କ ମତରେ "ଭାରତବର୍ଷରେ ପ୍ରଚଳିତ ପ୍ରାଗ୍ ଐତିହାସିକ ଯୁଗର ଲିପି ଦୁଇଟି ଶାଖାରେ ବିଭକ୍ତ, ଯଥା- (୧) ଚିତ୍ରାକ୍ଷର (Heiroglyph) ଏବଂ (୨) ଭାବାକ୍ଷର (Ideograph) । ଦ୍ୱିତୀୟୋକ୍ତ ଶୈଳୀରୁ କାଳକ୍ରମେ 'ଭାବାଂଶ ଲିପି'ର ସୃଷ୍ଟି ହୋଇ ସେଥିରୁ ବ୍ରାହ୍ମୀଲିପି ସମ୍ଭୂତ ହେଲା"। ଭାବଲିପି ଓ ଭାବାଂଶ ଲିପି ବିଷୟରେ ସୂଚନା ଦେଇ ରାଜଗୁରୁ କହନ୍ତି, ଯେ ପୂର୍ବେ ଧରାଯାଉ, "ଗୋଟିଏ ହସ୍ତୀର ଚିତ୍ର ଆଙ୍କି କୌଣସି ଏକ ନିର୍ଦ୍ଦିଷ୍ଟ ଭାବ ପ୍ରକାଶ କରାଯାଇଥିଲା। କିଛି କାଳ ପରେ, ସେହି ହସ୍ତୀ ଚିତ୍ରକୁ

ସଂକ୍ଷିପ୍ତ କରାଯାଇ ତା'ର ଶୁଣ୍ଢଟି ମାତ୍ର ଆଙ୍କି ହସ୍ତୀର ଭାବ ପ୍ରକାଶିତ ହେଲା। ସେ ଯୁଗରେ ଏପରି ଚିତ୍ରକୁ 'ଭାବଚିତ୍ର' କୁହାଯାଉଥିଲା। ପୁଣି କିଛି କାଳ ପରେ ସେହି ହସ୍ତୀ ଶୁଣ୍ଢକୁ ଆହୁରି ସଂକୁଚିତ କରି ଶୁଣ୍ଢର ଅଗ୍ରଦେଶଟି ମାତ୍ର ରଖାଗଲା। ସେତେବେଳେ ତାହା 'ଭାବାଂଶ ଲିପି'ରେ ପରିଣତ ହେଲା। ଏପରି ଲିପି ପ୍ରଚଳିତ ହେବା ପରେ ଲୋକେ ମୂଳ ହସ୍ତୀ ଚିତ୍ରକୁ ଭୁଲିଗଲେ ଏବଂ କେବଳ ଶୁଣ୍ଢର ଅଗ୍ରଭାଗ ଦ୍ୱାରା ମୂଳ ହସ୍ତୀଟି କାଳକ୍ରମେ ସୂଚିତ କରାଯାଇ ସେ ଅକ୍ଷରର ଧ୍ୱନି ପ୍ରକଟିତ ହେଲା। ଏପରି ଯୁଗ ପରେ ଯୁଗ ଅତିବାହିତ ହୋଇ 'ଚିତ୍ରଲିପି'ରୁ 'ଭାବଲିପି' ପୁଣି ସେଥିରୁ 'ଭାବାଂଶ ଲିପି' ସୃଷ୍ଟି ହେଲା। ପରବର୍ତ୍ତୀ କାଳରେ ସେହି 'ଭାବାଂଶ ଲିପି'କୁ ସରଳ ଓ ବକ୍ରରେଖାରେ ସଜ୍ଜିତ କରି ତତ୍କାଳୀନ ଲିପିକାର ଲେଖନୀ ମୁନରେ ଚାଳିତ କଲା, ଯେଉଁ ଅକ୍ଷରାବଳୀ ବର୍ତ୍ତମାନ 'ବ୍ରାହ୍ମୀ' ନାମରେ ପରିଚିତ ହୋଇଛି (ରାଜଗୁରୁ, ୧୯୮୨)।"

ଭାରତବର୍ଷରେ ପ୍ରଚଳିତ ଉକ୍ତି 'ବ୍ରହ୍ମା ବିଳିବିଳେଇଲେ ବେଦ' ନ୍ୟାୟରେ ଯେପରି ବ୍ରହ୍ମାଙ୍କ ମୁଖ ନିସୃତ ବେଦରୁ ବୈଦିକ ଭାଷା ସୃଷ୍ଟି ହୋଇଥିବା ବିଶ୍ୱାସ କରାଯାଏ ସେହିପରି କିମ୍ବଦନ୍ତୀ ରହିଛି ଯେ ନିଜେ ସୃଷ୍ଟିକର୍ତ୍ତା ବ୍ରହ୍ମା ଏହି ଭାରତୀୟ ଲିପିର ଉଦ୍ଭାବକ ବୋଲି ଏହାର ନାମକରଣ 'ବ୍ରାହ୍ମୀ' ହୋଇଛି। କିନ୍ତୁ କୌଣସି ପ୍ରାଚୀନ ଗ୍ରନ୍ଥରେ ବ୍ରାହ୍ମୀ ଲିପିର ନାମ ଦେଖିବାକୁ ମିଳୁ ନଥିବାରୁ ଜୈନ ଧର୍ମର ପ୍ରାଚୀନ ଗ୍ରନ୍ଥ 'ପନ୍ନବଣା ସୂତ୍ର' ଓ 'ସମବାୟାଙ୍ଗ ସୂତ୍ର'ରେ ପ୍ରଦତ୍ତ ୧୮ ପ୍ରକାର ଲିପିର ନାମ ମଧ୍ୟରେ ଥିବା 'ବଂଭୀ' ନାମରୁ ବ୍ରାହ୍ମୀଲିପିର ନାମକରଣ ହୋଇଥିବା ସମ୍ଭବ (ରାଜଗୁରୁ, ୧୯୮୨)।

ପୁଣି କୁହାଯାଇଥାଏ ଯେ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀ ସମୟକୁ ସେମିଟିକ୍ ଭାଷାର ଗୋଟିଏ ଶାଖାରୁ ଯେଉଁ ଲିପିର ସୃଷ୍ଟି ହୋଇଥିଲା ତାହାର ନାମ ଥିଲା ଖରୋଷ୍ଠୀ। ଖରୋଷ୍ଠୀ ଲିପି ଲେଖା ହେଉଥିଲା ଦକ୍ଷିଣରୁ ବାମକୁ। ସେହି ସେମିଟିକ୍ ଭାଷାର ଅନ୍ୟ ଏକ ଶାଖାରୁ ଜନ୍ମଲାଭ କରି ଭାରତରେ ଯେଉଁ ଲିପି ପ୍ରଚଳିତ ହେଲା ତାହା ହେଲା ବ୍ରାହ୍ମୀ ଲିପି। ପ୍ରଫେସର ବ୍ୟୁହଲରଙ୍କ ମତରେ ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀ ସମୟକୁ ଏହା ଭାରତରେ ପ୍ରଚଳିତ ହୋଇଛି। ବ୍ରାହ୍ମୀ ଲିପି ଭାରତର ଜାତୀୟ ଲିପି ଭାବରେ ସ୍ୱୀକୃତ (ଧଳ, ୧୯୭୬)। ଭାରତୀୟ ବ୍ରାହ୍ମୀ ଲିପି ଦୁଇ ପ୍ରକାରର : ଉତ୍ତର ବ୍ରାହ୍ମୀଲିପି ଓ ଦକ୍ଷିଣ ବ୍ରାହ୍ମୀଲିପି। ସଂସ୍କୃତ, ହିନ୍ଦୀ, ମରାଠୀ ଓ ପୂର୍ବାଞ୍ଚଳୀୟ ଓଡ଼ିଆ, ବଙ୍ଗଳା ଓ ଅସମୀୟା ପ୍ରଭୃତି ଭାଷା ଉତ୍ତର ବ୍ରାହ୍ମୀଲିପିକୁ ଅନୁସରଣ କରିଥିବା ବେଳେ ଦକ୍ଷିଣ ଭାରତୀୟ ଭାଷା ତେଲଗୁ, ତାମିଲ, କନ୍ନଡ଼ ଓ ମାଲୟାଲାମ ପ୍ରଭୃତିରେ ଦକ୍ଷିଣ ବ୍ରାହ୍ମୀଲିପି ଅନୁସୃତ।

ଭାରତୀୟ ଲିପିର ପ୍ରାଚୀନତମ ଅବସ୍ଥା ଅଭିଲେଖମାନଙ୍କରୁ ଉପଲବ୍ଧ। ରାଜାନୁଶାସନ କାଳରେ ପ୍ରସ୍ତର ଗାତ୍ରରେ ଓ ତାମ୍ରପଟାମାନଙ୍କରେ ରାଜାନୁଶାସନର ନିର୍ଦ୍ଦେଶାବଳୀ ଓ ଦାନପତ୍ର ପ୍ରଭୃତିକୁ ଖୋଦିତ କରାଯାଉଥିଲା। ପ୍ରସ୍ତର ଓ ତମ୍ବାପଟାଗୁଡ଼ିକରୁ ପ୍ରସ୍ତୁତ ଶିଳାଲେଖ ଓ ତାମ୍ରଲେଖ ସବୁ ହେଉଛି ଅଭିଲେଖ। ଅଭିଲେଖଗୁଡ଼ିକ ଉଭୟ ସଂସ୍କୃତ ଓ ଓଡ଼ିଆ ଭାଷାରେ ଲିଖିତ। ଖ୍ରୀଷ୍ଟପୂର୍ବ ତୃତୀୟ ଶତକରେ ଓଡ଼ିଆଭାଷାର ପ୍ରାଚୀନତମ ନମୂନା ଅଶୋକଙ୍କ ଧଉଳି ଓ ଜଉଗଡ଼ ଶିଳାଲେଖରୁ ଏବଂ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଭୁବନେଶ୍ୱର ସ୍ଥିତ ଉଦୟଗିରିର ଖାରବେଳଙ୍କ ଶିଳାଲେଖରୁ ପ୍ରାପ୍ତ। ଏଣୁ କୁହାଯାଇପାରେ ଯେ ବ୍ରାହ୍ମୀଲିପିରେ ଲିଖିତ ଓଡ଼ିଆ ଭାଷାର ପ୍ରାଚୀନତମ ସ୍ୱରୂପ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଶିଳାଲେଖରେ ଲିପିବଦ୍ଧ ଓ ତାହାର କ୍ରମବିକଶିତ ଆଧୁନିକ ରୂପ ଆଜିର ଓଡ଼ିଆ ଲିପିରେ ରୂପ ପାଇଛି। ଲିପିବିତ୍ ରାଜଗୁରୁଙ୍କ ମତରେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଅଶୋକଙ୍କ ଧଉଳି ଓ ଜଉଗଡ଼ ଶିଳାଲେଖ ଓଡ଼ିଆରେ ସର୍ବପ୍ରଥମ ଲିପି ଏବଂ "ଓଡ଼ିଆ ଲିପିର ଆଦିମ ଆକୃତି ବ୍ରାହ୍ମୀ-ଲିପିର ଅନ୍ତର୍ଗତ" (ରାଜଗୁରୁ, ୧୯୮୦)।

ଲିପିକାରମାନେ ଲେଖିବା ସମୟରେ ଲିପିର ସ୍ୱାତନ୍ତ୍ର୍ୟ ରକ୍ଷା ପାଇଁ ଲିପିର ଆକୃତିରେ ପରିବର୍ତ୍ତନ କରୁଥିଲେ। ପୁଣି ପ୍ରାଚୀନ ବ୍ରାହ୍ମୀଲିପିରେ ପ୍ରାଦେଶିକ ପ୍ରଭାବରୁ ମଧ୍ୟ ପରିବର୍ତ୍ତନ ଘଟୁଥିଲା। ପୂର୍ବ-ଭାରତୀୟ ଲିପିଗୁଡ଼ିକ ମଧ୍ୟରେ ବଙ୍ଗଳା, ଅସମୀୟା ପ୍ରଭୃତି ଭାଷାର ଲିପି ରେଖାଯୁକ୍ତ ଓ ତ୍ରିକୋଣାକାର ହେବା ବେଳେ ଓଡ଼ିଆ ଲିପି ଗୋଲାକୃତି ହୋଇଛି। ଭାଷାବିତ୍ ଧଳଙ୍କ ମତରେ "ଆର୍ଯ୍ୟ ଦ୍ରାବିଡ଼ ଉଭୟ ସଂସ୍କୃତିର ସମନ୍ୱୟରେ ଓଡ଼ିଆ ଅକ୍ଷର ବର୍ତ୍ତୁଳାକାର ହୋଇଛି।" କାଲଡ଼ୱେଲ୍ଙ୍କ ମତରେ ଓଡ଼ିଆ ଅକ୍ଷର ଗୋଲାକାର ହେବା ମୂଳରେ ଦ୍ରାବିଡ଼ ଲିପିର ପ୍ରଭାବ ରହିଛି। ପୁଣି ପୂର୍ବ କାଳରେ ଓଡ଼ିଆ ଭାଷା ତାଳପତ୍ର ଉପରେ ଲୌହ ଲେଖନୀ ସାହଯ୍ୟରେ ଲେଖା ହେଉଥିବାରୁ ଏହାର ଉପରିଭାଗ ଗୋଲାକାର ହେବା ସମ୍ଭବ। ଓଡ଼ିଆ ଅକ୍ଷରର ଲିଖନ ପ୍ରଣାଳୀ ବିଷୟରେ ଜନ ବିମ୍ସ କହନ୍ତି, ଓଡ଼ିଆ ଅକ୍ଷରଗୁଡ଼ିକ "ଅସୁନ୍ଦର, ଦୁର୍ବୋଧ ଓ ଦୁର୍ବହ ଏବଂ ଅତ୍ୟନ୍ତ ବିରକ୍ତିକର ଓ କଷ୍ଟସାଧ ଉପାୟ ଅବଲମ୍ବନ କରି ଏହି ଭାଷାକୁ ଲେଖିବାକୁ ପଡ଼େ" (Comparative Grammar, 1878)। ଜର୍ଜ ଗ୍ରୀୟରସନ ମଧ୍ୟ ଓଡ଼ିଆ ଅକ୍ଷରର ଲିଖନ ପ୍ରଣାଳୀ ଅତ୍ୟନ୍ତ 'ଅବାଗିଆ' ଓ 'ବିରକ୍ତିକର' ବୋଲି ଲେଖିଛନ୍ତି (LSI, Vol.5, Part II, 1903)। ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ମଧ୍ୟରେ ସଂଗୃହୀତ ବିଭିନ୍ନ ଶିଳା ଓ ତାମ୍ର ଅଭିଲେଖ (୧୦୫୧-୧୫୬୮) ଗୁଡ଼ିକର ଐତିହାସିକ ତଥା ପ୍ରତ୍ନତାତ୍ତ୍ୱିକ ଅନୁଶୀଳନ କରିଛନ୍ତି ଭାଷାବିତ୍ କୁଞ୍ଜବିହାରୀ

ତ୍ରିପାଠୀ ତାଙ୍କ (The Evolution of Oriya Language and Script, 1962) ଗ୍ରନ୍ଥରେ। ଏକାଦଶ ଶତାବ୍ଦୀରୁ ସଂଗୃହୀତ ଶିଳା ଓ ତାମ୍ରଲିପିଗୁଡ଼ିକରେ ପ୍ରତ୍ନ-ଓଡ଼ିଆ ଲିପିର କ୍ରମବିକାଶକୁ ପ୍ରକାଶ କରିଥିଲେ ମଧ୍ୟ ଓଡ଼ିଆ ଲିପିକୁ 'ପ୍ରତ୍ନ-ବେଙ୍ଗଲୀ' ବା 'ପ୍ରୋଟୋ-ବେଙ୍ଗଲୀ'ରୁ ଜନ୍ମ ହୋଇଥିବା ଭ୍ରାନ୍ତ ଧାରଣାକୁ ସେ ଏଥିରେ ଦର୍ଶାଇଛନ୍ତି।

ଖ୍ରୀଷ୍ଟୀୟ ୧୪ଶ ଶତାବ୍ଦୀରେ ଗଙ୍ଗବଂଶୀୟ ରାଜା ଚତୁର୍ଥ ନରସିଂହ ଦେବଙ୍କର କେନ୍ଦୁଲି ତାମ୍ର ଶାସନ ଓ ପୁରୀ ଶଙ୍କରାନନ୍ଦ ମଠର ତାମ୍ର ଶାସନ ଓ ସୋନପୁରର ଭାନୁଦେବଙ୍କ ଶିଳାଲେଖରେ ବ୍ୟବହୃତ ଲିପି ଓଡ଼ିଆ ଲିପିର ନିକଟତର। ତେବେ ଏହି ସମୟରେ ପ୍ରଚଳିତ ଲିପିକୁ 'ପ୍ରୋଟୋ-ବେଙ୍ଗଲୀ' ନାମକରଣ କରିଥିଲେ ଜି. ବ୍ୟୁହଲର। ଗ୍ରୀୟରସନ ଓଡ଼ିଆ ଲିପିକୁ ନାଗରୀ ଲିପିରୁ ଉଦ୍ଭବ ହୋଇଥିବା କଥା କହନ୍ତି। କିନ୍ତୁ ଧଳଙ୍କ ମତାନୁସାରେ "ଉତ୍ତର-ପୂର୍ବ ଭାରତବର୍ଷରେ ପ୍ରଚଳିତ ଓଡ଼ିଆ, ବଙ୍ଗଳା, ଅସମୀୟା ଓ ମୈଥିଳୀ ଭାଷାମାନଙ୍କର ପୂର୍ବ ଲିପିକୁ 'ପ୍ରତ୍ନ-ଉତ୍ତର-ପୂର୍ବ-ଭାରତୀୟ ଲିପି' କହିବା ଅଧିକ ସମୀଚୀନ" (ଧଳ-୧୯୭୬)।

ଗଙ୍ଗବଂଶ ପରେ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀରେ ଓଡ଼ିଶାରେ ସୂର୍ଯ୍ୟବଂଶୀୟ ରାଜା କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବ ଓ ପ୍ରତାପରୁଦ୍ର ଦେବଙ୍କ ଶାସନ କାଳରେ ପୁରୀ ମନ୍ଦିରର 'ଜୟ ବିଜୟ' ତୋରଣର ଉଭୟ ପାର୍ଶ୍ୱରେ ଓଡ଼ିଆ ଭାଷାରେ ୧୨ଟି ଶିଳାଲେଖ ଖୋଦିତ ହୋଇଛି, (ଧଳ, ୧୯୭୬)। ଏହି ଶିଳାଲେଖମାନଙ୍କରେ ବ୍ୟବହୃତ ଲିପି ପ୍ରତ୍ନ-ଓଡ଼ିଆ ଲିପି ଅନ୍ତର୍ଗତ ହେବା ସଙ୍ଗେ ସଙ୍ଗେ ଆଜିର ଆଧୁନିକ ଓଡ଼ିଆ ଲିପିରେ ପରିଣତ ହୋଇ ଆମ ପାଖରେ ଆସି ପହଞ୍ଚିଛି 'ଓଡ଼ିଆ ବର୍ଣ୍ଣମାଳା' ଆକାରରେ।

ପଞ୍ଚଦଶ ଶତାବ୍ଦୀରେ ସୂର୍ଯ୍ୟବଂଶର ଅଭ୍ୟୁଦୟ ହେବା ପରେ ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ହେବା ସମୟରୁ ଓଡ଼ିଆ ଲିପିର ବିକାଶ ସାଧିତ ହୋଇଥିଲେ ମଧ୍ୟ ଏହା ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଓଡ଼ିଆ ରୂପ ଲାଭ କରିପାରି ନାହିଁ। ପଞ୍ଚଦଶ ଶତାବ୍ଦୀରୁ ଉନ୍ନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆ ଭାଷାର ଲିଖିତ ରୂପ ମୁଖ୍ୟତଃ ସଂରକ୍ଷିତ ହୋଇ ରହିଥିଲା ଓଡ଼ିଶାର ଗାଁ ଗହଳିରେ ଘରେ ଘରେ ସଂରକ୍ଷିତ ତାଳପତ୍ର ପୋଥିର ବିଶାଳ ଭଣ୍ଡାର ଭିତରେ। ଆଜି ଏକବିଂଶ ଶତାବ୍ଦୀରେ ମଧ୍ୟ ବହୁ ସଂଖ୍ୟାରେ ଓଡ଼ିଆ ଭାଷାର ପ୍ରାଚୀନ ତାଳପତ୍ର ପୋଥି ବିଭିନ୍ନ ସଂରକ୍ଷିତ ସ୍ଥାନରୁ ଉପଲବ୍ଧ ହେଉଛି। ଏହି ପୋଥିଗୁଡ଼ିକରେ ଲିପିବଦ୍ଧ ବିଭିନ୍ନ ଜ୍ଞାନରାଜିକୁ ସଂଗ୍ରହ କରି ଆଜିର ବୈଜ୍ଞାନିକ ଯୁଗରେ ଡିଜାଇଟେସନ୍ କରିବାର ପ୍ରୟାସ ଜାରି ରହିଛି। ପଞ୍ଚଦଶ ଶତାବ୍ଦୀରୁ ଉନ୍ନବିଂଶ ଶତାବ୍ଦୀ ମଧ୍ୟଭାଗ ପର୍ଯ୍ୟନ୍ତ ଓଡ଼ିଆ ଭାଷାରେ ଲିଖିତ ଓ ରଚିତ ସାହିତ୍ୟକୁ ପୋଥି ସାହିତ୍ୟର ଯୁଗ କହିବା ଯୁକ୍ତିଯୁକ୍ତ ମନେହୁଏ।

ଓଡ଼ିଆ ଭାଷା ଉପରେ ସଂସ୍କୃତର ପ୍ରଭାବ ଅନସ୍ୱୀକାର୍ଯ୍ୟ। ଜ୍ଞାତି ସମ୍ପର୍କ ବଶତଃ ହେଉ (ବିମସ୍, ୧୮୭୮) ଅବା ପରବର୍ତ୍ତୀ ପ୍ରାକୃତରୁ ଉଦ୍ଭବ ହେବା କାରଣରୁ ହେଉ କିମ୍ବା ପଡ଼ୋଶୀ ରାଜ୍ୟମାନଙ୍କର ଭାଷା ପ୍ରଭାବରୁ ହେଉ ଏହି ଭାଷାର ଉଚ୍ଚାରଣ ଓ ଲିଖନ ରୂପ ମଧ୍ୟରେ ଅସାମଞ୍ଜସ୍ୟ ପରିଦୃଷ୍ଟ ହୁଏ। ଶୃଙ୍ଖଳିତ, ଶୁଦ୍ଧ ଉଚ୍ଚାରିତ-ଧ୍ୱନି-ସର୍ବସ୍ୱ ସଂସ୍କୃତ ଭାଷାରୁ ବିଚ୍ଛିନ୍ନ ହୋଇଥିଲେ ମଧ୍ୟ ଓଡ଼ିଆ ଭାଷାର ଲିଖିତ ରୂପ ଆଜି ପର୍ଯ୍ୟନ୍ତ ସଂସ୍କୃତ ମୁକ୍ତ ହୋଇ ନିଜର ଏକ ଶୃଙ୍ଖଳିତ ସ୍ୱରୂପ ଲାଭ କରିପାରି ନାହିଁ।

ଭାଷାର ବ୍ୟାକରଣ ରଚନା ପରମ୍ପରାରେ ଧ୍ୱନି ସୃଷ୍ଟି ପରେ ଭାଷାର ଧ୍ୱନିତାତ୍ତ୍ୱିକ ବର୍ଣ୍ଣନାରେ ଉଚ୍ଚାରଣ ଓ ପ୍ରତିଲିପି ବା ଚିତ୍ରରୂପ ପ୍ରକରଣ ଭାଷା ଅଧ୍ୟୟନ ତଥା ବ୍ୟାକରଣ ରଚନାର ଅଂଶ ବିଶେଷ। ବ୍ୟାକରଣ ରଚନାରେ ପାଶ୍ଚାତ୍ୟରେ ପ୍ରାଚୀନ ଗ୍ରୀକ୍ ଭାଷାରେ ଭାଷା କହିଲେ କେବଳ ଭାଷାର ଲିଖିତ ରୂପକୁ ବୁଝାଯାଉଥିଲା। କାରଣ ଲିଖିତ ଭାଷାର ହିଁ ବ୍ୟାକରଣ ସମ୍ଭବ ବୋଲି ଗ୍ରହଣ କରାଯାଉଥିଲା। ଗ୍ରୀକ୍ ଭାଷାରେ ଭାଷାର କଥିତ ରୂପକୁ ଲିଖିତ ଭାଷାର ନିକୃଷ୍ଟ ରୂପ ବୋଲି ମନେକରି ଯେଉଁ ଭାଷା ଲିପିବଦ୍ଧ ନୁହେଁ ସେ ଭାଷାର ବ୍ୟାକରଣ ରହିବା ସମ୍ଭବ ନୁହେଁ ବୋଲି ଗ୍ରୀକ୍ ଦାର୍ଶନିକମାନେ ଗ୍ରହଣ କରିଥିଲେ। ଲିଖିତ ଭାଷାର ବ୍ୟାକରଣ ରହିବା ଧାରଣା ଗ୍ରୀକ୍ ଭାଷାରେ ବ୍ୟାକରଣ ଶବ୍ଦର ମୂଳ ବ୍ୟୁତ୍ପତ୍ତିଗତ ଅର୍ଥ 'ଲେଖିବା' ଶବ୍ଦରୁ ସୃଷ୍ଟି ହୋଇଛି। ଗ୍ରୀକ୍ ଭାଷାରେ 'ଗ୍ରାମାର' ବା ବ୍ୟାକରଣ ଶବ୍ଦ 'ଗ୍ରାମାଟିକ୍ ଟେକ୍‌ନେ' ବା 'ଲିଖନ କଳା'ରୁ ଆସିଛି। ଗ୍ରୀକ୍ ବ୍ୟାକରଣକାର ଡାଇଓନିୟସ ଥ୍ରାକ୍ସଙ୍କ ମତରେ 'ବ୍ୟାକରଣ ହେଉଛି କବି ଓ ଲେଖକ ମାନଙ୍କର ଲିଖିତ ଭାଷାରେ ବ୍ୟବହୃତ ସାଧାରଣ ପ୍ରୟୋଗଗୁଡ଼ିକ ବିଷୟରେ ବ୍ୟାବହାରିକ ଜ୍ଞାନ'।

ଭାରତ ବର୍ଷରେ ମଧ୍ୟ ପବିତ୍ର ବୈଦିକ ସଂସ୍କୃତ ଭାଷାର ଶୁଦ୍ଧତା ଓ ପବିତ୍ରତା ରକ୍ଷା ପାଇଁ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ ପାଣିନି ରଚନା କରିଥିଲେ ସଂସ୍କୃତ ଭାଷାର ଶୁଦ୍ଧ ବ୍ୟାକରଣ 'ଅଷ୍ଟାଧ୍ୟାୟୀ'। ସଂସ୍କୃତ ବ୍ୟାକରଣର ବୈଶିଷ୍ଟ୍ୟ ହେଉଛି ଏହାର ଶୃଙ୍ଖଳିତ ସଂକ୍ଷିପ୍ତିକରଣ ସୂତ୍ର ଏବଂ ବ୍ୟାକରଣ ହେଉଛି କେତେଗୁଡ଼ିଏ ସଂକ୍ଷିପ୍ତ ସୂତ୍ରର ସମାହାର ମାତ୍ର। ସଂସ୍କୃତ ବ୍ୟାକରଣକୁ ଶିକ୍ଷାର୍ଥୀମାନେ ଶୁଣି ଶୁଣି କଣ୍ଠସ୍ଥ କରୁଥିଲେ। ପୁଣି ଏହା ମୁହଁରୁ ମୁହଁକୁ ପ୍ରସାରିତ ହେଉଥିଲା। ସେଥିପାଇଁ ସଂସ୍କୃତକୁ ଲିପିବଦ୍ଧ କରିବାର ଆବଶ୍ୟକତା ନଥିଲା। ଆଜିବି ସଂସ୍କୃତର ନିଜସ୍ୱ ଲିପିନାହିଁ ଏବଂ ସର୍ବଭାରତୀୟ ସ୍ତରରେ ଏହା ଦେବନାଗରୀ ଲିପିରେ ଲେଖାଯାଉଥିଲେ ମଧ୍ୟ ମଧ୍ୟ ପ୍ରାଦେଶିକ ସ୍ତରରେ ପ୍ରାଦେଶିକ ଲିପିରେ ଲେଖାହେବାର ବ୍ୟବସ୍ଥା ପ୍ରଚଳିତ ରହିଛି। ଉତ୍ତରାଧିକାରୀ ସୂତ୍ରରେ ସଂସ୍କୃତର

ଧ୍ୱନି ପଦ୍ଧତି ଓ ଉଚ୍ଚାରଣ ଭାରତୀୟ ପରିପ୍ରେକ୍ଷୀରେ ଆଧୁନିକ ଭାଷାଗୁଡ଼ିକରେ ସ୍ୱୀକୃତ। "ଭାରତୀୟ ଅନ୍ୟାନ୍ୟ ଭାଷା ପରି ଓଡ଼ିଆ ମଧ୍ୟ ସଂସ୍କୃତ ବର୍ଣ୍ଣମାଳାକୁ ଗ୍ରହଣ କରିନେଇଛି" ବୋଲି କହନ୍ତି ଭାଷାବିତ୍ ଦେବୀ ପ୍ରସନ୍ନ ପଟ୍ଟନାୟକ (ପଟ୍ଟନାୟକ, ୧୯୮୫)।

ଓଡ଼ିଆ ଭାଷାର ଲିଖନ ପଦ୍ଧତିର ବିକାଶରେ ଲିପି, ବର୍ଣ୍ଣ ଓ ଅକ୍ଷର ଏବଂ ଲିପିମାଳା, ବର୍ଣ୍ଣମାଳା ଓ ଅକ୍ଷରମାଳା ପ୍ରଭୃତି ଶବ୍ଦ ପ୍ରୟୋଗରେ ଅସ୍ୱଚ୍ଛତା ଓ ବିଭ୍ରାନ୍ତି ସୃଷ୍ଟି ହେଉଥିବା ପରିଦୃଷ୍ଟ ହୁଏ। ଭାଷାବିତ୍ ବିଜୟ ପ୍ରସାଦ ମହାପାତ୍ର ତାଙ୍କର 'ଭାରତୀୟ ଭାଷାତତ୍ତ୍ୱର ଭୂମିକା' ପ୍ରବନ୍ଧରେ ଲେଖିଛନ୍ତି, "କଥା କହିଲା ବେଳେ ପାଟି ଭିତରେ ଅଙ୍ଗମାନଙ୍କର ଯେଉଁ ବିଭିନ୍ନ ସଂଚାଳନ ସଂଘଟିତ ହୁଏ ସେସବୁକୁ ଉପଲବ୍ଧି କରି କେତୋଟି ନିର୍ଦ୍ଦିଷ୍ଟ ଉପାୟରେ ତା'ର ବର୍ଣ୍ଣନା କରିବା ହିଁ 'ଧ୍ୱନିତତ୍ତ୍ୱ'।" ପୁଣି ମହାପାତ୍ର ଓଡ଼ିଆ ଭାଷାର ସ୍ୱର ଓ ବ୍ୟଞ୍ଜନ ଭେଦର ଚିତ୍ର ଦର୍ଶାଇବାକୁ ଯାଇ କହନ୍ତି, "ବିଭିନ୍ନ ଧ୍ୱନିର ସଂଗ୍ରହଣ ଦ୍ୱାରା ଯେଉଁ ବର୍ଣ୍ଣ ସମାମ୍ନାୟ ପ୍ରତିଷ୍ଠିତ ହୁଏ ତାହାର ଏକ ମୋଟାମୋଟି ନକଲ ଓଡ଼ିଆ ଭାଷାର ବ୍ୟାକରଣକାରମାନେ 'ବର୍ଣ୍ଣମାଳା' ନାମରେ ଦେଇ ଆସୁଛନ୍ତି। ଫଳରେ ଓଡ଼ିଆ ବ୍ୟାକରଣକାରମାନଙ୍କ 'ବର୍ଣ୍ଣମାଳା'କୁ ତୁଳନା କଲାବେଳେ ଯଥେଷ୍ଟ ସାବଧାନତାର ସହିତ ଆମକୁ ଏହା ଗ୍ରହଣ କରିବାକୁ ପଡ଼ିବ। କାରଣ 'ବର୍ଣ୍ଣ' କହିଲେ ଆମେ ବୁଝୁ 'ଲିପି' କିନ୍ତୁ ଏହା ଭାଷାର ଧ୍ୱନି ମଧ୍ୟ। ପଣ୍ଡିତ ନୀଳକଣ୍ଠ 'ସତ୍ୟବାଦୀ' ପତ୍ରିକାର ତୃତୀୟ ଭାଗ ଚତୁର୍ଥ ସଂଖ୍ୟାରେ କହିଛନ୍ତି- "ବର୍ଣ୍ଣ କହିଲେ ଲିଖିତ ଅକ୍ଷର ଓ ଅକ୍ଷରର ଉଚ୍ଚାରଣ ଉଭୟ ବୁଝାଏ। ମାତ୍ର ଭଲ କରି ବୁଝିଲେ ଦେଖାଯିବ, ମୁଖର ଉଚ୍ଚାରଣ ହିଁ ବର୍ଣ୍ଣ। ଅପରପକ୍ଷେ, ପଣ୍ଡିତ ଗୋପୀନାଥ ନନ୍ଦ ସଂସ୍କୃତ ଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ସତ୍ତ୍ୱେ 'ଓଡ଼ିଆ ଭାଷାତତ୍ତ୍ୱ'ର ପ୍ରଥମ ପୃଷ୍ଠାରେ 'ବର୍ଣ୍ଣ' ଓ 'ଅକ୍ଷର' ଲେଖି ଏ ଶବ୍ଦ ଦୁଇଟି ଯେ ଭିନ୍ନ ବସ୍ତୁର ପରିଭାଷା, ସେ କଥା କହୁ ନ କହୁ ମାତ୍ର ଚାରୋଟି ଧାଡ଼ି ପରେ 'ବର୍ଣ୍ଣ ବା ଅକ୍ଷର' କହି ସେ ପାର୍ଥକ୍ୟକୁ ଲୋପ କରିଦେଇଛନ୍ତି। ଅନ୍ୟାନ୍ୟ ଓଡ଼ିଆ ବ୍ୟାକରଣକାରଙ୍କ ବିଷୟରେ ନ କହିବା ଭଲ। ତେବେ ଆମ ବ୍ୟାକରଣକାରମାନେ ଯାହା କହନ୍ତୁ ନା କାହିଁକି ସଂସ୍କୃତ ବୈୟାକରଣମାନଙ୍କ ମତରେ -କ ବର୍ଣ୍ଣ ଓ କ ଅକ୍ଷର ଉଭୟ ବାହ୍ୟତଃ ଏକ, କିନ୍ତୁ କ, କ୍ଷ, କ୍କ ଅକ୍ଷର ହୋଇପାରୁଥିବା ବେଳେ ବର୍ଣ୍ଣ ହୋଇପାରିବେ ନାହିଁ। କାରଣ କ ବର୍ଣ୍ଣର (କ+ଅ) 'ଅ' ହେଉଛି ଏକ ବିରାମ। ଅକାରୋ ବ୍ୟନାମ୍ - ବ୍ୟଞ୍ଜନ ବର୍ଣ୍ଣ ଅକାର ସଂଯୁକ୍ତ ହୋଇଥାଏ। ଏହି ଦୃଷ୍ଟିରୁ କ ଅକ୍ଷର କହିଲେ କ୍+ଅ କିନ୍ତୁ, କ ବର୍ଣ୍ଣ କହିଲେ କେବଳ କ୍।" ବିଜୟ ପ୍ରସାଦଙ୍କ ମତରେ "ପଣ୍ଡିତ ନୀଳକଣ୍ଠଙ୍କ ଯୁକ୍ତିର ତାତ୍ପର୍ଯ୍ୟ

ଗ୍ରହଣ କଲେ ଆମ ବ୍ୟାକରଣଗୁଡ଼ିକର ତଥାକଥିତ ବର୍ଣ୍ଣମାଳାକୁ 'ଲିପିମାଳା' କହିବା ବେଶୀ ସଙ୍ଗତ ହେବ" (ମହାପାତ୍ର, ୧୯୮୩)।

ପ୍ରାଚୀନ କାଳରୁ କାଳକ୍ରମେ ଲିପିର ବିବର୍ତ୍ତନରୁ ଆଜିର ଅକ୍ଷରର ସ୍ୱରୂପ ଗଠିତ। ଲିପି ହେଉଛି ଅକ୍ଷରର ଉତ୍ସ। ଏକାଦଶ ଶତାବ୍ଦୀରୁ ବିଭିନ୍ନ ଭାବରେ ବିବର୍ତ୍ତିତ ହୋଇ ପଞ୍ଚଦଶ ଶତାବ୍ଦୀର ପ୍ରତ୍ନ - ଓଡ଼ିଆ ଲିପିରୁ ଆଜିର ଓଡ଼ିଆ ଅକ୍ଷର ରୂପ ନେଇଛି। ଧ୍ୱନିତାତ୍ତ୍ୱିକ ଭାବରେ ଓଡ଼ିଆରେ ପ୍ରଚଳିତ ଧ୍ୱନିର ଅନ୍ୟ ନାମ ବର୍ଣ୍ଣ ଓ ଏହା ଉଚ୍ଚାରିତ ଏବଂ ବର୍ଣ୍ଣର ଲିଖିତ ରୂପ ଅକ୍ଷର ଧ୍ୱନିର ପ୍ରତିନିଧି ସ୍ଥାନୀୟ। ମନୁଷ୍ୟ ଶିଶୁ ସ୍ୱତଃ ଭାଷା ଶିଖିବା ବେଳେ ପ୍ରଥମେ ଧ୍ୱନି ବା ବର୍ଣ୍ଣର ଉଚ୍ଚାରଣକୁ ଶୁଣି ଶୁଣି ଶିଖେ ପରିବାର ଓ ଭାଷା ପରିବେଶରୁ। ସେଥିପାଇଁ ଶିଶୁ ଅବସ୍ଥାରେ ଯେତେବେଳେ ସେ ଅକ୍ଷର ଶିଖେ ଭାଷାର ପ୍ରୟୋଗକୁ ସେ ଶିଖି ସାରିଥାଏ। ଭାଷା ଅଧ୍ୟୟନର ପ୍ରାଥମିକ ଅବସ୍ଥାରେ ଅକ୍ଷର ଶିକ୍ଷା ପଦ୍ଧତିକୁ ଓଡ଼ିଆ ଶିକ୍ଷା ବ୍ୟବସ୍ଥାରେ ତିନୋଟି ଉପାୟରେ ଶିକ୍ଷା ଦିଆଯାଇଥାଏ। ଏହା ଛବି ବା ଚିତ୍ର ମାଧ୍ୟମରେ ବିଭିନ୍ନ ବସ୍ତୁର ପ୍ରଦର୍ଶନ ଦ୍ୱାରା ହେଉ ବା ସିଧା ସଳଖ ଅକ୍ଷରର ଲିଖନ ପଦ୍ଧତିକୁ ଅଭ୍ୟାସ ମାଧ୍ୟମରେ ହେଉ ଅବା ସମଆକୃତି ବିଶିଷ୍ଟ ଅକ୍ଷରଗୁଡ଼ିକର ସଜ୍ଜିକରଣ ମାଧ୍ୟମରେ ଅଭ୍ୟାସ ଦ୍ୱାରା ଆୟତ୍ତ କରିବା ଦ୍ୱାରା ହେଉ। ଅକ୍ଷର ଲିଖନର ୩ଟି ଯାକ ପଦ୍ଧତି ଆୟାସସାଧ କିନ୍ତୁ ସ୍ୱଳ୍ପ ସମୟ ସାପେକ୍ଷ। ଭାଷା ଅଧ୍ୟୟନର ପ୍ରାଥମିକ ପର୍ଯ୍ୟାୟ ଧ୍ୱନି ଶ୍ରବଣ, ଉଚ୍ଚାରଣ, ପଠନ ଓ ଲିଖନ ପ୍ରକିୟା ସହିତ ସମ୍ପର୍କିତ। କିନ୍ତୁ ଲିଖନ ପ୍ରକ୍ରିୟାରେ ଭାଷାରେ ବ୍ୟବହୃତ ଅକ୍ଷର, ମାତ୍ରା, ଫଳା ଓ ଯୁକ୍ତାକ୍ଷର ପ୍ରୟୋଗକୁ ଲିପି ଶିକ୍ଷାରେ ଆୟତ କରିବାକୁ ହୁଏ।

ପଞ୍ଚଦଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟର ବିକାଶ କାଳରେ ସଂସ୍କୃତ ପ୍ରଭାବିତ ଓଡ଼ିଆ ବର୍ଣ୍ଣମାଳାର ଅକ୍ଷରକ୍ରମ ଏବଂ ବ୍ୟବହୃତ ହେଉଥିବା ଲିଖନ ପ୍ରଣାଳୀ ଆଜି ପର୍ଯ୍ୟନ୍ତ ଅନୁସୃତ ହୋଇ ଆସୁଛି। ସାରଳା ମହାଭାରତରେ ଏବଂ ପରବର୍ତ୍ତୀ ସାହିତ୍ୟ ରଚନା ଚଉତିଶା ଓ ଚମ୍ପୂ (କ ଠାରୁ କ୍ଷ ପର୍ଯ୍ୟନ୍ତ ଅକ୍ଷରକ୍ରମ) ଏବଂ ଓଡ଼ିଆ ଭାଷାକୋଷ ଓ ପ୍ରଚଳିତ ଅଭିଧାନମାନଙ୍କରେ (ଅ ଠାରୁ ହ ପର୍ଯ୍ୟନ୍ତ ଅକ୍ଷରକ୍ରମ) ବ୍ୟବହୃତ ବର୍ଣ୍ଣମାଳାକ୍ରମ ଏହାର ପ୍ରମାଣ। ଲିପିବିତ୍ କୁଞ୍ଜ ବିହାରୀ ତ୍ରିପାଠୀ ଷୋଡ଼ଶ ଶତାବ୍ଦୀରେ ଜଗନ୍ନାଥ ଦାସ କୃତ 'ଓଡ଼ିଆ ଭାଗବତ'ରୁ ଓଡ଼ିଆ ବର୍ଣ୍ଣମାଳାର ଦୃଷ୍ଟାନ୍ତ ଦେଇଛନ୍ତି। 'ଭାଗବତ'ରେ ଉଲ୍ଲେଖ ଅଛି -

ଏକାକ୍ଷର ବ୍ରହ୍ମ ପ୍ରଣବ । ଶବଦ ରୂପୀ ବୀଜ ସର୍ବ ॥
ତାହାଙ୍କ ତହୁଁ ଉତ୍ପନ୍ନ । ଚଉଦ ଅକାରାଦି ବର୍ଣ୍ଣ ॥
ଚଉଦ ସ୍ୱର ଏ ବୋଲାନ୍ତି । ଏ ଭାବେ ଅକ୍ଷରର ଗତି ॥
କକାର ଆଦି ଚଉତିଶ । ବ୍ୟଞ୍ଜନ ଶବଦ ବିଶେଷ ॥
ସ୍ୱରମାନେ ଦୀର୍ଘ ସେ ହ୍ରସ୍ୱ। ପ୍ଳୁତ ନାମରେ ପରକାଶ ॥
ସନ୍ଧି ଅକ୍ଷର ଏ ବୋଲାଇ । ଏକାର ଆଦି ଚାରି ସେହି ॥
ପଚିଶବର୍ଣ୍ଣେ ପଞ୍ଚ ପଞ୍ଚ । ପାଞ୍ଚ ବର୍ଣ୍ଣରେ ବର୍ଗ ସଞ୍ଚ ॥
ଏ ଅନ୍ତେ ଅନ୍ତଃସ୍ଥ ଏ ଜାଣ। ଯ, ର, ଳ, ବ ଏ ଚାରି ବର୍ଣ୍ଣ ॥
ଶ, ଷ, ସ, ହ ଏ ଚାରି ବର୍ଣ୍ଣ। ଉଷ୍ମ ବର୍ଣ୍ଣ ବୋଲିଣ ଜାଣ ॥
ବିନ୍ଦୁ ଅନୁସ୍ୱାର ଏ ବୋଲାଇ। ସେ ବିନ୍ଦୁ ଯେବେ ଦୁଇ ହୋଇ ॥
ବିସର୍ଗ ନାମ ଯେ ବୋଲାଇ। ଗଜ ଶୁଣ୍ଢକୃତି ସେ ହୋଇ ॥ (ତ୍ରିପାଠୀ, ୧୯୭୭)

ପଞ୍ଚଦଶ ଶତାବ୍ଦୀରୁ ଆରମ୍ଭ ହୋଇ ଷୋଡ଼ଶ ଶତାବ୍ଦୀ ମଧ୍ୟ ଦେଇ ଏକବିଂଶ ଶତାବ୍ଦୀର ଆଜିର ସୀମାରେ ଉପସ୍ଥିତ ହେଲାବେଳେ ଏହା ହିଁ ଓଡ଼ିଆ ବର୍ଣ୍ଣମାଳାର ପରମ୍ପରା ଓ ପଟ୍ଟଭୂମୀ।

ଉନ୍ନବିଂଶ ଶତାବ୍ଦୀରେ ବ୍ରିଟିଶ ବିଦେଶୀ ପ୍ରଶାସକ ଓ ମିସନାରୀମାନଙ୍କର ଆଗମନ ପରେ ଓଡ଼ିଶାରେ ଶିକ୍ଷାର ପ୍ରସାର ଓ ଓଡ଼ିଆ ଗଦ୍ୟ ଭାଷାର ବିକାଶ କ୍ଷେତ୍ରରେ ଯୁଗାନ୍ତକାରୀ ଅଗ୍ରଗତି ତଥା ଓଡ଼ିଆରେ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ଉଦ୍ଦେଶ୍ୟରେ ଛାପାଖାନାର ପ୍ରତିଷ୍ଠା, ଓଡ଼ିଆ ଟାଇପ୍‌ରାଇଟରର ପ୍ରଚଳନ ପ୍ରଭୃତି ଓଡ଼ିଆ ବର୍ଣ୍ଣମାଳା, ଲିପି ଓ ଅକ୍ଷର ଗଠନକୁ ପ୍ରଭାବିତ କରବାର ସୁଯୋଗ ସୃଷ୍ଟି କରିଥିଲା। ଏହି ଅବସରରେ ଓଡ଼ିଆ ଭାଷା ଶିକ୍ଷା ଉଦ୍ଦେଶ୍ୟରେ ବିଦେଶୀ ପ୍ରଶାସକ ଓ ମିସନାରୀମାନଙ୍କର ଉଦ୍ୟମରେ ଓଡ଼ିଆ ବ୍ୟାକରଣ ରଚନା ଥିଲା ଏକ ବିହିତ ପଦକ୍ଷେପ। ଓଡ଼ିଆ ବ୍ୟାକରଣ ରଚନାରେ ଏକ ପକ୍ଷରେ ବିଦେଶୀମାନଙ୍କର ଓଡ଼ିଆ ଭାଷାରେ ଅଜ୍ଞତା ଏବଂ ଅନ୍ୟପକ୍ଷରେ ସଂସ୍କୃତ ଭାଷାଭିଜ୍ଞ ଓଡ଼ିଆ ପଣ୍ଡିତମାନଙ୍କର ବ୍ୟାକରଣକୁ ଯଥାସାଧ୍ୟ ସଂସ୍କୃତାଭିମୁଖି କରିବାର ପ୍ରୟାସ ବାସ୍ତବରେ ଓଡ଼ିଆ ବ୍ୟାକରଣ ରଚନା କ୍ଷେତ୍ରରେ ବାଧକ ହୋଇଥିଲା। ଓଡ଼ିଆ ଭାଷା ଉପରେ ସଂସ୍କୃତ ପଣ୍ଡିତମାନଙ୍କର ପ୍ରାଦୁର୍ଭାବକୁ ସମାଲୋଚନା କରି ବିଜୟ ପ୍ରସାଦ କହନ୍ତି, "ସଂସ୍କୃତରେ ପାଣ୍ଡିତ୍ୟ ଥିବା ଓଡ଼ିଆ କେବଳ ରାଧାନାଥ ରାୟଙ୍କ ପରଠୁ ଓଡ଼ିଶାରେ ଜନ୍ମଗ୍ରହଣ କରିନାହାନ୍ତି, ତା'ର ବହୁ ପୂର୍ବରୁ ଓଡ଼ିଶାରେ ସଂସ୍କୃତ ଶିକ୍ଷାର ପରମ୍ପରା ଥିଲା,

ମାତ୍ର ଓଡ଼ିଆ ଭାଷା ଉପରେ ସଂସ୍କୃତ ପଣ୍ଡିତମାନଙ୍କର ଦୌରାତ୍ମ୍ୟ ଏଇ ପଚାଶ ବର୍ଷ ତଳର ଘଟଣା। ଏହି ପଣ୍ଡିତ ମାନଙ୍କ ଆବିର୍ଭାବ ପୂର୍ବରୁ ଅନ୍ତତଃ ଶିକ୍ଷିତ ଓଡ଼ିଆମାନେ ଓଡ଼ିଆ ଓ ସଂସ୍କୃତକୁ ଦୁଇଟି ପୃଥକ୍ ଭାଷା ରୂପେ ଦେଖୁଥିଲେ, କିନ୍ତୁ ଏବେ ଓଡ଼ିଆ ସଂସ୍କୃତର ଏକ ଅଧସ୍ତନ ଭାଷା। ଏହି ଅନ୍ଧବିଶ୍ୱାସ ଯୋଗୁ ଆମର ପାଞ୍ଚଶହ ବା ତଦୂର୍ଦ୍ଧ୍ୱ ସମୟର ପରମ୍ପରା ଭାଙ୍ଗି ସେ ସମୟର ବଡ଼ପଣ୍ଡାମାନେ ଓଡ଼ିଆ ଶବ୍ଦକୁ ସଂସ୍କୃତ ବନାନ୍‌ରେ ଲେଖିବାକୁ ଆରମ୍ଭ କଲେ ଓ ଅଯଥାର୍ଥ ବନାନ୍ ମନେ ରଖିବାକୁ ଏବେ ପ୍ରତ୍ୟେକ ଓଡ଼ିଆ ଛାତ୍ରକୁ ଯେଉଁ ପରିଶ୍ରମ କରିବାକୁ ପଡୁଛି, ତାହା ହେଉଛି ଏହି ପ୍ରପଞ୍ଚତାର କରୁଣ ପରିଣତି" (ମହାପାତ୍ର, ୧୯୮୩)।

**ଭାଷା ଓ ଲିପି** ସଂକଳନରେ ଅନ୍ତର୍ଭୁକ୍ତ ଓଡ଼ିଆ ଲିପି ବା ବର୍ଣ୍ଣମାଳା ପରମ୍ପରାରେ ଏକାଦଶ ଶତାବ୍ଦୀରୁ ପ୍ରାପ୍ତ ଅଭିଲେଖଗୁଡ଼ିକୁ ଅନୁସରଣ କରି ଲିପିର ଉତ୍ପତ୍ତି ଓ କ୍ରମବିକାଶ ସମ୍ବନ୍ଧରେ ବିଭିନ୍ନ ପ୍ରବନ୍ଧମାନ ଉପସ୍ଥାପନ କରିଛନ୍ତି ଆଗ୍ରହୀ ଲିପିବିତ୍‌ମାନେ। ସେମାନଙ୍କ ମଧ୍ୟରେ ଅଛନ୍ତି, ତାରିଣୀ ଚରଣ ରଥ, **ଓଡ଼ିଆ ଲିପି,** (ଉତ୍କଳ-ସାହିତ୍ୟ, ୨୫ଶ ଭାଗ, ୯ମ ସଂଖ୍ୟା); ମାୟାଧର ନନ୍ଦ, **ବର୍ଣ୍ଣୋତ୍ପତ୍ତି,** (ଉତ୍କଳ-ସାହିତ୍ୟ); ଗୋଲୋକ ବିହାରୀ ଧଳ, **ଲିପି** (ଭାଷାଶାସ୍ତ୍ର ପରିଚୟ, ୧୯୭୬); କୁଞ୍ଜ ବିହାରୀ ତ୍ରିପାଠୀ, **ଓଡ଼ିଆ ଲିପିତତ୍ତ୍ୱ,** (ଓଡ଼ିଆ ଭାଷାତତ୍ତ୍ୱ ଓ ଲିପିର ବିକାଶ, ୧୯୭୭); ସତ୍ୟନାରାୟଣ ରାଜଗୁରୁ, **ଲିପିର ପ୍ରାଚୀନତମ ଅବସ୍ଥା,** (ଓଡ଼ିଆ ଲିପିର କ୍ରମବିକାଶ, ୧୯୮୦); ଗରିଜା ଶଙ୍କର ରାୟ, **ବର୍ଣ୍ଣ ଓ ଅକ୍ଷର,** (ସରଳ ଭାଷାତତ୍ତ୍ୱ, ୧୯୮୩); ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, **ଓଡ଼ିଆ ଲିପି,** (ଓଡ଼ିଆ ସାହିତ୍ୟର ଇତିହାସ, ୧୯୮୩); ବିଜୟ ପ୍ରସାଦ ମହାପାତ୍ର, **ଓଡ଼ିଆ ଲିପିର ଇତିବୃତ୍ତ,** (ଓଡ଼ିଆ ଭାଷା ବିଭବ, ୧୯୯୫), ଯନ୍ତ୍ରଣା ପରୀକ୍ଷିତ, **ଓଡ଼ିଆ ଲିପିର ଉତ୍ପତ୍ତି ଓ ବିକାଶ ଧାରା,** (ସ୍ରଷ୍ଟା-ସୃଷ୍ଟି ଓ ସମୀକ୍ଷା, ୧୯୯୬); ପରମାନନ୍ଦ ଆଚାର୍ଯ୍ୟ, **ଭୁବନେଶ୍ୱରର ଓଡ଼ିଆ ତାମିଲ ଶିଳାଲିପି,** (ଭୁବନେଶ୍ୱର ଶିଳାଲିପି, ୧୯୮୮) ପ୍ରଭୃତି ଲେଖକମାନେ।

'ଓଡ଼ିଆ ଲିପି' ପ୍ରବନ୍ଧରେ ତାରିଣୀ ଚରଣ ଓଡ଼ିଆ ଲିପିମାଳାକୁ ଖ୍ରୀଷ୍ଟପର ୧୦ମ ଶତାବ୍ଦୀରେ ସୃଷ୍ଟି ହୋଇଥିବା ଦର୍ଶାଇଛନ୍ତି ଏବଂ ଅଶୋକଙ୍କ ଧଉଳି ଓ ଜଉଗଡ଼ ଶିଳାଲିପି ଓ ଖାରବେଳଙ୍କ ଖଣ୍ଡଗିରି ଓ ଉଦୟଗିରି ଶିଳାଲିପିରେ ଖୋଦିତ ବ୍ରାହ୍ମୀ ଲିପି ସହିତ ଓଡ଼ିଆ ଲିପିର କୌଣସି ପ୍ରକାର ସାମଞ୍ଜସ୍ୟ ନାହିଁ ବୋଲି ଉଲ୍ଲେଖ କରିଛନ୍ତି। ପ୍ରାଚୀନ ବୈଦିକ ସଂସ୍କୃତ ଭାଷାର ଅବନତି ଘଟି ସଂସ୍କୃତର ଦେବନାଗର ଲିପିରୁ ଓଡ଼ିଆ ଲିପି ସୃଷ୍ଟି ହୋଇଛି

ବୋଲି ସେ ମତ ଦେଇଛନ୍ତି। ତାଙ୍କ ମତରେ "ଦେବନାଗର ଲିପି ହିଁ ଓଡ଼ିଆ ଲିପିର ଜନନୀ"। ଏହା ପ୍ରମାଣ କରିବାକୁ ସେ 'କୋଣାର୍କ ମନ୍ଦିର ଲିପି' (୧୨୬୦ ଖ୍ରୀଷ୍ଟାବ୍ଦ) ଓ 'ପୁରୁଷୋତ୍ତମ ଦେବ ଗଜପତିଙ୍କ ଲିପି ପଞ୍ଚଦଶ ଶତାବ୍ଦୀ'ର ସାହାଯ୍ୟ ନେଇଛନ୍ତି। 'ବର୍ଣ୍ଣୋତ୍ପତ୍ତି' ପ୍ରବନ୍ଧରେ ମାୟାଧର ନନ୍ଦ ମୁଖ ନିସୃତ ବର୍ଣ୍ଣ ବା ଧ୍ୱନିମାନଙ୍କର ଉତ୍ପତ୍ତି ସ୍ଥାନର ବର୍ଣ୍ଣନା ଦେଇଛନ୍ତି। 'ଲିପି' ପ୍ରବନ୍ଧରେ ଧଳ ପୃଥିବୀର ଲିଖନପଦ୍ଧତିର ସୂଚନା ଦେବା ସହିତ ବ୍ରାହ୍ମୀଲିପିକୁ 'ଭାରତର ଜାତୀୟ ଲିପି' ବୋଲି ସୂଚିତ କରି ପ୍ରତ୍ନ-ଉତ୍ତରପୂର୍ବ-ଭାରତୀୟ ଲିପିରୁ ଓଡ଼ିଆ ଲିପିର ବିକାଶ ହୋଇଥିବା ଦର୍ଶାଇଛନ୍ତି। 'ଓଡ଼ିଆ ଲିପିତତ୍ତ୍ୱ' ପ୍ରବନ୍ଧରେ କୁଞ୍ଜବିହାରୀ ଓଡ଼ିଶା ଏବଂ ଭାରତର ବିଭିନ୍ନ ଅଞ୍ଚଳରୁ ପ୍ରାପ୍ତ ଶିଳାଲେଖ ଓ ତାମ୍ରଲେଖରେ ଖୋଦିତ ଲେଖାବଳୀର ଲିପିଗୁଡ଼ିକୁ ୬ଟି ସ୍ତରରେ ଅନ୍ତର୍ଭୁକ୍ତ କରି ସେଗୁଡ଼ିକର ଐତିହାସିକ କାଳାନୁକ୍ରମରେ ଆଲୋଚନା କରିଛନ୍ତି। ରାଜଗୁରୁଙ୍କ ପ୍ରବନ୍ଧ 'ଲିପିର ପ୍ରାଚୀନତମ ଅବସ୍ଥା'ରେ, ତାଙ୍କ ନିଜ ମତରେ, "ଓଡ଼ିଶାରେ ମିଳୁଥିବା ଅଭିଲେଖରେ ବ୍ୟବହୃତ ଲିପିଗୁଡ଼ିକରୁ କିପରି ଆଧୁନିକ ଓଡ଼ିଆ ବର୍ଣ୍ଣମାଳା ସୃଷ୍ଟି ହେଲା ସେଥିର ଏକ ସ୍ଥୁଳ ବିବରଣୀ" ପ୍ରଦତ୍ତ ହୋଇଛି। ଏହି ପ୍ରବନ୍ଧରେ ରାଜଗୁରୁ ଓଡ଼ିଆ ଲିପିର ଐତିହାସିକ ଅନୁଶୀଳନ ମାଧ୍ୟମରେ ଲିପିଗୁଡ଼ିକର ଗଠନକାଳୀନ କ୍ରମବିକାଶକୁ ପ୍ରାମାଣିକ ଭାବରେ ଉପସ୍ଥାପିତ କରିବାକୁ ପ୍ରୟାସ କରିଛନ୍ତି ଏବଂ ସେହି ପ୍ରୟାସରେ ସେ ସଫଳ ହୋଇଥିବା କୁହାଯାଇପାରେ। ଲିପି ସମ୍ବନ୍ଧରେ ରାଜଗୁରୁଙ୍କର ଏପରି ବିସ୍ତୃତ ଆଲୋଚନା ବୋଧହୁଏ ଓଡ଼ିଆରେ ପ୍ରଥମ। ଗିରିଜା ଶଙ୍କରଙ୍କ ପ୍ରବନ୍ଧାଂଶ 'ବର୍ଣ୍ଣ ଓ ଅକ୍ଷର' ମାଧ୍ୟମରେ ବର୍ଣ୍ଣ ଓ ଅକ୍ଷର ମଧ୍ୟରେ ରହିଥିବା ସାମଞ୍ଜସ୍ୟକୁ ଭାଷାତାତ୍ତ୍ୱିକ ଦିଗରୁ ପ୍ରମାଣିତ କରିବାକୁ ଲେଖକ ପ୍ରୟାସ କରିଛନ୍ତି। ତାଙ୍କ ମତରେ "ଉଚ୍ଚାରଣ ଅକ୍ଷରର ପ୍ରାଣ"। ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟଙ୍କ ପ୍ରବନ୍ଧ 'ଓଡ଼ିଆ ଲିପି'ରେ ଓଡ଼ିଆ ସାହିତ୍ୟର ଇତିହାସ ଆଲୋଚନା କ୍ଷେତ୍ରରେ ଲିପି ଗଠନ କିପରି ଅଙ୍ଗାଙ୍ଗୀ ଭାବରେ ସଂପୃକ୍ତ ତାହାର ସୂଚନା ରହିଛି। ବିଜୟ ପ୍ରସାଦଙ୍କ 'ଓଡ଼ିଆ ଲିପିର ଇତିବୃତ୍ତ' ପ୍ରବନ୍ଧ ଲିପି ବିକାଶ ସମ୍ବନ୍ଧରେ ଲିପି-ଅନୁଶୀଳନମୂଳକ ଏକ ଅତ୍ୟନ୍ତ ଉପାଦେୟ ପ୍ରବନ୍ଧ। ଏହି ପ୍ରବନ୍ଧରେ କୁଞ୍ଜବିହାରୀଙ୍କ ପ୍ରବନ୍ଧ 'ଓଡ଼ିଆ ଲିପିତତ୍ତ୍ୱ' ସମ୍ବନ୍ଧରେ ସମାଲୋଚନା ମୂଳକ ଆଲୋଚନା ସହିତ ଲିପି ଗଠନ ଓ ପ୍ରୟୋଗ ବିଷୟରେ ବିଜୟ ପ୍ରସାଦଙ୍କର ମୌଳିକ ତଥ୍ୟଭିତ୍ତିକ ଲିପିତତ୍ତ୍ୱ ଆଲୋଚନା ବର୍ଣ୍ଣିତ। ଯନ୍ତ୍ରଣା ପରୀକ୍ଷିତଙ୍କର 'ଓଡ଼ିଆ ଲିପିର ଉତ୍ପତ୍ତି ଓ ବିକାଶ ଧାରା'ରେ ଓଡ଼ିଆ ଲିପିର ଉତ୍ପତ୍ତି ଓ ବିକାଶ ସମ୍ପର୍କରେ ସବିଶେଷ ସୂଚନା ରହିଛି। ପ୍ରବନ୍ଧ ରଚନାର ଶୈଳୀ ସାବଲୀଳ ଓ ସୂଚନାଭିତ୍ତିକ।

ଏକାଦଶ ଶତାବ୍ଦୀରୁ ପଞ୍ଚଦଶ ଶତାବ୍ଦୀ ମଧ୍ୟରେ ପ୍ରାପ୍ତ ଲିପିତଥ୍ୟଗୁଡ଼ିକୁ ଆଧାର କରି ଲିପିର ଉତ୍ପତ୍ତି ଓ ଓଡ଼ିଆ ଲିପିର ସ୍ୱରୂପ ଗଠନକାଳୀନ କ୍ରମବିକାଶର ବିସ୍ତୃତ ବିବରଣୀ ନିମ୍ନରେ ଉଲ୍ଲେଖିତ ପ୍ରବନ୍ଧଗୁଡ଼ିକରେ ବର୍ଣ୍ଣିତ। ଏହି ପ୍ରବନ୍ଧଗୁଡ଼ିକ ବିଂଶ ଶତାବ୍ଦୀର ସତୁରୀ ଦଶକଠାରୁ ଆରମ୍ଭ କରି ନବମ ଦଶକ ପର୍ଯ୍ୟନ୍ତ ଦୀର୍ଘ ୨୦ ବର୍ଷର ସମୟସୀମା ମଧ୍ୟରେ ଲିଖିତ ଏବଂ ଏଥିରେ ମୁଖ୍ୟତଃ ଲିପି ସମ୍ବନ୍ଧୀୟ ଐତିହାସିକ ତଥ୍ୟସମୂହ ସଂଗୃହୀତ। ପଞ୍ଚଦଶ ଶତାବ୍ଦୀର ତାଳପତ୍ର ପୋଥିରେ ବ୍ୟବହୃତ ଲିପି ବା ବର୍ଣ୍ଣମାଳା ପରବର୍ତ୍ତୀ ସମୟରେ ରଚିତ ଉଭୟ ପଦ୍ୟ ଓ ଗଦ୍ୟ ସାହିତ୍ୟର ରଚନାରେ ପ୍ରଚଳିତ ହୋଇଆସୁଛି ଆଜି ପର୍ଯ୍ୟନ୍ତ ବିଭିନ୍ନ ସମୟରେ ବିଭିନ୍ନ ସ୍ତରରେ ଆବଶ୍ୟକୀୟ ପରିବର୍ତ୍ତନ ସହିତ। ତେବେ କୁହାଯାଇପାରେ ଯେ ଆଜିର ଆଧୁନିକ କାଳରେ ଓଡ଼ିଆ ବର୍ଣ୍ଣମାଳା ସମସ୍ୟାର ଏହାହିଁ ହେଉଛି ଐତିହାସିକ ପଟ୍ଟଭୂମି।

ଓଡ଼ିଆରେ ପ୍ରଚଳିତ ବର୍ଣ୍ଣ ବା ଧ୍ୱନି ଏବଂ ଲିଖନ ପଦ୍ଧତିରେ ରହିଥିବା ଅସଙ୍ଗତି ଓ ବର୍ଣ୍ଣମାଳାର ଗଠନ ପଦ୍ଧତି ସମ୍ବନ୍ଧୀୟ ସମସ୍ୟାକୁ ବିଚାରକୁ ନେଇ ଉନ୍ନବିଂଶ ଓ ପରବର୍ତ୍ତୀ ବିଂଶ ଏବଂ ଏକବିଂଶ ଶତାବ୍ଦୀର ଭାଷାଭିଜ୍ଞ ଲେଖକମାନେ ଲିଖନ ପଦ୍ଧତିକୁ ସୁଶୃଙ୍ଖଳ ଓ ପରିଚ୍ଛନ୍ନ କରିବା ଉଦ୍ଦେଶ୍ୟରେ ପ୍ରବନ୍ଧମାନ ରଚନା କରି ବିଭିନ୍ନ ପ୍ରସ୍ତାବ ଉପସ୍ଥାପନ କରିଛନ୍ତି। ସେମାନଙ୍କ ଭିତରେ କେତେଜଣ ଭାଷାବିତ୍ ହେଉଛନ୍ତି, ରାମଶଙ୍କର ରାୟ, **ଲିପି ସଂସ୍କାର** (ଉତ୍କଳ ସାହିତ୍ୟ, ୧୮ଶ ଭାଗ, ୧ମ ସଂଖ୍ୟା); ପୀତାମ୍ବର ପ୍ରଧାନ, **ଓଡ଼ିଆ ଲିପି ସଂସ୍କାର ଏକ ଦୃଷ୍ଟିଭଙ୍ଗୀ,** (ଉତ୍କଳ ସାହିତ୍ୟ); ଭଗବାନ ପତି, **ଓଡ଼ିଆ ବର୍ଣ୍ଣମାଳା ଓ ଲିପି ସଂସ୍କାର,** (ସହକାର, ୧୩ଶ ଭାଗ, ୯ମ ସଂଖ୍ୟା); ଶେଖ୍ ମନସୁର, **ଓଡ଼ିଆ ବର୍ଣ୍ଣମାଳା ସଂସ୍କାର,** (ସହକାର, ୧୭ଶ ଭାଗ, ୧ମ ସଂଖ୍ୟା); ହରିଶ୍ଚନ୍ଦ୍ର ବଡ଼ାଳ, **ଓଡ଼ିଆ ବର୍ଣ୍ଣମାଳା ଓ ମୁଦ୍ରଣ ସମସ୍ୟା,** (ସହକାର, ୧୩ଶ ଭାଗ, ୪ର୍ଥ ସଂଖ୍ୟା); ଉଦୟନାଥ ଷଡ଼ଙ୍ଗୀ, **ଓଡ଼ିଆ ଅକ୍ଷର ଓ କେସ୍‌ର ବର୍ତ୍ତମାନ ଅବସ୍ଥା,** (ସହକାର, ୧୭ଶ ଭାଗ, ୮ମ ସଂଖ୍ୟା); ନୀଳକଣ୍ଠ ଦାସ, **ଓଡ଼ିଆ ବର୍ଣ୍ଣ ବିଚାରର ସଂକ୍ଷିପ୍ତ ସୂଚନା,** (ସତ୍ୟବାଦୀ, ୧୩୨୪ ସାଲ, ମିଥୁନ ଓ କକଡ଼ା ସଂଖ୍ୟା, ୧୯୧୭ ମସିହା) ଏବଂ **ଓଡ଼ିଆ ବର୍ଣ୍ଣ ଓ ଲିପି,** (ନବଭାରତ, ଷଷ୍ଠ ବର୍ଷ, ୧ମ ସଂଖ୍ୟା ୧୩୪୬ ମିଥୁନ, ଜୁଲାଇ,୧୯୩୯); ସତ୍ୟନାରାୟଣ ରାଜଗୁରୁ, **ଉତ୍କଳୀୟ ଲିପି ସଂସ୍କାର;** ଗୋଲୋକ ବିହାରୀ ଧଳ, **ଅଭିଲେଖର ଭାଷାତାତ୍ତ୍ୱିକ ମୂଲ୍ୟ,** (ଭାଷାଶାସ୍ତ୍ର ପରିଚୟ, ୧୯୭୬); କୁଞ୍ଜ ବିହାରୀ ତ୍ରିପାଠୀ, **ଓଡ଼ିଆ ବର୍ଣ୍ଣମାଳା ଓ ତାହାର ଉଚ୍ଚାରଣ ବିଧି,** (ଓଡ଼ିଆ ଭାଷାତତ୍ତ୍ୱ

ଓ ଲିପିର ବିକାଶ, ୧୯୭୭); ଦେବୀ ପ୍ରସନ୍ନ ପଟ୍ଟନାୟକ, **ଓଡ଼ିଆ ଲିପି,** (ଓଡ଼ିଆ ଭାଷା ଓ ଭାଷା ବିଜ୍ଞାନ, ୧୯୮୫) ଏବଂ **ଭାରତୀୟ ଲିପିମାଳା:ପଠନ ପାଇଁ ଏକ ପରିଚାଳନାଗତ କୌଶଳ,** (ପ୍ରାୟୋଗିକ ଭାଷା ବିଜ୍ଞାନର ଦିଗ ବିଦିଗ, ୧୯୮୦); ବିଜୟ ପ୍ରସାଦ ମହାପାତ୍ର, **ଓଡ଼ିଆ ଅକ୍ଷର,** (ଓଡ଼ିଆ ଭାଷା ବିଭବ,୧୯୯୫), ଏବଂ **ଓଡ଼ିଆ ବନାନ ପରମ୍ପରା,** (ଓଡ଼ିଆ ଭାଷାତାତ୍ତ୍ୱିକ ପ୍ରବନ୍ଧ,୧୯୮୩); ଖଗେଶ୍ୱର ମହାପାତ୍ର, **ଓଡ଼ିଆ ଲିପି ଓ ବନାନ ରୀତି;** ନୀଳାଦ୍ରି ଭୂଷଣ ହରିଚନ୍ଦନ, **ଓଡ଼ିଆ ଲିପି ସଂସ୍କାରର ଔଚିତ୍ୟ,** (ସମାଜ, ୧୮ସେପ୍ଟେମ୍ବର, ୨୦୧୬); ହିମାଂଶୁ କୁମାର ହୋତା, **ଓଡ଼ିଆ ବର୍ଣ୍ଣମାଳାର ଶେଷବର୍ଣ୍ଣ,** (ସମାଜ, ୪ଡିସେମ୍ବର, ୨୦୧୩); ଏବଂ ସଦାନନ୍ଦ ନାୟକ, **ଓଡ଼ିଆ ବର୍ଣ୍ଣମାଳାର ଶେଷବର୍ଣ୍ଣ : ଏକ ଉତ୍ତର** (ସମାଜ, ୫ଜାନୁୟାରୀ ୨୦୧୬), ଓ **ଓଡ଼ିଆ ବର୍ଣ୍ଣ ସଂଖ୍ୟା : ଏକ ନିର୍ଦ୍ଧାରଣ** (ଝଙ୍କାର, ୬୨ତମ ବର୍ଷ, ୭ମ ସଂଖ୍ୟା, ୨୦୧୦) ପ୍ରଭୃତି ।

'ଓଡ଼ିଆ ବର୍ଣ୍ଣମାଳା ସଂସ୍କାର' ପ୍ରବନ୍ଧରେ "ଓଡ଼ିଆ ଭାଷାରେ ଏତେଗୁଡ଼ିଏ ସ୍ୱରବର୍ଣ୍ଣ, ଏତେଗୁଡ଼ିଏ ବ୍ୟଞ୍ଜନ ବର୍ଣ୍ଣ, ଏତେଗୁଡ଼ିଏ ସ୍ୱର ଓ ବ୍ୟଞ୍ଜନ ମାତ୍ରା, ଏତେ ଗୁଡ଼ିଏ ଯୁକ୍ତାକ୍ଷର ରହିବା ଦ୍ୱାରା ଭାଷା ସବଳ ହେବା ପରିବର୍ତ୍ତେ ଦୁର୍ବଳ ହୋଇଅଛି," ବୋଲି ଉଲ୍ଲେଖ କରିଛନ୍ତି ଶେଖ୍ ମନସୁର୍। ପୁଣି "ସଂପ୍ରତି ପ୍ରଚଳିତ ଓଡ଼ିଆ ଲିପି ଓ ବନାନ ରୀତିରେ କେତେକ ସମସ୍ୟା ପରିଲକ୍ଷିତ ହୁଏ। ଚଳିତ ଶତକର ପ୍ରାରମ୍ଭରୁ ଆମ ଦେଶର କେତେକ ଚିନ୍ତାଶୀଳ ବ୍ୟକ୍ତି ଏହି ସମସ୍ୟାଗୁଡ଼ିକର ଉପସ୍ଥାପନ କରି ତାହାର ସମାଧାନ ଦିଗରେ ନାନା ପ୍ରସ୍ତାବ ପ୍ରଦାନ କରି ଆସୁଛନ୍ତି। କେହି ଲେଖାକୁ ଉଚ୍ଚାରଣାନୁସାରେ କରିବା ଉଦ୍ଦେଶ୍ୟରେ, କେହି ବା ଲିଖନ ରୀତିକୁ ସରଳତର କରିବା କୌତୁହଳରେ ଆମ ଲିପିରେ ସଂସ୍କାର କରିବାକୁ ପ୍ରୟାସ କରିଛନ୍ତି। ଏଥିପାଇଁ ୧୯୩୯ ବେଳକୁ ଏକ ସରକାରୀ କମିଟି ଗଠିତ ହୋଇଥିବାର ଜଣାଯାଏ। କିନ୍ତୁ ଏହି ସମସ୍ତ ସଂସ୍କାର ପ୍ରସ୍ତାବ କେବଳ ବ୍ୟକ୍ତିଗତ ବା ଗୋଷ୍ଠୀଗତ ଭାବରେ ଅନୁସୃତ ହେଉଛି ସିନା, ସାର୍ବଜନୀନ ଭାବରେ ପରିଗୃହୀତ ହୋଇପାରୁ ନାହିଁ" ବୋଲି କହନ୍ତି ଖଗେଶ୍ୱର ମହାପାତ୍ର ତାଙ୍କ ପ୍ରବନ୍ଧ 'ଓଡ଼ିଆ ଲିପି ଓ ବନାନ ରୀତି'ରେ।

ଏହି ଦୁଇଜଣ ଚିନ୍ତାଶୀଳ ଲେଖକଙ୍କର ଉପରୋକ୍ତ ମନ୍ତବ୍ୟକୁ ଉଲ୍ଲେଖ କରିବାର ବିଶେଷ ତାତ୍ପର୍ଯ୍ୟ ହେଉଛି ବିଗତ ପ୍ରାୟ ଶହେ ବର୍ଷ ମଧ୍ୟରେ ବହୁ ବିଭିନ୍ନ ଭାଷା ବିଶେଷଜ୍ଞ ଓଡ଼ିଆ ଲିପି ବା ବର୍ଣ୍ଣମାଳା ସମସ୍ୟା ଓ ତଦ୍‌ଜନିତ ସଂସ୍କାର ଉଦ୍ଦେଶ୍ୟରେ ସମଧର୍ମୀ

ମୂଲ୍ୟବାନ ପ୍ରସ୍ତାବମାନ ଉପସ୍ଥାପନ କରିଆସିଛନ୍ତି, ଯେଉଁମାନଙ୍କର ସୁଚିନ୍ତିତ ରଚନା ଏହି ସଂକଳନର କଳେବର ହେବା ସଙ୍ଗେ ପଥ ପ୍ରଦର୍ଶକ ମଧ ହୋଇପାରିଛି। କିନ୍ତୁ ବାସ୍ତବରେ ସେହି ସଂସ୍କାର ପ୍ରସ୍ତାବଗୁଡ଼ିକ ଆଜି ପର୍ଯ୍ୟନ୍ତ କେବଳ ବ୍ୟକ୍ତିଗତ ବା ଗୋଷ୍ଠୀଗତ ସ୍ତରରେ ସୀମିତ ହୋଇରହିଛି। ସାର୍ବଜନୀନ ଭାବରେ ଏଗୁଡ଼ିକ ଗୃହୀତ ବା ସ୍ୱୀକୃତ ହୋଇପାରିନାହିଁ। ଆଜିର କମ୍ପ୍ୟୁଟରୀକରଣ ଓ ଡିଜିଟାଇଜେସନ୍ ଯୁଗରେ ଏହି ସଂସ୍କାର ପ୍ରସ୍ତାବମାନ କ୍ରମଶଃ ଯେପରି ତାହାର ଗୁରୁତ୍ୱ ହରାଇବାକୁ ବସିଲାଣି ବୋଲି ମନେହେଉଛି।

ଏହି ପର୍ଯ୍ୟାୟରେ ଉଲ୍ଲେଖିତ ଅନ୍ୟାନ୍ୟ ପ୍ରବନ୍ଧଗୁଡ଼ିକରେ ଓଡ଼ିଆ ଲିଖନ ସମସ୍ୟାକୁ ଶୃଙ୍ଖଳିତ, ବିଜ୍ଞାନସମ୍ମତ ଏକ ସହଜ ସରଳ ରୂପ ଦେବା ଉଦ୍ଦେଶ୍ୟରେ ଭାଷାବିତ୍‌ମାନେ ବିଭିନ୍ନ ସୂଚନାମୂଳକ ପରାମର୍ଶ ଦେଇଛନ୍ତି। ଏହି ପର୍ଯ୍ୟାୟରେ ପ୍ରଧାନତଃ ଦୁଇଟି ସମସ୍ୟା ଉପରେ ଆଲୋଚନାର ଗୁରୁତ୍ୱ ରହିଛି, ଗୋଟିଏ ହେଲା, ମୂଳ ପ୍ରସଙ୍ଗ, ଲିପି ସଂସ୍କାର ଓ ଅନ୍ୟଟି ହେଉଛି ଟାଇପ୍ ରାଇଟର ନିମନ୍ତେ ବର୍ଣ୍ଣମାଳାର ମୁଦ୍ରଣ ସମସ୍ୟା। କିନ୍ତୁ ଆଜିର ଆଧୁନିକ ଯୁଗରେ ଟାଇପ୍‌ରାଇଟର ବ୍ୟବହାରରେ ପ୍ରାୟତଃ ପରିସମାପ୍ତି ଘଟିଛି ଏବଂ ଏହାର ସ୍ଥାନ ନେଇଛି କମ୍ପ୍ୟୁଟରୀକରଣ ପାଇଁ ବିଭିନ୍ନ ପରୀକ୍ଷାମୂଳକ ପ୍ରୟାସ ଯାହାକି ସର୍ବଭାରତୀୟ ସ୍ତରରେ ଆଜି ମଧ ଜାରୀ ରହିଛି। ତେବେ କାଳସ୍ରୋତରେ ଗତିକରି ଓଡ଼ିଆ ବର୍ଣ୍ଣମାଳା ସଂସ୍କାର ପାଇଁ ଉନ୍ନବିଂଶ ଶତାବ୍ଦୀର ପ୍ରଥମ ଦଶକ ପରଠାରୁ ବିଂଶ ଶତାବ୍ଦୀର ନବେ ଦଶକ ମଧ୍ୟରେ କରାଯାଇଥିବା ବିଭିନ୍ନ ପ୍ରୟାସ ଉପରେ ଆଲୋକପାତ କରାଯାଇଛି। ରାମଶଙ୍କର ଲିପି ସଂସ୍କାର ବିଷୟରେ କହନ୍ତି, "ଓଡ଼ିଆ ଭାଷାଟା ସଂସ୍କୃତକୁ ନ ମାନିଲେ ତାହା କାଳର ଦୋଷ ବିନା ଆଉ କ'ଣ ହୋଇପାରେ" ? ସଂସ୍କୃତ ବର୍ଣ୍ଣମାଳା ପ୍ରଭାବରୁ ଓଡ଼ିଆ ବର୍ଣ୍ଣମାଳାକୁ ମୁକ୍ତ କରିବା ସପକ୍ଷରେ ସେ ମତ ରଖନ୍ତି। ଶେଖ୍ ମନସୁରଙ୍କ ମତରେ "ଓଡ଼ିଆ ଭାଷାରେ ଏତେଗୁଡ଼ିଏ ସ୍ୱରବର୍ଣ୍ଣ, ଏତେଗୁଡ଼ିଏ ବ୍ୟଞ୍ଜନ ବର୍ଣ୍ଣ, ଏତେଗୁଡ଼ିଏ ସ୍ୱର ଓ ବ୍ୟଞ୍ଜନ ମାତ୍ରା, ଏତେଗୁଡ଼ିଏ ଯୁକ୍ତାକ୍ଷର ରହିବା ଦ୍ୱାରା ଭାଷା ସବଳ ହେବା ପରିବର୍ତ୍ତରେ ଦୁର୍ବଳ ହୋଇଅଛି", ଏବଂ ଏହାଦ୍ୱାରା "ଅଳ୍ପ ବୟସ୍କ ପିଲାମାନଙ୍କୁ ଏବଂ ନୂତନ ଶିକ୍ଷାକାରୀ ଅନ୍ୟଭାଷୀ ଲୋକମାନଙ୍କୁ ଓଡ଼ିଆ ଭାଷା ଶିକ୍ଷା କରିବାରେ ବିଶେଷ ଅସୁବିଧା ଭୋଗ କରିବାକୁ ପଡୁଛି"। ଲିଖନ ବ୍ୟବସ୍ଥାର ପ୍ରତିବିଧାନ ଉଦ୍ଦେଶ୍ୟରେ ଅନେକଗୁଡ଼ିଏ ଯୁକ୍ତିସିଦ୍ଧ ପ୍ରସ୍ତାନର ଉପସ୍ଥାପନ ସେ କରିଛନ୍ତି। ଭଗବାନ ପତି ଓଡ଼ିଆ ବର୍ଣ୍ଣମାଳା ଓ ଲିପି ପଦ୍ଧତିର ସଂସ୍କାର ସମ୍ବନ୍ଧରେ କହନ୍ତି, "ଓଡ଼ିଆ ବର୍ଣ୍ଣମାଳା ଏବଂ ଲିପି ପଦ୍ଧତି ଏ ଯୁଗରେ ଯେ ଆକାର ଧାରଣ କରିଅଛି ଏବଂ ଯେପରି ଭାବରେ ଆମ୍ଭମାନଙ୍କର

ଶିକ୍ଷା ସଭ୍ୟତାକୁ ନିୟନ୍ତ୍ରିତ କରୁଅଛି, ତାହା ଥରେ ଚିନ୍ତା କଲେ ତାହାରି ବିରୁଦ୍ଧରେ ହିଁ ଯୁଗୋଚିତ ସଂସ୍କାର ପ୍ରିୟ ଯୁବକର ଅଭିଯାନ କରିବାକୁ ପ୍ରଥମେ ମନ ବଳେ"। ପୁଣି "ସଂସ୍କୃତ ବର୍ଣ୍ଣମାଳା ସଙ୍ଗେ ଓଡ଼ିଆ ବର୍ଣ୍ଣମାଳାର ତୁଳନାମୂଳକ ଆଲୋଚନା କରି ଗୋଟିଏ ସିଦ୍ଧାନ୍ତ ସ୍ଥିର କରିଲେ ଆମର ଉଦ୍ଦେଶ୍ୟ ସିଦ୍ଧ ହେବ" ବୋଲି ସେ ମତ ଦିଅନ୍ତି। ନୀଳକଣ୍ଠଙ୍କ ମତରେ "ଉଚ୍ଚାରଣ ଅକ୍ଷରର ପ୍ରାଣ", ଏବଂ "ବର୍ଣ କହିଲେ ଲିଖିତ ଅକ୍ଷର ଓ ଅକ୍ଷରର ଉଚ୍ଚାରଣ ଉଭୟ ବୁଝାଏ" ଏବଂ ସେଥିପାଇଁ ଉଚ୍ଚାରଣ ଓ ଅକ୍ଷରର ସମ୍ପର୍କକୁ ନିର୍ଦ୍ଧାରଣ କରିବାକୁ "ଓଡ଼ିଆରେ ଲିପି ସଂସ୍କାର ନିତାନ୍ତ ଦରକାର"। ଧଳ କହନ୍ତି, ଧ୍ୱନି ଓ ଅକ୍ଷରର ସମ୍ପର୍କ ଶିଳାଲେଖରୁ ହିଁ କାଳକ୍ରମେ ବିକଶିତ ହୋଇଛି। କୁଞ୍ଜବିହାରୀଙ୍କ ମତରେ ବାଗ୍‌ଯନ୍ତ୍ରରୁ ନିର୍ଗତ ଧ୍ୱନିର ଧ୍ୱନି ଶୃଙ୍ଖଳା ସହିତ ଅକ୍ଷରର ପ୍ରତିନିଧିତ୍ୱ ଓ ଅକ୍ଷର ଗଠନ ପ୍ରଣାଳୀର ବର୍ଗୀକରଣ ସଂଘଟିତ ହୋଇଥାଏ। "ଉତ୍କଳୀୟ ଅକ୍ଷରକୁ ଦୁଇଟି ଭାଗରେ ବିଭକ୍ତ କରିବା କଥା", କହନ୍ତି ରାଜଗୁରୁ। ଗୋଟିଏ ହେଲା, 'ମୁଖ୍ୟ ଓ ମୌଳିକ ଚିହ୍ନ' ଏବଂ ଅନ୍ୟଟି ହେଉଛି 'ଗୌଣ ଓ ବ୍ୟାବହାରିକ ଚିହ୍ନ'। ରାଜଗୁରୁଙ୍କ ମତରେ "ପ୍ରଥମୋକ୍ତ ଚିହ୍ନଟି ଏକ ସମୟରେ ସମଗ୍ର ଭାରତବର୍ଷରେ ପ୍ରଚଳିତ ହେଉଥିଲା ଏବଂ ଦ୍ୱିତୀୟୋକ୍ତ ଚିହ୍ନ କ୍ରମେ ସେଥିରେ ସଂଯୁକ୍ତ ହୋଇ ପ୍ରାଦେଶିକ ଲିପିଗୁଡ଼ିକ ପରସ୍ପର ଠାରୁ ପୃଥକ୍ ହେବାକୁ ଲାଗିଲା"। ଓଡ଼ିଆ ଅକ୍ଷରର ଲେଖନ ଶୈଳୀ ଓ ଲିଖିତ ରୂପ ବିଷୟ ଉଲ୍ଲେଖ କରି ତାଳପତ୍ରର କରଣୀ ଅକ୍ଷର, ପ୍ରେସ୍ ପାଇଁ ଅକ୍ଷର ଏବଂ ବର୍ଣ୍ଣମାଳାର ଉଚ୍ଚାରିତ ଧ୍ୱନି ସହିତ ଅକ୍ଷରର ସମ୍ପର୍କର ବିଶଦ ବର୍ଣ୍ଣନା ଦେଇଛନ୍ତି ରାଜଗୁରୁ ତାଙ୍କ ପ୍ରବନ୍ଧରେ। "ବର୍ଣ୍ଣମାଳାର ବ୍ୟଞ୍ଜନର ଉଚ୍ଚାରିତ ରୂପ ଅକ୍ଷର" ବୋଲି କହନ୍ତି ଦେବୀ ପ୍ରସନ୍ନ। ଆଧୁନିକ ଭାଷା ବିଜ୍ଞାନ ବିଚାରରେ ଓଡ଼ିଆ ବର୍ଣ୍ଣମାଳା ଅନ୍ତର୍ଗତ ଧ୍ୱନି ଲିପି, ଖଣ୍ଡେତର ଧ୍ୱନି, ଖଣ୍ଡ ଧ୍ୱନି, ଆନ୍ତର୍ଜାତିକ ଧ୍ୱନି ଲିପିର ଆଦର୍ଶ ଏବଂ ଧ୍ୱନିଗ୍ରାମ ଓ ବର୍ଣ୍ଣମାଳା ବିଷୟରେ ସେ ଆଲୋଚନା କରିଛନ୍ତି। ତାଙ୍କ ମତରେ "ଏକ ବର୍ଣ୍ଣମାଳା ପଦ୍ଧତିର ପ୍ରତ୍ୟେକ ଲିଖିତ ଏକକ ହେଉଛି ବର୍ଣ୍ଣଗ୍ରାମ"। ଶବ୍ଦଗଠନରେ ବନାନ୍‌ର ପ୍ରାସଙ୍ଗିକତା କଥା ଉଲ୍ଲେଖ କରି ଧ୍ୱନିକୁ ଧରି ଲିପିଶିକ୍ଷା, ଶବ୍ଦ ସାହାଯ୍ୟରେ ଲିପିଶିକ୍ଷା, ଚିତ୍ର ସାହାଯ୍ୟରେ ଲିପିଶିକ୍ଷା ଏବଂ ବାକ୍ୟ ସାହାଯ୍ୟରେ ଲିପିଶିକ୍ଷାର ପ୍ରଚଳନ ବିଷୟରେ ସେ ସୂଚନା ଦେଇଛନ୍ତି।

ଗଠନ ଦୃଷ୍ଟିରୁ ଅକ୍ଷରର ପ୍ରକାର ଭେଦ କରି, (୧) ଭେଦକା ଭାଗ (distinctive feature) ଏବଂ (୨) ଆଳଙ୍କାରିକ ଭାଗ (ornamental feature) କଥା କହନ୍ତି ବିଜୟ ପ୍ରସାଦ ତାଙ୍କ ପ୍ରବନ୍ଧ 'ଓଡ଼ିଆ ଅକ୍ଷର'ରେ। "ଭାଷାକୁ ନେଇ ଲିପିର ସୃଷ୍ଟି" ଏବଂ "ଓଡ଼ିଆରେ

ଲେଖନ ପ୍ରଣାଳୀ ଏକ ଆକ୍ଷରିକ (Syllable) ପ୍ରଣାଳୀ, ଅର୍ଥାତ୍ ପ୍ରତିଟି ଲିପି ଗୋଟିଏ ପୂର୍ଣ୍ଣ ଅକ୍ଷର (Syllable) ଭାବେ ଉଚ୍ଚାରିତ" ବୋଲି ସେ ଉଲ୍ଲେଖ କରିଛନ୍ତି । ସେ କହନ୍ତି, ଓଡ଼ିଆରେ "ଅକ୍ଷରଗୁଡ଼ିକର ଉଚ୍ଚାରଣଗତ ବୈଶିଷ୍ଟ୍ୟ ରହିଛି" ଏବଂ "ଅକ୍ଷରଗୁଡ଼ିକ ଧାଡ଼ି ମୂଳିଆ ହୋଇ ବାଁରୁ ଡାହାଣକୁ କ୍ରମାନ୍ୱୟ ଭାବେ ଲେଖା ହୁଏ" ଏବଂ ମାତ୍ରା ଓ ଫଳାର ବ୍ୟବହାର ସହିତ ଯୁକ୍ତବର୍ଣ୍ଣ ପାଇଁ ଯୁକ୍ତାକ୍ଷରଗୁଡ଼ିକର ବ୍ୟବହାର ରହିଛି ଓଡ଼ିଆରେ ବୋଲି ତାଙ୍କର ମତ । ଆହୁରି ମଧ୍ୟ ସେ କହନ୍ତି, "ଓଡ଼ିଆର ଲେଖନ ଓ କଥନ ପ୍ରଣାଳୀ ଭିତରେ ବିଶେଷ ଗୁରୁତର ପ୍ରଭେଦ ନାହିଁ" ଏବଂ "ବର୍ତ୍ତମାନ ଓଡ଼ିଆ ଲେଖନ ପ୍ରଣାଳୀକୁ ପରୀକ୍ଷା କରି ଏକ ନୂତନ ପରମ୍ପରା ସୃଷ୍ଟି କରିବାର ସମୟ ଆସିଛି, ଯାହା ନୂତନ ଛାପା ଓ ସାକ୍ଷରତାକୁ ସରଳ କରିବ" । ଓଡ଼ିଆ ଭାଷା ସମ୍ବନ୍ଧରେ ଭାଷାତାତ୍ତ୍ୱିକ ଦିଗରୁ ବହୁ ମୂଲ୍ୟବାନ ଓ ଉପାଦେୟ ତଥ୍ୟ ପ୍ରଦାନ କରିବାରେ ବିଜୟ ପ୍ରସାଦଙ୍କ ଆଲୋଚନାର ମୌଳିକତା ଉଲ୍ଲେଖନୀୟ । ଖଗେଶ୍ୱର ଓଡ଼ିଆ ଲିପି ସମ୍ବନ୍ଧରେ କହନ୍ତି, "ମୌଖିକ ଧ୍ୱନିର ରୈଖିକ ରୂପ-ଲିପି" ଏବଂ "ଲିପି ଧ୍ୱନିକୁ ସ୍ଥାୟୀତ୍ୱ ପ୍ରଦାନ କରେ" । ସେ ତାଙ୍କ ପ୍ରବନ୍ଧରେ ତିନୋଟି ବିଷୟ ଉପରେ ଆଲୋକପାତ କରିଛନ୍ତି । ସେଗୁଡ଼ିକ ହେଲା, (କ) ଲିପିର ବର୍ତ୍ତମାନ ଅବସ୍ଥାର ବର୍ଣ୍ଣନ, (ଖ) ଅପରାପର ଆନୀତ ସଂସ୍କାର ପ୍ରସ୍ତାବଗୁଡ଼ିକର ଅନୁବୃତ୍ତି ଓ ଆଲୋଚନା ଏବଂ (ଗ) କେତୋଟି ନୂତନ ପ୍ରସ୍ତାବର ଉପସ୍ଥାପନା- ତାଙ୍କ ପ୍ରବନ୍ଧର ବିଷୟବସ୍ତୁ । ଖଗେଶ୍ୱରଙ୍କ ଲିପି ସମ୍ବନ୍ଧୀୟ ଉପସ୍ଥାପନାରେ ମୌଳିକତା ଓ ସ୍ୱତନ୍ତ୍ରତା ପରିଲକ୍ଷିତ ହୁଏ । "ପରମ୍ପରା ବହୁ ସମୟରେ ପ୍ରଗତିର ବାଧକ ହୁଏ" ଏବଂ "ଲିପିକୁ ସରଳ, ସହଜ ଓ ବୈଜ୍ଞାନିକ କରିବା ପାଇଁ ସଂସ୍କାର ଆବଶ୍ୟକ" ବୋଲି କହନ୍ତି ନୀଳାଦ୍ରିଭୂଷଣ ତାଙ୍କ ରଚିତ 'ଓଡ଼ିଆ ଲିପି ସଂସ୍କାରର ଔଚିତ୍ୟ' ପ୍ରବନ୍ଧରେ । 'ଓଡ଼ିଆ ବର୍ଣ୍ଣମାଳାର ଶେଷ ବର୍ଣ୍ଣ' ବିଷୟ ଉତ୍ଥାପନ କରିଛନ୍ତି ହିମାଂଶୁ କୁମାର ତାଙ୍କ ପ୍ରବନ୍ଧରେ ଏବଂ ତା'ର ଉତ୍ତର ଦେଇଛନ୍ତି ସଦାନନ୍ଦ ତାଙ୍କ ପ୍ରବନ୍ଧ 'ଓଡ଼ିଆ ବର୍ଣ୍ଣମାଳାର ଶେଷ ବର୍ଣ୍ଣ : ଏକ ଉତ୍ତର'ରେ । ସଦାନନ୍ଦଙ୍କ ଅନ୍ୟ ଏକ ଉଲ୍ଲେଖନୀୟ ପ୍ରବନ୍ଧ 'ଓଡ଼ିଆ ବର୍ଣ୍ଣ ସଂଖ୍ୟା : ଏକ ନିର୍ଦ୍ଧାରଣ'ରେ ଓଡ଼ିଆ ବର୍ଣ୍ଣ ସଂଖ୍ୟା ସମ୍ବନ୍ଧରେ ସେ ତାଙ୍କର ସୁଚିନ୍ତିତ ମତାମତ ଉପସ୍ଥାପନ କରିଛନ୍ତି ।

ବ୍ୟାକରଣ ରଚନା କ୍ଷେତ୍ରରେ ଭାଷାର କଥିତ ଓ ଲିଖିତ ରୂପ ମଧ୍ୟରେ ସମନ୍ୱୟ ରକ୍ଷା କରିବା ଉଦ୍ଦେଶ୍ୟରେ ଧ୍ୱନିତାତ୍ତ୍ୱିକ ବିଶ୍ଳେଷଣର ଆବଶ୍ୟକତା ଅନୁଭୂତ ହୋଇଥାଏ । ଭାଷାର କଥିତ ରୂପର ଧ୍ୱନି ବା ବର୍ଣ୍ଣ ଏବଂ ଲିଖିତ ରୂପର ଲିପି (ଅକ୍ଷର) ବା ବର୍ଣ୍ଣମାଳାର ବର୍ଣ୍ଣନା ଧ୍ୱନିତତ୍ତ୍ୱର ବିଷୟବସ୍ତୁ । ସେଇ ପରିପ୍ରେକ୍ଷୀରେ ସଂକଳିତ କେତୋଟି ପ୍ରବନ୍ଧ ହେଉଛି, ଗୋପୀନାଥ ନନ୍ଦଶର୍ମାଙ୍କ **ଓଡ଼ିଆ ବର୍ଣ୍ଣ ଓ ସନ୍ଧି ନିର୍ଣ୍ଣୟ,** (ଉତ୍କଳ-ସାହିତ୍ୟ,

୧୩ଶ ଭାଗ, ୧୪ଶ ଭାଗ); ବିନାୟକ ମିଶ୍ରଙ୍କ **ବର୍ଣ୍ଣମାଳା ଓ ଧ୍ୱନିତତ୍ତ୍ୱ** (ଓଡ଼ିଆ ଭାଷାର ଇତିହାସ, ୧୯୭୫ (୨ୟ ସଂସ୍କରଣ); ସୂର୍ଯ୍ୟନାରାୟଣ ଦାଶଙ୍କ **ବର୍ଣ୍ଣପ୍ରକରଣ,** (ଭାଷାବୋଧ ଓଡ଼ିଆ ବ୍ୟାକରଣ, ୧୯୩୯); ଗୋଲୋକ ବିହାରୀ ଧଳଙ୍କ **ସିଲେବ୍ଲ ବା ଅକ୍ଷର,** (ଭାଷାଶାସ୍ତ୍ର ପରିଚୟ, ୧୯୭୬) ଦେବୀ ପ୍ରସନ୍ନ ପଟ୍ଟନାୟକଙ୍କ **ଓଡ଼ିଆ ଲିପି,** (ଓଡ଼ିଆ ଭାଷା ଓ ଭାଷା ବିଜ୍ଞାନ, ୧୯୮୫); ଏବଂ କୈଳାସ ଚନ୍ଦ୍ର ଟିକାୟତରାୟଙ୍କ **ଓଡ଼ିଆ ଭାଷାର ବୈଶିଷ୍ଟ୍ୟ,** (ସୃଷ୍ଟି ଓ ସମୀକ୍ଷା, ୧୯୭୯-୮୦) ପ୍ରଭୃତି। ଏହି ପ୍ରବନ୍ଧ ଗୁଡ଼ିକରେ ଓଡ଼ିଆ ବର୍ଣ୍ଣମାଳାରେ ପ୍ରୟୋଗାତ୍ମକ ପଦ୍ଧତି ସହିତ ଓଡ଼ିଆ ଭାଷାର ବୈଶିଷ୍ଟ୍ୟ ସମ୍ବନ୍ଧରେ ଆଲୋକପାତ କରାଯାଇଛି। ପାରଂପରିକ ସଂସ୍କୃତ ଭାଷାର ବର୍ଣ୍ଣମାଳା ଦ୍ୱାରା ପ୍ରଭାବିତ ଓଡ଼ିଆ ବର୍ଣ୍ଣମାଳା ଉନ୍ନବିଂଶ ଶତାବ୍ଦୀରେ ମଧୁସୂଦନ ରାଓଙ୍କ **ବର୍ଣ୍ଣବୋଧ**ରେ ପ୍ରାରମ୍ଭିକ ରୂପ ପ୍ରାପ୍ତ ହୋଇ କାଳକ୍ରମେ ଆଧୁନିକ ଭାଷାବିଜ୍ଞାନର ବିଶ୍ଳେଷଣାତ୍ମକ ପଦ୍ଧତି ଅନୁସରଣ କରି ଆଜି 'ସିଲେବ୍ଲ ଓ ଅକ୍ଷର' (ଧଳ,୧୯୭୬), ଏବଂ 'ଓଡ଼ିଆ ଲିପି' ଅନ୍ତର୍ଗତ 'ଲିପି ଓ ଧ୍ୱନିଲିପି' (ଦେବୀ ପ୍ରସନ୍ନ, ୧୯୮୫) ପର୍ଯ୍ୟାୟରେ ଉପନୀତ ହୋଇଛି ଏବଂ ଏହାର ପରିଣତି ସ୍ୱରୂପ  ଓଡ଼ିଆ ବର୍ଣ୍ଣମାଳାର ଗଠନ ପଦ୍ଧତି ଆଜି ଅଧିକ ବିଜ୍ଞାନ ସମ୍ମତ ହେବା ସମ୍ଭବପର ହୋଇପାରିଛି।

ସଂକଳନରେ ମଧୁସୂଦନ ରାଓଙ୍କ **ବର୍ଣ୍ଣବୋଧ** (କେବଳ ପ୍ରଥମ ଓ ଦ୍ୱିତୀୟ ଭାଗ) ସହିତ ହର ପ୍ରସାଦ ଦାସଙ୍କ **ପାହିଲା ଅନ୍ଧାର ରଜନୀ** (ସମ୍ବାଦ, ୩୧ ଅକ୍ଟୋବର, ୨୦୧୫ ଶନିବାର) ଓ ଭଗବାନ ପ୍ରକାଶଙ୍କ **ବର୍ଣ୍ଣ ହରଣ, ବର୍ଣ୍ଣବୋଧ ଓ ଲିପି ସଂସ୍କାର,** (ସମାଜ, ୬ଅଗଷ୍ଟ, ୨୦୧୪ ବୁଧବାର ଓ ୧୩ ଅଗଷ୍ଟ, ୨୦୧୪, ବୁଧବାର ସଂଖ୍ୟା) ପ୍ରବନ୍ଧ ଦୁଇଟି ଅନ୍ତର୍ଭୁକ୍ତ। ଉନବିଂଶ ଶତାବ୍ଦୀରେ ରଚିତ 'ବର୍ଣ୍ଣବୋଧ'ର ସୁଦୂର ପ୍ରସାରୀ ପ୍ରଭାବ ଆଜିର ଏକବିଂଶ ଶତାବ୍ଦୀ ଆଲୋଚନାରେ ମଧ ଉଜ୍ଜୀବିତ ଓ ସକ୍ରିୟ ରହିଥିବା ଉଲ୍ଲେଖଯୋଗ୍ୟ। ମଧୁସୂଦନଙ୍କ 'ବର୍ଣ୍ଣବୋଧ'ରେ ପ୍ରଦତ୍ତ ବର୍ଣ୍ଣମାଳାର ପ୍ରଥମ ଭାଗରେ ସ୍ୱରବର୍ଣ୍ଣ, ବ୍ୟଞ୍ଜନ ବର୍ଣ୍ଣ, ଅତିରିକ୍ତ ବର୍ଣ୍ଣ କ୍ରମରେ ଅକ୍ଷର ଓ ମାତ୍ରା (ଅବନା ଓ ବନା) ଏବଂ ଦ୍ୱିତୀୟ ଭାଗରେ ଫଳା ଓ ଯୁକ୍ତାକ୍ଷରଗୁଡ଼ିକର ଗଠନ ପଦ୍ଧତି ଓ ପ୍ରୟୋଗ ବିଧି ଦର୍ଶାଯାଇଛି।

ମଧୁସୂଦନଙ୍କ ମୂଳ 'ବର୍ଣ୍ଣବୋଧ'ର ବହୁ ରୂପାନ୍ତରିତ ସଂସ୍କରଣ ପରବର୍ତ୍ତୀ ସମୟରେ ସ୍କୁଲ ପାଠ୍ୟକ୍ରମରେ ଅକ୍ଷର ଶିକ୍ଷା ନିମନ୍ତେ ଉପଯୋଗୀ ପ୍ରାରମ୍ଭିକ ପୁସ୍ତକ ଭାବରେ ଆଜି ପର୍ଯ୍ୟନ୍ତ ପ୍ରଚଳିତ ହୋଇଆସୁଛି। ସେଥିମଧ୍ୟରୁ କେତୋଟିକୁ ଏଠାରେ ଉଲ୍ଲେଖ କରାଯାଇପାରେ, ଯେପରି "ଅଜନ୍ତା ବର୍ଣ୍ଣବୋଧ, ଆଦର୍ଶ ମଧୁବର୍ଣ୍ଣବୋଧ, ଛାତ୍ର ମଧୁବର୍ଣ୍ଣବୋଧ, ଛବିଳ ମଧୁ ବର୍ଣ୍ଣବୋଧ, ସନ୍ନ୍ୟାସୀ ମଧୁବର୍ଣ୍ଣବୋଧ, ସରସ ମଧୁ ବର୍ଣ୍ଣବୋଧ,

ପିଲାଙ୍କ ମଧୁବର୍ଣ୍ଣବୋଧ" ପ୍ରଭୃତି (ଓଡ଼ିଆ ଅକ୍ଷର, ୧୯୯୫)। ଏହି ପ୍ରସଙ୍ଗରେ ୨୦୧୩ ମସିହାରେ ଓଡ଼ିଶା ବୁକ୍ ଏମ୍ପୋରିୟମ୍, କଟକ-୨, ଦ୍ୱାରା ପ୍ରକାଶିତ ଓ ଡ. ବିଜୟାନନ୍ଦ ସିଂହଙ୍କ ଦ୍ୱାରା ସଂକଳିତ ଓ ସଂପାଦିତ 'ବର୍ଣ୍ଣବୋଧ', (ଭକ୍ତକବି ମଧୁସୂଦନ ରାଓ ପ୍ରଣୀତ) ପୁସ୍ତକ ବିଷୟ ମଧ ଏଠାରେ ଉଲ୍ଲେଖନୀୟ। କହିବା ବାହୁଲ୍ୟ ଯେ ଏ ସମସ୍ତ ପୁସ୍ତକ ମଧୁସୂଦନଙ୍କ ବର୍ଣ୍ଣବୋଧର ବହୁରୂପୀ ଅନୁକରଣ। ଆଜିର ପରିପ୍ରେକ୍ଷୀରେ ମଧୁସୂଦନଙ୍କ ବର୍ଣ୍ଣବୋଧର ରଚନା ପଦ୍ଧତିର ଉତ୍କର୍ଷତା ଯାହା ହେଉନା କାହିଁକି ଏହାର ମୌଳିକତା ଓ ସ୍ୱାତନ୍ତ୍ର୍ୟକୁ ଖଣ୍ଡିତ କରିବାର ପ୍ରୟାସରୁ କେହି ବି ବିରତ ରହିବା ଉଚିତ।

ଓଡ଼ିଆ ବର୍ଣ୍ଣମାଳା ନିର୍ଦ୍ଧାରଣ ପ୍ରକ୍ରିୟାରେ ଉନ୍ନବିଂଶ ଶତାବ୍ଦୀର ଶେଷ ଭାଗରେ ରଚିତ ମଧୁସୂଦନଙ୍କ 'ବର୍ଣ୍ଣବୋଧ'ର ପ୍ରଭାବ ଓ ପ୍ରତିକ୍ରିୟା ଆଜିର ଏକବିଂଶ ଶତାବ୍ଦୀରେ ମଧ ପ୍ରଭାବଶାଳୀ ରହିଥିବା ସଂକଳନରେ ସ୍ଥାନିତ ଦୁଇଟି ପ୍ରବନ୍ଧର ଆଲୋଚନାରୁ ପ୍ରତିପାଦିତ ହୁଏ। ପ୍ରବନ୍ଧ ଦୁଇଟି ହେଲା ହରପ୍ରସାଦ ଦାସଙ୍କ 'ପାହିଲା ଅନ୍ଧାର ରଜନୀ' ଓ ଭଗବାନ ପ୍ରକାଶଙ୍କ 'ବର୍ଣ୍ଣହରଣ', 'ବର୍ଣ୍ଣବୋଧ ଓ ଲିପି ସଂସ୍କାର'। ହରପ୍ରସାଦ ମଧୁସୂଦନଙ୍କ 'ବର୍ଣ୍ଣବୋଧ' ସହିତ ବଙ୍ଗଳା ଭାଷାରେ ରଚିତ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ପ୍ରଣୀତ 'ବର୍ଣ୍ଣ ପରିଚୟ'ର ତୁଳନା କରି 'ବର୍ଣ୍ଣବୋଧ'ର ଉତ୍କର୍ଷତା ଓ ମୌଳିକତାକୁ ନିଜର ଯୁକ୍ତି ମାଧମରେ ଉପସ୍ଥାପିତ କରିଛନ୍ତି। ଭଗବାନ ପ୍ରକାଶ ତାଙ୍କ ପ୍ରବନ୍ଧରେ ଆମେରିକାରେ ଭାଷା ବିଦ୍ୟାଳୟରେ ଓଡ଼ିଆ ଶିଖିବା ପ୍ରସଙ୍ଗରେ 'ମଧୁ-ବର୍ଣ୍ଣବୋଧ'ର ଭୂମିକା, ଓଡ଼ିଆରେ ଇଂରାଜୀ ଭାଷା ତୁଳନାରେ ଅଧିକ ଅକ୍ଷର, ମାତ୍ରା ଇତ୍ୟାଦି ପ୍ରୟୋଗର ପ୍ରାସଙ୍ଗିକତା ଏବଂ ଭାରତରେ ବର୍ଣ୍ଣ ସଂସ୍କାର ପ୍ରକ୍ରିୟା ମାଧମରେ ତାମିଲନାଡୁର ଲିପି ସଂସ୍କାର ଓ ଇଂରାଜୀ ଭାଷାର ଲିପି ସଂସ୍କାର ଉଦ୍ୟମ ତଥା ଓଡ଼ିଆରେ ମଧୁସୂଦନଙ୍କ ଭଳି ଇଂରାଜୀରେ ଚସରଙ୍କ ବର୍ଣ୍ଣମାଳା ପ୍ରସ୍ତୁତିକରଣ ପ୍ରଭୃତି ବିଷୟ ଉଲ୍ଲେଖ କରି "ଓଡ଼ିଆ ଭାଷାର ମୌଳିକ ସ୍ୱରୂପକୁ ତ୍ୟାଗ ନ କରି କେମିତି ଅଧିକ ଧ୍ୱନି ସମ୍ମତ କରାଯାଇ ପାରିବ, ସେ ସଂପର୍କରେ ଓଡ଼ିଆ ଭାଷାବିତ୍‌ମାନେ ଏକାଠି ବସି ବିଚାର କରିବାର ସମୟ ଏବେ ଉପସ୍ଥିତ" ବୋଲି ଯୁକ୍ତି କରିଛନ୍ତି। କହିବା ବାହୁଲ୍ୟ ଯେ ଏ ଦୁଇଟି ପ୍ରବନ୍ଧର ରଚୟିତା ଦୁଇଜଣଙ୍କର ଉପସ୍ଥାପନା ଭାଷା ବୈଜ୍ଞାନିକ ଦୃଷ୍ଟିକୋଣରୁ ନୁହେଁ ବରଂ ସମାଜର ଚିନ୍ତାଶୀଳ ବ୍ୟକ୍ତିତ୍ୱଙ୍କର ଆଧୁନିକ ଓଡ଼ିଆ ବର୍ଣ୍ଣମାଳାର ସ୍ୱରୂପ ଗଠନ ଏବଂ ଲିପି ସଂସ୍କାରର ଆବଶ୍ୟକତା ଓ ଯୁକ୍ତିଯୁକ୍ତତାକୁ ପ୍ରତିପାଦନ କରିବା ନିମନ୍ତେ ବଳିଷ୍ଠ ଯୁକ୍ତି।

ସଂପ୍ରତି ଆଧୁନିକ ଟେକ୍ନୋଲୋଜି ଓ କମ୍ପ୍ୟୁଟରୀକରଣ ଯୁଗରେ ଓଡ଼ିଆ ଲିପିର ପ୍ରୟୋଗ ଓ ପ୍ରଚଳନ କ୍ଷେତ୍ରରେ ଯୁଗାନ୍ତକାରୀ ପରିବର୍ତ୍ତନ ସଂଘଟିତ ହେଉଥିବା ଉଲ୍ଲେଖଯୋଗ୍ୟ। ଏହି ପରିପ୍ରେକ୍ଷୀରେ ସଂକଳନରେ ସ୍ଥାନିତ କେତୋଟି ପ୍ରବନ୍ଧ ହେଉଛି,

ଗୋକୁଳାନନ୍ଦ ଦାସଙ୍କ **ଭାଷା ଓ ଲିପି** (ଭାଷା କ'ଣ ନୁହଇ ଗଣିତ?, ୨୦୧୦); ଚିନ୍ମୟ କୁମାର ହୋତାଙ୍କ **ଅକ୍ଷର ସହ ସଂପର୍କ** (ସମାଜ,୪ଅକ୍ଟୋବର, ୨୦୧୬); ସୁଧୀର ଚନ୍ଦ୍ର ମହାନ୍ତିଙ୍କ **ଓଡ଼ିଆରେ ଅଫିସ କାର୍ଯ୍ୟ** (ସମାଜ, ୧୮ ସେପ୍ଟେମ୍ବର, ୨୦୧୬); ଏବଂ ପ୍ରଦୀପ ମହାପାତ୍ରଙ୍କ **ଇଣ୍ଟରନେଟ୍‌ରେ ଓଡ଼ିଆ ଲିପି ଓ ଭାଷା** (ସମ୍ବାଦ, ୨୪ ନଭେମ୍ବର, ୨୦୧୬) ପ୍ରଭୃତି।

ଗଣିତଜ୍ଞ ଗୋକୁଳାନନ୍ଦ ଦାସ ତାଙ୍କ ପ୍ରବନ୍ଧ 'ଭାଷା ଓ ଲିପି'ରେ ଗାଣିତିକ ଦୃଷ୍ଟିକୋଣରୁ ଓଡ଼ିଆ ଲିପି ସଂବନ୍ଧରେ ପର୍ଯ୍ୟାଲୋଚନା କରିଛନ୍ତି। ବହୁଭାଷୀ ଦେଶ ଭାରତରେ "ଯେକୌଣସି ଦୁଇଟି ଭାଷାର ବିରୋଧାଭାଷ ସୃଷ୍ଟି ହୁଏ ଯଦି ଜଣଙ୍କ ପକ୍ଷରେ ଅନ୍ୟ ଭାଷା ବୋଧଗମ୍ୟ ହୁଏ ନାହିଁ" ଏବଂ ତାଙ୍କ ମତରେ "ବୋଧଗମ୍ୟ ନ ହେବାର ପ୍ରଥମ କାରଣ : ଭିନ୍ନ ଏକ ଲିପି, ଭିନ୍ନ ଏକ ବାକ୍ୟ ବିନ୍ୟାସ"। ଏହାର ସମାଧାନ ଦର୍ଶାଇବାକୁ ସେ ଓଡ଼ିଆ ଓ ବଙ୍ଗଳା ଭାଷା ଲେଖିବା ପାଇଁ ଗୋଟିଏ ପ୍ରକାର ଲିପି ପ୍ରଚଳନ ପାଇଁ ଗୋଟିଏ ପ୍ରକାର ଲିପି ସେଟ୍ ପ୍ରସ୍ତୁତ କରିବାର ପ୍ରସ୍ତାବ ଦେଇଛନ୍ତି। ସେ କହନ୍ତି ଯେ "ଗୋଟିଏ ଲିପି ବ୍ୟବହାର କରି ବିଭିନ୍ନ ଭାଷା ହୋଇପାରେ। ଯଥା- ରୋମାନ, ଲିପିକୁ ବ୍ୟବହାର କରି ସ୍ପାନିସ୍, ପର୍ତ୍ତୁଗୀଜ, ଇଟାଲି, ଫ୍ରେଞ୍ଚ, ଜର୍ମାନ, ଇଂରାଜୀ ଓ ନରୱେଜିଆନ ଭାଷା ସୃଷ୍ଟି ହୋଇପାରିଛି। ସେହିପରି ଦେବନାଗରୀ ଲିପିରେ (ଯାହା ପୁରାତନ ବ୍ରାହ୍ମୀ ଲିପିର ଏକ ରୂପାନ୍ତର ମାତ୍ର) ସଂସ୍କୃତ, ହିନ୍ଦୀ, ମରାଠୀ, ନେପାଳି, କୋଙ୍କଣୀ, ସିନ୍ଧୀ, ଭାଷା ଲେଖାଯାଉଛି। ଏହାଛଡ଼ା ଗୁଜୁରାଟୀ, ରାଜସ୍ଥାନୀ, ପଞ୍ଜାବୀ, ବଙ୍ଗଳା, ଓଡ଼ିଆ, ଅସମୀୟା ଭାଷାଗୁଡ଼ିକର ଲିପି ବ୍ରାହ୍ମୀ ଲିପିର ରୂପାନ୍ତର ହୋଇଥିବାରୁ ଏହା ପ୍ରାୟ ନାଗରୀ ଲିପିସହ ଘନିଷ୍ଠ ଭାବରେ ସଂଯୁକ୍ତ"। ଏହି ପରିପ୍ରେକ୍ଷୀରେ ଭାଷାକୁ ଗାଣିତିକ ଦୃଷ୍ଟିକୋଣରୁ ଆଲୋଚନା କରି ଲିପିଜନିତ ସମସ୍ୟାକୁ ସେ ବିଶ୍ଳେଷଣ କରିଛନ୍ତି। ତାଙ୍କର ପ୍ରବନ୍ଧ ଯେପରି ସୁଖପାଠ୍ୟ ସେହିପରି ଗାଣିତିକ ଦୃଷ୍ଟିକୋଣରୁ ଲିପି ସମସ୍ୟା ଆଲୋଚନା କ୍ଷେତ୍ରରେ ନୂତନ ଦିଗନ୍ତ ସୃଷ୍ଟି କରିବାର ପଥ ଉନ୍ମୁକ୍ତ କରେ।

'ଅକ୍ଷର ସହ ସଂପର୍କ' ପ୍ରବନ୍ଧରେ ଚିନ୍ମୟ କୁମାର କମ୍ପ୍ୟୁଟରରେ ଓଡ଼ିଆ ଅକ୍ଷର ଟାଇପ୍ କରିବାର ସୁବିଧା ବିଷୟରେ ଉଲ୍ଲେଖ କରିଛନ୍ତି। କମ୍ପ୍ୟୁଟରରେ ପରିଚ୍ଛନ୍ନ ପାଣ୍ଡୁଲିପିଟିଏ ପ୍ରସ୍ତୁତିକରଣର ସୁବିଧା ବିଷୟରେ ସେ କହନ୍ତି, 'ଇଣ୍ଟରନେଟ୍‌ରେ ତ ଆଜିକାଲି ସବୁ ସୁବିଧା ଉପଲବ୍ଧ, ଓଡ଼ିଆ ଲିପି ଡାଉନଲୋଡ୍ କରିସାରି ଟିକିଏ ଅଭ୍ୟାସ କରିସାରିଲା ପରେ ସବୁକିଛି ସହଜ।" କିନ୍ତୁ ବାଲ୍ୟକାଳରେ ଓଡ଼ିଆ ବର୍ଣ୍ଣମାଳା ଶିଖିବା ଓ ଅଭ୍ୟାସ କରିବାର ରୋମାଞ୍ଚ, ମଧୁବାବୁଙ୍କର 'ବର୍ଣ୍ଣବୋଧ' ଏବଂ ସ୍କୁଲ ପାଠମାଳା 'ମୋ ଛବି ବହି'ର ଅକ୍ଷର ଶିକ୍ଷା ଓ ହସ୍ତାକ୍ଷର ଲିଖନର ଅଭ୍ୟାସ ପ୍ରଭୃତି ଓଡ଼ିଆ ଅକ୍ଷର ସହ ତାଙ୍କ

ଅନ୍ତରଂଗ ସଂପର୍କକୁ ଆଜିର କମ୍ପ୍ୟୁଟରର ଲିଖନ ପ୍ରଣାଳୀ ସହିତ ତୁଳନା କରିବାକୁ ତାଙ୍କୁ ଯେପରି ବାଧ କରୁଥିଲା ଏବଂ ସେ ଅନୁଭବ କରୁଥିଲେ "ଆଜିର କମ୍ପ୍ୟୁଟରରେ ଲେଖିବାର ପ୍ରକ୍ରିୟା ଯେପରି ଓଡ଼ିଆକୁ ହାତରେ ଲେଖିବାର ସୁଦୀର୍ଘ ଅଭିଜ୍ଞତାର ଶେଷ ପର୍ଯ୍ୟାୟର ଅୟମାରମ୍ଭ।"

'ଓଡ଼ିଆରେ ଅଫିସ କାର୍ଯ୍ୟ' କରିବା ଉଦ୍ଦେଶ୍ୟରେ ସୁଧୀର ଚନ୍ଦ୍ର କମ୍ପ୍ୟୁଟରର ବ୍ୟବହାର ଓ ପ୍ରଚଳନ ବିଷୟରେ ଏହି ପ୍ରବନ୍ଧରେ ବର୍ଣ୍ଣନା କରିଛନ୍ତି। "ଆଜି ଓଡ଼ିଆ ଭାଷା ମାଧମରେ ଅଫିସ କାର୍ଯ୍ୟ ଓ ଚିଠି ପ୍ରଭୃତି ଟାଇପ୍ କରିବା ପାଇଁ ମାନ୍ଧତା ଅମଳର ରେମିଙ୍ଗ୍‌ଟନ ଟାଇପ୍ ମେସିନ୍‌ର ଆଉ ପ୍ରୟୋଜନ ନାହିଁ। ତାହାର ସ୍ଥାନ ନେଇଛି କମ୍ପ୍ୟୁଟରରେ ଉପଲବ୍ଧ ମାଇକ୍ରୋସଫ୍ଟ ଯେଉଁଥିରେ 'ମାଇକ୍ରୋସଫ୍ଟ ଅଫିସ-୭' ଅଫିସର ସବୁ କାର୍ଯ୍ୟ କରିବାକୁ ସକ୍ଷମ" ବୋଲି ସେ ମତ ଦିଅନ୍ତି। ତାଙ୍କ ମତରେ କମ୍ପ୍ୟୁଟରରେ ଉପଲବ୍ଧ "ୟୁନିକୋଡ଼୍ ଅକ୍ଷରମାଳା ସର୍ବଜନଗ୍ରାହ୍ୟ ଏବଂ ସର୍ବଜନାଦୃତ।

'ଇଣ୍ଟରନେଟରେ ଓଡ଼ିଆ ଲିପି ଓ ଭାଷା' ପ୍ରବନ୍ଧରେ ପ୍ରଦୀପ ମହାପାତ୍ର ଦର୍ଶାଇଛନ୍ତି ଯେ ଆଜି "ଭାରତରେ ଇଣ୍ଟରନେଟ୍ ପ୍ରସାର କ୍ଷେତ୍ରରେ ମୋବାଇଲ୍ ଟେକ୍‌ନୋଲଜି ହିଁ ପ୍ରମୁଖ ସ୍ଥାନ ଅଧିକାର କରିଛି।" ସେହି ପରିପ୍ରେକ୍ଷୀରେ କିନ୍ତୁ ଇଣ୍ଟରନେଟ୍‌ରେ ଓଡ଼ିଆ ଲିପି ଓ ଭାଷା ବ୍ୟବହାର ଏଯାଏ ସୁଲଭ ହୋଇପାରିନାହିଁ। ତାଙ୍କ ମତରେ "ବର୍ତ୍ତମାନ ବିଶ୍ୱବ୍ୟାପୀ ଇଣ୍ଟରନେଟ୍ ପରଦା କ୍ରମଶଃ ସଂବାଦ, ଶିକ୍ଷା, ସ୍ୱାସ୍ଥ୍ୟ, ଅର୍ଥନୀତି ଓ ମନୋରଂଜନର ଏକକ ମଞ୍ଚ ରୂପେ ଗଢ଼ିଉଠୁଥିବା ଅବସରରେ ସେଥିରେ ଓଡ଼ିଆ ଲିପିର ଉପସ୍ଥିତି ଅନିବାର୍ଯ୍ୟ। ଆନ୍ତର୍ଜାତିକ ଇଣ୍ଟରନେଟ୍ ସେବା ନିୟନ୍ତ୍ରଣକାରୀ ସଂସ୍ଥାଗୁଡ଼ିକ ଏ ଯାଏ ଓଡ଼ିଆ ଲିପିକୁ ସେମାନଙ୍କ ସେବା ପରିଧିରେ ସାମିଲ ନ କରିପାରିଥିବା ବେଳେ ଯଦି ଯୋଜନାବଦ୍ଧ ଭାବେ ସେମାନଙ୍କୁ ଏଥିଲାଗି ପ୍ରଭାବିତ କରିବା ପାଇଁ ଉଦ୍ୟମ ହୁଅନ୍ତା, ତେବେ ସମସ୍ୟାର ସମାଧାନ ହୋଇପାରନ୍ତା।" ଓଡ଼ିଆ ଭାଷୀଙ୍କୁ କମ୍ପ୍ୟୁଟର ଓ ଇଣ୍ଟରନେଟ୍ ବ୍ୟବହାର ଓ ଏହାର ଉପଯୋଗୀତା ସଂବନ୍ଧରେ ସଚେତନ ଓ ଆଗ୍ରହୀ କରିବା ଉଦ୍ଦେଶ୍ୟରେ ପ୍ରଦୀପଙ୍କର ଏହା ଏକ ଅତ୍ୟନ୍ତ ଉପାଦେୟ ରଚନା।

ଭାରତବର୍ଷରେ ପ୍ରଚଳିତ ବହୁ ଭାଷା ସମସ୍ୟା ସହିତ ଲିପି ସମସ୍ୟା ମଧ ସର୍ବଜନବିଦିତ। ଭାରତବର୍ଷରେ ସମ୍ବିଧାନ ସ୍ୱୀକୃତ ଭାଷାଗୁଡ଼ିକ ବ୍ୟତୀତ ଅଧିକାଂଶ ଭାଷା କେବଳ କଥିତ ରୂପରେ ପ୍ରଚଳିତ ଏବଂ ସେଗୁଡ଼ିକର ଲିଖିତ ରୂପ ନାହିଁ। ପ୍ରଚଳିତ ଆଦିବାସୀ ଭାଷାଗୁଡ଼ିକ ମଧ୍ୟରୁ ମାତ୍ର କେତୋଟିକୁ ଛାଡ଼ିଦେଲେ ଅଧିକାଂଶ ଭାଷା ଅଲିଖିତ ଓ ଏଗୁଡ଼ିକ କେବଳ କଥିତ ରୂପରେ ଜୀବିତ। ଲିଖିତ ଭାଷା ଓ ଲିପିହୀନ ବା ଅଲିଖିତ

କଥିତ ଭାଷା ସମସ୍ୟା ଓ ସମାଧାନ ସଂବନ୍ଧରେ ଆଲୋଚନା କରିଛନ୍ତି ବିଜୟଲକ୍ଷ୍ମୀ ମହାନ୍ତି ତାଙ୍କ ରଚିତ ପ୍ରବନ୍ଧ **ଲିପିହୀନ ଭାଷା ପାଇଁ ଲିପି** ପ୍ରବନ୍ଧରେ।

ଓଡ଼ିଶାରେ ବାସ କରୁଥିବା କେତୋଟି ଆଦିବାସୀ ସଂପ୍ରଦାୟ କହୁଥିବା କଥିତ ଭାଷା ନିମନ୍ତେ ପ୍ରସ୍ତୁତ ହୋଇଛି ସ୍ୱତନ୍ତ୍ର ଲିପି। ଓଡ଼ିଆ ବର୍ଣ୍ଣମାଳାକୁ ଆଧାର କରି ୪ଟି ଆଦିବାସୀ ଭାଷାର ସ୍ୱତନ୍ତ୍ର ଲିପି ସଂକଳନରେ ଅନ୍ତର୍ଭୁକ୍ତ ହୋଇଛି। ଅର୍ଜୁନ ଚରଣ ହେମ୍ବ୍ରମଙ୍କ ପ୍ରବନ୍ଧ **ରଘୁନାଥଙ୍କ ଜୀବନ ଦର୍ଶନ : ଅଲଚିକିରେ** ବର୍ଣ୍ଣିତ ହୋଇଛି ସାନ୍ତାଳୀ ଭାଷାର ଲିପି ବିଷୟରେ। ଅର୍ଜୁନ ଚରଣ ଲେଖିଛନ୍ତି, "ପଣ୍ଡିତ ରଘୁନାଥ ମୁର୍ମୁ ନିଜର ସୃଜନଶୀଳତା ଓ ଅକ୍ଳାନ୍ତ ଚେଷ୍ଟା ବଳରେ ୧୯୨୫ ମସିହାରେ ସାନ୍ତାଳୀ ଭାଷାର ଲିଖନ ପ୍ରଣାଳୀ ବାହାର କଲେ। 'ଅଲ' ମାନେ ଲେଖିବା, 'ଚିକି' ମାନେ ଚିହ୍ନ- ଏହି ଲିଖନ ପ୍ରଣାଳୀକୁ 'ଅଲଚିକି' ନାମ ଦେଲେ ସେ। ଲିଖନ ପ୍ରଣାଳୀରେ ୩୦ଟି ଅକ୍ଷର ଓ ୬ଟି ସାଂକେତିକ ଚିହ୍ନ ରହିଛି। ଏହା ହିଁ ସାନ୍ତାଳୀ ଜାତିକୁ ପଣ୍ଡିତ ରଘୁନାଥ ମୁର୍ମୁଙ୍କର ସବୁଠୁ ବଡ଼ ଅବଦାନ।" ସାନ୍ତାଳୀ ଭାଷା ବର୍ତ୍ତମାନ ସମ୍ବିଧାନ ସ୍ୱୀକୃତ ଭାଷା। ସେହିପରି ସୁଶାନ୍ତ ମିଶ୍ରଙ୍କ ଦ୍ୱାରା ରଚିତ ପ୍ରବନ୍ଧ **ହୋ ଜନଜାତିରେ**"ରେ ସେ ଲେଖିଛନ୍ତି ହୋ ସଂପ୍ରଦାୟର ନିଜସ୍ୱ ଲିପି "ୱାରାଂଚିତି"କୁ ପଣ୍ଡିତ ଲାକବଢ଼ା ପ୍ରସ୍ତୁତ କରିଥିଲେ। ଏହି ଭାଷାର ଅକ୍ଷର ସଂଖ୍ୟା ୩୧। ହୋ ମାନଙ୍କର ଜାତି ହୋ ଓ ଭାଷା ମଧ ହୋ ଏବଂ ଏହାର ଲିପି ୱାରାଂଚିତି। ହୋ ଭାଷାର ଲିପି ୱାରାଂଚିତିକୁ ସାମ୍ବିଧାନିକ ସ୍ୱୀକୃତି ମିଳିନାହିଁ। ଅଲଚିକି ଓ ୱାରାଂଚିତି ବ୍ୟତୀତ ଅନ୍ୟ ଦୁଇଟି ଆଦିବାସୀ ଭାଷାରେ ପ୍ରସ୍ତୁତ ହୋଇଥିବା ଲିପି ହେଉଛି, ସଓରା ଭାଷାର ଲିପି **ସୋରାଙ ସୋମ୍ପେତ** ଓ ଏହାର ଅକ୍ଷର ସଂଖ୍ୟା ୨୪ ଏବଂ ଅନ୍ୟଟି **କୁଇ** ଭାଷାର ଲିପି, ଯାହାର ଅକ୍ଷର ସଂଖ୍ୟା ୫୨। ଏଗୁଡ଼ିକ ମଧ ସାମ୍ବିଧାନିକ ସ୍ୱୀକୃତି ଲାଭ କରିନାହିଁ। ଆନନ୍ଦର କଥା ଯେ ଆଦିବାସୀ ଭାଷାମାନଙ୍କର ଲିଖିତ ରୂପ ପ୍ରସ୍ତୁତି ଓ ସେମାନଙ୍କୁ ଓଡ଼ିଆ ଭାଷାର ମୁଖ୍ୟ ସ୍ରୋତରେ ସାମିଲ କରିବା ପାଇଁ ସରକାରୀ ଓ ବେସରକାରୀ ଉଦ୍ୟମ ଅବ୍ୟାହତ ରହିଛି।

ଖୁସିର ବିଷୟ ଯେ କଥିତ ଆଦିବାସୀ ଭାଷାର ଉଚ୍ଚାରଣ ପଦ୍ଧତିକୁ ଓଡ଼ିଆ ବର୍ଣ୍ଣମାଳା ଆଧାରରେ ରୋମାନ ଲିପିକୁ ଅନୁସରଣ କରି କ୍ଷେତ୍ରବାସୀ ମାନ୍‌ସେଠ୍ ରଚନା କରିଛନ୍ତି ପ୍ରବନ୍ଧ **ରୋମାନ୍ ଲିପିରେ ମୌଖିକ ଆଦିବାସୀ ଭାଷା**। ନିଜ ପ୍ରବନ୍ଧରେ ସେ ସୂଚାଇଛନ୍ତି ଯେ "ଭାଷା ଭାବବ୍ୟକ୍ତ କରିବାର ଏକ ବଳିଷ୍ଠ ଅବଲମ୍ବନ ହୋଇଥିବା ବେଳେ ଲିପି ତାହାକୁ ପୋଥିକୃତ କରିବାର ଏକ ମାଧ୍ୟମ ମାତ୍ର।" କିନ୍ତୁ ଓଡ଼ିଆ ଲିପି ପରିବର୍ତ୍ତେ ରୋମାନ ଲିପିକୁ ଗ୍ରହଣ କରିବାକୁ ଯାଇ ସେ ଯୁକ୍ତି ଦର୍ଶାଇଛନ୍ତି ଯେ, "ଓଡ଼ିଆ ଲିପିକୁ ବ୍ୟବହାର କରି ଓଡ଼ିଶାର ସମସ୍ତ ଆଦିବାସୀ ଭାଷାକୁ ଲେଖି ପ୍ରାୟ ନିଖୁଣ ଉଚ୍ଚାରଣ

କରାଯାଇପାରେ। କିନ୍ତୁ ଏହାଦ୍ୱାରା ଆଦିବାସୀ ମୌଖିକ ପରଂପରା ମଧ୍ୟରେ ପ୍ରଚଳିତ ଲୋକଜ୍ଞାନ ଓଡ଼ିଆ ପାଠକ ମହଲରେ ହିଁ ସୀମିତ ହୋଇ ରହିଯିବ। ଏଣୁ ଏ ପରିପ୍ରେକ୍ଷୀରେ ଆମକୁ ଆଜିର ଜଗତିକରଣ ଯୁଗରେ ବିଶ୍ୱଦରବାରରେ ପହଞ୍ଚିବାକୁ ହେଲେ ରୋମାନ୍ ଲିପିର ଆଶ୍ରୟ ନେବା ଆବଶ୍ୟକ।" କ୍ଷେତ୍ରବାସୀଙ୍କର ଏପରି ପରିକଳ୍ପନା ଏବଂ ପ୍ରୟାସ ଅବଶ୍ୟ ସ୍ୱାଗତଯୋଗ୍ୟ। ଭାଷାର ଲିପିକୁ ସୁସଙ୍ଗଠିତ କରି ଶୃଙ୍ଖଳିତ ବୈଜ୍ଞାନିକ ପଦ୍ଧତିରେ ପ୍ରସ୍ତୁତ କରିବା ବର୍ତ୍ତମାନର ଆଧୁନିକ ଯୁଗରେ ଗ୍ରହଣଯୋଗ୍ୟ ହେବାର ଆବଶ୍ୟକତା ଅନୁଭୂତ ହୁଏ।

ଭାରତର ବହୁ ଭାଷା ଓ ଲିପି ସମସ୍ୟା ଦ୍ୱାରା ଅନୁପ୍ରାଣିତ ହୋଇ ରଙ୍ଗାଧର ମହାପାତ୍ର ପରିକଳ୍ପନା କରିଛନ୍ତି ନାଇଲ ଭାଷା ବା New Indian Easy Language। ମଣିଷର ଚିନ୍ତାଶକ୍ତି ଓ ସୃଜନଶୀଳତାର ପରିପ୍ରକାଶ ଘଟିଛି ରଙ୍ଗାଧରଙ୍କ ରଚିତ **ନାଇଲ ଭାଷା : ଏକ ପ୍ରୟାସ** ପ୍ରବନ୍ଧରେ। ଭାରତୀୟ ପରିପ୍ରେକ୍ଷୀରେ ତାଙ୍କର ଏହା ଏକ ଅଭିନବ ପ୍ରୟାସ। ଏକ ପରିକଳ୍ପିତ କୃତ୍ରିମ ଭାଷା ଭାବରେ ଏହାକୁ ସେ ବିଶ୍ୱରେ ଉଦ୍ଭାବିତ ପ୍ରଥମ କୃତ୍ରିମ ଭାଷା 'ଏସପେରାଣ୍ଟୋ'(Esperanto) ସହିତ ତୁଳନା କରିଛନ୍ତି। ସାରା ପୃଥିବୀରେ ସାର୍ବଜନୀନ ଭାବରେ ବ୍ୟବହୃତ ହୋଇପାରିବା ଭଳି ଏକ କୃତ୍ରିମ ଉଦ୍ଭାବିତ ଭାଷା ହେଉଛି ଏସପେରାଣ୍ଟୋ। ଏହାକୁ ପୋଲଣ୍ଡ ନିବାସୀ ଲଡଉଇଗ ଲାଜାରସ ଯାମେନହଫ ପ୍ରଥମେ ପ୍ରସ୍ତୁତ କରିଥିଲେ ରୁଷୀୟ ଭାଷାରେ। ୧୯୦୫ ମସିହାରୁ ଏହି ଭାଷା ଆନ୍ତର୍ଜାତିକ ସ୍ତରରେ ପ୍ରାୟ ୧୦ରୁ ୧୫ଲକ୍ଷ ଲୋକଙ୍କ ଦ୍ୱାରା ବ୍ୟବହାର ହୋଇ ଆସୁଛି। ରଙ୍ଗାଧରଙ୍କ ମତରେ 'ନାଇଲ ହେଉଛି ପୃଥିବୀର ଦ୍ୱିତୀୟ କୃତ୍ରିମ ଭାଷା ଓ ଭାରତରେ ପ୍ରଥମ।"

ଭାରତରେ ପ୍ରଚଳିତ ଭାଷାମାନଙ୍କର ଲିପି ବା ବର୍ଣ୍ଣମାଳା ସଂଖ୍ୟାଧିକ ଏବଂ ଅନ୍ୟାନ୍ୟ ପଡ଼ୋଶୀମାନଙ୍କ ଭାଷାର ଲିପି ବା ଅକ୍ଷର ପଢ଼ିବାକୁ ଆମେ ସକ୍ଷମ ନୋହୁଁ। ସେଇ ପରିପ୍ରେକ୍ଷୀରେ ଏକ ସମାଧାନର ସୂତ୍ର ସ୍ୱରୂପ ନାଇଲ ଲିପିର ଉଦ୍ଭାବନ ବୋଲି କହନ୍ତି ରଙ୍ଗାଧର। ୨୧ ଅକ୍ଷର ବିଶିଷ୍ଟ ଏକ ବର୍ଣ୍ଣମାଳା ପ୍ରସ୍ତୁତ କରି ଏହାର ଶବ୍ଦମାଳା, ବ୍ୟାକରଣ ଓ ଭାଷା ପ୍ରୟୋଗକୁ ସେ ବିକଶିତ କରିଛନ୍ତି। ୨୧ ଅକ୍ଷର ବିଶିଷ୍ଟ ବର୍ଣ୍ଣମାଳାରେ ରହିଛି ୫ଟି ସ୍ୱରବର୍ଣ୍ଣ ଓ ୧୬ଟି ବ୍ୟଞ୍ଜନ ବର୍ଣ୍ଣ। ଓଡ଼ିଆ ଭାଷାକୁ ଆଧାର କରି ଏହାର ବର୍ଣ୍ଣମାଳା ବିକଶିତ। 'ନାଇଲ' ପୁସ୍ତକ ପ୍ରଣୟନ ପାଇଁ ଓଡ଼ିଆ ସହିତ ଇଂରାଜୀ ଓ ହିନ୍ଦୀ ଭାଷାର ସାହାଯ୍ୟ ମଧ୍ୟ ନିଆଯାଇଛି। ଏହି ପୁସ୍ତକରେ ନାଇଲ ଅକ୍ଷର, ଶବ୍ଦାବଳୀ ଓ ବ୍ୟାକରଣ ପ୍ରଭୃତିର ରଚନା ଶୈଳୀ ସହିତ ଛୋଟଗଳ୍ପ ଓ ଛୋଟ କବିତା ରଚନା ନମୂନା ପ୍ରଦତ୍ତ ହୋଇଛି। ଅବଶ୍ୟ ଭାଷା ବୈଜ୍ଞାନିକ ଦୃଷ୍ଟିକୋଣରୁ ନାଇଲ ଲିପି ଗଠନ ପଦ୍ଧତିର ବିଚାର ବିଶ୍ଲେଷଣର ଆବଶ୍ୟକତା ରହିଛି।

ମଣିଷ ସୃଷ୍ଟ ଲିଖନ ପଦ୍ଧତି ଉଦ୍ଭାବନର ଏକ ଉଲ୍ଲେଖଯୋଗ୍ୟ ନିଦର୍ଶନ ହେଉଛି **ବ୍ରେଲ୍ ଲିପି** ବା Braille । ସମାଜରେ ବାସ କରୁଥିବା ଦୃଷ୍ଟିହୀନମାନଙ୍କର ଦର୍ଶନ ସମସ୍ୟା ନିରାକରଣ ଉଦ୍ଦେଶ୍ୟରେ ସାର୍ବଜନୀନ ଭାବରେ ପ୍ରସ୍ତୁତ ହୋଇଥିଲା ବ୍ରେଲଲିପି। ଏହି ପଦ୍ଧତିର ଉଦ୍ଭାବକ ହେଉଛନ୍ତି ଫ୍ରେଞ୍ଚ ଭାଷାର ଅଧ୍ୟାପକ ଲୁଇ ବ୍ରେଲ (Louis Braille), ଯିଏକି ନିଜେ ଶିଶୁ ଅବସ୍ଥାରେ ୩ବର୍ଷ ବୟସରେ ଦୃଷ୍ଟିହୀନ ହୋଇଯାଇଥିଲେ। ଦୃଷ୍ଟିଶକ୍ତି ହରାଇଥିଲେ ବି ସେ ଫ୍ରାନ୍ସର ରୟାଲ୍ ଇନ୍‌ଷ୍ଟିଚ୍ୟୁଟ ଫର ବ୍ଲାଇଣ୍ଡ୍ ୟୁଥର ମେଧାବୃତ୍ତି ପାଇଥିଲେ ଓ ସେହିଠାରେ ପ୍ରଫେସର ଭାବରେ କାମ କରିଥିଲେ। ୧୮୨୪ ମସିହାରେ ୧୬ବର୍ଷ ବୟସରେ ଏହି ବ୍ରେଲ ପଦ୍ଧତିକୁ ଉଦ୍ଭାବନ କରିଥିଲେ ଲୁଇ ବ୍ରେଲ୍। ଦୃଷ୍ଟିହୀନମାନଙ୍କୁ ଅକ୍ଷର ଶିକ୍ଷା ମାଧ୍ୟମରେ ଚିର ଅନ୍ଧକାର ମଧ୍ୟରୁ ପୃଥିବୀର ଜ୍ଞାନାଲୋକକୁ ସନ୍ଦର୍ଶନ କରିପାରିବାର ସାମର୍ଥ୍ୟ ସୃଷ୍ଟି ପାଇଁ ଲୁଇ ଚିରକାଳ ଅବିସ୍ମରଣୀୟ ହୋଇ ରହିବେ। **ଭାଷା ଓ ଲିପି** ସଂକଳନରେ 'ଲୁଇ ବ୍ରେଲ ଓ ଓଡ଼ିଆ ଭାରତୀ ବ୍ରେଲ' ପ୍ରବନ୍ଧକୁ ସ୍ଥାନିତ କରି ପୁଣ୍ୟାତ୍ମା ଲୁଇ ଓ ଦୃଷ୍ଟିହୀନମାନଙ୍କ ଜ୍ଞାନାର୍ଜନ ଉଦ୍ଦେଶ୍ୟରେ ପ୍ରଚାର ଓ ପ୍ରସାର ପାଇଁ ଯତ୍‌ସାମାନ୍ୟ ସହଯୋଗ କରିବାକୁ ସମର୍ଥ ହୋଇପାରିଥିବାରୁ ନିଜକୁ ଗୌରବାନ୍ୱିତ ମନେ କରୁଛି। ଏହି ଅବସରରେ ମଧ୍ୟ ମୁଁ ସଂକଳିକା ଭାବରେ ବିଶ୍ୱ ବନ୍ଦିତା ଦୃଷ୍ଟିବାଧିତ ତଥା ଏକାଧାରରେ ଲେଖିକା, ବିଶ୍ୱଭ୍ରମଣକାରୀ ମହାନ୍ ଆତ୍ମା ହେଲେନ୍ କେଲରଙ୍କ ଅବଦାନକୁ ଏଠାରେ ସ୍ମରଣ କରୁଛି।

**ଭାଷା ଓ ଲିପି** ସଂକଳନର ଶେଷ ଭାଗରେ ସ୍ଥାନିତ ହୋଇଛି ଜନ୍ ବିମସ୍‌ଙ୍କ 'କମ୍ପାରେଟିଭ୍ ଗ୍ରାମାର', (୧୮୭୧), ପୁସ୍ତକରୁ ସଂଗୃହୀତ ଓଡ଼ିଆ ଲିପି ସଂପର୍କିତ ପ୍ରବନ୍ଧାଂଶ The Art of Writing (ପୃ.୬୨-୬୬) ଏବଂ ଜି.ଏ ଗ୍ରୀୟରସନ୍‌ଙ୍କ ଦ୍ୱାରା ପ୍ରସ୍ତୁତ 'ଲିଙ୍ଗ୍ୟୁଷ୍ଟିକ୍ ସର୍ଭେ ଅଫ୍ ଇଣ୍ଡିଆ, ଭଲ୍ୟୁମ-୫, ପାର୍ଟ-୨, (୧୯୦୩) ପୁସ୍ତକରୁ ପ୍ରବନ୍ଧାଂଶ Oriya Written Character (ପୃ.୩୭୫-୩୭୬) । ଉନବିଂଶ ଶତାବ୍ଦୀର ସତୁରୀ ଦଶକ ଓ ବିଂଶ ଶତାବ୍ଦୀର ପ୍ରଥମ ଦଶକ ସମୟରେ ବିଦେଶୀ ମିଶନାରୀ ପ୍ରଶାସକଙ୍କ ଦ୍ୱାରା ଲିଖିତ ପ୍ରବନ୍ଧରେ ଓଡ଼ିଆ ଲିପି ସଂବନ୍ଧରେ ଅତ୍ୟନ୍ତ କଟୁ ଓ ଅପ୍ରୀତିକର ମନ୍ତବ୍ୟ ପ୍ରକାଶ କରାଯାଇଥିଲେ ମଧ୍ୟ ସେଥିପ୍ରତି ଓଡ଼ିଆଭାଷୀମାନଙ୍କର ଉଦାସୀନ ଓ ନିର୍ବିରୋଧ ମନୋଭାବ ଆଶ୍ଚର୍ଯ୍ୟଜନକ ମନେହୁଏ। ବିମସ୍‌ଙ୍କ ମତରେ, 'the Oriya character, which is of all Indian Characters, the ugliest, clumsiest, and most combrous", ଏବଂ ଗ୍ରୀୟରସନ୍‌ଙ୍କ ମତରେ, "Oriya is encumbered with the drawback of an exclusively awakward combrous written character". ଓଡ଼ିଆ ଲିପିର ଲିଖିତ ରୂପ ବିଷୟରେ ବିମସ୍ ଓ ଗ୍ରିୟରସନ୍‌ଙ୍କର ଏପରି

ପ୍ରତିକୂଳ ମନ୍ତବ୍ୟ ସତ୍ତ୍ୱେ ବିଦେଶୀ ମିଶନାରୀ ପ୍ରଶାସକମାନଙ୍କର ଓଡ଼ିଆ ଭାଷା ପ୍ରୀତି ଏବଂ ଭାଷା ଓ ସାହିତ୍ୟର ଉନ୍ନତିବର୍ଦ୍ଧନ କ୍ଷେତ୍ରକୁ ଅବଦାନ ଅତୁଳନୀୟ ।

ନିକଟରେ ଓରିଏଣ୍ଟ ବ୍ଲାକସ୍ୱାନ ଦ୍ୱାରା ପ୍ରକାଶ ପାଇଛି **ଭାରତୀୟ ଭାଷା ଲୋକ ସର୍ବେକ୍ଷଣ (PLSI) - ଓଡ଼ିଶାର ଭାଷା ସମୂହ-** ଖଣ୍ଡ ୨୨, ଭାଗ ୩, ନାମକ ଗ୍ରନ୍ଥ, ୨୦୧୬ରେ । ଗ୍ରନ୍ଥର ମୁଖ୍ୟ ସଂପାଦକ ଗଣେଶ ଦେବୀ ଓ ଖଣ୍ଡ ସଂପାଦକ ଦେବୀ ପ୍ରସନ୍ନ ପଟ୍ଟନାୟକ, ମହେନ୍ଦ୍ର କୁମାର ମିଶ୍ର । ସାଂପ୍ରତିକ ସମୟରେ ଓଡ଼ିଆ ଭାଷା ସମ୍ବନ୍ଧରେ ସର୍ବେକ୍ଷଣଭିତ୍ତିକ ଏକ ପ୍ରାମାଣିକ ତଥ୍ୟ ସଂବଳିତ ଗ୍ରନ୍ଥ ଭାବରେ ଏହା ଗ୍ରହଣଯୋଗ୍ୟ । ଏହି ଗ୍ରନ୍ଥରେ ପ୍ରଚଳିତ ଓଡ଼ିଆ ଲିପିର ସ୍ୱରବର୍ଣ୍ଣ, ବ୍ୟଞ୍ଜନ ବର୍ଣ୍ଣ, ମାତ୍ରା, ଫଳା ଓ ଯୁକ୍ତାକ୍ଷରର ଫଟୋ କପି ନିମ୍ନରେ ପ୍ରଦତ୍ତ ।

## ଲିପି

**ସ୍ୱରବର୍ଣ୍ଣ**

ଅ, ଆ, ଇ, ଈ, ଉ, ଊ, ଋ, ୠ, ଏ, ଐ, ଓ, ଔ

କ ଖ ଗ ଘ ଙ

ଚ ଛ ଜ ଝ ଞ

ଟ ଠ ଡ ଢ ଣ

ତ ଥ ଦ ଧ ନ

ପ ଫ ବ ଭ ମ

ଯ ୟ ର ଲ ଳ ବ ଶ ଷ ସ ହ କ୍ଷ

**ମାତ୍ରା**

କା କି କୀ କୁ କୂ କେ କୈ କୋ କୌ କଂ କଃ କଁ

**ଫଳା**

କ୍ୟ କ୍ର କ୍ଲ କ୍ୱ କ୍ମ କ୍ନ କୃ ର୍କ

**ଯୁକ୍ତାକ୍ଷର**

ଙ୍କ ଙ୍ଖ ଙ୍ଗ ଙ୍ଘ ଞ୍ଚ

ଞ୍ଜ ଞ୍ଝ ଣ୍ଟ ଣ୍ଠ ଣ୍ଡ ଣ୍ଢ

ତ୍ତ ତ୍ନ ନ୍ଦ ନ୍ଧ ମ୍ପ ମ୍ଫ

ନ୍ନ ମ୍ମ ସ୍କ ଷ୍କ ସ୍ଗ ଦ୍ଧ ଦ୍ଭ

ଲ୍ଟ ସ୍ତ ବ୍ଲ ବ୍‌ଟ ଳ୍କ ଷ୍ଟ

ଷ୍ଟ ଷ୍ଠ ପ୍ତ ସ୍ପ ଦ୍ଦ ଦ୍ଧ

ମ୍ନ ମ୍ମ ଷ୍ଡ ଦ୍ଦ ଭ୍ଭ ସ୍ବ

ଲ୍ଲ ହ୍ନ ପ୍ପ ହ୍ମ ଦ୍ଭ ହ୍ମ ର୍ଣ୍ଣ

ଗ୍ରନ୍ଥରେ ଦେବୀ ପ୍ରସନ୍ନ ପଟ୍ଟନାୟକ ଲେଖିଥିବା ଖଣ୍ଡାଂଶରେ ଓଡ଼ିଆ ଲିପିର ଐତିହାସିକ ବିବର୍ତ୍ତନ, ଓଡ଼ିଆ ଅକ୍ଷର ଗଠନ ଏବଂ ଓଡ଼ିଆ ବର୍ଣ୍ଣମାଳା ସମ୍ବନ୍ଧରେ ତଥ୍ୟଭିତ୍ତିକ ସୂଚନା ଅନ୍ତର୍ଭୁକ୍ତ। ଦେବୀ ପ୍ରସନ୍ନଙ୍କ ମତରେ "ପ୍ରାଚୀନ ଓଡ଼ିଆ ଲିପି ୧୭ଶ ଶତାବ୍ଦୀଠାରୁ ବିକଶିତ ହୋଇ ଆଧୁନିକ ଓଡ଼ିଆ ଲିପିରେ ପରିଣତ ହୋଇଛି" ଏବଂ "୧୭ଶ ଶତାବ୍ଦୀଠାରୁ ଅଦ୍ୟାବଧି ଲିଖିତ ତାଳପତ୍ର ପୋଥି, ଶିଳାଲେଖ, ତାମ୍ରଲେଖ ଓ ମୁଦ୍ରିତ ଗ୍ରନ୍ଥମାନଙ୍କରେ ଏହି ଲିପି ବ୍ୟବହୃତ ହୋଇଅଛି"। ଓଡ଼ିଆ ଲିପିର ବୈଶିଷ୍ଟ୍ୟ ବିଷୟରେ ସେ କହନ୍ତି, "ଓଡ଼ିଆ ଲିପିରେ ମୁଖ୍ୟତଃ ଚାରୋଟି ବୈଶିଷ୍ଟ୍ୟ ଲକ୍ଷ୍ୟ କରାଯାଇଥାଏ, ଯଥା- (୧)ଶିରୋଦେଶରେ ଅର୍ଦ୍ଧବୃତ୍ତାକାର ମଣ୍ଡଳୀ (top curve), (୨)ପୁଡ଼ା (loop), (୩) ପୁଚ୍ଛ (tail) ଓ (୪) କୋଣହୀନ କୁଟିଳ ବ୍ରକରେଖା।" ଓଡ଼ିଆ ଅକ୍ଷର ଗଠନ ସମ୍ବନ୍ଧରେ ସେ କହିଛନ୍ତି, "ଓଡ଼ିଆରେ ଅକ୍ଷର ଦୁଇଟି ଅର୍ଥରେ ବ୍ୟବହୃତ ହୁଏ, ପ୍ରଥମରେ ଏହା ବର୍ଣ୍ଣର ଲିଖିତ ରୂପକୁ ବୁଝାଏ ଏବଂ ଦ୍ୱିତୀୟରେ ଏହା ଏକ ସିଲେବଲ୍ (syl-lable), ଯଥା- ଆ, କ, କା, କୁ ଆଦିକୁ ବୁଝାଏ। ଓଡ଼ିଆ ବର୍ଣ୍ଣମାଳା ବିଷୟ ଉଲ୍ଲେଖ କରି ସେ କହନ୍ତି, "ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର କଲେ ଏହି ମୁଖନିସୃତ ଧ୍ୱନି ଭାଷଣାବୟବମାନଙ୍କର ପରିଚାଳନା ଦ୍ୱାରା ବାକ୍ ଯନ୍ତ୍ରରେ ସୃଷ୍ଟି ହୋଇଥାଏ।" **ଭାଷା ଓ ଲିପି** ସଂକଳନରେ ମଧ୍ୟ ଓଡ଼ିଆ ଲିପି ବିଷୟରେ ବିଭିନ୍ନ ଭାଷାବିତ୍‌ମାନଙ୍କ ଦ୍ୱାରା ବିଶଦ ଆଲୋଚନାମାନ ଅନ୍ତର୍ଭୁକ୍ତ ହୋଇଛି। **ଭାରତୀୟ ଭାଷା ଲୋକ ସର୍ବେକ୍ଷଣ** ଗ୍ରନ୍ଥରେ ପ୍ରଦତ୍ତ ପ୍ରାମାଣିକ ତଥ୍ୟାବଳୀକୁ ଭିତ୍ତିକରି ଏବଂ ଆଲୋଚ୍ୟ ସଂକଳନ **ଭାଷା** ଓ ଲିପିରେ ଭାଷାଭିଜ୍ଞ ଆଲୋଚକମାନଙ୍କର ସମଧର୍ମୀ ସଂସ୍କାର ପ୍ରସ୍ତାବଗୁଡ଼ିକୁ ବିଚାର ଆଲୋଚନାର ପରିସରଭୁକ୍ତ କରି ଓଡ଼ିଆ ବର୍ଣ୍ଣମାଳାର ଏକ ସର୍ବଜନଗ୍ରାହ୍ୟ ଚୂଡ଼ାନ୍ତ ରୂପ ନିର୍ଣ୍ଣୟ କରିବାର ସମୟ ବର୍ତ୍ତମାନ ଉପସ୍ଥିତ।

ପରିଶେଷରେ କୁହାଯାଇପାରେ ଯେ ଲିପି ହେଉଛି ଅକ୍ଷରର ଉତ୍ସ ଏବଂ ଲିପି ମଧ୍ୟ ଭାଷାର ବର୍ଣ୍ଣମାଳା। ଓଡ଼ିଆ ଲିପିର ଗଠନ ପ୍ରକ୍ରିୟାରେ ୩ଟି ମହତ୍ତ୍ୱପୂର୍ଣ୍ଣ ଦିଗ ଉଲ୍ଲେଖଯୋଗ୍ୟ। ପ୍ରଥମତଃ ସାଧାରଣ ଭାବରେ ଲିପି ମନୁଷ୍ୟକୃତ। ମନୁଷ୍ୟର ଭାବନା ଓ କଥନକୁ ସ୍ଥିର ଓ ସ୍ଥାୟୀ ରୂପ ଦେବାପାଇଁ ଏହା ଏକ ମାନସିକ ପ୍ରୟାସ। ବିଶ୍ୱ ସ୍ତରରେ ଲିପି ସୃଷ୍ଟିର ଐତିହାସିକ ଭିତ୍ତିଭୂମି ରହିଛି। ପ୍ରାଚୀନ କାଳରୁ ଏହା କାଳକ୍ରମେ ବିବର୍ତ୍ତିତ ହୋଇ ଚିତ୍ରଲିପି ସ୍ତରରୁ ଆଜିର ଆଧୁନିକ ରୂପ ଧାରଣ କରିଛି। ଓଡ଼ିଆ ଲିପିର ସ୍ୱରୂପ ଗଠନ କାଳୀନ ସୂଚନା ସଂକଳନରେ ବର୍ଣ୍ଣିତ ଏବଂ ଆଧୁନିକ ଓଡ଼ିଆ ଲିପିର ଗଢ଼ଣ ମଧ୍ୟ ସମୟ ସ୍ରୋତରେ ଚିତ୍ରରୂପ, ଶିଳାଲେଖ, ତାମ୍ରଲେଖ ଏବଂ ପ୍ରତ୍ନ-ଉତ୍ତରପୂର୍ବ-ଭାରତୀୟ ଲିପି (ଧଳ, ୧୯୭୬) ପ୍ରଭୃତି ବିବର୍ତ୍ତିତ ସ୍ତର ଅତିକ୍ରମ କରି ଆଧୁନିକ ରୂପ ଗ୍ରହଣ କରିଛି। ଦ୍ୱିତୀୟରେ ଓଡ଼ିଆ ଲିପିର ଉଚ୍ଚାରଣ ଓ ଧ୍ୱନି ପଦ୍ଧତି ମୁଖ୍ୟତଃ ପାରମ୍ପରିକ ସଂସ୍କୃତର ଧ୍ୱନି ପଦ୍ଧତି ଦ୍ୱାରା

ପ୍ରଭାବିତ ଓ ନିୟନ୍ତ୍ରିତ। ଭାରତୀୟ ପରିପ୍ରେକ୍ଷୀରେ ବର୍ତ୍ତମାନ ସଂସ୍କୃତ ଏକ ଅପ୍ରଚଳିତ ଭାଷା, ଏହାର କଥିତ ଓ ନିର୍ଦ୍ଦିଷ୍ଟ ଲିଖିତ ରୂପ ନାହିଁ। ପ୍ରାଦେଶିକ ଲିପି ବା ଦେବନାଗରୀ ଲିପିରେ ଏହା ଲିଖିତ। ସେହି କାରଣରୁ ଆଧୁନିକ କଥିତ ଓଡ଼ିଆ ଭାଷାରେ ଲିପିର ଉଚ୍ଚାରଣ ଓ ଧ୍ୱନି ପଦ୍ଧତି ଅନୁସାରେ ଅକ୍ଷର ଗଠନ ପଦ୍ଧତି ବର୍ଣ୍ଣନା ଓ ସ୍ୱାତନ୍ତ୍ର୍ୟ ସ୍ଥାପନରେ ସଂସ୍କୃତର ପ୍ରଭାବ ପ୍ରଧାନ ଅନ୍ତରାୟ ଏବଂ ଏହା ଜନ୍ମଗତ। ଜନ୍ମଗତ ଓ ପାରମ୍ପରିକ ପ୍ରଭାବରୁ ମୁକ୍ତି ପାଇବା ପାଇଁ ଓଡ଼ିଆ ଲିପି ସଂସ୍କାର ପ୍ରସଙ୍ଗ ଆଜି ସମସ୍ୟା ରୂପେ ଚର୍ଚ୍ଚାର ବିଷୟ। ତୃତୀୟ ଦିଗଟି ହେଉଛି ଓଡ଼ିଆ ଲିପିର ସ୍ୱାତନ୍ତ୍ର୍ୟ ଓ ଲିଖନ ଶୈଳୀ ପ୍ରତିପାଦନରେ ପ୍ରାଦେଶିକତାର ପ୍ରଭାବ। ତାତ୍କାଳିକଭିତ୍ତିରେ ତାଳପତ୍ର ଉପରେ ଲୌହ ଲେଖନୀର ଚାଳନା ଦ୍ୱାରା ଲିଖିତ ଓଡ଼ିଆ ଅକ୍ଷରର ବର୍ତ୍ତୁଳାକାର ରୂପ ଏହାର ନମୂନା ଏବଂ ଓଡ଼ିଆରେ କରଣୀ ଅକ୍ଷରର ପ୍ରଚଳନ ତାହାର ପ୍ରମାଣ।

ପୂର୍ବରୁ କୁହାଯାଇଛି ଯେ, ଉନ୍ନବିଂଶ ଶତାବ୍ଦୀରେ ମଧୁସୂଦନ ରାଓଙ୍କ ପ୍ରଣୀତ 'ବର୍ଣ୍ଣବୋଧ' ଆଜିର ଆଧୁନିକ ଓଡ଼ିଆ ବର୍ଣ୍ଣମାଳାର ପଟ୍ଟଭୂମି। କିନ୍ତୁ ବିଗତ ପ୍ରାୟ ଶହେ ବର୍ଷରୁ ଉର୍ଦ୍ଧ୍ୱକାଳ ଧରି ମଧୁସୂଦନଙ୍କ ବର୍ଣ୍ଣବୋଧର ମାତ୍ରାଧିକ ଅନୁକରଣ, ଅନୁସରଣ ଓ ବିଭିନ୍ନ ସଂସ୍କରଣ ପ୍ରସ୍ତୁତି ମାଧ୍ୟମରେ ଏହାର ସଂକ୍ରମିତ ଓ ପରିବର୍ତ୍ତିତ ବିବିଧ ରୂପ ଆଜି ସମସ୍ୟା ଜର୍ଜରିତ। ମଧୁସୂଦନଙ୍କ ବର୍ଣ୍ଣବୋଧର ଭ୍ରମାତ୍ମକ ଅନୁକରଣ ପରିବର୍ତ୍ତେ ପ୍ରଚଳିତ ଓଡ଼ିଆ ବର୍ଣ୍ଣମାଳାର ନବୀକରଣ କରିବାର ଆବଶ୍ୟକତା ଜରୁରୀ ହୋଇଛି। ଆଜିର ଆଧୁନିକ ପ୍ରଯୁକ୍ତି ବିଜ୍ଞାନ ଓ ଡିଜିଟାଇଜେସନ୍ ଯୁଗରେ ବର୍ଣ୍ଣମାଳା ପ୍ରସ୍ତୁତିରେ କମ୍ପ୍ୟୁଟରୀକରଣ ପଦ୍ଧତି ଅବଲମ୍ବନ ବାଧ୍ୟତାମୂଳକ ହୋଇଥିବାରୁ ପୁରାତନ ବର୍ଣ୍ଣମାଳା ଗଠନ ପଦ୍ଧତିରେ ପରିବର୍ତ୍ତନ ଓ ନୂତନତାକୁ ଗ୍ରହଣ କରିବା ଏକ ଆହ୍ୱାନ।

ଓଡ଼ିଆରେ କଥନ ଓ ଲେଖନ ପଦ୍ଧତି ମଧ୍ୟରେ ବିଶେଷ ପ୍ରଭେଦ ନାହିଁ। ଲିପି ବିଜ୍ଞାନ ଅନୁସାରେ ଓଡ଼ିଆର ଲେଖନ ପଦ୍ଧତି ଆକ୍ଷରିକ ଅର୍ଥାତ୍ ବର୍ଣ୍ଣମାଳାର ପ୍ରତ୍ୟେକ ବ୍ୟଞ୍ଜନର ଉଚ୍ଚାରିତ ରୂପ ହେଉଛି ଅକ୍ଷର, ଯାହାକୁ ଇଂରାଜିରେ କୁହାଯାଏ syllable। ସିଲେବ୍ଲରେ ଥିବା ସ୍ୱର (ସ୍ୱରବର୍ଣ୍ଣ) ସିଲେବ୍ଲର ମୂଳ ଉପାଦାନ ଓ ବ୍ୟଞ୍ଜନ ତାହାର ଆଶ୍ରିତ। ଅର୍ଥାତ୍ ଗୋଟିଏ ଶବ୍ଦରେ ଯେତେଟା ସ୍ୱର ଥାଏ, ସେଥିରେ ସେତେଟା ସିଲେବ୍ଲ ବା ଅକ୍ଷର ଥାଏ। ଭାଷାର ଉଚ୍ଚାରଣଗତ ବୈଶିଷ୍ଟ୍ୟ ଅନୁସାରେ ଏକ ବର୍ଣ୍ଣମାଳାର ପ୍ରତ୍ୟେକ ଲିଖିତ ଏକକ ହେଉଛି ଅକ୍ଷର ବା ବର୍ଣ୍ଣଗ୍ରାମ ବା ଧ୍ୱନି ଏକକ।

ଓଡ଼ିଆ ଲିପିର ଗଠନ ପଦ୍ଧତିରେ ବର୍ଣ୍ଣମାଳାର ଦୁଇଟି ରୂପ ସ୍ପଷ୍ଟ ହୁଏ, ପ୍ରଥମଟି ଏହାର ମୌଳିକ ରୂପ, ଏହା ସ୍ଥିର, ଅପରିବର୍ତ୍ତନୀୟ ଓ ସଂଖ୍ୟାରେ ସୀମିତ ଏବଂ ଅନ୍ୟଟି ଏହାର ପ୍ରୟୋଗାତ୍ମକ ବା ବ୍ୟାବହାରିକ ରୂପ, ଯାହାକି ମୁକ୍ତ, ସଂଖ୍ୟାଧିକ ଓ ପରିବର୍ତ୍ତନଶୀଳ। ମୌଳିକ ରୂପ ବିଭାଗ ଅନ୍ତର୍ଗତ ଅକ୍ଷରଗୁଡ଼ିକ ଆକ୍ଷରିକ ଏବଂ ଉଚ୍ଚାରଣ

ନିର୍ଦ୍ଦିଷ୍ଟ ଧ୍ୱନି ଏକକ ଦ୍ୱାରା ନିୟନ୍ତ୍ରିତ ଏବଂ ପ୍ରତ୍ୟେକ ଅକ୍ଷର ଏକ ବର୍ଣ୍ଣଗ୍ରାମ ବା ସିଲେବ୍ଲ। ପ୍ରୟୋଗାତ୍ମକ ବା ବ୍ୟାବହାରିକ ରୂପ ବିଭାଗ ଅନ୍ତର୍ଗତ ଅକ୍ଷର ଗୁଡ଼ିକର ଗଠନ ପ୍ରଣାଳୀ ଭାଷାରେ ବ୍ୟବହୃତ ଶବ୍ଦଗଠନ ସହିତ ସଂପୃକ୍ତ ଏବଂ ଏହାର ଗଠନ ପଦ୍ଧତି ଯୌଗିକ। ଏହି ବିଭାଗରେ ବର୍ଣ୍ଣମାଳାର ମାତ୍ରା, ଫଳା ଏବଂ ଯୁକ୍ତାକ୍ଷର ପ୍ରଭୃତି ସ୍ଥାନିତ।

ଓଡ଼ିଆ ଅକ୍ଷରର ଉଚ୍ଚାରଣଗତ ବୈଶିଷ୍ଟ୍ୟକୁ ଆଧାର କରି ପ୍ରସ୍ତାବିତ ଓଡ଼ିଆ ବର୍ଣ୍ଣମାଳାର ନମୂନା ସ୍ୱରୂପ ଏକ ଚାର୍ଟ ନିମ୍ନରେ ପ୍ରଦତ୍ତ। ଭାଷା ଓ ଲିପି ସଂକଳନରେ ପ୍ରସ୍ତାବିତ ଲିପି ସଂସ୍କାର ପ୍ରକ୍ରିୟାରେ ଏହାର ଭୂମିକା ବିଚାର୍ଯ୍ୟ ଏବଂ ଏହା ପରୀକ୍ଷା ସାପେକ୍ଷ।

## ପ୍ରସ୍ତାବିତ ଆଧୁନିକ ଓଡ଼ିଆ ଲିପି / ବର୍ଣ୍ଣମାଳା

### (କ) ମୌଳିକ ରୂପ : ଅକ୍ଷର ସଂଖ୍ୟା-୪୦

ସ୍ୱରବର୍ଣ୍ଣ : ଅ ଆ ଇ ଉ ଏ ଓ

ଦ୍ୱିତ୍ୱ ବର୍ଣ୍ଣ : ଐ ଔ ଓ୍ୱ ୟ

ବର୍ଗ୍ୟ ବ୍ୟଂଜନ ବର୍ଣ୍ଣ : କ ଖ ଗ ଘ
ଚ ଛ ଜ ଝ
ଟ ଠ ଡ ଢ
ତ ଥ ଦ ଧ
ପ ଫ ବ ଭ

ନାସିକ୍ୟ ବର୍ଣ୍ଣ : ଣ ନ ମ

ଅବର୍ଗ୍ୟ ବ୍ୟଂଜନ ବର୍ଣ୍ଣ : ର ଳ ଲ ସ ହ
ଡ଼ ଢ଼

ଅଯୋଗବାହ ମାତ୍ରା : ଂ ଁ ୍

### (ଖ) ପ୍ରୟୋଗାତ୍ମକ / ବ୍ୟାବହାରିକ ରୂପ

ମାତ୍ରା (ସ୍ୱରବର୍ଣ୍ଣ)

ଆ : ●ା ଇ : ●ି ଉ : ●ୁ ଏ : ୈ● ଓ : ୈ●ା

ଦ୍ୱତ୍ୱ ମାତ୍ରା

ଐ : ୈ● ଔ : ୈ●ୗ ଓ୍ୱ : ●୍ୱ ୟ : ●ୟ

**ଅଯୋଗବାହ ମାତ୍ରା :** ◌ଂ ◌ଁ ◌୍

(ଅନୁସ୍ୱାର, ଚନ୍ଦ୍ରବିନ୍ଦୁ, ହଳନ୍ତ ପ୍ରୟୋଗ)

**ଫଳା (ବ୍ୟଂଜନ ବର୍ଣ୍ଣ)**

ନ : ◌୍ନ, ମ : ◌୍ମ, ର : ◌୍ର, ରେଫ(ର+●): ର୍◌ ଳ : ◌୍ଳ ଲ : ◌୍ଲ

**ଯୁକ୍ତାକ୍ଷର ରୂପ :**

ଯୁକ୍ତାକ୍ଷର -୧

| ବର୍ଗ୍ୟ ବ୍ୟଂଜନ | ଆଧୁନିକ ପ୍ରୟୋଗ | ପାରଂପରିକ ପ୍ରୟୋଗ |
|---|---|---|
| ୦ଂକ ୦ଂଖ ୦ଂଗ ୦ଂଘ | ପଂକ ଶଂଖ ସଂଗ ଜଂଘ | ଙ୍କ ଙ୍ଖ ଙ୍ଗ ଙ୍ଘ |
| ୦ଂଚ ୦ଂଛ ୦ଂଜ ୦ଂଝ | ମଂଚ ବାଂଛା ଲାଂଜ ଝଂଝା | ଞ୍ଚ ଞ୍ଛ ଞ୍ଜ ଞ୍ଝ |
| ୦ଂଟ ୦ଂଠ ୦ଂଡ ୦ଂଢ | ଘଂଟା କଂଠ ମୁଂଡ ସଂଢ | ଣ୍ଟ ଣ୍ଠ ଣ୍ଡ ଣ୍ଢ |
| ୦ଂତ ୦ଂଥ ୦ଂଦ ୦ଂଧ | ଅଂତ କଂଥା ଛଂଦ ଗଂଧ | ନ୍ତ ନ୍ଥ ନ୍ଦ ନ୍ଧ |
| ୦ଂପ ୦ଂଫ ୦ଂବ ୦ଂଭ | କଂପ ବାଂଫି ଆଂବ ଦଂଭ | ମ୍ପ ମ୍ଫ ମ୍ବ ମ୍ଭ |

| ଯୁକ୍ତାକ୍ଷର - ୨ | (ଅକ୍ଷର + ଅକ୍ଷର) | ପାରଂପରିକ ପ୍ରୟୋଗ |
|---|---|---|
| କ୍+କ କ୍‌କ | ଚିକ୍‌କଣ | କ୍କ |
| କ୍+ତ କ୍‌ତ | ରକ୍‌ତ | କ୍ତ |
| ଖ୍+ମ ଖ୍‌ମ | ଲଖ୍‌ମି | ଖ୍ମ |
| ଗ୍+ଧ ଗ୍‌ଧ | ଦଗ୍‌ଧ | ଗ୍ଧ |
| ଚ୍ +ଚ ଚ୍‌ଚ | ଉଚ୍‌ଚ | ଚ୍ଚ |
| ଚ୍+ଛ ଚ୍‌ଛ | ଗୁଚ୍‌ଛ | ଚ୍ଛ |
| ଜ୍+ଜ ଜ୍‌ଜ | ଲଜ୍‌ଜା | ଜ୍ଜ |
| ଜ୍+ଝ ଜ୍‌ଝ | କୁଜ୍‌ଝଟିକା | ଜ୍ଝ |
| ଟ୍+ଟ ଟ୍‌ଟ | ଅଟ୍‌ଟହାସ୍ୟ | ଟ୍ଟ |
| ଡ୍+ଗ ଡ୍‌ଗ | ଖଡ୍‌ଗ | ଡ୍ଗ |
| ଡ୍+ଡ ଡ୍‌ଡ | ଉଡ୍‌ଡିୟମାନ | ଡ୍ଡ |
| ତ୍+କ ତ୍‌କ | ଉତ୍‌କଳ | ତ୍କ |
| ତ୍+ତ ତ୍‌ତ୍ | ଉତ୍‌ତାପ | ତ୍ତ |
| ତ୍+ଥ ତ୍‌ଥ | ଉତ୍‌ଥାନ | ତ୍ଥ |
| ତ୍+ପ ତ୍‌ପ | ଉତ୍‌ପନ | ତ୍ପ |
| ତ୍+ସ ତ୍‌ସ | ବତ୍‌ସ | ତ୍ସ |

| | | |
|---|---|---|
| ଦ୍+ଗ ଦ୍‌ଗ | ଦଗ୍‌ଧ | ଦ୍ଗ |
| ଦ୍+ଘ ଦ୍‌ଘ | ଉଦ୍‌ଘାଟନ | ଦ୍ଘ |
| ଦ୍+ଦ୍ ଦ୍‌ଦ | ଉଦ୍‌ଦାମ | ଦ୍ଦ |
| ଦ୍+ଧ ଦ୍‌ଧ | ଉଦ୍‌ଧତ | ଦ୍ଧ |
| ଦ୍+ବ ଦ୍‌ବ | ଉଦ୍‌ବୋଧନ | ଦ୍ବ |
| ଦ୍+ଭ ଦ୍‌ଭ | ଉଦ୍‌ଭବ | ଦ୍ଭ |
| ଦ୍+ଜ ଦ୍‌ଜ | ଉଦ୍‌ଜୋଗ | |
| ପ୍+ତ ପ୍‌ତ | ଉତ୍‌ପତି | ପ୍ତ |
| ପ୍+ପ୍ ପ୍‌ପ | ପିପ୍‌ଲି | ପ୍ପ |
| ପ୍+ସ୍ ପ୍‌ସ | ଅପ୍‌ସରା | ପ୍ସ |
| ବ୍+ଦ ବ୍‌ଦ | ଶବ୍‌ଦ | ବ୍ଦ |
| ବ୍+ଧ ବ୍‌ଧ | ଉପଲବ୍‌ଧି | ବ୍ଧ |
| କ୍+ଳ କ୍‌ଳ | ଶୁକ୍‌ଳ | କ୍ଳ |
| ଳ୍+କ ଳ୍‌କ | ବଳ୍‌କଳ | ଳ୍କ |
| ଳ୍+ପ ଳ୍‌ପ | ଅଳ୍‌ପ | ଳ୍ପ |
| ଳ୍+ଭ ଳ୍‌ଭ | ପ୍ରଗଳ୍‌ଭ | ଳ୍ଭ |
| ଲ୍+କ ଲ୍‌କ | ଉଲ୍‌କା | ଲ୍କ |
| ଲ+ଗ ଲ୍‌ଗ | ଫାଲ୍‌ଗୁନ | ଲ୍ଗ |
| ଲ୍+ଲ ଲ୍‌ଲ | ଉଲ୍‌ଲାସ | ଲ୍ଲ |
| ସ୍+କ ସ୍‌କ | ବୟସ୍‌କ | ସ୍କ |
| ସ୍+ଖ ସ୍‌ଖ | ସ୍‌ଖଳନ | ସ୍ଖ |
| ସ୍+ତ ସ୍‌ତ | ଅସ୍‌ତ | ସ୍ତ |
| ସ୍+ଥ ସ୍‌ଥ | ସୁସ୍‌ଥ | ସ୍ଥ |
| ସ୍+ପ ସ୍‌ପ | ସ୍‌ପନ୍‌ଦନ | ସ୍ପ |
| ସ୍+ଫ ସ୍‌ଫ | ସ୍‌ଫୁଟନ | ସ୍ଫ |

(ଯୁକ୍ତାକ୍ଷରଗୁଡ଼ିକର ଗଠନ ମୁକ୍ତ ଓ ଐଚ୍ଛିକ)

ଆଧୁନିକ ଓଡ଼ିଆ ବର୍ଣ୍ଣମାଳାରେ ବାଦ୍ ପଡିଥିବା ପାରଂପରିକ ଅକ୍ଷର : ଈ ଊ ଋ ୠ ଌ ୡ ଯ ବ (ଅବର୍ଗ୍ୟ) ଶ ଷ କ୍ଷ ପ୍ରଭୃତି ୧୧ଟି ଅକ୍ଷର। ନିର୍ଦ୍ଧାରିତ ଆଧୁନିକ ବର୍ଣ୍ଣମାଳା ବ୍ୟବହାର କରି ବ୍ୟାକରଣ ଓ ଅଭିଧାନ ପ୍ରଣୟନର ଜରୁରୀ ଆବଶ୍ୟକତା ରହିଛି।

***ବିଜୟଲକ୍ଷ୍ମୀ ମହାନ୍ତି***

ଜାଣୁଛି ଧରମ ମୋର ନାହିଁ ମୋ ପ୍ରବୃତ୍ତି
ଜାଣୁଛି ଅଧର୍ମ ମୋର ନାହିଁ ମୋ ନିବୃତ୍ତି
ବସି ହୃଦ ଶତଦଳେ ଦୟାଳୁ ଶ୍ରୀହରି
ଯେପରି ଆଦେଶ ତୁମେ କରେ ମୁଁ ସେପରି ।

- କବି ସୀତାକାନ୍ତ ମହାପାତ୍ର

# ବର୍ଣ୍ଣବୋଧ

## ମଧୁସୂଦନ ରାଓ

**ବର୍ଣ୍ଣବୋଧ ବିଷୟରେ :** 'ଊନବିଂଶ ଶତାବ୍ଦୀର ଓଡ଼ିଆ ଭାଷା ଆନ୍ଦୋଳନ' ପ୍ରବନ୍ଧରେ ବଂଶୀଧର ମହାନ୍ତି ଲେଖିଛନ୍ତି, "୧୮୬୦ସାଲ ପରଠାରୁ ଆଧୁନିକ ଓଡ଼ିଆ ସାହିତ୍ୟର ମୂଳପତ୍ତନ ଗଠିତ ହୋଇଥିଲା। ବହୁ ବାଧାବିଘ୍ନ ମଧ୍ୟରେ ଏ ସାହିତ୍ୟ ୧୮୯୫ ସାଲ ପର୍ଯ୍ୟନ୍ତ ଗତି କରିଥିଲା। ଉକ୍ତ ୨୫ ବର୍ଷ ମଧ୍ୟରେ ସେ ସମୟର ଅଧିକାଂଶ ଲେଖକ ପାଠ୍ୟପୁସ୍ତକ ରଚନା କରିଥିଲେ। ରାଧାନାଥ ଓ ମଧୁସୂଦନଙ୍କ ପରି ଅତି କମ୍ ଲେଖକ ଏ ଦିଗରେ ଅଭିନିବିଷ୍ଟ ହୋଇଥିଲେ"(ଭାଷା ଭାବନା, ପୃ.୨୮୮)। ଊନବିଂଶ ଶତାବ୍ଦୀରେ ଓଡ଼ିଆ ଭାଷାର ଶିକ୍ଷା ଓ ପ୍ରଚାର ପ୍ରସାର ପାଇଁ ପାଠ୍ୟ ପୁସ୍ତକ ପ୍ରଣୟନ କାଳରେ ମଧୁସୂଦନ ରାଓ ରଚନା କରିଥିଲେ **ବର୍ଣ୍ଣବୋଧ** ୧୮୯୫ ସାଲରେ। ଭାଷାର ବର୍ଣ୍ଣମାଳାକୁ ପଠନ ଓ ଶିକ୍ଷଣ ଯୋଗ୍ୟ ଶୃଙ୍ଖଳିତ ପଦ୍ଧତିରେ ସଂଯୋଜନା କରି ସଚିତ୍ର କଥନିକା ମାଧ୍ୟମରେ ପ୍ରଥମେ ଉପସ୍ଥାପନ କରିଥିଲେ ମଧୁସୂଦନ ତାଙ୍କ ରଚିତ **ବର୍ଣ୍ଣବୋଧ**ରେ, ମାତ୍ର ୩୬ ପୃଷ୍ଠା ବିଶିଷ୍ଟ ଏକ କ୍ଷୁଦ୍ର ପୁସ୍ତିକା ଆକାରରେ। ସେତେବେଳକୁ ଓଡ଼ିଆ ଭାଷାର କ୍ରମବିକଶିତ ଲିପି ତା'ର ସଂପୂର୍ଣ୍ଣ ବିବର୍ତ୍ତିତ ରୂପକୁ ପ୍ରକାଶ କରି ସାରିଥିଲା, ଯାହାର ପ୍ରମାଣ ସାରଳା ମହାଭାରତ ଓ ତାଳପତ୍ର ପୋଥି ଲିଖନ ପର୍ଯ୍ୟାୟ କ୍ରମରୁ ମିଳିଥାଏ।

ଓଡ଼ିଆ ଭାଷାର ବର୍ଣ୍ଣମାଳା ଚୟନ ତାତ୍କାଳୀକ ଭିତ୍ତିରେ ସଂସ୍କୃତାନୁସାରୀ ହୋଇଥିଲେ ମଧ ଏହା ଭାଷାର ଉଚ୍ଚାରଣକୁ ବିଧିବଦ୍ଧ ଭାବରେ ପ୍ରତିନିଧିତ୍ୱ କରିଥାଏ। କାରଣ ଓଡ଼ିଆ ଭାଷାର ବର୍ଣ୍ଣ ବା ଉଚ୍ଚାରଣ ପଦ୍ଧତିରେ ପ୍ରତିନିଧିତ୍ୱ କରୁଥିବା ଅକ୍ଷରଗୁଡ଼ିକର ଗଠନ ପଦ୍ଧତି ମୁଖ୍ୟତଃ ସ୍ୱରାନ୍ତ ବିଶିଷ୍ଟ ବା syllabic । ତାଳପତ୍ର ପୋଥିରେ ହସ୍ତ ଓ ଲୌହ ଲେଖନୀ ସାହାଯ୍ୟରେ ଅନୁସୃତ ଲେଖନ ପଦ୍ଧତି ଅକ୍ଷର ଗଠନର ସ୍ୱରୂପକୁ ନିର୍ଣ୍ଣିତ ରୂପ ଦେଇସାରିଥିବାରୁ ଏହାକୁ ବିଦ୍ୟାଳୟ ସ୍ତରରେ ଶିକ୍ଷା ଦେବାପାଇଁ ସ୍ୱତନ୍ତ୍ର ଭାବରେ ଉପସ୍ଥାପିତ କରିଥିଲେ ମଧୁସୂଦନ **ବର୍ଣ୍ଣବୋଧ**ରେ। ଓଡ଼ିଆ ଅକ୍ଷର ଶିକ୍ଷା ପାଇଁ ତାହା ଥିଲା ପ୍ରଥମ ପ୍ରାରମ୍ଭିକ ପ୍ରଚେଷ୍ଟା। ମାତ୍ର ଆଶ୍ଚର୍ଯ୍ୟର ବିଷୟ ମଧୁସୂଦନଙ୍କର ଏହି ପ୍ରାରମ୍ଭିକ ପ୍ରୟାସ ସଂବନ୍ଧରେ ଓଡ଼ିଆ ଭାଷା ଓ ସାହିତ୍ୟ ଆଲୋଚନା ପଟ୍ଟଭୂମିରେ ସାମାନ୍ୟ ଉଲ୍ଲେଖ ମଧ ଦେଖିବାକୁ ମିଳେ ନାହିଁ, ଏହାର ଆଲୋଚନା ଓ ସମାଲୋଚନା ତ ବହୁ ଦୂରର

କଥା। ଉନ୍ନବିଂଶ ଶତାବ୍ଦୀରେ ରଚିତ ହୋଇ ବିଂଶ ଶତାବ୍ଦୀ ମଧ୍ୟଦେଇ ଆଜିର ଏକବିଂଶ ଶତାବ୍ଦୀରେ ଉପନୀତ ହୋଇଥିଲେ ମଧ୍ୟ ଏହି କ୍ଷୁଦ୍ର ପୁସ୍ତିକାର ଗୁରୁତ୍ୱ ଓ ଉପଯୋଗୀତା ହ୍ରାସ ପାଇ ନଥିବା ଆଶ୍ଚର୍ଯ୍ୟଜନକ। ବିଗତ ପ୍ରାୟ ୧୨୦ ବର୍ଷରୁ ଉର୍ଦ୍ଧ୍ୱ କାଳ ଧରି ବହୁ ସଂସ୍କରଣରେ ଏହା ପ୍ରକାଶିତ ଓ ବ୍ୟବହାର ଉପଯୋଗୀ ହୋଇ ରହିଆସିଛି। ଏହାର ତ୍ରୁଟିପୂର୍ଣ୍ଣ ନକଲି ସଂସ୍କରଣମାନ ମଧ୍ୟ ବହୁଳ ଭାବରେ ଆଜି ଉପଲବ୍ଧ। ଏହି ପୁସ୍ତକ ପାଇଁ ଅଧୁନା ବହୁ ବାଦବିସମ୍ବାଦ ମଧ୍ୟ ନଜରକୁ ଆସେ।

ଓଡ଼ିଆ ବର୍ଣ୍ଣମାଳା ନିର୍ଦ୍ଧାରଣ ଓ ଶୃଙ୍ଖଳିତ ଲେଖନ ପଦ୍ଧତି ପ୍ରୟୋଗ କ୍ଷେତ୍ରରେ ମଧୁସୂଦନଙ୍କ ବର୍ଣ୍ଣବୋଧର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ବିଚାରକୁ ନେଇ ଏହାକୁ **ଭାଷା ଓ ଲିପି** ସଂକଳନରେ ସ୍ଥାନିତ କରାଯାଇଛି। ସଂକଳନରେ 'ବର୍ଣ୍ଣବୋଧ'ର କେବଳ ବର୍ଣ୍ଣମାଳା ସଂବନ୍ଧୀୟ ଉଦ୍ଧୃତାଂଶକୁ ଗ୍ରହଣ କରାଯାଇଛି। କାରଣ ମୋର ମନେହୁଏ ଓଡ଼ିଆ ଲିପି ଓ ବର୍ଣ୍ଣମାଳା ଆଲୋଚନା କ୍ଷେତ୍ରରେ 'ବର୍ଣ୍ଣବୋଧ'ର ଏହି ଉଦ୍ଧୃତାଂଶର ସ୍ଥାନିତକରଣ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ।




ମୁଦ୍ରଣ : ହାଇଟେକ୍ ପ୍ରିଣ୍ଟର୍ସ, ବିଶ୍ରାମ ନଗର, ଲିଙ୍କ୍‌ରୋଡ, କଟକ-୧୨

# ବର୍ଣ୍ଣବୋଧ

## ପ୍ରଥମ ଭାଗ

### ସ୍ୱରବର୍ଣ୍ଣ

| | | | | | |
|---|---|---|---|---|---|
| ଅ | ଆ | ଇ | ଈ | ଉ | ଊ |
| ଋ | ୠ | ଏ | ଐ | ଓ | ଔ |

### ବ୍ୟଞ୍ଜନ ବର୍ଣ୍ଣ

| | | | | | |
|---|---|---|---|---|---|
| କ | ଖ | ଗ | ଘ | ଙ | |
| ଚ | ଛ | ଜ | ଝ | ଞ | |
| ଟ | ଠ | ଡ | ଢ | ଣ | |
| ତ | ଥ | ଦ | ଧ | ନ | |
| ପ | ଫ | ବ | ଭ | ମ | |
| ଯ | ର | ଲ | ଵ | ଶ | |
| ଷ | ସ | ହ | ଂ | ଃ | ँ |

### ଅତିରିକ୍ତ ବର୍ଣ୍ଣ

| | | | | |
|---|---|---|---|---|
| କ୍ଷ | ଡ଼ | ଢ଼ | ୟ | ଳ |

## ଅକ୍ଷର :

### ଅ କାର

ଅଖ ଆଇ ଈଶ ଉନ ଏକ
ରଖ ଉଇ ଆସ ଋଣ ଓଟ
ନୟନ ଦଶମ ସହଜ ଶୟନ
କଳସ ଶକଟ ସରଳ ସମୟ
ଆସନ ରଜକ ସଳଖ ସରସ

### ଆ କାର ବନା

କ+ଆ = କା । ଖ+ଆ= ଖା
ଗା ଘା ଚା ଛା ଜା ଝା ଟା ଠା ଡା ଢା ଣା ତା ଥା ଦା
ଧା ନା ପା ଫା ବା ଭା ମା ଯା ରା ଳା ଶା ଷା ସା ହା କ୍ଷା

### ହ୍ରସ୍ୱ ଇ କାର ବନା

କ+ଇ= କି । ଖ+ଇ= ଖି
ଗି ଘି ଚି ଛି ଜି ଝି ଟି ଠି ଡି ଢି ଣି ତି ଥି ଦି
ଧି ନି ପି ଫି ବି ଭି ମି ଯି ରି ଳି ଶି ଷି ସି ହି

### ଦୀର୍ଘ ଈ କାର ବନା

କ+ଈ = କୀ । ଖ+ଈ = ଖୀ
ଗୀ ଘୀ ଚୀ ଛୀ ଜୀ ଝୀ ଟୀ ଠୀ ଡୀ ଢୀ ଣୀ ତୀ ଥୀ ଦୀ
ଧୀ ନୀ ପୀ ଫୀ ବୀ ଭୀ ମୀ ଯୀ ରୀ ଳୀ ଶୀ ଷୀ ସୀ ହୀ

### ହ୍ରସ୍ୱ ଉ କାର ବନା

କ+ଉ=କୁ । ଖ+ଉ= ଖୁ
ଗୁ ଘୁ ଚୁ ଛୁ ଜୁ ଝୁ ଟୁ ଠୁ ଡୁ ଢୁ ଣୁ ତୁ ଥୁ ଦୁ ଧୁ
ନୁ ପୁ ଫୁ ବୁ ଭୁ ମୁ ଯୁ ରୁ ଳୁ ଶୁ ଷୁ ସୁ ହୁ କ୍ଷୁ ୟୁ ଲୁ

### ଦୀର୍ଘ ଊ କାର ବନା

କ+ଊ=କୂ । ଖ+ଊ= ଖୂ
ଗୂ ଘୂ ଚୂ ଛୂ ଜୂ ଝୂ ଟୂ ଠୂ ଡୂ ଢୂ ଣୂ ତୂ ଥୂ ଦୂ ଧୂ
ନୂ ପୂ ଫୂ ବୂ ଭୂ ମୂ ଯୂ ରୂ ଳୂ ଶୂ ଷୂ ସୂ ହୂ କ୍ଷୂ ୟୂ ଲୂ

## ଋ କାର ବନା

କ+ଋ= କୃ । ଖ+ଋ = ଖୃ

ଗୃ ଘୃ ଚୃ ଛୃ ଜୃ ଝୃ ଟୃ ଠୃ ଡୃ ଢୃ ତୃ ଥୃ ଦୃ ଧୃ

ନୃ ପୃ ଫୃ ବୃ ଭୃ ମୃ ଯୃ ଶୃ ଷୃ ସୃ ହୃ କ୍ଷୃ ୟୃ ଲୃ

## ଏକାର ବନା

କ+ଏ=କେ । ଖ+ଏ=ଖେ

ଗେ ଘେ ଚେ ଛେ ଜେ ଝେ ଟେ ଠେ ଡେ ଢେ ଣେ ତେ ଥେ ଦେ ଧେ ନେ

ପେ ଫେ ବେ ଭେ ମେ ଯେ ରେ ଳେ ଶେ ଷେ ସେ ହେ କ୍ଷେ ୟେ ଲେ

## ଐ କାର ବନା

କ+ଐ = କୈ । ଖ+ଐ= ଖୈ

ଗୈ ଘୈ ଚୈ ଛୈ ଜୈ ଝୈ ଟୈ ଠୈ ଡୈ ଢୈ ଣୈ ତୈ ଥୈ ଦୈ ଧୈ

ନୈ ପୈ ଫୈ ବୈ ଭୈ ମୈ ଯୈ ରୈ ଳୈ ଶୈ ଷୈ ସୈ ହୈ କ୍ଷୈ ୟୈ ଲୈ

## ଓ କାର ବନା

କ+ଓ = କୋ । ଖ+ଓ= ଖୋ

ଗୋ ଘୋ ଚୋ ଛୋ ଜୋ ଝୋ ଟୋ ଠୋ ଡୋ ଢୋ ଣୋ ତୋ ଥୋ ଦୋ

ଧୋ ନୋ ପୋ ଫୋ ବୋ ଭୋ ମୋ ଯୋ ରୋ ଳୋ ଶୋ ଷୋ ସୋ ହୋ

କ୍ଷୋ ୟୋ ଲୋ

## ଔକାର ବନା

କ+ଔ = କୌ । ଖ+ଔ= ଖୌ

ଗୌ ଘୌ ଚୌ ଛୌ ଜୌ ଝୌ ଟୌ ଠୌ ଡୌ ଢୌ ଣୌ ତୌ ଥୌ ଦୌ

ଧୌ ନୌ ପୌ ଫୌ ବୌ ଭୌ ମୌ ଯୌ ରୌ ଳୌ ଶୌ ଷୌ ସୌ ହୌ

କ୍ଷୌ ଲୌ

## (ଂ) ଅନୁସ୍ୱାର ଯୋଗ

ଅ+ଂ = ଅଂ । କ+ଂ= କଂ

ମା+ଂ = ମାଂ । ସ+ଂ = ସଂ

ଅଂଶ ହଂସ ସିଂହ ହିଂସା ବଂଶୀ ବଂଶ କଂସ ମାଂସ ଅଂଶୁ ଅଂଶୀ ବିଂଶତି ସଂସାର

ସଂଶୟ ମୀମାଂସା କିଂଶୁକ ଦଂଶନ ସଂବାଦ ସଂଯୋଗ

## (ଃ) ବିସର୍ଗ ଯୋଗ

ଆ+ଃ = ଆଃ । କ+ଃ= କଃ

ନି+ଃ=ନିଃ । ଦୁ+ଃ=ଦୁଃ

ଦୁଃଖ ଦୁଃଖିତ ଦୁଃସମୟ ନିଃସଂଶୟ

ଦୁଃଖୀ ନିଃଶେଷ ଦୁଃସାହସ ନିଃସହାୟ

## (ଁ) ଚନ୍ଦ୍ରବିନ୍ଦୁ ଯୋଗ

ଉ+ଁ = ଉଁ । କ+ଁ= କଁ

ଗା + ଁ = ଗାଁ । ବା + ଁ = ବାଁ

## (୍) ହଳନ୍ତ

କ୍ ଖ୍ ଗ୍ ଘ୍ ଚ୍ ଛ୍ ଜ୍

ସତ୍ ଅସତ୍ ଜଗତ୍ ହଠାତ୍ ଝକ୍‌ଝକ୍ ଚିତ୍ ଈଷତ୍ ଶରତ୍ ଅଚିରାତ୍ ଧକ୍‌ଧକ୍

# ଦ୍ୱିତୀୟ ଭାଗ

## ଫଳା :

## ଯ ଫଳା (ଯ-ୟ)

କ+ଯ=କ୍ୟ । ଖ+ଯ=ଖ୍ୟ

ଗ୍ୟ ଘ୍ୟ ଚ୍ୟ ଛ୍ୟ ଜ୍ୟ ଝ୍ୟ ଟ୍ୟ ଠ୍ୟ ଡ୍ୟ ଢ୍ୟ ଣ୍ୟ ତ୍ୟ ଥ୍ୟ ଦ୍ୟ ଧ୍ୟ ନ୍ୟ

## ର ଫଳା (ର =୍ର)

କ+ର=କ୍ର । ଖ+ର=ଖ୍ର

ଗ୍ର ଘ୍ର ଚ୍ର ଛ୍ର ଜ୍ର ଝ୍ର ଟ୍ର ଠ୍ର ଡ୍ର ଢ୍ର ଣ୍ର ତ୍ର ଥ୍ର ଦ୍ର ଧ୍ର ନ୍ର

ପ୍ର ଫ୍ର ବ୍ର ଭ୍ର ମ୍ର ଯ୍ର ର୍ର ଲ୍ର ଶ୍ର ଷ୍ର ସ୍ର ହ୍ର

## ଳ+ଫଳା (ଳ -୍ଳ)

କ+ଳ = କ୍ଳ । ଖ+ଳ = ଖ୍ଳ

ଗ୍ଳ ଘ୍ଳ ପ୍ଳ ବ୍ଳ ମ୍ଳ ଶ୍ଳ ହ୍ଳ

## ବ ଫଳା । (ଵ)

କ+ବ = କ୍ୱ । ଖ+ବ = ଖ୍ୱ

ଗ୍ୱ ଘ୍ୱ ଚ୍ୱ ଛ୍ୱ ଜ୍ୱ ଝ୍ୱ ଟ୍ୱ ଠ୍ୱ ଡ୍ୱ ଢ୍ୱ ତ୍ୱ ଥ୍ୱ ଦ୍ୱ ଧ୍ୱ ନ୍ୱ ପ୍ୱ ଫ୍ୱ ବ୍ୱ ଭ୍ୱ ମ୍ୱ ଯ୍ୱ ର୍ୱ ଲ୍ୱ ଶ୍ୱ ଷ୍ୱ ସ୍ୱ ହ୍ୱ

## ନ ଫଳା (ନ- ୍ନ)

କ+ନ = କ୍ନ । ଖ + ନ = ଖ୍ନ

ଗ୍ନ ଘ୍ନ ତ୍ନ (ତ୍ନ) ପ୍ନ ମ୍ନ ବ୍ନ ଶ୍ନ ସ୍ନ ହ୍ନ

## ମ ଫଳା (ମ- ୍ମ)

କ+ମ = କ୍ମ । ଖ+ମ = ଖ୍ମ

ଗ୍ମ ଘ୍ମ ଙ୍ମ ଟ୍ମ ଣ୍ମ ତ୍ମ (ତ୍ମ) ଦ୍ମ ଧ୍ମ ନ୍ମ ମ୍ମ (ମ୍ମ) ଶ୍ମ ଷ୍ମ ସ୍ମ ହ୍ମ

## ରେଫ୍ ଯୋଗ (ରେଫ୍- ର୍ )

କ+ର୍ = ର୍କ । ଖ+ର୍ = ର୍ଖ

ର୍ଗ ର୍ଘ ର୍ଚ ର୍ଛ ର୍ଜ ର୍ଝ ର୍ଟ ର୍ଠ ର୍ଡ ର୍ଢ ର୍ଣ ର୍ତ ର୍ଥ ର୍ଦ ର୍ଧ ର୍ପ ର୍ଫ ର୍ବ ର୍ଭ ର୍ମ ର୍ଯ ର୍ଶ ର୍ଷ ର୍ସ ର୍ହ ର୍କ୍ଷ

## ଯୁକ୍ତାକ୍ଷର :

| | |
|---|---|
| ଙ କ ଙ୍କ | ପଙ୍କ, ଶଙ୍କା, ଅଙ୍କୁର, ସଙ୍କେତ। |
| ଙ ଖ ଙ୍ଖ | ଶଙ୍ଖ, ଶୃଙ୍ଖଳା। |
| ଙ ଗ ଙ୍ଗ | ସଙ୍ଗ, ସଙ୍ଗୀତ, ଅଙ୍ଗୁଳି। |
| ଙ ଘ ଙ୍ଘ | ଜଙ୍ଘ, ଲଙ୍ଘନ। |
| ଞ ଚ ଞ୍ଚ | ଚଞ୍ଚଳ, କାଞ୍ଚନ, ସଞ୍ଚୟ। |
| ଞ ଛ ଞ୍ଛ | ବାଞ୍ଛା, ଲାଞ୍ଛନା। |
| ଞ ଜ ଞ୍ଜ | ଅଞ୍ଜଳି, ପଞ୍ଜିକା, ଖଞ୍ଜ, ଖଞ୍ଜଣା। |
| ଞ ଝ ଞ୍ଝ | ଝଞ୍ଝା, ପଞ୍ଝା। |
| ଣ ଟ ଣ୍ଟ | କଣ୍ଟକ, ଘଣ୍ଟା। |
| ଣ ଠ ଣ୍ଠ | କଣ୍ଠ, ଉତ୍କଣ୍ଠା, କୁଣ୍ଠିତ। |
| ଣ ଡ ଣ୍ଡ | କୁଣ୍ଡ, ମୁଣ୍ଡ, ଚାଣ୍ଡାଳ, ପଣ୍ଡିତ, ଗଣ୍ଡୂଷ। |
| ଣ ଢ ଣ୍ଢ | ଷଣ୍ଢ, ମେଣ୍ଢା। |
| ନ ତ ନ୍ତ | ଦାନ୍ତ, ଚିନ୍ତା, ସନ୍ତୋଷ, ଶାନ୍ତ। |
| ନ ଥ ନ୍ଥ | କନ୍ଥା, ମନ୍ଥନ, ରୋମନ୍ଥ। |
| ନ ଦ ନ୍ଦ | ଆନନ୍ଦ, ମନ୍ଦିର, ସିନ୍ଦୂର, ସନ୍ଦେହ। |
| ନ ଧ ନ୍ଧ | ଅନ୍ଧ, ସନ୍ଧି, ସନ୍ଧ୍ୟା, ବନ୍ଧ, ବନ୍ଧୁକ। |

| | |
|---|---|
| ମ ପ ମ୍ପ | ସମ୍ପଦ, ସମ୍ପନ୍ନ, ସମ୍ପାଦନ, କମ୍ପିତ । |
| ମ ଫ ମ୍ଫ | ଲମ୍ଫ, ଗୁମ୍ଫା, ବାମ୍ଫି । |
| ମ ବ ମ୍ବ | ସମ୍ବଳ, ସମ୍ବାଦ, ସମ୍ବୋଧନ, କମ୍ବୁ, ଅମ୍ବୁ । |
| ମ ଭ ମ୍ଭ | ରମ୍ଭା, ଗମ୍ଭୀର, ସମ୍ଭୋଗ, କୁମ୍ଭୀର । |
| କ୍ କ କ୍କ | ଚିକ୍କଣ, ଧିକ୍କାର, କୁକ୍କୁଟ, କୁକ୍କୁର । |
| କ୍ ତ କ୍ତ | ରକ୍ତ, ଶକ୍ତି, ତିକ୍ତ, ବିଭକ୍ତ । |
| କ୍ ଷ କ୍ଷ | ପକ୍ଷ, ଲକ୍ଷ, ଲକ୍ଷଣ, ରକ୍ଷା, ଦକ୍ଷିଣ, ପରୀକ୍ଷା କ୍ଷେତ୍ର । |
| ଗ୍ ଧ ଗ୍ଧ | ଦୁଗ୍ଧ, ସ୍ନିଗ୍ଧ । |
| ଚ୍ ଚ ଚ୍ଚ | ଉଚ୍ଚ, ଉଚ୍ଚାରଣ, ଉଚ୍ଚୈଃ । |
| ଚ୍ ଛ ଚ୍ଛ | ଗୁଚ୍ଛ, ତୁଚ୍ଛ, ଆଚ୍ଛାଦ, ବିଚ୍ଛେଦ, ସ୍ୱଚ୍ଛ, କଚ୍ଛପ । |
| ଜ୍ ଜ ଜ୍ଜ | କଜ୍ଜଳ, ମଜ୍ଜନ, ସର୍ଜ୍ଜନ, ଲଜ୍ଜା, ସଜ୍ଜା, ଲଜ୍ଜିତ । |
| ଜ୍ ଝ ଜ୍ଝ | କୁଜ୍ଝଟୀ, କୁଜ୍ଝଟିକା । |
| ଜ୍ ଞ ଜ୍ଞ | ବିଜ୍ଞ, ଆଜ୍ଞା, ଯଜ୍ଞ, ଜ୍ଞାନ । |
| ଟ୍ ଟ ଟ୍ଟ | ଅଟ୍ଟହାସ୍ୟ, ଅଟ୍ଟାଳିକା । |
| ଡ୍ ଗ ଡ୍ଗ | ଖଡ୍ଗ । |
| ଡ୍ ଡ ଡ୍ଡ | ଉଡ୍ଡୀନ, ଉଡ୍ଡୀୟମାନ । |
| ତ୍ କ ତ୍କ | ଉତ୍କଳ, ଉତ୍କଣ୍ଠା, ବଳାତ୍କାର, ଉତ୍କୃଷ୍ଟ । |
| ତ୍ ତ ତ୍ତ | ଉତ୍ତମ, ଉତ୍ତର, ଉତ୍ତାପ, ମତ୍ତ । |
| ତ୍ ଥ ତ୍ଥ | ଉତ୍ଥାନ, ଉତ୍ଥାପନ । |
| ତ୍ ପ ତ୍ପ | ଉତ୍ପଳ, ଉତ୍ପାତ, ଉତ୍ପନ୍ନ । |
| ତ୍ ସ ତ୍ସ | ବତ୍ସ, ବତ୍ସର, ସମ୍ବତ୍ସର । |
| ଦ୍ ଗ ଦ୍ଗ | ମୁଦ୍ଗର, ଉଦ୍ଗାର । |
| ଦ୍ ଘ ଦ୍ଘ | ଉଦ୍ଘାଟନ । |
| ଦ୍ ଦ ଦ୍ଦ | ଉଦ୍ଦୀପନ, ଉଦ୍ଦେଶ୍ୟ । |
| ଦ୍ ଧ ଦ୍ଧ | ଯୁଦ୍ଧ, ଗୁଦ୍ଧ, ଶୁଦ୍ଧ, ବୁଦ୍ଧି, ସିଦ୍ଧି, ଉଦ୍ଧାର । |
| ଦ୍ ବ ଦ୍ବ | ଉଦ୍ବାହ, ବୁଦ୍ବୁଦ । |
| ଦ୍ ଭ ଦ୍ଭ | ଅଦ୍ଭୁତ, ଉଦ୍ଭିଦ, ସଦ୍ଭାବ, ଉଦ୍ଭବ । |

| | |
|---|---|
| ଦ୍ ଯ ଦ୍ୟ | ଉଦ୍ୟୋଗ। |
| ପ୍ ତ ପ୍ତ | ଗୁପ୍ତ, ସୁପ୍ତ, ଲିପ୍ତ, କ୍ଷିପ୍ତ। |
| ପ୍ ପ ପପ୍ | ପିପପ୍ଲୀ। |
| ପ୍ ସ ପ୍ସ | ଅପ୍ସରା। |
| ବ୍ ଜ ବ୍ଜ | ଅବ୍ଜ, କୁବ୍ଜ। |
| ବ୍ ଦ ବ୍ଦ | ଅବ୍ଦ, ଶବ୍ଦ। |
| ବ୍ ଧ ବ୍ଧ | ଲବ୍ଧ, କ୍ଷୁବ୍ଧ, ଆରବ୍ଧ। |
| ଲ୍କ ଲ୍କ | ବଲ୍କଲ, ଶୁକ୍ଲ |
| ଲ୍ କ ଲ୍କ | ଉଲ୍କା। |
| ଲ୍ ଗ ଲ୍ଗ | ଫଲ୍ଗୁ, ଫାଲ୍ଗୁନ। |
| ଲ୍ ପ ଳ୍ପ | ଅଳ୍ପ, ଗଳ୍ପ, କଳ୍ପନା, ସଂକଳ୍ପ। |
| ଲ୍ ଫ ଲ୍ଫ | ଗୁଲ୍ଫ। |
| ଲ୍ ଭ ଲ୍ଭ | ପ୍ରଗଲ୍ଭ। |
| ଶ୍ ଚ ଶ୍ଚ | ନିଶ୍ଚୟ, ପଶ୍ଚିମ, ପଶ୍ଚାତ। |
| ଶ୍ ଛ ଶ୍ଛ | ଶିରଶ୍ଛେଦ, ଦୁଶ୍ଛେଦ୍ୟ। |
| ଷ୍ କ ଷ୍କ | ଶୁଷ୍କ, ନିଷ୍କର, ଦୁଷ୍କର, ପରିଷ୍କାର। |
| ଷ୍ ଟ ଷ୍ଟ | ଅଷ୍ଟ, କଷ୍ଟ, ଦୁଷ୍ଟ, ପୃଷ୍ଟ, କୃଷ୍ଟ, ରୁଷ୍ଟ, ସମଷ୍ଟି। |
| ଷ୍ ଠ ଷ୍ଠ | ଷଷ୍ଠ, କନିଷ୍ଠ, ବଳିଷ୍ଠ, ଶ୍ରେଷ୍ଠ, ଗରିଷ୍ଠ, ନିଷ୍ଠୁର। |
| ଷ୍ ଣ ଷ୍ଣ | କୃଷ୍ଣ, ବିଷ୍ଣୁ, ସହିଷ୍ଣୁ, ବୈଷ୍ଣବ। |
| ଷ୍ ପ ଷ୍ପ | ପୁଷ୍ପ, ନିଷ୍ପାପ, ନିଷ୍ପୀଡ଼ନ। |
| ଷ୍ ଫ ଷ୍ଫ | ନିଷ୍ଫେସନ। |
| ସ୍ କ ସ୍କ | ତସ୍କର, ନମସ୍କାର, ଅୟସ୍କାନ୍ତ, ପୁରସ୍କାର। |
| ସ୍ ଖ ସ୍ଖ | ସ୍ଖଳନ। |
| ସ୍ ତ ସ୍ତ | ସ୍ତବ୍ଧ, ପ୍ରଶସ୍ତ, ଦୁସ୍ତର, ନିସ୍ତାର, ବିସ୍ତାର। |
| ସ୍ ଥ ସ୍ଥ | ସ୍ଥାନ, ସ୍ଥିର, ସ୍ଥିତ, ସ୍ଥାବର, ଅସ୍ଥି, ସ୍ଥଳ। |
| ସ୍ ପ ସ୍ପ | ସ୍ପର୍ଶ, ପରସ୍ପର, ଆସ୍ପଦ, ବାସ୍ପ। |
| ସ୍ ଫ ସ୍ଫ | ସ୍ଫଟିକ, ସ୍ଫିତ, ଆସ୍ଫାଳନ। |

| | |
|---|---|
| କ୍ ତ ର କ୍ତ୍ର | ବକ୍ତ୍ରି । |
| କ୍ ଷ ଣ କ୍ଷ୍ଣ | ତୀକ୍ଷ୍ଣ । |
| କ୍ ଷ ମ କ୍ଷ୍ମ | ସୂକ୍ଷ୍ମ, ଲକ୍ଷ୍ମୀ, ଯକ୍ଷ୍ମା । |
| କ୍ ଷ ଯ କ୍ଷ୍ୟ | ଯକ୍ଷ୍ୟ, ସାକ୍ଷ୍ୟ, ଲକ୍ଷ୍ୟ । |
| ଙ୍ କ ତ ଙ୍କ୍ତ | ପଙ୍କ୍ତି । |
| ଙ୍ କ ଷ ଙ୍କ୍ଷ | ଆକାଙ୍କ୍ଷା । |
| ଜ୍ ଜ ବ ଜ୍ଜ୍ୱ | ଉଜ୍ଜ୍ୱଳ । |
| ଣ୍ ଡ ର ଣ୍ଡ୍ର | ପୁଣ୍ଡ୍ର । |
| ତ୍ ତ ବ ତ୍ତ୍ୱ | ତତ୍ତ୍ୱ, ମହତ୍ତ୍ୱ, ସତ୍ତ୍ୱ । |
| ତ୍ ତ ର ତ୍ତ୍ର | ପୁତ୍ତ୍ର । |
| ତ୍ ମ ଯ ତ୍ମ୍ୟ (ତ୍ମ୍ୟ) | ମହାତ୍ମ୍ୟ |
| ତ୍ ସ ଯ ତ୍ସ୍ନ | ଜ୍ୟୋତ୍ସ୍ନା । |
| ତ୍ ସ ଯ ତ୍ସ୍ୟ | ମତ୍ସ୍ୟ । |
| ନ୍ ତ ଯ ନ୍ତ୍ୟ | ଅନ୍ତ୍ୟ । |
| ନ୍ ତ ର ନ୍ତ୍ର | ତନ୍ତ୍ର, ମନ୍ତ୍ର, ଯନ୍ତ୍ର । |
| ନ୍ ତ ବ ନ୍ତ୍ୱ | ସାନ୍ତ୍ୱନା । |
| ନ୍ ଦ ର ନ୍ଦ୍ର | ଇନ୍ଦ୍ର, ଇନ୍ଦ୍ରିୟ । |
| ନ୍ ଦ ବ ନ୍ଦ୍ୱ | ଦ୍ୱନ୍ଦ୍ୱ । |
| ନ୍ ଧ ର ନ୍ଧ୍ର | ରନ୍ଧ୍ର । |
| ନ୍ ଧ ଯ ନ୍ଧ୍ୟ | ବିନ୍ଧ୍ୟ, ସନ୍ଧ୍ୟା, ବନ୍ଧ୍ୟା । |
| ନ୍ ନ ଯ ନ୍ନ୍ୟ | ସନ୍ନ୍ୟାସ, ସନ୍ନ୍ୟାସୀ । |
| ମ୍ ପ ର ମ୍ପ୍ର | ସମ୍ପ୍ରତି, ସମ୍ପ୍ରଦାୟ, ସମ୍ପ୍ରଦାନ । |
| ମ୍ ଭ ର ମ୍ଭ୍ର | ସମ୍ଭ୍ରମ, ସମ୍ଭ୍ରାନ୍ତ, ହେମ୍ଭ୍ରମ । |
| ର୍ ଚ ଚ ର୍ଚ୍ଚ | ଅର୍ଚ୍ଚନା, ଚର୍ଚ୍ଚା । |
| ର୍ ଚ ଛ ର୍ଚ୍ଛ | ମୂର୍ଚ୍ଛା, ମୂର୍ଚ୍ଛନା । |
| ର୍ ଣ ଣ ର୍ଣ୍ଣ | ପର୍ଣ୍ଣ, ସ୍ୱର୍ଣ୍ଣ, ପୂର୍ଣ୍ଣ, ଚୂର୍ଣ୍ଣ, ନିର୍ଣ୍ଣୟ । |
| ର୍ ତ ତ ର୍ତ୍ତ | କୀର୍ତ୍ତନ, କୀର୍ତ୍ତି, ମୂର୍ତ୍ତି । |

| | |
|---|---|
| ର୍ ଦ ଦ ର୍ଦ୍ଦ | ଗର୍ଦ୍ଦଭ। |
| ର୍ ଦ ଧ ର୍ଦ୍ଧ | ଅର୍ଦ୍ଧ, ନିର୍ଦ୍ଧାରିତ, ବର୍ଦ୍ଧନ। |
| ର୍ ତ ସ ର୍ତ୍ସ | ଭର୍ତ୍ସନା। |
| ର୍ ଦ ର ର୍ଦ୍ର | ଆର୍ଦ୍ର । |
| ର୍ ଯ ଯ ର୍ଯ୍ୟ | କାର୍ଯ୍ୟ, ଧୈର୍ଯ୍ୟ, ସୂର୍ଯ୍ୟ। |
| ର୍ ଶ ବ ର୍ଶ୍ୱ | ପାର୍ଶ୍ୱ, ପାରିପାର୍ଶ୍ୱିକ । |
| ଷ୍ କ ର ଷ୍କ୍ର | ନିଷ୍କ୍ରିୟ । |
| ଷ୍ ଟ ର ଷ୍ଟ୍ର | ରାଷ୍ଟ୍ର, ରାଷ୍ଟ୍ରାୟତ, ରାଷ୍ଟ୍ରିୟ । |
| ଷ୍ ପ ର ଷ୍ପ୍ର | ଦୁଷ୍ପ୍ରାପ୍ୟ, ନିଷ୍ପ୍ରୟୋଜନ। |
| ସ୍ ତ ର ସ୍ତ୍ର | ଅସ୍ତ୍ର, ଶସ୍ତ୍ର, ଶାସ୍ତ୍ର, ବସ୍ତ୍ର। |
| ସ୍ ଥ ଯ ସ୍ଥ୍ୟ | ସ୍ୱାସ୍ଥ୍ୟ, ଅସ୍ୱାସ୍ଥ୍ୟକର |
| ନ୍ ତ ର ଯ ନ୍ତ୍ର୍ୟ | ସ୍ୱାତନ୍ତ୍ର୍ୟ, ପରତନ୍ତ୍ର୍ୟ। |
| ର୍ ତ ତ ର ର୍ତ୍ତ୍ୟ | ମର୍ତ୍ତ୍ୟ । |
| ର୍ ତ ତ ର ର୍ତ୍ତ୍ର | କର୍ତ୍ତ୍ରା । |
| ର୍ ଦ ଧ ର ବ ର୍ଦ୍ଧ୍ୱ | ଉର୍ଦ୍ଧ୍ୱଗାମୀ, ଉର୍ଦ୍ଧ୍ୱ। |



ପାଇକ ସାଜିଲା,

କାହାଳୀ ବାଜିଲା,

ହାତୀ ଅଇଲା ଚାଲି ।

ଆସ ଆସ ଭାଇ,

ଗୀତ ଗାଇ ଗାଇ,

ଯିବା ନଦୀର ବାଲି ।



# ପାହିଲା ଅନ୍ଧାର ରଜନୀ

## ହରପ୍ରସାଦ ଦାସ

ମଧୁସୂଦନ ରାଓଙ୍କ 'ବର୍ଣ୍ଣବୋଧ' (୧୮୯୫) ସହିତ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ପ୍ରଣୀତ 'ବର୍ଣ୍ଣ ପରିଚୟ' (୧୮୫୫)ର ତୁଳନା ଆପାତତଃ ଅନାବଶ୍ୟକ, କିନ୍ତୁ ଓଡ଼ିଆ ଭାଷାକୁ ଆତ୍ମସାତ୍ କରିବା ପାଇଁ ଏକଦା ବଦ୍ଧପରିକର ବଙ୍ଗଳା ଭାଷାର ମୌଳିକ ସଂରଚନା ସହିତ, ବର୍ତ୍ତି ଯାଇଥିବା ଓଡ଼ିଆ ଭାଷାର ସଂରଚନାକୁ ମିଶାଇ ଦେଖିବା ଆଜି ପ୍ରାସଙ୍ଗିକ ଗୋଟିଏ କାରଣରୁ। କାରଣ ଏହି ଯେ ଊନବିଂଶ ଶତାବ୍ଦୀର ଶେଷ ତିରିଶ ବର୍ଷ ଭିତରେ ଓଡ଼ିଆକୁ ବଙ୍ଗଳାର ବିକୃତି ଭାବରେ ଉପସ୍ଥାପିତ କରିବାକୁ ଚାହୁଁଥିବା ବଙ୍ଗାଳିମାନେ ବହୁ ପ୍ରୟାସ କରି ମଧ୍ୟ ସଫଳ ହୋଇ ନ ଥିଲେ, ଓଡ଼ିଆ ଭାଷାର ମଞ୍ଜରେ ଥିବା ଗୋଟେ ବିଶେଷ ଗୁଣ ଯୋଗୁ। ଏ ବିଶେଷ ଗୁଣଟି ଠିକ୍ କ'ଣ ଥିଲା ଓ ଏବେ ମଧ୍ୟ ଅଛି, ତା'ର ଆଲୋଚନା କଲାବେଳେ 'ବର୍ଣ୍ଣବୋଧ' ସହିତ 'ବର୍ଣ୍ଣ ପରିଚୟ'ର ତୁଳନା, କରିବାକୁ ହିଁ ହେବ।

'ବର୍ଣ୍ଣ ପରିଚୟ'ର ଦୁଇଟି ଭାଗ। ୧୮୫୫ରେ ଏହା ଠିକ୍ କିଭଳି ପ୍ରକାଶିତ ହୋଇଥିଲା ଜଣାନାହିଁ, ମୁଁ ଅଧୁନା ଉପଲବ୍ଧ କଲିକତାର ନିର୍ମଳ ବୁକ୍ ଏଜେନ୍ସି, କଲିକତା ଦ୍ୱାରା ପ୍ରକାଶିତ ଦୁଇଟି ଭାଗ ଦେଖୁଚି। ପ୍ରଥମ ଭାଗଟିର ଷାଠିଏଟି ସଂସ୍କରଣରେ ବିଦ୍ୟାସାଗର ଏଥିରେ ଶେଷତମ ପରିମାର୍ଜ୍ଜନ କରିଥିଲେ। 'ବିଦ୍ୟାସାଗର ସ୍ମାରକ ଜାତୀୟ ସମିତି' ୧୯୧୨ରେ ଯେଉଁ 'ବିଦ୍ୟାସାଗର ରଚନା ସଂଗ୍ରହ' ପ୍ରକାଶିତ କରିଥିଲେ ତହିଁରେ ଏହି ପରିମାର୍ଜ୍ଜିତ ପାଠଟି ସ୍ଥାନ ପାଇଥିଲା। ନିର୍ମଳ ସଂସ୍କରଣର ପାଠଟି ସେଇ ପାଠ। ସେହିପରି ଦ୍ୱିତୀୟ ଭାଗଟିର ୧୮୭୬ ସୁଦ୍ଧା ବାଷଠିଟି ସଂସ୍କରଣ ପ୍ରକାଶିତ ହୋଇଥିଲା ଓ ଏଥିରେ ଅନ୍ତିମ ପରିମାର୍ଜ୍ଜନ କରିଥିଲେ ବିଦ୍ୟାସାଗର, ବାଷଠିତମ ସଂସ୍କରଣରେ। ସେ ପାଠ ମଧ୍ୟ 'ବିଦ୍ୟାସାଗର ରଚନା ସଂଗ୍ରହ'ରୁ ଆଣି ନିର୍ମଳ ସଂସ୍କରଣରେ ବ୍ୟବହାର କରାଯାଇଛି। ମଧୁସୂଦନ ରାଓ ପ୍ରଣୀତ ଓଡ଼ିଆ 'ବର୍ଣ୍ଣବୋଧ'ର ଯେଉଁ ସଂସ୍କରଣଟି ମୋ' ହାତରେ ଏଇନେ, ସେଇଟି ୨୦୧୩ରେ ବିଜୟାନନ୍ଦ ସିଂହଙ୍କ ଦ୍ୱାରା ସଂକଳିତ ଓ

ସମ୍ପାଦିତ ହୋଇ ପ୍ରକାଶିତ ହୋଇଛି ଓଡ଼ିଶା ବୁକ୍ ଏମ୍ପୋରିଅମ୍, କଟକ ଦ୍ୱାରା। ସଂକଳକ ଓ ସମ୍ପାଦକ ଏକ ଅଗ୍ରଲେଖରେ ଏ ସୂଚନା ଦେଇଛନ୍ତି ଯେ ମୂଳ ବର୍ଣ୍ଣବୋଧ (୧୮୯୫)ର ପାଠ ଅକ୍ଷୁଣ୍ଣ ରହିଛି, କିନ୍ତୁ ଅକ୍ଷରଗୁଡ଼ିକୁ ବଡ଼ କରି ଚିତ୍ରଗୁଡ଼ିକୁ ରଙ୍ଗୀନ କରାଯାଇଛି। ସେଥିସହିତ ପ୍ରତି ପୃଷ୍ଠାରେ ମୂଳ ବର୍ଣ୍ଣବୋଧର ସେହି ପୃଷ୍ଠାର ଏକ ଫାକ୍ସିମିଲି ଛବି ମଧ୍ୟ ରହିଛି। ୧୮୯୫ରେ ପ୍ରଥମ ପ୍ରକାଶନ ପରେ, ମୂଳ 'ବର୍ଣ୍ଣବୋଧ'ର କେତୋଟି ସଂସ୍କରଣ ହୋଇଥିଲା ଓ ପ୍ରଣେତା ସ୍ୱୟଂ ଏଥିରେ କି ପରିମାର୍ଜନା କୋଉ ବର୍ଷଯାଏଁ କିଭଳି କରିଥିଲେ ତାହା ଜଣାନାହିଁ। ଫାକ୍ସିମିଲି ଆଧାରରେ ପରିବର୍ଦ୍ଧିତ ଆକାରର ଏ 'ବର୍ଣ୍ଣବୋଧ'କୁ ମୁଁ ମୂଳ ମଧ୍ଯ ବର୍ଣ୍ଣବୋଧ ଭାବରେ ଗ୍ରହଣ କରୁଛି, ସେହିପରି ନିର୍ମଳ ସଂସ୍କରଣର ବିଦ୍ୟାସାଗର 'ବର୍ଣ୍ଣ ପରିଚୟ'କୁ ମୁଁ ମୂଳ ରଚନା ଭାବରେ ଗ୍ରହଣ କରୁଛି।

'ବର୍ଣ୍ଣବୋଧ' ଓ 'ବର୍ଣ୍ଣ ପରିଚୟ' ମଧ୍ୟରେ ବହୁ ବିନ୍ୟାସଗତ ପାର୍ଥକ୍ୟ। ସେ ପାର୍ଥକ୍ୟଗୁଡ଼ିକୁ ଦେଖିନେବା ଜରୁରି -

(୧) 'ବର୍ଣ୍ଣବୋଧ'ରେ ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନବର୍ଣ୍ଣଗୁଡ଼ିକ ପାଇଁ ଚିତ୍ର ନାହିଁ। 'ବର୍ଣ୍ଣ ପରିଚୟ'ରେ ଚିତ୍ର ଅଛି। ଯେମିତି 'ଅ' ପାଖରେ ଅଜଗର ସାପର, 'ଆ' ପାଖରେ ଆନାରସ, 'ଇ' ପାଖରେ ଇଁଦୁର, 'ଥ' ପାଖରେ ଥାନା, 'ଫ' ପାଖରେ ଫଡ଼ିଂ। ଲକ୍ଷ୍ୟ କରାଯାଉ ଯେ ସବୁତକ ଶବ୍ଦ ବିଶେଷ୍ୟ, ଅର୍ଥାତ୍ ବସ୍ତୁବାଚୀ। ସେଇଠି ମଧୁସୂଦନ ରାଓଙ୍କ ବର୍ଣ୍ଣବୋଧରେ 'ଅ' ପାଇଁ ଅଖ, 'ଆ' ପାଇଁ ଆଣ, 'ଇ' ପାଇଁ ଇହ, 'ଥ' ପାଇଁ ଥର, 'ଫ' ପାଇଁ ଫଳ ଆଦି ଶବ୍ଦ, ବିନା ଚିତ୍ରରେ। ହୁଏତ ଚିତ୍ର ଦିଆଯାଇ ପାରିଥାନ୍ତା ବା ଚିତ୍ରଯୋଗ୍ୟ ଶବ୍ଦ ବଛାଯାଇ ପାରିଥାନ୍ତା। କିନ୍ତୁ ତା' ଫଳରେ 'ଆଣ', 'ଧର', 'ଥର', 'କର', 'ସକଳ', 'ସହଜ' ଆଦି କ୍ରିୟାପଦ ଓ ଭାବବାଚୀ ବିଶେଷ୍ୟ- ବିଶେଷଣ ଆଦି ଶବ୍ଦଙ୍କୁ ଛାଡ଼ିବାକୁ ପଡ଼ିଥାନ୍ତା, ଯାହା 'ବର୍ଣ୍ଣ ପରିଚୟ'ରେ ଘଟିଛି। ଆଉ ଗୋଟିଏ ପରିକଳ୍ପନା ବର୍ଣ୍ଣବୋଧରେ, ଅବନା ଶବ୍ଦଙ୍କର ସଙ୍ଗୀତରେ। ଯାକୁ ଓଡ଼ିଆ ଶବ୍ଦ ମାଧୁରୀ କୁହାଯାଇପାରେ। 'ବର୍ଣ୍ଣବୋଧ'ର ଅବନା ପୃଷ୍ଠରେ ଅବନା ଗଢ଼ଣ ଦେଖନ୍ତୁ-

ବରଗଛ । ଅଖ ଆଣ । ଚକ ରଖ । ଢଗ କହ ।

ଶଠଜନ । ପଥର ଶର । ଶୟନ କର । କଳସ ଧର ।

ଆଠ ବରଷ ବୟସ । ଦଶ ଗଛ ପଣସ । ଶତଦଳ ସରସ ।

ଯାକୁ ଯେତେବେଳେ ପିଲାଟିଏ ତା'ର ନୂଆ ନୂଆ ସ୍ୱର ଫିଟୁଥିବା ମଧୁର କଣ୍ଠରେ ଘୋଷିଚାଲିବ ଓ ତା'ର ମଧୁର ଲହର ସ୍କୁଲ ଘରୁ ବା ବାରଣ୍ଡାରୁ ରାସ୍ତାଯାଏଁ ପହଞ୍ଚିବ

ସେତେବେଳେ ଶବ୍ଦଙ୍କୁ ବାରି ହେବ ନାହିଁ, ଗୋଟେ ଐକତାନ ଓଡ଼ିଆ ଭାଷାର ମାଧୁର୍ଯ୍ୟକୁ ହିଁ ପ୍ରକଟିତ କରିବ। କର, ରଖ, ଧର, ଆଣ ଆଦି କ୍ରିୟାପଦ, ସ୍ଥାନ ପାଇଯିବେ। ଆଠ ଓ ଦଶ ଭଳି ସଂଖ୍ୟାର ବିଶେଷଣ ରୂପ ଫିଟିଯିବେ, ଏମିତିକି ଶତଦଳ, ସରସ ଭଳି ଶବ୍ଦ ବି ପିଲାତୁଣ୍ଡକୁ ଆସିଯିବେ। ପିଲାଟି ଯଦି ଅନୁସନ୍ଧିତ୍ସୁ ହୋଇ ପଚାରେ ଢଗ କ'ଣ, ଶତଦଳ କ'ଣ, ସରସ କ'ଣ ବା ଅଖ କ'ଣ ଶିକ୍ଷକ ବୁଝାଇବେ। ସେତେବେଳେ ଚିତ୍ର ଲୋଡ଼ା ହୋଇପାରେ, ଦୃଷ୍ଟାନ୍ତ ଖୋଜା ଯାଇପାରେ। କିନ୍ତୁ କେବଳ ପାଠ ଆବୃତ୍ତିରେ ଭାଷାର ସଙ୍ଗୀତ ପ୍ରଚ୍ଛନ୍ନ ଯତି ମାଧମରେ ପିଲାଟିର ଅନ୍ତଃକରଣରେ ଧ୍ୱନିତ ହେବା 'ବର୍ଣ୍ଣ ପରିଚୟ'ର ଊର୍ଦ୍ଧ୍ୱର କଥା, ଏହାହିଁ ବର୍ଣ୍ଣର ବୋଧ। ସେହିଭଳି 'ଆ କାର ବନା'ରେ ଦେଖନ୍ତୁ :

ମାଛ ଭାସଇ। ଜାହାଜ ଆସଇ।
କଳାଛତା ଧର। ଧାନ ଚାଷ କର।
ଯାଦବ ବସଇ। ମାଧବ ହସଇ।
ଆକାଶର ତାରା । ବରଷାର ଧାରା।
ପାହାଡ଼ର ତଳ। ଭଲ ଝର ଜଳ।
ଉମା ଭାଇ ରାମ। ଉଷା ଭାଇ ଶାମ।

ଏଥିରେ ପରିକଳ୍ପିତ ଗୁଡ଼ିଏ ଦୃଶ୍ୟପଟ। ମାଛ, ଜାହାଜ, କଳାଛତା, ଧାନ, ଯାଦବ, ମାଧବ, ଉମା, ଉଷା, ରାମ, ଶାମ ପୁଣି ଅକାଶର ତାରା, ବରଷାର ଧାରା, ପାହାଡ଼ର ତଳ, ଝର ଜଳ ! କେତେଗୁଡ଼ିଏ ଦିଗନ୍ତ, ପାଖରୁ ନେଇ ଦୂର ଯାଏଁ ଖୋଲିଗଲେ ଏ ଭିତରେ। କେତେ ପରିଚୟ ପୁଣି କେତେ ଅପରିଚୟ। ବିସ୍ମୟ, କୌତୂହଳ, ନିକଟତା ସବୁଥିରେ ପୁଣି କ୍ରିୟା ବ୍ୟବହାରର ରୂପ ଓ ଯତିପାତ !

'ବର୍ଣ୍ଣ ପରିଚୟ'ରେ ଶବ୍ଦ ଓ ପାଠ ଅଲଗା। 'ବର୍ଣ୍ଣବୋଧ'ରେ ପାଠ ଓ ଶବ୍ଦ ଏକାଠି। କୋଉଟା ଠିକ୍ କୋଉଟା ଭୁଲ୍ କଥା ସେଠି ନାହିଁ। କଥା 'ପରିଚୟ' ଓ 'ବୋଧ' ମଧ୍ୟରେ ଥିବା ପାର୍ଥକ୍ୟର। ଭାଷାତାତ୍ତ୍ୱିକ, ମନସ୍ତାତ୍ତ୍ୱିକ ଓ ପେଡ଼ାଗୋଗିକ୍ ଦୃଷ୍ଟିକୋଣରୁ ବିଦ୍ୟାସାଗରଙ୍କ ପ୍ରାଇମର୍ ଯେ ଗୋଟିଏ ସର୍ବମାନ୍ୟ ଉତ୍ତମ ପ୍ରାଇମର୍ ନୁହେଁ, ଏକଥା ସ୍ୱୀକାର କରିବାକୁ ହେବ। ସେଇଠି 'ବର୍ଣ୍ଣବୋଧ' ଅଲଂଘ୍ୟ।

(୨) କଥା ଆଗକୁ ବଢ଼ିଚି, ଯେତେବେଳେ 'ବର୍ଣ୍ଣବୋଧ'ରେ ମଧୁସୂଦନ ଗଦ୍ୟ ଓ ପଦ୍ୟ ଏକାଠି କରିଚନ୍ତି। ଯେମିତି 'ର'କାର ବନାରେ 'ଧଳାବୃକ୍ଷ ବୁଲୁଅଛି', 'କଳାମୃଗ ଜଳ ପିଉଅଛି' ଭଳି ଶୁଦ୍ଧ ଗଦ୍ୟ ପରେ, ଅତର୍କିତ ଆସିଗଲା ସୁନ୍ଦର ପଦ୍ୟରୁ ପଦେ;

କୃଷିକାରୀ ହିତକାରୀ ଅଟେ ପୃଥିବୀର
କୃଷିକରି ପାଳୁଅଛି ମାନବ ଶରୀର।

ସେହିପରି 'ମନକୁ ତୋଷ କର', 'ଗୋଲାପ ଫୁଲ ନିଅ'ରେ 'ତୋଷ' ଓ 'ଗୋଲାପ'ରେ ଓ କାର ପ୍ରୟୋଗ ଦେଖାଇଲା ପରେ- 'ଗୋରୁ ଖାଉଅଛି କୋମଳ ଘାସ, ଗୋପୀ ଜେନା ଚାଷୀ କରୁଛି ଚାଷ' ବା 'ମଧୁର ବିନୟ ବଚନ, କହି ତୋଷିବ ଜନମନ'। ପଦ ପଢୁଛି, ସ୍ମରଣୀୟତା ସୃଷ୍ଟି ହେଉଛି ଓ ତା ସହିତ ଗୋଟେ ନୀତିବାକ୍ୟ ବାକ୍ୟ ବି ପ୍ରବେଶ କରିଯାଉଛି ଅତି ସୂକ୍ଷ୍ମ ଭାବରେ। ପୁଣି ତଦ୍‌ଭବ ଓ ତତ୍‌ସମର ଅର୍ଗଳ ଖୋଲିଯାଉଛି, ଗୁରୁଚଣ୍ଡାଳର ଭ୍ରମ ଆଉ ନାହିଁ।

'ବର୍ଣ୍ଣ ପରିଚୟ'ରେ ପାଠ ଆରମ୍ଭ ହେଉଛି 'ବଡ଼ ଗଛ। ଭାଲ କଲ। ଲାଲ ଫୁଲ୍। ଛୋଟ ପାତା'ରୁ ଏଠି ପଦ୍ୟ ଆଦୌ ନାହିଁ। କେବଳ 'କ୍ରିୟାପଦ' ବ୍ୟବହାର, ଯେପରି- ଆମି ଯାଇବ, ସେ ଆସିବେ, ତୋମ୍‌ରା ଯାଓ, ତିନି ଗିୟାଛେନ୍, ଆମରା ଯାଇତେଛି, ତାହା ଆସିତେଛେ ଇତ୍ୟାଦି। କିନ୍ତୁ ଧୀରେ ଧୀରେ ପାଠ ଜଟିଳ ହୋଇ ଚାଲିଚି। ସେ ଜଟିଳତା 'କେନ', 'କଖନ', 'ନାଇଁ', 'ହଇଲ', 'ହୟନା' ଇତ୍ୟାଦିକୁ ନେଇ ରଚିତ ଆଳାପ-ପ୍ରଧାନ ବା ପ୍ରଶ୍ନୋତ୍ତର ପ୍ରଧାନ ବାକ୍ୟରେ। ସ୍ୱୀକାର କରିବାକୁ ହେବ ଯେ ଏ ବାକ୍ୟଗୁଡ଼ିକ ପିଲାଙ୍କର ବାର୍ତ୍ତା ବିନିମୟକୁ ସୁଗମ କରିବା ପାଇଁ କେତେଗୁଡ଼ିଏ ବ୍ୟବହାର ସୂତ୍ର। ଅନ୍ୟ ଭାବରେ କହିଲେ ବାର୍ତ୍ତାଳାପରୁ ଭାଷାର ରଚନା ବା ବର୍ଣ୍ଣ ସଂଯୋଜନାକୁ ବାଟ ଖୋଲିଯାଏ 'ବର୍ଣ୍ଣ ପରିଚୟ'ରେ। ସେଇଠି 'ବର୍ଣ୍ଣବୋଧ'ର ପାଠ ମୁଖ୍ୟତଃ 'କନ୍‌ସେପ୍‌ଚୁଆଲ୍ ଓ ଡେସ୍‌କ୍ରିପ୍ଟିଭ୍'। ବୋଧ ସହିତ ବର୍ଣ୍ଣନାକୁ ମିଶାଇ 'ବର୍ଣ୍ଣବୋଧ' ପିଲାକୁ ଭାଷାର ଅନ୍ତଃସ୍ଥଳକୁ ନେଇଯାଏ, ଯେଉଁଠି ଗଦ୍ୟ-ପଦ୍ୟ ନୀତି-ଅନୀତି, କଳ୍ପନା-ବାସ୍ତବତାକୁ ନେଇ ଗୁଡ଼ିଏ ରାସାୟନିକ କ୍ରିୟା ଅନବରତ ଚାଲିଥାଏ। ଅନଭିଜ୍ଞ ଓ କୋମଳମତି ଶିଶୁଟି ମନରେ ଯାହା ରେଖାପାତ କରେ ତାହା ହେଲା ଭାଷାର ଅନୁରଣନ ଓ ଭାବୁକତା। ଏଥିରେ ବାର୍ତ୍ତାଳାପ ନାହିଁ। ପିଲାଙ୍କ ଭିତରେ କୌତୂହଳ, ସମ୍ବେଦନା ଓ ଅଭିବ୍ୟକ୍ତି ନିର୍ମାଣ କ୍ଷମତାର ପ୍ରାଥମିକ ପୁଳକ ସୃଷ୍ଟି କରେ 'ବର୍ଣ୍ଣବୋଧ'। ବିବିଧ ପାଠରୁ ଗୋଟିଏ ଉଦାହରଣ ଦିଏ । ଏ ପାଠ, ଯାହା ହଳନ୍ତ୍ ପରେ ଥିବା 'ବିବିଧ ପାଠ'ରେ ଆସେ, ଏହିଭଳି ଅଭିବ୍ୟକ୍ତି ପ୍ରସ୍ତୁତ କରେ -

"ମୋର ଦୁଇ ଆଖି, ଦୁଇ କାନ, ଦୁଇ ଗୋଡ଼। ଆଖି ନ ଥିଲେ କିଛି ଦିଶେ ନାହିଁ। କାନ ନଥିଲେ କିଛି ଶୁଭେ ନାହିଁ। ହାତ ନ ଥିଲେ କିଛି କାମ କରି ହୁଏ ନାହିଁ।

ଗୋଡ଼ ନଥିଲେ ଚାଲି ହୁଏ ନାହିଁ। ମୁଁ ଜିଭରେ କଥା କହେ ଓ ଯାହା ଖାଏ ତାହା ମିଠା କି ଖଟା, କି ପିତା, କି କଷା ଜାଣିପାରେ।

ମୁଁ ଡାହାଣ ହାତରେ ପୋଥି ଧରିଅଛି। ବାଁ ହାତରେ ଛତା ଧରିଅଛି। ମୋ ମଥାରେ କଳା କେଶ। ଆଈ ମଥାରେ ଧଳା କେଶ। ମୋ ନାକରେ ଦୁଇଟା ପୁଡ଼ା। ନାକପୁଡ଼ା ବାଟେ ପବନ ଯା ଆସ କରୁଛି। ମୋ ପିଠିରେ ଗୋଟିଏ ଘା ହୋଇଥିଲା ଶୁଖି ଗଲାଣି। ପିଠିର ମଝି ହାଡ଼ଟା କେତେ ବଡ଼।

ମୁଁ ଦୁଃଖୀ। ମୋର ଘର ନାହିଁ। ମୋ ଆଖିକୁ ଦିଶେ ନାହିଁ। ମୁଁ ଭିକ ମାଗି ବୁଲୁଅଛି। ମୋର ଖାଇବାକୁ ନାହିଁ। ମୋର ଲୁଗା ନାହିଁ, ଶୀତରେ ଦେହ ଥରୁଅଛି। ମୋତେ ମୁଠିଏ ଖାଇବାକୁ ଦିଅ, ଗୋଟାଏ ପୁରୁଣା ଲୁଗା ଦିଅ। ମୋତେ ଦୟା କର।"

ନିଜର ଅବୟବ ଓ ସେମାନଙ୍କର କର୍ମ ସହିତ ପରିଚିତ ହେଉ ହେଉ ହଠାତ୍ ଏ ଦୁଃଖୀ କାହୁଁ ଅଇଲା ? ନିଜ ସହିତ ଅନ୍ୟର, ସୁଖୀ ଗୃହୀ ମଣିଷ ସହିତ ଦୁଃଖୀ ଭିକାରିର ତୁଳନା ଏଠି ସମ୍ବେଦନା ଜାଗ୍ରତ କରାଇବା ପାଇଁ। ଏ ବାକ୍ୟ କେତୋଟି ହଠାତ୍ ଏଭଳି ଆସି ପହଞ୍ଚିଛନ୍ତି ପିଲା ମନରେ ଗୋଟେ ଚମକ ପାଇଁ। କରୁଣାର ଭାଷା ନିରୀହ ପିଲା ମନରେ ଗଭୀର ପ୍ରଭାବ ସୃଷ୍ଟି କରିପାରେ। ଏ ଅନ୍ଧ ଭିକାରିର ଛବି ଏବେ ବି ମୋ ମନ ଭିତରେ ଅଛି ଏତେ ବର୍ଷ ପରେ। ଦୁଃଖ ଓ ଦାରିଦ୍ର୍ୟର ଚିତ୍ର, ଏ ଦୟା ଭିକ୍ଷା ଗୋଟିଏ ପିଲାର ଅନ୍ତଃକରଣକୁ ଏତେ ଅଳ୍ପରେ ଦ୍ରବୀଭୂତ କରିପାରେ।

'ବର୍ଣ୍ଣ ପରିଚୟ'ରେ ପାଠ ୧୯ ଓ ୨୦ରେ ଦୁଇଟି ପିଲାଙ୍କ ବର୍ଣ୍ଣନା। ପାଠ ୧୯ରେ ଗୋପାଳ ଭଲ ପିଲା ପାଠ ୨୦ରେ ରାଖାଲ୍ ଖରାପ ପିଲା। ଉଦ୍ଦେଶ୍ୟ, ଆଦ୍ୟ ପରିଚୟରୁ ହିଁ ଭଲ ଖରାପର ଏକ ଧାରଣା ପ୍ରସ୍ତୁତ କରିବା। ଈଶ୍ୱର ଚନ୍ଦ୍ରଙ୍କର ଏ ଦୃଷ୍ଟି କେତେଦୂର ଉପଯୁକ୍ତ ତାହାର ବିଚାର ଶିଶୁ ମନସ୍ତତ୍ତ୍ୱବିଦ୍ ଓ ପ୍ରାଥମିକ ଶିକ୍ଷା ବିଶାରଦ କରିବେ। ମଧୁସୂଦନଙ୍କ 'ବର୍ଣ୍ଣବୋଧ' ନୀତି, ବିଜ୍ଞାନ, ଅଧ୍ୟାତ୍ମ ଓ କରୁଣାର ପ୍ରତୀକ, ଆବେଦନ ବହୁଗୁଣରେ ଉଚ୍ଚସ୍ତରୀୟ। ଏମିତିକି ନିଜ ଦେଶର କୀର୍ତ୍ତି, ଈଶ୍ୱରଙ୍କ ମହିମାକୁ ନେଇ ବର୍ଣ୍ଣବୋଧର ସରଳ ପଦ୍ୟ ଓ ଗଦ୍ୟ ବୟସ୍କ ଚିନ୍ତନର କୋଟୀ ସ୍ପର୍ଶ କରନ୍ତି, ଶିଶୁ ସୁଲଭ ହୋଇ ମଧ୍ୟ। ବିଦ୍ୟାସାଗରଙ୍କ 'ବର୍ଣ୍ଣ ପରିଚୟ' ଠାରୁ ମଧୁସୂଦନଙ୍କ 'ବର୍ଣ୍ଣବୋଧ' ସମ୍ପୂର୍ଣ୍ଣ ଭିନ୍ନ ହେବାର ଗୋଟିଏ ବଡ଼ କାରଣ ଓ ଦୁଇ ମନୀଷୀ ପ୍ରାଥମିକ ଶିକ୍ଷାରୁ କ'ଣ ଆଶା କରୁଥିଲେ। ଈଶ୍ୱରଚନ୍ଦ୍ରଙ୍କ ଲକ୍ଷ୍ୟ ଥିଲା ପିଲାଙ୍କ ବାଣୀବିକାଶ। ମଧୁସୂଦନ ରାଓଙ୍କ ଲକ୍ଷ୍ୟ ଥିଲା ବର୍ଣ୍ଣବୋଧ ଏକ ବହୁମୁଖୀ 'ଜୀବନ ପୀଠ' ଭାବରେ ବିକଶିତ କରିବା।

(୩) 'ବର୍ଣ୍ଣବୋଧ'ର ଅନ୍ତିମ 'ବିବିଧପାଠ'ରେ ଗୁଡ଼ିଏ କ୍ଷୁଦ୍ର ରଚନା (ବିଷୟ : ସୂର୍ଯ୍ୟ, ଚନ୍ଦ୍ର, ଦିଗ, ଦିନରାତି, ବର୍ଷ ମାସ ବାର, ଶରୀର ଓ ସର୍ଜନା। ଯା ବ୍ୟତୀତ କୃଷିକର୍ମ, ମାଛ, ମହୁମାଛି, ପକ୍ଷୀ ଓ ସଂସାରର ସୃଜନକର୍ତ୍ତା ଈଶ୍ୱରଙ୍କୁ ନେଇ କେତୋଟି ବିସ୍ମୟକର ସରଳ ପଦ୍ୟ।

'ବର୍ଣ୍ଣ ପରିଚୟ'ରେ ଈଶ୍ୱରଙ୍କୁ ନେଇ ବା ସର୍ଜନାକୁ ନେଇ କୌଣସି ରଚନା ନାହିଁ। ସେ ଦୃଷ୍ଟିରୁ ବିଦ୍ୟାସାଗରଙ୍କ ବର୍ଣ୍ଣ ପରିଚୟ ସେକ୍ୟୁଲର। କିନ୍ତୁ ସେକ୍ୟୁଲରର ଅର୍ଥ ଧର୍ମହୀନତା ବା ଆଧ୍ୟାତ୍ମ ବିବର୍ଜିତ ହେବା ତ ନୁହେଁ ବଙ୍ଗଳା ରେନାଁସାଁର ଜଣେ ପ୍ରମୁଖ ନିର୍ମାତା ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ରଚନାରେ ପାଶ୍ଚାତ୍ୟ ମୁକ୍ତଧାରା ବା ଲିବେରାଲ୍ ଟ୍ରାଡ଼ିସନ୍ ଆସି କି ପ୍ରକାରେ ମିଶିଥିଲା। ସେ ଆଲୋଚନା ବଙ୍ଗଳାର ପ୍ରାଜ୍ଞ ପୁରୁଷମାନେ କରିଛନ୍ତି, କିନ୍ତୁ ବର୍ଣ୍ଣ ପରିଚୟ ସ୍ତରରୁ ସୃଷ୍ଟିର ରହସ୍ୟକୁ ନେଇ କୌଣସି ପ୍ରଶ୍ନ ନ ଉଠିବା ବିବାଦର ବିଷୟ। ବସ୍ତୁତଃ ପାଶ୍ଚାତ୍ୟ ଶିକ୍ଷା ବ୍ୟବସ୍ଥାରେ ଶିଶୁମାନଙ୍କ ମନରେ ପଢ଼ା ଆରମ୍ଭରୁ ହିଁ ଖ୍ରୀଷ୍ଟଙ୍କ କରୁଣାର ମୂଳପାଠ ପ୍ରାର୍ଥନା ଜରିଆରେ ଆରମ୍ଭ କରିଦିଆଯାଏ। ଏହା ମଧ୍ୟ ମୁକ୍ତ ପରମ୍ପରାର ବା ମୁକ୍ତ ଚିନ୍ତନର ବିରୋଧୀ ନୁହେଁ। ତେବେ ବିଦ୍ୟାସାଗର କାହିଁକି 'ବର୍ଣ୍ଣ ପରିଚୟ'କୁ ଯାନ୍ତ୍ରିକ ନିଷ୍କରୁଣ ବାର୍ତ୍ତାଳାପ ବିନିମୟର ମାଧ୍ୟମ ଭାବରେ ପିଲାଙ୍କ ତୁଣ୍ଡରେ ବିକଶିତ କରିବାକୁ ଚାହିଁଲେ ତାହା ଅନୁଧ୍ୟାନର ବିଷୟ। ବଙ୍ଗଳା ରେନାଁସାଁର ଭାଷା ଦୃଷ୍ଟି ଏକ ସ୍ୱତନ୍ତ୍ର ବିଚାରର ଅପେକ୍ଷା ରଖେ।

କେବଳ ବଙ୍ଗଳା ନୁହେଁ ମୁଁ ପ୍ରାୟ ଚଉଦ ପନ୍ଦରଟି ଭାଷାର ବର୍ଣ୍ଣ-ପ୍ରାଇମର୍ ଦେଖି ସଗର୍ବେ ଏ ନିଷ୍କର୍ଷରେ ପହଞ୍ଚିଛି ଯେ, 'ବର୍ଣ୍ଣବୋଧ'ର ଶୀର୍ଣ୍ଣ କାୟା ଭିତରେ ଗଚ୍ଛିତ ହୋଇ ରହିଛି ଜୀବନବୋଧ, ଆଦର୍ଶ, ନୈତିକତା ଓ କରୁଣାର ଆଦ୍ୟ ମାନବୀୟ ପାଠ, ଏକମାତ୍ର 'ବର୍ଣ୍ଣବୋଧ'ରେ। ଆଉ କୌଣସି ପ୍ରାଇମର୍‌ରେ ଏ ବିଶେଷତ୍ୱ ନାହିଁ, ଏ ଔଦାର୍ଯ୍ୟ, ଏ ପାଣ୍ଡିତ୍ୟ, ଏ ଦୂରଦୃଷ୍ଟି ବା ଏ ମହାଭାବ ନାହିଁ। ଯେଉଁ କ୍ଷୁଦ୍ରମନା ବ୍ୟକ୍ତିମାନେ କହନ୍ତି ଯେ ମଧୁସୂଦନ ରାଓଙ୍କ ବର୍ଣ୍ଣବୋଧ, ବିଦ୍ୟାସାଗରଙ୍କ 'ବର୍ଣ୍ଣ ପରିଚୟ'ର ଅନୁକରଣରେ ରଚିତ, ସେମାନେ ଲଜ୍ଜିତ ହେବେ ଅବଶ୍ୟ ଯଦି କେବେ ଦୁଇଟି ବହିକୁ ପୃଷ୍ଠା ପରେ ପୃଷ୍ଠା ମିଳାଇ ପଢ଼ନ୍ତି।

ମଧୁସୂଦନ ରାଓ ଓଡ଼ିଆ ଜାତିର ଆଧୁନିକ ଶିକ୍ଷାଗୁରୁ ଓ ଦୀକ୍ଷାଗୁରୁ। କିଏ କହିଲା ଭକ୍ତ କବି ? ଓଡ଼ିଆ ଭକ୍ତ କବିମାନଙ୍କ ଭଳି ସେ କୌଣସି ଦେବତାର ସ୍ତୁତି କରିନାହାନ୍ତି। ବ୍ରହ୍ମୋପାସକ ମଧୁସୂଦନ ବିଶ୍ୱ ଓ ବିଶ୍ୱନିୟନ୍ତାଙ୍କ ସୃଜନ ରହସ୍ୟକୁ କୃତଜ୍ଞତା ଓ ବିସ୍ମୟ

ଭାଷାରେ ବ୍ୟକ୍ତ କରିଛନ୍ତି ତାଙ୍କର ସମସ୍ତ ରଚନାରେ। ସେ ବ୍ରହ୍ମର୍ଷି, ବ୍ରହ୍ମବେତ୍ତା, ଭକ୍ତିମାର୍ଗର ଅନେକ ଊର୍ଦ୍ଧ୍ୱରେ। ତାଙ୍କରି ସହଜ ବ୍ରହ୍ମବୋଧର ସୂତ୍ର 'ବର୍ଣ୍ଣବୋଧ'ରେ। 'ବର୍ଣ୍ଣବୋଧ' ଓଡ଼ିଆ ପିଲାଙ୍କ 'ସଂସାରବୋଧ', 'ସୃଜନ ବୋଧ', 'ଈଶ୍ୱରବୋଧ' ଓ 'ସଂସ୍କାରବୋଧ'ର କାଳଜୟୀ ରଚନା, ଏ ଜାତିର କପାଳରେ ଅମ୍ଲାନ ତିଳକ ଓ ଏ ଜାତିର ଶିଶୁ ତୁଣ୍ଡରେ ପ୍ରଥମ ଆଶାବାଣୀ -

ପାହିଲା ଅନ୍ଧାର ରଜନୀ, ଉଠ ଉଠ ବାଳକେ
ନବୀନ ପ୍ରଭାତ ସମୟ, ଏବେ ଗାଅ ପୁଲକେ।




[ବର୍ଣ୍ଣବୋଧ : ସଂକଳନ ଓ ସମ୍ପାଦନା ବିଜୟାନନ୍ଦ ସିଂହ, ପ୍ରକାଶକ : ଓଡ଼ିଶା ବୁକ୍ ଏମ୍ପୋରିୟମ୍, କଟକ-୭୫୩୦୦୨, ନୂତନ ସଂସ୍କରଣ ୨୦୧୩ ]



# 'ବର୍ଣ୍ଣହରଣ', 'ବର୍ଣ୍ଣବୋଧ' ଓ ଲିପିସଂସ୍କାର

## ଭଗବାନ ପ୍ରକାଶ

ନିକଟ ଅତୀତରେ ଓଡ଼ିଶାର ଦୁଇଟି ଭିନ୍ନ ଭିନ୍ନ ସମ୍ବାଦପତ୍ରରେ ଶ୍ରୀ ସଞ୍ଜୟଙ୍କ 'ଭାଷା-ଦ୍ରୌପଦୀ ବର୍ଣ୍ଣହରଣ ଓ କର୍ଣ୍ଣ-ବିକର୍ଣ୍ଣ ବୃତ୍ତାନ୍ତ' ଏବଂ ଅସିତ ମହାନ୍ତିଙ୍କ 'ବର୍ଣ୍ଣବଧ' ଓ 'କାଠଗଡ଼ାରେ ଓଡ଼ିଆ ଜାତିର ଶିକ୍ଷକ ମଧୁସୂଦନ'- ଏ ଦୁଇଟି ପଢ଼ିଲାପରେ, ଉପରେ ପଡ଼ି ନିଜ ମତାମତ ଦେବି କି ନାହିଁ ଭାବୁଥିଲି। ତେବେ 'ଦ୍ରୌପଦୀ ବର୍ଣ୍ଣହରଣ' କଥା ପଢ଼ି ମନେ ପଡ଼ିଲା ସୁଦୂର କାଲିଫର୍ଣ୍ଣିଆରେ ପ୍ରବାସୀ ଓଡ଼ିଆଙ୍କ 'ଓସା' ସମ୍ମିଳନୀ କଥା। ସେଠାରେ- 'ଚାଲ ଆମେ ଓଡ଼ିଆ ଶିଖିବା' ଭାଷା ବିଦ୍ୟାଳୟ ପାଇଁ ଆମେ ସାଙ୍ଗରେ ନେଇ ଯାଇଥିଲୁ ୩୦ ଖଣ୍ଡ ମଧୁ-ବର୍ଣ୍ଣବୋଧ। ଦୁଇଜଣ ଓଡ଼ିଆଣୀ ଗାୟତ୍ରୀ ଯୋଷୀ ଓ କୁକୁ ଦାସ ସେଠାରେ ଅନ୍ୟ ଓଡ଼ିଆମାନଙ୍କୁ ସଂଗଠିତ କରି ଏହି ବିଦ୍ୟାଳୟ ଚଳାଉଛନ୍ତି। ସମ୍ମିଳନୀ ଚାଲିଥିବା ବେଳେ ସେଇ ବିଦ୍ୟାଳୟର ଛୋଟ ଝିଅଟିଏ ଓଡ଼ିଆରେ ପଚାରିଲା- ଆମ ଓଡ଼ିଆ ଭାଷାରେ କାହିଁକି ଏତେ 'କାର୍' ? ମାନେ 'ଅ'କାର୍, 'ଆ'କାର୍, 'ଇ'କାର୍, 'ଏ'କାର୍, 'ଓ'କାର୍, 'ଔ'କାର୍- ଏମିତି କେତେ 'କାର୍'। ଖାଲି ଦ୍ରୌପଦୀ ଲେଖିବା ପାଇଁ ଚାରିଟା କାର୍। ଇଂରାଜୀରେ ୨୬ଟି ଅକ୍ଷର, ଆମର କାହିଁକି ୫୨ଟା ? ପିଲାଟିକୁ ବୁଝାଇବାକୁ ଚେଷ୍ଟା କରି କହିଥିଲି ଯେଉଁ ଭାଷାରେ ଯେତେ ଅଧିକ ଅକ୍ଷର ଓ ମାତ୍ରା, ସେ ଭାଷା ସେତିକି ଉନ୍ନତ। କହିଲା- ତା' ହେଲେ ଇଂରାଜୀ କ'ଣ ଏକ ଅନୁନ୍ନତ ଭାଷା ? ତେବେ ଏହା ବିଶ୍ୱଭାଷା ହେଲା କିପରି ? କହିଲି ବଡ଼ହୋଇ ବିଶ୍ୱଭାଷାର ଇତିହାସ ପଢ଼ିଲେ ଜାଣିବୁ କିପରି ଶାସକଙ୍କ ଭାଷା ଶାସିତଙ୍କ ଭାଷାକୁ ପ୍ରଭାବିତ କରିଥାଏ, କିପରି ଇଂରାଜୀ ଭାଷାର ଜନ୍ମସ୍ଥଳୀ ଇଂଲଣ୍ଡର ରାଜାଭାଷା ଥିଲା ବିଦେଶୀ ଫ୍ରେଞ୍ଚ; କିନ୍ତୁ ମନେ ମନେ ଭାବିଲି ପିଲାଟିର ପ୍ରଶ୍ନଗୁଡ଼ିକ ଆମକୁ ଭଲ ନ ଲାଗିଲେ ବି ନିରାଧାର ନୁହେଁ। 'ବଡ଼ ଥିଲେ ପଚାରି, ଛୋଟଥିଲେ ବିଚାରି' ନ୍ୟାୟରେ ପ୍ରଶ୍ନର ଉତ୍ତର ଦେବା ଆମ ସମସ୍ତଙ୍କ ଦାୟିତ୍ୱ।

ତେଣୁ ଆଜି ଓଡ଼ିଶାରେ ଓଡ଼ିଆ ଭାଷା, ଲିପି, ବର୍ଣ୍ଣବୋଧ ସମ୍ପର୍କରେ ଆଉ ଥରେ ବିଚାର, ଆଲୋଚନା ଆରମ୍ଭ ହେବା ଏକ ଶୁଭ ସଂକେତ। ମନ ଓ ହୃଦୟର ଝରକା

ଖୋଲି ଦେଲେ ନୂଆ ତାଜା ପବନ ବହିବ। ଏ ବିଷୟରେ ଯେଉଁ ବନ୍ଧୁ ଓ ଓଡ଼ିଆ ଭାଷାପ୍ରେମୀମାନେ ସ୍ୱକୀୟ ଯୁକ୍ତି ଓ ମତାମତ ରଖିଛନ୍ତି ସମ୍ମାନସହ ସେମାନଙ୍କର ଓ ଅନ୍ୟସବୁ ଭାଷାପ୍ରେମୀଙ୍କ ବିଚାର ପାଇଁ କେତୋଟି କଥା ରଖିବି। ପ୍ରଥମ କଥା ପ୍ରଥମେ। ଓଡ଼ିଆ ଭାଷା ପ୍ରତିଷ୍ଠାନ ପକ୍ଷରୁ 'ମଧୁ ବର୍ଣ୍ଣବୋଧ'କୁ 'ଓଡ଼ିଆ ବର୍ଣ୍ଣବୋଧ' ଭାବରେ ପୁନର୍ନାମିତ କରିବା ବିଷୟରେ ଶ୍ରୀ ସଂଜୟଙ୍କ ଆପତ୍ତି ଯଥାର୍ଥ ଓ ଯୁକ୍ତିବିଳିଷ୍ଟ। ସେମିତି ଅସିତ ମହାନ୍ତି- 'କୌଣସି ପୁସ୍ତକର ମୂଳପାଠ ଓ ମୂଳ ନାମକୁ ସଂପାଦନା ଆଳରେ ବଦଳାଯାଇପାରିବ କି- ବୋଲି ଯେଉଁ ପ୍ରଶ୍ନ ଉଠାଇଛନ୍ତି, ତାହାର ଏକମାତ୍ର ଉତ୍ତର ହେଉଛି- ନାହିଁ ନାହିଁ ନାହିଁ। ତାଙ୍କ କହିବା ଅନୁସାରେ 'ଛ'ମାଣ ଆଠଗୁଣ୍ଠ'କୁ ଓଡ଼ିଆ ଛ'ମାଣ ଆଠଗୁଣ୍ଠ ବା 'ଗୀତାଂଜଳି'କୁ ବଙ୍ଗଳା ଗୀତାଂଜଳି ନାମ ଦିଆଯାଇ ପାରିବ ନାହିଁ। ସତକଥା। ଯେମିତି ତୁଳସୀ ରାମାୟଣ, ବାଲ୍ମୀକି ରାମାୟଣ, ଶାରଳା ମହାଭାରତ, ରବୀନ୍ଦ୍ର ସଂଗୀତ ସେମିତି ସ୍ରଷ୍ଟା ଓ ସୃଷ୍ଟିଙ୍କୁ ଏକ କରି 'ମଧୁ ବର୍ଣ୍ଣବୋଧ'। ଏହା ଏକ ବହି ନୁହେଁ, ଓଡ଼ିଆଙ୍କ ଶିକ୍ଷା, ସଂସ୍କୃତି, ଭାଷା ଓ ସାମାଜିକ ଚିନ୍ତାଧାରାର ଏକ ଅଭିନ୍ନ ଅଙ୍ଗ। ଅସିତଙ୍କ ଭାଷାରେ ଓଡ଼ିଆଜାତିର ଶିକ୍ଷକ। ଏ ସମ୍ପର୍କରେ ପୁନର୍ବିଚାର ପାଇଁ କମିଟି ଗଠନ ହେଲାପରେ ଆଉ ଚର୍ଚ୍ଚା ନକରି କମିଟି ସମ୍ମୁଖରେ ସବୁ ଯୁକ୍ତି ଓ ମତାମତ ଉପସ୍ଥାପନ କରିବା ଉଚିତ ହେବ।

ଏବେ ଫେରିବା କାଲିଫର୍ଣ୍ଣିଆର ସେଇ ଛୋଟ ଓଡ଼ିଆ ଶିଖୁଥିବା ଝିଅର ସରଳ, ସିଧା ପ୍ରଶ୍ନକୁ। ୧୯୬୯ରେ ଏପରି ଏକ ପ୍ରଶ୍ନ କରିଥିଲେ ଓଡ଼ିଆ ଏମ୍.ଏ ପଢୁଥିବା ଆଉ ଜଣେ ଯୁବକ ଯନ୍ତ୍ରଣା ପରୀକ୍ଷିତ। ତା'ପରେ ୧୯୭୧ରେ ସେ ଲେଖିଲେ 'ଓଡ଼ିଆ ଲିପି ସଂସ୍କାର'। ଓଡ଼ିଆ ଅଧ୍ୟାପକ, ପ୍ରାଧ୍ୟପକ ହେଲେ ଓ ବର୍ଣ୍ଣ ଓ ଲିପି ସଂସ୍କାର କଥା କହି କହି ନିଷ୍ଫଳ ହେଲେ। ଛାତ୍ରାବସ୍ଥାରେ ତାଙ୍କ ଲେଖାଟି ପାଇଁ ହରେକୃଷ୍ଣ ମହତାବ ତାଙ୍କୁ ବ୍ୟକ୍ତିଗତ ଭାବରେ ବଧେଇ ଦେଇଥିଲେ। ପରୀକ୍ଷିତଙ୍କର ଯୁକ୍ତିଥିଲା କେବଳ ବନାନ ସରଳୀକରଣ ହେଲେ- କେବଳ ଅନୁସ୍ୱାର ପ୍ରୟୋଗ ଦ୍ୱାରା ୨୦ଟି ଯୁକ୍ତାକ୍ଷରର ଆବଶ୍ୟକତା ପଡ଼ିବ ନାହିଁ। 'ଅ'ରେ ହ୍ରସ୍ୱ ଇ ଦେଇ ଲେଖିଲେ ଅନେକ ଅକ୍ଷର ଉଠିଯିବ - ଯେମିତି ଈଶ୍ୱର ବଦଳରେ 'ଅିଶ୍ୱର'। ହଳନ୍ତ୍ ଦେଇ ଶବ୍ଦ ସୃଷ୍ଟିକଲେ ସତ୍କାର ହେବ ସତ୍‌କାର। ସେମିତି 'କ୍ଷ' ହଟାଇଦେଇ 'ଖ' ରଖିଲେ ଆକ୍ଷି ହେବ ଆଖି। ବର୍ଣ୍ଣମାଳାରୁ ଆଉ ଗୋଟିଏ ଅକ୍ଷର (ଅଖ୍ୟର) କମିଯିବ। ଏପରି ଅନେକ ଉଦାହରଣ ଦେଇଛନ୍ତି ଅଧ୍ୟାପକ ଯନ୍ତ୍ରଣା ପରୀକ୍ଷିତ। ତାଙ୍କ ଭଳି ଲିପି ସଂସ୍କାରବାଦୀମାନେ କହନ୍ତି ଯେ ଞ, ଙ, ଋ, ଌ ଭଳି ଅକ୍ଷରର ଆଉ

ଆବଶ୍ୟକତା ନାହିଁ। ସେମିତି ଦନ୍ତ୍ୟ 'ସ' ସହ ତାଲବ୍ୟ 'ଶ' ମୂର୍ଦ୍ଧନ୍ୟ 'ଷ'ରୁ ଗୋଟିଏ ରଖିଲେ ଚଳିବ।

ସଂସ୍କୃତରେ ଲିପି ସଂସ୍କାରବାଦୀ ବ୍ୟାକରଣକାର ବା ଗ୍ରାମାରିଆନଙ୍କ ସମ୍ପର୍କରେ ଏକ ଉକ୍ତି ଅଛି। ତାହା ହେଲା- "ଅକ୍ଷରମାତ୍ର ଲାଘବେନ ପୁତ୍ରୋତ୍ସବଂ ମନ୍ୟନ୍ତେ ବୈୟାକରଣାଃ।" ଅର୍ଥାତ୍ ଅନେକ ଅକ୍ଷର ଓ ମାତ୍ରାଦ୍ୱାରା ଗଠିତ ଏକ ଶବ୍ଦରୁ ଗୋଟିଏ ମାତ୍ରା ବା ଅକ୍ଷର କମାଇ ଦେଇପାରିଲେ ବ୍ୟାକରଣବିତ୍‌ମାନେ ଏପରି ଖୁସି ହୋଇଯା'ନ୍ତି ସତେକି ସେ ଏକ ନବ ସନ୍ତାନର ଜନନୀ। ମୋର ଜଣେ ଇଂରାଜୀ ଭାଷାଗୁରୁ କହୁଥିଲେ ଯେଉଁ ଶବ୍ଦକୁ ଦୁଇ ତିନିଟି ଅକ୍ଷରରେ ଲେଖିହେବ ସେଥିପାଇଁ ତେରଟା ଅକ୍ଷର ଓ ମାତ୍ରା କାହିଁକି ବ୍ୟବହାର କରିବା ? ତେଣୁ ଏଗାର ଅକ୍ଷରିଆ 'ମେଟାମର୍ଫୋସିସ' ନ ଲେଖି 'ଚେଂଜ୍' ଲେଖ। ଭାଷାକୁ ଅକ୍ଷର ଓ ମାତ୍ରାରେ ଭାରାକ୍ରାନ୍ତ ନକରି ସହଜ ସରଳ କରି ଯେମିତି କହୁଛ ସେମିତି ଲେଖ। ଏବେ କଥା ହେଉଥିଲି ବିଶିଷ୍ଟ ଭାଷାବିତ୍ ଡ. ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ସହ। ତାଙ୍କ ମତରେ ଏ ପର୍ଯ୍ୟନ୍ତ ଓଡ଼ିଆ ବର୍ଣ୍ଣ ସଂଖ୍ୟା ଓ ବର୍ଣ୍ଣକ୍ରମ ସ୍ଥିର ହୋଇନାହିଁ। ଯଥା 'ଷ' ପରେ 'କ୍ଷ' ରହିବ ନା 'ହ' ପରେ 'କ୍ଷ' ରହିବ। ଯୋଡ଼ାଏ ଜ (ଯ) ରହିବ ନା ଗୋଟାଏ। ଅ, ଆ, ଇ, ଈ, ଉ, ଊ ଛଅଟାରୁ ଆ, ଈ, ଊ ରହିବା ଆବଶ୍ୟକ ନାହିଁ। ଯଦି ଉଚ୍ଚାରଣ କରୁଚେ 'ପୂର୍ଣ' ତେବେ କାହିଁକି ଲେଖିବା ପୂର୍ଣ୍ଣ ? ଏମିତି ଅନେକ ପ୍ରଶ୍ନ ଉଠାଇଥିଲେ ଦେବୀପ୍ରସନ୍ନ।

ଲିପି ସଂସ୍କାର ବିପକ୍ଷବାଦୀଙ୍କ ମତରେ ଭାଷା ହେଉଚି ସମାଜ, ସଭ୍ୟତା ଓ ସଂସ୍କୃତିର ସିମେଣ୍ଟ। ତେଣୁ ଏହାର ହାତ ଗୋଡ଼ କାଟିବା ଠିକ୍ ନୁହେଁ। ଥରେ ତନି ଜଣ ବୈଜ୍ଞାନିକ ଗବେଷଣା ପାଇଁ ଗୋଟେ କୁକୁରକୁ ଧରି ତା'ର ଆଗ ଗୋଡ଼ଟି କାଟି ଦେଲେ। ତିନିଗୋଡ଼ରେ ଚାଲି ପାରୁଚି କି ନାହିଁ ଜାଣିବାକୁ। କୁକୁରଟି ବାକି ତିନିଗୋଡ଼ରେ ଚାଲିବାକୁ ଆରମ୍ଭ କଲା। ତା'ପରେ ତା' ଦ୍ୱିତୀୟ ଗୋଡ଼ଟି କାଟି ଦିଆଗଲା। କୁକୁର ଦୁଇଟି ଗୋଡ଼ରେ ଚାଲିଲା, ଏହାପରେ ତା'ର ତୃତୀୟ ଗୋଡ଼ଟି କାଟି ଦିଆଗଲା। ଏଥର କୁକୁର ଗୋଟିଏ ଗୋଡ଼ରେ ଚାଲିନପାରି ତଳେ ପଡ଼ିଗଲା। ବୈଜ୍ଞାନିକମାନେ କହିଲେ ସେ ଆମ ଭାଷା ବୁଝିପାରିଲା ନାହିଁ। ମଣିଷ ଯଦି ଏକଗୋଡ଼ିଆ ଠିଆ ହୋଇପାରୁଚି, କୁକୁର କାହିଁକି ତଳେ ପଡ଼ିଯିବ ? ଆମ ପାଇଁ ଶିକ୍ଷା ହେଲା ଆମେ ଭାଷାର ହାତଗୋଡ଼ ଏପରି କାଟିବା ନାହିଁ ଯାହାଦ୍ୱାରା ଭାଷା ନିଜତ୍ୱ ହରାଇ ଧରାଶାୟୀ ହେବ। ଆଗକୁ ବଢ଼ିପାରିବ ନାହିଁ। ଗୋଟିଏ କୁକୁରର ମୃତ୍ୟୁ ହେଲେ କୋଟିଏ କୁକୁର ତା' ସ୍ଥାନ ନେବେ; କିନ୍ତୁ ଭାଷା

ଖଣ୍ଡିଆଖାବରା ହୋଇ ମରିଗଲେ ତା'ର ସ୍ଥାନ ଅପୂରଣୀୟ ରହିବ। ଏହି ଗୋଷ୍ଠୀକୁ ଇଂରାଜୀରେ କୁହାଯାଏ 'ଲାଙ୍ଗୁଏଜ୍ ପ୍ୟୁରିଷ୍ଟ'। ଗୋଟିଏ ମାତ୍ରା ଏପଟ ସେପଟ ହୋଇଗଲେ ଏମାନଙ୍କୁ ବହୁ କଷ୍ଟ ହୁଏ। ବ୍ୟାକରଣ ପଣ୍ଡିତଙ୍କୁ ଭାର ବୁହାଉଥିବା ରାଜା ପଚାରିଲେ- ବାଧତି ? କଣ କାଟୁଛି ? ପଣ୍ଡିତ ଉତ୍ତର ଦେଇ କହିଲେ- ସ୍କନ୍ଧଂ ନ ବାଧତେ ରାଜନ୍, ତବ 'ବାଧତି' ବାଧତେ। ରାଜାଙ୍କ ଭୁଲ୍ଥିଲା ସେ 'ଏ'କାର ଜାଗାରେ 'ଇ'କାର ଲଗାଇ 'ବାଧତେ' ଜାଗାରେ 'ବାଧତି' ବୋଲି କହିବାରୁ ତାଙ୍କ ଭାଷା କେବଳ ଗୋଟିଏ ମାତ୍ରା ପରିବର୍ତ୍ତନରୁ, ବ୍ୟାକରଣ ଦୃଷ୍ଟିରୁ ଅଶୁଦ୍ଧ ହେଇଯାଇଥିଲା।

ଏ ଲେଖକ ଗାଁ ପ୍ରାଥମିକ ବିଦ୍ୟାଳୟରେ ପଢୁଥିବା ବେଳେ ଏକ ହଳନ୍ତ୍ ଛାଡ଼ିଦେଇଥିବାରୁ ବେତ୍ରାଘାତରେ ଜଖମ ହୋଇଥିଲା। 'ଇଜିପ୍ଟ'କୁ ଲେଖିଦେଇଥିଲି ଇଜିପଟ୍ ଓ ମିଶରକୁ ଲେଖୁଥିଲି ମିସର୍। ତାଲବ୍ୟ ଶ ଜାଗାରେ ଦନ୍ତ୍ୟ 'ସ' ଯୋଗୁ କାନ ଧରି ଉଠ୍‌ବସ୍ ହୋଇଥିଲି ତିନିଥର। ଲିପି ସଂସ୍କାର ପ୍ରତିପକ୍ଷବାଦୀମାନେ କହନ୍ତି ଅକ୍ଷରକୁ ବଦଳାଇ ଦେଲେ ଅର୍ଥ ବଦଳିଯାଏ। ଯେପରି 'ବିଷ'କୁ 'ବିସ' ଲେଖିଲେ ଅର୍ଥ ବଦଳିଯାଇ ବୁଝାଏ 'ପଦ୍ମନାଡ଼'କୁ। ଭାଷାକୁ ସରଳୀକରଣ କରିବା ବେଳେ ଏହିପରି ସମସ୍ୟାର ସମାଧାନ ଖୋଜିବାକୁ ପଡ଼ିବ। ଓଡ଼ିଆ ଭାଷାର ଦୁଇ ହଜାର ବର୍ଷର ଇତିହାସ ସରଳୀକରଣର ଇତିହାସ। ବୈଦିକ ଭାଷା ଯେତେବେଳେ ଲୋକେ ବୁଝିପାରିଲେ ନାହିଁ, ତାକୁ ସରଳୀକରଣ କରି ସୃଷ୍ଟି ହେଲା ସଂସ୍କୃତ। କ୍ରମେ ସଂସ୍କୃତ ବି କଥିତ ଭାଷାର ସ୍ଥାନ ହରାଇବାରୁ ପ୍ରାକୃତ ତା ସ୍ଥାନ ଅଧିକାର କଲା। କାଳକ୍ରମେ ଏ ଭାଷାସବୁ ବଦଳିଗଲା ସୁରସେନୀ, ପାଲି, ପୈଶାଚ୍ୟ, ମାଗଧୀ, ଅର୍ଦ୍ଧ ମାଗଧୀ ଭାବରେ। ଏ ଭାଷା ପୁଣି ବଦଳି ବଦଳି ହେଲା ଓଡ଼ିଆ। ଏହି ପ୍ରକ୍ରିୟାକୁ ଲାଗିଥିଲା ଦେଢ଼ହଜାର ବର୍ଷ। ମୋଗଲ ଅମଳରେ ଏଥିରେ ପଶିଲା ପର୍ସିଆନ ଓ ଆରବିକ୍ ଶବ୍ଦମାନ। ତା'ପରେ ଇଂରେଜ ଶାସନ କାଳରେ ଶାସକଙ୍କ ଭାଷା ଓ ଶବ୍ଦାବଳୀ ପ୍ରବେଶ କଲେ ଓଡ଼ିଆରେ। ତେଣୁ ବିଶୁଦ୍ଧ ଖାଣ୍ଟି ଓଡ଼ିଆ, ଖାଣ୍ଟି ହିନ୍ଦୀ ବା ଖାଣ୍ଟି ଇଂରାଜୀ ଖୋଜିଲେ ମିଳିବନାହିଁ। କାରଣ ଇଂଲଣ୍ଡ ନିଜେ ଶହଶହ ବର୍ଷ ଧରି ଫ୍ରାନ୍ସ ସାମ୍ରାଜ୍ୟର ଅଂଶ ଥିଲା ଓ ସେଠାକାର ସରକାରୀ ଭାଷା ଥିଲା ଫ୍ରେଞ୍ଚ୍। ସେମିତି ମାଦଳା ପାଞ୍ଜି, ତାଳପତ୍ର ପୋଥିର ଓଡ଼ିଆ ଓ ଆଜି ଆମେ କହୁଥିବା ଓଡ଼ିଆରେ ଆକାଶପାତାଳ ଫରକ। ଅଷ୍ଟମ ଶତାବ୍ଦୀର 'ଚର୍ଯ୍ୟାପଦ' ଓଡ଼ିଆ ଓ ୧୮୩୬ରେ ପ୍ରଥମ ଓଡ଼ିଆ ଛାପାଖାନା ପ୍ରତିଷ୍ଠା ପରବର୍ତ୍ତୀ କାଳର ଓଡ଼ିଆ ଅଲଗା। ଚର୍ଯ୍ୟାପଦ ସାହିତ୍ୟରୁ ଏକ ଦୁଇପଦିଆ ଉଦାହରଣ-

'ଏକାସୋ ପଦୁମ ଚୌଷଠ ପାଖୁଡ଼ି / ତହିଁ ଚଢ଼ି ନଚାଓ ଡମ୍ବି ବାପୁଡ଼ି.....
ହାଲ ଡମ୍ବି ତୋତେ ପୁଛାମି ସାଦ୍‌ଭାବେ / ଇସିସି ଯାସି ଡମ୍ବି କାହାରି ନାବେ'

ଏକାସୋ (ଏକଶହ), ପଦୁମ (ପଦ୍ମ), ନଚାଓ (ନଯାଅ), ଡମ୍ବି (ଡମର ସ୍ତ୍ରୀ), ବାପୁଡ଼ି (ବିଚାରି), ପୁଛାମି (ପଚାରୁଚି), ଯାସି (ଯାଉଚ୍ଛ), ହାଲ (ହଇଲୋ) ଭଳି ଶବ୍ଦ ବ୍ୟବହାର ଆଜିର ଓଡ଼ିଆରେ ନାହିଁ। ଓଡ଼ିଆ ବୌଦ୍ଧ କବି ଲୁଇପା ଓ କାହ୍ନୁପାଙ୍କ ଓଡ଼ିଆକୁ ଗ୍ରହଣ କରିବା କି ନାହିଁ ? ଏହା ପୂର୍ବରୁ ଧଉଳି, ଖଣ୍ଡଗିରି ଶିଳାଲେଖର ଓଡ଼ିଆ ଚର୍ଯ୍ୟାପଦଠାରୁ ଅଲଗା।

ଓଡ଼ିଶା ଲୋକେ ଓଡ଼ିଆ ଭାଷାକୁ ଭିନ୍ନ ଭିନ୍ନ ଢଙ୍ଗରେ କହନ୍ତି। ଯେମିତିକି ମୁଗଲବନ୍ଦି ଓଡ଼ିଆ (ପୁରୀ, ଖୋର୍ଦ୍ଧା, କଟକ, ଯାଜପୁର, ଜଗତସିଂହପୁର, କେନ୍ଦ୍ରାପଡ଼ା, ଆନନ୍ଦପୁର, ଢେଙ୍କାନାଳ, ଅନୁଗୁଳ, ନୟାଗଡ଼ ଅଞ୍ଚଳ) ଗଞ୍ଜାମୀ ଓଡ଼ିଆ (ଗଞ୍ଜାମ, ଗଜପତି, ଶ୍ରୀକାକୁଲମ୍, ବିଶାଖାପାଟଣା, ବିଜୟ ନଗରମ୍) ସମ୍ବଲପୁରୀ ଓଡ଼ିଆ (ସମ୍ବଲପୁର, ବଲାଙ୍ଗୀର, ବୌଦ୍ଧ, ଝାରସୁଗୁଡ଼ା, ଦେବଗଡ଼, ସୋନପୁର, କଳାହାଣ୍ଡି, ସୁନ୍ଦରଗଡ଼ ଅଞ୍ଚଳ), ଦେଶିଆ ଓଡ଼ିଆ (କୋରାପୁଟ, ରାୟଗଡ଼ା, ନବରଙ୍ଗପୁର, ମାଲାକାନାଗିରି ଅଞ୍ଚଳ)। ଓଡ଼ିଶା ବାହାରେ ମେଦିନାପୁରୀ ଓଡ଼ିଆ, ଷଡ଼େଇକଳା ଓଡ଼ିଆ ଇତ୍ୟାଦି। ଝାଡ଼ଖଣ୍ଡରେ ଓଡ଼ିଆ ଦ୍ୱିତୀୟ ସରକାରୀ ଭାଷା। ଏହାଛଡ଼ା ଓଡ଼ିଶା ବାହାରେ ଓ ଭାରତ ବାହାରେ ପ୍ରାୟ ୫୦ ଲକ୍ଷ ଓଡ଼ିଆ ରହୁଛନ୍ତି। କେବଳ ଦିଲ୍ଲୀରେ ୧୬ ଲକ୍ଷ। ଏହି ପରିପ୍ରେକ୍ଷୀରେ 'ମଧୁ ବର୍ଣ୍ଣବୋଧ', ଓଡ଼ିଆ ବର୍ଣ୍ଣମାଳାର ମାନକୀକରଣ ଓ ସରଳ ସହଜ ଭାବରେ ଶିଶୁମାନଙ୍କୁ ଭାଷାଶିକ୍ଷା ପାଇଁ ପ୍ରଥମ ଓ ପ୍ରଧାନ ଉଦ୍ୟମ ଥିଲା; କିନ୍ତୁ ଏହାକୁ ଶେଷ ଉଦ୍ୟମ ଓ ଅପରିବର୍ତ୍ତନୀୟ ବୋଲି କହିବା ବୋଧହୁଏ ଠିକ୍ ହେବନାହିଁ।

୧୯୭୧ ମସିହା ପର୍ଯ୍ୟନ୍ତ ସ୍ନାତକୋତ୍ତର ଓଡ଼ିଆ ବିଭାଗର ପ୍ରଫେସର ଓ ମୁଖ୍ୟମାନେ ଥିଲେ ସଂସ୍କୃତ ବିଭାଗର ମୁଖ୍ୟ ଓ ସେମାନେ ଥିଲେ ସଂସ୍କୃତଜ୍ଞ, ଯଥା- ଆର୍ତ୍ତବଲ୍ଲଭ ମହାନ୍ତି, କୁଞ୍ଜବିହାରୀ ତ୍ରିପାଠୀ, କରୁଣାକର କର। ଏମାନେ ସମସ୍ତେ ଥିଲେ ବିଦ୍ୱାନ୍ କିନ୍ତୁ ଓଡ଼ିଆକୁ ସଂସ୍କୃତ ବ୍ୟାକରଣର ପ୍ରଭାବାଧୀନ ରଖିବାର ପକ୍ଷଧର। ପ୍ରଫେସର ଗୋଲୋକ ବିହାରୀ ଧଳଙ୍କ ପରେ ଓଡ଼ିଆରେ ଏମ୍.ଏ କରିଥିବା ଅଧ୍ୟାପକମାନେ ପ୍ରଥମକରି ସ୍ନାତକୋତ୍ତର ଓଡ଼ିଆ ବିଭାଗର ମୁଖ୍ୟ ହୋଇ ଆସିଲେ। କିନ୍ତୁ ସଂସ୍କୃତ ବିଭାଗରୁ ଆସିଥିଲେ ବି ନିଜେ ଭାଷା ଓ ଧ୍ୱନି ତତ୍ତ୍ୱବିତ୍ ହୋଇଥିବାରୁ, ଗୋଲୋକ ବିହାରୀ ଓଡ଼ିଆ ଲିପି ସଂସ୍କାର ପ୍ରଶ୍ନ ଉଠାଇଥିଲେ। ଏହି ସମୟରେ ରାଧାନାଥ ରଥଙ୍କ ଅଧ୍ୟକ୍ଷତାରେ ଏକ ଲିପି

ସଂସ୍କାର ବୋର୍ଡ଼ ଗଠିତ ହୋଇଥିଲା। ସେତେବେଳେ ରାଧାନାଥ ରଥ ମତାମତ ଦେଇ କହିଥିଲେ ଯେ ଲିପି ସଂସ୍କାର ଭଳି ସ୍ପର୍ଶକାତର ବିଷୟଟିକୁ ଅପରିପକ୍ୱ ଲେଖନୀକୁ ନଦେଇ ଭାଷାବିତ୍ ଗୋଲୋକ ଧଳଙ୍କୁ ଦେଲେ ସର୍ବଜନାଦୃତ ହେବ। କାରଣ ଓଡ଼ିଆ ବନାନ ସଂସ୍କାର ପାଇଁ ପଣ୍ଡିତ ନୀଳକଣ୍ଠ ଦାସ, ଶିକ୍ଷାବିତ୍ ଓ କବି ମାୟାଧର ମାନସିଂ ଓ ସମାଜସେବୀ, ଗାନ୍ଧିବାଦୀ ମନମୋହନ ଚୌଧୁରୀ ଓ କବି ସଚ୍ଚି ରାଉତରାୟ ପ୍ରଚେଷ୍ଟା କରିଆସୁଥିଲେ ସୁଦ୍ଧା, ଏହା ଧ୍ୱନି ବିଜ୍ଞାନ ସମ୍ମତ ହେଉ ନ ଥିବାରୁ ସର୍ବଜନଗ୍ରାହ୍ୟ ହୋଇନଥିଲା। 'ଭାଷାର ଉତ୍ପତ୍ତି ଓ ବିକାଶ' ଲେଖାରେ ନୀଳକଣ୍ଠ ଦାସ ଅନୁସ୍ୱାର ଦେଇ ଲେଖିଲେ ଓଡ଼ିଆ କେମିତି ସରଳ, ସହଜ ହେବ ସେ ସମ୍ପର୍କରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଛନ୍ତି। ୧୯୫୫ ମସିହାରେ ପଣ୍ଡିତ ଗୋଦାବରୀଶ ମିଶ୍ର ବି ଏପରି ମତ ଦେଇଥିଲେ ଏବଂ ପରବର୍ତ୍ତୀ କାଳରେ ତତ୍କାଳୀନ ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକ ମଧ୍ୟ ଲିପି ସଂସ୍କାର ଉଦ୍ୟମକୁ ସମର୍ଥନ କରିଥିଲେ। ଓଡ଼ିଶାରେ ସେତେବେଳେ ଅନୁସ୍ୱାର ପ୍ରୟୋଗକୁ 'ନୀଳକଣ୍ଠି ପ୍ରୟୋଗ' ନାଁ ଦିଆହୋଇଥିଲା।

ଭାଷାଭିତ୍ତିରେ ଓଡ଼ିଶା ସ୍ୱତନ୍ତ୍ର ରାଜ୍ୟ ହେବାର ୩ବର୍ଷ ପରେ ୧୯୩୯ ମସିହାରେ ତତ୍କାଳୀନ ଓଡ଼ିଶା ସର୍କାର ପ୍ରଚଳିତ ଓଡ଼ିଆ ବର୍ଣ୍ଣର ଶୁଦ୍ଧାଶୁଦ୍ଧତ୍ୱ ବିଚାର ପାଇଁ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଅଧ୍ୟକ୍ଷତାରେ ଗୋଟିଏ ସମିତି ଗଢ଼ିଥିଲେ। ବହୁ ଆଲୋଚନା ପର୍ଯ୍ୟାଲୋଚନା ପରେ କମିଟି ମତ ଦେଇ କହିଥିଲେ ଯେ 'ଓଡ଼ିଆରେ ଉଦ୍‌ଭବ ଦେଶୀ ଓ ବିଦେଶୀ ଶବ୍ଦରେ ଗୋଟିଏ ମାତ୍ର 'ଇ'କାର ଓ 'ଉ'କାର ରହିବ, ଏବଂ ସ୍ୱଦେଶୀ ବିଦେଶୀ ସବୁ ଶବ୍ଦ ଗୋଟିଏ 'ସ' ଦ୍ୱାରା ପ୍ରକାଶିତ ହେବ। ଦୁଇଟି 'ଜ' 'ଯ' ସ୍ଥାନରେ ଗୋଟିଏ 'ଜ' ଏବଂ 'କ୍ଷ' ସ୍ଥାନରେ 'ଖ୍ୟ' ଲେଖା ହେବ। ବର୍ଗର ପଞ୍ଚମ ଅନୁନାସିକ ବର୍ଣ୍ଣ ଙ, ଞ, ଣ, ନ, ମ ମାନଙ୍କୁ ଗୋଟାଏ ଗୋଟାଏ ଅନୁସ୍ୱାର ପ୍ରତିନିଧିତ୍ୱ କରିବ।' ଯନ୍ତ୍ରଣା ପରୀକ୍ଷିତଙ୍କ ମତରେ ଇଂରାଜୀ ଶବ୍ଦକୁ ଓଡ଼ିଆରେ ଲେଖିଲାବେଳେ କୌଣସି ବ୍ୟାକରଣଗତ ଧରାବନ୍ଧା ନିୟମ ଅନୁସରଣ କରାଯାଏ ନାହିଁ। ସେମିତି ଓଡ଼ିଆରେ ବି କରିହେବ। ପାଟି କହିବ ଗୋଟିଏ ପ୍ରକାର, ହାତ ଲେଖିବ ଅନ୍ୟ ଗୋଟିଏ ପ୍ରକାର। କାନ ଶୁଣିବ ଲଘୁଧ୍ୱନି 'ଇ', ହାତ ଲେଖିବ ଦୀର୍ଘଧ୍ୱନି 'ଈ'। ଏସବୁ କାହିଁକି ? 'ମଣିଷର ଭାଷା' ପୁସ୍ତକରେ ପ୍ରଫେସର ଗୋଲୋକ ବିହାରୀ ଧଳ ବି ଏକଥା ଆଲୋଚନା କରିଛନ୍ତି। ସଂସ୍କୃତ ବ୍ୟାକରଣ ରଚନା ଯୁଗରେ ଲୋକେ ଯେଉଳି ଶବ୍ଦ ଉଚ୍ଚାରଣ କରୁଥିଲେ ଏବେ ସେଭଳି ହେଉନାହିଁ। ବ୍ୟାକରଣକୁ ଅନୁକରଣ କରି ଉଚ୍ଚାରଣ ହୁଏ ନାହିଁ, ଉଚ୍ଚାରଣକୁ

ଅନୁକରଣ କରି ବ୍ୟାକରଣ ଲେଖାହୁଏ। ଉଚ୍ଚାରଣରେ 'ଗ୍ୟାନ', କିନ୍ତୁ ବ୍ୟାକରଣ ବାଧ କରେ ଲେଖିବାକୁ 'ଜ୍ଞାନ'। ତେଣୁ ଏବେ ବହୁ ଦେଶରେ ଭାଷାକୁ ଧ୍ୱନିସମ୍ମତ କରିବା ପାଇଁ ଉଦ୍ୟମ ଆରମ୍ଭ ହେଲାଣି। କିନ୍ତୁ ଆମେ ଏବେ ବି ଥଟ୍ଟା କରି କହୁ- ଅମୁକଙ୍କର 'ଜ୍ଞାନ' ହଉଚି 'ଗ ଯଫଳା 'ଆ'କାର ଭଳି। ଯେ ଥଟ୍ଟା କରନ୍ତି ସେ ନିଜେ ବି 'ଜ୍ଞାନ'କୁ 'ଗ୍ୟାନ' ଉଚ୍ଚାରଣ କରନ୍ତି।

ଭାରତରେ ଅନ୍ୟଭାଷା ମାନଙ୍କରେ 'ବର୍ଣ୍ଣହରଣ' ଓ 'ବର୍ଣ୍ଣବୋଧ' ପରିବର୍ତ୍ତେ ବର୍ଣ୍ଣସଂସ୍କାର ପ୍ରକ୍ରିୟା ଆରମ୍ଭ ହେଲାଣି। ତାମିଲ୍‌ନାଡୁରେ ଦ୍ରାବିଡ଼ ଆନ୍ଦୋଳନର ପ୍ରତିଷ୍ଠାତା ଓ ପ୍ରଚଣ୍ଡ ତାମିଲପ୍ରେମୀ ଇ.ଭି. ରାମସ୍ୱାମୀ ପେରିୟାର (୧୮୭୯-୧୯୭୩) ତାମିଲ୍ ଲିପି ସଂସ୍କାର ଉପରେ ଜୋର ଦେଇ କହୁଥିଲେ ଆମ ଭାଷା ବର୍ବରଙ୍କ ଭାଷା ହୋଇଯାଇଚି, କାରଣ ଏଥିରେ ୨୪୭ ଅକ୍ଷର ଓ ମାତ୍ରା କିନ୍ତୁ ସ୍ତ୍ରୀଲିଙ୍ଗ ସୂଚକ କ୍ରିୟା ନାହିଁ (feminine verbal) ଏବଂ ତେଲୁଗୁ, କନ୍ନଡ଼ ଓ ମାଲୟାଲମ୍‌ରୁ କେବଳ ସଂସ୍କୃତ ଶବ୍ଦଗୁଡ଼ିକୁ ହଟେଇଦେଲେ ଏମାନେ ସମସ୍ତେ ତାମିଲ୍। ଏ ଭାଷାରେ ବିଦେଶୀ ଶବ୍ଦର ପ୍ରବେଶକୁ ସ୍ୱାଗତ କରି ଏହାକୁ ଅଧିକ ଆଧୁନିକ ଓ ଧ୍ୱନିସମ୍ମତ କରିବା ପାଇଁ ସେ ସଂଗ୍ରାମ କରିଥିଲେ। ଏପରିକି ଅନେକ ତାମିଲ୍ ଅକ୍ଷରର ରୂପ ପରିବର୍ତ୍ତନ ପାଇଁ ଦାବି କରିଥିଲେ।

ସେମିତି ହିନ୍ଦୀ ଭାଷାରେ ଲିପି ସଂସ୍କାର ପାଇଁ ଆନ୍ଦୋଳନ ଚାଲିଚି ୫୦ ବର୍ଷ ହେଲା। ଭାରତର ଦଶଟି ରାଜ୍ୟର ଲୋକେ ହିନ୍ଦୀ କହନ୍ତି- ଯଥା, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ, ବିହାର, ହରିଆନା, ଦିଲ୍ଲୀ, ହିମାଚଳ, ଉତ୍ତରାଞ୍ଚଳ, ଝାଡ଼ଖଣ୍ଡ, ଛତିଶଗଡ଼, ରାଜସ୍ଥାନ। ଏମାନେ ସମସ୍ତେ ଦେବନାଗରୀ ଲିପି ବ୍ୟବହାର କରନ୍ତି। କିନ୍ତୁ ଏହି ଲିପିରେ ଓଡ଼ିଆ ଭଳି ଅନେକ ଅକ୍ଷରର ବିନା ବ୍ୟବହାରରେ ମୃତ୍ୟୁ ଘଟିଥିବାରୁ ଏବଂ ତୁଳସୀ ରାମାୟଣ ଭଳି ଗ୍ରନ୍ଥର ହିନ୍ଦୀକୁ ଏକବିଂଶ ଶତାବ୍ଦୀର ନୂଆପିଢ଼ି ବୁଝି ନ ପାରୁଥିବାରୁ ଲିପି ସଂସ୍କାର ସପକ୍ଷରେ ଜନମତ ସୃଷ୍ଟି ହେଲାଣି। ସେମିତି ଉତ୍ତର ପୂର୍ବାଞ୍ଚଳର ଅନେକ ରାଜ୍ୟର ଭାଷା ଚୀନ୍ ଓ ତିବ୍‌ବତ ଭାଷା ପରିବାର ଦ୍ୱାରା ପ୍ରଭାବିତ। ଏମାନେ ସଂସ୍କୃତ ବ୍ୟାକରଣର ବନ୍ଧନ ମାନନ୍ତି ନାହିଁ। ଉର୍ଦ୍ଦୁ ଆଉ ଏକ ବ୍ୟତିକ୍ରମ। ଏହା ହିନ୍ଦୀ, ଆରବିକ ଓ ପାର୍ସି ଭାଷାର ସମ୍ମିଶ୍ରଣ। ଉର୍ଦ୍ଦୁର ଅର୍ଥ ଆର୍ମି ବା ସମର ବାହିନୀ। ଏହା ଆକ୍ରମଣକାରୀଙ୍କ ଶାସକମାନଙ୍କ ସହ ଆରବିକ୍‌ରେ କଥାବାର୍ତ୍ତା କ୍ରମେ ସୃଷ୍ଟି ହେଇଥିଲା। ତେଣୁ ଏପରି ଗୋଳିଆମିଶା ଭାଷାକୁ ଡାହାଣରୁ ବାଁକୁ ଲେଖିଲେ ଉର୍ଦ୍ଦୁ ଓ ଦେବନାଗରୀ ଲିପିରେ ଲେଖିଲେ ହିନ୍ଦୁସ୍ତାନୀ। ଏପରି ଭାଷାରେ ସଂସ୍କୃତ ବ୍ୟାକରଣ ସୂତ୍ର ଲାଗୁହୁଏ ନାହିଁ। ହିନ୍ଦୁ ମୁସଲମାନ ଏକତା

ପାଇଁ ଗାନ୍ଧି ହିନ୍ଦୀ ବଦଳରେ ହିନ୍ଦୁସ୍ତାନୀକୁ ରାଷ୍ଟ୍ରଭାଷା କରିବାକୁ ଚାହୁଁଥିଲେ। କିନ୍ତୁ ଓଡ଼ିଆରେ ଏପର୍ଯ୍ୟନ୍ତ ଆଦିବାସୀଙ୍କ ଭାଷା ପ୍ରବେଶ କରିପାରିନାହିଁ। କିପରି ଏହା ସର୍ବଜନଗ୍ରାହ୍ୟ ହେବ ? ବଙ୍ଗଳା ଭାଷା ଏ ବିଷୟରେ ଅଧିକ ପ୍ରଗତିଶୀଳ। କିନ୍ତୁ ଯେଉଁମାନେ ଏକଦା କହୁଥିଲେ- 'ଓଡ଼ିଆ (ଉଡ଼େ) ଏକ୍ ସ୍ୱତନ୍ତ୍ର ଭାଷା ନଏ', ସେମାନଙ୍କ ନିଜ ଭାଷାର ଅସ୍ତିତ୍ୱ ନଥିଲା ୧୬ଶ ଶତାବ୍ଦୀ ପର୍ଯ୍ୟନ୍ତ। କିନ୍ତୁ ଜନ୍ ବିମ୍ସଙ୍କ ଭାଷାରେ ସେତେବେଳକୁ ଓଡ଼ିଆ ଏକ ବିକଶିତ ଲୋକଭାଷା ହୋଇସାରିଥିଲା।

ଇଂରାଜୀ ଭାଷାର ଲପି ସଂସ୍କାର ଉଦ୍ୟମ ଆହୁରି ପୁରୁଣା। ଇଂଲଣ୍ଡ ପ୍ରାୟ ତିନିଶହ ବର୍ଷ ଧରି ଜର୍ମାନ୍-ଫ୍ରେଞ୍ଚ ଶାସନାଧୀନ ଥିଲା। ୧୩୫୦ ମସିହା ବେଳକୁ ଇଂରାଜୀରେ battle, beef, button ଭଳି ଅନେକ ବିଦେଶୀ ଶବ୍ଦ ପ୍ରବେଶ କରିସାରିଥିଲା। ମଧୁସୂଦନ ରାଓଙ୍କ ଭଳି ଇଂରାଜୀ ଲେଖକ ଚସର୍ ପ୍ରଥମେ ବର୍ଣ୍ଣମାଳା ପ୍ରସ୍ତୁତ କରିଥିଲେ। ଇଂଲଣ୍ଡର କୋର୍ଟ କଚେରୀ ଓ ସରକାରୀ କାର୍ଯ୍ୟାଳୟର ଭାଷା ଫ୍ରେଞ୍ଚ ଥିବାରୁ ଲୋକେ ଇଂରାଜୀରେ କହିବା ଲେଖିବା ପାଇଁ ସଂକୋଚ କରୁଥିଲେ। ଓଡ଼ିଆ ସଂସ୍କୃତ ଶବ୍ଦାବଳୀକୁ ଅନୁକରଣ କଲାଭଳି କେବଳ ମାନ୍ୟତା ପାଇଁ ଲୋକେ ମୂଳ ଇଂରାଜୀ ଶବ୍ଦକୁ ଲାଟିନ୍ ଶବ୍ଦ ଭଳି ଲେଖୁଥିଲେ। ଉଦାହରଣସ୍ୱରୂପ ଉଚ୍ଚାରଣ କରୁଥିଲେ 'debt'- ଲାଟିନ୍ ଶବ୍ଦ 'debitum'କୁ ଅନୁକରଣ କରି। ସେମିତି ilandକୁ ଲେଖିଲେ Island. । ଏହାକୁ ସୁଧାରିବା ପାଇଁ ୧୮୭୬ ମସିହାରେ 'ଇଙ୍ଗଲିଶ ସ୍ପେଲିଙ୍ଗ ରିଫର୍ମ ଆସୋସିଏସନ୍' ପ୍ରତିଷ୍ଠା ହେଲା। ୧୮୯୮ ମସିହାରେ ଆମେରିକାନ୍ ନାସ୍‌ନାଲ ଏଡୁକେସନ୍ ଆସୋସିଏସନ୍ ପ୍ରଥମେ ୧୨ଟି ଶବ୍ଦର ଧ୍ୱନିସମ୍ମତ ଲେଖାକୁ ଗ୍ରହଣ କରିନେଲେ। ସେଗୁଡ଼ିକ ହେଲା- Tho (not though), altho, thoro (not thorough), thorofare, thru, thruout, catalog, demagog, pedagog, prolog, program, dialog । ଏହି ପ୍ରକ୍ରିୟାକୁ ଆଗେଇ ନେବାପାଇଁ ୧୯୦୬ରେ 'ସରଳ ଉଚ୍ଚାରଣ ପରିଷଦ' ଗଠିତ ହେଲା। ଆମେରିକାନ୍ ପ୍ରେସିଡ଼େଣ୍ଟ ଥିଓଡ଼ର୍ ରୁଜ୍‌ଭେଲ୍‌ଟ ଏହି ନୂଆ ଉଦ୍ୟମକୁ ସମ୍ପୂର୍ଣ୍ଣ ସମର୍ଥନ ଓ ସହଯୋଗ ଦେଲେ।

କିନ୍ତୁ ଏପରି ଉଦ୍ୟମ ଇଂରାଜୀ ଭାଷାର ମାତୃଭୂମି ଇଂଲଣ୍ଡରେ ବହୁ ବିରୋଧର ସମ୍ମୁଖୀନ ହେଲା। ଶିକ୍ଷାବିତ୍, ଭାଷାବିତ୍‌ମାନେ ଦୁଇଦଳରେ ବିଭକ୍ତ ହୋଇଗଲେ- ଗ୍ରୀକ୍-ଲାଟିନ୍‌ବାଦୀ ଓ ଲିପି ସଂସ୍କାରବାଦୀ। ଉଇଲିଅମ୍ ସେକ୍ସପିଅରଙ୍କ କବରର ଫଳକରେ ଲେଖା ହୋଇଥିବା Frend କୁ ବଦଳାଇ Friend ଲେଖିବାକୁ ଦାବି ହେଲା।

ସଂସ୍କାରବାଦୀମାନେ ଇଂରାଜୀଭାଷାକୁ ଜର୍ମାନିକ୍, ଫ୍ରେଞ୍ଚ, ଗ୍ରୀକ୍ ଓ ଲାଟିନ୍‌ର ପ୍ରଭାବରୁ ମୁକ୍ତ କରିବାକୁ ଜନମତ ସୃଷ୍ଟି କଲେ। ଏହାର ନେତୃତ୍ୱ ନେଇଥିଲେ ପ୍ରଖ୍ୟାତ ନାଟ୍ୟକାର ଜର୍ଜବର୍ଣ୍ଣାଡ୍ ଶ'। ସେ ସଦାବେଳେ କହୁଥିଲେ ଇଂରେଜମାନଙ୍କର ମାତୃଭାଷା ପାଇଁ ପ୍ରେମ ନାହିଁ ଓ ନିଜ ପିଲାଙ୍କୁ ଧ୍ୱନିସମ୍ମତ ଲିପିରେ ପଢ଼ାଇବାକୁ ସାହସ ନାହିଁ। ୨୦୦୮ରେ ଏକ ସର୍ଭେ ରିପୋର୍ଟ ଅନୁସାରେ ୬ରୁ ୧୪ ବର୍ଷୀୟ ଇଂରେଜ ପିଲାଙ୍କ ମଧ୍ୟରୁ ଏକ ତୃତୀୟାଂଶ ଠିକ୍ ଭାବରେ ବହି ପଢ଼ିପାରନ୍ତି ନାହିଁ ଓ ବନାନ କରିପାରନ୍ତି ନାହିଁ। ଭାରତରେ ଲିପି ସଂସ୍କାର ଆଗକୁ ନବଢ଼ିବାର ଗୋଟିଏ କାରଣ ହେଉଛି ଏଠାରେ ତିନି ପ୍ରତିଶତ ଇଂରାଜୀ ଲେଖି, ପଢ଼ି, ବୋଲି ପାରୁଥିବା ଲୋକେ ଦେଶର ଶାସନ, ବ୍ୟବସାୟ, ବାଣିଜ୍ୟ, ପର୍ଯ୍ୟଟନ, ବିଜ୍ଞାନ ଓ ଟେକ୍ନୋଲଜି ନିୟନ୍ତ୍ରଣ କରନ୍ତି। କମ୍ପ୍ୟୁଟର, ଇଣ୍ଟରନେଟ୍ ଇଂରାଜୀରେ। ତେଣୁ ସ୍ଥାନୀୟ ଭାଷା ସଂସ୍କାର ଏମାନଙ୍କ ପ୍ରାଥମିକତା ନୁହେଁ। ଦ୍ୱିତୀୟ କାରଣ ହେଲା, 'ଯେମିତି ଅଛି ସେମିତି ଥାଉ' ମନୋବୃତ୍ତି। ନୂଆ ଆଖିରେ ପୁରୁଣାକୁ ଦେଖିବା ପାଇଁ ଅନିଚ୍ଛା ଓ ଆଶଙ୍କା। ଭାଷା ଏକ ବୃକ୍ଷ ସଦୃଶ। ଗଛ ବର୍ଷକେ ଥରେ ପତ୍ରଝଡ଼ା ଦିଏ; କିନ୍ତୁ ଭାଷାବୃକ୍ଷ କାଳର ଗତି ସହ ତାଳ ଦେଇ ମଳାପତ୍ର ଝାଡ଼ି ଚାଲିଥାଏ। ଏହି ପ୍ରକ୍ରିୟା ସହ ତାଳଦେଇ ନ ଚାଲିଲେ କ୍ରମେ ଗଛଟି ଲଣ୍ଡା ହେଇଯିବ; ନୂଆପତ୍ର କଅଁଳିବ ନାହିଁ। ତେଣୁ ଓଡ଼ିଆ ଭାଷାର ମୌଳିକ ସ୍ୱରୂପକୁ ତ୍ୟାଗ କରି କେମିତି ଅଧିକ ଧ୍ୱନିସମ୍ମତ କରାଯାଇପାରିବ, ସେ ସମ୍ପର୍କରେ ଓଡ଼ିଆ ଭାଷାବିତ୍‌ମାନେ ଏକାଠି ବସି ବିଚାର କରିବାର ସମୟ ଏବେ ଉପସ୍ଥିତ।

**ଲୌହ ଲେଖନୀ**



ସୌଜନ୍ୟ : ଇଣ୍ଟରନେଟ୍



# ଓଡ଼ିଆ ଲିପି

## ତାରିଣୀ ଚରଣ ରଥ

ଓଡ଼ିଶାର କେଶରୀବଂଶୀୟ ରାଜାମାନଙ୍କ ଶେଷ କାଳରେ ଅର୍ଥାତ୍ ଏକାଦଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଆ ଭାଷା ପ୍ରଥମତଃ ଲିଖିତ ସାହିତ୍ୟିକ ଭାଷାରେ ପରିଣତ ହୋଇଥିବାର ଅନୁମାନ କରାଯାଇଅଛି। କୌଣସି ଭାଷା ଲିଖିତ ସାହିତ୍ୟିକ ଭାଷାରେ ପରିଣତ ହେବାର କେତେକାଳ ପୂର୍ବେ ତାହାର ଲିପିମାଳାର ସୃଷ୍ଟି ହୋଇଥାଏ। ଅତଏବ ଖ୍ରୀଷ୍ଟପର ଦଶମ ଶତାବ୍ଦୀରେ ଓଡ଼ିଆ ଲପିମାଳାର ସୃଷ୍ଟି ହୋଇଥିବା ନିରୂପଣ କରାଯାଇପାରେ। ପ୍ରାରମ୍ଭରେ ତାହା ଚିଠିପତ୍ର, ହିସାବ ଓ ଦାନପଟା ପ୍ରଭୃତିରେ ବ୍ୟବହୃତ ହୋଇଥିବାର ସମ୍ପୂର୍ଣ୍ଣ ସମ୍ଭବ। ଏହାପରେ ସାହିତ୍ୟିକ ଗ୍ରନ୍ଥମାନ ଲେଖିବାରେ ବ୍ୟବହୃତ ହୋଇଅଛି।

ମଗଧ ନରେଶ ପୃଥିବୀବିଖ୍ୟାତ ଅଶୋକ ବର୍ଦ୍ଧନ ମହାରାଜା କଳିଙ୍ଗ ବା ଓଡ଼ିଶାରାଜ୍ୟକୁ ଘୋର ଯୁଦ୍ଧ ଦ୍ୱାରା ଜୟ କରି ତହିଁର ଭୀଷଣ ହତ୍ୟାକାଣ୍ଡରେ ମର୍ମାହତ ହୋଇ ବୌଦ୍ଧ ଧର୍ମ ଅବଲମ୍ବନ କରିଥିଲେ। ସେହି ଦିନାବଧି ସେ ରାଜର୍ଷି ରୂପେ ପରିଗଣିତ ହୋଇ ସମଗ୍ର ପ୍ରଦେଶରେ ପବିତ୍ର ବୌଦ୍ଧ ଧର୍ମର ପ୍ରଚାର କରିଥିଲେ। ତାହାଙ୍କର ପ୍ରସିଦ୍ଧ ଶିଳାଲିପିମାନ ଖ୍ରୀଷ୍ଟପୂର୍ବ ୨୫୬ ସମ୍ୱତ୍ସରରେ ଖୋଦିତ ହୋଇଥିଲା। ଓଡ଼ିଶାରେ ଏହି ଲିପିମାନ ଆଜିଯାଏ ପୁରୀ ଜିଲ୍ଲା ସ୍ଥିତ ଧଉଳି ପାହାଡ଼ରେ ଓ ଗଞ୍ଜାମର ଜଉଗଡ଼ ଠାରେ ବିଦ୍ୟମାନ। ଓଡ଼ିଶା ଦେଶବାସୀମାନଙ୍କ ଉଦ୍ଦେଶ୍ୟରେ ଏହି ଲିପିମାଳା ଖୋଦିତ ହୋଇଥିଲା। ଲିପିଗୁଡ଼ିକର ଭାଷା ପ୍ରାକୃତ ମାଗଧ ପାଲି ଓ ତହିଁର ଅକ୍ଷରଗୁଡ଼ିକ ପୁରାତନ ବ୍ରାହ୍ମୀଲିପି ଅଟେ। ଅଶୋକ ରାଜାଙ୍କ ପରେ ଓଡ଼ିଶା ମଗଧ ରାଜ୍ୟ ରୂପେ ଖାରବେଳ ରାଜାଙ୍କ ରାଜତ୍ୱରେ ସ୍ୱାତନ୍ତ୍ର୍ୟ ଲାଭ କରିଥିଲା। ଖାରବେଳ ରାଜାଙ୍କ ଦ୍ୱାରା ଖୋଦିତ ଶିଳାଲିପିମାଳା ସୁଦ୍ଧା ଆଜିଯାଏ ଓଡ଼ିଶାର ଖଣ୍ଡଗିରି ଗୁମ୍ଫାମାନଙ୍କରେ ବିଦ୍ୟମାନ ରହିଅଛି। ଏହାର ସମୟ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ମଧ୍ୟଭାଗ ଅଟେ। ଏହା ମଧ୍ୟ ସେହି ଭାଷା ଓ ଲିପିରେ ଖୋଦିତ ହୋଇଅଛି। ଏଥିରୁ ସ୍ପଷ୍ଟରୂପେ

ଧରାଯାଉଅଛି ଯେ, ସେହି ସମୟରେ ଓଡ଼ିଆଭାଷା ଲିଖିତ ହୋଇନଥିଲା, ଅର୍ଥାତ୍ ଓଡ଼ିଆ ଲିପିମାଳାର ସୃଷ୍ଟି ହୋଇନଥିଲା। ସେହି ସମୟରେ ଯଦି ଓଡ଼ିଆ ଲିପି ସୃଷ୍ଟି ହୋଇଥାନ୍ତା, ତେବେ ତାହା ନିଶ୍ଚୟରେ ଏହି ଖୋଦିତ ଶିଳାଲିପି ମାନଙ୍କରେ ବ୍ୟବହୃତ ହୋଇଥାନ୍ତା।

ଏହି ବ୍ରାହ୍ମୀଲିପି ସହିତ ଓଡ଼ିଆ ଲପିର କୌଣସି ପ୍ରକାର ସାମଞ୍ଜସ୍ୟ ଦେଖାଯାଏ ନାହିଁ। ଉଭୟର ଗଠନ ପ୍ରଣାଳୀ ସମ୍ପୂର୍ଣ୍ଣ ଭିନ୍ନ ଅଟେ। କେତେକ ଶତାବ୍ଦୀ ପରେ ଭାରତବର୍ଷରେ ବର୍ତ୍ତମାନ ବ୍ୟବହୃତ ଦେବନାଗର ଲିପିର ସୃଷ୍ଟି ହୋଇଥିଲା, ଏହା ସମ୍ଭବତଃ ଖ୍ରୀଷ୍ଟପର ସପ୍ତମ ବା ଅଷ୍ଟମ ଶତାବ୍ଦୀରେ ଘଟିଥିବା ଅନୁମାନ କରାଯାଇଅଛି। ସଂସ୍କୃତ ଭାରତବର୍ଷର ଅତି ପୁରାତନ ଭାଷା, ଅତଏବ ତାହା ଲେଖିବା ସକାଶେ ଦେବନାଗର ଲିପି ଏହାର ବହୁପୂର୍ବେ ସୃଷ୍ଟି ହୋଇଥିବାର କେହି କେହି କହନ୍ତି। କିନ୍ତୁ ଭାରତବର୍ଷର ପ୍ରାଚୀନ ଭାଷା ସଂସ୍କୃତ ନୁହେଁ; ତାହା ବୈଦିକ ଭାଷା ଅଟେ। ଉକ୍ତ ବୈଦିକ ଭାଷାରେ ଭାରତବର୍ଷର ସକଳ ପୁରାତନ ଶାସ୍ତ୍ରମାନ ରଚିତ ହୋଇ କେବଳ ଜନସାଧାରଣ ଅର୍ଥାତ୍ ଆର୍ଯ୍ୟମାନଙ୍କର ସ୍ମୃତିଶକ୍ତିର ସାହାଯ୍ୟରେ ବଂଶାନୁକ୍ରମରେ ରକ୍ଷିତ ହୋଇଥିଲା।

ବୌଦ୍ଧଧର୍ମର ପ୍ରଭାବରୁ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀଠାରୁ ଖ୍ରୀଷ୍ଟପର ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାଚୀନ ବୈଦିକ ଭାଷାର ଅବନତି ଘଟି ପ୍ରାକୃତ ଭାଷାର ଉଦୟ ହୋଇଥିଲା। ଏହାପରେ ଭାଷା ମାର୍ଜିତ ଓ ନିୟମବଦ୍ଧ ହୋଇ ଅର୍ଥାତ୍ ତାହାର ସଂସ୍କାର କରାଯାଇ ସଂସ୍କୃତ ଭାଷା ଗଠିତ ହୋଇଥିଲା। ଏଣୁ ଦେବନାଗର ଲିପି ସୃଷ୍ଟି ସମ୍ବନ୍ଧରେ ଏହି ମତ ଅବିଶ୍ୱାସ କରିବା ସକାଶେ ଉପଯୁକ୍ତ କାରଣ ନାହିଁ।

ଏହି ଦେବନାଗର ଲିପି ହିଁ ଓଡ଼ିଆ ଲିପିର ଜନନୀ। ପ୍ରଥମାବସ୍ଥାରେ ଓଡ଼ିଆ ଲିପି ଗୋଲାକାର ନ ଥିଲା। ବିଶେଷତଃ ତାଳପତ୍ରରେ ପୂର୍ବକାଳରେ ତାହା ଲିଖିତ ହେଉଥିବାରୁ ତାହା ବର୍ତ୍ତମାନ ଗୋଲାକାର ଜନ୍ମିଥିବାର କେହି କେହି ଅନୁମାନ କରିଅଛନ୍ତି। କିନ୍ତୁ ଏହା ପ୍ରକୃତ କଥା ବୋଲି ବୋଧ ହେଉ ନାହିଁ। ଭାରତବର୍ଷରେ ତାମିଲ୍, ମାଲାୟାଲମ ପ୍ରଭୃତି ଭାଷାମାନଙ୍କରେ ସୁଦ୍ଧା ତାଳପତ୍ର ଲିଖିତ ପୁସ୍ତକମାନ ବିଦ୍ୟମାନ, କିନ୍ତୁ ସେହି ଭାଷାର ଅକ୍ଷରଗୁଡ଼ିକର ଆକାର ଗୋଲ ନୁହେଁ। ଶୁଷ୍କ ତାଳପତ୍ର ଉପରେ ଲୌହ ଲେଖନୀ ଦ୍ୱାରା ଲେଖିବା ମାତ୍ରକେ ଯେ ଅକ୍ଷର ଗୋଲାକାର ହେବା

ଅବଶ୍ୟମ୍ଭାବୀ, ଏହା କଦାପୀ ସମୀଚୀନ ବୋଧ ହୁଏ ନାହିଁ। ଓଡ଼ିଆ ଲିପିର ଗୋଲାକାର ହଠାତ୍ ହୋଇନାହିଁ, ତାହା କେବଳ କ୍ରମଶଃ ସଂଘଟିତ ହୋଇଅଛି। ତାଳପତ୍ରରେ ଲେଖିବା ମାତ୍ରକେ ଅକ୍ଷର ଗୋଲାକାର ଜନ୍ମିଥାନ୍ତା ଓ ଭାରତ ବର୍ଷର ଇତର ପ୍ରାଦେଶିକ ଭାଷାମାନଙ୍କର ଲିପି ସୁଦ୍ଧା ସମସ୍ତ ଗୋଲାକାର ଧାରଣ କରିଥାନ୍ତା। ଭାରତବର୍ଷ ମଧ୍ୟରେ କେବଳ ଉତ୍କଳ ପ୍ରଦେଶରେ ଯେ ଗ୍ରନ୍ଥମାନ ତାଳପତ୍ରରେ ଲିଖିତ ହେଉଥିଲା, ତାହା କଦାପି ନୁହେଁ। ଅନେକ ଇତର ଭାଷାରେ ଗ୍ରନ୍ଥମାନ ସୁଦ୍ଧା ସେହିପରି ଲିଖିତ ହେଉଥିଲା ଓ ସେ ସମସ୍ତ ସେଥିଯୋଗୁଁ ଗୋଲାକାର ଧାରଣ କରି ନାହିଁ। କାଳକ୍ରମେ ଏକ ପ୍ରକାର ରୁଚିର ପ୍ରଭାବରୁ ଓଡ଼ିଆ ଲିପି ଗୋଲାକାର ଧାରଣ କରିଅଛି। ପଡ଼ୋଶୀ ତେଲିଙ୍ଗଭାଷା ଲିପିରୁ ଗୋଲାକାର ଅନୁକୃତ ହୋଇଥିବା ଯେ ଅସମ୍ଭବ ବା ଅଯୌକ୍ତିକ, ଏହା କୁହାଯାଇ ନ ପାରେ। ଆଜିକାଲି ସୁଦ୍ଧା ଓଡ଼ିଆ କରଣି ଅକ୍ଷରମାନଙ୍କର ଆକାର ଭିନ୍ନ ଅଟେ। ଆମ୍ଭମାନଙ୍କର ଶ୍ରଦ୍ଧାସ୍ପଦ ବନ୍ଧୁ ଶ୍ରୀଯୁକ୍ତ ମଧୁସୂଦନ ଦାଶ ବି.ଏ. ମହାଶୟ 'ଉତ୍କଳ-ସାହିତ୍ୟ' ପତ୍ରିକାର ସପ୍ତମ ଭାଗରେ ତାହାଙ୍କ ଦ୍ୱାରା ପ୍ରକାଶିତ 'ଓଡ଼ିଆ ଭାଷା ଓ ପ୍ରାଚୀନ ଓଡ଼ିଆ ସାହିତ୍ୟ' ନାମକ ପ୍ରବନ୍ଧରେ ଲେଖିଅଛନ୍ତି, "ଖୋର୍ଦ୍ଧା ନଗରର ନିକଟବର୍ତ୍ତୀ ବରୁଣାଇ ପର୍ବତର ଗୋଟିଏ ଗୁମ୍ଫାରେ ପାଞ୍ଚ ପ୍ରକାର ଶିଳାଲିପି ଦେଖାଯାଏ। ତନ୍ମଧ୍ୟରୁ ଏକପ୍ରକାର ଗୋଲ ଓଡ଼ିଆ ଅକ୍ଷରରେ ଖୋଦିତ ଏବଂ ତାହା ୭୮୦ ସମ୍ୱତ୍‌ରେ ଖୋଳା ହୋଇଥିବାର ତହିଁରେ ଲେଖାଅଛି। ...ଅତଏବ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀର ପ୍ରାରମ୍ଭ ପୂର୍ବରୁ ଗୋଲାକାର ଓଡ଼ିଆ ଅକ୍ଷର ଯେ ସୃଷ୍ଟି ହୋଇଥିଲା, ଏଥିରେ ସନ୍ଦେହ ନାହିଁ।" ଦୁଃଖର ବିଷୟ ଲେଖକ ଉକ୍ତ ଲିପିର ନକଲ ଦେଇ ନାହାନ୍ତି କିମ୍ବା ତାହାର କୌଣସି ବିଶେଷ ବିବରଣ ପ୍ରକାଶ କରିନାହାନ୍ତି। ଅତଏବ ଉପଯୁକ୍ତ ରୂପେ ପରୀକ୍ଷା ନ କରିବା ପୂର୍ବରୁ ଏହି ଲିପି ଉପରେ ଆମ୍ଭେମାନେ ନିର୍ଭର କରି କୌଣସି ମତ ପ୍ରକାଶ କରି ନ ପାରୁ। ନିମ୍ନୋକ୍ତ ଦ୍ୱାଦଶ ଓ ତ୍ରୟୋଦଶ ଶତାବ୍ଦୀର ଲିପିମାନଙ୍କରୁ ଦେଖାଯିବ ଯେ, ସେହି ସମୟରେ ସୁଦ୍ଧା ଓଡ଼ିଆ ଅକ୍ଷର ସମ୍ପୂର୍ଣ୍ଣ ଗୋଲାକାର ପ୍ରାପ୍ତ ହୋଇ ନଥିଲା। ଅତଏବ ତାହା ଅଷ୍ଟମ ଶତାବ୍ଦୀର ପ୍ରାରମ୍ଭ ପୂର୍ବରୁ ଗୋଲାକାର ଧାରଣ କରିଥିବା କଥା କଦାପି ବିଶ୍ୱାସ କରାଯାଇ ନ ପାରେ। ଲେଖକଙ୍କର ସମୟ ଗଣନା ସୁଦ୍ଧା ନିତାନ୍ତ ଭୁଲ ଅଟେ। ଲିପିର ସମୟ ଅଷ୍ଟମ ଶତାବ୍ଦୀ ପ୍ରାରମ୍ଭ ପୂର୍ବରୁ ବୋଲି ସେ କିପରି ନରୂପଣ କଲେ, ଜଣାଯାଉନାହିଁ। ଲେଖକ ସେହି ପ୍ରବନ୍ଧର କିଛି ପୂର୍ବରେ ଲେଖିଅଛନ୍ତି ଯେ, ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ଶେଷ ଭାଗକୁ ଓଡ଼ିଆ ଭାଷା ଲିଖିତ ଭାଷାରେ ପରିଣତ ହୋଇ ନ ଥିଲା। ତେବେ ଅଷ୍ଟମ ଶତାବ୍ଦୀର ପ୍ରାରମ୍ଭ ପୂର୍ବରୁ ବା ଉକ୍ତ ଶତାବ୍ଦୀ ମଧ୍ୟରେ ହଠାତ୍ ଓଡ଼ିଆ ଅକ୍ଷର କିପରି ଏକାବେଳକେ

ସୃଷ୍ଟ ହୋଇ ଗୋଲାକାର ଧାରଣ କରିପାରିଥିଲା, ତାହା ଆମ୍ଭମାନଙ୍କର କ୍ଷୁଦ୍ର ବୁଦ୍ଧିର ଅଗୋଚର। ଅବଶ୍ୟ ଅକ୍ଷରଗୁଡ଼ିକ ସୃଷ୍ଟ ହେବାର କେତେକ ଶତାବ୍ଦୀ ପରେ ତାହାର ଗୋଲାକାର କ୍ରମଶଃ ଜାତ ହୋଇଅଛି। ଅଷ୍ଟମ ବା ନବମ ଶତାବ୍ଦୀରେ ସୁଦ୍ଧା ଓଡ଼ିଆ ଲିପିର ସୃଷ୍ଟି ହୋଇଥିବାର କୌଣସି ପ୍ରମାଣ ଆଜିଯାଏ ମିଳି ନାହିଁ। ଯାହାହେଉ 'ଉତ୍କଳ-ସାହିତ୍ୟ ସମାଜ'ର ଅନୁସନ୍ଧାନ ସମିତିକୁ ପ୍ରାର୍ଥନା କରୁ ଯେ, ତାହା ବରୁଣାଇ ପର୍ବତର ଓଡ଼ିଆ ଲିପିର ନକଲ ନେଇ ବିଶେଷ ବିବରଣ ସହିତ ଶୀଘ୍ର ପ୍ରକାଶ କରିବେ।

ବର୍ତ୍ତମାନ ଯେତେଦୂର ପର୍ଯ୍ୟନ୍ତ ପ୍ରକାଶିତ ହୋଇଅଛି, ଆମ୍ଭେମାନେ କୋଣାର୍କ ମନ୍ଦିରସ୍ଥ ଏକ ଶିଳାଲିପିରେ ଅତି ପୁରାତନ ଓଡ଼ିଆ ଲିପି ଦେଖିବାକୁ ପାଉ। ଏହା ଶ୍ରୀଯୁକ୍ତ ରାୟ ବାହାଦୂର ମନମୋହନ ଚକ୍ରବର୍ତ୍ତୀ ଏମ୍.ଏ.ଙ୍କ ଦ୍ୱାରା ବିହାର ଓ ଓଡ଼ିଶା ଅନୁସନ୍ଧାନ ସମିତିର ପତ୍ରରେ (Journal of the Behar and Orissa Research Society) ପ୍ରାୟ ଚାରିବର୍ଷ ପୂର୍ବେ ପ୍ରକାଶିତ ହୋଇଅଛି। ଲିପିଟି କ୍ଷୁଦ୍ର ହେଲେ ହେଁ ପ୍ରତ୍ନତତ୍ତ୍ୱବିଦ୍‌ର ଚକ୍ଷୁରେ ବଡ଼ ମୂଲ୍ୟବାନ ଅଟେ। ତହିଁର ଅକ୍ଷରଗୁଡ଼ିକ ବର୍ତ୍ତମାନ ଓଡ଼ିଆ ଅକ୍ଷରଠାରୁ ବହୁ ପରିମାଣରେ ଭିନ୍ନ ଅଟେ। ଓଡ଼ିଶାର ରାଜା ଲାଙ୍ଗୁଳା ନରସିଂହ ଦେବଙ୍କ ଦ୍ୱାରା କୋଣାର୍କ ମନ୍ଦିରଟି ନିର୍ମିତ ହେବା ସମୟରେ ଉକ୍ତ କାର୍ଯ୍ୟରେ ବ୍ୟାପୃତ ଥିବା ରାଜକର୍ମଚାରୀମାନଙ୍କ ନାମ ଲିପିରୁ ଜଣାଯାଏ। ଅତଏବ ଲିପିଟି ଖୋଦିତ ହେବାର କାଳ ପ୍ରାୟ ୧୨୬୦ ଖ୍ରୀଷ୍ଟାବ୍ଦ ବୋଲି ନିରୂପିତ ହୋଇଅଛି। ଓଡ଼ିଶାର ଏହି ପ୍ରସିଦ୍ଧ ନରପତି ଦକ୍ଷିଣରେ ସୁଦ୍ଧା ସୀମାଚଳ ନୃସିଂହ ମନ୍ଦିର କରାଇଥିଲେ। ତାହାର ସମୟ ୧୨୬୮ ଖ୍ରୀଷ୍ଟାବ୍ଦ ଅଟେ। ଲିପିଟିର ଦ, ପ, ଭ, କ, ଏ, ର, ବ, ଲ, ନ, ଇ ପ୍ରଭୃତି ଅକ୍ଷରଗୁଡ଼ିକର ଆକାର ଓ ଢଙ୍ଗ ସ୍ପଷ୍ଟ ରୂପେ ଭିନ୍ନ; ଦେବନାଗର ଲିପିର ନିକଟବର୍ତ୍ତୀ ଅଟେ। ବର୍ତ୍ତମାନ ଲିପି ସହିତ ତୁଳନା କଲେ ଦେଖାଯିବ ଯେ, ଏହି ଲିପିରେ-

(୧) ଅକ୍ଷର ଗୁଡ଼ିକ ଉପରେ ଦେବନାଗର ପରି ସାଧାରଣତଃ ଏକ କ୍ଷୁଦ୍ର ସରଳ ରେଖା ବିଦ୍ୟମାନ।

(୨) ସାଧାରଣତଃ ତାହା ଛାଟ ଓ ବକ୍ର ଭାଗ ବା ପୁଚ୍ଛାଂଶଶୂନ୍ୟ ଅଟେ।

ଏହାଠାରୁ ଅଧିକ ପ୍ରାଥମିକ ଓଡ଼ିଆ ଲିପି ଆଜି ପର୍ଯ୍ୟନ୍ତ ପ୍ରକାଶିତ ହୋଇନାହିଁ। ପରବର୍ତ୍ତୀ ନରସିଂହଦେବଙ୍କର କେତେକ ତାମ୍ରଶାସନ ମିଳିଅଛି ଓ ପ୍ରକାଶିତ ହୋଇଅଛି।

ଏହାପରେ କପିଳେନ୍ଦ୍ରଦେବ ଗଜପତି ଓ ପୁରୁଷୋତ୍ତମଦେବ ଗଜପତିଙ୍କ ସମୟର ଲିପିରେ ବର୍ତ୍ତମାନ ଓଡ଼ିଆ ଲିପି ସହିତ ଅଧିକ ସାମଞ୍ଜସ୍ୟ ଦେଖାଯାଏ। ପୁରୀ ଜଗନ୍ନାଥ ମନ୍ଦିରରେ ଓ ସୀମାଚଳ ନୃସିଂହ ମନ୍ଦିରରେ ଏହି ରାଜାମାନଙ୍କର ଲିପିମାଳା ଯଥେଷ୍ଟ ଦେଖିବାକୁ ମିଳେ। ଉପରୋକ୍ତ ବିହାର ଓ ଓଡ଼ିଶା ଅନୁସନ୍ଧାନ ସମିତିର ପତ୍ରରେ ୧୯୧୮ ସମ୍ବତ୍ସର ଡିସେମ୍ବର ମାସର ସଂଖ୍ୟାରେ ପୁରୁଷୋତ୍ତମଦେବଙ୍କ ସମୟର ଏକ ଦାନପଟା ପ୍ରକାଶିତ ହୋଇଅଛି। ତାହା କୁଠାର ଆକାରର ତାମ୍ରଫଳକ ଉପରେ ଖୋଦିତ ହୋଇଅଛି। ଏହି ତାମ୍ରଶାସନଟିର ଶେଷଭାଗର ଭାଷା ସଂସ୍କୃତ ହେଲେ ସୁଦ୍ଧା ସମଗ୍ର ଓଡ଼ିଆ ଲିପିରେ ଖୋଦିତ ହୋଇଅଛି। ଏହି ଲିପିରୁ ଦେଖାଯିବ ଯେ, ପୂର୍ବପରି ଅକ୍ଷରମାନଙ୍କ ଉପରେ ରେଖା ନାହିଁ ଓ ପୁଡ଼ା ବିଦ୍ୟମାନ ଓ କ୍ଷୁଦ୍ର କ୍ଷୁଦ୍ର ଛାଟ ବ୍ୟବହୃତ ହୋଇଅଛି। କିନ୍ତୁ ଜ, ୟ, ମ, ର, ତ, ଉ, ଢ଼, ୧ (ଓଡ଼ା), ଲ ପ୍ରଭୃତି କେତେକ ଅକ୍ଷରର ଆକାର ଭିନ୍ନ ଅଟେ। ଏହି ଲିପି ପଞ୍ଚଦଶ ଶତାବ୍ଦୀର ଅଟେ। କପିଳେନ୍ଦ୍ର ବା କପିଳେଶ୍ୱରଦେବ ଗଜପତିଙ୍କ ସମୟର ଲିପିର ଗୋଲାକାର ଏହାଠାରୁ ଊଣା ଅଟେ। ତହିଁରେ ଅଧିକ ବକ୍ରାକାର ଦେଖାଯାଏ।

କେତେକ ଦିନ ହେଲା, ଗଞ୍ଜାମ ଜିଲ୍ଲା ସ୍ଥିତ ଗୁମସର ରାଜ୍ୟର ପୁରାତନ ପ୍ରସିଦ୍ଧ ଭଞ୍ଜବଂଶର ରଜା ଜୟ ଭଞ୍ଜଙ୍କ ଦ୍ୱାରା ପ୍ରଦତ୍ତ ଏକ ତାମ୍ରପଟା ଆମ୍ଭର ହସ୍ତଗତ ହୋଇଅଛି। ସେ ରାଜା ରାୟ ଭଞ୍ଜଙ୍କର ପୁତ୍ର ଓ ବୀର ଭଞ୍ଜଙ୍କର ପୌତ୍ର ବୋଲି ତାମ୍ରଶାସନରେ ଲିଖିତ ହୋଇଅଛି। ରାଜା ତାହାଙ୍କ ଦ୍ୱାରା ବିଜିତ ଓ ପ୍ରତିଷ୍ଠିତ କୋଲାଡ଼ (ବର୍ତ୍ତମାନ କୁଲାଡ଼) କଟକ ବା ନଗରରୁ ବିଜୟର ତୃତୀୟ ସମ୍ବତ୍ସରରେ ଜ୍ୟେଷ୍ଠ ପୂର୍ଣ୍ଣିମାର ଚନ୍ଦ୍ରଗ୍ରହଣ କାଳରେ ଜଣେ ବ୍ରାହ୍ମଣଙ୍କୁ ଏକ ଗ୍ରାମ ଦାନ କରିଅଛନ୍ତି। ଓଡ଼ିଶାରେ ଭଞ୍ଜବଂଶୀୟ ରାଜାମାନେ ସୁପ୍ରସିଦ୍ଧ। ଗୁମସର ରାଜାମାନଙ୍କର ରାଜଧାନୀ ପ୍ରଥମେ ପୁରୁଣା ଗୁମୁସର ଦୁର୍ଗରେ ବିଦ୍ୟମାନ ଥିଲା। ଦେଶୀୟ ଇତିହାସରୁ ଜଣାଯାଏ ଯେ, ପ୍ରତାପ ଭଞ୍ଜ ନାମକ ଜଣେ ରାଜା କନ୍ଧ ଅଧ୍ୟକ୍ଷକୁ ପରାଜିତ କରି ତା'ର ପ୍ରାଣ ସଂହାର କରି କୁଲାଡ଼ଠାରେ ନୂତନ ଦୁର୍ଗ ସ୍ଥାପନ କଲେ। ଏହା ଦ୍ୱାଦଶ ଶତାବ୍ଦୀରେ ଘଟିଥିଲା। ବୋଧ ହୁଏ, ଏହି ରାଜା ହିଁ ତାମ୍ରଶାସନରେ ଜୟ ଭଞ୍ଜ ନାମରେ ପରିଚୟ ଦେଇଅଛନ୍ତି। ତାହାଙ୍କର ଅନ୍ୟ ଏକ ତାମ୍ରଶାସନରେ ସେ ନିଜକୁ ଯଶ ଭଞ୍ଜ ନାମ ଦେଇ ଅଛନ୍ତି। ଅତଏବ ଏହି ଲିପି ଦ୍ୱାଦଶ ଶତାବ୍ଦୀର ବୋଲି ନିରୂପଣ କରିବାକୁ ହେବ। ଲିପିର ଭାଷା ସଂସ୍କୃତ। ତହିଁର ଅକ୍ଷରଗୁଡ଼ିକ ହଠାତ୍ ଦେଖିବା ମାତ୍ରକେ ଏକ ବିଶିଷ୍ଟ ପ୍ରକାର ଦେବନାଗର ପରି ଜଣାଯାଏ। କିନ୍ତୁ ଉଚିତ ପରୀକ୍ଷା କରିବା ଦ୍ୱାରା ଧରାଯାଏ ଯେ, ତାହା ଅତି ପୁରାତନ ଓଡ଼ିଆ ଲିପି ଅଟେ। ଦେବନାଗର ଲିପି କ୍ରମଶଃ

କିପରି ପୁରାତନ ଓଡ଼ିଆ ଲିପିରେ ପରିଣତ ହେଉଥିଲା, ତହିଁରୁ ସ୍ପଷ୍ଟ ଧରାଯାଏ। ଏହି ଲିପିମାଳା ଖୋଦିତ ହେବା ସମୟ ଦେବନାଗର ଲିପିରୁ ପୁରାତନ ଓଡ଼ିଆ ଲିପି ଜାତ ହେବାର ସନ୍ଧିକାଳ ବୋଲିବାକୁ ହେବ। ଓଡ଼ିଶାର ଭଞ୍ଜ ରାଜାମାନଙ୍କର କେତେଗୁଡ଼ିଏ ତାମ୍ରଶାସନ ପ୍ରକାଶିତ ହୋଇଅଛି। ଆମ୍ଭେ ମଧ୍ୟ ସେମାନଙ୍କର ଅନ୍ୟ କେତେଗୋଟି ନୂତନ ତାମ୍ରଶାସନ ପାଇପାରିଅଛୁ। ସେଗୁଡ଼ିକରେ ବ୍ୟବହୃତ ହୋଇଥିବା ନାଗରାକ୍ଷର ଭିନ୍ନ ଧରଣର ଅଟେ। ସେଗୁଡ଼ିକ ଅବଶ୍ୟ ଦ୍ୱାଦଶ ଶତାବ୍ଦୀ ପୂର୍ବର। କେଶରୀ ବଂଶୀୟ ରାଜାମାନଙ୍କର କେତେକ ଲିପି ଭୁବନେଶ୍ୱର ସ୍ଥିତ ଶିବମନ୍ଦିରମାନଙ୍କରେ ନାଗରାକ୍ଷରରେ ଖୋଦିତ ହୋଇଅଛି। ଓଡ଼ିଶାର ରାଜାମାନେ ଓ ସାମନ୍ତରାଜାମାନେ ନିଜ ନିଜର ଦାନପତ୍ର ପବିତ୍ର ସଂସ୍କୃତ ଭାଷାରେ ଲେଖିବା ଅଧିକ ଗୌରବର ବିଷୟ ବୋଲି ମଣୁଥିଲେ।

ଏହି ଜୟ ଭଞ୍ଜଙ୍କ ତାମ୍ରଶାସନ ଲିପିରୁ ଦେଖାଯିବ ଯେ, ଖ, ଗ, ଘ, ଚ, ଣ, ଥ, ପ, ଶ, ଷ, କ୍ଷ ପ୍ରଭୃତି କେତେକ ଅକ୍ଷର ଭ୍ରୂଣାବସ୍ଥାରୁ ପ୍ରାୟ ବହିର୍ଗତ ହୋଇସାରିଥିଲା ଏବଂ କ, ଜ, ଠ, ଡ, ଢ, ଦ, ନ, ଭ, ମ, ସ, ହ ପ୍ରଭୃତି ଆହୁରି ଭ୍ରୂଣାବସ୍ଥାରେ ହିଁ ଥିଲା। ତାମ୍ରଶାସନଟି Epigraphia Indica ପତ୍ରରେ ପ୍ରକାଶିତ ହେବା ସକାଶେ Government Epigraphist for India ବିଭାଗର କର୍ମଚାରୀଙ୍କ ନିକଟକୁ ପ୍ରେରିତ ହୋଇଅଛି।

ଲିପିଟିର କେତେକ ଅକ୍ଷର ଭ୍ରୂଣାବସ୍ଥାରୁ ବହିର୍ଗତ ହୋଇସାରିଥିବାରୁ ଅନୁମିତ ହୋଇପାରେ ଯେ, ତାହାର କେତେକାଳ ପୂର୍ବେ ହିଁ ପୁରାତନ ଓଡ଼ିଆ ଲିପି ସୃଷ୍ଟ ହୋଇଥିଲା। ଉପରୋକ୍ତ ଖ, ଗ, ଘ ପ୍ରଭୃତି ଅକ୍ଷରଗୁଡ଼ିକ ଉପରେ କୌଣସି ରେଖା ନାହିଁ ଓ ତହିଁର ପୁଡ଼ାଗୁଡ଼ିକ ଗଠିତ ହୋଇଅଛି; କିନ୍ତୁ କ, ଜ, ଠ, ଡ, ପ୍ରଭୃତି ଅକ୍ଷରଗୁଡ଼ିକ ଉପରେ ରେଖା ଅଛି ଓ ପୁଡ଼ାମାନ ଆହୁରି ଗଠିତ ହୋଇନାହିଁ। ଉପରୋକ୍ତ କୋଣାର୍କମନ୍ଦିର ଲିପିରେ ସୁଦ୍ଧା ଦେଖାଯିବ ଯେ, ଏହି ପ୍ରକାର ଦୁଇ ଜାତିର ଅକ୍ଷର ବିଦ୍ୟମାନ। ଭିନ୍ନ ଭିନ୍ନ ଅକ୍ଷର ଭିନ୍ନ ଭିନ୍ନ ସମୟରେ ବର୍ତ୍ତମାନ ଆକାର କ୍ରମଶଃ ଧାରଣ କରିଥିଲା।

ଓଡ଼ିଆ ଲିପି ଯେଉଁ କୁଟିଳ ଲିପିରୁ ଜନ୍ମିଥିବାର କେହି କେହି ଅନୁମାନ କରନ୍ତି, ତାହା କୌଣସି ଏକ ବିଶିଷ୍ଟ ଲିପି ନୁହେଁ, ଦେବନାଗର ଲିପିର ପ୍ରାଦେଶିକ ରୂପାନ୍ତର ମାତ୍ର। ପୁରାତନ ନାଗର ଲିପି ଭାରତବର୍ଷର ବିଭିନ୍ନ ପ୍ରଦେଶରେ, ବିଶେଷତଃ ଉତ୍ତର ଓ ଦକ୍ଷିଣରେ, କିଛି ଭିନ୍ନ ଆକାର ଧାରଣ କରିଥିଲା। ସମୟକ୍ରମେ ତାହାର ପୂର୍ବ ଆକାର ମଧ୍ୟ କେତେଦୂର ପର୍ଯ୍ୟନ୍ତ ବଦଳୁଥିଲା। ଏହି ପ୍ରଭେଦ ସର୍ବଦା ସମସ୍ତ ଲିଖିତ

ଭାଷାରେ ଦେଖାଯାଇଥାଏ। ବର୍ତ୍ତମାନ ସୁଦ୍ଧା ଆମ୍ଭର ଓଡ଼ିଆ ଲିପି ଗଞ୍ଜାମ, ପୁରୀ, କଟକ, ସମ୍ବଲପୁର ପ୍ରଭୃତି ସ୍ଥାନରେ କିଛି କିଛି ଭିନ୍ନ ଭାବରେ ଲେଖାଯାଏ। ପୂର୍ବେ କହିଅଛୁ ଯେ, ପ୍ରାଚୀନ ବ୍ରାହ୍ମୀଲିପି ସହିତ ଆମ୍ଭର ଓଡ଼ିଆ ଲିପିର କୌଣସି ସମ୍ପର୍କ ନାହିଁ। ଦକ୍ଷିଣ ଭାରତର ଅନ୍ୟ କେତେକ ଲିପି ସେହି ଲିପିରୁ ଜାତ ହୋଇଥାଇପାରେ। ମାତ୍ର ତାହା ଭିନ୍ନ କଥା। ଭଞ୍ଜବଂଶୀୟ ରାଜାମାନଙ୍କର ପ୍ରକାଶିତ ତାମ୍ରଶାସନଗୁଡ଼ିକ ନାଗର ଲିପିରେ ଖୋଦିତ ଅଟେ। ଏହାକୁ ହିଁ କେହି କେହି କୁଟିଳ ଲିପି ବୋଲି କହିଥାନ୍ତି।

ଅତଏବ ଅନ୍ୟ କୌଣସି ବିଶ୍ୱାସଯୋଗ୍ୟ ଦୃଢ଼ ପ୍ରମାଣ ପାଇବା ପର୍ଯ୍ୟନ୍ତ ଓଡ଼ିଆ ଲିପି ଦେବନାଗର ଲିପିରୁ ପ୍ରଥମତଃ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀରେ ସୃଷ୍ଟ ହୋଇଥିବାର ନିରୂପଣ କରାଯାଉଅଛି।

ଏହି ପ୍ରବନ୍ଧରେ କଥିତ ହୋଇଥିବା ଲିପିମାନଙ୍କର ନକଲ ଏଥିସହିତ ଦିଆଗଲା।

## କୋଣାର୍କ ମନ୍ଦିର ଲିପି।

( ୧୨୭୦ ଖ୍ରୀଷ୍ଟାବ୍ଦ। )

## ପୁରୁଷୋତ୍ତମ ଦେବ ଗଜପତିଙ୍କ ଲିପି ।

( ପଞ୍ଚଦଶ ଶତାବ୍ଦୀ )



ଅଶୋକଙ୍କ ଶାସନରେ ବ୍ରାହ୍ମୀ ଲିପି । (ଜଉଗଡ଼)

## ଓଡ଼ିଆ ଲିପି

| ଦେବ ନାଗରୀ | ତାମ୍ରପଟ୍ଟ ଲିପି | ଓଡ଼ିଆ | ଦେବ ନାଗରୀ | ତାମ୍ରପଟ୍ଟ ଲିପି | ଓଡ଼ିଆ | ଦେବ ନାଗରୀ | ତାମ୍ରପଟ୍ଟ ଲିପି | ଓଡ଼ିଆ |
|---|---|---|---|---|---|---|---|---|
| क | [illegible] | କ | द | [illegible] | ଦ | ह | [illegible] | ହ |
| ख | [illegible] | ଖ | ध | [illegible] | ଧ | क्ष | [illegible] | କ୍ଷ |
| ग | [illegible] | ଗ | न | [illegible] | ନ | ळ | [illegible] | ଳ |
| घ | [illegible] | ଘ | प | [illegible] | ପ | ड़ | [illegible] | ଡ଼ |
| च | [illegible] | ଚ | फ | [illegible] | ଫ | ढ़ | [illegible] | ଢ଼ |
| छ | [illegible] | ଛ | ब | [illegible] | ବ | ञ | [illegible] | ଞ |
| ज | [illegible] | ଜ | भ | [illegible] | ଭ | ङ | [illegible] | ଙ |
| झ | [illegible] | ଝ | म | [illegible] | ମ | [illegible] | [illegible] | [illegible] |
| ट | [illegible] | ଟ | य | [illegible] | ଯ | | | |
| ठ | [illegible] | ଠ | र | [illegible] | ର | | | |
| ड | [illegible] | ଡ | ल | [illegible] | ଲ | | | |
| ण | [illegible] | ଣ | श | [illegible] | ଶ | | | |
| त | [illegible] | ତ | ष | [illegible] | ଷ | | | |
| थ | [illegible] | ଥ | स | [illegible] | ସ | | | |

( ଭ, ର, ମ, ଡ, ଢ଼, ଷ, ବ ପ୍ରଭୃତି )

ତାମ୍ରପଟ୍ଟର ଏହି ଅକ୍ଷରଗୁଡ଼ିକ ସହିତ କୋଣାର୍କ ଲିପିର ଅକ୍ଷର ଓ ପଞ୍ଚୁଆ [illegible] ଲିପିର ଅକ୍ଷର ତୁଳନା କରି ବର୍ତ୍ତମାନ ଦେଖନ୍ତୁ ।



# ବର୍ଣ୍ଣୋତ୍ପତ୍ତି

## ମାୟାଧର ନନ୍ଦ

ମାନବ ପୃଥିବୀପୃଷ୍ଠରେ ଜନ୍ମଲାଭ କରିବା ସଙ୍ଗେ ସଙ୍ଗେ ମନୋଭାବ ପ୍ରକାଶ କରବା ପାଇଁ କ୍ଷମ ହୋଇପାରେ ନାହିଁ। କେବଳ ସେହି ଭାବ ହୃଦୟରେ ପୋଷଣ କରି ମୁଡୁକିହସା ମାରେ କିମ୍ବା କୁଆଁ କୁଆଁ ହୋଇ କାନ୍ଦେ। ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ମା' ପ୍ରଭୃତି ଆପ୍ତ ବ୍ୟକ୍ତିମାନଙ୍କ ସଂକେତ ଅନୁସାରେ ମନ ମଧ୍ୟରେ ଜାଗ୍ରତ ହେଉଥିବା ମା, ବାପା, ଭାଇ, ଗାଈ, ଖାଇବା, ଖେଳିବା, କିଛି ନା କିଛି ଭାବ କଥାରେ ପ୍ରକାଶ କରିବାକୁ ଶିଖେ ଓ କ୍ରମେ କ୍ରମେ ଜୀବନ ସାରା କେତେ କଥା କହେ, ଗୀତ ଗାଏ, ବହି ପଢ଼େ। ଏହିସବୁ ଭାବ ବ୍ୟକ୍ତ କରିବା ଲାଗି ତାକୁ ଅ ଠାରୁ ଆରମ୍ଭ କରି ଚନ୍ଦ୍ରବିନ୍ଦୁ ପର୍ଯ୍ୟନ୍ତ ବର୍ଣ୍ଣମାନଙ୍କର ଆଶ୍ରୟ ନେବାକୁ ପଡ଼େ ବୋଲି ସାଧାରଣତଃ ସ୍ଥୁଳ ଦୃଷ୍ଟିରେ କୁହାଯାଇଥାଏ, କିନ୍ତୁ ବସ୍ତୁତଃ ତାହା ନୁହେଁ, ସେହିପାଇଁ ବିଭିନ୍ନ ପ୍ରକାର ଧ୍ୱନିମାନଙ୍କର ଆଶ୍ରୟ ନିଆଯାଇଥାଏ। ସେହି ବିଭିନ୍ନ ଧ୍ୱନିମାନଙ୍କର ନାମ ଦେବାକୁ ଯାଇ ମନୀଷୀମାନେ ଅ, ଆ, କ, ଖ ପ୍ରଭୃତିର ସୃଷ୍ଟି କରିଅଛନ୍ତି। ତେବେ ଅ, ଆ ଆଦି ବର୍ଣ୍ଣମାନଙ୍କର ଉତ୍ପତ୍ତିସ୍ଥାନ ନିର୍ଣ୍ଣୟ କରିବାବେଳେ ସେହିସବୁ ନାମରେ ନାମିତ ହୋଇଥିବା ଧ୍ୱନି ବା ଶବ୍ଦର ଉତ୍ପତ୍ତି ସ୍ଥାନ ନିର୍ଣ୍ଣୟ କରିବା ସମୀଚୀନ ତଥା ସର୍ବଜନସମ୍ମତ ବୋଲି ମନେହୁଏ।

ଅକ୍ଷରମାନଙ୍କର ଜନ୍ମସ୍ଥାନ ନିରୂପଣ କରିବାକୁ ଯାଇ ବୈୟାକରଣିକମାନେ ମୋଟ ଉପରେ କହି ଅଛନ୍ତି -

"ଅଷ୍ଟୌ ସ୍ଥାନାନି ବର୍ଣ୍ଣନାମୂରଃ କଣ୍ଠଃ ଶିରସ୍ତଥା ଜିହ୍ୱାମୂଳଂ ଚ ଦନ୍ତାଷ୍ଠ ନାସିକେ ଷ୍ଠୌ ଚ ତାଳୁ ଚ।" ଅର୍ଥାତ୍ ବକ୍ଷ, କଣ୍ଠ, ମସ୍ତକ, ଜିହ୍ୱାମୂଳ, ଦନ୍ତ, ନାସିକା, ଓଷ୍ଠ ଓ ତାଳୁ ଏହି ଆଠଟି ସ୍ଥାନରୁ ସମସ୍ତ ବର୍ଣ୍ଣର ଉତ୍ପତ୍ତି। କିନ୍ତୁ ଭାଷ୍ୟକାର ପୂର୍ବାଚାର୍ଯ୍ୟମାନେ ଏ ବିଷୟ ନେଇ ସୂକ୍ଷ୍ମଭାବରେ ବହୁ ଗବେଷଣା କରି ଅବଶେଷରେ ଯେଉଁ ମୀମାଂସାରେ ଉପନୀତ ହୋଇଅଛନ୍ତି, ତାହାର ସାର ମର୍ମ ନିମ୍ନରେ ଚିତ୍ର କରାଯାଉଅଛି।

ପବନ ଅଣଚାଶ ମୂର୍ତ୍ତି ଧରି ଗତି କରୁଥିବା ବେଳେ ଯଦି ତା'ର ଗତିରେ କିଛି ବାଧା ପଡୁନଥାନ୍ତା, ତେବେ ଟିକିଏ ମାତ୍ର ଶବ୍ଦ ଶୁଭନ୍ତା ନାହିଁ, କିନ୍ତୁ ତା'ର ଗତିପଥରେ ବୃକ୍ଷ ପ୍ରଭୃତି ପ୍ରତିବନ୍ଧକ ଉପସ୍ଥିତ ହୁଏ ବୋଲି ସୁ ସୁ କିମ୍ବା ସାଇଁ ସାଇଁ ଶବ୍ଦ ଶୁଭେ। କେବଳ ଏତିକି ନୁହେଁ, ଆହୁରି ମଧ୍ୟ ଆମ୍ଭେମାନେ ଯେତେବେଳ ଖୁବ୍ ଜୋର୍‌ରେ ଧାଉଁ କିମ୍ବା ହାତ ହଲାଇ ଚାଲୁ, ସେତେବେଳେ ଗୋଟାଏ କିଛି ନା କିଛି ଶବ୍ଦ ଶୁଣିବାକୁ ପାଉ। ଏହା ଅକୁଣ୍ଠିତ ଚିତ୍ତରେ କୁହାଯାଇପାରେ ଯେ, ସେ ଶବ୍ଦ ବାୟୁର ଅବାଧ ଗତିରେ ବାଧା ଦେବାକୁ ଜାତ ହୋଇଥାଏ। ଏହି ସବୁ ଯୁକ୍ତିକୁ ଦୃଢ଼ମୂଳ କରି ସେମାନେ ସ୍ଥିର କରିଅଛନ୍ତି, ମନୁଷ୍ୟମାନଙ୍କ ମୁଖରୁ ଉଚ୍ଚାରିତ ହେଉଥିବା ଅ, ଆ ପ୍ରଭୃତି ବର୍ଣ୍ଣାତ୍ମକ ଧ୍ୱନି ବାୟୁର ସ୍ୱେଚ୍ଛାଗତିରେ ବାଧା ପଡ଼ିବାରୁ ଜାତ ହୋଇଅଛି। ଅତଏବ ବର୍ତ୍ତମାନ ସେହି ବାୟୁର ଉତ୍ପତ୍ତି ଓ ବାଧା ବିଷୟ କେବଳ ବିଚାର୍ଯ୍ୟ।

ସେମାନଙ୍କ ମତରେ ପୃଥିବୀ, ଜଳ, ତେଜ, ବାୟୁ, ଆକାଶ ଏହି ପଞ୍ଚ ମହାଭୂତ ଶରୀର ମଧ୍ୟରେ ଯାବତୀୟ ଜ୍ଞାନର ଆଧାର ଅତି ସୂକ୍ଷ୍ମ ଆତ୍ମା ବୋଲି କେହି ଜଣେ ଅଛି। ତାହାର ଆଦେଶମତେ ଭଲ ମନ୍ଦ ସବୁ କାର୍ଯ୍ୟ ନିଷ୍ପନ୍ନ ହେଉଅଛି। ଆହୁରି ମଧ୍ୟ ବୁଦ୍ଧି ନାମରେ ଆଉ ଜଣେ ତା'ର ବୋଲ ଶୁଣିବାକୁ ତା ତୁଣ୍ଡକୁ ଚାହିଁ ରହିଅଛି। କଥା ତଳେ ପକାଉ ନାହିଁ। ସେହି ବୁଦ୍ଧି ଏକୁଟିଆ କାର୍ଯ୍ୟ କରିପାରେ ନାହିଁ ବୋଲି ସର୍ବ ଇନ୍ଦ୍ରିୟର ପ୍ରବର୍ତ୍ତକ ଅନ୍ତରିନ୍ଦ୍ରିୟ ମାନସକୁ ସବୁବେଳେ ସାଥି ରୂପରେ ଲୋଡ଼େ। ଦୁହେଁ ମିଳିମିଶି ଆତ୍ମାର ଆଦେଶ ପାଳନ କରିବାରେ ଲାଗିଥା'ନ୍ତି।

ଆଗରୁ କୁହାଯାଇଅଛି ଆତ୍ମା ଜ୍ଞାନବାନ୍। ଜ୍ଞାନୀ ଲୋକ ନିଜେ ଜାଣିଥିବା ବିଷୟ ସର୍ବ ସମକ୍ଷରେ ପ୍ରକାଶ କରିବାକୁ ସର୍ବଦା ଇଚ୍ଛୁକ ହୁଏ; ଏଣୁ ଆତ୍ମା ସ୍ୱଜ୍ଞାନୋଦ୍ଭୂତ ବିଷୟକୁ ସର୍ବ ସମକ୍ଷରେ ପ୍ରକାଶ କରିବା ଇଚ୍ଛାରେ ଆତ୍ମଗତ ଭାବବ୍ୟଞ୍ଜକ ଧ୍ୱନି ଉତ୍ପତ୍ତି ସକାଶେ ପରିଚାରିକା ବୁଦ୍ଧିକୁ ଆଦେଶ ଦିଏ। ବୁଦ୍ଧି ଆଦେଶ ପାଇଲା ମାତ୍ରେ ତରତର ହୋଇ ଧାଇଁଯାଇ ମନକୁ କହେ ଓ ତାକୁ କାର୍ଯ୍ୟ କ୍ଷେତ୍ରରେ ଯୁଟେଇ ଦେଇ ଖସି ଆସେ।

ଶରୀର ମଧ୍ୟରେ ମୂଳାଧାର ବୋଲି ଗୋଟିଏ ସ୍ଥାନ ଅଛି। ସେଠାରେ ସବୁବେଳେ ନିଆଁ ଦିକି ଦିକି ହୋଇ କୁହୁଳୁଥାଏ। ମାନସ ପହିଲୁ ସେହି ନିଆଁକୁ ଉଖୁରିଆ ଧରି ଉଖୁରେଇ ଦିଏ ଓ ଫୁଙ୍କି ଦିଏ। ନିଆଁ ଉଖୁରେଇଲେ ଦାଉ ଦାଉ ହୋଇ ଜଳେ। ଅତଏବ ମୂଳାଧାରରେ ଥିବା ନିଆଁ ଜଳି ଉଠି ସେ ସ୍ଥାନକୁ ଓ ତତ୍ରତ୍ୟ ବାୟୁମଣ୍ଡଳକୁ ଉତ୍ତପ୍ତ କରିଦିଏ।

ବାୟୁ ଉତ୍ତପ୍ତ ହୋଇ ହାଲୁକା ହେବା ସଙ୍ଗେ ସଙ୍ଗେ ଉପରକୁ ଉଠେ। ବାୟୁ ଉର୍ଦ୍ଧ୍ୱକୁ ଉଠି ଗତି କରୁ କରୁ ତତ୍ରତ୍ୟ ନାଡ଼ୀସମୂହରେ ବାଧା ପାଇବାରୁ ତହିଁରୁ ଏକ ଧ୍ୱନି ଉତ୍ପତ୍ତି ହୁଏ, ସେହି ଧ୍ୱନିର ନାମ 'ପରା'। ତାପରେ ସେ ବାଧା ଅତିକ୍ରମ କରି ପୁନର୍ବାର ଅବାଧ ଗତି କରୁ କରୁ ନାଭିମୂଳରେ ବାଧା ପାଏ। ସେଠାରେ ପରାଠାରୁ ଆଉ ଟିକିଏ ବଡ଼ ଶବ୍ଦ ହୁଏ। ସେ ଶବ୍ଦର ନାମ 'ପଶ୍ୟନ୍ତି'। ଏହି ପରା ଓ ପଶ୍ୟନ୍ତି ନାମକ ଯଥାକ୍ରମେ ଅତି ସୂକ୍ଷ୍ମ ଓ ସୂକ୍ଷ୍ମ ଧ୍ୱନି ଦୁଇଟିର ଅସ୍ତିତ୍ୱ ନାନାଦି ସାଂସାରିକ ବିଷୟବାସନା ଜଡ଼ିତ ମାନବର ଶ୍ରୁତିର ଗୋଚରୀଭୂତ ହୁଏ ନାହିଁ, କେବଳ ବାହ୍ୟପ୍ରପଞ୍ଚବିମୁଖ ଯୋଗୀ ଋଷିମାନଙ୍କ ଶ୍ରୁତିର ଗୋଚରୀଭୂତ ହୁଏ ବୋଲି ସେମାନେ ମତ ପ୍ରକାଶ କରିଅଛନ୍ତି।

ଏତିକିରେ ଉକ୍ତ ବାୟୁ ସ୍ଥିର ହୋଇ ନରହି ପୁଣି ଗତି କରିବାକୁ ଲାଗେ, ଗତି କରୁ କରୁ ହୃଦ୍ଦେଶରେ ବାଧା ପାଏ ଓ ଉପରି ଉକ୍ତ ଧ୍ୱନି ଦୁଇଟି ଅପେକ୍ଷା ବଡ଼ ଧ୍ୱନି ଉତ୍ପତ୍ତି କରେ। ଏହାର ନାମ 'ମଧ୍ୟମା'। ଆମ୍ଭେମାନେ ଯେତେବେଳେ କର୍ଣ୍ଣକୁହର ମଧ୍ୟରେ ହାତ ଦେଇ ତାକୁ ବନ୍ଦ କରିଦେଉଁ, ସେତେବେଳେ ତା ମଧ୍ୟରେ କୌଣସି ଅବ୍ୟକ୍ତ ଶବ୍ଦ ଅହରହ ପ୍ରତିଧ୍ୱନିତ ହେଉଥାଏ। ଏହା ପ୍ରାୟ ସମସ୍ତେ ଅନୁଭବ କରିଥିବେ। ସେମାନେ କହନ୍ତି, ଉକ୍ତ ମଧ୍ୟମା ସେଠାରେ ଧ୍ୱନିତ ହେଉଥାଏ।

ଏଠାରେ କେହି କହିପାରେ ଯେ, ଆତ୍ମା ଯେତେବେଳେ ଭାବ ପ୍ରକାଶ କରିବାକୁ ଇଚ୍ଛା କରେ, ସେତେବେଳେ ସିନା ମଧ୍ୟମା ପ୍ରଭୃତି ଧ୍ୱନି ଉତ୍ପନ୍ନ ହୁଅନ୍ତି, କିନ୍ତୁ କର୍ଣ୍ଣକୁହର ମଧ୍ୟରେ ଯେତେବେଳେ ହାତ ଦିଆଯାଏ, ସେତେବେଳେ ଶବ୍ଦ ଶୁଭେ, ତେବେ ସେ କିପରି ମଧ୍ୟମା ହେଲା ? ଆତ୍ମା ଭାବ ପ୍ରକାଶ କରିବା ପାଇଁ କୌଣସି ନିର୍ଦ୍ଦିଷ୍ଟ ସମୟ ଲୋଡ଼େ ନାହିଁ। ସେ ସର୍ବଦା କିଛି ନା କିଛି ଭାବ ପ୍ରକାଶ କରିବାକୁ ବ୍ୟଗ୍ର ଥାଏ। ଆତ୍ମା ଯେ ସର୍ବଦା ଭାବ ପ୍ରକାଶ କରେ, ଏହା ସମସ୍ତେ ପ୍ରାୟ ଅନୁଭବ କରୁଥିବେ। ଏହା ଅନୁଭୂତିଗୋଚର, ଭାଷାରେ ପ୍ରକାଶ କରିବାର ବିଷୟ ନୁହେଁ। ଉଦାହରଣ ସ୍ୱରୂପ- ଆମ୍ଭମାନଙ୍କ ମନ ମଧ୍ୟରେ ସର୍ବଦା ଶତ ଶତ ବିଷୟ ଜାଗରୂକ ହୁଏ ଓ ମନ ସବୁବେଳେ ଘାଣ୍ଟି ଗୋଳେଇ ହେଉଥାଏ। ଏହା ହେଉଛି ଜ୍ଞାନ୍‌ବାନ୍ ଆତ୍ମାର ଜ୍ଞାତ ବିଷୟର ଅଭିବ୍ୟକ୍ତି।

ତତ୍ପରେ ଉକ୍ତ ବାୟୁ ପୁନର୍ବାର ମସ୍ତକ ପର୍ଯ୍ୟନ୍ତ ଗତିକରି ସେଠାରେ ପ୍ରତିହତ ହୋଇ ପ୍ରତ୍ୟାବର୍ତ୍ତନ ପୂର୍ବକ ବକ୍ତ୍ର ମଧ୍ୟକୁ ଆସେ ଓ ସେଠାରେ କଣ୍ଠ ତାଲୁ ପ୍ରଭୃତି ବିଭିନ୍ନ ସ୍ଥାନରେ ବାଧା ପାଇ ବିଭିନ୍ନ ପ୍ରକାର ସୁସ୍ପଷ୍ଟ ଶବ୍ଦ ଉତ୍ପାଦନ କରାଏ। ଏହି ଶବ୍ଦ ମାନଙ୍କର

ନାମ 'ବୈଖରୀ'। ଏହି ଶବ୍ଦ ମନୁଷ୍ୟମାନଙ୍କ ମୁଖରେ ଉଚ୍ଚାରିତ ହୁଏ ଓ ସର୍ବ ଜନଶ୍ରାବ୍ୟ ବୋଲି ମହାଭାଷ୍ୟକାର କହିଅଛନ୍ତି -

'ତୁରୀୟଂ ବାଚୋ ମନୁଷ୍ୟା ବଦନ୍ତି।' ଅତଏବ ଉକ୍ତ ପ୍ରକାରରେ ଧ୍ୱନ୍ୟାତ୍ମକ ବର୍ଣ୍ଣ ଉତ୍ପନ୍ନ ହୋଇ ଅବଶେଷରେ ଉରଃ ପ୍ରଭୃତି ଆଠଟି ସ୍ଥାନ ଦେଇ ଉଚ୍ଚାରିତ ହେଉଅଛନ୍ତି। ଏହି ଆଠ ସ୍ଥାନ ମଧ୍ୟରୁ କେଉଁ ବର୍ଣ୍ଣ କେଉଁ ସ୍ଥାନ ଦେଇ ଉଚ୍ଚାରିତ ହେଉଅଛି, ତାହା ଓଡ଼ିଆ ବ୍ୟାକରଣ ପ୍ରଭୃତିରେ ସ୍ପଷ୍ଟାକ୍ଷର ଲେଖା ହୋଇଥିବାରୁ ଏଠାରେ ଦେଇ ପ୍ରବନ୍ଧର ଗଣ୍ଡି ମୋଟ କରିବା ଉଚିତ ମନେ ହେଲା ନାହିଁ।

ମହେଞ୍ଜୋଦାରରୁ ପ୍ରାପ୍ତ କେତେକ ଲିପି

| | | |
|---|---|---|
| CVI 91 | CVII 136 | CVIII 161 |
| CVI 86 | CVII 135 | CVIII 169 |
| CVI 84 | CVII 139 | CVIII 174 |
| CVI 87 | CVII 137 | CVIII 187 |
| CVI 88 | CVII 127 | CIX 224 |
| CVI 89 | CVII 120 | CIX 321 |
| CVI 94 | CVII 119 | CIX 317 |
| CVI | CVIII | |

ରାଜଗୁରୁ, ଓଡ଼ିଆ ଲିପି , 'ଓଡ଼ିଆ ଲିପି ଓ ଭାଷା', ପୃ. ୧ ୨ ରୁ ସଂଗୃହୀତ

♦♦♦

# ଓଡ଼ିଆ ଲିପିସଂସ୍କାରର ଏକ ଦୃଷ୍ଟିଭଙ୍ଗୀ

## ପୀତାମ୍ବର ପ୍ରଧାନ

ଜୀବନ ଓ ଜଗତ ପରି ଭାଷା ଗତିଶୀଳ। ଓଡ଼ିଆ ଭାଷାରେ ବୌଦ୍ଧାଚାର୍ଯ୍ୟର ଚର୍ଯ୍ୟାଗୀତିଠାରୁ ଆଧୁନିକ ଯୁଗାଚାର୍ଯ୍ୟମାନଙ୍କର ରୂପକଳ୍ପତା, ପ୍ରୟୋଗବାଦ ଓ ସଂକେତଧର୍ମ ମଧ୍ୟରେ ଭାଷାର ଏ ଗତିଶୀଳତା ସୁସ୍ପଷ୍ଟ ହେଲେହେଁ ଭାଷାର ସର୍ବାଙ୍ଗୀନ ଉନ୍ନତି ପାଇଁ ଭାବଜଗତର ଏ ଗତି ଯଥେଷ୍ଟ ନୁହେଁ। ତା'ପାଇଁ ଆବଶ୍ୟକ ଭାଷାର ବିଜ୍ଞାନସମ୍ମତ ଅନୁଶୀଳନ ଓ ନୂତନ ଦୃଷ୍ଟିଭଙ୍ଗୀ। ବିଜ୍ଞାନସମ୍ମତ ଅନୁଶୀଳନ ବିଷୟ ଚିନ୍ତା କଲାବେଳେ ଆମ ଭାଷାର ଦୀର୍ଘ ବର୍ଣ୍ଣମାଳା, ରୀତିବିହୀନ ଉଚ୍ଚାରଣ ପ୍ରଣାଳୀ, ଜଟିଳ 'ମାତ୍ରାବଳୀ' ଓ ଯୁକ୍ତାକ୍ଷର ପଦ୍ଧତି ଏକ ଏକ ତୁଙ୍ଗ ସମସ୍ୟାଭାବେ ଦଣ୍ଡାୟମାନ ହୁଅନ୍ତି। ଏଥିମଧ୍ୟରୁ ମାତ୍ରାବଳୀ ଓ ଯୁକ୍ତାକ୍ଷର ପଦ୍ଧତିର ସଂସ୍କାର ପ୍ରଥମ ପ୍ରଣିଧାନର ବିଷୟ। କାରଣ ଏହାଦ୍ୱାରା ଅନ୍ୟ ଦୁଇଟି ସମସ୍ୟାର ସମାଧାନ ମଧ୍ୟ ସମ୍ଭବ ହୋଇପାରିବ। ବିନୋବାଜୀ ତାଙ୍କର ଉତ୍କଳଗସ୍ତ ଓ ଦିଲ୍ଲୀ-ରହଣି କାଳରେ ଏକାଧିକ ଥର ଏହି ସମସ୍ୟା ଉପରେ ଆଲୋକପାତ କରିଅଛନ୍ତି। ହେଲେହେଁ ତାଙ୍କ କଥା ଜାତିର ଖୁବ୍ କମ୍ ଲୋକଙ୍କ କାନକୁ ଆସିଥିବ।

ମାତ୍ରା ବିଚାର- ଓଡ଼ିଆ ଭାଷାରେ ବ୍ୟବହୃତ ଅନେକ 'ମାତ୍ରା' ବା 'ଫଳା' ଅଧିକାଂଶ କ୍ଷେତ୍ରରେ ଯୁକ୍ତିବିହୀନ ଓ ଅବୈଜ୍ଞାନିକ। ହେଲେହେଁ ଆମ୍ଭମାନଙ୍କର ରକ୍ଷଣଶୀଳତା ଏମାନଙ୍କୁ ଅଦ୍ୟାବଧି ବଞ୍ଚାଇ ରଖିବା ନିତାନ୍ତ ଦୁଃଖର ବିଷୟ। ଉଦାହରଣ ସ୍ୱରୂପ 'ପୀତାମ୍ବର' ବା 'ନୀଳାମ୍ବର' ଲେଖିଲାବେଳେ 'ମ' ତଳେ ଦେଉଥିବା 'ବ' ଫଳାଟି ବର୍ଗ୍ୟ 'ବ' ଓ 'ବିଶ୍ୱ' 'ନିଃସ୍ୱ'ରେ ଥିବା ବ' ଫଳାଟି ଅବର୍ଗ୍ୟ 'ବ' ଭାବରେ ଉଚ୍ଚାରିତ। ହେଲେହେଁ ଉଭୟ ପାଇଁ ଏକରକମ 'ମାତ୍ରା'ର ବ୍ୟବହାର ଆମ ଭାଷାରେ ପ୍ରଚଳିତ। ଉଭୟର ଉଚ୍ଛେଦ ସମ୍ଭବ ନ ହେଲେ ମଧ୍ୟ ବର୍ଗ୍ୟ 'ବ' ଯୁକ୍ତ 'ଅମ୍ବର' ଓ ଅମ୍ବୁଦାଦି ସ୍ଥଳେ ଅଂବର ଓ ଅଂବୁଦ ଲେଖିବା ସମୀଚୀନ। ନଚେତ୍ ଏକ '୍ୱ' ଫଳା ବର୍ଗ୍ୟ 'ବ' ଓ ଅବର୍ଗ୍ୟ 'ବ' ଧ୍ୱନି ସୃଷ୍ଟି କରିବା ଯଥାର୍ଥରେ ହାସ୍ୟାସ୍ପଦ।

ସେହିପରି 'ଅଣ୍ଡା' ଓ 'ଶସ୍ତା'ଇତ୍ୟାଦି ଲେଖିଲାବେଳେ ଏକରକମ ଫଳା '୍ତ' 'ଶସ୍ତା' ଠାରେ 'ତ' ଓ 'ଅଣ୍ଡା'ଠାରେ 'ଡ' ଧ୍ୱନି ସୃଷ୍ଟି କରିବା ଅତ୍ୟନ୍ତ କୌତୂହଳପ୍ରଦ।

'ହସନ୍ତ' ବ୍ୟବହାର କରି ଏ ସ୍ଥଳେ 'ଅଣ୍‌ତା' ଓ 'ଶସ୍‌ତା' ଲେଖିଲେ କିଛି ଭୁଲ ହୁଅନ୍ତା ନାହିଁ। ଅବଶ୍ୟ 'ସ୍ତାବକ' ବା 'ସ୍ତର' ଭଳି କ୍ଷେତ୍ରରେ ଏ ରୀତି ପ୍ରଚଳନ ସମ୍ଭବ ନୁହେଁ। ତେଣୁ 'ତ', ଧ୍ୱନି ସୃଷ୍ଟି କରିବା ପାଇଁ ଉକ୍ତ 'ଫଳା' ବ୍ୟବହାର କରି 'ତ' ଧ୍ୱନି ସ୍ଥାନରେ ଏହା ପରିହାର କରିବା ଉଚିତ୍।

'ଉତ୍କଳ' ଓ 'ଉକ୍ତ' ଭଳି ଶବ୍ଦର 'ତ' ଫଳା ସେହିପରି ଆଉ ଏକ ସଂକଟ। ଏ ସଂକଟରେ ପଡ଼ି ସ୍କୁଲ କଲେଜର ଅଧିକାଂଶ ଛାତ୍ର, 'ଉତ୍କଳ' ସ୍ଥଳେ 'ଉକ୍ତଳ' ଓ 'ଉତ୍ପଳ' ସ୍ଥଳେ 'ଉପ୍ତଳ' ଲେଖି ଥାଆନ୍ତି; ଲେଖିବା ମଧ୍ୟ ସ୍ୱାଭାବିକ। କାରଣ ଏକ 'ତ' ଧ୍ୱନି ପୂର୍ବେ ଉଚ୍ଚାରିତ ହେଲେ (ଉତ୍‌ପଳ, 'ପ' ପୂର୍ବରୁ) ' ୍ ' ଓ ପରେ ଉଚ୍ଚାରିତ ହେଲେ (ଉକ୍‌ତ, 'କ' ପରେ) ' ୍ତ ' ହେବା ଭ୍ରାନ୍ତିଜନକ। ବିଶେଷତଃ 'ଉତ୍କଳ' ବା 'ଉତ୍ପନ୍ନ' ଶବ୍ଦର 'ତ', 'ମାତ୍ରା' ଆକାର ଧାରଣ କରିବାର କୌଣସି କାରଣ ନାହିଁ। ମାତ୍ରାଯୁକ୍ତ ବର୍ଣ୍ଣର ଉଚ୍ଚାରଣ ନେଇ ପୂର୍ବ ବା ପ୍ରଥମ ଉଚ୍ଚାରିତ ବର୍ଣ୍ଣ, 'ଅକ୍ଷର' ରୂପେ ଲେଖା ହୋଇଥାଏ ଓ ପରେ ଉଚ୍ଚାରିତ ବର୍ଣ୍ଣ ସାଧାରଣତଃ ପୂର୍ବବର୍ଣ୍ଣର 'ଫଳା' ଉପରେ ସ୍ଥାନ ପାଏ। ଯଥା- 'ଶୁଷ୍କ' (ଶୁଷ୍‌କ), 'ଗୃହସ୍ଥ' (ଗୃହସ୍‌ଥ) ଓ 'ବୟସ୍କ' (ବୟସ୍‌କ) ପ୍ରଭୃତି କ୍ଷେତ୍ରରେ 'ଷ୍କ' 'ସ୍ଥ' ଓ 'ସ୍କ' ରେ ଉଚ୍ଚାରଣ ପଦ୍ଧତି ଅନୁକ୍ରମେ 'ଷ', 'ସ' ବର୍ଣ୍ଣଭାବେ ଓ 'କ' 'ଥ' ମାତ୍ରା ଭାବରେ ଲିଖିତ। ହେଲେହେଁ ଏ ରୀତି, 'ଉତ୍କଳ' 'ଉତ୍ପଳ', 'ମହାତ୍ମା' ବା 'ରତ୍ନାକର' ସ୍ଥାନରେ ଅପ୍ରଚଳିତ ହେବା ନିତାନ୍ତ ଭିତ୍ତିହୀନ। ତେଣୁ ଉପରୋକ୍ତ ଶବ୍ଦମାନ, 'ଉତ୍‌କଳ', 'ଉତ୍‌ପଳ' ମହାତ୍‌ମା ଓ ରତ୍‌ନାକର ବା 'ଉତ୍କ୍ଳ', 'ଉତ୍ପ୍ଳ' 'ମହାତ୍ମ୍ା' ବୋଲି ଲେଖିବା ଯୁକ୍ତିଯୁକ୍ତ।

ଏହା ଭିନ୍ନ ମୁଦ୍ରଣକାର୍ଯ୍ୟ ସୁସାଧ୍ୟ ଓ ଦୋଷହୀନ କରିବାକୁ ହେଲେ ଉର୍ଦ୍ଧାଧଃ ବ୍ୟବହୃତ 'ଫଳା'ର ମାତ୍ରା ଯଥାସମ୍ଭବ କମ୍ କରିବାକୁ ହେବ। 'ହସନ୍ତ' ବ୍ୟବହାର ଦ୍ୱାରା ଏହା ଅନେକାଂଶରେ ସୁସାଧ୍ୟ। ଯଥା- ଅର୍କ > ଅର୍‌କ, ନକ୍ର > ନକ୍‌ର; ଅମ୍ଳ > ଅମ୍‌ଳ; ଉଷ୍ମ >ଉଷ୍‌ମ ଇତ୍ୟାଦି।

**ଯୁକ୍ତାକ୍ଷର ପଦ୍ଧତି** – ଯୁକ୍ତାକ୍ଷର ପଦ୍ଧତି ଅନ୍ୟ ଏକ ପ୍ରମାଦ ଭାବରେ ଗ୍ରହଣ କରାଯାଇପାରେ। ଯୁକ୍ତବର୍ଣ୍ଣର 'ଙ', 'ଞ', 'ଣ', 'ନ', 'ମ', ସ୍ଥାନରେ ଅନୁସ୍ୱାର ବ୍ୟବହାର ପ୍ରଣାଳୀ ବ୍ୟାକରଣରେ ଥିବା ସତ୍ତ୍ୱେ ଙ୍କ, ଞ୍ଚ, ଙ୍ଗ ଇତ୍ୟାଦି ଯୁକ୍ତାକ୍ଷରମାଳାକୁ ଓଡ଼ିଆ ଭାଷାରେ ବଞ୍ଚାଇ ରଖିବାର କୌଣସି ତାତ୍ପର୍ଯ୍ୟ ନାହିଁ। ସୁତରାଂ

'ଶଙ୍କା' ସ୍ଥଳେ ଶଂକା (ଙ ଲୋପ)

'ବ୍ୟଞ୍ଜନ' ସ୍ଥଳେ ବ୍ୟଂଜନ (ଞ ଲୋପ)

'କଣ୍ଡରା' ସ୍ଥଳେ କଂଡରା (ଣ, ଲୋପ)

'ସନ୍ତାପ' ସ୍ଥଳେ ସଂତାପ (ନ, ଲୋପ)

'ସମ୍ବାଦ' ସ୍ଥଳେ ସଂବାଦ (ମ, ଲୋପ)

ସର୍ବତ୍ର ପ୍ରୋତ୍ସାହିତ ହେବା ଆବଶ୍ୟକ। ସେହିପରି ଉଚ୍ଚାରଣ ଦୃଷ୍ଟିରୁ ଆମ ଭାଷାରେ ଋ, ୠ, ଌ, ୡ, ଓ 'ଙ' ପ୍ରାୟ ଅପ୍ରଚଳିତ। ତଥାପି ବର୍ଣ୍ଣମାଳାର ପରଂପରା ରକ୍ଷା ପାଇଁ ସେମାନଙ୍କୁ ଯଥାପୂର୍ବ 'ସ୍ୱର' ବିଭାଗରେ ସ୍ଥାନ ଦିଆହୋଇଛି। ଅଧିକନ୍ତୁ ପ୍ରଚଳିତ ପଦ୍ଧତିରେ ଲିଖିତ ଚ୍ଛ, ତ୍ତ, ମ୍ମ ଇତ୍ୟାଦିରେ ଶୁଦ୍ଧ ଉଚ୍ଚାରଣ ଓଡ଼ିଆଭାଷାରେ ସଂପୂର୍ଣ୍ଣ ବିରଳ। ତେଣୁ ଉଚ୍ଚାଙ୍ଗ, ଉତ୍ତାନପାଦ ଓ 'ସମ୍ମାନ' ଭଳି ପଦକୁ ଏ ଦେଶର ସଂଖ୍ୟାଗରିଷ୍ଠ ବ୍ୟକ୍ତି ଉଚାଙ୍ଗ ଉତାନପାଦ ଓ ସମାନ ଭାବେ ଉଚ୍ଚାରଣ କରନ୍ତି। 'ହସନ୍ତ' ବ୍ୟବହାର କରି ଦ୍ୱିତୀୟ ବର୍ଣ୍ଣଗୁଡ଼ିକୁ ଭାଙ୍ଗିଦେଲେ ଉଚ୍ଚାରଣପ୍ରଣାଳୀ ଶୁଦ୍ଧ ଓ ମାର୍ଜିତ ହୋଇପାରନ୍ତା। ଯଥା- ଉଚ୍‌ଚାଙ୍ଗ, ଉତ୍‌ତାନପାଦ ଓ ସମ୍‌ମାନ।

ସଂସ୍କୃତ ପଦ୍ଧତି ଅନୁସରଣରେ 'ରେଫ୍' ଯୋଗେ ଦିତ୍ୱ ହେବା ବିଧି, ଓଡ଼ିଆଭାଷାରେ ପ୍ରଚଳିତ; କିନ୍ତୁ କର୍ତ୍ତବ୍ୟ, ଚର୍ଚ୍ଚା ଓ ମର୍ମ୍ମର ପ୍ରଭୃତି ଶବ୍ଦରେ ଉକ୍ତ ବିଧି ଅନୁସୃତ ହେଉଥିବାବେଳେ କର୍ମ, ଧର୍ମ ଓ 'ଉର୍ବଶୀ'ରେ ଏ ନୀତିର ଶିଥିଳତା ପରିଲକ୍ଷିତ ହେଲାଣି। ତେଣୁ ସମସ୍ତ 'ରେଫ୍' ଯୁକ୍ତ ଶବ୍ଦରେ ଦିତ୍ୱବିଧି ପରିହାର କଲେ କୌଣସି କ୍ଷତି ହୁଅନ୍ତା ନାହିଁ।

ପରିଶେଷରେ ଏତିକି କହିବାର କଥା ଯେ ଏ 'ମାତ୍ରା-ଧର୍ମ-ବାହୁଲ୍ୟ' ପରିହାର ନ କଲେ ଭାଷାର ଯାନବାହନ (ମୁଦ୍ରାଯନ୍ତ୍ର ଓ ଟାଇପ୍ ମେସିନ୍) ଗୁଡ଼ିକୁ ବେଗବାନ୍ କରିବାର ଆଶା, ଆକାଶକୁସୁମତୁଲ୍ୟ ଅବାସ୍ତବ ହୋଇ ରହିବ। ତେଣୁ ଓଡ଼ିଆ ଭାଷାର ଲିପି ସଂସ୍କାର ପ୍ରୟାସୀ ଯେ କେହି ବ୍ୟକ୍ତି ବର୍ଣ୍ଣମାଳାର କ୍ଷୁଦ୍ରୀକରଣ, ମାତ୍ରାବଳୀର ହ୍ରସ୍ୱତା ଓ ଉଚ୍ଚାରଣସିଦ୍ଧ ବର୍ଣ୍ଣବିନ୍ୟାସ ପ୍ରତି ଅବହିତ ହେବା ଉଚିତ୍।



# ଓଡ଼ିଆ ବର୍ଣ୍ଣମାଳା ଓ ଲିପିସଂସ୍କାର

## ଭଗବାନ ପତି

ପ୍ରାଚୀନ ହେଉ ବା ନୂତନ ହେଉ, ଜଡ଼ ହେଉ ବା ଚେତନ ହେଉ, ସଂସ୍କାର ହିଁ ପ୍ରତ୍ୟେକକୁ ବିଚିତ୍ରତା ପ୍ରଦାନ କରେ, ବିକାଶର ପଥରେ ଅଗ୍ରସର କରାଏ। ଏହି ମହାସତ୍ୟ ଉପଲବ୍ଧି କରି ପ୍ରାଚୀନ ଭାରତର ମୁନି ମହର୍ଷିଗଣ ବୋଧହୁଏ ହିନ୍ଦୁ ଜୀବନରେ ଦଶବିଧ ସଂସ୍କାର ବିଧି ବ୍ୟବସ୍ଥା କରିଅଛନ୍ତି। ଇତିହାସର ପୃଷ୍ଠା ଉଦ୍‌ଘାଟନ କଲେ ଏବଂ ପାରିପାର୍ଶ୍ୱିକ ଘଟନାନିଚୟର ସମ୍ୟକ୍ ଅନୁଶୀଳନ କରି ବିଚାର କଲେ ସ୍ପଷ୍ଟ ପ୍ରତୀତ ହୁଏ ଯେ, କି ସମାଜ, କି ସାହିତ୍ୟ କି ସମାଜନୀତି, କି ରାଜନୀତି ପ୍ରତ୍ୟେକ କ୍ଷେତ୍ରରେ ଦେଶକାଳପାତ୍ର ଭେଦରେ ଯୁଗେ ଯୁଗେ ସମୟୋଚିତ ସଂସ୍କାର ହୋଇଆସିଛି ଏବଂ ତା'ର ଫଳରେ ସମାଜ କହ, ସାହିତ୍ୟ କହ ବା ରାଜନୀତି କହ, ପ୍ରତ୍ୟେକ କ୍ଷେତ୍ରରେ ଉନ୍ନତି ବା ଅଗ୍ରଗତି ଭିନ୍ନ ଅନ୍ୟ କିଛି ସମ୍ଭବପର ହୋଇନାହିଁ। ବର୍ତ୍ତମାନର କ୍ଷୁଦ୍ର ଭିତ୍ତି ଉପରେ ଦଣ୍ଡାୟମାନ ହୋଇ ଆମ୍ଭେମାନେ ଯେତେବେଳେ ଅତୀତର ସଂସ୍କାର ସ୍ତୂପ ମଧ୍ୟରେ ଏହି ରୂପେ ଅଗ୍ରଗତିର ଆଲୋକସ୍ତମ୍ଭ ଦେଖୁ, ସେତେବେଳେ ଅପରିମେୟ ଭବିଷ୍ୟତର ଅଦୃଶ୍ୟ ଉ□ାନ ପତନ ଆମ୍ଭମାନଙ୍କ ପକ୍ଷରେ ଆଉ ରହସ୍ୟ ସମ ଦୁର୍ବୋଧ ହୋଇ ରହିବାର ଆଶଙ୍କା ରହେ ନାହିଁ। ତା'ର ଫଳରେ ଦୁର୍ବୋଧ ଭବିଷ୍ୟତକୁ ସୁବୋଧ ବର୍ତ୍ତମାନରେ ପରିଣତ କରିବା ପାଇଁ ପ୍ରତିନିୟତ ଆମ୍ଭମାନଙ୍କ ହୃଦୟରେ ପ୍ରେରଣାର ଉଦୟ ହୁଏ ଏବଂ ଭବିଷ୍ୟତର ବକ୍ଷ ଭିନ୍ନ କରି ତହିଁରେ ଆଲୋକପାତ କରିବା ନିମିତ୍ତ ଆମ୍ଭମାନଙ୍କର ସାହସ ଆସେ। ଯୁଗେ ଯୁଗେ ମାନବ ଏହିପରି ପ୍ରେରଣା ଓ ସାହସରେ ବଳୀୟାନ ହୋଇ ସମାଜ ଏବଂ ସାହିତ୍ୟରୁ ନାନା ଭାବରେ ନାନା ଶୃଙ୍ଖଳ ଭାଙ୍ଗି ତାହା ସ୍ଥାନରେ ନିଜର ସ୍ୱପ୍ନ ବା ନିଜର କଳ୍ପନାକୁ ସୃଜନର ନୂତନ ଭଙ୍ଗୀରେ ନୂତନ ଜୀବନ ଦେଇ ପ୍ରକାଶ କରିଛି। ଏହି ଭଙ୍ଗାଗଢ଼ାର ଉଦ୍ୟମରୁ ହିଁ ସଂସ୍କାର ପ୍ରଚେଷ୍ଟାର ଉତ୍ପତ୍ତି। ଆଧୁନିକ ଜଗତର ପାରିପାର୍ଶ୍ୱିକ ଘଟନାବଳି ପ୍ରତି ଦୃଷ୍ଟିନିକ୍ଷେପ କଲେ ଜଣାଯାଏ ଯେ, ବର୍ତ୍ତମାନ ଏହି ସଂସ୍କାର-ପ୍ରଚେଷ୍ଟା ଏକ

ବିଶ୍ୱବ୍ୟାପୀ ଆନ୍ଦୋଳନରେ ପରିଣତ ହୋଇଅଛି। ସଭ୍ୟତାର ସକଳ ପ୍ରକାର ବିଭାବରେ ସଂସ୍କାରର ସୂତ୍ରପାତ ହୋଇଅଛି ଏବଂ ଗୋଟି ଗୋଟି ହୋଇ ପୁରାତନ ପଦ୍ଧତି ଓ ପ୍ରାଚୀନ ସଂସ୍କୃତି ସ୍ଥାନରେ ନୂତନର ଅଭ୍ୟୁଦୟ ପ୍ରତିନିୟତ ଆମ୍ଭମାନଙ୍କ ଦୃଷ୍ଟି ଆକର୍ଷଣ କରୁଅଛି। ବ୍ୟକ୍ତିଗତ ଭାବରେ କେହି ଯେ, ଇଚ୍ଛା କରି ଏପରି ନୂତନର ଆବାହନ କରୁଛି-ତାହା ନୁହେଁ, ପରନ୍ତୁ ଦେଶ କାଳର ପ୍ରଭାବରେ, ଯୁଗର ଆହ୍ୱାନରେ ଅତି ଅତର୍କିତ ଭାବରେ ତାହା ଆସି ଆମ୍ଭମାନଙ୍କ ଦ୍ୱାରଦେଶରେ ଆଘାତ କରୁଅଛି। ଯେଉଁ ଦେଶ ବା ଯେଉଁ ଜାତି ଯେ ପରିମାଣରେ ସେ ଆଘାତରେ ଜାଗ୍ରତ ହେଉଛି, ଯେ ପରିମାଣରେ ସେ ଆହ୍ୱାନରେ ସଚେତନ ହେଉଛି, ସେ ଦେଶ ବା ସେ ଜାତି ସେ ପରିମାଣରେ ବର୍ତ୍ତମାନର ଯବନିକା ଭିନ୍ନ କରି ଭବିଷ୍ୟତର ପଥରେ ନିଜର ସଭ୍ୟତା-ରଥକୁ ଅଗ୍ରସର କରାଇପାରୁଛି।

ଆମ୍ଭମାନଙ୍କ ମାତୃଭୂମି ଓଡ଼ିଶା ଶିକ୍ଷା ସଭ୍ୟତା ଆଦି ସକଳ ବିଷୟରେ ପଶ୍ଚାତ୍‌ରେ ପଡ଼ି ରହିଛି। ତେଣୁ ସେ ଏ ଆଘାତର ପ୍ରତିଘାତରେ ମଧ୍ୟ ଅତି ବିଳମ୍ବରେ ପ୍ରତିଧ୍ୱନି ଦେଉଛି। ଏପର୍ଯ୍ୟନ୍ତ ଯୁଗର ଆହ୍ୱାନରେ ତା'ର ଜଡ଼ତା ସମ୍ପୂର୍ଣ୍ଣରୂପେ ଅପସାରିତ ହୋଇ ନାହିଁ ବୋଲି କହିବାକୁ ହେବ। ଚିରାଚରିତ ପ୍ରାଚୀନ ପଦ୍ଧତି ପ୍ରତି ଆମ୍ଭମାନଙ୍କର ଆସକ୍ତି ବର୍ତ୍ତମାନ ଏପରି ନିବିଡ଼ ଓ ଘନିଷ୍ଠ ହୋଇଉଠିଛି ଯେ, ତହିଁରେ ନୂତନତାର ସମାବେଶ କରି ଜାତୀୟ ଜୀବନକୁ ବିକଶିତ କରିବା ଆପାତତଃ ଅସମ୍ଭବ ବୋଧ ହେଉଛି। ତଥାପି ଭବିଷ୍ୟତର ଆଲୋକ ଆଶାରେ କ୍ଷୁଦ୍ର ବର୍ତ୍ତମାନରୁ ଚକ୍ଷୁ ଫେରାଇ ନେଇ, ବିରାଟ ଦୁର୍ଜ୍ଜେୟ ଅତୀତର ଶତଜୀର୍ଣ୍ଣ ବିକୃତି ଉପରେ ଅଭିଯାନ ଆରମ୍ଭ କରିବାକୁ ହେବ। ଏଥିପାଇଁ ଯେଉଁ ଧୈର୍ଯ୍ୟ ଓ ସହିଷ୍ଣୁତା ଆବଶ୍ୟକ, ତାହା ଏ ଯୁଗର ଯୁବକ ପ୍ରାଣରେ ସମୟର ଇଙ୍ଗିତରେ ଆତ୍ମପ୍ରକାଶ କରିଅଛି ବୋଲି ଆମ୍ଭମାନଙ୍କ ଧାରଣା।

ପୂର୍ବ ସ୍ମୃତିର ମୋହ ଏଡ଼ାଇ ନ ପାରି ବର୍ତ୍ତମାନର ଓଡ଼ିଆ ବର୍ଣ୍ଣମାଳା ଏବଂ ଲିପିପଦ୍ଧତି ଏ ଯୁଗରେ ଯେ ଆକାର ଧାରଣ କରିଅଛି ଏବଂ ଯେପରି ଭାବରେ ଆମ୍ଭମାନଙ୍କର ଶିକ୍ଷା ସଭ୍ୟତାକୁ ନିୟନ୍ତ୍ରିତ କରୁଅଛି, ତାହା ଥରେ ଚିନ୍ତା କଲେ ତାହାରି ବିରୁଦ୍ଧରେ ହିଁ ଯୁଗୋଚିତ ସଂସ୍କାରପ୍ରିୟ ଯୁବକର ଅଭିଯାନ ଆରମ୍ଭ କରିବାକୁ ପ୍ରଥମେ ମନ ବଳେ। କାରଣ ଜାତୀୟ ଭାଷା ଜାତୀୟ ଅଗ୍ରଗତିର ଅଗ୍ରଦୂତ ଏବଂ ତାହାରି

ସହାୟତାରେ ଗୋଟାଏ ଜାତି ଜାତି ହିସାବରେ ଭୂପୃଷ୍ଠରେ ମସ୍ତକ ଉତ୍ତୋଳନ କରେ। ଯେଉଁ ଭାଷା ଦୁର୍ବଳ ଓ ଜୀର୍ଣ୍ଣ ଏବଂ ନାନା ଦିଗରେ ଅଭାବଗ୍ରସ୍ତ, ସେହି ଭାଷାର କୋଳରେ ଲାଳିତପାଳିତ ଜାତି ମଧ୍ୟ ସେହିପରି ଶିକ୍ଷା ସଭ୍ୟତାରେ ଦୁର୍ବଳ ଓ ଅଭାବଗ୍ରସ୍ତ ହୋଇଥାଏ। ତେଣୁ ଜାତୀୟ ଜୀବନକୁ ସୁସ୍ଥ ସବଳ କରି ତହିଁରେ ଉନ୍ନତିର ଆଶା ଆକାଙ୍‌କ୍ଷା ଜାଗରିତ କରିବାକୁ ହେଲେ ପ୍ରଥମେ ଜାତୀୟ ଭାଷାର ପୁଷ୍ଟିବିଧାନ କିପରି ପ୍ରୟୋଜନୀୟ, ତାହା ଆଉ କାହାରିକୁ ବୁଝାଇବାକୁ ହେବ ନାହିଁ।

ସ୍ୱର, ବ୍ୟଞ୍ଜନ ଓ ଯୁକ୍ତବର୍ଣ୍ଣର ଆକାର ବହୁଳତା ଘେନି ଆମ୍ଭମାନଙ୍କର ଓଡ଼ିଆ ବର୍ଣ୍ଣମାଳା ବର୍ତ୍ତମାନ ଏପରି ବିକୃତ ଓ ଜଟିଳ ହୋଇ ଉଠିଛି ଯେ, ତାହା ଯେ କୌଣସି ଲୋକ ଥରେ ନିବିଷ୍ଟ ହୃଦୟରେ ଚିନ୍ତା କଲେ ହୃଦୟଙ୍ଗମ କରିପାରିବ। ଏହାଦ୍ୱାରା ସମୂହ ଭାବରେ ଜାତିର ଯେଉଁ ଅନିଷ୍ଟ ସାଧିତ ହେଉଛି, ତାହା ହୁଏତ ଅନେକଙ୍କର ସ୍ଥୂଳ ଦୃଷ୍ଟିରେ ପଡ଼ି ନ ପାରେ। କିନ୍ତୁ ବ୍ୟକ୍ତିଗତ ଭାବରେ ତାହା ଜାତିର ଜୀବନକୁ ଯେପରି ପଙ୍ଗୁ କରି ଦେଉଛି, ତାହା ଅତି ସ୍ପଷ୍ଟ। ଉଦାହରଣ ସ୍ୱରୂପ ଓଡ଼ିଆ ବର୍ଣ୍ଣମାଳାର ଶିକ୍ଷା ବିଭାବଟା ଧରାଯାଇପାରେ। ଚାଟଶାଳୀ କହ ବା ପ୍ରାଥମିକ ବିଦ୍ୟାଳୟ କହ, ସାମାନ୍ୟ ବର୍ଣ୍ଣମାଳା ଶିକ୍ଷା ପାଇଁ ଓଡ଼ିଆ ଶିଶୁକୁ ସେଠାରେ ଯେଉଁ ଅସୁବିଧାର ସମ୍ମୁଖୀନ କରାଯାଏ ଏବଂ ସେଥିପାଇଁ ତାହାକୁ ଯେଉଁ କଠୋର ଅନୁଶାସନ ବୁକୁ ପାତି ଗ୍ରହଣ କରିନେବାକୁ ହୁଏ, ଅନ୍ୟ କଥାରେ ତାହାକୁ ବର୍ଗୀର ଅତ୍ୟାଚାର ନାମରେ ବିନା ବିଚାରରେ ଅଭିହିତ କରାଯାଇପାରେ। ଶିଶୁର କୋମଳ ମାନସିକତା ଉପରେ ଶିକ୍ଷାର ନାମରେ ଏହି ଯେଉଁ ଗୁରୁ ଭାର ଲଦି ଦିଆଯାଏ, ତଦ୍ୱାରା କିପରି ତା'ର ମାନସିକ ବିକାର ସଂଘଟିତ ହୁଏ, ମନସ୍ତତ୍ତ୍ୱବିତ୍ ପଣ୍ଡିତମାନେ ଅକ୍ଳେଶରେ ତାହା ହୃଦୟଙ୍ଗମ କରିପାରୁଥିବେ। ଏହି ବର୍ଣ୍ଣମାଳା ଶିକ୍ଷାକୁ ଶିଶୁ ନିକଟରେ ସହଜ ଓ ସୁଗମ କରିବା ନିମିତ୍ତ ବର୍ତ୍ତମାନ ନାନା ନୂତନ ପଦ୍ଧତି ଆବିଷ୍କୃତ ହୋଇଅଛି ଏବଂ ହେଉଅଛି ସତ୍ୟ; କିନ୍ତୁ ପ୍ରକୃତ କାର୍ଯ୍ୟକ୍ଷେତ୍ରରେ ଯେ ସେଗୁଡ଼ିକ ଫଳପ୍ରଦ ହେଉନାହିଁ, ଏକଥା ଶିକ୍ଷକସମାଜର ଶତକଡ଼ା ୯୫ ଜଣ ସ୍ୱୀକାର କରିବେ। ଏ ତ ଗଲା ଶିଶୁ ସମାଜର କଥା। ବିଶ୍ୱବିଦ୍ୟାଳୟର ଶିକ୍ଷାର୍ଥୀମାନଙ୍କ କଥା ଥରେ ଚିନ୍ତା କଲେ ଏହି ବର୍ଣ୍ଣମାଳା ସମସ୍ୟାର ବିଷମ ପ୍ରଭାବ କଥା ଆହୁରି ସ୍ପଷ୍ଟ ହୁଏ। ସାମାନ୍ୟ ସାମାନ୍ୟ ବର୍ଣ୍ଣାଶୁଦ୍ଧି ଯୋଗୁ କେତେ ଛାତ୍ରଙ୍କର ବାରମାସର ତପସ୍ୟାଫଳ ପରୀକ୍ଷାରେ ଫେଲ୍‌ରୂପୀ ଶୁଖୁଆ

ଝୋଳରେ କିପରି ଶେଷ ହୋଇଛି ଓ ହେଉଛି, ତା'ର ଦୃଷ୍ଟାନ୍ତ ଯତ୍ରତତ୍ର ଦେଖିବାକୁ ମିଳେ। ବର୍ତ୍ତମାନ ମଧ୍ୟ ବିଶ୍ୱବିଦ୍ୟାଳୟରେ କୃତବିଦ୍ୟ ଏପରି ଅନେକ ଯୁବକ ତଥା ବୃଦ୍ଧ ଅଛନ୍ତି, ଯେଉଁମାନେ ଧାଡ଼ିଏ ଲେଖିଲେ ଦୁଇ ଗଣ୍ଡା ବର୍ଣ୍ଣାଶୁଦ୍ଧିଗତ ଦୋଷ ନକରି ରହିପାରନ୍ତି ନାହିଁ। ସୂକ୍ଷ୍ମ ଭାବରେ ଏହି ଦୋଷଗୁଡ଼ିକ ପ୍ରକୃତରେ କାହାର ବୋଲି ବିଚାର କଲେ ସ୍ପଷ୍ଟ ପ୍ରତୀତ ହୁଏ ଯେ, ସେ ସମସ୍ତ ବିଶ୍ୱବିଦ୍ୟାଳୟର ଦୋଷ ନୁହେଁ ବା କୃତବିଦ୍ୟ ଯୁବକ ଯୁବତୀଙ୍କର ଦୋଷ ନୁହେଁ; ପରନ୍ତୁ ତାହା ଆମ୍ଭମାନଙ୍କ ଓଡ଼ିଆ ବର୍ଣ୍ଣମାଳାର ଦୋଷ। ମୁଦ୍ରଣ କଳାରେ ମଧ୍ୟ ଆମ୍ଭମାନଙ୍କର ବର୍ଣ୍ଣମାଳା କିପରି ପ୍ରତିବନ୍ଧକ ସୃଷ୍ଟି କରୁଅଛି, ତାହା ମୁଦ୍ରାକରମାନଙ୍କୁ ଉତ୍ତମରୂପେ ବିଦିତ। ନିର୍ଦ୍ଦୋଷ ଭାବରେ ମୁଦ୍ରିତ ଖଣ୍ଡିଏ ପୁସ୍ତକ ସୁଦ୍ଧା ଏପର୍ଯ୍ୟନ୍ତ ଓଡ଼ିଆ ଭାଷାରେ ପ୍ରକାଶିତ ହୋଇନାହିଁ, ଅଥଚ ଓଡ଼ିଶାରେ ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା ହେଲାଣି ୧୮୬୦ ରୁ। ଏହି ଦୀର୍ଘ ୭୨ ବର୍ଷ ଧରି ମୁଦ୍ରଣ କଳାରେ ଓଡ଼ିଆ ମୁଦ୍ରାକରଗଣ କାହିଁକି ଯେ ସିଦ୍ଧହସ୍ତତା ପ୍ରଦର୍ଶନ କରିପାରି ନାହାନ୍ତି, ତାହାର ଏକ ପ୍ରଧାନ କାରଣ ହେଉଛି ଏହି ଓଡ଼ିଆ ବର୍ଣ୍ଣମାଳା।

ଏହିପରି ନାନା ଭାବରେ ଆମ୍ଭମାନଙ୍କର ବର୍ଣ୍ଣମାଳା ଆମ୍ଭମାନଙ୍କୁ ଅଭାବ ଅସୁବିଧାରେ ପକାଇଅଛି ଓ ପକାଉଅଛି। ଶିଶୁଶିକ୍ଷା ଠାରୁ ଆରମ୍ଭ କରି ବ୍ୟବସାୟ ବାଣିଜ୍ୟ ପର୍ଯ୍ୟନ୍ତ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଏହି ବର୍ଣ୍ଣମାଳା ଆମ୍ଭମାନଙ୍କର ଅଗ୍ରଗତିରେ ବାଧା ଦେଉଅଛି। ଏପରି ଏକ ସର୍ବଗ୍ରାସୀ ପ୍ରତିବନ୍ଧକର ଅପନୋଦନ ନିମିତ୍ତ ଚେଷ୍ଟା କରିବା ଯେ ସର୍ବାଦୌ କର୍ତ୍ତବ୍ୟ, ତହିଁରେ କାହାରି ମତଦ୍ୱୈଧ ହୋଇ ନ ପାରେ। ଆଜି ମନେପଡ଼େ, କେତେକ ବର୍ଷ ତଳେ ସତ୍ୟବାଦୀର କେତେକ ଉଦୀୟମାନ ଯୁବକ ଏ ଦିଗରେ ମନପ୍ରାଣ ଢାଳି କାର୍ଯ୍ୟରେ ଅଗ୍ରସର ହୋଇଥିଲେ, କିନ୍ତୁ ପ୍ରାଚୀନ ସ୍ମୃତିର ମୋହ ଏଡ଼ାଇ ନ ପାରି ସେତେବେଳେ ଦଳେ ରକ୍ଷଣଶୀଳ ସାହିତ୍ୟସେବୀ ସେମାନଙ୍କର ବିରୁଦ୍ଧାଚରଣ କରିଥିଲେ। ତା'ର ଫଳରେ ବର୍ଣ୍ଣମାଳା ଓ ଲିପିସଂସ୍କାର ବାସନା ଯେ ଓଡ଼ିଆ ପ୍ରାଣରୁ ଦୂର ହୋଇଗଲା ତାହା ନୁହେଁ; ପରନ୍ତୁ ତଦ୍ଦ୍ୱାରା ସେ ଦିଗର ସଂସ୍କାରଟା କେତେ ବର୍ଷ ପାଇଁ ପଛେଇଗଲା ବୋଲି କହିବାକୁ ହେବ। ତେବେ ସତ୍ୟବାଦୀର ସେ ଉଦ୍ୟମ ଆଜି ସୁଦ୍ଧା ଯେ ତା'ର ସ୍ମୃତିକୁ ଜାଗରିତ କରି ରଖିଛି, ଏକଥା ସ୍ୱୀକାର କରିବାକୁ ହେବ। ଆଜି ସୁଦ୍ଧା ଓଡ଼ିଆ ପତ୍ରପତ୍ରିକାରେ ପଣ୍ଡିତ ସ୍ଥଳେ ପଂଡିତ, ସଞ୍ଜ ସ୍ଥଳେ ସଂଜ ଲିଖିତ ହୋଇ ସେ ସ୍ମୃତିର ଉଦ୍‌ବୋଧନ

କରୁଛି ଏବଂ ବର୍ଣ୍ଣମାଳା ଓ ଲିପିସଂସ୍କାର ଦିଗରେ ଆମ୍ଭମାନଙ୍କୁ ପ୍ରେରଣା ପ୍ରଦାନ କରୁଛି। ସେହି ପ୍ରେରଣାର ଇଙ୍ଗିତରେ ଏବଂ ଯୁଗୋଚିତ ରୁଚିର ଆହ୍ୱାନରେ ଆଜି ମୋର ଏ ଆଲୋଚନାର ଅବତାରଣା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ।

ଓଡ଼ିଆ ବର୍ଣ୍ଣମାଳା ଓ ଲିପିର ଦୋଷତ୍ରୁଟି ତଥା ଅଭାବ ଅସୁବିଧା ଦେଖାଇ ତା'ର ସଂସ୍କାର ବିଧାନ କରିବାକୁ ଗଲାବେଳେ ଆମ୍ଭମାନଙ୍କର ସ୍ମରଣ ରଖିବା କର୍ତ୍ତବ୍ୟ ଯେ, ସଂସ୍କୃତରୁ ଓଡ଼ିଆ ଭାଷାର ଉତ୍ପତ୍ତି ଏବଂ ସଂସ୍କୃତ ବର୍ଣ୍ଣମାଳାର ଆଦର୍ଶରେ ଓଡ଼ିଆ ବର୍ଣ୍ଣମାଳା ଗଠିତ। ତେଣୁ ଦେଶକାଳପାତ୍ର ଭେଦରେ ସଂସ୍କୃତ ବର୍ଣ୍ଣମାଳାର ଯେପରି ଯୁଗୋଚିତ ସଂସ୍କାର ହୋଇଥିଲା, ଆମ୍ଭମାନଙ୍କ ଓଡ଼ିଆ ବର୍ଣ୍ଣମାଳାର ମଧ୍ୟ ସେହିପରି ସଂସ୍କାର କରିବାକୁ ହେବ। ଓଡ଼ିଆ ଲିପିର କଥା ସ୍ୱତନ୍ତ୍ର। ସଂସ୍କୃତ ଲିପିର ଆକାର ପ୍ରକାର ସଙ୍ଗେ ଓଡ଼ିଆ ଲିପିର ଆକାର ପ୍ରକାରକୁ ତୁଳନା କରାଯାଇ ନ ପାରେ। ବର୍ଣ୍ଣମାଳାର ଦୋଷ ତ୍ରୁଟି କ୍ଷାଳନ କରିପାରିଲେ ଲିପିଗତ ପ୍ରମାଦ ବା ଅସୁବିଧା ଆପେ ଆପେ ଅପସାରିତ ହୋଇଯିବ। ତେଣୁ ଏ ସ୍ଥଳରେ କେବଳ ସଂସ୍କୃତ ବର୍ଣ୍ଣମାଳା ସଙ୍ଗେ ଓଡ଼ିଆ ବର୍ଣ୍ଣମାଳାର ତୁଳନାତ୍ମକ ଆଲୋଚନା କରି ଗୋଟିଏ ସିଦ୍ଧାନ୍ତ ସ୍ଥିରକରି ନେଲେ ଆମ୍ଭମାନଙ୍କର ଉଦ୍ଦେଶ୍ୟ ସିଦ୍ଧ ହେବ।

ସଂସ୍କୃତ ଭାଷାରେ ଅନେକେ ପାଣିନିଙ୍କୁ ମୂଳ ବ୍ୟାକରଣ ଲେଖକ ବୋଲି ମନେ କରିଥାନ୍ତି, କିନ୍ତୁ ପ୍ରକୃତରେ ସେ ମୂଳ ବ୍ୟାକରଣ ଲେଖକ ନୁହନ୍ତି; ସେ ମାହେଶ୍ୱର ବ୍ୟାକରଣର ଭାଷ୍ୟ ପ୍ରଣୟନ କରିଥିଲେ। ପରେ ଯୋଗଦର୍ଶନ ପ୍ରଣେତା ପତଞ୍ଜଳି ଏହି ପାଣିନୀୟ ଲେଖା ଉପରେ ବ୍ୟାକରଣର ମହାଭାଷ୍ୟ ରଚନା କରିଥିଲେ। କଳାପ, ମୁଗ୍ଧବୋଧ ଓ ସଂକ୍ଷିପ୍ତସାର ପ୍ରଭୃତି ସଂସ୍କୃତ ବ୍ୟାକରଣମାନ ପତଞ୍ଜଳିଙ୍କ ମହାଭାଷ୍ୟର ଯଥେଷ୍ଟ ପରବର୍ତ୍ତୀ। ଶାମବେଦରୁ ଛନ୍ଦର ପ୍ରଚାର ହେଲାପରେ ଶିକ୍ଷା, କଳ୍ପ ଓ ବ୍ୟାକରଣ ପ୍ରଭୃତି ରଚିତ ହୋଇଥିଲା। କୈଳାସପର୍ବତନିବାସୀ ଆର୍ଯ୍ୟ ମହେଶ୍ୱର ସେହି ସମୟରେ ମାହେଶ୍ୱର ବ୍ୟାକରଣ ପ୍ରଣୟନ କରିଥିଲେ। ତହିଁରେ ସେ ବର୍ଣ୍ଣମାଳା ପ୍ରସଙ୍ଗୀୟ ଯେଉଁ ୧୪ ଗୋଟି ସୂତ୍ର ଲେଖିଅଛନ୍ତି, ତହିଁରୁ ଜଣାଯାଏ ଯେ, ସେତେବେଳେ ସଂସ୍କୃତ ଭାଷାରେ କେବଳ ୯ଗୋଟି ସ୍ୱର ଏବଂ ୩୨ଗୋଟି ବ୍ୟଞ୍ଜନବର୍ଣ୍ଣ ଥିଲା।

ଅ ଆ, ଇ ଈ, ଉ ଊ ଏବଂ ଋ ୠ ସେତେବେଳେ ସମାନ ସ୍ୱର ରୂପେ ଗଣା ହେଉଥିଲେ। ଏହା ପୂର୍ବରୁ ବୈଦିକ ବ୍ୟାକରଣରେ ଅ, ଇ, ଉ, ଋ, ଌ ଏହି

ପାଞ୍ଚଗୋଟି ବର୍ଣ୍ଣ ସ୍ୱରବର୍ଣ୍ଣ ରୂପେ ପରିଗଣିତ ହେଉଥିଲେ। ପରବର୍ତ୍ତୀ ଯୁଗରେ ବ୍ୟବହାର-ବହୁଳତା ହେତୁ ଏମାନଙ୍କର ମିଶ୍ରଣ ତଥା ସଂଯୋଗ ଜାତ ଆ, ଈ, ଊ, ଋ, ଦୀର୍ଘ ଌ, ଐ, ଔ ସ୍ୱରବର୍ଣ୍ଣ ରୂପେ ଏବଂ ଯ, ବ, ର, ଲ ବ୍ୟଞ୍ଜନବର୍ଣ୍ଣ ରୂପେ ପରିଗଣିତ ହେଲା। ପରବର୍ତ୍ତୀ କାଳରେ ପାଣିନି ଯେଉଁ ସ୍ୱର ତାଲିକା ଲେଖିଯାଇଅଛନ୍ତି, ତହିଁରେ ଦୀର୍ଘ ଌ କାରର ସ୍ଥାନ ନାହିଁ। ମୁଗ୍ଧବୋଧ ରଚୟିତା ବୋପଦେବ କିନ୍ତୁ ଦୀର୍ଘ ଌ କାରର ଅସ୍ତିତ୍ୱ ସ୍ୱୀକାର କରନ୍ତି। ଏଥିରୁ ମନେହୁଏ ଯେ ପାଣିନିଙ୍କ ପୂର୍ବରୁ ଦୀର୍ଘ ଌ କାରର ବ୍ୟବହାର ପରିତ୍ୟକ୍ତ ହୋଇଥିଲା ଏବଂ ବୋପଦେବ କେବଳ ପୂର୍ବସ୍ମୃତିର ମୋହ ଏଡ଼ାଇ ନ ପାରି ତା'ର ସ୍ୱାତନ୍ତ୍ର୍ୟ ଗଣନା କରିଥିଲେ। ନତୁବା ଏପରି ହୋଇପାରେ ଯେ, ପାଣିନିଙ୍କ ପରେ ଦୀର୍ଘ ଌ କାର ସୃଷ୍ଟ ହୋଇ ବୋପଦେବଙ୍କ ପରବର୍ତ୍ତୀ କାଳରେ ସଂକ୍ଷିପ୍ତସାର ରଚନା ସମୟକୁ ପରିତ୍ୟକ୍ତ ହୋଇଥିଲା। ଏହି ଦୁଇଟି ଅନୁମାନ ମଧ୍ୟରୁ କେଉଁଟି ସତ୍ୟ, ତାହା ନିର୍ଣ୍ଣୟ କରିବା ସହଜସାଧ୍ୟ ନୁହେଁ। ତେବେ ସେ ଯାହାହେଉ, ସଂସ୍କୃତ ସାହିତ୍ୟରେ ଦୀର୍ଘ ଌ କାରର ବହୁଳ ବ୍ୟବହାର ତ ଦୂରର କଥା, ବିରଳ ବ୍ୟବହାର ମଧ୍ୟ କେଉଁଠାରେ ଅଛି କି ନାହିଁ, ତାହା ମଧ୍ୟ ଏହି ଲେଖକର ଅଗୋଚର।

ଅଆ, ଇଇ, ଉଉ, ଋଋ ପରସ୍ପର ସହିତ ସମ୍ମିଳିତ ହୋଇ ଦୀର୍ଘତ୍ୱ ଧାରଣ କରନ୍ତି। ଏହି କାରଣରୁ ମାହେଶ୍ୱର ବ୍ୟାକରଣରେ ସ୍ୱତନ୍ତ୍ର ସ୍ୱର ରୂପେ ଏଗୁଡ଼ିକର ଉଲ୍ଲେଖ ହୋଇନାହିଁ। କିନ୍ତୁ ଏ ଐ, ଓ ଔ ପରସ୍ପର ସହିତ ମିଳିତ ହୋଇ ଦୀର୍ଘତ୍ୱ ପରିବର୍ତ୍ତେ ଅନ୍ୟ ଆକାର ଧାରଣ କରୁଥିବା ହେତୁ ସେଗୁଡ଼ିକର ଉଲ୍ଲେଖ ମାହେଶ୍ୱର ବ୍ୟାକରଣରେ ସ୍ୱତନ୍ତ୍ର ବର୍ଣ୍ଣ ରୂପେ ହୋଇଅଛି। ଆହୁରି ମଧ୍ୟ ମାହେଶ୍ୱର ବ୍ୟାକରଣ ରଚନା ସମୟରେ ଡ଼, ଢ଼, ୟ, ଳ ଯଥାକ୍ରମେ ଡ, ଢ, ଯ, ଲ, ର ରୂପାନ୍ତର ରୂପେ ପରିଗଣିତ ହେଉଥିଲେ। ଲଣ୍ ଏବଂ ହଲ୍ ସଂଜ୍ଞାର ଲ ଓ ଳ, ହ ଯ ବ ର ଟ ଏବଂ କ ପ ୟ ସଂଜ୍ଞାର ଯ ଓ ୟ, ଘ ଢ଼ ଧ ଶ୍ ଏବଂ ଛ ବ ଗ ଡ଼ ଦ ଶ ସଂଜ୍ଞାର ଡ଼ ଓ ଢ଼ରୁ ଏହା ସ୍ପଷ୍ଟ ସୂଚିତ ହୁଏ।

ସଂଯୋଗଜ ବର୍ଣ୍ଣ ଯ ର ଲ ବ। ଏହି ଚାରୋଟି ବ୍ୟଞ୍ଜନବର୍ଣ୍ଣ ବ୍ୟବହାରର ଗୁରୁତ୍ୱ ହେତୁ ସେତେବେଳେ ସ୍ୱତନ୍ତ୍ର ବର୍ଣ୍ଣରୂପେ ପରିଗଣିତ ହେଉଥିଲେ। ଏଗୁଡ଼ିକର ଅନ୍ତସ୍ଥ ସଂଜ୍ଞାରୁ ଆଦିମ ବେଦ, ବ୍ୟାକରଣରେ ଏମାନଙ୍କର ସ୍ୱାତନ୍ତ୍ର୍ୟ ନ ଥିବାର

ପ୍ରତିପନ୍ନ ହୁଏ। ଏହି କାରଣରୁ ପରବର୍ତ୍ତୀ କାଳରେ ଏଗୁଡ଼ିକୁ ଅନ୍ତସ୍ଥ ସଂଜ୍ଞା ଦିଆଯାଇ ବର୍ଣ୍ଣମାଳାର ଅନ୍ତର୍ଭୁକ୍ତ କରାଯାଇଅଛି। କିନ୍ତୁ ଅନୁସ୍ୱାର ଓ ବିସର୍ଗର ବ୍ୟବହାରରେ ଉଚ୍ଚାରଣଗତ ଯଥେଷ୍ଟ ସ୍ୱାତନ୍ତ୍ର୍ୟ ଥିଲେ ହେଁ ସେମାନେ ଯଥାକ୍ରମେ ମ ଓ ସରୁ ଜାତ ବୋଲି ପାଣିନୀୟ ବ୍ୟାକରଣରେ ସେମାନଙ୍କ ସ୍ୱାତନ୍ତ୍ର୍ୟ ରକ୍ଷା କରାଯାଇନାହିଁ। ପରବର୍ତ୍ତୀ କାଳରେ ଯେତେବେଳେ ସେମାନଙ୍କ ବ୍ୟତୀତ କାର୍ଯ୍ୟନିର୍ବାହ ଏକପ୍ରକାର ଅସମ୍ଭବ ବୋଧ ହେଲା, ସେତେବେଳେ ସେମାନଙ୍କୁ ଅଯୋଗବାହ ନାମ ଦେଇ ସ୍ୱତନ୍ତ୍ର ବର୍ଣ୍ଣ ରୂପେ ବର୍ଣ୍ଣମାଳାର ଅନ୍ତର୍ଭୁକ୍ତ କରାଗଲା। ପୁଣି ବ୍ୟଞ୍ଜନବର୍ଣ୍ଣ ପରି ସେ ଦୁଇଟି ସ୍ୱରବର୍ଣ୍ଣର ବିନା ସହାୟତାରେ ଉଚ୍ଚାରିତ ହୋଇପାରନ୍ତି ନାହିଁ ବୋଲି ବୈୟାକରଣିକମାନେ ସେମାନଙ୍କୁ ବ୍ୟଞ୍ଜନ ବର୍ଣ୍ଣର ଅନ୍ତର୍ଭୁକ୍ତ କଲେ। ଏଥିରେ କିନ୍ତୁ ପୌରାଣିକ ପଣ୍ଡିତମାନଙ୍କର ମତଦ୍ୱୈଧ ଉପସ୍ଥିତ ହେଲା। କାରଣ ବ୍ୟଞ୍ଜନବର୍ଣ୍ଣଗୁଡ଼ିକ ସାଧାରଣତଃ ନିଜ ନିଜର ଅବ୍ୟବହିତ ପରେ ଗୋଟିଏ ଗୋଟିଏ ସ୍ୱର ଗ୍ରହଣ କରିଥାନ୍ତି; କିନ୍ତୁ ଏ ଦୁହେଁ ନିଜନିଜର ଅବ୍ୟବହିତ ପୂର୍ବେ ସ୍ୱର ଗ୍ରହଣ କରୁଅଛନ୍ତି। ତେଣୁ ସେମାନେ ଏ ଦୁଇଟିକୁ ଅଂ ଓ ଅଃ ରୂପେ ଉଚ୍ଚାରଣ କରି ସ୍ୱରବର୍ଣ୍ଣର ଅନ୍ତର୍ଭୁକ୍ତ କଲେ। ତେବେ ଏ ପର୍ଯ୍ୟନ୍ତ ଯେ ସେ ଦୁଇଟି ବର୍ଣ୍ଣର ଭାଗ୍ୟ ମୀମାଂସିତ ହେଲାଣି, ତାହା କହିବାକୁ ଏ ଦୀନ ଲେଖକ ପଶ୍ଚାତ୍‌ପଦ।

କ ଓ ଷ ଏ ଦୁଇ ବ୍ୟଞ୍ଜନର ମିଳନରେ କ୍ଷ କାରର ଉତ୍ପତ୍ତି ହୋଇଥିବା ହେତୁ ବୈୟାକରଣିକମାନେ ତାହାକୁ ଗୋଟିଏ ସ୍ୱତନ୍ତ୍ର ବର୍ଣ୍ଣରୂପେ ଗ୍ରହଣ କରି ନାହାନ୍ତି; କିନ୍ତୁ ପୌରାଣିକମାନେ ତା'ର ସ୍ୱାତନ୍ତ୍ର୍ୟ ସ୍ୱୀକାର କରନ୍ତି। ବୈୟାକରଣିକ ଓ ପୌରାଣିକ ମାନଙ୍କର ଏହି ବର୍ଣ୍ଣମାଳା ପ୍ରସଙ୍ଗରେ ମତ ବିଭିନ୍ନତା ବହୁ ପ୍ରାଚୀନ ଯୁଗରୁ ଚଳି ଆସୁଅଛି। ଋକ୍‌ବେଦର ଅକ୍ଷମାଳିକା ଅର୍ଥାତ୍ ଅକ୍ଷର ମାଳିକା ଉପନିଷଦ ବୋଧ ହୁଏ ଏହି ପୌରାଣିକମାନଙ୍କ ମତବାଦର ପ୍ରଚାର ଉଦ୍ଦେଶ୍ୟରେ ରଚିତ ହୋଇଥିଲା। ଏହା ପ୍ରାୟ ଚାରି ସହସ୍ର ବର୍ଷ ପୂର୍ବରୁ କଥା। ସେହି ଅକ୍ଷମାଳିକା ଉପନିଷଦରେ ସର୍ବମୋଟ ୧୬ ଗୋଟି ସ୍ୱର ଓ ୩୫ ଗୋଟି ବ୍ୟଞ୍ଜନବର୍ଣ୍ଣରେ ସ୍ୱାତନ୍ତ୍ର୍ୟ ସ୍ୱୀକାର କରାଯାଇ ଅଛି ଏବଂ ସ୍ୱରବର୍ଣ୍ଣର ତାଳିକାରେ ଦୀର୍ଘ ଌ କାର, ଅଂ, ଅଃ ଏବଂ ବ୍ୟଞ୍ଜନ ବର୍ଣ୍ଣର ତାଳିକାରେ ଳ, ଳ ଓ କ୍ଷ କାରର ଉଲ୍ଲେଖ ଅଛି।

ତା'ପରେ ଚନ୍ଦ୍ରବିନ୍ଦୁର କଥା। ସଂସ୍କୃତ ଭାଷାରେ ଏପର୍ଯ୍ୟନ୍ତ ତାହାକୁ ସ୍ୱତନ୍ତ୍ର ବର୍ଣ୍ଣରୂପେ ଗ୍ରହଣ କରାଯାଇ ନାହିଁ। କିନ୍ତୁ ଦେଶୀୟ ବ୍ୟାକରଣରେ ପଣ୍ଡିତମାନେ ତାହାକୁ ଅଯୋଗବାହ ନାମ ଦେଇ ସ୍ୱତନ୍ତ୍ର ବର୍ଣ୍ଣରୂପେ ଗଣନା କରୁଅଛନ୍ତି। ତେବେ ସେ ଯାହାହେଉ, ସଂସ୍କୃତ ବର୍ଣ୍ଣମାଳାର ଏହି ଇତିହାସ ଓ କ୍ଷୟବୃଦ୍ଧି ଆଲୋଚନା କରିବାର ଯାହା ଉଦ୍ଦେଶ୍ୟ ଥିଲା, ଏଠାରେ ତାହା ସ୍ପଷ୍ଟ ଭାବରେ ପ୍ରକାଶ କରିବା ସମୀଚୀନ। ଏ ପ୍ରସଙ୍ଗରେ ଯାହା କିଛି କଥିତ ହେଲା, ତହିଁରୁ ଏକଥା ସ୍ପଷ୍ଟ ସୂଚିତ ହୁଏ ଯେ, ଦେଶକାଳପାତ୍ର ଭେଦରେ ସଂସ୍କୃତ ବର୍ଣ୍ଣମାଳାର ସଂସ୍କାର ହୋଇଅଛି। ସମୟର ଆହ୍ୱାନରେ, ଯୁଗରୁଚିର ଆଘାତରେ ପ୍ରାଚୀନ ଆର୍ଯ୍ୟମନୀଷୀଗଣ ବୁକୁ ପାତି ସକଳ ପ୍ରକାର ପରିବର୍ତ୍ତନ ବରଣ କରି ନେଇଅଛନ୍ତି। ଏହା ଯେ ସେମାନଙ୍କ ଦୂରଦର୍ଶିତାର ପରିଚାୟକ, ତହିଁରେ କୌଣସି ସନ୍ଦେହ ନାହିଁ। ଆଜି ଆମ୍ଭମାନଙ୍କୁ ମଧ୍ୟ ସେହିପରି ଦୂରଦୃଷ୍ଟିର ପରିଚୟ ଦେବାକୁ ହେବ ଏବଂ ସମୟର ଆହ୍ୱାନରେ, ଯୁଗରୁଚିର ଆଘାତରେ ପ୍ରାଚୀନ ସ୍ମୃତିର ମୋହ ଏଡ଼ାଇ ଭବିଷ୍ୟତର ମଙ୍ଗଳ ପାଇଁ ଦେଶର ନାମରେ, ଜାତିର ନାମରେ ସକଳ ପରିବର୍ତ୍ତନ, ସକଳ ନୂତନତାକୁ ବୁକୁ ପାତି ବରଣ କରିନେବାକୁ ହେବ।

ସଂସ୍କୃତର ଏହି ଆଦର୍ଶରେ ଏବଂ ଯୁଗରୁଚିର ଆହ୍ୱାନରେ ଆମ୍ଭମାନଙ୍କ ଓଡ଼ିଆ ବର୍ଣ୍ଣମାଳାର ବିଚାର କଲେ ଜଣାଯାଏ ଯେ, ଆମ୍ଭମାନଙ୍କ ଭାଷାରେ ମୌଳିକ ବର୍ଣ୍ଣ ସମୁଦାୟର ସମଷ୍ଟି ୩୪ ଗୋଟି। ଯଥା- ଅ, ଇ, ଉ, ଋ, କ, ଖ, ଗ, ଘ, ଙ, ଚ, ଛ, ଜ, ଝ, ଞ, ଟ, ଠ, ଡ, ଢ, ଣ, ତ, ଥ, ଦ, ଧ, ନ, ପ, ଫ, ବ, ଭ, ମ, ଲ, ଶ, ଷ, ସ ଓ ହ। ସ୍ୱତନ୍ତ୍ର ବର୍ଣ୍ଣରୂପେ ଌ କାରର ବ୍ୟବହାର ଓଡ଼ିଆ ଭାଷାରେ ଆଦୌ ନାହିଁ - ହେବାର ମଧ୍ୟ ସମ୍ଭାବନା ନାହିଁ। ତେଣୁ ଦୀର୍ଘ ଌ କାର ପରି ଏହାକୁ ବିନା ବିଚାରରେ ସ୍ୱରତାଲିକାରୁ ଉଠାଇ ଦିଆଯାଇପାରେ। ତା'ପରେ ଯ ର ଲ ବ ଏହି ଚାରୋଟି ବର୍ଣ୍ଣ ଯଥାକ୍ରମେ ଇ, ଈ, ଋ, ୠ, ଌ, ଉ, ଉ ସହିତ ଅନ୍ୟ ସ୍ୱରବର୍ଣ୍ଣର ସଂଯୋଗରୁ ଉତ୍ପନ୍ନ। କିନ୍ତୁ ଌକାରକୁ ଓଡ଼ିଆ ସ୍ୱର ତାଲିକାରୁ ବହିଷ୍କୃତ କରାଯିବାର ବ୍ୟବସ୍ଥା କରାଯାଇ ଥିବାରୁ ଲ କାରକୁ ମୌଳିକ ବର୍ଣ୍ଣ ରୂପେ ଗ୍ରହଣ କରାଯାଇ ପାରେ।

ଅ, ଇ, ଉ, ଋ, ଭିନ୍ନ ମିଶ୍ରିତ ସ୍ୱରବର୍ଣ୍ଣର ସଂଖ୍ୟା ଆଠୋଟି। ଅ ରେ ଅ ମିଶିଲେ ଆ, ଇରେ ଇ ମିଶିଲେ ଈ, ଉରେ ଉ ମିଶିଲେ ଊ, ଋରେ ଋ ମିଶିଲେ ୠ,

ଅ ଆ ରେ ଇ ଈ ମିଶିଲେ ଏ, ଅ ଆରେ ଏ ମିଶିଲେ ଐ, ଅ ଆ ରେ ଉଊ ମିଶିଲେ ଓ ଏବଂ ଅଆରେ ଓ ମିଶିଲେ ଔ ହୁଏ। ତେଣୁ ଏ ଆଠୋଟି ମିଶ୍ରିତ ସ୍ୱରବର୍ଣ୍ଣକୁ ମୌଳିକ ସ୍ୱର ଚାରୋଟି ସହିତ ମିଶାଇ ଓଡ଼ିଆ ବର୍ଣ୍ଣମାଳାରେ ସ୍ୱରବର୍ଣ୍ଣର ସଂଖ୍ୟା ୧୨ ଗୋଟି କରାଯାଇପାରେ।

ମୌଳିକ ବ୍ୟଞ୍ଜନ ବର୍ଣ୍ଣ ରୂପେ ସମୁଦାୟ ୩୦ଟି ବର୍ଣ୍ଣ ଗ୍ରହଣ କରଯାଇଅଛି। ଆଉ ଟିକିଏ ସୂକ୍ଷ୍ମ ଭାବରେ ବିଚାର କଲେ ଜଣାଯାଏ ଯେ, ଆମ୍ଭମାନଙ୍କର ବର୍ତ୍ତମାନ ପ୍ରଚଳିତ ବର୍ଣ୍ଣମାଳାରେ ସର୍ବମୋଟ ସାତୋଟି ରୂପାନ୍ତରପ୍ରାପ୍ତ ବ୍ୟଞ୍ଜନର ପ୍ରଚଳନ ଅଛି- ଡ ଡ଼, ଢ ଢ଼, ନଂ ମଂ, ଯ ୟ, ଲ ଳ, ର ସ ଃ। ବ୍ୟବହାରର ବହୁଳତା ଏବଂ ଉଚ୍ଚାରଣର ଗୁରୁତା ଦିଗରୁ ବିଚାର କରି ପ୍ରାଚୀନ ମନୀଷୀମାନେ ଯେପରି କାଳକ୍ରମେ ଂ ଃ ଁ କୁ ସ୍ୱତନ୍ତ୍ର ବ୍ୟଞ୍ଜନ ରୂପେ ଗ୍ରହଣ କରିଅଛନ୍ତି, ଆମ୍ଭେମାନେ ମଧ୍ୟ ସେହିପରି ସେହି କାରଣରୁ ଡ଼, ଢ଼ ଭିନ୍ନ ୟ, ଳ, ଂ, ଃ, ଁ କୁ ସ୍ୱତନ୍ତ୍ର ବର୍ଣ୍ଣ ରୂପେ ଗ୍ରହଣ କରି ନେଇପାରୁ। ଳ କାରର ମୌଳିକ ବର୍ଣ୍ଣ ରୂପେ କୌଣସି ସ୍ୱାତନ୍ତ୍ର୍ୟ ନ ଥିଲେ ହେଁ ତାହା ସଂଯୋଜକ ହୋଇ ଥିବାରୁ ଏବଂ ସ୍ୱର ତାଲିକାରୁ ଌ କାରକୁ ଉଠାଇ ଦିଆଯାଇ ଥିବାରୁ ଏହାକୁ ରୂପାନ୍ତରପ୍ରାପ୍ତ ବର୍ଣ୍ଣ ରୂପେ ବ୍ୟଞ୍ଜନ ବର୍ଣ୍ଣର ତାଲିକାରେ ଗ୍ରହଣ କରାଯାଇ ପାରେ। ଏହା ଛଡ଼ା ଓଡ଼ିଆ ଭାଷାର ସମସ୍ତ ଅଭିଧାନରେ ଏହି ଳ କାର ମୂଳବର୍ଣ୍ଣ ରୂପେ ଗୃହୀତ ହୋଇଅଛି। ଏପରି ଅବସ୍ଥାରେ ଓଡ଼ିଆ ବର୍ଣ୍ଣମାଳାରେ ଏହାର ସ୍ଥାନ ସୁସ୍ପଷ୍ଟ।

ମୌଳିକ ବ୍ୟଞ୍ଜନ ବର୍ଣ୍ଣ ୩୦ଟି ସହିତ ଏହି ରୂପାନ୍ତରପ୍ରାପ୍ତ ୟ,ଳ,ଂ, ଃ, ଁ ଏହି ପାଞ୍ଚୋଟି ବ୍ୟଞ୍ଜନ ମିଶି ସମୁଦାୟ ୩୫ଟି ବ୍ୟଞ୍ଜନ ହେଲା। ବର୍ତ୍ତମାନ ଏହା ସହିତ ସଂଯୋଗଜ ବର୍ଣ୍ଣର ସମ୍ମିଶ୍ରଣ କଥା ବିଚାର କରାଯାଉ। ସଂଯୋଗଜ ବର୍ଣ୍ଣ ସମୁଦାୟ ତିନିଗୋଟି ଯଥା- ଯ ବ ର। ଇ ଈ ସହିତ ଇ ଈ ଭିନ୍ନ ଅନ୍ୟ ସ୍ୱର ମିଶିଲେ ଯ ବା ଯଫଳା ହୁଏ। ସେହିପରି ଉ ଊ ସହିତ ଉ ଊ ଭିନ୍ନ ଅନ୍ୟ ସ୍ୱର ମିଶିଲେ ବ ବା ବଫଳା, ଋ ଋ ସହିତ ଋ ଋ ଭିନ୍ନ ଅନ୍ୟ ସ୍ୱର ମିଶିଲେ ର ବା ର ଫଳା, ଏ ସହିତ ଏ ଭିନ୍ନ ଅନ୍ୟ ସ୍ୱର ମିଶିଲେ ଅୟ ବା ୟ, ଐ ସହିତ ଐ ଭିନ୍ନ ଅନ୍ୟ ସ୍ୱର ମିଶିଲେ ଆୟ ବା ୟ, ଓ ସହିତ ଓ ଭିନ୍ନ ଅନ୍ୟ ସ୍ୱର ମିଶିଲେ ଅବ୍ ବା ଅନ୍ତସ୍ଥ ବ, ଔ ସହିତ ଔ ଭିନ୍ନ ଅନ୍ୟ ସ୍ୱର ମିଶିଲେ ଆବ୍ ବା ଅନ୍ତସ୍ଥ ବ, ଅ ସହିତ ଋ ବା ଋ ମିଶିଲେ ଅର୍ ବା ରେଫ୍ ମାତ୍ରା ଏବଂ ଆ ସହିତ ଋ ବା ଋ ମିଶିଲେ ଆର୍ ବା ରେଫ୍ ମାତ୍ରା

ହୋଇଥାଏ। ଙ କାର ସହିତ ମଧ୍ୟ ଏହିପରି ଅନ୍ୟ ସ୍ୱର ମିଳିତ ହେଲେ ଅଲ୍ ହୋଇଥାଏ; କିନ୍ତୁ ଆମ୍ଭମାନଙ୍କ ପ୍ରସ୍ତାବିତ ବର୍ଣ୍ଣମାଳାରୁ ଙ କାରକୁ ଉଠାଇ ଦେଇ ଳ କାରକୁ ମୂଳବର୍ଣ୍ଣ ରୂପେ ଗ୍ରହଣ କରାଯାଇ ଥିବାରୁ ସେ ପ୍ରସଙ୍ଗ ଏଠାରେ ବିଚାର୍ଯ୍ୟ ନୁହେଁ। ବର୍ତ୍ତମାନ ସଂଯୋଗଜ ଯ, ବ, ର ମଧ୍ୟରୁ ତିନୋଟି ଯାକ ବର୍ଣ୍ଣ ଗ୍ରହଣୀୟ କି ନାହିଁ, ତାହାର ବିଚାର କରାଯାଉ। ଶବ୍ଦର ପ୍ରାରମ୍ଭରେ ବର୍ଗ୍ୟ ବ ଠାରୁ ଏହି ସଂଯୋଗଜ ବା ଅବର୍ଗ୍ୟ ବ ର ପାର୍ଥକ୍ୟ ନିର୍ଣ୍ଣୟ କରିବା ସାଧାରଣତଃ ଏକ ସହଜ ବ୍ୟାପାର ନୁହେଁ। କେତେକ ଓଡ଼ିଆ ଅଭିଧାନରେ ମଧ୍ୟ ଏହି ଅବର୍ଗ୍ୟ ବ ର ସ୍ୱାତନ୍ତ୍ର୍ୟ ନିର୍ବିଚାରରେ ଉପେକ୍ଷିତ ହୋଇଅଛି। ତେଣୁ ତାହାକୁ ସ୍ୱତନ୍ତ୍ର ଗୋଟିଏ ବର୍ଣ୍ଣରୂପେ ଓଡ଼ିଆ ବର୍ଣ୍ଣମାଳାରୁ ବିନା ଆପତ୍ତିରେ  ବିଦାୟ ଦିଆଯାଇପାରେ। ଅନ୍ତସ୍ଥ ଯ କୁ ମଧ୍ୟ ଏହିପରି କେତେକ କାରଣରୁ ସ୍ୱତନ୍ତ୍ର ବର୍ଣ୍ଣରୂପେ ଗ୍ରହଣ କରାଯାଇ ନ ପାରେ। ବର୍ଗ୍ୟ ଜ ଠାରୁ ଏହି ଅନ୍ତସ୍ଥ ଯ ର ଗୋଟାଏ ମୌଳିକ ବର୍ଣ୍ଣ ରୂପେ ସେପରି କିଛି ଉଚ୍ଚାରଣଗତ ପାର୍ଥକ୍ୟ ନାହିଁ। ଯେଉଁଠାରେ ବା ପାର୍ଥକ୍ୟ ପରିଲକ୍ଷିତ ହୁଏ, ସେଠାରେ ତାହା ୟ ରୂପେ ଉଚ୍ଚାରିତ ହୁଏ। ତେଣୁ ଅନ୍ତସ୍ଥ ଯ କାରର ଆସନ ବର୍ଣ୍ଣମାଳାରୁ ଉଠାଇଦେଇ ତାହା ସ୍ଥାନରେ ୟର ପ୍ରଚଳନ କରିବା ଅତି ସମୀଚୀନ। ରୂପାନ୍ତରିତ ବର୍ଣ୍ଣରୂପେ ମଧ୍ୟ ତାହା ବ୍ୟଞ୍ଜନ ତାଲିକାରେ ଗୃହୀତ ହୋଇଅଛି। ତେଣୁ ସଂଯୋଗଜ ବର୍ଣ୍ଣ ତିନୋଟି ମଧ୍ୟରୁ କେବଳ ର କାରଟିକୁ ସ୍ୱତନ୍ତ୍ର ବର୍ଣ୍ଣ ରୂପେ ଓଡ଼ିଆ ବର୍ଣ୍ଣମାଳାର ଅନ୍ତର୍ଭୁକ୍ତ କରାଯାଇପାରେ।

ମୌଳିକ ବ୍ୟଞ୍ଜନ ୩୦ଟି ସହିତ ରୂପାନ୍ତରୀକୃତ ବ୍ୟଞ୍ଜନ ପାଞ୍ଚୋଟିର ମିଶ୍ରଣରେ ବ୍ୟଞ୍ଜନ ବର୍ଣ୍ଣର ସମଷ୍ଟି ୩୫ ଗୋଟି ହୋଇଥିଲା। ବର୍ତ୍ତମାନ ଏହି ୩୫ଟି ସହିତ ସଂଯୋଗଜ ର କାରଟି ମିଳିତ ହେଲେ ଓଡ଼ିଆ ବର୍ଣ୍ଣମାଳାରେ ସମସ୍ତ ବ୍ୟଞ୍ଜନ ବର୍ଣ୍ଣର ସମଷ୍ଟି ୩୬ଟି ହେଉଅଛି। ଏହି ୩୬ଟି ମଧ୍ୟରେ ତାଲବ୍ୟ, ଦନ୍ତ୍ୟ ଓ ମୂର୍ଦ୍ଧନ୍ୟ ଭେଦରେ ତିନୋଟି ସ କାରର ସ୍ଥାନ ଅଛି। ସଂସ୍କୃତ ଭାଷାରେ ଏ ଗୁଡ଼ିକର ଉଚ୍ଚାରଣ ଭେଦ ଅଛି; କିନ୍ତୁ ଓଡ଼ିଆ ଭାଷାରେ ସେପରି କୌଣସି ପାର୍ଥକ୍ୟ ପରିଲକ୍ଷିତ ହୁଏ ନାହିଁ। ସଂସ୍କୃତର ଅନୁଗାମୀ ହୋଇ ବର୍ତ୍ତମାନ ମଧ୍ୟ ସେ ତିନୋଟି ମଧ୍ୟରେ କୌଣସି ପାର୍ଥକ୍ୟ ଆରୋପ କରାଯାଇ ନ ପାରେ। କାରଣ କେବଳ କଥାରେ ଓ ଲେଖାରେ ସେପରି ପାର୍ଥକ୍ୟ ଆରୋପ କରାଗଲେ ସୁଦ୍ଧା ତାହାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଲୋକର ଅଭାବ। ଶତ ସହସ୍ର ନରନାରୀଙ୍କ ତୁଣ୍ଡରେ ତାହା ଯୁଗ ଯୁଗ ଧରି ଯେପରି ଭାବରେ

ଉଚ୍ଚାରିତ ହୋଇ ଆସିଲାଣି ଏବଂ ସେ ଉଚ୍ଚାରଣ ପୁଣି ଯେପରି ଭାବରେ ଆମ୍ଭମାନଙ୍କ ପ୍ରକୃତିରେ ପରିଣତ ହେଲାଣି, ତାହା ପ୍ରତି ଦୃଷ୍ଟି ଦେଲେ ପାର୍ଥକ୍ୟ ଆରୋପର ପ୍ରଚେଷ୍ଟା ଊଷରରେ ବୀଜବପନ ସଦୃଶ ନିଷ୍ଫଳ ହେବ। ତେଣୁ ଏହି ତିନୋଟି ଶ କାର ପରିବର୍ତ୍ତରେ ଓଡ଼ିଆ ବର୍ଣ୍ଣମାଳାରେ ଗୋଟିଏ ସ କାର ପାଇଁ ସ୍ଥାନ ରଖିଲେ ଯଥେଷ୍ଟ ହେବ। ଏଠାରେ ଅନେକେ ହୁଏତ ଆପତ୍ତି ଉତ୍ଥାପନ କରି କହି ପାରନ୍ତି ଯେ, ସଂସ୍କୃତ ସାହିତ୍ୟ ତ ଦୂରର କଥା, ଆମ୍ଭମାନଙ୍କ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଯେଉଁ ଶବ୍ଦବୈଚିତ୍ର୍ୟ ଏବଂ ଶବ୍ଦ ଓ ବର୍ଣ୍ଣଭେଦରେ ଯେଉଁ ଅର୍ଥବୈଚିତ୍ର୍ୟ ଆମ୍ଭମାନଙ୍କର ସାହିତ୍ୟଭଣ୍ଡାରର ପ୍ରଧାନ ସମ୍ପଦ ରୂପେ ପରିଗଣିତ ହେଉଛି, ଏହାଦ୍ୱାରା ତହିଁରେ ଯଥେଷ୍ଟ ବାଧା ଲାଗିବ ଏବଂ କାଳକ୍ରମେ ପ୍ରାଚୀନ କାବ୍ୟ କବିତାର ଅବବୋଧ ଦୁରୁହ ହୋଇପଡ଼ିବ। ଏ ପ୍ରକାର ଅଭିଯୋଗର ଉତ୍ତରରେ ଏତିକି ମାତ୍ର କୁହାଯାଇ ପାରେ ଯେ, ଆମ୍ଭମାନଙ୍କର ଏପରି ଆଶଙ୍କା ନିତାନ୍ତ ଅମୂଳକ କହିଲେ ଚଳେ। କାରଣ ବର୍ତ୍ତମାନ ଯେଉଁ ଶବ୍ଦଟି କେବଳ ଶ କାର ଭେଦରେ ବିଭିନ୍ନ ଅର୍ଥ ପ୍ରତିପାଦନ, କରୁଅଛି, ଗୋଟିଏ ଶ କାର ହେଲେ ଆମ୍ଭମାନଙ୍କର ନୂତନ ଭାଷାକୋଷରେ ସେ ଶବ୍ଦଟିର ଶ କାରଭେଦଜନିତ ଯାବତୀୟ ଅର୍ଥ ସ୍ଥାନ ପାଇବ। ଏପରି ହେଲେ ଆମ୍ଭମାନଙ୍କ ପ୍ରାଚୀନ କାବ୍ୟ କବିତାର ଗୌରବ ଓ ଅର୍ଥ ବୈଚିତ୍ର୍ୟ ଅକ୍ଷୁଣ୍ଣ ରହିବ ଏବଂ ତା ସଙ୍ଗେ ସଙ୍ଗେ ଓଡ଼ିଆ ବର୍ଣ୍ଣମାଳା ଏହି ତ୍ରିବିଧ ଶ କାର ଜନିତ ଦୋଷରୁ ମୁକ୍ତ ହେବ।

ଯାହା ହେଉ, ବର୍ତ୍ତମାନ ବିଚାର୍ଯ୍ୟ ବିଷୟ ଏହି ଯେ, ଏହି ତିନୋଟି ଶ କାର ମଧ୍ୟରୁ କେଉଁ ଦିଓଟି ବର୍ଜ୍ଜନୀୟ ଏବଂ କୋଉଁ ଗୋଟିକ ଗ୍ରହଣୀୟ। ଟିକିଏ ସୂକ୍ଷ୍ମ ଭାବରେ ଆଲୋଚନା କଲେ ଜଣାଯାଏ ଯେ, ଏକା ତାଲବ୍ୟ ଶ କାର ଭିନ୍ନ ଅନ୍ୟ ସ କାର ଦିଓଟିର ରୂପ ପରିବର୍ତ୍ତନ ସଂଘଟିତ ହୁଏ। ଷତ୍ୱ ବିଧିର ନିୟମାନୁସାରେ ଦନ୍ତ୍ୟ ସ କାର ପ୍ରତି ବ୍ୟାକରଣର ଯେ ଆକ୍ରୋଶ, ତାହା କାହାରିକୁ ଅବିଦିତ ନାହିଁ। କ୍ଷଣକୁ କ୍ଷଣ ରଙ୍ଗମଞ୍ଚର ଅଭିନେତା ପରି ତା'ର ରୂପରେ ପରିବର୍ତ୍ତନ ଲାଗିଥାଏ; କିନ୍ତୁ ତାଲବ୍ୟ ଶ କାରର ଭାଗ୍ୟରେ ଏପରି ବିପର୍ଯ୍ୟୟ ଘଟେ ନାହିଁ। ତେଣୁ ତାଲବ୍ୟ ଶ କାରଟିକି ଗ୍ରହଣ କରି ଅନ୍ୟ ସ କାର ଦିଓଟିକୁ ବର୍ଜ୍ଜନ କଲେ ଚଳିପାରେ। ଏହିରୂପେ ସ କାର ଦିଓଟି ପରିତ୍ୟକ୍ତ ହେଲେ ଓଡ଼ିଆ ବର୍ଣ୍ଣମାଳାରେ ସମୁଦାୟ ବ୍ୟଞ୍ଜନ ବର୍ଣ୍ଣର ସଂଖ୍ୟା ୩୪

ଗୋଟି ହେଲା। ଏହା ସହିତ ହ୍ରସ୍ୱ ଦୀର୍ଘ ଭେଦରେ ସ୍ୱର ୧୨ ଗୋଟି ମିଶ୍ରିତ ହେଲେ ସମୁଦାୟ ଓଡ଼ିଆ ବର୍ଣ୍ଣମାଳାରେ ୪୬ଟି ଅକ୍ଷର ରହିବ।

ସ୍ୱରବର୍ଣ୍ଣ ମଧ୍ୟରେ ହ୍ରସ୍ୱ ଦୀର୍ଘ ଭେଦରେ ଦୁଇଟି ଇ, ଦୁଇଟି ଉ ଏବଂ ଦୁଇଟି ର କାର ପାଇଁ ସ୍ଥାନର ଆୟୋଜନ କରାଯାଇଛି। ଏଠାରେ କେହି କେହି ହୁଏତ ଣ କାର ଆଦର୍ଶର ଦୁଇ ଦୁଇଟି ପରିବର୍ତ୍ତରେ ଗୋଟିଏ ଗୋଟିଏ ଇ, ଉ ଏବଂ ର ର ବ୍ୟବସ୍ଥା କରିବା ପାଇଁ ଯୁକ୍ତି ଉତ୍ଥାପନ କରି ପାରନ୍ତି। ପ୍ରକୃତରେ ସେପରି କୌଣସି ଯୁକ୍ତିର ବିରୁଦ୍ଧାଚରଣ କରିବା ପାଇଁ ମୁଁ ଏକାନ୍ତ ଅନିଚ୍ଛୁକ, କାରଣ ତଦ୍ୱାରା ସ୍କୁଲ କଲେଜର ଛାତ୍ର ଓ ସାଧାରଣ ଲୋକେ ବର୍ଣ୍ଣାଶୁଦ୍ଧିଜନିତ ପାପର ପ୍ରାୟଶ୍ଚିତ୍ତରୁ ଅନେକାଂଶରେ ତ୍ରାହି ଲାଭ କରନ୍ତେ; ତଥାପି ସେପରି ଏକ ବ୍ୟବସ୍ଥା ଫଳରେ ଉପକାର ତୁଳନାରେ ଯାହା କିଛି ଅପକାର ହେବ, ତାହା ଅତି ଅଳ୍ପ କହିଲେ ଚଳେ। ତଦ୍ୱାରା ଆମ୍ଭମାନଙ୍କ ଭାଷାରେ ଗ୍ରାହିକା ଶକ୍ତି ଅବଶ୍ୟ କେତେକ ପରିମାଣରେ କ୍ଷୁଣ୍ଣ ହେବ ଏବଂ ଅନ୍ୟ ଭାଷାରୁ ବିଶେଷତଃ ସଂସ୍କୃତରୁ ବର୍ଣ୍ଣାନ୍ତରୀକରଣ ବା Translitaration କରିବା ଅସମ୍ଭବ ହୋଇ ଉଠିବ। ଦୀର୍ଘ ସ୍ୱର ପରିବର୍ତ୍ତରେ ହ୍ରସ୍ୱ ସ୍ୱର ଯୋଗେ ବର୍ଣ୍ଣାନ୍ତରୀକରଣ କରାଗଲେ ସଂସ୍କୃତ ଶ୍ଳୋକଗୁଡ଼ିକ ସହଜରେ ପଢ଼ିହେବ ନାହିଁ। ହ୍ରସ୍ୱ ଦୀର୍ଘ ସ୍ୱରଭେଦ ସଂସ୍କୃତ ଭାଷାର ଏପରି ଅସ୍ଥିମଜ୍ଜାଗତ ଯେ, ସାମାନ୍ୟ ଇତର ବିଶେଷ ହେଲେ ଆଦୌ ପଢ଼ି ହେବ ନାହିଁ। ସେଥିରେ ପୁଣି ସଂସ୍କୃତ ଭାଷାରୁ ଆମ୍ଭମାନଙ୍କର ଓଡ଼ିଆ ଭାଷା ଜୀବନ ଲାଭ କରିଅଛି। ତେଣୁ ତତ୍ ପ୍ରତି ଦୃଷ୍ଟି ନ ଦେଇ ଦୀର୍ଘ ହେଉ ବା ହ୍ରସ୍ୱ ହେଉ ଗୋଟିଏ ଗୋଟିଏ ଇ, ଉ ଓ ଋକାର ଉଠାଇ ଦେଇ ସଂସ୍କୃତର ବର୍ଣ୍ଣାନ୍ତରୀକରଣରେ ବାଧା ସୃଷ୍ଟି କରିବା ଏବଂ ପଠନାଦିରେ ପ୍ରମାଦ ଆନୟନ କରିବା ମୋ ମତରେ ସଂସ୍କୃତ ଭାଷା ପ୍ରତି ଗୋଟାଏ ଅବମାନନା ହେବ। ଏହି କାରଣରୁ କେବଳ ସଂସ୍କୃତ ବର୍ଣ୍ଣମାଳା ପ୍ରତି କୃତଜ୍ଞତା ଦେଖାଇ ଓଡ଼ିଆ ବର୍ଣ୍ଣମାଳାରେ ହ୍ରସ୍ୱ ଦୀର୍ଘ ଭେଦରେ ଦୁଇଟି ଲେଖାଏଁ ଇ, ଉ ଓ ଋକାରର ବ୍ୟବସ୍ଥା କରାଯାଇ ଅଛି।

ବର୍ତ୍ତମାନ ଯୁକ୍ତାକ୍ଷର ପ୍ରସଙ୍ଗରେ ଆଲୋଚନା କରିବାର ଅବସର ଉପସ୍ଥିତ ହୋଇଅଛି। ଓଡ଼ିଆ ବର୍ଣ୍ଣମାଳାରେ ଯଦି ପ୍ରକୃତରେ କିଛି ପୂତିଗନ୍ଧମୟ ବର୍ଜନୀୟ ଜିନିଷ ଥାଏ, ତେବେ ମୋ' ମତରେ ସେଗୁଡ଼ିକ ଏହି ଯୁକ୍ତାକ୍ଷର ଭିନ୍ନ ଅନ୍ୟ କିଛି ନୁହେଁ।

କିପରି କେଉଁ ସୂତ୍ରରେ ଯେ ସେଗୁଡ଼ିକ ଏପରି କିମ୍ଭୂତକିମାକାର ରୂପଧାରଣ କରି ଓଡ଼ିଆ ବର୍ଣ୍ଣମାଳାରେ କେବେ ଆସି ଆତ୍ମପ୍ରକାଶ କଲା, ତାହାର ଇତିହାସ ଆଲୋଚନା କରି ମୁଁ କିଛି ପାଇ ନାହିଁ। ସେଥିରେ ପୁଣି ବର୍ତ୍ତମାନ ଏପରି ଏକ ସମୟ ଆସିଛି ଯେ, ତହିଁରେ ତା'ର ସୃଷ୍ଟି ସ୍ଥିତିର ଇତିହାସ ଆଲୋଚନା କଲେ କିଛି ଲାଭ ମିଳିବ ନାହିଁ, ପରନ୍ତୁ ଯେତେ ଶୀଘ୍ର ସେଗୁଡ଼ିକର ସେହି କିଂଭୂତକିମାକାର ରୂପ ପରିବର୍ତ୍ତନ କରାଯାଇପାରିବ, ଦେଶର, ଜାତିର, ସମାଜର ତଥା ସାହିତ୍ୟର ସେତେ ମଙ୍ଗଳ ହେବ। ଏ ଦିଗରେ ଟିକିଏ ସୂକ୍ଷ୍ମ ଭାବରେ ଆଲୋଚନା କଲେ ଦେଖାଯାଏ ଯେ, ବର୍ଗର ପଞ୍ଚମ ବର୍ଣ୍ଣ ଅର୍ଥାତ୍ ଙ, ଞ, ଣ ନ, ମ ସହିତ ଅନ୍ୟ ବର୍ଣ୍ଣର ମିଶ୍ରଣରେ ଯେଉଁ ଯୁକ୍ତାକ୍ଷରଗୁଡ଼ିକ ସମ୍ପନ୍ନ ହୁଅନ୍ତା, ପୂର୍ବ ବର୍ଣ୍ଣରେ ଅନୁସ୍ୱାର ଦେଇ ସେଗୁଡ଼ିକୁ ବିନା ଯୁକ୍ତାକ୍ଷରରେ ଲେଖାଯାଇପାରେ। ଉଦାହରଣ ସ୍ୱରୂପ ଲାଂଚ, ଛଂଦ, ଗଂଧ, ବଂଗ, କୁଂଜ। ଏହିପରି ଅନୁସ୍ୱାରର ଆଶ୍ରୟ ଗ୍ରହଣ କଲେ କେତେକ ଯୁକ୍ତାକ୍ଷର ଆଉ ବ୍ୟବହାର କରିବାକୁ ପଡ଼ିବ ନାହିଁ। ଅନ୍ୟ ଯେ କେତେକ ଯୁକ୍ତାକ୍ଷର ଓ ଫଳା ରହିଲା, ସେଗୁଡ଼ିକ ପାଇଁ ହସନ୍ତର ବ୍ୟବସ୍ଥା କରାଯାଇପାରେ। ଯେଉଁ ଦିଓଟି ବର୍ଣ୍ଣର ସମ୍ମିଶ୍ରଣରେ ସେହି ଯୁକ୍ତାକ୍ଷରଗୁଡ଼ିକ ସମ୍ପନ୍ନ ହୁଅନ୍ତି, ସେଗୁଡ଼ିକ ପୃଥକ୍ ପୃଥକ୍ କରିଦେଇ ହସନ୍ତ ସଙ୍କେତରେ ବ୍ୟକ୍ତ କଲେ ଅକ୍ଳେଶରେ କାର୍ଯ୍ୟସିଦ୍ଧ ହୋଇପାରିବ। ଯଥା- ଉତ୍ପତ୍ତି, ତସ୍କର ଇତ୍ୟାଦି। ଏହି ବ୍ୟବସ୍ଥା ଦ୍ୱାରା ମୁଦ୍ରଣାଳୟର କାର୍ଯ୍ୟପନ୍ଥା ଅତି ସୁଗମ ହେବ ଏବଂ ଶତାଧିକ ଅକ୍ଷର ଓ ମାତ୍ରା ପରିବର୍ତ୍ତରେ ସେମାନେ ଅଳ୍ପ କେତେକ ମୌଳିକ ଅକ୍ଷର ଏବଂ ଗୁଡ଼ିଏ ଗୁଡ଼ିଏ ଅନୁସ୍ୱାର ଓ ହସନ୍ତରେ ମୁଦ୍ରଣ କାର୍ଯ୍ୟରେ ଅଗ୍ରସର ହୋଇପାରିବେ। ସ୍ୱତନ୍ତ୍ର ଭାବରେ ବର୍ତ୍ତମାନର ମୁଦ୍ରଣାଳୟମାନଙ୍କରେ ଯେଉଁ ଗୋଟା 'ହ୍ବ', 'ହ୍ମ' (ହାତଲେଖା) ପ୍ରଭୃତି କେତୋଟି ଅକ୍ଷର ଅଛି, ସେଗୁଡ଼ିକ ସଂପୂର୍ଣ୍ଣ ରୂପେ ବର୍ଜନ କରିବାକୁ ହେବ। ଗୋଟିଏ ଆକାର, ଦିଓଟି ଇକାର, ଦିଓଟି ଉକାର, ଗୋଟିଏ ଏକାର, ଗୋଟିଏ ଔ କାର, ଗୋଟିଏ ର ଫଳା, ଗୋଟିଏ ବ ଫଳା, ଗୋଟିଏ ଯ ଫଳା ଏବଂ ଅନୁସ୍ୱାର ଓ ହସନ୍ତ, କେବଳ ଏହି ବାରୋଟି ଫଳା ଓ ମାତ୍ରା ଭିନ୍ନ ନ ଫଳା, ମ ଫଳା, ର ଫଳା, ଳ ଫଳା, ଆଦି ଚାରୋଟି ଫଳା ମଧ୍ୟ ଆବଶ୍ୟକ ହେବ। ଏହି ଶେଷୋକ୍ତ ଚାରୋଟି ଫଳାଯୁକ୍ତ ଅକ୍ଷର ଶବ୍ଦ ମଧ୍ୟରେ ପ୍ରଯୁକ୍ତ ହୋଇଥିଲାବେଳେ ହସନ୍ତ ଯୋଗେ ଲେଖାଯାଇ ପାରିଲେ ହେଁ ଶବ୍ଦର ଆରମ୍ଭରେ ସେଭଳି ଅକ୍ଷର ଲିଖନ ପାଇଁ ଏହି ଫଳାଗୁଡ଼ିକର ସହାୟତା ଗ୍ରହଣ କରିବାକୁ ହେବ।

ଇକାର ଉକାରଜନିତ ବର୍ଣ୍ଣାଶୁଦ୍ଧିର କବଳରୁ ଦେଶର ଛାତ୍ରସମୂହକୁ ତଥା ସର୍ବସାଧାରଣଙ୍କୁ ରକ୍ଷା କରିବାକୁ ହେଲେ କେବଳ ହ୍ରସ୍ୱ ଇ କାର, ହ୍ରସ୍ୱ ଉ କାର ଏବଂ ହ୍ରସ୍ୱ ର କାରର ପ୍ରଚଳନ କରିବାକୁ ହେବ। ଦୀର୍ଘ ଈ କାର, ଦୀର୍ଘ ଊ କାର ଏବଂ ଦୀର୍ଘ ର କାର କେବଳ ସଂସ୍କୃତର ବର୍ଣ୍ଣାନ୍ତରୀକରଣ କାର୍ଯ୍ୟରେ ବ୍ୟବହୃତ ହୋଇପାରେ। ଅନ୍ୟଥା ଓଡ଼ିଆ ବର୍ଣ୍ଣମାଳାରେ ହ୍ରସ୍ୱ ଦୀର୍ଘ ଭେଦରେ ଦୁଇଟି ଲେଖାଏଁ ଇ, ଉ ଓ ର କାରର ବ୍ୟବସ୍ଥା କରାଯାଇଛି ବୋଲି ସେଗୁଡ଼ିକର ମାତ୍ରା ଓଡ଼ିଆ ଭାଷାରେ ବ୍ୟବହାର କଲେ ଚଳିବ ନାହିଁ। ସେଗୁଡ଼ିକର ବ୍ୟବହାର କ୍ରମଶଃ କ୍ଷୀଣ ହୋଇ ଆସିଲେ ମୁଦ୍ରଣ ପରିପାଟୀରେ ମଧ୍ୟ କେତେ ଉନ୍ନତି କରାଯାଇପାରେ। ସାଧାରଣତଃ ମାତ୍ରାଗୁଡ଼ିକ ମୁଦ୍ରଣ ସମୟରେ ଭାଙ୍ଗିଯାଇଥାଏ। ମାତ୍ରାବହୁଳ ଓଡ଼ିଆ ଭାଷାର ଯେ କୌଣସି ବହି ଖଣ୍ଡେ ଦେଖିଲେ ଆମ୍ଭମାନଙ୍କର ଏହି ଉକ୍ତିର ସତ୍ୟାସତ୍ୟ ସ୍ପଷ୍ଟ ଉପଲବ୍ଧ ହୁଏ।

ଉତ୍କଳରେ ଯେଉଁ କରଣୀ ଲିପି କଚେରୀ, ଜମିଦାର ସିରସ୍ତା ଓ ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ପ୍ରାୟଶଃ ବ୍ୟବହୃତ ହୁଏ, ତତ୍‌ପ୍ରତି ଦୃଷ୍ଟି ନିକ୍ଷେପ କଲେ ଓଡ଼ିଆ ମନର ଗତି କେଉଁ ଦିଗକୁ, ତାହା ସହଜରେ ଅନୁମାନ କରିହୁଏ। କରଣୀ ଅକ୍ଷରରେ ସାଧାରଣତଃ ଗୋଟିଏ ଇ କାର, ଗୋଟିଏ ଉ କାର, ଗୋଟିଏ ର କାର, ଗୋଟିଏ ବ କାର ଓ ଗୋଟିଏ ସ କାର ବ୍ୟବହୃତ ହୋଇଥାଏ। ମୋର ଯେପରି ମନେ ହୁଏ, ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା ସଙ୍ଗେ ସଙ୍ଗେ ମୁଦ୍ରଣ କାର୍ଯ୍ୟ ପାଇଁ ଯେତେବେଳେ ଓଡ଼ିଆ ଅକ୍ଷର ପ୍ରସ୍ତୁତ ହେଲା, ସେତେବେଳେ ତାହାକୁ କୃତ୍ରିମ ରୂପ ପ୍ରଦାନ କରାଯାଇଅଛି। ପ୍ରାଚୀନ ତାଳପତ୍ର ପୋଥିରେ ହିଁ ବିଶୁଦ୍ଧ ଓଡ଼ିଆ ଲିପିର ନମୁନା ଦେଖିବାକୁ ମିଳିଥାଏ। ପ୍ରାଚୀ ସମିତି ରାୟସାହେବ ଆର୍ତ୍ତବଲ୍ଲଭଙ୍କ ଅଧ୍ୟକ୍ଷତାରେ ଯେଉଁ ପ୍ରାଚୀନ ପୁସ୍ତକମାନ ମୁଦ୍ରିତ କରିଅଛି, ତହିଁରେ ଆଙ୍କା ସ୍ଥଳରେ ଆଗିଁ୍ୟା ହୋଇଥିବାର ଆମ୍ଭମାନଙ୍କ ମଧ୍ୟରୁ ଅଧିକାଂଶ ଦେଖିଥିବେ। ପ୍ରାଚୀନ ଓଡ଼ିଆ ଲିପି କିପରି ସରଳ ଥିଲା, ଏଇଥିରୁ ହିଁ ତା'ର ଯତ୍‌ସାମାନ୍ୟ କଳ୍ପନା ମନରେ ଅଙ୍କନ କରାଯାଇପାରେ। ତେବେ ସେ ଯାହା ହେଉ, ଓଡ଼ିଆ ଭାଷାର କରଣୀ ଲିପିକୁ ଗୋଟିଏ ନିର୍ଦ୍ଦିଷ୍ଟ ଆକାର ଦେବା ମଧ୍ୟ ବର୍ତ୍ତମାନ ଆମ୍ଭମାନଙ୍କର କର୍ତ୍ତବ୍ୟ ହେବା ଉଚିତ। ଇଂରେଜୀ ଭାଷାର Script Type ପରି ଉତ୍କଳୀୟ ମୁଦ୍ରାକରଗଣ କରଣୀ ଅକ୍ଷରର Type ପ୍ରସ୍ତୁତ କରି ମୁଦ୍ରଣ କାର୍ଯ୍ୟରେ ତାହାର

ବ୍ୟବହାର କରିପାରନ୍ତି। ସେ ଦିଗରେ ଆମ୍ଭମାନଙ୍କର ମନଧ୍ୟାନ ନ ଥିବାରୁ ବିଭିନ୍ନ ହାତର କରଣୀ ସାଧାରଣତଃ ବିଭିନ୍ନ ପ୍ରକାରର ହୋଇଥାଏ।

ଉପସଂହାରରେ ଏତିକି ମାତ୍ର ବକ୍ତବ୍ୟ ଯେ, ମୋର ଏହି ବର୍ଣ୍ଣମାଳା ଓ ଲିପିସଂସ୍କାରମୂଳକ ଆଲୋଚନା ସିଦ୍ଧାନ୍ତ ଉତ୍କଳର ଭାଷାତତ୍ତ୍ୱବିତ୍ ପଣ୍ଡିତମାନଙ୍କର ଶୁଭ ଦୃଷ୍ଟିରେ ପତିତ ହେଲେ ଏବଂ ଉତ୍କଳୀୟ ମୁଦ୍ରାକର ମଣ୍ଡଳୀ ତଦନୁଯାୟୀ ଅକ୍ଷର ନିର୍ମାଣ କରି ମୁଦ୍ରଣ କାର୍ଯ୍ୟରେ ଅଗ୍ରସର ହେଲେ, ଉତ୍କଳ ଭାଷାର ଅଶେଷ କଲ୍ୟାଣ ସାଧିତ ହେବ ଏବଂ ତାହା ସଙ୍ଗେ ସଙ୍ଗେ ଦେଶ, ଜାତି, ସମାଜ ତଥା ସାହିତ୍ୟର ପରମ ମଙ୍ଗଳ ସଂଘଟିତ ହେବ। ମୋର ଏହି ଆଲୋଚନା ସିଦ୍ଧାନ୍ତ ଅନୁସାରେ ଓଡ଼ିଆ ବର୍ଣ୍ଣମାଳାରେ ହ୍ରସ୍ୱ ଦୀର୍ଘ ସହିତ ସମୁଦାୟ ବର୍ଣ୍ଣ ସଂଖ୍ୟା ୪୬ ଗୋଟି ଏବଂ ଫଳା ଓ ମାତ୍ରାର ସମଷ୍ଟି ହସନ୍ତ ସହିତ ୧୬ଗୋଟି ହୋଇଅଛି। ଏହିରୂପେ ସର୍ବମୋଟ ୬୨ଟି ଅକ୍ଷର ଓ ମାତ୍ରାରେ ମୁଦ୍ରାକରଗଣ ସୂଚାରୁରୂପେ ମୁଦ୍ରଣ କାର୍ଯ୍ୟ ସମ୍ପାଦନ କରି ପାରିବେ। ଛାତ୍ରଗଣ ଅତି ଆୟାସରେ ବର୍ଣ୍ଣମାଳା ଆୟତ୍ତ କରିପାରିବେ ଏବଂ ଗୋଟିଏ ଇକାର, ଗୋଟିଏ ଉକାର ଓ ଗୋଟିଏ ଶକାର ହେତୁ ବର୍ଣ୍ଣାଶୁଦ୍ଧି ଜନିତ ଅସୁବିଧାରୁ ଅବ୍ୟାହତି ପାଇବେ।

ଯୁଗଯୁଗ ସଂଚିତ ସଂସ୍କାର ବିରୁଦ୍ଧରେ ହସ୍ତ ଉତ୍ତୋଳନ କରି ଗୋଟାଏ ଚିରାଚରିତ ପଦ୍ଧତିରେ ବିପର୍ଯ୍ୟୟ ଆନୟନ କରିବା ବ୍ୟକ୍ତିଗତ ଭାବରେ ଜଣକ ପକ୍ଷରେ ଏକାବେଳକେ ଅସମ୍ଭବ। ପୁରାତନ ସ୍ମୃତିର ମୋହରେ ଜଳାଞ୍ଜଳି ଦେଇ ନୂତନତାର ବରଣ କରିବା ପାଇଁ ସାଧାରଣତଃ ଜନସାଧାରଣ ଅଜ୍ଞାତବଶତଃ ଅନିଚ୍ଛା ପ୍ରକାଶ କରିଥାନ୍ତି। ତେଣୁ ଏଥିପାଇଁ ସମୂହଗତ ପ୍ରଚେଷ୍ଟା ଏକାନ୍ତ ଆବଶ୍ୟକ। 'ସାହିତ୍ୟ ସମାଜ' ଭଳି ସାରା ଉତ୍କଳର ଏକମାତ୍ର ସାହିତ୍ୟିକ ଅନୁଷ୍ଠାନର ଏହା ହିଁ ପ୍ରକୃତ କର୍ତ୍ତବ୍ୟ। ମୋର ଆଶା, 'ସାହିତ୍ୟ ସମାଜ' ମୋର ଏହି ଆଲୋଚନା ପ୍ରତି ଜନସାଧାରଣଙ୍କୁ ଆକୃଷ୍ଟ କରିବ ଏବଂ ଭାଷାତତ୍ତ୍ୱବିତ୍ ପଣ୍ଡିତମାନଙ୍କ ମତାମତ ଗ୍ରହଣ କରି ଓଡ଼ିଆ ବର୍ଣ୍ଣମାଳା ଓ ଲିପିପଦ୍ଧତିର ସଂସ୍କାର ସାଧନପୂର୍ବକ ଓଡ଼ିଆ ଭାଷା ଓ ସାହିତ୍ୟରେ ନବଯୁଗର ସୂତ୍ରପାତ କରିବ।

[ଉତ୍କଳ-ସାହିତ୍ୟ-ସମାଜର ରାମଚନ୍ଦ୍ରଭବନରେ ୧୭.୧୨.୩୨ ତାରିଖରେ ଅନୁଷ୍ଠିତ ବିଶେଷ ଅଧିବେଶନରେ ଆଲୋଚିତ।]



# ଓଡ଼ିଆ ବର୍ଣ୍ଣମାଳା ସଂସ୍କାର

## ଶେଖ୍ ମନସୁର୍

**ଅସୁବିଧା -**

(୧) ଇଂରାଜୀ ଓ ଉର୍ଦ୍ଦୁ ଭାଷା ସହିତ ଓଡ଼ିଆ ଭାଷାକୁ ତୁଳନା କଲେ ଓଡ଼ିଆ ଭାଷାରେ ଏତେ ଗୁଡ଼ିଏ ମାତ୍ରା ଓ ଯୁକ୍ତାକ୍ଷର ରହିବାର କୌଣସି ଆବଶ୍ୟକତା ଜଣାପଡ଼େ ନାହିଁ। ଇଂରାଜୀରେ ସ୍ୱରବର୍ଣ୍ଣ କେବଳ ୫ ଗୋଟି, କୌଣସି ମାତ୍ରାର ବ୍ୟବହାର ନାହିଁ, କିମ୍ବା ଯୁକ୍ତାକ୍ଷର ନାହିଁ, କେବଳ ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣର ସମାବେଶରେ ଶବ୍ଦର ଉତ୍ପତ୍ତି ହୁଏ। ଉର୍ଦ୍ଦୁ ଭାଷାରେ ସ୍ୱରବର୍ଣ୍ଣ କେବଳ ୩ ଗୋଟି ଏବଂ ସ୍ୱର ମାତ୍ରା ମଧ୍ୟ ୩ ଗୋଟି। ଏହି ୩ ଗୋଟି ମାତ୍ରା ସାହାଯ୍ୟରେ ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣର ମିଳନ ଦ୍ୱାରା ଶବ୍ଦ ଗଠନ କରାଯାଏ। ଯୁକ୍ତାକ୍ଷର କିମ୍ବା ବ୍ୟଞ୍ଜନ ମାତ୍ରାର ଅସ୍ତିତ୍ୱ ନାହିଁ। ଓଡ଼ିଆ ଭାଷାରେ ଏତେଗୁଡ଼ିଏ ସ୍ୱରବର୍ଣ୍ଣ, ଏତେଗୁଡ଼ିଏ ବ୍ୟଞ୍ଜନ ବର୍ଣ୍ଣ, ଏତେଗୁଡ଼ିଏ ସ୍ୱର ଓ ବ୍ୟଞ୍ଜନ ମାତ୍ରା, ଏତେଗୁଡ଼ିଏ ଯୁକ୍ତାକ୍ଷର ରହିବାଦ୍ୱାରା ଭାଷା ସବଳ ହେବା ପରିବର୍ତ୍ତେ ଦୁର୍ବଳ ହୋଇଅଛି। ମାତ୍ରା ବହୁଳ ଏବଂ ଯୁକ୍ତାକ୍ଷର-ସୁଶୋଭିତ ଓଡ଼ିଆ ଭାଷାକୁ ଆମ୍ଭେମାନେ କୌଣସି ମହୋତ୍ସବ ଉପଲକ୍ଷରେ ହାଉଦା ଏବଂ ବହୁମୂଲ୍ୟ ପରିଚ୍ଛଦ ଓ ଭୂଷଣରେ ଭୂଷିତ ମହରାଜାଙ୍କର ପାଟହାତୀ ସହିତ ତୁଳନା କରିପାରୁଁ ଏବଂ ଇଂରାଜୀ ଓ ଉର୍ଦ୍ଦୁ ଭାଷାକୁ ଆମ୍ଭେମାନେ ପକ୍କା ସଡ଼କରେ କଦମ ଚାଲୁଥିବା ଭୂଷଣହୀନ ଘୋଡ଼ା ସହିତ ତୁଳନା କରିପାରୁ। ଅବଶ୍ୟ ରୁଚି ଭେଦରେ ଏହି ଦୁଇଗୋଟିର ଆବଶ୍ୟକତା ଓ ମୂଲ୍ୟରେ ପ୍ରଭେଦ ଅଛି; ମାତ୍ର ମନେ ରଖିବାକୁ ହେବ, ପ୍ରଥମଟି କେବଳ ଉତ୍ସବ ଦିନ ନିମନ୍ତେ ଏବଂ ଦ୍ୱିତୀୟଟି ଆମ୍ଭମାନଙ୍କର ଦୈନନ୍ଦିନ ଜୀବନର ସାଥୀ।

(୨) ଉପରୋକ୍ତ କାରଣରୁ ଅଳ୍ପବୟସ୍କ ପିଲାମାନଙ୍କୁ ଏବଂ ନୂତନ ଶିକ୍ଷାକାରୀ ଅନ୍ୟଭାଷୀ ଲୋକମାନଙ୍କୁ ଓଡ଼ିଆ ଭାଷା ଶିକ୍ଷା କରିବାରେ ବିଶେଷ ଅସୁବିଧା ଭୋଗ କରିବାକୁ ପଡୁଅଛି। ପ୍ରାଥମିକ ଅବସ୍ଥାରେ କେବଳ ବର୍ଣ୍ଣମାଳା ଶିକ୍ଷା କରିବାରେ ଅନେକ ସମୟ ନଷ୍ଟ ହେଉଅଛି।

(୩) ଅନେକଗୁଡ଼ିଏ ମାତ୍ରା ଏବଂ ଅନେକଗୁଡ଼ିଏ ଯୁକ୍ତାକ୍ଷର ଥିବାରୁ ଏହି ଭାଷାରେ ଲେଖିବା ବିଶେଷ ଅସୁବିଧାଜନକ। ଛାପାଖାନାରେ ଛାପା ବିଷୟରେ କେତେଦୂର ଅସୁବିଧା ଭୋଗ କରିବାକୁ ପଡ଼େ, ତାହା ଭୁକ୍ତଭୋଗୀମାନେ ଉତ୍ତମ ରୂପେ ଅବଗତ ଅଛନ୍ତି।

**ପ୍ରସ୍ତାବ-**

ଉପରୋକ୍ତ ଅସୁବିଧା ନିବାରଣ ନିମନ୍ତେ ଆମ୍ଭେ ନିମ୍ନଲିଖିତ ମତେ ପ୍ରସ୍ତାବ କରୁଅଛୁ -

(୧) ସ୍ୱର ବର୍ଣ୍ଣ- ଅ, ଇ, ଉ, ଏ, ଓ ଏହି ପାଞ୍ଚଗୋଟି ସ୍ୱର ବର୍ଣ୍ଣ ରହିଲେ ଚଳିବ।

(୨) ବ୍ୟଞ୍ଜନ ବର୍ଣ୍ଣ-

କ ଖ ଗ ଘ
ଚ ଛ ଜ ଝ
ଟ ଠ ଡ ଢ
ତ ଥ ଦ ଧ
ପ ଫ ବ ଭ
ଣ ନ ମ ଯ
ର ଳ ଲ ୟ
ସ ହ

ଏହି ୩୦ ଗୋଟି ବ୍ୟଞ୍ଜନ ବର୍ଣ୍ଣ ରହିଲେ ଚଳିବ।

(୩) ମାତ୍ରା-କେବଳ ୫ ଗୋଟି ସ୍ୱର ମାତ୍ରା ରହିଲେ ଚଳିବ। ଯଥା- ଅ = ା, ଇ = ି, ଉ = ୪, ଏ = େ, ଓ = ୋ। ଏମାନଙ୍କ ସଙ୍ଗରେ ଆମ୍ଭମାନଙ୍କର ଅମୋଘ ଅସ୍ତ୍ର ହଳନ୍ତକୁ ରଖିବାକୁ ହେବ।

**ସୁବିଧା-**

ଉପରୋକ୍ତ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହେଲେ ଆମ୍ଭେମାନେ ନିମ୍ନଲିଖିତ ସୁବିଧାମାନ ପାଇ ପାରିବୁ-

(୧) ଅବଶିଷ୍ଟ ସ୍ୱରବର୍ଣ୍ଣ ଯଥା- ଆ, ଈ, ଊ, ଋ, ଦୀର୍ଘଋ, ଌ, ଦୀର୍ଘ ଌ, ଐ, ଔ ମାନଙ୍କର ଆବଶ୍ୟକତା ରହିବ ନାହିଁ।

ସ୍ୱର ବର୍ଣ୍ଣ ମୌଳିକ ହେବା ଆବଶ୍ୟକ। ଅନ୍ୟ ସ୍ୱର ବର୍ଣ୍ଣ କିମ୍ବା ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନ ବର୍ଣ୍ଣର ମିଳନରେ ଯେଉଁ ସ୍ୱର ବର୍ଣ୍ଣର ଉତ୍ପତ୍ତି ହୁଏ, ସେପରି ସ୍ୱର ବର୍ଣ୍ଣ ରହିବାର କୌଣସି ଆବଶ୍ୟକତା ନାହିଁ। ଯେପରି କ + ା = କା ହୁଏ, ସେହିପରି

ଅ + । = ଆ ହେବ; ସୁତରାଂ ଆ ଗୋଟିଏ ସ୍ୱତନ୍ତ୍ର ସ୍ୱରବର୍ଣ୍ଣ ରୂପେ ରହିବାର ଆବଶ୍ୟକତା ନାହିଁ। ଈ ପରିବର୍ତ୍ତେ ଇ, ଊ ପରିବର୍ତ୍ତେ ଉ, ଋ ଓ ଦୀର୍ଘ ଋ ପରିବର୍ତ୍ତରେ ରୁ, ଌ ଓ ଦୀର୍ଘଌ ପରିବର୍ତ୍ତେ ଲୁ, ଐ ପରିବର୍ତ୍ତେ ଅଇ, ଔ ପରିବର୍ତ୍ତେ ଅଉ ବ୍ୟବହାର କଲେ  ଚଳିବ।

(୨) ଙ, ଞ, ଶ, ଷ ଏହି ଚାରିଗୋଟି ବ୍ୟଞ୍ଜନ ବର୍ଣ୍ଣର ଆବଶ୍ୟକତା ରହିବ ନାହିଁ।

(୩) ଦୀର୍ଘ ଈକାର (ୀ) ଦୀର୍ଘ ଊକାର ( ୂ ) ୈ, ୌ, ' ୃ ', (ରୁ ଫଳା) 'ଌ' (ଲୁ ଫଳା) ଏହି ସ୍ୱରମାତ୍ରାମାନଙ୍କର ଆବଶ୍ୟକତା ରହିବ ନାହିଁ। ଦୀର୍ଘ ଈକାର ପରିବର୍ତ୍ତେ ହ୍ରସ୍ୱ ଇକାର, ଦୀର୍ଘ ଊକାର ପରିବର୍ତ୍ତେ ହ୍ରସ୍ୱ ଉକାର ବ୍ୟବହାର କଲେ ଚଳିବ। ଯଥା- 'ପୁରୀ' ପରିବର୍ତ୍ତେ ପୁରି, 'ଧୂଳୀ' ପରିବର୍ତ୍ତେ 'ଧୁଳି' ଇତ୍ୟାଦି। 'ଶୈବାଳ' ପରିବର୍ତ୍ତେ 'ସଇବାଳ', 'କୌଶଳ' ପରିବର୍ତ୍ତରେ 'କଉସଳ', 'ସରୀସୃପ' ପରିବର୍ତ୍ତରେ 'ସରିସ୍‌ରୁପ' ଲେଖିଲେ ଚଳିବ।

(୪) ବ୍ୟଞ୍ଜନ ମାତ୍ରାର କୌଣସି ଆବଶ୍ୟକତା ହେବ ନାହିଁ। କେବଳ ୍ (ହଳନ୍ତ) ସାହାଯ୍ୟରେ ବ୍ୟଞ୍ଜନ ବର୍ଣ୍ଣ ଯୋଗ କଲେ ଚଳିବ। ଯଥା- 'କର୍ଷଣ' ପରିବର୍ତ୍ତରେ 'କର୍‌ସଣ', 'ରୁକ୍ମିଣୀ' ପରିବର୍ତ୍ତରେ 'ରୁକ୍‌ମିଣି' ଇତ୍ୟାଦି।

(୫) ଂ, ଃ, ଁ ର ଆବଶ୍ୟକତା ହେବ ନାହିଁ। ଂ ପରିବର୍ତ୍ତରେ ନ୍, ଃ ପରିବର୍ତ୍ତରେ ହ୍, ଁ ପରିବର୍ତ୍ତରେ ମ୍ ବ୍ୟବହାର କଲେ ଚଳିବ। ଯଥା- 'ସଂସାର ପରିବର୍ତ୍ତରେ 'ସନ୍‌ସାର', 'ଦୁଃଖ ପରିବର୍ତ୍ତରେ 'ଦୁହ୍‌ଖ' 'ଅଇଁଠା' ପରିବର୍ତ୍ତରେ ଅଇନ୍‌ଠା, 'ହୁଁ' ପରିବର୍ତ୍ତରେ 'ହୁମ୍‌କାର' ଇତ୍ୟାଦି।

(୬) କୌଣସି ଯୁକ୍ତାକ୍ଷରର ଆବଶ୍ୟକତା ହେବ ନାହିଁ; କେବଳ ' ୍ ' (ହଳନ୍ତ) ସାହାଯ୍ୟରେ ବ୍ୟଞ୍ଜନ ବର୍ଣ୍ଣ ଯୋଗ ଦ୍ୱାରା ଏହି କାର୍ଯ୍ୟ ସାଧିତ ହେବ। ଯଥା- 'ଉତ୍କର୍ଷ' ପରିବର୍ତ୍ତରେ 'ଉତ୍‌କର୍‌ସ' 'ଉତ୍ସାହ' ପରିବର୍ତ୍ତରେ 'ଉତ୍‌ସାହ' 'ନିଷ୍କଳଙ୍କ' ପରିବର୍ତ୍ତରେ 'ନିସ୍‌କଳନ୍‌କ' ଇତ୍ୟାଦି।

(୭) ଲେଖିବା ବେଳେ କିମ୍ବା ଛାପାରେ ଭୁଲ୍ କ୍ରମେ ଛାଡ଼ିଗଲେ ମଧ୍ୟ ଶବ୍ଦର ଅର୍ଥ ବୁଝାଯିବ। ଯଥା- 'ଉତ୍‌କରସ୍' ପରିବର୍ତ୍ତେ ଉତକରସ ଲେଖିଲେ ମଧ୍ୟ ଅର୍ଥ ବୁଝାଯିବ। ମାତ୍ର ବର୍ତ୍ତମାନ ଲିଖନ ପ୍ରଣାଳୀ ଅନୁଯାୟୀ ମାତ୍ରା ଛାଡ଼ିଗଲେ, ଅର୍ଥ ବୁଝିବା କଠିନ ହେବ। ଯଥା- 'ଉତ୍କର୍ଷ' ପରିବର୍ତ୍ତେ 'ଉକଷ' ଲେଖିଲେ କିଛି ବୁଝାଯିବ ନାହିଁ।

(୮) ପ୍ରସ୍ତାବିତ ପ୍ରଣାଳୀ ଅନୁଯାୟୀ ଶିକ୍ଷାର୍ଥୀମାନଙ୍କର ବର୍ଣ୍ଣମାଳା ଶିକ୍ଷା ବିଷୟରେ ବିଶେଷ ସୁବିଧା ହେବ ଏବଂ ଅତି ଅଳ୍ପ ସମୟ ମଧ୍ୟରେ ସେମାନେ ବର୍ଣ୍ଣମାଳା ଶିକ୍ଷା କରିପାରିବେ। ବର୍ଣ୍ଣମାଳାର ସଂଖ୍ୟା କମିଯିବା ହେତୁ ଏବଂ ଅନେକଗୁଡ଼ିଏ ମାତ୍ରା ଓ ଯୁକ୍ତାକ୍ଷର ଉଠିଯିବା ହେତୁ ଛାପାରେ ମଧ୍ୟ ବିଶେଷ ସୁବିଧା ହେବ।

**ବାଧା ଓ ସମାଧା -**

ପ୍ରସ୍ତାବିତ ପ୍ରଣାଳୀ ଅନୁସରଣ କଲେ ଏଥିରେ ଯେ ବାଧାବିଘ୍ନ କିଛି ଘଟିବ ନାହିଁ, ତାହା ନୁହେଁ। ବାସ୍ତବରେ ଏ ସଂସାରରେ କୌଣସି ପଥ ସମ୍ପୂର୍ଣ୍ଣ କଣ୍ଟକଶୂନ୍ୟ ନୁହେଁ। ବିବେଚନା କରି ସାବଧାନ ହୋଇ ପଥରେ ଅଗ୍ରସର ହେଲେ କଣ୍ଟକ ଦ୍ୱାରା କ୍ଷତି ହେବାର ଆଶଙ୍କା ରହିବ ନାହିଁ।

(କ) ଈ ପରିବର୍ତ୍ତରେ ଇ, ଊ ପରିବର୍ତ୍ତରେ ଉ, ଈକାର ପରିବର୍ତ୍ତରେ ଇକାର, ଊକାର ପରିବର୍ତ୍ତରେ ଉକାର ବ୍ୟବହାର କଲେ ଶବ୍ଦର ଅର୍ଥ ବୁଝିବାରେ ଅସୁବିଧା ହେବ। ଯଥା- 'ଈଶାନ' ପରିବର୍ତ୍ତରେ 'ଇଶାନ' 'ଦୀନ' ପରିବର୍ତ୍ତରେ 'ଦିନ' 'କୂଳ' ପରିବର୍ତ୍ତରେ 'କୁଳ' ଲେଖିଲେ ଶବ୍ଦମାନଙ୍କର ଅର୍ଥ ବଦଳିଯିବ। ଏହାର ପ୍ରତିକାର ନିମ୍ନଲିଖିତ ମତେ କରାଯାଇପାରେ -

(୧) ଅବସ୍ଥା ଭେଦରେ ଏକ ଶବ୍ଦର ଭିନ୍ନ ଭିନ୍ନ ଅର୍ଥ ହୋଇଯାଏ। ଯଥା- 'ଇଳା' ଶବ୍ଦର ଅର୍ଥ ସ୍ତୁତି, ସରସ୍ୱତୀ, ପୃଥିବୀ, ଧେନୁ। ସେହିପରି ଦୀନ ପରିବର୍ତ୍ତରେ ଦିନ, କୂଳ ପରିବର୍ତ୍ତରେ କୁଳ ଲେଖିଲେ ବାକ୍ୟରେ ବ୍ୟବହୃତ ଅନ୍ୟ ଶବ୍ଦମାନଙ୍କର ସଂପର୍କ ବିବେଚନାରେ ଏହି ଶବ୍ଦମାନଙ୍କର ଅର୍ଥ କରାଯିବ; ଅର୍ଥ ବୁଝିବାରେ ବିଶେଷ ଅସୁବିଧା ଘଟିବ ନାହିଁ।

(୨) ଓଡ଼ିଆ ଅଭିଧାନରୁ ପ୍ରକାଶ, ଈ ଯୁକ୍ତ କେବଳ ୫୦ ଗୋଟି ଏବଂ ଊଯୁକ୍ତ କେବଳ ୪୦ ଗୋଟି ଶବ୍ଦ ଅଛି। ଈ ପରିବର୍ତ୍ତରେ ଇ, ଊ ପରିବର୍ତ୍ତରେ ଉ, ଈକାର ପରିବର୍ତ୍ତରେ ଇ କାର ଏବଂ ଊ କାର ପରିବର୍ତ୍ତରେ ଉ କାର ବ୍ୟବହାର କଲେ ଅର୍ଥ ବଦଳିଯିବ, ଏପରି ଶବ୍ଦର ସଂଖ୍ୟା ଅତି କମ୍।

(୩) ଇ ଓ ଈ, ଉ ଓ ଊ, ଇ କାର ଓ ଈ କାର, ଉ କାର ଓ ଊ କାରର ପ୍ରଭେଦ କେବଳ ସାହିତ୍ୟିକ ଭାଷାରେ ଦେଖାଯାଏ। ଲେଖାପଢ଼ା ଜାଣିଥିବା ପ୍ରାୟ ଶତକଡ଼ା ୯୦ ଜଣଙ୍କ ଲେଖାରେ ଏହି ପ୍ରଭେଦ ଦେଖାଯାଏ ନାହିଁ। ଯେଉଁ ନବ୍ୟସିଦ୍ଧାମାନେ

ଦଲିଲ ଲେଖନ୍ତି, ଯେଉଁ ମୋହରିରମାନେ ଓକିଲମାନଙ୍କ ସିରସ୍ତାରେ ଅରଜି ଲେଖନ୍ତି, ଯେଉଁ ଗୁମାସ୍ତାମାନେ ମହାଜନୀ ସିରସ୍ତାରେ ହିସାବପତ୍ର ଲେଖନ୍ତି, ଯେଉଁ ତହସିଲଦାରମାନେ ଜମିଦାରୀ ସିରସ୍ତାରେ ଅସୁଲି କାଗଜମାନ ଲେଖନ୍ତି, ଯେଉଁ ମୋହରିର ମାନେ ବନ୍ଦୋବସ୍ତ ମହକୁମାରେ ସ୍ୱତ୍ୱଲିପି ଲେଖନ୍ତି, ଯେଉଁ ଲୋକମାନେ ନିଜର ପରିବାର ଓ ବନ୍ଧୁବାନ୍ଧବ ନିକଟଙ୍କୁ ପତ୍ର ଲେଖନ୍ତି, ସେମାନଙ୍କ ଲେଖାରେ ଏହି ପ୍ରଭେଦ ଲକ୍ଷିତ ହୁଏ କି ? ତଥାପି ଆବହମାନ କାଳରୁ ଶବ୍ଦର ଅର୍ଥ ବୁଝିବାରେ କୌଣସି ଅସୁବିଧା ଘଟି ନାହିଁ। ଏହି ଅସୁବିଧା କେବଳ ସାହିତ୍ୟିକମାନଙ୍କ ଲେଖାରେ ଉପଲବ୍ଧି କରାହୁଏ।

(୪) କେହି କହିପାରନ୍ତି, ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଲୋକମାନେ ଭୁଲରେ ଯାହା କରୁଅଛନ୍ତି, ତାହାକୁ ଶିକ୍ଷିତ ଲୋକମାନେ କିପରି ଅନୁକରଣ କରିବେ ? ଆମ୍ଭେ ପଚାରୁ, ଶତକଡ଼ା ୯୦ ଜଣ ଯାହା କରୁଅଛନ୍ତି, ତାହାକୁ ଶତକଡ଼ା ୧୦ ଜଣ ଅନୁକରଣ କରିବେ, କି ୧୦ ଜଣ ଯାହା କରୁଅଛନ୍ତି, ତାହାକୁ ୯୦ ଜଣ ଅନୁକରଣ କରିବେ ? ୯୦ ଜଣ ୧୦ ଜଣଙ୍କୁ ଅନୁକରଣ କରିବା ସହଜ ନୁହେଁ; ମାତ୍ର ୧୦ଜଣ ୯୦ ଜଣଙ୍କୁ ଅନୁକରଣ କରିବା ସହଜ। ଓଡ଼ିଆ ଅଭିଧାନରୁ ପ୍ରକାଶ, ସାହିତ୍ୟିକମାନେ ମଧ୍ୟ ଅସାହିତ୍ୟିକମାନଙ୍କୁ ଅନୁକରଣ କରି କେତେକ ସ୍ଥଳରେ ଇ ଓ ଈ ଉ ଓ ଊ, ଇ କାର ଓ ଈ କାର, ଉ କାର ଓ ଊ କାର ମଧ୍ୟରେ ପ୍ରଭେଦ ଉଠାଇ ଦେଇଅଛନ୍ତି। ନିମ୍ନଲିଖିତ ଶବ୍ଦମାନ ଏକ ଅର୍ଥରେ ବ୍ୟବହୃତ ହେବାର ଦେଖାଯାଏ। ଯଥା- ଇଳା, ଈଳା, ଇଷ, ଈଷ ଉଖଳ, ଊଖଳ; ଅଣାଅଶୀ, ଉଣଆଶ, ଉଣଷାଠି, ଊଣଷାଠି, ଉଣା, ଊଣା; ଉଣାଇଶ, ଊଣାଇଶ; ଉଷ, ଊଷ; ଉର୍ଣ୍ଣା, ଊର୍ଣ୍ଣା; ଉର୍ବରା, ଊର୍ବରା; କିଳା, କୀଳା; ଗୁଣି, ଗୁଣୀ; ଚଞ୍ଚୁ, ଚଞ୍ଚୂ; ଚୁନ, ଚୂନ; ଚୁନା, ଚୂନା; ଚୁନି, ଚୂନି; ଚୁର, ଚୂର; ଧୋତି, ଧୋତୀ, ଜମି, ଜମୀ, ତନ୍ତି, ତନ୍ତୀ; ତପି, ତପୀ, ଦୂତି, ଦୂତୀ; ଧୁପ, ଧୂପ, ଧୁଳି, ଧୂଳୀ; ପୁରି, ପୁରୀ; ଭୁତ, ଭୂତ; ବହୁ, ବହୂ ଇତ୍ୟାଦି। ପ୍ରବନ୍ଧର କଳେବର ବୃଦ୍ଧି ଭୟରେ ଆଉ ଉଦାହରଣ ଦେବାରୁ କ୍ଷାନ୍ତ ହେଲୁ, ଓଡ଼ିଆ ଅଭିଧାନ ଦେଖିଲେ ଜଣାପଡ଼ିବ।

(୫) କେହି କହି ପାରନ୍ତି, ଈ କାର ସ୍ତ୍ରୀଲିଙ୍ଗର ଚିହ୍ନ ଅଟେ; ସୁତରାଂ ଈ କାର ଉଠିଗଲେ ଲିଙ୍ଗ ପ୍ରକାଶରେ ବ୍ୟାଘାତ ଘଟିବ। କିନ୍ତୁ ପ୍ରକୃତ ପକ୍ଷରେ ଈ କାର ସବୁ ସମୟରେ ସ୍ତ୍ରୀଲିଙ୍ଗର ଚିହ୍ନ ନୁହେଁ, ପୁଂଲିଙ୍ଗ ଶବ୍ଦରେ ମଧ୍ୟ ଈକାରର ପ୍ରୟୋଗ

ଦେଖାଯାଏ। ଯଥା ତପସ୍ୱୀ, ତପୀ, ତନ୍ତ୍ରୀ, ତପଚାରୀ, ଦଣ୍ଡୀ, ସନ୍ନ୍ୟାସୀ, ଦୂରଦର୍ଶୀ, ଦୀର୍ଘଜୀବୀ, ହସ୍ତୀ, ଯତୀ ଇତ୍ୟାଦି। ଅପର ପକ୍ଷରେ ଇ କାର ମଧ୍ୟ ସ୍ତ୍ରୀ ଲିଙ୍ଗରେ ବ୍ୟବହୃତ ହୁଏ। ଯଥା- ଶଚି, ଦୃତି ଇତ୍ୟାଦି। ସୁତରାଂ ଈ କାର ପରିବର୍ତ୍ତରେ ଇ କାର ବ୍ୟବହାର କଲେ ମଧ୍ୟ ଶବ୍ଦର ଭାବ ଅନୁଯାୟୀ ଲିଙ୍ଗଭେଦ ଜଣାପଡ଼ିବ।

(ଖ) ର ପରିବର୍ତ୍ତେ ଋ ବ୍ୟବହାର କଲେ ଶବ୍ଦର ଅର୍ଥ ବଦଳିଯିବ ବୋଲି ଆପତ୍ତି ହୋଇପାରେ। ଯଥା- ଋକ୍ଷ (ଭାଲୁ) ପରିବର୍ତ୍ତରେ ରୁକ୍ଷ (କର୍କଶ), ଋତ୍ (ବ୍ରହ୍ମ) ପରିବର୍ତ୍ତରେ ରୁତ (ଶବ୍ଦ) ଇତ୍ୟାଦି।

ମାତ୍ର ଏପରି ଶବ୍ଦର ସଂଖ୍ୟା ଅତି ଅଳ୍ପ ଏବଂ ବାକ୍ୟରେ ବ୍ୟବହୃତ ଅନ୍ୟ ଶବ୍ଦମାନଙ୍କ ସମ୍ପର୍କ ବିବେଚନାରେ ତାହାର ଅର୍ଥ କରାଯିବ; କୌଣସି ଅସୁବିଧା ହେବ ନାହିଁ। ଈ ଓ ଊ ସମ୍ବନ୍ଧରେ ପୂର୍ବେ ଯାହା କହିଅଛୁଁ, ସେହି ଯୁକ୍ତିମାନ ଏଠାରେ ମଧ୍ୟ ପ୍ରଯୋଜ୍ୟ। ପ୍ରକାଶ ଥାଉ କି ଓଡ଼ିଆ ଅଭିଧାନରେ ଋ ଯୁକ୍ତ ପ୍ରାୟ ୪୦ ଗୋଟି ଶବ୍ଦ ଅଛି। ୠ ଏବଂ ଌ ଯୁକ୍ତ ଶବ୍ଦ ଆଦୌ ନାହିଁ।

(ଗ) ଶ ଓ ଷ ପରିବର୍ତ୍ତରେ ସ ବ୍ୟବହାର କଲେ ଶବ୍ଦର ଅର୍ଥ ବଦଳିଯିବ। ଯଥା- ଆଶ ପରିବର୍ତ୍ତରେ ଆସ, ଉଷା ପରିବର୍ତ୍ତରେ ଉସା, ଭାଷିବା ପରିବର୍ତ୍ତରେ ଭାସିବା ଇତ୍ୟାଦି।

ଈ ଓ ଊ ସମ୍ବନ୍ଧରେ ପୂର୍ବେ ଯେଉଁ ଯୁକ୍ତିମାନ ଦିଆଯାଇଅଛି, ତାହା ଏ ସମ୍ବନ୍ଧରେ ମଧ୍ୟ ପ୍ରଯୋଜ୍ୟ। ଶ ଓ ଷ ପରିବର୍ତ୍ତରେ ସ ବ୍ୟବହାର କଲେ ଶବ୍ଦର ଅର୍ଥ ବଦଳିଯିବ, ଏପରି ଶବ୍ଦର ସଂଖ୍ୟା ଅତି ଅଳ୍ପ। ଅପର ପକ୍ଷରେ ଦେଖାଯାଉଅଛି, ଅନେକ ସ୍ଥଳରେ ଶ ଓ ଷ ପରିବର୍ତ୍ତରେ ସ ବ୍ୟବହୃତ ହେଉଅଛି। ନିମ୍ନଲିଖିତ ଶବ୍ଦମାନ ଏକ ଅର୍ଥରେ ବ୍ୟବହୃତ ହୁଅନ୍ତି। ଯଥା- ଈଶ୍, ଈସ୍, ଈଷ, ଈସ; କଷା, କସା; କଷିବା, କସିବା (ପରୀକ୍ଷା କରିବା), କଷାକଷି, କଶାକଶି; କସାକସି; କୁଶୀଦ, କୁଷୀଦ, କୁସୀଦ; କେଶର, କେସର; ଘଷିବା, ଘସିବା; ଘୁଷୁରି, ଘୁସୁରି; ବିଶେଷ, ବିସେସ; ମଷି, ମଶି, ମସି; ମୂଷଳ, ମୁଷଳ ମୁସଳ; ଚଷା, ଚସା; ପେଶଳ, ପେଷଳ, ପେସଳ, ଇତ୍ୟାଦି- ଏହିପରି ଆହୁରି ଅନେକ ଶବ୍ଦ ଅଛି। ପ୍ରବନ୍ଧର କଳେବର ବୃଦ୍ଧି ଭୟରେ ଲେଖିବାରୁ କ୍ଷାନ୍ତ ହେଲୁ। ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦ ଶର୍ମାଙ୍କ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ଦ୍ରଷ୍ଟବ୍ୟ। ସୁତରାଂ ଶ ଓ ଷ ପରିବର୍ତ୍ତରେ ସ ବ୍ୟବହାର କଲେ ଶବ୍ଦର ଅର୍ଥ ବୁଝିବାରେ ବିଶେଷ ଅସୁବିଧା ଘଟିବ ନାହିଁ।

(ଘ) ୱ (ବଫଳା) ଉଠାଇ ଦେଇ ଅନ୍ୟ ବର୍ଣ୍ଣ ଦ୍ୱାରା ପ୍ରକାଶ କଲେ ଅସୁବିଧା ଘଟିପାରେ। ମାତ୍ର ଉଚ୍ଚାରଣ ଭେଦରେ କେତେବେଳେ ଓ ଦ୍ୱାରା, କେତେବେଳେ ବ ଦ୍ୱାରା ଏହାକୁ ପ୍ରକାଶ କରବାକୁ ହେବ। ଯଥା- ବିଶ୍ୱନାଥ = ବିସ୍‌ଓନାଥ, ଅଶ୍ୱ = ଅସ୍‌ଓ, ଆମ୍ବ = ଆମ୍‌ବ ଇତ୍ୟାଦି।

(ଙ) ସେହିପରି ୟ (ଯ ଫଳା) ଉଠାଇ ଦେଇ ଅନ୍ୟ ବର୍ଣ୍ଣଦ୍ୱାରା ପ୍ରକାଶ କରିବାକୁ ଗଲେ ଅସୁବିଧା ହୋଇପାରେ। ମାତ୍ର ଉଚ୍ଚାରଣ ଭେଦରେ କେତେବେଳେ ଯ ଦ୍ୱାରା, କେତେବେଳେ ୟ ଦ୍ୱାରା ଏହାକୁ ପ୍ରକାଶ କରିବାକୁ ହେବ। ଯଥା- କାର୍ଯ୍ୟ=କାର୍‌ଯ; ସୂର୍ଯ୍ୟ-ସୂର୍‌ଯ; ଅନ୍ୟ= ଅନ୍‌ୟ; ସୈନ୍ୟ=ସଇନ୍‌ୟ ଇତ୍ୟାଦି।

(ଚ) ବର୍ତ୍ତମାନ ବର୍ଣ୍ଣମାଳା ମଧ୍ୟରେ ୨ ଗୋଟି ବ ରଖାଯାଇଅଛି। ମାତ୍ର ସେମାନଙ୍କର ଆକାରଗତ କୌଣସି ପାର୍ଥକ୍ୟ ନ ଥିବାରୁ ଦୁଇଗୋଟି ବ ବର୍ଣ୍ଣମାଳା ମଧ୍ୟରେ ସ୍ଥାନ ପାଇବାର ଆବଶ୍ୟକତା ଜଣାପଡୁନାହିଁ। ଉଚ୍ଚାରଣରେ ଯାହା ପ୍ରଭେଦ ଅଛି, ତାହା କେବଳ ସାହିତ୍ୟିକମାନଙ୍କ ମଧ୍ୟରେ ଓ ତାହା ମଧ୍ୟ ଅତି ବିରଳ। ଆବଶ୍ୟକ ହେଲେ ତାହା ସେହିପରି ରହିବ।

(ଛ) କେହି କହିପାରନ୍ତି ଜ ଥିବା ସ୍ଥଳେ ଯ କୁ ରଖିବାର ଆବଶ୍ୟକତା କ'ଣ ? ମାତ୍ର ଏ ଦୁଇଗୋଟି ବର୍ଣ୍ଣ ଏକ ନୁହେଁ; ଉଚ୍ଚାରଣରେ ପ୍ରଭେଦ ଅଛି। ଯ କୁ ଜ୍ୟ ଭାବରେ ଉଚ୍ଚାରଣ କରାଯାଏ। ଅନେକ ସ୍ଥଳରେ ଯ କୁ ସ୍ୱତନ୍ତ୍ର ବର୍ଣ୍ଣ ରୂପେ ବ୍ୟବହାର କରିବାର ଆବଶ୍ୟକତା ପଡ଼ିବ।

(ଜ) ସେହିପରି ନ ଓ ଣ ଏବଂ ଳ ଓ ଲ ମଧ୍ୟରେ ଉଚ୍ଚାରଣର ପ୍ରଭେଦ ଥିବାରୁ ଏବଂ ସେମାନେ ଶବ୍ଦରେ ସ୍ୱତନ୍ତ୍ର ବର୍ଣ୍ଣ ରୂପେ ବ୍ୟବହୃତ ହେଉଥିବାରୁ ସେମାନଙ୍କୁ ସ୍ୱତନ୍ତ୍ର ବର୍ଣ୍ଣରୂପେ ରଖାଯାଇଅଛି। ଯଥା- ଫୁଲ, ଫଳ, ଜାଲ, ଜଳ, ଲବଣ, ଶ୍ରାବଣ ଇତ୍ୟାଦି।

(ଝ) କ୍ଷ ଗୋଟିଏ ମୌଳିକ ବର୍ଣ୍ଣ ନୁହେଁ। କ ଓ ଷ ଯୋଗରେ ଏହି ଯୁକ୍ତାକ୍ଷରର ଉତ୍‌ପତ୍ତି ହୋଇଥିବାର କଥିତ ହୁଏ। ମାତ୍ର ବର୍ତ୍ତମାନ ପ୍ରଚଳିତ ଭାଷାରେ ଉଚ୍ଚାରଣ ସୂତ୍ରରେ ଏହା ଖ୍ ଓ ୟ ଏହି ଦୁଇଗୋଟି ବର୍ଣ୍ଣର ସମାବେଶରେ ଉତ୍‌ପନ୍ନ ହୋଇଥିବାର ଜଣାଯାଏ। ଯଥା- ଦକ୍ଷତା = ଦଖ୍ୟତା, ଶିକ୍ଷା = ଶିଖ୍ୟା, ପରୀକ୍ଷା = ପରିଖ୍ୟା ଇତ୍ୟାଦି। ଯେତେବେଳେ ଶବ୍ଦର ଆରମ୍ଭରେ ଥିବ, ତାକୁ ପ୍ରକାଶ କରିବାରେ ଟିକିଏ ଅସୁବିଧା ହେବ। ମାତ୍ର ତାହା ନିମ୍ନଲିଖିତ ମତେ କରିବାକୁ ହେବ। ଯଥା- କ୍ଷମତା= ଖ୍ୟମତା, କ୍ଷାର = ଖ୍ୟାର; କ୍ଷୀର = ଖ୍ୟୀର, କ୍ଷୁଦ୍ର = ଖ୍ୟୁଦ୍‌ର ଇତ୍ୟାଦି।

(ଝ) କେହି କେହିପାରନ୍ତି, ପ୍ରସ୍ତାବିତ ପ୍ରଣାଳୀ ଅବଲମ୍ବନ କଲେ ଓଡ଼ିଆ ଭାଷା ବଦଳିଯିବ, ଓଡ଼ିଆ ବ୍ୟାକରଣ ନୂଆକରି ଲେଖିବାକୁ ହେବ, ଓଡ଼ିଆ ଅଭିଧାନର ଆକାର ପ୍ରକାର ବଦଳାଇବାକୁ ହେବ। ତାହା ହୋଇପାରେ। ବର୍ଣ୍ଣମାଳାର ସଂସ୍କାର ହେଲେ ଭାଷା କେତେକ ପରିମାଣରେ ନିଶ୍ଚୟ ବଦଳିବ। ଭାଷା ବଦଳିଲେ, ବ୍ୟାକରଣ ମଧ୍ୟ ବଦଳିବ। ଭାଷାକୁ ନେଇ ବ୍ୟାକରଣ; ବ୍ୟାକରଣକୁ ନେଇ ଭାଷା ନୁହେଁ। ଭାଷାର ପରିବର୍ତ୍ତନ ହେଲେ ଅଭିଧାନ ତ ବଦଳିବାର କଥା ! ନାନା ଭାବରେ ପ୍ରଭାବିତ ହୋଇ ବର୍ତ୍ତମାନ ଓଡ଼ିଆ ଭାଷାର ପରିବର୍ତ୍ତନର ଯୁଗ ଉପସ୍ଥିତ ହୋଇଅଛି। ଏହି ସମୟରେ ଓଡ଼ିଆ ବର୍ଣ୍ଣମାଳାର ସଂସ୍କାର ହୋଇପାରିଲେ ସୁନାରେ ସୁହାଗା ପରି ହେବ।

(ଟ) କେହି କହିପାରନ୍ତି, ପ୍ରସ୍ତାବିତ ପ୍ରଣାଳୀ ଅବଲମ୍ବନ କଲେ କବିତା ଓ ସଙ୍ଗୀତ ଲେଖିବାରେ ଅସୁବିଧା ହେବ। ଯେଉଁମାନେ ଅକ୍ଷର ଗଣି ଗଣି ଓଡ଼ିଆ ଭାଷାରେ କବିତା ଓ ସଙ୍ଗୀତ ଲେଖନ୍ତି, ସେମାନଙ୍କ ପକ୍ଷରେ ଅସୁବିଧା ହୋଇପାରେ; ମାତ୍ର ଉର୍ଦ୍ଦୁ ଓ ଇଂରାଜୀ ଭାଷାରେ ଅକ୍ଷର ଗଣି କବିତା ଲେଖା ହୁଏ ନାହିଁ। ଶବ୍ଦର ଯେତେକ ଅଂଶ ଏକ ସମୟରେ ଉଚ୍ଚାରଣ କରାଯାଇପାରେ, ତାହାକୁ ଗୋଟିଏ ବର୍ଣ୍ଣ ମନେକରି କବିତା ଲେଖା ହୁଏ। ହାରମୋନିୟମ ଇତ୍ୟାଦି ଯନ୍ତ୍ର ସାହାଯ୍ୟରେ ଗାଇବା ବେଳେ ମଧ୍ୟ ଉପରୋକ୍ତ ପନ୍ଥା ଅବଲମ୍ବନ କରିବାକୁ ହୁଏ। ପ୍ରସ୍ତାବିତ ପ୍ରଣାଳୀ ଅନୁଯାୟୀ କବିତା ଲେଖିବାକୁ ହେଲେ ଯେଉଁ ବର୍ଣ୍ଣମାନଙ୍କରେ ୍ (ହଳନ୍ତ) ଦିଆଯାଇଥିବ, ସେମାନଙ୍କୁ ଅକ୍ଷର ମଧ୍ୟରେ ଗଣନା ନ କରି ପଦ ହିସାବ କଲେ କୌଣସି ଅସୁବିଧା ହେବ ନାହିଁ। ଅନ୍ୟ ପକ୍ଷରେ ଯୁକ୍ତାକ୍ଷର ଓ ବ୍ୟଞ୍ଜନ ମାତ୍ରାମାନ ଉଠିଯିବା ହେତୁ କବିତାର ଲାଳିତ୍ୟ ବୃଦ୍ଧି ପାଇବାର ସମ୍ଭାବନା।



# ଲିପି ସଂସ୍କାର

## ରାମ ଶଙ୍କର ରାୟ

ଆଜିକାଲି ଚତୁର୍ଦ୍ଦିଗରେ ସଂସ୍କାରର ହୁରି ପଡ଼ି ଯାଇଥିବା ସମୟରେ ଗଞ୍ଜାମର ନବୀନା 'ଆଶା' ମଧ୍ୟ ଗୋଟାଏ ସଂସ୍କାର ଘେନି ଉପସ୍ଥିତ। ସମାଜ-ସଂସ୍କାର, ଯାତ୍ରାସଂସ୍କାର, ବିବାହସଂସ୍କାର, ଶ୍ରାଦ୍ଧସଂସ୍କାର ଓ ଲେଖାପଢ଼ାର ସଂସ୍କାର ଇତ୍ୟାଦି ନାନାବିଧ ସଂସ୍କାର ଉଦ୍ୟୋଗ ଲାଗିଥିବାରୁ ଦେଶର ଚିନ୍ତାଶୀଳ ବ୍ୟକ୍ତିମାନେ ମୁଣ୍ଡର ଝାଳ ଗୋଡ଼ରେ ପକାଉଅଛନ୍ତି। ମାତ୍ର ସେ ସମସ୍ତ କୁସଂସ୍କାରରୂପ ଆବର୍ଜନା ପରିତ୍ୟାଗପୂର୍ବକ ଉନ୍ନତିମାର୍ଗରେ ଅଗ୍ରସର ହେବାର ପରିଚାୟକ। 'ଆଶା'ର ଲିପିସଂସ୍କାର 'ସ୍ୱାଧୀନତା' ଉପରେ ସ୍ଥାପିତ ହୋଇଅଛି। 'ପଞ୍ଚମ' ଇତ୍ୟାଦିକି 'ପଂଚମ' ଇତ୍ୟାଦି ଛାପା କରିବାରେ ମୁଁ ସ୍ୱଭାବତଃ ମନେ କରିଥିଲି ଯେ 'ଆଶା'ର ନୂତନ ପ୍ରେସରେ ବୋଧହୁଏ ଯୁକ୍ତାକ୍ଷର ନ ଥିବାରୁ ଏପରି ଘଟିଅଛି; ମାତ୍ର ବାଲେଶ୍ୱରର ସମ୍ବାଦବାହିକା ଟିପି ଦେବାରୁ କଥାଟା ବାହାରିପଡ଼ିଲା- ଖାଲି 'ଆଶା'ର କଥା ନୁହେଁ, ତାଙ୍କ ପୃଷ୍ଠପୋଷକ ମଧ୍ୟ ବାହାରି ପଡ଼ିଲେ। ଗୋଦାବରୀଶ ବାବୁ ବିଶ୍ୱବିଦ୍ୟାଳୟରେ ଯୋଗ୍ୟତା ସହିତ ଉପାଧି ଲାଭ କରିଥିବାରୁ ସେ ସାନ ହେଲେ ମଧ୍ୟ ମୋର ତାଙ୍କ ପ୍ରତି ଭକ୍ତି ଅଛି ଏବଂ ବାଲ୍ୟକାଳରୁ ତାଙ୍କର ଗତିବିଧିକି ଲକ୍ଷ୍ୟ ରଖି ମୁଁ ମନେ କରିଥିଲି କାଳେ ଦେଶ ତାଙ୍କର ପ୍ରତିଭା ଦ୍ୱାରା ଗୌରବାନ୍ୱିତ ହେବ। ପ୍ରେମ ସବୁବେଳେ ରମଣୀୟ, ମାତ୍ର ଉଦ୍‌ଭ୍ରାନ୍ତ ପ୍ରେମର ରୂପ ଉତ୍କଟ। ପରାଧୀନ ଜାତି ପକ୍ଷରେ ସ୍ୱାଧୀନତା ବଡ଼ ରମଣୀୟ, ମାତ୍ର ଉଦ୍‌ଭ୍ରାନ୍ତ ସ୍ୱାଧୀନ ଭାବ ଅତି ଉତ୍କଟ ଅଟେ। ବାପ ଅଜାଙ୍କୁ ଅବହେଳା କରି ସ୍ୱାଧୀନ ହେବାର ଭାବ ଏ ଯୁଗକୁ ସାଜି ପାରେ, ମାତ୍ର ତାହା ଯେ ଗର୍ହିତ, ଏଥିରେ ସନ୍ଦେହ ନାହିଁ। ଆଜିକାଲି ବାପକୁ ପୁଅ ମାନୁ ନାହିଁ, ଗୁରୁକୁ ଚେଲା ମାନୁ ନାହିଁ, ଅବଧାନକୁ ଚାଟ ମାନୁ ନାହିଁ, ରଜାକୁ ପ୍ରଜାଏ ମାନୁ ନାହାନ୍ତି; ଏପରି ସ୍ଥଳରେ ଓଡ଼ିଆ ଭାଷାଟା ସଂସ୍କୃତକୁ ନ ମାନିଲେ ତାହା କାଳର ଦୋଷ ବିନା ଆଉ କ'ଣ ହୋଇପାରେ ? 'ଆଶା'ର ସମ୍ପାଦକ ଓ ଲେଖକମାନେ ଦେଶ ଲୋକଙ୍କୁ ତାଙ୍କ

ଲିପିସଂସ୍କାରର ଅନୁବର୍ତ୍ତୀ ହୋଇ ଲେଖିବାକୁ ପ୍ରାର୍ଥନା କରିଅଛନ୍ତି। କେହି ମାନିବେ, ଏହା ମୋତେ ଲାଗୁନାହିଁ। ମୁଁ ତାହା ପଢ଼ିଲା ମାତ୍ରକେ ଲାଙ୍ଗୁଳହୀନ ଶୃଗାଳର କଥା ମନରେ ପଡ଼ିଗଲା। ଆପଣ 'ନୂତନ ଏକଟା କରୋ' ବୋଲି ଯେଉଁ ମତ ପ୍ରକାଶ କରିଅଛନ୍ତି, ମୁଁ ତାହା ସମ୍ପୂର୍ଣ୍ଣ ଅନୁମୋଦନ କରି ଅନ୍ୟ ଭାଷାରେ କିଏ କିରୂପ ଚିନ୍ତା କରୁଛନ୍ତି ଖୋଜି ହେଉଥିଲି। ଇତିମଧ୍ୟରେ ହଠାତ୍ ବଙ୍ଗଳା 'ଆର୍ଯ୍ୟ କାୟସ୍ଥ ପ୍ରତିଭା' ନାମକ ମାସିକପତ୍ରିକାର ଷଷ୍ଠ ବର୍ଷର ଦଶମ ସଂଖ୍ୟା ଚଳିତ ମାସ ୧୭ ତାରିଖରେ ହସ୍ତଗତ ହେଲା। ତହିଁର 'ବର୍ତ୍ତମାନ ସମୟେ ବଙ୍ଗଭାଷା' ନାମକ ପ୍ରଥମ ପ୍ରବନ୍ଧ ପଢୁ ପଢୁ ଠିକ୍ ଆପଣଙ୍କ ମତ ମିଳିଯିବାରୁ ନିମ୍ନରେ ତହିଁର ଏକାଂଶର ଅନୁବାଦ ପ୍ରକାଶ କଲି। ଯଥା-

"ଆଧୁନିକ ଅନେକ ଲେଖକ ଓ ଲେଖିକା ମାନଙ୍କର ଭାଷାରେ ଓଲଟା ସୃଷ୍ଟି ହେଇଅଛି। ସେମାନେ ଗଦ୍ୟ ଓ ପଦ୍ୟ ପ୍ରବନ୍ଧରେ ଯାହା ବୁଝାଇବାକୁ ଚାହାନ୍ତି, ବଙ୍ଗଳାର ସାଧାରଣ ନରନାରୀଙ୍କର ଯେ ତାହା ଏକାନ୍ତ ଦୁର୍ବୋଧ, ତାହା ନୁହେଁ, ଖାଣ୍ଟି ବଙ୍ଗଳାନବୀସ ଓ ସଂସ୍କୃତଜ୍ଞ ପାଠକମାନଙ୍କର ସୁଦ୍ଧା ତାହା ବୁଝିବାର କ୍ଷମତା ନାହିଁ। ଅଭିଧାନ, ବ୍ୟାକରଣ ଓ ଶିଷ୍ଟ ପ୍ରୟୋଗ ଏହି ଲେଖକମାନଙ୍କ ନିକଟରେ ବିଷବତ୍ ପରିତ୍ୟଜ୍ୟ, ସେମାନେ ଇଚ୍ଛାମତେ ଇଂରାଜୀ ଧରଣରେ ଇଂରାଜୀ ଭାବ ସଂସ୍କୃତ, ପ୍ରାକୃତ, ଦେଶଜ ଓ ନାନାବିଧ ଉଦ୍ଭଟ ଜାରଜ ଶବ୍ଦଶ୍ରେଣୀର ସାହାଯ୍ୟରେ ପ୍ରକାଶିତ କରି ତାହାହିଁ ବଙ୍ଗଳା ଭାଷା ବୋଲି ଚଳାଉଅଛନ୍ତି। ଗରୀୟସୀ, ମହୀୟସୀ ଓ ଲଘୀୟସୀ ଯେତେବେଳେ ସାହିତ୍ୟରେ ଅଛି, ତେତେବେଳେ ସେମାନେ 'ରୂପୀୟସୀ' ଚଳାଇବେ, 'ରୂପସୀ'ରେ ସେମାନଙ୍କ ମନ ମାନେ ନାହିଁ; ନୀଳିମା, ରକ୍ତିମା ଅଛି ବୋଲି 'ଲାଲିମା', 'ସବୁଜିମା' ଚଳାଇବାକୁ ହେବ; ଅରୁନ୍ତୁଦ ଅଛି ବୋଲି 'ମର୍ମନ୍ତୁଦ' ଲେଖିବେ- ଅଭିଧାନରେ ଯେ ଅରୁନ୍ତୁଦ ପାର୍ଶ୍ୱରେ ମର୍ମସ୍ପୃଶ୍ ଶବ୍ଦ ରହିଅଛି, ତହିଁ ପ୍ରତି ନଜର ଦେବେ ନାହିଁ - ନିଜ ବାହୁ ବଳରେ ଚଳିବେ। ଏମାନେ 'କାପଡ଼ ଛୋବାନ' ନ ବୋଲି 'ରଙାନ' ବୋଲିବେ; 'ମତ', 'କତ', 'ଜଡ଼'କୁ 'ମତୋ', 'କତୋ', 'ଜଡ଼ୋ' ଲେଖିବେ; 'କି' କୁ 'କୀ' କରିବେ। ଅର୍ଥାତ୍ ପୁରୁଣା ବନା ଓ ପୁରୁଣା ରୀତି ପଦଦଳିତ କରି ସବୁ ନୂତନ କରିବେ। ଶବ୍ଦର ଦୁର୍ଦ୍ଦଶା କରି ଯେବେ ସେମାନେ କ୍ଷାନ୍ତ ଥାନ୍ତେ, ତାହାହେଲେ ଆମ୍ଭେମାନେ ଭାବିଥାନ୍ତୁ ଯେ ସେମାନଙ୍କ

ବ୍ୟବହୃତ ଶବ୍ଦ ବା ବର୍ଣ୍ଣବିନ୍ୟାସର ଧାରା ଅନ୍ୟମାନେ ଗ୍ରହଣ ନ କଲେ ହେଲା। ଜଣେ ପ୍ରବୀଣ ଅଧ୍ୟାପକ ମଧ୍ୟ "ଏକଟା ନତୁନ୍ କିଛୁ କରୋ"ର ଆଶାରେ ବନ୍ଧୁ, ସନ୍ଧ୍ୟା, ପଂଡ଼ିତ ପ୍ରଭୃତି ଚଳାଇବା ପାଇଁ ଅଣ୍ଟା ଭିଡ଼ି ଲାଗିଥିଲେ। ମାତ୍ର କେବଳ ଶବ୍ଦ ପ୍ରତି ଅଥବା ବର୍ଣ୍ଣବିନ୍ୟାସ ପ୍ରତି ଅତ୍ୟାଚାର କରି ଏମାନଙ୍କର ତୃପ୍ତି ନାହିଁ, ଏମାନେ ଭାଷା ରଚନାର ଯେଉଁ ନମୂନା ବାହାର କରିଅଛନ୍ତି, ଆଜିକାଲି ପିଲାପିଲି ଯେବେ ଏହି ନମୁନା ଶିଖି ଏହିପରି ଭାବରେ ଲେଖିବାକୁ ଅଭ୍ୟସ୍ତ ହୋଇପଡ଼ନ୍ତି, ତାହାହେଲେ ଅଳ୍ପଦିନ ମଧ୍ୟରେ ବଙ୍ଗଳାର ସାହିତ୍ୟ ବଙ୍ଗଦେଶର ଲୋକ ପକ୍ଷରେ ନିତାନ୍ତ ଦୁର୍ବୋଧ ହୋଇଯିବ।"

ଆଉ ଉଦ୍ଧୃତ କରିବାର ପ୍ରୟୋଜନ ନାହିଁ। ମୁଁ ତ ଜଣେ ନଗଣ୍ୟ ଲେଖକ। କେତେ ଜଣ ଗଣ୍ୟ ମାନ୍ୟ ଲେଖକ- କବି, ଔପନ୍ୟାସିକ, ନାଟ୍ୟକାର ଅବା ଅନ୍ୟ ପ୍ରବନ୍ଧ ଲେଖକ ଏଥିର ଅନୁସରଣ କରିବେ, ଦେଖିବାକୁ ସତୃଷ୍ଣ ନୟନରେ ଅନାଇ ବସିଅଛି। ବାପ ଅଜାଙ୍କୁ ଛାଡ଼ିଥିବା ଲୋକକୁ ଚିହ୍ନିବା ଯେପରି କଠିନ, ସଂସ୍କୃତ ଛଡ଼ା ଓଡ଼ିଆ ଭାଷାକୁ ସେପରି ଚିହ୍ନିବାକୁ କଠିନ ହେବ ନାହିଁ କି ? ଝରଣାର ଜଳ ନଦୀ ରୂପରେ ପ୍ରବାହିତ ହୋଇ ସମୁଦ୍ରରେ ପଡ଼େ ଏବଂ ଗଲାବେଳେ ନାନା ସ୍ଥାନର ମୃତ୍ତିକାଦି ହେତୁରୁ ଜଳର କିଛି କିଛି ପରିବର୍ତ୍ତନ ହେଲେ ସୁଦ୍ଧା ଆପଣାର କୂଳ ଶୀଳ ଜଣାଇ ମର୍ଯ୍ୟାଦା ସହିତ ସମୁଦ୍ର ସଙ୍ଗମରେ ପଡ଼ି ଆନନ୍ଦଧ୍ୱନିରେ ନୃତ୍ୟ କରେ; ମାତ୍ର ଝରଣାରୁ ତାହାକୁ ବିଚ୍ଛିନ୍ନ କଲେ ନଦୀର ଅସ୍ତିତ୍ୱ ରହିବ କି ? 'ଆଶା'ର ପ୍ରତ୍ୟାଶା ଆକାଶକୁସୁମରେ ପରିଣତ ହେବାରେ ସନ୍ଦେହ ନାହିଁ। ଏହା ଲିପି ସଂସ୍କାର ବା ଭାଷା ସଂସ୍କାର ନୁହେଁ- ଏହାକୁ ଲିପି ବିଭ୍ରାଟ୍ ବା ଭାଷା ବିଭ୍ରାଟ୍ ବୋଲାଯିବ। ଗୋଦାବରୀଶ ବାବୁ ସତ୍ୟବାଦୀ ସ୍କୁଲରେ ପଢ଼ାଇ ଭବିଷ୍ୟତରେ ଦେଶର ମୁଖ ଉଜ୍ଜ୍ୱଳ କରିବା ଭଳି ଛାତ୍ର ପ୍ରସ୍ତୁତ କରୁଅଛନ୍ତି- ଆଗେ ଏହି ସ୍ୱାତନ୍ତ୍ର୍ୟ ଦ୍ୱାରା ସେ ପ୍ରୋକ୍ତ ବିଦ୍ୟାଳୟର ପିଲାମାନଙ୍କୁ ପରୀକ୍ଷାରେ ଉତ୍ତୀର୍ଣ୍ଣ କରାନ୍ତୁ, ପଛେ ପଦାକୁ ବାହାରିବେ। ଅନ୍ତଃସ୍ଥ 'ଯ'ର ଉଚ୍ଚାରଣ ଭାରତର ସର୍ବତ୍ର 'ୟ' ଅଟେ - ବଙ୍ଗଳାରେ ଯେମନ୍ତ ତଳେ ବୁନ୍ଦା ଦେଇ, ଓଡ଼ିଆରେ ତେମନ୍ତ ସ୍ୱତନ୍ତ୍ର 'ୟ' ଲେଖି ଆମ୍ଭେମାନେ ୟ ଉଚ୍ଚାରଣ କରୁ। ଯେବେ 'ୟ'ଟାକୁ ଉଡ଼ାଇ ଦେଇ ଅନ୍ତଃସ୍ଥ ଯ ମାତ୍ରକର ଉଚ୍ଚାରଣ ୟ କରିବାର ପ୍ରୟାସ ହୁଅନ୍ତା, ତାହା ହେଲେ ସାଜନ୍ତା। ସେ ଦିନ ଆମେରିକାର କୁମାରୀ ଟେନାଣ୍ଟଙ୍କୁ ଏ ଦେଶର

ଜଣେ ବିଶ୍ୱବିଦ୍ୟାଳୟର ଉପାଧିଧାରୀ ବର୍ଷୀୟାନ୍ ବନ୍ଧୁ 'ଯୌତୁକ' ବୋଲି କହିବାରୁ ସେ ବୁଝିପାରିଲେ ନାହିଁ ଏବଂ ବୁଝିବାକୁ ଚେଷ୍ଟାକରି ସେ ଯେତେବେଳେ 'ଯୌତୁକ' ବୋଲି କହିଲେ, ତେତେବେଳେ ବନ୍ଧୁ ଆପଣାର ଭ୍ରମ ବୁଝିପାରି ଲଜ୍ଜିତ ହେଲେ। ତାଲବ୍ୟ ଶ ର ଉଚ୍ଚାରଣ ଇଂରାଜୀରେ Sh, ମୂର୍ଦ୍ଧନ୍ୟ ଷ ର ଉଚ୍ଚାରଣ S ଏବଂ ଦନ୍ତ୍ୟସରୁ Z ଅଟେ। ଯେବେ ତିନିଗୋଟି ଅକ୍ଷର ରଖି ପାଣିନିଲିଖିତ ଉପରୋକ୍ତ ରୂପ ସଂସ୍କୃତପ୍ରାୟ ଉଚ୍ଚାରଣ କରିବାର ପ୍ରୟାସ ହୁଅନ୍ତା, ତେବେ ଅବଶ୍ୟ 'ସଂସ୍କାର' କଥାଟା ବୁଝାଯାନ୍ତା। ଅନ୍ୟଥା ତାହା ବିଭ୍ରାଟ୍ ବିନା ଆଉ କ'ଣ ହେବ ? ଇଂରାଜୀ ଭାଷାରେ ଏହିପରି F ରଖି Ph ଉଠାଇ ଦେବା, କ ଉଚ୍ଚାରଣ ସ୍ଥଳରେ କେବଳ K ଲେଖି Ch ଉଠାଇ ଦେବା ଇତ୍ୟାଦିର ପ୍ରୟାସ ହୋଇଥିଲା, ମାତ୍ର ଉତ୍ପତ୍ତି ହରାଇ ବିଭ୍ରାଟ୍ ଘଟିବା ବିବେଚନାରେ ବଡ଼ ବଡ଼ ପଣ୍ଡିତମାନେ ତାହା ମାନିଲେ ନାହିଁ। ସୁତରାଂ କଥାଟା ଉଠୁ ଉଠୁ ଉଭେଇ ଗଲା। ତେବେ ଆଉ କାହିଁକି ଗରିବ ଓଡ଼ିଶା ଦେଶରେ ଏ ପ୍ରୟାସ ? ସଂସ୍କୃତ ଭାଷା ପୂର୍ଣ୍ଣ ସଂସ୍କୃତ ଏବଂ ତହିଁର ଲିପି ସମ୍ପୂର୍ଣ୍ଣ ଅଟେ। ଇଂରାଜୀରେ ତ କି ଦ ନାହିଁ ଏବଂ ଥ ଓ ଦ ଉଭୟ th ଦ୍ୱାରା ପ୍ରଚଳିତ। ପାରସୀ ଭାଷାରେ ସୁଦ୍ଧା ଟ କି ଡ ନାହିଁ ଏବଂ ଉର୍ଦ୍ଦୁରେ 'ତେ' ଉପରେ ଚିହ୍ନ ଦେଇ ଟ ଓ 'ଦାଲ' ଉପରେ ଚିହ୍ନ ଦେଇ ଡ ଉଚ୍ଚାରଣ କରାଯାଏ। ଆମ୍ଭ ଦେଶ ଭାଷା ଯହିଁରୁ ଉତ୍ପତ୍ତି ଲାଭ କରିଅଛି, ତାହା ଲିପି ଓ ଶବ୍ଦବିନ୍ୟାସରେ ସମ୍ପୂର୍ଣ୍ଣ ଥିବାରୁ ତହିଁର ଗୌରବ ଘେନି ଧନୀ ହେବାକୁ ଚେଷ୍ଟା ନ କରି ତାହାକୁ ଛାଡ଼ି ବିକଳାଙ୍ଗ ହେବାରେ କି ଶ୍ରେୟ ଅଛି, ମୁଁ ବୁଝିବାକୁ ଅକ୍ଷମ। ଯୁକ୍ତାକ୍ଷର ତ ସ୍ୱୟଂ ଈଶ୍ୱରଦତ୍ତ ବେଦ ସମୟରୁ ଚଳି ଆସୁଅଛି। ତଦ୍ୱାରା ଯେମନ୍ତ ଉଚ୍ଚାରଣ ଠିକ୍, ତେମନ୍ତ ଅଳ୍ପ ସ୍ଥାନରେ କଥାଟା ପ୍ରକାଶ କରାଯାଏ- ବୁଝିବାକୁ ମଧ୍ୟ ସହଜ। ମୁଁ 'ଆଶା'ର ଅସାର ସଂସ୍କାର ପ୍ରୟାସକୁ କେବେ ଅନୁମୋଦନ କରିପାରିବି ନାହିଁ। ହୋଇପାରେ ମୋର ଭୁଲ। ମୋର ମଧ୍ୟ ବୟସ ହୋଇଅଛି। ଆଜି କାଲିର ଲୋକେ ବୁଢ଼ାଙ୍କୁ ମୂର୍ଖ ତଳେ ପକାଇଅଛନ୍ତି। ମାତ୍ର ପିଲାଏ ପଣ୍ଡିତ ହୋଇ ଉଚ୍ଛୃଙ୍ଖଳ ହେଲେ ବୁଢ଼ାଙ୍କର ଦୁଃଖ ହୁଏ ନାହିଁ କି ? ମୋର ସିଧା କଥାରେ ଅନେକେ ବ୍ୟଥିତ ହୋଇ ପାରନ୍ତି, ମାତ୍ର ବ୍ୟଥା ଦେବା ମୋର ଇଚ୍ଛା ନୁହେଁ। ଯେଉଁମାନେ ଏଭଳି ସଂସ୍କାରର କଥା ଉଠାଇଅଛନ୍ତି, ସେମାନେ ମୋ ମତରେ ଭାଷା ତଥା ଦେଶର ଦ୍ରୋହୀ ଅଟନ୍ତି। ସେମାନଙ୍କ ଠାରୁ ଦେଶ ଯେତେ ଶୀଘ୍ର ମୁକ୍ତି ଲାଭ କରିପାରେ, ତେତେ ଭଲ। ମନକୁ ବାଧିବାରୁ କଥାଟା ଟିକିଏ କଡ଼ା ହୋଇଥିଲେ କ୍ଷମା କରିବେ।



# ଓଡ଼ିଆ ବର୍ଣ୍ଣମାଳା ଓ ମୁଦ୍ରଣ-ସମସ୍ୟା

## ହରିଶ୍ଚନ୍ଦ୍ର ବଡ଼ାଳ

ପାଠକ ମାତ୍ରେ ବୋଧହୁଏ ଓଡ଼ିଆ ଯୁକ୍ତାକ୍ଷରଗୁଡ଼ିକର ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ରୂପ ଲକ୍ଷ୍ୟ କରିଥିବେ। ଛାପାର ମରଜି ଅନୁସାରେ ଉତ୍ପତ୍ତି, ଉତ୍ପତ୍ତି, ଉତ୍ପତ୍ତି ପ୍ରଭୃତି ବହୁରୂପୀ-ଲୀଳା ଦେଖାଯାଇଥାଏ। ବର୍ତ୍ତମାନ କଥା ହେଉଛି, ହେଲେ ସେଥିରେ କ୍ଷତିଟା ବା କ'ଣ! ବରଂ ଅକ୍ଷରର ରୂପ-ବୈଚିତ୍ର୍ୟ ସମୟରେ ବର୍ଣ୍ଣନାର ବୈଚିତ୍ର୍ୟହୀନତାକୁ ମହନୀୟ କରି ଦେଇପାରେ। କିନ୍ତୁ ବାହାରୁ ଏ ବୈଚିତ୍ର୍ୟର ଦାମ୍ ଯେତେ ଅଳ୍ପ ବୋଲି ମନେହୁଏ, ପ୍ରକୃତ ପକ୍ଷରେ ତାହା ନୁହେଁ।

ପ୍ରଥମତଃ, ଏକ ଯୁକ୍ତାକ୍ଷରର ବିଭିନ୍ନ ମୂର୍ତ୍ତି ଲାଗି ଭିନ୍ନ ଭିନ୍ନ ଟାଇପ୍ ଦରକାର - ଭିନ୍ନ ଭିନ୍ନ ଟାଇପର ଛାଞ୍ଚ ଗଢ଼ିବା ଦରକାର। ମାନେ, ଖରଚ।

ଦ୍ୱିତୀୟତଃ, ଅକ୍ଷର ସଜାଇବା ବେଳେ ଭିନ୍ନ ଭିନ୍ନ ଅକ୍ଷରର ଆଧାର ସଂଖ୍ୟା ବେଶୀ ହୋଇପଡ଼ିବାରୁ କମ୍ପୋଜିଟର ବିଚରାର କାମ ବୃଥା ବଢ଼ିଯାଏ, ଅସୁବିଧା ମଧ୍ୟ ବଢ଼େ। ଅଥଚ ଲାଭ କିଛି ନାହିଁ।

ତୃତୀୟତଃ, ଏତେ ବେଶୀ ରକମର ଅକ୍ଷର ରଖିବାକୁ ଅଧିକ ସଂଖ୍ୟକ ଆଧାର ଓ ବେଶୀ ବେଶୀ ସ୍ଥାନ ବରବାଦ ହୋଇପଡ଼େ।

ଚତୁର୍ଥତଃ, ବିଭିନ୍ନ ଅଞ୍ଚଳର ଓ ବିଭିନ୍ନ ପ୍ରେସ୍‌ର ଛପାରେ କିଛି କିଛି ପାର୍ଥକ୍ୟ ବା ବିଶେଷତ୍ୱ ଦେଖାଯାଏ ଏବଂ ତାହା ସମୟସମୟରେ ସାଧାରଣ ପାଠକଙ୍କର ଅସୁବିଧା ଜନ୍ମାଏ।

ମୋଟ ଉପରେ ଦେଖିବାକୁ ଗଲେ ଏହି ବହୁରୂପୀତ୍ୱ ସକାଶେ ପଡ଼େ ଅଧିକା ଖରଚ, ଅଧିକା କାମ, ଆଉ ଅଧିକା ଅସୁବିଧା- କି ମୁଦ୍ରାକର କି ପାଠକ ସମସ୍ତଙ୍କର। ଏତେ ସତ୍ତ୍ୱେ ଯେ ଏ ଅକ୍ଷରଗୁଡ଼ିକ କାହିଁକି ଏତେ ଦିନ ଚଳି ଆସୁଅଛି, ତାହା କହିବା ଦୁରୁହ। ଛାପାଖାନାର ପରିଚାଳକ ଓ ପାଠକସାଧାରଣଙ୍କର ଦୃଷ୍ଟି ଏ ଦିଗରେ ଆକୃଷ୍ଟ ହେଲେ ନିଶ୍ଚୟ ଏହି ବେଫାଇଦା ଖରଚ ଓ ଉପୁରି କଷ୍ଟତକର ବଞ୍ଚିଯିବାର ଗୋଟାଏ ସୁରାହା ହୋଇପାରିବ।

ପ୍ରଥମେ ଯୁକ୍ତାକ୍ଷରଗୁଡ଼ିକର କଥା ଦେଖାଯାଉ- "(୧) ଓ (୨) ପ୍ରଭୃତି ଗୋଟିଏ ଧାଡ଼ିରେ ରହିବ। (୧) ବର୍ଗର ପଞ୍ଚମ ବର୍ଣ୍ଣ ସହିତ ସେହି ବର୍ଗର ଅନ୍ୟ ବର୍ଣ୍ଣଗୁଡ଼ିକ ମିଶି ଯେଉଁ ଯୁକ୍ତାକ୍ଷର ହୁଏ ସେଗୁଡ଼ିକ ବିଶେଷ ଲକ୍ଷ୍ୟ କରିବାର ବିଷୟ। କାରଣ ଙ, ଞ୍ ଓ ମ୍‌ର ଅନୁସ୍ୱାର ସହିତ ଉଚ୍ଚାରଣ -ସାଦୃଶ୍ୟ ଥିବାରୁ ଏହି ତିନୋଟି ବର୍ଣ୍ଣସଂଘଟିତ ଯୁକ୍ତାକ୍ଷରଗୁଡ଼ିକ ଅନୁସ୍ୱାର ସାହାଯ୍ୟରେ ଯୁକ୍ତାକ୍ଷର ବିନା ଲେଖା ଯାଇପାରେ ବୋଲି ଧରି ନିଆଯାଇପାରେ। ଏହି ଯୁକ୍ତି ଅନୁସାରେ ଅଙ୍କକୁ ଅଂକ ଓ ବଙ୍ଗକୁ ବଂଗ ବୋଲି ଲେଖିବା ଉଚିତ ଏବଂ ଏ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହେଲେ ଷ୍ଠ, ନ୍ଦ, ଣ୍ଡ ଛଡ଼ା ଅନ୍ୟାନ୍ୟ ସମସ୍ତ ସକାଶେ ସ୍ୱତନ୍ତ୍ର ଯୁକ୍ତାକ୍ଷର ବ୍ୟବହାର କରିବାର ଆବଶ୍ୟକତା ପଡ଼ିବ ନାହିଁ।

ଏଠାରେ ତର୍କ ଉଠିପାରେ ଯେ, ବର୍ଗର ପଞ୍ଚମ ବର୍ଣ୍ଣାଶ୍ରିତ ଯୁକ୍ତାକ୍ଷର ପରିବର୍ତ୍ତରେ ଅନୁସ୍ୱାର ବ୍ୟବହାର କରିବା ହିଁ ପ୍ରସ୍ତାବ, ତେବେ ସବୁ କ୍ଷେତ୍ରରେ ଏକା ଭଳି ନିୟମ ହେବା ଉଚିତ (ଅର୍ଥାତ୍ ଣ୍ ଓ ନ୍ ପରିବର୍ତ୍ତରେ ମଧ୍ୟ ଅନୁସ୍ୱାର ବ୍ୟବହାର କରିବା ସଙ୍ଗତ); କିନ୍ତୁ ଣ୍ ଓ ନ୍ ର ଉଚ୍ଚାରଣର ଅନୁସ୍ୱାରର ଉଚ୍ଚାରଣ ସହିତ ଠିକ୍ ସେତେଟା ସାଦୃଶ୍ୟ ଅଛି ବୋଲି ବୋଧହୁଏ ନାହିଁ। ପାଠକ ନିଜେ ତାହା ନିମ୍ନଲିଖିତ ପଙ୍‌କ୍ତି କେତୋଟିରୁ ଦେଖିପାରିବେ-

ଅଂଟା ବାଂଧି ଶୁଂଠାକାଂଧେ ବୀରଷଂଢ଼ ଚାଂଦେ
ବାହାରଂତେ କଂଥା ଛଂଦି ଲଂବ ହେଲେ ଦାଂଡେ।

ଯାକୁ ପଢ଼ିବାକୁ ଯଦି ପାଠକଙ୍କର କୌଣସି ଅଡୁଆ ବୋଧ ନହୁଏ ତେବେ ବର୍ଗର ପଞ୍ଚମବର୍ଣ୍ଣାଶ୍ରିତ ଯାବତୀୟ ଯୁକ୍ତାକ୍ଷର ଉଠାଇଦେବାର ପ୍ରସ୍ତାବରେ କହିବି- "ତଥାସ୍ତୁ।"(୨) ବର୍ତ୍ତମାନ ଅନ୍ୟାନ୍ୟ ଯୁକ୍ତାକ୍ଷର ଓ 'ଫଳା' ଗୁଡ଼ିକର କଥା ଦେଖାଯାଉ।

ଏ ସମ୍ବନ୍ଧରେ ମୂଳ ପ୍ରସ୍ତାବ ଏହି ଯେ, ହସନ୍ତର ବ୍ୟବହାର ଦ୍ୱାରା ଯୁକ୍ତାକ୍ଷର ଓ ଫଳାର ସଂଖ୍ୟା ଯଥାସମ୍ଭବ କମ୍ କରିବା ଆବଶ୍ୟକ। ତେବେ ଏ ଦିଗରେ କେତେଟା ସହନୀୟ ହେବ (ଅନ୍ତତଃ ପ୍ରଥମ ପ୍ରଥମ) ସେ ଆଡ଼କୁ ଦୃଷ୍ଟି ରଖି (କାରଣ 'ତସ୍‌କର', 'ଉଚ୍‌ଚାରଣ' ପ୍ରଭୃତିର ଏବମ୍ବିଧ ମୂର୍ତ୍ତି ଦେଖି ଅନେକେ ପ୍ରଥମେ ଟିକିଏ ବିଚଳିତ ହୋଇପାରନ୍ତି କି ନା।) ନିମ୍ନଲିଖିତ ମତେ ପ୍ରସ୍ତାବ କରାଯାଇପାରେ -

(କ) କ୍ଷ, ଜ୍ଞ, ତ୍ତ, ଦ୍ଧ, ଦ୍ଧ, ଦ୍ଧ - ଏହି କେତୋଟି ସ୍ୱତନ୍ତ୍ର ଯୁକ୍ତାକ୍ଷର ରହିବା ଦରକାର।

(ଖ) ୍କ, ଚ, ଛ, ଟ, ଠ, ୨, ୍ଡ, ୍ଣ, ୍ଥ, ପ, ଫ, ୍ବ, ୍ମ, ୍ଯ, ୍ର, ୍ଲ, ୍ଶ, ୍ଷ, ୍ସ, ଘ- ଏ କେତୋଟି ଫଳା ରହିବା ଉଚିତ।

(ଗ) ଅନ୍ୟାନ୍ୟ ଯାବତୀୟ ଯୁକ୍ତାକ୍ଷର (ଅବଶ୍ୟ ଶ୍ଚ, ଦ୍ଦ, ଙ୍ଖ ଛଡ଼ା) -ଏ ସଂପର୍କରେ (୧) ଦ୍ରଷ୍ଟବ୍ୟ ଏବଂ 'ଫଳା' ସକାଶେ ହସନ୍ତର ବ୍ୟବହାର କରିବା ଉଚିତ।

**ବର୍ଜନୀୟ ବର୍ଣ୍ଣମାଳା :**

(କ) ଉଲ୍ଲିଖିତ ରୂପର ସ୍ୱରା ସଙ୍କେତ, ସ୍ୱରର ଠାକୁରର ବ୍ୟବହାର ହେଉଛି ବର୍ଜନୀୟଭାବେ।

(ଖ) ସ୍ୱତନ୍ତ୍ର ଯୁକ୍ତାକ୍ଷର—ଙ୍କ, ଙ୍ଖ, ଙ୍ଗ, ଙ୍ଘ, ଞ୍ଚ, ଞ୍ଛ, ଞ୍ଜ, ଞ୍ଝ, ଣ୍ଟ, ଣ୍ଠ, ଣ୍ଡ, ଣ୍ଢ, ଏବଂ (୨) (ଠ) ଓ (ଙ) (ଚ) ରେ ଉଲ୍ଲିଖିତ ଫଳାଗୁଡ଼ିକ ଦ୍ୱାରା ଗଠିତ ଯାବତୀୟ ଯୁକ୍ତାକ୍ଷର।

(ଗ) ଫଳା—ଙ୍ଗ, ୍ଚ, ୍ଜ, ୍ଟ, ୍ଡ, ୍ଣ, ୍ତ, ୍ଥ, ୍ଦ, ୍ଧ, ୍ନ, ୍ଭ, ୍ଯ, ୍ଲ ......ପ୍ରଭୃତି।

(ଘ) ପରିବର୍ତ୍ତନ, ଯଥା—

ରୁ ସ୍ଥଳରେ ରୁ, ରୂ ସ୍ଥଳରେ ରୂ, ରୃ ସ୍ଥଳରେ ୃ, (ଋଷିକ, ତତ୍ତ୍ୱ, ଋଷଭ) ବା ସୃଷ୍ଟି-ତ (ଯଥା ଅମୃତ) ଙ୍କୃ, ତ୍ରୁ ସ୍ଥଳରେ ତ୍ରୁ, ଦ୍ରୁ ସ୍ଥଳରେ ଦ୍ରୁ ... ... ... ଲେଖାଯିବ ଉଚିତ।

### ସ୍ୱର ମାତ୍ରା

ବର୍ତ୍ତମାନ ସ୍ୱରମାତ୍ରା ସମ୍ବନ୍ଧରେ କେତେ ଅପେକ୍ଷିତ ହେବା ଆବଶ୍ୟକ।

(ଙ) ସ୍ୱରମାତ୍ରା ବ୍ୟବହାରରେ ଉଲ୍ଲିଖିତ କେତୋଟି ରୂପ ବର୍ଜନୀୟ ବୋଲି ବିବେଚିତ ହୋଇପାରେ—

(୧) ଯୁକ୍ତ ହ୍ରସ୍ୱ ଋ-କାର (ଅକ୍ଷର ଦେହରେ ବା ତଳେ), ଯଥା—କୃ, ସୃଷ୍ଟ।

(୨) ସଂଯୁକ୍ତ ଦୀର୍ଘ ଋ-କାର ଓ ରେଫ, ଯଥା—ତର୍କ।

(ଗ) ଯୁକ୍ତ ଦୀର୍ଘ ଈ-କାର, ଯଥା- ଙ୍କିଟ।

(ଘ) ଯୁକ୍ତ ହ୍ରସ୍ୱ ଉ-କାର, ଯଥା କ୍ଳୁଳ,

କ୍ଷୁଦା, ମୃତ୍ୟୁ.... ଇତ୍ୟାଦି ଇତ୍ୟାଦି।

ମାତ୍ର ଏ ସମ୍ବନ୍ଧରେ ଗୋଟିଏ କଥା ମନେ କରାଇଦେବା ଉଚିତ ବୋଲି ମନେ କରେ। ସ୍ୱରମାତ୍ରାଗୁଡ଼ିକର ବ୍ୟବହାର ଏତେ ଅଧିକ ଯେ, ଏ ଦିଗରେ କୌଣସି ବର୍ଜନ-ନୀତି ଅନୁସରଣ କରିବା ପୂର୍ବରୁ ବିଶେଷ ବିବେଚନା କରି ଦେଖିବା ନିତାନ୍ତ ଦରକାର। କାରଣ, କି ପରିବର୍ତ୍ତରେ କି ବା କୁ ପରିବର୍ତ୍ତରେ କୁ ବ୍ୟବହାର କରିବାକୁ ଗଲେ ହୁଏ ତ କମ୍ପୋଜିଟରର ଅଧିକା ଖାଟଣି ଖୁବ୍ ବେଶୀ ହୋଇ ପଡ଼ିପାରେ। ଏକାଧିକ ବ୍ୟଞ୍ଜନ ବର୍ଣ୍ଣ ମିଳି ଯୁକ୍ତାକ୍ଷର ଗଠନ କାଳରେ କିନ୍ତୁ ଏପରି ଆଶଙ୍କା ନିତାନ୍ତ ଅମୂଳକ।

**ସାର ସଂଗ୍ରହ :**

ଏହି ପ୍ରବନ୍ଧର ପ୍ରସ୍ତାବଗୁଡ଼ିକ କାର୍ଯ୍ୟରେ ପରିଣତ ହେଲେ ନିମ୍ନଲିଖିତ ମାତ୍ର ୯୭ଟି ଅକ୍ଷର ଓ ଚିହ୍ନ ସାହାଯ୍ୟରେ ଓଡ଼ିଆ ଭାଷାର ସମସ୍ତ ଛାପାକାର୍ଯ୍ୟ ଚଳିପାରିବ।

**ବର୍ଣ୍ଣମାଳା :**

ଅ ଆ ଇ ଈ ଉ ଊ ଋ ୠ ଌ ଏ ଐ ଓ ଔ

କଖଗଘଙ   ଚଛଜଝଞ   ଟଠଡଢଣ

ତଥଦଧନ   ପଫବଭମ   ଯରଳବ

ଶ ଷ ସ ହ ଡ଼ ଢ଼ ୟ ଲ ଂ ଃ ଁ   – ୫୩

ସ୍ୱତନ୍ତ୍ର ଯୁକ୍ତାକ୍ଷର –

କ୍ଷ ଚ୍ଚ ଚ୍ଛ ଜ୍ଞ ଞ୍ଚ ତ୍ତ ଦ୍ଧ ଦ୍ଧ ନ୍ଦ ନ୍ଧ ଦ୍ଦ   – ୧୧

**ଫଳା :**

୍ ତ ଚ୍ଛ ଟ ଠ ୍ ୍ୱ ୍ର ୍ମ ୍ଣ ୍ଯ ୍ଲ ୍ଟ ୍ର ୍ଥ ୍ୟ ୍ମ ୍ୱ – ୨୦

**ମାତ୍ରା ଓ ଚିହ୍ନ—**

ା ି ୀ ୁ ୂ ୃ େ ୈ ୌ ( ହସନ୍ତ ) .

ଏବଂ , ; ? ।   — ୧୩

**ମୋଟ — ୯୭**

**ଉପସଂହାର :**

ଛାପାରେ ଆଜିକାଲି ଅକ୍ଷରଗୁଡ଼ିକର ଯେଉଁ ସବୁ ରୂପ-ବୈଚିତ୍ର୍ୟ ଦେଖାଯାଏ, ସେଗୁଡ଼ିକ ଦୂରୀଭୂତ ହେଲେ ସମସ୍ତଙ୍କର ସୁବିଧା ଓ ମଙ୍ଗଳ। ଏହି Standardisation ସାଧନ ଲାଗି ଉପରେ ଯାହାକିଛି କୁହାଗଲା, ତା'ର ବ୍ୟାବହାରିକ ଦିଗ (Practical side)ଟି ଓଡ଼ିଆ ଛାପାଖାନାର ମାଲିକମାନଙ୍କର ଗଭୀର ଚିନ୍ତାର ବିଷୟ, ସନ୍ଦେହ ନାହିଁ।

ପୁଣି, କାର୍ଯ୍ୟକ୍ଷେତ୍ରରେ ଯେ ଉକ୍ତ ପ୍ରସ୍ତାବଗୁଡ଼ିକ ଗ୍ରହଣ ଯୋଗ୍ୟ ହୋଇପାରେ, ତା'ର କିଛି କିଛି ପ୍ରମାଣ ମାସିକ 'ଶିଶିର' ଖଣ୍ଡିଏ ଖୋଲିଲେ ଆଖିରେ ପଡ଼ିପାରେ। ଏ ସମ୍ବନ୍ଧରେ ବ୍ୟାବହାରିକ ଦିଗରୁ ବିସ୍ତୃତ ଆଲୋଚନା ହେବା ବାଞ୍ଛନୀୟ।

[ଦ୍ରଷ୍ଟବ୍ୟ : ବର୍ତ୍ତମାନ ସମୟରେ ଓଡ଼ିଆ ଟାଇପ୍ ଓ ମୁଦ୍ରଣ ପଦ୍ଧତି ସଂପୂର୍ଣ୍ଣ ରୂପେ ଅଚଳ ହୋଇଥିବାରୁ ମୁଦ୍ରଣ ଜନିତ ସମସ୍ୟାଗୁଡ଼ିକ ସ୍ୱତଃ ଦୂରୀଭୂତ ହୋଇଯାଇଛି। ତେଣୁ ଓଡ଼ିଆ ମୁଦ୍ରଣ ସମସ୍ୟା ସଂବନ୍ଧୀୟ ଆଲୋଚନା ତାହାର ଗୁରୁତ୍ୱ ହରାଇଛି। ସେହି କାରଣରୁ ଏହି ପ୍ରବନ୍ଧର ଦ୍ୱିତୀୟ ଭାଗକୁ ସଂକଳନରେ ଅନ୍ତର୍ଭୁକ୍ତ କରାଯାଇନାହିଁ।]

(ପ୍ରାଚୀନ ତାଳପତ୍ର ପୋଥିରୁ ସଂଗୃହୀତ କେତେକ ସଂଯୁକ୍ତାକ୍ଷର)

[ରାଜଗୁରୁ, ଓଡ଼ିଆ ଲିପି , 'ଓଡ଼ିଆ ଲିପି ଓ ଭାଷା', ପୃ.୫୭ ରୁ ସଂଗୃହୀତ]



# ଓଡ଼ିଆ ଅକ୍ଷର ଓ କେସ୍‌ର ବର୍ତ୍ତମାନ ଅବସ୍ଥା

## ଉଦୟନାଥ ଷଡ଼ଙ୍ଗୀ

ପ୍ରାୟ ଚାରିବର୍ଷ ତଳେ 'ପ୍ରବାସୀ'ରେ 'ବଙ୍ଗଳା ଟାଇପ୍ ଓ କେସ୍' ନାମରେ ଗୋଟିଏ ସୁଚିନ୍ତିତ ପ୍ରବନ୍ଧ ଧାରାବାହିକ ରୂପେ ପ୍ରକାଶିତ ହୋଇଥିଲା। ସେହି ପ୍ରବନ୍ଧ ସାହାଯ୍ୟରେ ଓଡ଼ିଶାର ବିଜ୍ଞ ଲେଖକ ଓ ସମାଲୋଚକ ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବଡ଼ାଳ 'ସହକାର'ରେ ଓଡ଼ିଆ ଟାଇପ୍ ସମ୍ବନ୍ଧରେ କେତେକ ସୂଚନା ଦେଇ ଓଡ଼ିଶାର ଛାପାଖାନା କର୍ମକର୍ତ୍ତାମାନଙ୍କୁ ସେ ସମ୍ପର୍କରେ ଆଲୋଚନା କରିବା ପାଇଁ ଆହ୍ୱାନ କରିଥିଲେ। ଅବଶ୍ୟ ତାଙ୍କର ସେ ସୂଚନା ଫଳରେ ଆଉ କେତୋଟି ପ୍ରବନ୍ଧ ପ୍ରକାଶିତ ହୋଇଥିଲା ଓ କେତେକ ଚିନ୍ତାଶୀଳ ବ୍ୟକ୍ତି କେତେ ପ୍ରକାର ଆଲୋଚନା କରିଥିଲେ; ମାତ୍ର ସେଗୁଡ଼ିକ କୌଣସି ଛାପାଖାନାଭିଜ୍ଞ ଭାବୁକଙ୍କର ଲେଖା ବୋଲି ଅନୁମିତ ହୁଏନାହିଁ। ସେମାନେ କେବଳ ଓଡ଼ିଆ ଅକ୍ଷର ଉପରେ ଜୋର ଦେଇ ଯାହା କିଛି ସଂସ୍କାର କରିବା ପାଇଁ ଲେଖିଥିଲେ; କିନ୍ତୁ ଛାପାଖାନାର ସୁବିଧା ଅସୁବିଧା ପ୍ରତି ଆଦୌ ନଜର ଥିଲା ପରି ସେ ଲେଖାରୁ ଜଣାଯାଏ ନାହିଁ।

ଓଡ଼ିଆ ଛାପାଖାନାରୁ (କେତେକଙ୍କ ମତରେ ଭୂତଖାନା) ବହୁତ ଦୂରରେ ରହି ବଡ଼ାଳ ମହାଶୟ ବୋଧହୁଏ ଜାଣନ୍ତି ନାହିଁ ଯେ, ବଙ୍ଗଳାର ପ୍ରୁଫ୍‌ରିଡରର ଜ୍ଞାନ ଅଧିକାଂଶ ଓଡ଼ିଆ ଛାପାଖାନାର କର୍ମକର୍ତ୍ତାମାନଙ୍କର ମଧ୍ୟ ନ ଥାଏ; ତେଣୁ ତାଙ୍କର ଚେଷ୍ଟା ଅରଣ୍ୟ ରୋଦନରେ ପରିଣତ ହେବାର ଆଶଙ୍କା ଅମୂଳକ ନୁହେଁ (ସହକାର ୧୩ଶ ଭାଗ ୧୦ମ ସଂଖ୍ୟା ୮୯୫ ପୃଷ୍ଠା)। ଏତେ ଦିନ ପରେ ମୁଁ ଏ କ୍ଷୁଦ୍ର ପ୍ରବନ୍ଧରେ କେବଳ ଓଡ଼ିଆ ଟାଇପର ବର୍ତ୍ତମାନ ଅବସ୍ଥା, ଓଡ଼ିଆ ବର୍ଣ୍ଣମାଳାର ବହୁଳତା ଓ କ୍ଳିଷ୍ଟତା ଏବଂ କେତେକ ସଂସ୍କାରପ୍ରୟାସୀଙ୍କର ଭ୍ରମ ଦେଖାଇ ଦେବାକୁ ଚାହେଁ। ତା'ହେଲେ, ମୋର ବିଶ୍ୱାସ, ଏ ସମ୍ପର୍କରେ ଗଭୀର ଚିନ୍ତା କରୁଥିବା ମନୀଷୀମାନଙ୍କର ପଥ ଟିକିଏ ସୁଗମ ହୋଇଯିବ। ଏହା ମଧ୍ୟ ଉଲ୍ଲେଖ କରିବା ଉଚିତ ଯେ, 'ପ୍ରବାସୀ'ରେ ପ୍ରକାଶିତ ପ୍ରବନ୍ଧର ପନ୍ଥା ହିଁ ମୋର ଅବଲମ୍ବନ।

ଓଡ଼ିଆ ବର୍ଣ୍ଣମାଳାର ସମ୍ପୂର୍ଣ୍ଣ ସଂସ୍କାର ଯେ ବର୍ତ୍ତମାନ ନିତାନ୍ତ ଦରକାର, ଏହା ପ୍ରତ୍ୟେକ ବ୍ୟକ୍ତି ହୃଦୟଙ୍ଗମ କରୁଛନ୍ତି। ଶିକ୍ଷକ, ଛାତ୍ର, ଲେଖକ ପ୍ରକାଶକଙ୍କ ଠାରୁ ଆରମ୍ଭ

କରି ମୁଦ୍ରାକର, ନିରୀହ କମ୍ପୋଜିଟର ପର୍ଯ୍ୟନ୍ତ ସମସ୍ତେ ବର୍ଣ୍ଣମାଳାର ଚକ୍ରବ୍ୟୂହ ମଧ୍ୟରୁ ନିସ୍ତାର ପାଇବା ଲାଗି ବଡ଼ ବ୍ୟାକୁଳ। ପ୍ରତିବେଶୀ ବଙ୍ଗାଳୀମାନେ ଏ ଦିଗରେ ବହୁତ ଦୂର ଅଗ୍ରସର ହୋଇ ବର୍ତ୍ତମାନ ବଙ୍ଗଳାରେ ଲିନୋ ଟାଇପ୍ ପ୍ରଚଳନ କରିବାକୁ ସମର୍ଥ ହେଲେଣି। ବର୍ତ୍ତମାନ ଯୁଗରେ ଯେଉଁ ଭାଷା ବା ସାହିତ୍ୟରେ ଟାଇପରାଇଟିଂ (Typewritting), ସାଙ୍କେତିକ ଲିପି (Shorthand writing) ଲିନୋ ଟାଇପ (Leno Type) ପ୍ରଚଳିତ ନାହିଁ, ତାର ଉନ୍ନତି ସୁଦୂର ପରାହତ। ବଙ୍ଗଳା ଟାଇପ୍‌ର ଜଣେ ବିଶିଷ୍ଟ ସଂସ୍କାରକ ଲେଖିଛନ୍ତି–

"ବର୍ତ୍ତମାନ ଜଗତରେ ପ୍ରତ୍ୟେକ ଉନ୍ନତ ଭାଷାରେ ହିଁ ଟାଇପ୍ ରାଇଟର, ଲିନୋ ଟାଇପ୍ ପ୍ରଭୃତି ଦ୍ୱାରା ଛାପାକାର୍ଯ୍ୟର ଅତ୍ୟାଶ୍ଚର୍ଯ୍ୟ ଉନ୍ନତି ହୋଇଅଛି। ସାଙ୍କେତିକ ଲିପି ପ୍ରଭୃତି ମଧ୍ୟ ମନୁଷ୍ୟ ଜ୍ଞାନର ପରିଧି ଦ୍ରୁତ ବିସ୍ତାର କରୁଅଛି। କିନ୍ତୁ ବଙ୍ଗଳା ଭାଷା ପିତାମହୀ ଯୁଗର ସେହି ଭାରି ଅଳଙ୍କାର ପିନ୍ଧି କେଉଁ ଦିଗରେ ହିଁ ଅଗ୍ରସର ହୋଇପାରୁ ନାହିଁ। ତାହାର ଲିନୋ ଟାଇପ୍ ନାହିଁ, ସାଙ୍କେତିକ ଲିପି ନାହିଁ। ମନୁଷ୍ୟର ସଭ୍ୟତା ଓ ଜ୍ଞାନର ଅଭିବ୍ୟକ୍ତିର ପଥ ଜଟିଳତାରୁ ସରଳତା ଦିଗରେ। ବଙ୍ଗଳା ଅକ୍ଷରକୁ ଯଦି ଆମେ ତାହାର ଜଟିଳତା ଓ ସଂଖ୍ୟାବାହୁଲ୍ୟର ଦୁର୍ଗରୁ ଉଦ୍ଧାର କରି ସହଜ ସରଳତା ମଧ୍ୟରେ ମୁକ୍ତ କରି ଦେଇ ନ ପାରୁ, ତେବେ ବର୍ତ୍ତମାନ ସଭ୍ୟତାର କଠୋର ଜୀବନ ସଂଗ୍ରାମ କ୍ଷେତ୍ରରେ ଆମେ ପ୍ରତିଯୋଗିତାରେ ଆଦୌ ଠିଆ ହୋଇପାରିବା ନାହିଁ" (ଆନନ୍ଦ ବଜାର ପତ୍ରିକା ୧୯୩୫ ପୂଜାସଂଖ୍ୟା)। ଓଡ଼ିଆ ଟାଇପ ପ୍ରତି ଏହା ଅକ୍ଷରେ ଅକ୍ଷରେ ପ୍ରଯୋଜ୍ୟ।

ଓଡ଼ିଆ ଅକ୍ଷରଗୁଡ଼ିକ ସଂଖ୍ୟାରେ ଏତେ ବେଶି ଓ ତାର ଆକାର ଏତେ କୁଟିଳ, ଏପରି କିମ୍ଭୂତକିମାକାର ଯେ, ତଦ୍ଦ୍ୱାରା ବର୍ତ୍ତମାନ ସାଙ୍କେତିକ ଲିପି, ଲିନୋ ଟାଇପ ହେବା ଏକାବେଳକେ ଅସମ୍ଭବ। ତାର ସଂଖ୍ୟାହ୍ରାସ ନ ହେଲେ, ଆକାରରେ ଅନାବଶ୍ୟକ ଜଟିଳତା ଦୂର ନ ହେଲେ, ଓଡ଼ିଶା କୌଣସି କ୍ଷେତ୍ରରେ ହିଁ ଅଗ୍ରସର ହୋଇପାରିବ ନାହିଁ।

ମୁଦ୍ରଣର ଅସୁବିଧା ଛାଡ଼ିଦେଲେ ମଧ୍ୟ ଓଡ଼ିଆ ବର୍ଣ୍ଣମାଳାର ବହୁଳତା, କ୍ଲିଷ୍ଟତା, ଅନ୍ୟାନ୍ୟ ବହୁତ କ୍ଷେତ୍ରରେ ବାଧା ଜନ୍ମାଇ ଆସୁଅଛି। ଓଡ଼ିଆ ଅକ୍ଷରଗୁଡ଼ିକ ଏପରି କଦାକାର, ଓଡ଼ିଆ ପୁର -ଲଳନାଙ୍କ ପରି ଆପାଦମସ୍ତକ ଏତେ ଭୂଷଣରେ ଭୂଷିତ ଯେ, କୋମଳ ଶିଶୁ କିମ୍ବା ବୈଦେଶିକ ନୂତନ ଶିକ୍ଷାର୍ଥୀ ପକ୍ଷରେ ଏହାକୁ ଆୟତ୍ତ କରିବା ନିତାନ୍ତ କଷ୍ଟଦାୟକ ଓ ବହୁ ସମୟସାପେକ୍ଷ। ପ୍ରତିଦିନ କେତେ ସରଳ ଶିଶୁମାନଙ୍କର ମସ୍ତିଷ୍କ ଯେ ଏ କେତୋଟି ଅକ୍ଷର ନିଜର ସାଙ୍ଗପାଙ୍ଗ ସପରିଷଦ ଚର୍ବଣ କରୁଅଛନ୍ତି, ତା' ପ୍ରତ୍ୟେକ ଚିନ୍ତାଶୀଳ ମନସ୍ତତ୍ତ୍ୱବିତ୍ ଅନୁଭବ କରିପାରୁଥିବେ।

ଓଡ଼ିଆ ବର୍ଣ୍ଣମାଳାର ସଂସ୍କାର ପାଇଁ ଏହା ପୂର୍ବରୁ କେତେ ଥର ଅବଶ୍ୟ ଚେଷ୍ଟା କରାଯାଇଥିଲା । ସେଥିମଧ୍ୟରୁ 'ସତ୍ୟବାଦୀ'- ଦଳଙ୍କର ଉଦ୍ୟମ ଉଲ୍ଲେଖଯୋଗ୍ୟ ଓ ପ୍ରଶଂସନୀୟ । ତତ୍‌କାଳୀନ କେତେକ ପ୍ରବୀଣ ସାହିତ୍ୟିକ ସେ ଉଦ୍ୟମ ବିରୁଦ୍ଧରେ ଖଡ୍‌ଗହସ୍ତ ହୋଇଉଠିଥିଲେ ଓ ତାହା କେବଳ ବିକୃତମସ୍ତିଷ୍କ ବ୍ୟକ୍ତିମାନଙ୍କର ବାଚାଳତା ବୋଲି ପ୍ରକାଶ କରିଥିଲେ । ଏପରି ବିରୁଦ୍ଧ ଆଲୋଚନା ନ ହୋଇଥିଲେ ବର୍ତ୍ତମାନ ସେ ଉଦ୍ୟମ ଯେ ବହୁତ ଦୂର ଅଗ୍ରସର ହୋଇପାରିଥାନ୍ତା, ଏହା ବହୁ ପଣ୍ଡିତଙ୍କର ମତ ।

ଏହି ବର୍ଣ୍ଣମାଳାର ସଂସ୍କାର ଦିଗରେ ବର୍ତ୍ତମାନ ବଙ୍ଗଳା ଆମର ପଥପ୍ରଦର୍ଶକ । ବଙ୍ଗାଳୀମାନଙ୍କର ପଥ ଅନୁସରଣ କରି କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କଲେ ବୋଧହୁଏ ଆମେ ଅକ୍ଳେଶରେ କୃତକାର୍ଯ୍ୟ ହୋଇପାରିବା । ବର୍ଣ୍ଣମାଳାର ସଂସ୍କାର ଶବ୍ଦ ବନାନ ଉପରେ ଅନେକ ପରିମାଣରେ ନିର୍ଭର କରେ । ବନାନର ପରିବର୍ତ୍ତନ ନ ହେଲେ ବର୍ଣ୍ଣମାଳାର ସଂସ୍କାର ହେବା ଅସମ୍ଭବ, ତେଣୁ ବଙ୍ଗଳାର ସବୁ ଶ୍ରେଣୀ, ସବୁ ମତର ଲୋକ ବନାନର ପରିବର୍ତ୍ତନ ଓ ବର୍ଣ୍ଣମାଳାର ସଂସ୍କାର ପାଇଁ ବର୍ତ୍ତମାନ ବଦ୍ଧପରିକର । ଏପରି କି, କଲିକତା ବିଶ୍ୱବିଦ୍ୟାଳୟ ଅଧ୍ୟାପକ ସୁନୀତିକୁମାର ଚଟ୍ଟୋପାଧ୍ୟାୟ ପ୍ରଭୃତି ବିଶିଷ୍ଟ ପଣ୍ଡିତମାନଙ୍କ ସମଭିବ୍ୟାହାରରେ ଗୋଟିଏ କମିଟି ଗଢ଼ି ଓ ଅଜସ୍ର ଅର୍ଥ ବ୍ୟୟ କରି ଏ ଦିଗରେ ଉଦ୍ୟମ କରୁଅଛନ୍ତି । ଆମର ତ ବିଶ୍ୱବିଦ୍ୟାଳୟ ନାହିଁ, ତଥାପି ସାହିତ୍ୟ ସମାଜର ଏ ଦିଗରେ କ'ଣ କର୍ତ୍ତବ୍ୟ କିଛି ନାହିଁ ?

ଓଡ଼ିଆ ବର୍ଣ୍ଣମାଳାର ବ୍ୟକ୍ତିଗତ ଜୀବନୀ ଆଲୋଚନା କରିବା ପୂର୍ବରୁ ପ୍ରଥମେ ବର୍ଣ୍ଣମାଳାର ସାମାଜିକ ଜୀବନୀ ଅର୍ଥାତ୍ ଟାଇପ୍ କେସ୍‌ର ପରିଚୟ ଦେବା ଦରକାର । ଯଦି ବା ପିଲାଦିନୁ ବ୍ୟାକରଣରେ ସମସ୍ତେ ମୁଖସ୍ଥ କରିଥାନ୍ତି ଯେ, ଓଡ଼ିଆ ଅକ୍ଷର ମୋଟରେ ୪୮ଟି (ସ୍ୱରବର୍ଣ୍ଣ ୧୪+ବ୍ୟଞ୍ଜନବର୍ଣ୍ଣ ୩୪), ତଥାପି କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କଲେ ତାଙ୍କ ଭାଇବନ୍ଧୁ ବିରାଦର ସମେତ ଅନ୍ୟୂନ ଚାରିଶତ ଅକ୍ଷରଙ୍କ ସହିତ କାରାବାର କରିବାକୁ ପଡ଼େ । ସେହି ଚାରିଶତ ଗୋଷ୍ଠୀ ଯେପରି ଭାବରେ ଗୃହସଂସାର ପାତି ରହିଥାନ୍ତି, ଓଡ଼ିଆ କମ୍ପୋଜିଟରମାନଙ୍କୁ ଯେପରି 'ହରଡଘଣା'ରେ ପକାନ୍ତି, ତା' ଭାବିବାର କଥା ।

ଗୋଟିଏ କମ୍ପୋଜିଟରର ସମସ୍ତ ବର୍ଣ୍ଣମାଳା ବା ଟାଇପ କରାୟତ୍ତ କରିବା ପାଇଁ ଚାରିଗୋଟି ବର୍ଣ୍ଣମାଳା ଶାସନ ବା ଟାଇପ୍ କେସ ଦରକାର- ଯଥା- ଅପର, ଲୋଅର, କରେଣ୍ଟ, କଟା, (ଆମ ଛାପାଖାନା ଭାଷାରେ) ଯଦିଓ କେସ୍ ଚାରିଗୋଟିକୁ ଏହି ନାମରେ

ଅଭିହିତ କରାଯାଇଛି, ତଥାପି ଅକ୍ଷରଗୁଡ଼ିକ ଠିକ୍ ନାମ ଅନୁସାରେ ନ ରହି ବିକ୍ଷିପ୍ତ ଭାବରେ ରହିଥିବାର ଦେଖାଯାଏ। କଟା ('ପ୍ରବାସୀ'ରେ ଯାହା Kernd ନାମରେ ଅଭିହିତ) ଓ କରେଣ୍ଟ (kernd?) କେସ୍‌ର ଅର୍ଦ୍ଧାଧିକ ସ୍ଥାନ ଯୁକ୍ତାକ୍ଷର ସବୁ ସଦଳବଳରେ ଦଖଲ କରି ନେଇଥାନ୍ତି।

ସମ୍ମୁଖରେ ଯେଉଁ କେସ୍‌ଟି ଥାଏ, ତାକୁ ଅପର କେସ୍ କହନ୍ତି। ସେଥିରେ ସର୍ବମୋଟ ୧୧୨ଟି ଘର ସମାନ ୭ଧାଡ଼ିରେ ରହିଥାଏ। କେବଳ ଯୁକ୍ତାକ୍ଷର, କେତୋଟି ମାତ୍ରା ଓ ସଂଖ୍ୟା ଶୂନ୍ୟରୁ ୯ ପର୍ଯ୍ୟନ୍ତ ମିଶି ୧୧୫ଟି ଅକ୍ଷର ଏ କେସ୍‌ର ସମ୍ପତ୍ତି।

ତା ତଳକୁ କୋଳ ପାଖରେ କେସ୍‌ଟିର ନାମ ଲୋଅର କେସ୍ ଓ ସେଥିରେ ସାନ ବଡ଼ ହୋଇ ୫୮ଟି ଘର। ତନ୍ମଧ୍ୟରୁ ୩୧ଟି ଘରେ ଅକ୍ଷର ଓ ୨୭ଟି ଘରେ ସ୍ପେସ୍, କ୍ୱାଡ୍ରେଟ, ଥିନ୍, କମା, ସେମିକୋଲନ, ହାଇଫେନ୍, ଉକାର, ଇକାର ପ୍ରଭୃତି ରହିଥାଏ।

ବାମ ବା ଦକ୍ଷିଣ ପାଖରେ ତଳ ଉପର ହୋଇ ଯେ ଦୁଇଟି କେସ୍ ଥାଏ, ସେଥିରୁ ଉପରଟି କରେଣ୍ଟ ଓ ତଳଟି କଟା କେସ୍। କରେଣ୍ଟ କେସ୍‌ରେ ୯୮ଟି ଘର। କେତେକ ଯୁକ୍ତାକ୍ଷର, / ,$_2$ ପ୍ରଭୃତି ପଣ, + - ପ୍ରଭୃତି ଗାଣିତିକ ଚିହ୍ନ ଓ ପ୍ରଶ୍ନଚିହ୍ନ, ଆଶ୍ଚର୍ଯ୍ୟ ଚିହ୍ନ ପ୍ରଭୃତି ମିଶି ୬୯ ଟି ଅକ୍ଷର ୬୫ଟି ଘର ଦଖଲ କରିଥାନ୍ତି; ବାକି ୩୩ଟି ଘରେ ୩୩ଟି କରେଣ୍ଟ ଅକ୍ଷର ରହିଥାଏ। କରେଣ୍ଟ ଅକ୍ଷରଗୁଡ଼ିକ କେବଳ ବ୍ୟଞ୍ଜନ ବର୍ଣ୍ଣ ଓ ମୂଳ ଅକ୍ଷର ଅପେକ୍ଷା ସାନ। ମୂଳ ଅକ୍ଷରର ତଳେ ଯୁକ୍ତ ହେବା ପାଇଁ ଏହାର ଉତ୍ପତ୍ତି। କଟା ସ ରେ କରେଣ୍ଟ କ ଲଗାଇ ସ୍କ, କଟା ଦ ରେ କରେଣ୍ଟ ଗ ଲଗାଇ ଦ୍‌ଗ ଅକ୍ଷର କମ୍ପୋଜିଟର ସୃଷ୍ଟି କରିଥାଏ। ବ୍ଲାକ ବୋର୍ଡ଼ରେ ପିପ୍‌ପଳ ବୃକ୍ଷ ଓ ଶ୍ଳେଟରେ ଉଡ୍‌ଡୀୟମାନ କୁକ୍‌କୁଟର ଚିତ୍ର ଅଙ୍କନ କର ଇତ୍ୟାଦି ଶବ୍ଦପାଇଁ ଏ ଅକ୍ଷର ପ୍ରୟୋଜନ।

କଟା କେସ୍‌ରେ ଅର୍ଦ୍ଧାଧିକ ସ୍ଥାନ ଯୁକ୍ତାକ୍ଷର ଓ ବାକି ଘର କଟା ଅକ୍ଷର ଅଧିକାର କରିଥାଏ। ୯୮ଟି ଘର ମଧ୍ୟରୁ ୩୩ଟି ଘରେ ୩୪ଟି କଟା ଅକ୍ଷର ଓ ବାକି ୬୫ ଘରେ ୬୬ଟି ଅକ୍ଷର ସ୍ଥାନ ପାଇଥାଏ। କଟା ଅକ୍ଷରଗୁଡ଼ିକ ଠିକ୍ ସାଧାରଣ ଅକ୍ଷର (ଛାପାଖାନା ଭାଷାରେ ଯାହାର ନାମ ଗୋଟା ଅକ୍ଷର) ପରି ଓ ତାର ତଳ ଉପରେ ମାତ୍ରା, ଯଥା- ଚନ୍ଦ୍ରବିନ୍ଦୁ, ରେଫ୍, ଇକାର, ଉକାର, ମଫଳା, ବଫଳା ଇତ୍ୟାଦି ଲଗାଇ ଦେବାପାଇଁ ଟିକିଏ ସୁବିଧା ଥାଏ। ସେପରି ନ ହୋଇଥିଲେ ମାତ୍ରାଗୁଡ଼ିକ ମୂଳ ଅକ୍ଷରଠାରୁ ବହୁତ

ଦୂରରେ ରହିଯାନ୍ତା। କ ସାଧାରଣତଃ କୁ, ମୂର୍ଖ ସାଧାରଣତଃ ମୂର୍ଖ ଆକାରରେ ପ୍ରକାଶିତ ହୁଅନ୍ତା। ଏତେ ସୁବିଧା ଥାଇ ମଧ ଓଡ଼ିଆ କମ୍ପୋଜିଟରଙ୍କ କାର୍ଯ୍ୟତତ୍ପରତା ଯୋଗୁ ଅନେକ ସ୍ଥାନରେ ଏ ପ୍ରକାର ଶବ୍ଦଯୋଜନା ଦେଖାଦେଇଥାଏ। ଆଉ ମଧ ଯେଉଁ ଅକ୍ଷରରେ ଦୁଇ ତିନୋଟି ମାତ୍ରା ଲାଗିବା ଦରକାର ପଡ଼େ, ତାର ଅବସ୍ଥା ଏହିପରି ଘଟିଥାଏ। ପ୍ରୀତି ଶବ୍ଦ ପାଇଁ ଯଦି କଟା ପ୍ର ରେ 1 ନ ଲଗାଇ କଟା ପ ରେ ୍ର ଓ 1 ଲଗାଯାଏ, ତେବେ ପ୍ରୀତି ଏହିପରି ହେବ। ଗୋଟା ପ ରେ ୍ର ଓ 1 କାର ଲଗାଇଲେ ତ (ପ୍ରୀ) ଅବସ୍ଥା ଅତି ଶୋଚନୀୟ।

ଓଡ଼ିଆ କେସ୍‌ର ଏହା ଗୋଟିଏ ମୋଟାମୋଟି ବର୍ଣ୍ଣନା। ବର୍ତ୍ତମାନ ତନ୍ମଧ୍ୟସ୍ଥ ଅକ୍ଷରଗୁଡ଼ିକର ପରିଚୟ ଦେବା ଓ ସଂଖ୍ୟା ନିର୍ଣ୍ଣୟ କରିବା ଉଚିତ୍।

ମୋଟ ୩୬୬ (୧୧୨+୫୮+୯୮+୯୮) ଘରେ ୩୬୯ ଅକ୍ଷର, ମାତ୍ରା, ଚିହ୍ନ ଓ ୬ଟି ସ୍ପେଶ୍, କ୍ୱାଡ୍ରେଟ ପ୍ରଭୃତି ଅବସ୍ଥାନ କରିଥାଏ। ଅଧିକା ୯ଟି ଅକ୍ଷର ଯେ କୌଣସି ପ୍ରକାରେ ନିଜ ଭାଇଙ୍କ ଘରେ ମୁଣ୍ଡ ଗୁଞ୍ଜି ରହିଯାଇଥାନ୍ତି। ସାଧାରଣତଃ ଦେଖାଯାଇଥାଏ ଯେ, କେସ୍‌ରେ ଥିବା ଯୁକ୍ତାକ୍ଷରମାନଙ୍କ ମଧ୍ୟରୁ କେତେକ ସବୁଦିନ ନିଶ୍ଚିନ୍ତ ମନରେ ନିଜ ଘରେ ମୁହଁ ମାଡି ପଡି ରହିଥାନ୍ତି। ଅନ୍ୟାନ୍ୟ ଅକ୍ଷର ବ୍ୟବହୃତ ହୋଇ ମୁଣ୍ଡା ଅକର୍ମଣ୍ୟ ହୋଇଗଲେ ମଧ କେବେ କିପରି ଥରେ ଲେଖାଏଁ ଏ ସବୁ ଦରକାରରେ ଆସିଥାନ୍ତି କି ନା, ସନ୍ଦେହ। ତଥାପି ପୂର୍ବପୁରୁଷ ଯେତେବେଳେ ସାଇତି ଯାଇଛନ୍ତି, ଆମେ ତାଙ୍କୁ ବିଦାୟ କରିଦେବୁ କିପରି ?

## ଓଡ଼ିଆ ଟାଇପର ପରିଚୟ ଓ ସଂଖ୍ୟା–

ଅ, ଆ ଇତ୍ୟାଦ ସ୍ୱରବର୍ଣ୍ଣ ... ... ... ୧୪

କ ଓ କ ର ଜ୍ଞାତବନ୍ଧୁ [ କ କ, କ୍ତ, କୃ, କ୍ଳ, ଇତ୍ୟାଦ ] ୧୧

ଖ ଓ ଖ ର ଜ୍ଞାତବର୍ଗ— ୩

ଗ ,, ୩

| | |
|---|---|
| ଚ ଓ ଚ ର ଜ୍ଞାତିବର୍ଗ- | ୪ |
| ଛ ଓ ଚର ଜ୍ଞାତିବର୍ଗ | ୬ |
| ଜ ଜ୍ଞାତିବର୍ଗ | ୪ |
| ଟ ଜ୍ଞାତିବର୍ଗ | ୩ |
| ଡ ଜ୍ଞାତିବର୍ଗ | ୩ |
| ଢ ଜ୍ଞାତିବର୍ଗ | ୨ |
| ଣ ଜ୍ଞାତିବର୍ଗ | ୫ |
| ତ, ତ୍ର | ୧୫ |
| ଥ | ୨ |
| ଦ, ଦ୍ଵ ପ୍ରଭୃତି | ୯ |
| ଧ, ଦ୍ଧ ପ୍ରଭୃତି | ୫ |
| ନ, ନ୍ଦ ପ୍ରଭୃତି | ୭ |
| ପ | ୬ |
| ବ | ୯ |
| ଭ, ଭ୍ର ପ୍ରଭୃତି | ୮ |
| ମ, ମ୍ନ ପ୍ରଭୃତି | ୬ |
| ଯ, ଯ୍ୟ | ୯ |
| ର | ୭ |
| ଲ, ଲ୍ଲ, | ୧୨ |
| ଶ, ଶ୍ରୀ, ଶ୍ଚ ପ୍ରଭୃତି | ୭ |
| ଷ, ଷ୍ଟ, ଷ୍ପ ପ୍ରଭୃତି | ୮ |
| ସ, ସ୍ତ, ସ୍ଵ ପ୍ରଭୃତି | ୧୯ |
| ହ | ୯ |

ଘ, ଙ, ଝ, ଞ, ଈ, ଠ, ଫ, କ୍ଷ, ଏମାନଙ୍କର ଜ୍ଞାତିବନ୍ଧୁ ନାହାନ୍ତି। ଏମାନେ ଗୋଟିଏ ଗୋଟିଏ।

ଯୁକ୍ତାକ୍ଷର - ✡

ଙ୍କ କ୍ଷ୍ମ ୨, ଙ୍ଖ ଙ୍ଗ ଙ୍ଘ ପ୍ରତ୍ୟେକ ଏକ ଲେଖାଏଁ ,
ଞ୍ଚ ଞ୍ଛ ୩, ଞ୍ଜ ଞ୍ଝ ୨, ଣ୍ଟ ଣ୍ଠ ଣ୍ଡ ଣ୍ଢ ୪, ନ୍ତ ନ୍ଥ ୨,
ନ୍ଦ ନ୍ଧ ୫, ମ୍ପ ମ୍ଫ ମ୍ବ ମ୍ଭ ୮, ଙ୍କ ୨।
୧ରୁ ୯ ପର୍ଯ୍ୟନ୍ତ ସଂଖ୍ୟା [ ଶୂନ୍ୟସହ ] ୧୦
ଅକାର, ଇକାର, ରେଫ ଇକାର [ ] , ବଫଳା,
ମ ଫଳା, ଅନୁସ୍ୱାର, ଚନ୍ଦ୍ରବିନ୍ଦୁ ପ୍ରଭୃତି ୨୪, ଃ [ ଖଣ୍ଡ-
ସ୍ୱାର ], ଓଁ, ଽ [ଅଣାକାନ୍ତି], ଇତ୍ୟାଦି ୬
/, ∥, ///, ////, ୪
+, —, ÷, =, (), [ ], ପ୍ରଭୃତି
ଗାଣିତିକ ଚିହ୍ନ ୮
କମା, ସେମିକୋଲନ, ପ୍ରଶ୍ନ, ପ୍ରଭୃତି ବିରାମ ଚିହ୍ନ ୧୦
ଫୁଟ୍‌ନୋଟ ଚିହ୍ନ ୨
କଟା ଅକ୍ଷର ୩୫
କରେଣ୍ଟ ଅକ୍ଷର ୩୩
କ୍ୱାଡ୍ରେଟ, ସ୍ପେସ୍, ଥିନ୍ ପ୍ରଭୃତି ୬

ମୋଟ ୩୭୫

ଏହିପରି ୩୬୬ଟି ଖୋପରେ ୩୭୫ଟି ଅକ୍ଷର ଘର ବାନ୍ଧି ପିଲାକୁଟୁମ୍ବ ସହିତ ରହିଅଛନ୍ତି। କଟା ଅକ୍ଷରର ସଂଖ୍ୟା ଯେ ୩୫ଟି ଦିଆଯାଇଛି, ସେଥିମଧ୍ୟରୁ ୩୪ଟି ସ୍ୱତନ୍ତ୍ର ଘରେ ଓ ଗୋଟିଏ ଅକ୍ଷର ଗୋଟା ଘରେ ସ୍ଥାନ ପାଇଥାଏ। ଏହା ବ୍ୟତୀତ ଆଉ ଅଧିକ ମଧ୍ୟ କଟା ଅକ୍ଷର ଅଛି। ସେଗୁଡ଼ିକ ନିଜ ନିଜ କର୍ମ ଆଦରି ସ୍ୱଜାତି ଗୋଟା ଘରେ ଆଶ୍ରୟ ନେଇଥାନ୍ତି, ଯଥା କଟାଇ, ଉ ର ସ୍ଥାନ ଯଥାକ୍ରମେ ଗୋଟା ଇ, ଉ ଘରେ ହୋଇଥାଏ।

ମୂଳ ଅକ୍ଷର ଅପେକ୍ଷା ଯୁକ୍ତାକ୍ଷର ଏତେ ବେଶୀ, ସେଗୁଡ଼ିକର ଆକାର ଏପରି ଅଦ୍‌ଭୂତ ଯେ, ତାକୁ ଦେଖିଲେ ନବଶିକ୍ଷାର୍ଥୀ ଚମକି ନ ଉଠି ରହିପାରିବ ନାହିଁ। ତଥାପି

✡ ପ୍ରବାସୀ ଲେଖକ ଙ୍କ, ଙ୍ଗ ପ୍ରଭୃତି ଯୁକ୍ତାକ୍ଷରର ତାଲିକା ଭିନ୍ନ ରୂପେ ପ୍ରକାଶ କରି ନାହାନ୍ତି। କେବଳ ଏହି କେତୋଟି କିମ୍ଭୂତକିମାକାର ଅକ୍ଷର ସମ୍ବନ୍ଧରେ ବିଶେଷ ରୂପେ ଆଲୋଚନା କରିବା ଦରକାର, ତେଣୁ ଏହା ସ୍ୱତନ୍ତ୍ର ଭାବରେ ମୁଁ ପ୍ରକାଶ କଲି।

ଛାପାଖାନାର ସୁବିଧା ଦେଖିବାକୁ ଗଲେ ବର୍ତ୍ତମାନ ଅବସ୍ଥାରେ ସେଗୁଡ଼ିକ ରହିବା ଦରକାର। କରେ ଉକାର ( ୁ ) ଯୋଡ଼ିଦେଲେ କୁ ହେବ; ମାତ୍ର ଅନେକ ସମୟରେ କ ତଳୁ, ସେ ଉକାର ( ୁ ) ଟି ଭାଙ୍ଗିଯାଇ କେବଳ 'କ' ରହିଥାଏ। ପାଠକ କୁ ସ୍ଥାନ କ ଦେଖି ଛାପାଖାନାର ଦୋଷ ନ ଦେଇ ରହିପାରେ ନାହିଁ। ଏ ପର୍ଯ୍ୟନ୍ତ ସୁଦ୍ଧା ଓଡ଼ିଆରେ ଏପରି ଖଣ୍ଡେ ପୁସ୍ତକ ପ୍ରକାଶିତ ହୋଇନାହିଁ, ଯେଉଁଥିରେକି ଏପରି ମାତ୍ରାଭଙ୍ଗା ଦୋଷ ଦେଖା ନଯାଏ। ସେଥିପାଇଁ ଉଦାହରଣ ଦେବା ନିଷ୍ପ୍ରୟୋଜନ। ଓଡ଼ିଆରେ ଯେ କୌଣସି ପୁସ୍ତକର ଯେ କୌଣସି ପୃଷ୍ଠା ଓଲଟାଇ ଦେଖିଲେ ହିଁ ହେଲା।

କେବଳ ଏହି ଅସୁବିଧା ଦୂର କରିବା ସକାଶେ ଛାପାଖାନା କେତେଗୁଡ଼ିଏ ସ୍ୱରବ୍ୟଞ୍ଜନ ବା ବ୍ୟଞ୍ଜନ ବ୍ୟଞ୍ଜନ ଯୁକ୍ତ ଅକ୍ଷର ସ୍ୱତନ୍ତ୍ର ଭାବରେ ତିଆରି କରିବାକୁ ବାଧ୍ୟ ହୋଇଛି; ଯଥା- କ ସ୍ଥାନରେ କୁ, ହି ସ୍ଥାନରେ ହି, ରୀ ସ୍ଥାନରେ ରୀ ଇତ୍ୟାଦି। ସେହିପରି ନ୍ଦ୍ର, ଶ୍ର, ଷ୍ଟ୍ର, ଲ୍ଲ, ର୍ଣ୍ଣ- ଅସଂଖ୍ୟ ରହିଛି। ଯଦି ଏହିପରି ସବୁ ଅକ୍ଷରର ସଂମିଶ୍ରଣରେ ଟାଇପ କରାଯାଇପାରନ୍ତା, ତେବେ ନିଶ୍ଚୟ- 'ପରିଚାଳକ ଗଣନଧ ମିଶ୍ର' ପରିବର୍ତ୍ତେ 'ପରିଚାଳକ ଗୁଣନିଧି ମିଶ୍ର' ପ୍ରକାଶିତ ହୁଅନ୍ତା। ମାତ୍ର ସେପରି ଯୁକ୍ତାକ୍ଷର କରିବାକୁ ହେଲେ, ଓଡ଼ିଆ କମ୍ପୋଜିଟରକୁ ଆହୁରି ଅନ୍ତତଃ ଆଠୋଟି କେସ ଆଦରିବାକୁ ପଡ଼ିବ। ସେତେବେଳେ ଓଡ଼ିଆ ଟାଇପର ସଂଖ୍ୟା ବର୍ତ୍ତମାନ ସଂଖ୍ୟାଠାରୁ ଅନ୍ୟୂନ ଆଠଗୁଣରୁ କମ୍ ହେବ ନାହିଁ।

ଆଗରୁ କହିଛି ଯେ, ଓଡ଼ିଆ କେସ୍‌ରେ କେତେ ଗୁଡ଼ିଏ ଯୁକ୍ତାକ୍ଷର ଆବହମାନ କାଳରୁ ନିଜର ଆଧିପତ୍ୟ ବିସ୍ତାର କରି ରହିଅଛନ୍ତି, ମାତ୍ର ବର୍ତ୍ତମାନ ସମୟରେ କେବେ ହେଲେ ଥରେ ଉପକାରରେ ଆସନ୍ତି ନାହିଁ। ସେହି ଅସ୍ପୃଶ୍ୟ ହରିଜନଗୁଡ଼ିକ ଟାଇପ ସମାଜରୁ ଦୂର ହୋଇଗଲେ ଅନ୍ତତଃ ଓଡ଼ିଆ ଟାଇପର ଅଯଥା ସଂଖ୍ୟାବାହୁଲ୍ୟ କେତେ କମିଯାନ୍ତା। ଙ୍ଗ, ସ୍ପଂ, ଞ୍ଚ, ୧, ଞ୍ଜ, ର, ର୍ଣ୍ଣ (ର୍ଣ୍ଣ ସ୍ୱତନ୍ତ୍ର ଅଛି) ଙ୍କ, ର୍ମ, ର୍ମା ପ୍ରଭୃତି ନିଷ୍କର୍ମା ଦଳଟାର ସ୍ଥାନ କର୍ମଯୁଗରେ ନାହିଁ। ଏଗୁଡ଼ିକ ନିଜ ନିଜ ଲୀଳା ସମ୍ବରଣ କଲେ ଅନ୍ୟକେହି ନ ହୁଅନ୍ତୁ ପଛକେ, ନବଶିକ୍ଷାର୍ଥୀ ଓଡ଼ିଆ କମ୍ପୋଜିଟର ଟିକିଏ ଆଶ୍ୱାସନା ପାଇବ।



# ଓଡ଼ିଆ ବର୍ଣ୍ଣ ଓ ସନ୍ଧି ନିର୍ଣ୍ଣୟ

## ଗୋପୀନାଥ ନନ୍ଦଶର୍ମା

ଭାଷା ସୃଷ୍ଟିର ପ୍ରାକ୍‌କାଳରେ ପ୍ରତ୍ୟେକ ଜାତୀୟ ଲୋକେ ସ୍ୱ ସ୍ୱ ହୃଦୟସଂଭୂତ ଭାବମାନ ନାନାବିଧ ଧ୍ୱନିରେ ପରସ୍ପର ନିକଟରେ ପ୍ରକାଶ କରୁଥିଲେ। କୁକ୍ଷିଗତ ବାୟୁର ଅଭିଘାତରେ କଣ୍ଠ ତାଲୁ ପ୍ରଭୃତିରୁ ଅଭିବ୍ୟକ୍ତ ସେହି ବିବିଧ ଧ୍ୱନ୍ୟାତ୍ମକ ଭାବନିଚୟର ପୃଥକ୍ ପୃଥକ୍ ଲିଖିତ ସ୍ୱରୂପ ଜ୍ଞାପନାର୍ଥ ନାନାପ୍ରକାର ଚିହ୍ନମାନ ନିର୍ଦ୍ଧାରିତ ହେଲା। ପ୍ରୋକ୍ତ ସାଙ୍କେତିକ ଚିହ୍ନମାନଙ୍କ ଦ୍ୱାରା ବିବକ୍ଷିତ ଭାବସଞ୍ଚୟରେ ଗଠିତ ଶବ୍ଦଗତ ଭାଷା ଲିଖିତରୂପେ ବ୍ୟବହୃତ ହେଲା। ତତ୍ ତତ୍ ଭାବଜ୍ଞାପକ ଧ୍ୱନିସମବାୟର ଅନୁଗୁଣ ସାଙ୍କେତିକ ଚିତ୍ରଗୁଡ଼ିକର ନାମ ବର୍ଣ୍ଣ ଓ ଅକ୍ଷର। ଏମାନଙ୍କ ଦ୍ୱାରା ହୃଦ୍ଗତ ଭାବମାନ ବର୍ଣ୍ଣିତ ହୁଅନ୍ତି ବୋଲି ଏବଂ ଭାଷାରେ ଏଗୁଡ଼ିକ ଶାଶ୍ୱତରୂପେ ରହନ୍ତି ବୋଲି ଏମାନଙ୍କର ନାମ ବର୍ଣ୍ଣ ଓ ଅକ୍ଷର ହେଲା। ପ୍ରୋକ୍ତ ଚିହ୍ନମାନଙ୍କ ସମଷ୍ଟିରେ ଶବ୍ଦ ରଚିତ ହୁଏ ବୋଲି ସେଗୁଡ଼ିକୁ ଶବ୍ଦର ଅମିଶ୍ର କ୍ଷୁଦ୍ର ଅଂଶ ମଧ୍ୟ ବୋଲାଯାଏ। ଆମ୍ଭମାନଙ୍କ ଭାଷା ଯେଉଁ ଯେଉଁ ଚିତ୍ରମାନଙ୍କ ଦ୍ୱାରା ଲେଖାଯାଏ, ସେଗୁଡ଼ିକର ନାମ ଓଡ଼ିଆ ବର୍ଣ୍ଣ ବା ଓଡ଼ିଆ ଅକ୍ଷର।

ପ୍ରତ୍ୟେକ ଜାତି ନିଜ ନିଜ ଭାଷାଗତ ଧ୍ୱନିର ବ୍ୟାପକତା ଅନୁସାରେ ଯେତେ ଗୋଟି ବର୍ଣ୍ଣ ଆବଶ୍ୟକ ପଡ଼େ ତେତିକି ମାତ୍ର ସୃଷ୍ଟି କରନ୍ତି। ସମଗ୍ର ଜାତିର ହୃଦ୍‌ଭାବବ୍ୟଞ୍ଜକ ଭାଷାଗତ ଧ୍ୱନି ଏକପ୍ରଖ୍ୟ ନୁହେଁ; ଅତଏବ ଯାବତୀୟ ଭାଷାରେ ବର୍ଣ୍ଣସଂଖ୍ୟା ସମାନ ହୁଏ ନାହିଁ; କିନ୍ତୁ ଅଧିକାଂଶ ଦେଶୀୟ ଭାଷାରେ ଭାରତର ଆଦିମ ଭାଷା ସଂସ୍କୃତରେ ନିର୍ଦ୍ଦିଷ୍ଟ ବର୍ଣ୍ଣସମୂହର ଅନୁକରଣ ବିଦ୍ୟମାନ। ଆମ୍ଭମାନଙ୍କ ଭାଷାଗତ ବର୍ଣ୍ଣଗୁଡ଼ିକର ଆକୃତି ବିଶେଷତଃ ସଂସ୍କୃତ ଭାଷାଗତ ଦେବନାଗରାକ୍ଷରରୁ ଅନୁକୃତ।

ବର୍ଣ୍ଣମାନଙ୍କ ସମୂହକୁ ବର୍ଣ୍ଣସମାମ୍ନାୟ କହନ୍ତି। ବିଶୁଦ୍ଧ ଓଡ଼ିଆ ଭାଷାର ବର୍ଣ୍ଣସମାମ୍ନାୟରେ ବର୍ଣ୍ଣ ସଂଖ୍ୟା ଊନଚତ୍ୱାରିଂଶତ୍ (୩୯) ମାତ୍ର ଅଟେ। ଯଥା-

ଅ, ଆ, ଇ, ଈ, ଉ, ଏ, ଓ, କ, ଖ, ଗ, ଘ, ଙ, ଚ, ଛ, ଜ, ଝ, ଞ, ଟ, ଠ, ଡ, ଢ, ଣ, ତ, ଥ, ଦ, ଧ, ନ, ପ, ଫ, ବ, ଭ, ମ, ଯ, ର, ଲ, ସ, ହ, ଂ, ଁ।

ବର୍ଣ୍ଣ ସବୁ ଦୁଇ ପ୍ରକାର, ସ୍ୱର ଓ ବ୍ୟଞ୍ଜନ। ଅକାର ଠାରୁ ଓକାର ପର୍ଯ୍ୟନ୍ତ ସାତ ଗୋଟି ସ୍ୱରବର୍ଣ୍ଣ, ଅବଶିଷ୍ଟ ବ୍ୟଞ୍ଜନ। ସ୍ୱରବର୍ଣ୍ଣଗୁଡ଼ିକ ବ୍ୟଞ୍ଜନବର୍ଣ୍ଣମାନଙ୍କର ପ୍ରାଣଭୂତ ରହନ୍ତି ବୋଲି ଏମାନଙ୍କର ଅନ୍ୟ ନାମ ପ୍ରାଣ କୁହାଯାଏ। ଯେଉଁ ବର୍ଣ୍ଣମାନେ ଅନ୍ୟ ବର୍ଣ୍ଣର ସାହାଯ୍ୟ ବିନା ଏକାକୀ ଉଚ୍ଚାରିତ ଓ ଅର୍ଥପ୍ରଦ ହୋଇପାରନ୍ତି, ସେଗୁଡ଼ିକର ନାମ ସ୍ୱର। ସ୍ୱର ପୁଣି ଦୁଇ ପ୍ରକାର, ହ୍ରସ୍ୱ ଓ ଦୀର୍ଘ। ଅ, ଇ, ଉ, ଏହି ତିନିଗୋଟି ହ୍ରସ୍ୱ ଏବଂ ଆ, ଈ, ଏ, ଓ ଏହି ଚାରିଗୋଟି ଦୀର୍ଘ ସ୍ୱର ଅଟନ୍ତି।

ବିଶୁଦ୍ଧ ଓଡ଼ିଆ ଭାଷାରେ ଦୀର୍ଘ ଈ କାର ସ୍ତ୍ରୀ ଲିଙ୍ଗ ପ୍ରତ୍ୟୟ ରୂପେ କେବଳ ବ୍ୟବହୃତ ହୁଏ। କେହି କେହି ଈଷତ୍ ପ୍ରଭୃତି ଶବ୍ଦଜାତ ଈସିତ ପ୍ରଭୃତି ତଦ୍ଭବ ଶବ୍ଦରେ ଦୀର୍ଘ ଈ କାରକୁ ପ୍ରୟୋଗ କରିଥାନ୍ତି; କିନ୍ତୁ ଭାଷାତତ୍ତ୍ୱ ବିଚାରରେ ତାହା ଅସଙ୍ଗତ। କାରଣ ମୂଳ ପ୍ରକୃତିଗତ ଦୀର୍ଘଈକାରାଦି ତଦ୍ଭବ ଶବ୍ଦସୃଷ୍ଟିରେ ହ୍ରସ୍ୱ ହୋଇଯାଏ। ତଥାଚ ଊଣା ପ୍ରଭୃତି (ଏପରି ଶବ୍ଦର ସଂଖ୍ୟା ଅତି ଅଳ୍ପ) ଶବ୍ଦର ମୂଳ ପ୍ରକୃତି ଊନ ପ୍ରଭୃତି ସଂସ୍କୃତ ଶବ୍ଦରେ ଦୀର୍ଘ ଊ କାର ଥାଏ ବୋଲି ତଦ୍ଭବ ଶବ୍ଦରେ ମଧ୍ୟ କେତେକ ଲେଖକ ଦୀର୍ଘ ଊ କାର ଯୋଗ କରିଥାନ୍ତି, ମାତ୍ର ତାହା ସମୂଚିତ ନୁହେଁ। ତଦ୍ଭବ ସୃଷ୍ଟିକ୍ରମରେ ପ୍ରାକୃତ ଭାଷାମାନଙ୍କ ରୀତିମତେ ଦୀର୍ଘ ସ୍ୱର ହ୍ରସ୍ୱ ହେବା କେବଳ ବିଧେୟ। ଅତଏବ ଊଣା ପ୍ରଭୃତି ଓ ତାଦୃଶ ଅନ୍ୟାନ୍ୟ ଶବ୍ଦମାନଙ୍କରେ ହ୍ରସ୍ୱ ଲେଖିବା ସାଧୁ ଭାବି ବିଶୁଦ୍ଧ ଓଡ଼ିଆ ଭାଷାରେ ଦୀର୍ଘ ଊ କାର ନାହିଁ ବୋଲିବା କେବଳ ସୁସଙ୍ଗତ।

ଋ ୠ ଌ ୡ ଏହି ସ୍ୱରବର୍ଣ୍ଣ ଚତୁଷ୍ଟୟ କୌଣସି ପ୍ରାକୃତ ଭାଷାରେ ନ ଥିବାରୁ ବିଶୁଦ୍ଧ ଓଡ଼ିଆ ଭାଷାର କୌଣସି ଶବ୍ଦରେ ଗ୍ରାହ୍ୟ ହୋଇନାହିଁ। ଐ ଔ ଏହି ଦୁଇଗୋଟି ସୁଦ୍ଧା ତଦନୁରୂପ। ଐଛିକା (ଏହିକ୍ଷଣି), ତୈଲଙ୍ଗ ପ୍ରଭୃତି ଏବଂ ଡୌଲ (ସୁନ୍ଦର) ପ୍ରଭୃତି କେତେକ ଶବ୍ଦରେ 'ଅ ଇ' ଏବଂ 'ଅ ଉ' ଏହି ବର୍ଣ୍ଣ ଯୁଗ୍ମ ଦ୍ୱୟର ଶୀଘ୍ରୋଚ୍ଚାରଣବଶତଃ ଐ କାର ଏବଂ ଔ କାରର ତୁଲ୍ୟ ଧ୍ୱନି ମାତ୍ର ହୋଇଥାଏ। ଅତଏବ ସେପରି ସ୍ଥଳମାନଙ୍କରେ ଐ ଔ ଯୋଗ ନ କରି ଅଇ ଏବଂ ଅଉ ଯୋଗରେ ଶବ୍ଦ ଲେଖିବା ବିଧେୟ; କାରଣ ଏହି ଯେ ଆମ୍ଭମାନଙ୍କର ବିଶୁଦ୍ଧ ଓଡ଼ିଆ ଭାଷା ବିଶେଷତଃ ପ୍ରାକୃତ ରୀତିରେ ଏକ ପ୍ରକାର ଅପଭ୍ରଂଶିତ ସତ୍ତାରେ ଅନୁପ୍ରାଣିତ ଅଟେ। ପ୍ରାକୃତ ଭାଷାରେ ମଧ୍ୟ ଐ ଏବଂ ଔ ଏ ଦିଓଟି ବର୍ଣ୍ଣ ଗ୍ରାହ୍ୟ ହୁଏ ନାହିଁ, ଓଡ଼ିଆ ଭାଷା ପରି ଐ ସ୍ଥଳରେ ଅଇ, ଔ ସ୍ଥଳରେ ଅଉ ବ୍ୟବହୃତ ହୁଏ। ଯଥା-

ଏ, ଓ, ଅଂ, ମ, ଳ, ପୁରଓ।
ସଅରପୁଏଟହି ବେନିବଣ୍ଣଓ।
କଛତବଗ୍ଗେ ଅନ୍ତା।
ଦହବର୍ଣ୍ଣା ପଢ଼ବେ ଣହ (ହ୍ୱ) ଅନ୍ତି।

ଏ, ଓ , ଅଂ, ମ, ଳ, ଇତି ପଞ୍ଚବର୍ଣ୍ଣାନାଂ ପରତଃ ଐ, ଔ, ଅଃ, ଯ, ବ ଇତି ପଞ୍ଚୈବ; ସକ୍କାରସ୍ୟ ପଶ୍ଚାତ୍ ଦ୍ୱାବପି ବର୍ଣ୍ଣୋ ଶଷୌ; କଚତବର୍ଗାଣାଂ ଅନ୍ତ୍ୟାସ୍ତ୍ରୟଃ ଙ ଞ ନାଃ ସଂଭୂୟ ଦଶବର୍ଣ୍ଣାଃ ପ୍ରାକୃତେ ନ ଭବନ୍ତି। ଇତି ପିଙ୍ଗଳସୂତ୍ର - ଲକ୍ଷ୍ମୀନାଥ ଭଟ୍ଟ ବିରଚିତ ବ୍ୟାଖ୍ୟା।

ପ୍ରାକୃତରେ ଐ ସ୍ଥଳରେ ଅଇ ଔ ସ୍ଥଳରେ ଅଉ ହେବାର ପ୍ରମାଣ। ଯଥା-

ଦୈତ୍ୟାଦିଷୁ ଶବ୍ଦେଷୁ ଐକାରସ୍ୟ 'ଅଇ' ଇତ୍ୟପ୍ରମାଦେଶୋ ଭବତି। ଭୈରବଃ = ଭଇରବୋ।

ପୌରବ ଇତ୍ୟେବମାଦିଷୁ ଶବ୍ଦେଷୁ ଔକାରସ୍ୟ 'ଅଉ' ଇତ୍ୟୟମାଦେଶୋ ଭବତି। କୌରବଃ = କଉରବେ। ଇତି ପ୍ରାକୃତ ପ୍ରକାଶେ ବରରୁଚିଃ।

ଅଭିଜ୍ଞ ପାଠକେ। ଉପରିଦତ୍ତ ପ୍ରାକୃତ ପ୍ରମାଣରୁ ତହିଁରେ ଋ ୠ ଌ ୡ ଏହି ସ୍ୱରଚତୁଷ୍ଟୟ ନ ଥିବାର ପ୍ରମାଣ ପାଇପାରି ନାହାନ୍ତି। କାରଣ ପ୍ରାକୃତରେ ପ୍ରୋକ୍ତ ବର୍ଣ୍ଣଚତୁଷ୍ଟୟ ପ୍ରଥମତଃ ସେହି ଭାଷାର ସ୍ୱାଭାବିକ ଗୁଣରେ ଭିନ୍ନାକାରରେ (ରକାର ଓ ଲକାରରେ ଉକାର ଯୋଗରେ ଏବଂ କେତେକ ଋକାର ବିକାରରେ) ପରିଣତ ହୋଇ ଯାଇଥାଏ ବୋଲି ଆଦୌ ସେଗୁଡ଼ିକରେ ସ୍ୱରଜ୍ଞାନ ନ ଥାଏ। ଅତଏବ ସେଗୁଡ଼ିକର ତ୍ୟାଗ ସମ୍ବନ୍ଧରେ କିଛି ଉକ୍ତ ହୋଇନାହିଁ। ପ୍ରାକୃତରେ କେତେଗୋଟି ସ୍ୱର ? ଏ ଜିଜ୍ଞାସାରେ ତତ୍‌ସମ୍ବନ୍ଧରେ ପ୍ରାକୃତ ବ୍ୟାକରଣରେ ନିର୍ଦ୍ଦିଷ୍ଟ ସ୍ଥଳ ଦେଖିଲେ ସ୍ପଷ୍ଟ ଜାଣିପାରିବେ। ମାଗଧୀ ବା ପାଲୀ ପ୍ରାକୃତ ଭାଷାରେ ଓଡ଼ିଆ ଭାଷା ଅପେକ୍ଷା ଦୁଇଗୋଟି ବର୍ଣ୍ଣ ମାତ୍ର ଅଧିକ। ସେଥିରେ ତଦୀୟ ସତ୍ତାନୁସାରେ ଦୀର୍ଘ ଊକାର ଅବର୍ଗୀୟ ବକାର ଏବଂ ଳୁକାର ବୋଲି ଗୋଟିଏ ଅଧିକ ବର୍ଣ୍ଣ ଗ୍ରାହ୍ୟ ହୋଇଅଛି, କିନ୍ତୁ ଅନୁସ୍ୱାର ଧାର୍ଯ୍ୟ ହୋଇ ନାହିଁ। ଅତଏବ ପାଲୀ ଭାଷାରେ ବର୍ଣ୍ଣସଂଖ୍ୟା ଏକଚତ୍ୱାରିଂଶତ (୪୧) ଅଟେ। ଯଥା-

ଅକ୍‌ଖରାପାଦୟୋ ଏକତ୍ତାଲୀସଂ।
(ଅକ୍ଷରାଣ୍ୟପି ଅଦୟଏକଚତ୍ୱାରିଂଶତ)

ଅ, ଆ, ଇ, ଈ, ଉ, ଊ, ଏ, ଓ, କ, ଖ, ଗ, ଘ, ଙ, ଚ, ଛ, ଜ, ଝ, ଞ, ଟ, ଠ, ଡ଼, ଢ, ଣ, ତ, ଥ, ଦ, ଧ, ନ, ପ, ଫ, ବ, ଭ, ମ, ଯ, ର, ଳ, ବ, ସ, ହ, ଲ୍ଳ, ଏଥିମଧ୍ୟରୁ ସ୍ୱରବର୍ଣ୍ଣ ଆଠଗୋଟି ମାତ୍ର। (ଓଡ଼ିଆ ଅପେକ୍ଷା ଦୀର୍ଘ ଊ ଅଧିକ) ଯଥା-

ତତ୍ରୋଦନ୍ତାସରାଅଟ୍ = (ତତ୍ର ଓଦନ୍ତାଃ ସ୍ୱରା ଅଷ୍ଟୌ) ଅ, ଆ, ଇ, ଈ, ଉ, ଊ, ଏ, ଓ, ଇତି ସରା ନାମ। ଇତି କାତ୍ୟାୟନକୃତ ପାଲୀ ବ୍ୟାକରଣ, ସନ୍ଧିକଳ୍ପ, ପ୍ରଥମ ଖଣ୍ଡ।

ବିଶୁଦ୍ଧ ଓଡ଼ିଆ ଭାଷାରେ "ଅ ଆ ଇ ଈ ଉ ଏ ଓ ସାତଗୋଟି ସ୍ୱରବର୍ଣ୍ଣ ପ୍ରୋକ୍ତ କ୍ରମରେ ଗ୍ରାହ୍ୟ ହୁଏ ସତ୍ୟ, କିନ୍ତୁ ଏଥିରେ ସଂସ୍କୃତ ଶବ୍ଦମାନଙ୍କର ବ୍ୟବହାର ହେବା ସ୍ଥଳରେ ଊ ଋ ଌ ଐ ଔ ଏହି ପାଞ୍ଚଗୋଟି ସ୍ୱରର ଗ୍ରହଣ ଆବଶ୍ୟକ ହୁଏ। ଅତଏବ ଓଡ଼ିଆ ଭାଷାରେ ଏହି ପାଞ୍ଚଗୋଟି ଆଗନ୍ତୁକ ସ୍ୱରରୂପେ ଧାର୍ଯ୍ୟ ହୁଅନ୍ତି, ମାତ୍ର ଦୀର୍ଘ ଋକାର ଓ ଌକାରର ବ୍ୟବହାର କୁତ୍ରାପି ଦେଖାଯାଏ ନାହିଁ।

ଉଭୟଥା ପ୍ରୋକ୍ତ ସ୍ୱର ସମୁଦାୟ ହ୍ରସ୍ୱ ଦୀର୍ଘ ଭେଦତଃ ଦ୍ୱିଧା। ଅ ଇ ଉ ଋ ଌ ଏହି ପାଞ୍ଚଗୋଟି ସ୍ୱରର ଉଚ୍ଚାରଣ ଧ୍ୱନି ଦୀର୍ଘ ସ୍ୱର ଅପେକ୍ଷା ହ୍ରାସ ହୁଏ ବୋଲି ଏଗୁଡ଼ିକ ହ୍ରସ୍ୱ ନାମରେ ଅଭିହିତ।

ଆ ଈ ଊ ଏ ଐ ଓ ଔ ଏହି ସାତଗୋଟି ସ୍ୱରକୁ ଉଚ୍ଚାରଣ କଲା ସମୟରେ ମୁଖ ବିଦାର୍ଯ୍ୟମାଣପ୍ରାୟ ବିସ୍ତୃତ ହୁଏ ବୋଲି ଏଗୁଡ଼ିକ ଦୀର୍ଘ ନାମରେ ଅଭିହିତ।

ସ୍ୱରମାନଙ୍କର ପ୍ଲୁତ ବୋଲି ଆଉ ଗୋଟାଏ ନାମ ହୁଏ; ଅର୍ଥାତ୍ ଉଚ୍ଚାରଣର କାଳଭେଦ ନିବନ୍ଧନ ଦ୍ୱାରା ସମସ୍ତ ସ୍ୱର ହ୍ରସ୍ୱ ଦୀର୍ଘ ଓ ପ୍ଲୁତ ନାମରେ କଥିତ ହୁଅନ୍ତି। ଦୂରାହ୍ୱାନ, ରୋଦନ, ଗାନ ପ୍ରଭୃତିରେ ପ୍ଲୁତ ସ୍ୱରର ବ୍ୟବହାର ହୁଏ। ଏକମାତ୍ରାରେ ଅର୍ଥାତ ଅକ୍ଷିସ୍ପନ୍ଦନ ପରିମିତ କାଳରେ ହ୍ରସ୍ୱର ଉଚ୍ଚାରଣ, ତତ୍ ଦ୍ୱିଗୁଣିତ କାଳରେ ଦୀର୍ଘ ସ୍ୱରର ଉଚ୍ଚାରଣ ଏବଂ ପ୍ଲୁତ ଉଚ୍ଚାରଣ ତତୋଽଧିକ କାଳରେ ହୁଏ।

ଏକମାତ୍ରୋ ଭବେତ୍ ହ୍ରସ୍ୱଃ
ଦ୍ୱିମାତ୍ରୋ ଦୀର୍ଘ ଉଚ୍ୟତେ।
ତ୍ରିମାତ୍ରସ୍ତୁ ପ୍ଲୁତୋ ଜ୍ଞେୟଃ
ବ୍ୟଞ୍ଜନଂ ଚାର୍ଦ୍ଧମାତ୍ରକଂ।

ହ୍ରସ୍ୱ ସ୍ୱର ଏକମାତ୍ରୋଚ୍ଚାରିତ, ଦୀର୍ଘ ସ୍ୱର ଦ୍ୱି-ମାତ୍ରୋଚ୍ଚାରିତ ଏବଂ ପ୍ଲୁତ ସ୍ୱର ତ୍ରିମାତ୍ରୋଚ୍ଚାରିତ ଅଟେ। ଏମାନଙ୍କ ଉଚ୍ଚାରଣ ଧ୍ୱନିର ସାମ୍ୟ ଦେଖାଇବାକୁ ହେଲେ କୁକ୍କୁଟ ଧ୍ୱନିର କ୍ରାମିକ ଯେ ତ୍ରିବିଧ ଧ୍ୱନି ଥାଏ, ତାହାର ପ୍ରଥମ ସ୍ୱରର ତୁଲ୍ୟୋଚ୍ଚାରଣ ହ୍ରସ୍ୱ, ଦ୍ୱିତୀୟ ସ୍ୱରର ତୁଲ୍ୟୋଚ୍ଚାରଣ ଦୀର୍ଘ, ତୃତୀୟ ସ୍ୱରର ତୁଲ୍ୟୋଚ୍ଚାରଣ ପ୍ଲୁତ ଏହାହିଁ ସ୍ଥିର କରିବାକୁ ହେବ।

ସ୍ୱରବର୍ଣ୍ଣମାନ ବ୍ୟଞ୍ଜନବର୍ଣ୍ଣରେ ଯୁକ୍ତ ହେବା ସମୟରେ ଅନ୍ୟ ଆକୃତି ଧାରଣ କରନ୍ତି। ତେତେବେଳେ ଏମାନଙ୍କ ନାମ ଯୁକ୍ତସ୍ୱର। ଯୁକ୍ତ ସ୍ୱରମାନଙ୍କ ଆକୃତି, ଯଥା-

(ଅକାର ଅନ୍ତର୍ନିହିତ ରହେ) ା, ି, ୀ, ୁ ୂ ୃ, ୄ, େ, ୈ, ୋ, ୌ, ଏଗୁଡ଼ିକୁ ବ୍ୟଞ୍ଜନ ବର୍ଣ୍ଣରେ ଯୋଗ କରିବା ପ୍ରଣାଳୀର ନାମ ବର୍ଣ୍ଣଯୋଜନା କିମ୍ୱା ବନା। ଦର୍ଶିତ ଚିହ୍ନଗୁଡ଼ିକର ପ୍ରାତିରୂପିକ ରୀତିରେ ବାଡ଼ି, ଓଡ଼ା ପ୍ରଭୃତି, ପାରିଭାଷିକ ନାମ ମଧ୍ୟ ଲୌକିକ ଭାଷାରେ ଚଳେ।

ଯେଉଁ ବର୍ଣ୍ଣମାନେ ସ୍ୱରସମାମ୍ନାୟର ସାହାଯ୍ୟ ବିନା ସୁସ୍ପଷ୍ଟ ଓ ସ୍ୱତନ୍ତ୍ରରୂପେ ଉଚ୍ଚାରିତ ହୋଇପାରନ୍ତି ନାହିଁ, ସେମାନଙ୍କ ନାମ ବ୍ୟଞ୍ଜନ। ବିଶୁଦ୍ଧ ଓଡ଼ିଆ ଭାଷାରେ ବ୍ୟଞ୍ଜନମାନଙ୍କର ସଂଖ୍ୟା ଦ୍ୱାତ୍ରିଂଶ (୩୨) ଅଟେ। ଯଥା -

କ, ଖ, ଗ, ଘ, ଙ, ଚ, ଛ, ଜ, ଝ, ଞ, ଟ, ଠ, ଡ, ଢ, ଣ, ତ, ଥ, ଦ, ଧ, ନ, ପ, ଫ, ବ, ଭ, ମ, ଯ, ର, ଲ, ସ, ହ, ଂ, ଁ ,

ବ୍ୟଞ୍ଜନବର୍ଣ୍ଣ ସବୁ ପ୍ରଥମତଃ ତ୍ରିଧା; ବର୍ଗ୍ୟ, ଅବର୍ଗୀୟ ଓ ଆଶ୍ରିତ। ଆକମାନ୍ତ (କ ଠାରୁ ମ ଯାଏ) ବର୍ଗ୍ୟ, ଆଯହାନ୍ତ (ଯ ଠାରୁ ହ ଯାଏ) ଅବର୍ଗୀୟ, ଂ, ଁ , ଏ ଉଭୟ ଆଶ୍ରିତ ବର୍ଣ୍ଣ।

କ କାରଠାରୁ ମ କାର ପର୍ଯ୍ୟନ୍ତ ପଞ୍ଚବିଂଶଗୋଟି ଜିହ୍ୱାର ଅଗ୍ର ଉପାଗ୍ର ମଧ୍ୟ ଓ ମୂଳ ସ୍ଥାନକୁ ସ୍ପର୍ଶ କରି ଉଚ୍ଚାରିତ ହୁଅନ୍ତି ବୋଲି ଏମାନଙ୍କର ଅନ୍ୟ ନାମ ସ୍ପର୍ଶବର୍ଣ୍ଣ।

ଯ ର ଲ (ଅବର୍ଗୀୟ ବ) ଏ ବର୍ଣ୍ଣଗୁଡ଼ିକ ସ୍ପର୍ଶବର୍ଣ୍ଣ ଓ ଉଷ୍ମବର୍ଣ୍ଣର ଅନ୍ତ ଅର୍ଥାତ୍ ମଧ୍ୟରେ ନିହିତ ଥିବାରୁ ଏମାନଙ୍କୁ ଅନ୍ତସ୍ଥ ବା ମଧ୍ୟସ୍ଥ ବର୍ଣ୍ଣ ମଧ୍ୟ କହନ୍ତି।

ଅନୁସ୍ୱାର ଓ ଚନ୍ଦ୍ରବିନ୍ଦୁ ଏ ଦିଓଟି ଅନ୍ୟ ବର୍ଣ୍ଣର ଆଶ୍ରୟ ବ୍ୟତିରେକେ ଉଚ୍ଚାରିତ ହୋଇ ପାରନ୍ତି ନାହିଁ ବୋଲି ଆଶ୍ରିତ ବର୍ଣ୍ଣ ନାମରେ ଅଭିହିତ।

ସ, ହ, (ଶ ଓ ଷ) ଏ ବର୍ଣ୍ଣମାନେ ଉଷ୍ମବର୍ଣ୍ଣ; କାରଣ ଏମାନଙ୍କ ଉଚ୍ଚାରଣ ସମୟରେ ବାୟୁର ପ୍ରାଧାନ୍ୟବଶତଃ ଅନ୍ତର୍ଗତ ଉଷ୍ମ ଅପେକ୍ଷାକୃତ ଟିକିଏ ଅଧିକ ବହିର୍ଗତ ହୁଏ।

ଙ ଞ -ବିଶୁଦ୍ଧ ଓଡ଼ିଆ ଭାଷାରେ ଙ, ଞ ଏ ଦୁଇ ବର୍ଣ୍ଣ ସଂଯୁକ୍ତାକ୍ଷରରେ ମାତ୍ର ନିହିତ ଥାଏ, କୁତ୍ରାପି ପୃଥକ୍ ରହେ ନାହିଁ।

ଣ -ଣ କାର ଶବ୍ଦର ଆଦିରେ କୁତ୍ରାପି ରହେ ନାହିଁ, ମଧ୍ୟ ଓ ଶେଷରେ ମାତ୍ର ଥାଏ।

ଳ -ଳ କାର ଶବ୍ଦର ଆଦିରେ କୁତ୍ରାପି ରହେ ନାହିଁ। ପ୍ରଥମତଃ ସ୍ୱରନିର୍ଦ୍ଧାରଣ ସ୍ଥଳରେ ପ୍ରାକୃତରେ ଯକାର ଓ ଅବର୍ଗୀୟ ବ କାର ନ ଥିବାର ପ୍ରମାଣ ଉଲ୍ଲେଖ କରିଅଛୁ।

ସେହି ଲକ୍ଷଣଟି ସମଗ୍ର ପ୍ରାକୃତ ରାଜ୍ୟରେ ଚଳେ ନାହିଁ। ଅନେକ ସ୍ଥଳରେ ତାହାର ଅବ୍ୟାପ୍ତି ଘଟେ। ଶୌରସେନୀ ଆଦି ପ୍ରାକୃତରେ ଆଦିଭୂତ ଯକାରର ମାତ୍ର ଜ କାର ହୁଏ। (ଅନ୍ୟ କେତେକ ସ୍ଥଳରେ ଯ କାର ସସ୍ୱରୂପରେ ଥାଏ) ଯଥା-

ଆଦିଭୂତ ଯକାରସ୍ୟ ଜକାରୋ ଭବତି।

(ପ୍ରା.ପ୍ର. ଦ୍ୱିତୀୟ ପରିଚ୍ଛେଦ)

କିନ୍ତୁ ମାଗଧୀ ପ୍ରାକୃତରେ ସର୍ବତ୍ର ଯ କାର ରହେ। ପ୍ରଭୂତ ଜ କାରର ମଧ୍ୟ ଯ କାର ହୁଏ। ଯଥା-

ଜୋ ଯଃ - ଜକାରଃ ଯକାରୋ ଭବତି।

ଜାୟତେ - ଯାୟତେ। ଇତି ପ୍ରା.ପ୍ର. ଏକାଦଶ ପରିଚ୍ଛେଦ।

ଅତଏବ ପାଲୀ ପ୍ରାକୃତ ବ୍ୟାକରଣରେ ଯକାର ଗ୍ରାହ୍ୟ ହୋଇଅଛି। ଏହାର ପ୍ରମାଣ ଇତି ପୂର୍ବେ ଉଲ୍ଲେଖ କରିଅଛୁ। ବିଶୁଦ୍ଧ ଓଡ଼ିଆ ଭାଷା ପ୍ରାକୃତ ଭାଷାମାନଙ୍କ ସତ୍ତାରେ ଅନୁପ୍ରାଣିତ ଥିବାରୁ ତଦୀୟ ଏକୈକଦେଶାନୁକରଣରେ ଓଡ଼ିଆରେ କଥିତ ଓ ଲିଖିତ ରୂପରେ ଯକାର ଓ ଜକାରର ବହୁସ୍ଥଳରେ ତାଦୃଶ ପ୍ରଭେଦ ଦେଖାଯାଏ ନାହିଁ ସତ୍ୟ, କିନ୍ତୁ ସଂସ୍କୃତ ଶବ୍ଦଜାତ (ତଦ୍‌ଭବ) ଶବ୍ଦମାନଙ୍କୁ ଲେଖିବା ସ୍ଥଳରେ ତଦୀୟ ମୂଳ ପ୍ରକୃତି ସଂସ୍କୃତର ଅନୁସରଣରେ ଯକାର କେବଳ ଲେଖିବାକୁ ହୁଏ। କେବଳ ପ୍ରାକୃତର ଏକଦେଶାନୁକରଣ କରି ଓଡ଼ିଆ ଭାଷାରୁ ଯକାର ବା ୟକାର ଉଠାଇ ଦେବାକୁ ଗଲେ ବୟସୀ, ବୟାଳିସ, ୟାକୁ, ୟାର, ଇତ୍ୟାଦି ପଦରେ ଆପତ୍ତି ଘଟେ। ଅତଏବ ବିଶୁଦ୍ଧ ଓଡ଼ିଆ ଭାଷାରେ ମଧ୍ୟ ଯକାର ଓ ୟକାର ଆବଶ୍ୟକମତେ ଗ୍ରାହ୍ୟ ହୁଏ। ଏହି ଯକାର ଶବ୍ଦ ମଧ୍ୟରେ ଅକାରାଦି ସ୍ୱର ଓ କକାରାଦି ବ୍ୟଞ୍ଜନ ବର୍ଣ୍ଣରୁ ପରେ ଦ୍ୱିତୀୟ ବର୍ଣ୍ଣ ହେଲେ ୟକାର ହୋଇଥାଏ। ମାତ୍ର ଅବର୍ଗୀୟ ବକାରର ବ୍ୟବହାର କୌଣସି ପ୍ରାକୃତ ଭାଷାରେ ନଥିବାରୁ ଓଡ଼ିଆ ଭାଷାରେ ଗ୍ରାହ୍ୟ ହୁଏ ନାହିଁ; ପ୍ରତ୍ୟୁତ ସଂସ୍କୃତ ଶବ୍ଦଗତ ଅବର୍ଗୀୟ ବକାର ସୁଦ୍ଧା ଅକାରତଃ ଓ ଉଚ୍ଚାରଣତଃ ବର୍ଗୀୟ ବକାରରେ ପରିଣତ ହୁଏ।

ଶିଷୟୋଃ ସଃ-ସର୍ବତ୍ର ଶକାରଷକାରୟୋଃ ସକାରୋ ଭବତି। ପ୍ରା. ପ୍ରକାଶ। ପ୍ରାକୃତରେ ପ୍ରାୟ ସର୍ବତ୍ର ଶକାର ଓ ଷକାରର ସକାର ହେଉଥିବାରୁ ବିଶୁଦ୍ଧ ଓଡ଼ିଆ ଭାଷାରେ ମଧ୍ୟ ତଦନୁରୂପ ଚଳିବାରେ କୌଣସି ଆପତ୍ତି ନ ଥିବାରୁ ଶକାର ଓ ଷକାର ଗ୍ରାହ୍ୟ ହୁଏ ନାହିଁ ସତ୍ୟ, କିନ୍ତୁ ଏଥିରେ ସଂସ୍କୃତ ଶବ୍ଦମାନଙ୍କର ବ୍ୟବହାର ପ୍ରଚୁର ଥିବା ଯୋଗୁ ସଂସ୍କୃତ ଶବ୍ଦ ଦେବା ସ୍ଥଳରେ 'ଶ ଓ ଷ' ଏହି ବର୍ଣ୍ଣଦ୍ୱୟକୁ ସକାରରେ ପରିଣତ ନ କରି ସସ୍ୱରୂପରେ ଲେଖିବାକୁ ହୁଏ। ଅତଏବ ପ୍ରୋକ୍ତ ବର୍ଣ୍ଣଦ୍ୱୟ ଆଗନ୍ତୁକ ବର୍ଣ୍ଣସ୍ୱରୂପ ଗ୍ରାହ୍ୟ ଅଟେ।

ସଂସ୍କୃତମତେ ଂ, ଃ ଏ ଦିଓଟି ଅଯୋଗବାହ ବର୍ଣ୍ଣ, କାରଣ ବ୍ୟାକରଣର ସୃଷ୍ଟିକର୍ତ୍ତା ପୂଜ୍ୟପାଦ ପାଣିନି ସମସ୍ତ ବର୍ଣ୍ଣମାନଙ୍କ ସଂଜ୍ଞା ମଧ୍ୟରେ ଏ ଉଭୟ ବର୍ଣ୍ଣର ଯୋଗ ଅର୍ଥାତ୍ ପ୍ରସ୍ତାବ କରି ନାହାନ୍ତି। ଏ ହେତୁରୁ 'ଅଯୋଗ' ପ୍ରସ୍ତାବ କରାଯାଇ ନ ଥିଲେ ସୁଦ୍ଧା କାର୍ଯ୍ୟନିର୍ବାହ କରନ୍ତି ବୋଲି 'ବାହ' ଏହି ଉଭୟ ଧର୍ମରେ ଆକ୍ରାନ୍ତ ଥିବାରୁ ଅଯୋଗବାହ ନାମ ହେଲା। କିନ୍ତୁ ଓଡ଼ିଆରେ ବିସର୍ଗର ବ୍ୟବହାର ନାହିଁ, ପରନ୍ତୁ ପ୍ରାକୃତାନୁସରଣରେ ଅନୁସ୍ୱାରର ଅର୍ଦ୍ଧମାତ୍ରା ଚନ୍ଦ୍ରବିନ୍ଦୁର ବ୍ୟବହାର ହୁଏ। ଏମାନେ ଅନ୍ୟ ବର୍ଣ୍ଣକୁ ସର୍ବଦା ଆଶ୍ରୟ କରୁଥିବାରୁ ଆଶ୍ରିତ ବର୍ଣ୍ଣ ନାମରେ ନାମିତ ହେଲେ। ଅନେକେ ଅନୁସ୍ୱାର (ବିସର୍ଗ) ଓ ଚନ୍ଦ୍ରବିନ୍ଦୁକୁ ଉଭୟାକ୍ଷର ନାମରେ ନାମିତ କରନ୍ତି। ତ୍ରୈଲଙ୍ଗ ଭାଷାରେ ସୁଦ୍ଧା ଏମାନେ ଉଭୟାକ୍ଷର ବୋଲି ପରିଗଣିତ, ଅର୍ଥାତ୍ ସ୍ୱରରେ ସ୍ୱରରୂପରେ ବ୍ୟଞ୍ଜନରେ ବ୍ୟଞ୍ଜନ ରୂପରେ ରହନ୍ତି ବୋଲି ନିର୍ଦ୍ଧାର୍ଯ୍ୟ। ଏମାନଙ୍କ ପ୍ରକୃତ ବା ମୂଳରୂପ ମକାର ଓ ସକାର (ବ୍ୟଞ୍ଜନ) ହେଲେହେଁ ସ୍ୱର ଓ ବ୍ୟଞ୍ଜନ ନିର୍ବିଶେଷରେ ବର୍ଣ୍ଣମାନଙ୍କ ସଙ୍ଗେ ଯୁକ୍ତ ରହୁଥିବାରୁ ଉଭୟାକ୍ଷରରେ ଧାର୍ଯ୍ୟ ହେବା ଅସଙ୍ଗତ ବୋଧହୁଏ ନାହିଁ।

ବର୍ଗୀୟ ବର୍ଣ୍ଣମାନେ ଯଥାକ୍ରମେ ପାଞ୍ଚ ପାଞ୍ଚ ବର୍ଣ୍ଣରେ କ ଚ ଟ ତ ପ ନାମକ ପାଞ୍ଚ ବର୍ଗରେ ବିଭକ୍ତ। ପ୍ରତ୍ୟେକ ବର୍ଗର ପ୍ରଥମ, ତୃତୀୟ ଓ ପଞ୍ଚମ ବର୍ଣ୍ଣମାନଙ୍କର ଉଚ୍ଚାରଣ କୋମଳ ବା ମୃଦୁ ହେବାରୁ ଏଗୁଡ଼ିକୁ ସରଳ ଓ ଅଳ୍ପପ୍ରାଣ ବର୍ଣ୍ଣ ଏବଂ ଦ୍ୱିତୀୟ ଓ ଚତୁର୍ଥ ବର୍ଣ୍ଣମାନଙ୍କର ଉଚ୍ଚାରଣ କଠିନ ହେବାରୁ ଏଗୁଡ଼ିକୁ ପରୁଷ ଓ ମହାପ୍ରାଣ ବର୍ଣ୍ଣ କହନ୍ତି। କେହି କେହି ପ୍ରୋକ୍ତ ଉଚ୍ଚାରଣ ବିଭାଗକୁ ଲଘୁ ଗୁରୁ କହନ୍ତି; ତାହା ଅସଙ୍ଗତ, କାରଣ ଲଘୁଗୁରୁକ୍ରମ ଅନ୍ୟଥା ଅଛି।

ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣମାନଙ୍କର ଉତ୍ପତ୍ତିସ୍ଥାନ ଆଠଗୋଟି, ଯେଉଁ ଯେଉଁ ବର୍ଣ୍ଣ ଯେଉଁ ଯେଉଁ ସ୍ଥାନରୁ ଉତ୍ପନ୍ନ ବା ଉଚ୍ଚାରିତ, ତତ୍ ତତ୍ ସ୍ଥାନାନୁସାରେ ସେମାନଙ୍କର ପୃଥକ୍ ପୃଥକ୍ ନାମ ହୁଏ। ଆଠଗୋଟି ସ୍ଥାନ, ଯଥା- ବକ୍ଷଃସ୍ଥଳ, କଣ୍ଠ, ମୂର୍ଦ୍ଧା, ଜିହ୍ୱାମୂଳ, ଦନ୍ତ, ନାସିକା, ଓଷ୍ଠ ଓ ତାଳୁ।

୧. ଅ ଆ ହ ଏମାନେ କଣ୍ଠରୁ ଉଚ୍ଚାରିତ ହେବାରୁ କଣ୍ଠ୍ୟ ବର୍ଣ୍ଣ।

୨. କ ବର୍ଗସ୍ଥ ପାଞ୍ଚଗୋଟି ବର୍ଣ୍ଣ ଜିହ୍ୱାମୂଳରୁ ଉଚ୍ଚାରିତ ହେବାରୁ ଜିହ୍ୱାମୂଳୀୟ। ଜିହ୍ୱାମୂଳ ଓ କଣ୍ଠର ଅତି ନୈକଟ୍ୟ ଥିବାରୁ କେତେକ ବୈୟାକରଣ କ ବର୍ଗକୁ ସୁଦ୍ଧା କଣ୍ଠ୍ୟବର୍ଣ୍ଣ କହନ୍ତି। ଯଥା- ଅକୁହବିସର୍ଜନୀୟାନାଂ କଣ୍ଠଃ । ସ୍ୱ.ବୋ.

୩. ଇ ଈ ଚ ବର୍ଗ ଯ ଶ ଏମାନଙ୍କର ଉଚ୍ଚାରଣ ସ୍ଥାନ ତାଳୁ ହେବାରୁ ଏମାନଙ୍କ ନାମ ତାଳବ୍ୟ।

୪. ଋ ୠ ଟ ବର୍ଗ ର ଷ ଏମାନେ ମୂର୍ଦ୍ଧାରୁ ଉଚ୍ଚାରିତ ହେବାରୁ ଏମାନଙ୍କ ନାମ ମୂର୍ଦ୍ଧନ୍ୟ ବର୍ଣ୍ଣ।

୫. ଌ ତ ବର୍ଗ ଲ (ଳ) ସ ଏମାନେ ଦନ୍ତରୁ ଉଚ୍ଚାରିତ ହେବାରୁ ଦନ୍ତ୍ୟ ବର୍ଣ୍ଣ।

୬. ଉ ଊ ପ ବର୍ଗ ଏମାନଙ୍କର ଉଚ୍ଚାରଣ ସ୍ଥାନ ଓଷ୍ଠ ହେବାରୁ ଏମାନେ ଓଷ୍ଠ୍ୟ ବର୍ଣ୍ଣ।

୭. ଏ ଐ ଏ ଦିଓଟି କଣ୍ଠ ଓ ତାଲୁରୁ ଉଚ୍ଚାରିତ ହେବାରୁ କଣ୍ଠତାଲବ୍ୟ ବର୍ଣ୍ଣ।

୮. ଓ ଔ ଏ ଦିଓଟି କଣ୍ଠ ଓ ଓଷ୍ଠରୁ ଉଚ୍ଚାରିତ ହେବାରୁ କଣ୍ଠୌଷ୍ଠ୍ୟ ବର୍ଣ୍ଣ।

୯. ଅନୁସ୍ୱାର ଓ ଚନ୍ଦ୍ରବିନ୍ଦୁ ଏବଂ ଙ, ଞ, ଣ, ନ, ମ ଏଗୁଡ଼ିକ ନାସିକାକୁ ଅନୁସରି ଉଚ୍ଚାରିତ ହେବାରୁ ଏମାନଙ୍କ ନାମ ଅନୁନାସିକ। (ନାସିକାନ୍‌ଗତା ଇତ୍ୟନୁନାସିକଃ)

୧୦. ହକାର ଯେତେବେଳେ ଙ, ଞ, ଣ, ନ, ମ, ଯ, ର, ଲ ଏବଂ ବ କାରରେ ସଂଯୁକ୍ତ ହୁଏ, ତେତେବେଳେ ଉରଃସ୍ଥଳରୁ ଉଚ୍ଚାରିତ ହୋଇଥାଏ ବୋଲି ତାହାର ନାମ ଔରସ୍ୟ ବର୍ଣ୍ଣ ହୁଏ। ଯଥା -

ହକାରଂ ପଞ୍ଚଭିର୍ଯୁକ୍ତଂ ଅନ୍ତସ୍ଥାଭିଶ୍ଚ ସଂଯୁତଂ।
ଔରସ୍ୟଂ ତଂ ବିଜାନୀୟାଃ କଣ୍ଠ୍ୟମାହୁଃ ଅସଂଯୁତଂ।
ପଞ୍ଚଭିଃ = ଙ ଞ ଣନମୈଃ।

ଏହା ହେଉଛି ବର୍ଣ୍ଣମାନଙ୍କର ଜନ୍ମସ୍ଥାନାନୁଗତ ଉଚ୍ଚାରଣକ୍ରମ। ଉଚ୍ଚାରଣ ବୋଇଲେ କ'ଣ ? ଏହି ପ୍ରଶ୍ନର ଉତ୍ତରକୁ ସ୍ଥୂଳତଃ ବ୍ୟାଖ୍ୟା କଲେ ଏହାହିଁ ହେବ ଯେ ବିବକ୍ଷୁର ବିବକ୍ଷିତ ଭାବପ୍ରକାଶର ଅନୁଗତ ହୃଦୟାଦିସସ୍ଥ ପ୍ରାଣାଖ୍ୟ ପ୍ରଭୃତି ବାୟୁର ଆଘାତରେ ମୁଖଯନ୍ତ୍ରରୁ ଯେଉଁ ନାମରେ ଧ୍ୱନ୍ୟାତ୍ମକ ଶବ୍ଦ ବାହାରେ, ସେହି ବ୍ୟାପାରର ନାମ ଉଚ୍ଚାରଣ। ଏହି କ୍ରମ କେବଳ ସଂସ୍କୃତର ଶିକ୍ଷାଶାସ୍ତ୍ରରେ ଟିକିଏ ବିସ୍ତୃତ ଭାବରେ ବ୍ୟାଖ୍ୟାତ ହୋଇଅଛି।

ଯଥା- ଆତ୍ମା ବୁଦ୍ଧ୍ୟା ସମେତ୍ୟର୍ଥାନ୍ ମନୋଯୁଙ୍‌କ୍ତେ ବିବକ୍ଷୟା।
ମନଃ କାୟାଗ୍ନି ମାହନ୍ତି ସପ୍ରେରୟତି ମାରୁତଂ।
ସୋଦୀର୍ଣ୍ଣେ ମୂର୍ଦ୍ଧ୍ନ୍ୟଭିହତେ ବକ୍ତ୍ରମାତ୍ରାଦ୍ୟ ମାରୁତଃ।
ବର୍ଣ୍ଣାନ୍ ଜନୟତେ ତେଷାଂ ବିଭାଗଃ ପଞ୍ଚଧା ମତଃ। ଇତ୍ୟାଦି।

ସଂସ୍କୃତରେ ବର୍ଣ୍ଣମାନଙ୍କରେ ଉଚ୍ଚାରଣଜ୍ଞାନର ସୌକାର୍ଯ୍ୟାର୍ଥ ଜନ୍ମସ୍ଥାନାନୁଗତ କ୍ରମ ଛଡ଼ା ଉଚ୍ଚାରଣପ୍ରଯତ୍ନାନୁଗତ ସ୍ପୃଷ୍ଟ ଈଷତ୍ ସ୍ପୃଷ୍ଟ ସଂବୃତ ବିବୃତ ପ୍ରଭୃତି ନାମକ୍ରମେ ଆହୁରି ଅନେକ ପ୍ରକାର ଉପାୟମାନ ଉକ୍ତ ଅଛି। ସେ ସବୁ ସଂସ୍କୃତର ବିଶେଷତଃ ବେଦର ପାଠରେ ଉପଯୋଗୀ। ଭାଷାରେ ସର୍ବତ୍ର ଅଭିଜ୍ଞ ସମାଜରେ ଆବହମାନ ପ୍ରଚଳିତ

ଯଥାପ୍ରଯୁକ୍ତ ଉଚ୍ଚାରଣକ୍ରମ କେବଳ ଆବଶ୍ୟକମତେ ଅନୁକରଣୀୟ କଲେ ଉଚ୍ଚାରଣର ସଦୁପାୟ ସର୍ବସାଧାରଣଙ୍କର ସୁକର ବା ସୁଗମ ହେବ। କିନ୍ତୁ ସମୁଚିତ ଉଚ୍ଚାରଣ କେବଳ ଭାଷାର ସୌଷ୍ଠବ ଓ ସତ୍ତାର ପରିରକ୍ଷକ ଅଟେ। ଉପଯୁକ୍ତ ଉଚ୍ଚାରଣ ନକଲେ କିମ୍ବା ଉଚ୍ଚାରିତ ଧ୍ୱନିର ସଦୃଶ ବର୍ଣ୍ଣଯୋଜନା ନ କଲେ ଭାଷା ବିକଳ ବା ବିଗତସତ୍ୱ ଏବଂ ବିକୃତ ହୋଇପଡ଼େ। ତଦୀୟ ସ୍ୱାଭାବିକ ସୌନ୍ଦର୍ଯ୍ୟ ରହେନାହିଁ। ଅତଏବ ଭାଷାଗତ ଉଚ୍ଚାରଣ ଅନୁସାରେ ସର୍ବତ୍ର ସ୍ୱର ଓ ବ୍ୟଞ୍ଜନମାନଙ୍କର ଯୋଗ କରିବା ବିଧେୟ। ତଥାପି ଯେଉଁ ଯେଉଁ ସ୍ଥଳରେ ବକ୍ତାଙ୍କର ଭାବବିଶେଷ ସୂଚନାର୍ଥ ମାତ୍ର ହ୍ରସ୍ୱର ଦୀର୍ଘ ଉଚ୍ଚାରଣ ହୋଇଥାଏ, ସେପରି ସ୍ଥଳମାନଙ୍କରେ ଦୀର୍ଘସ୍ୱର ଯୋଗ ନ କରି ପ୍ରୋକ୍ତ ଶବ୍ଦର ସାହଜିକ ହ୍ରସ୍ୱ ସ୍ୱର କେବଳ ଯୋଗ କରିବା ବିଧେୟ। ଦୃଷ୍ଟାନ୍ତ ସ୍ୱରୂପ, "ହାୟ ! ସେ କି କଲେ, ଏହା ଅପେକ୍ଷା ତାହା ଖୁବ୍ ବଡ଼" ଇତ୍ୟାଦି ସ୍ଥଳମାନଙ୍କରେ ବିବକ୍ଷିତ ତତ୍ ତତ୍ ଦୋଷ ଗୁଣାଦିର କିଞ୍ଚିତ୍ ଆଧିକ୍ୟ ସୂଚନାର୍ଥ ରେଖାଙ୍କିତ ଶବ୍ଦଗତ ଇକାର ଓ ଉକାରର ଦୀର୍ଘ ଉଚ୍ଚାରଣ ହୋଇଥାଏ। କିନ୍ତୁ ତତ୍ ତତ୍ ସ୍ଥାନୀୟ ସ୍ୱର ସ୍ୱଭାବତଃ ଦୀର୍ଘ ନୁହେଁ। କେହି କେହି କହନ୍ତି ଯେ, ଏପରି ଦୀର୍ଘ ଉଚ୍ଚାରଣ ଯୋଗ ସ୍ଥଳରେ ସୁଦ୍ଧା ଦୀର୍ଘ ସ୍ୱର ଯୋଗ କରିବାକୁ ହେବ। ମାତ୍ର ତାହା କଥଞ୍ଚିତ୍ ସଙ୍ଗତ ନୁହେଁ। ଯଦି ଏପରିସ୍ଥଳରେ ଅସ୍ୱାଭାବିକ ଦୀର୍ଘ ଯୋଗ କରିବାକୁ ଚାହଁ, ତେବେ ଦୂରାହ୍ୱାନ ଗାନାଦିରେ ହ୍ରସ୍ୱ ସ୍ୱରର ଦୀର୍ଘ ବା ପ୍ଳୁତ ଉଚ୍ଚାରଣର କ୍ରମାନୁମତେ ସର୍ବତ୍ର ଦୀର୍ଘ ଯୋଗରେ ଲେଖିବାକୁ ହେବ। ତାହା ହେଲେ ନିୟମରାହିତ୍ୟରୁ ଭାଷା କଦର୍ଯ୍ୟ ହୋଇପଡ଼ିବ। ବକ୍ତା ବା ଲେଖକଙ୍କର ସ୍ୱେଚ୍ଛାଚାର ଯଥେଷ୍ଟ ହେବା ସଙ୍ଗେ ସଙ୍ଗେ ଏହି କୋମଳ ସ୍ୱଭାବ ସୌନ୍ଦର୍ଯ୍ୟବତୀ ଭାଷାର କୋମଳତା ଓ ସୌନ୍ଦର୍ଯ୍ୟ ରହିବ ନାହିଁ। ଅତଏବ ହ୍ରସ୍ୱର ବିଶେଷ କାରଣବଶତଃ ସମାପତିତ ଦୀର୍ଘ ବା ପ୍ଳୁତ ଉଚ୍ଚାରଣରେ ଯେପରି ହ୍ରସ୍ୱରୂପ କେବଳ ଲେଖାଯାଏ, ଭାବବିଶେଷ ସୂଚନାର୍ଥ ହ୍ରସ୍ୱର ଦୀର୍ଘୋଚ୍ଚାରଣରେ ସୁଦ୍ଧା ସେପରି ହ୍ରସ୍ୱରୂପ ଲେଖିବା ବିଧେୟ। ସଂସ୍କୃତ ଭାଷାରେ ସୁଦ୍ଧା ବକ୍ତାଙ୍କ ବକ୍ତୃତାରେ ଓ ପାଠକଙ୍କର ପଠନ-ପରମ୍ପରାରେ ଭାବବିଶେଷ ସୂଚନାର୍ଥ ହ୍ରସ୍ୱର ଦୀର୍ଘ ଉଚ୍ଚାରଣ କରାଯାଏ। ସେଥିରେ କ'ଣ ହ୍ରସ୍ୱ ସ୍ଥଳରେ ଦୀର୍ଘ ଯୋଗ କରାଯାଏ କି ? କିନ୍ତୁ ତତ୍ ତତ୍ ଭାବବିଶେଷର ବ୍ୟକ୍ତୀକରଣାର୍ଥ ପ୍ରୋକ୍ତ ବର୍ଣ୍ଣ ତଳେ ରେଖା କିମ୍ବା ଅନ୍ୟ କୌଣସିପ୍ରକାର ସାଙ୍କେତିକ ଚିହ୍ନ ଦିଆଯାଇପାରେ।

କେହି କେହି କହନ୍ତି କି ଜକାର ଏବଂ ଯକାରର ଏକୋଚ୍ଚାରଣ ବା ତୁଲ୍ୟୋଚ୍ଚାରଣବଶରୁ ବଙ୍ଗ ଭାଷା ପରି ଓଡ଼ିଆ ଭାଷାରେ ସୁଦ୍ଧା ଅପବ୍ୟବହାର ହୁଏ। କିନ୍ତୁ

ସେମାନଙ୍କର ଏହି ଧାରଣା ଅଯଥୋଚ୍ଚାରମାନଙ୍କର ବିକୃତ ଉଚ୍ଚାରଣ କିମ୍ବା ଅନଭିଜ୍ଞମାନଙ୍କ ବ୍ୟାବହାରିକ କଥନର ଅଯଥୋଚ୍ଚାରିତ ବଚନ ଶ୍ରବଣରୁ ଜନ୍ମିଅଛି। ଯେଉଁମାନେ ଠିକ୍ ଉଚ୍ଚାରଣ କରି ଜାଣନ୍ତି ନାହିଁ କିମ୍ବା ଅନ୍ୟ ଭିନ୍ନ ସତ୍ତ୍ୱ ଭାଷାର ବିତାଡ଼ନାରେ ଯେଉଁମାନଙ୍କର ବାକ୍ ଶକ୍ତି ଅଭିଭୂତ ବା ବିକୃତ, ସେମାନଙ୍କର ଉଚ୍ଚାରଣ ଗ୍ରାହ୍ୟ ନୁହେଁ। ଜକାର ଏବଂ ଯକାରର ଉଚ୍ଚାରଣ କୁତ୍ରାପି ଏକପ୍ରଖ୍ୟ ହୁଏନାହିଁ। ଜକାରର ଉଚ୍ଚାରଣ ଅପେକ୍ଷା ଯକାରର ଉଚ୍ଚାରଣରେ ମୁଖାଗ୍ର କୁଞ୍ଚନ କିଞ୍ଚିତ୍ ଅଧିକ ହୁଏ। (ପୁଣି ଯକାରର ଉଚ୍ଚାରଣରେ ମୁଖାଗ୍ର କୁଞ୍ଚନ କୋମଳତା ତତୋଽଧିକ ହୁଏ।) ଜନ୍ତ, ଯନ୍ତ ଏ ଦିଓଟି ଶବ୍ଦ ସମ୍ୟକ୍ ଉଚ୍ଚାରଣ କରନ୍ତୁ, ଜ ଓ ଯର ଭିନ୍ନୋଚ୍ଚାରଣତାକୁ ଉପଲବ୍ଧି କରିପାରିବେ। ଅତଏବ 'ଓଡ଼ିଆରେ ଜକାର ଓ ଯକାରର ଉଚ୍ଚାରଣ ଏକ ଥିବାରୁ ଅପବ୍ୟବହାର ହୁଏ" ଏପରି କହିବା ଅନୁଚିତ। କିନ୍ତୁ ତଭବ ଶବ୍ଦଗତ ପ୍ରୋକ୍ତ ବର୍ଣ୍ଣଦ୍ୱୟ ସ୍ଥଳରେ କଥିତ ଭାଷାରେ ବା କହିବା ସମୟରେ ଉଚ୍ଚାରଣ ଏକ କରି ଲିଖିତ ଭାଷାରେ ବା ଲେଖିବା ସମୟରେ ଭିନ୍ନ କରିବା ଅର୍ଥାତ୍ ଜକାର ଉଚ୍ଚାରଣ କରି ଯକାର ଲେଖିବାଦ୍ୱାରା କେତେକସ୍ଥଳରେ ଅପବ୍ୟବହାର କରାଯାଇପାରେ। ଅନେକ ତଭବ ଶବ୍ଦରେ ମୌଳିକ ଯକାରର ଭିନ୍ନାକୃତିରେ ପରିଣତ ଜକାରର ରୂପକୁ ମୁଖରେ ଯେପରି କହନ୍ତି, ସେପରି ଲେଖନ୍ତି ନାହିଁ। ଭାଷାର ସ୍ୱାଭାବିକ ବଳରେ ଜକାରକୁ ଉଚ୍ଚାରଣ କରି ଲେଖିଲା ବେଳେ ମୂଳ ରୂପର ଯକାର ଲେଖନ୍ତି। ଯେପରିକି ଶଯ୍ୟା, ଯନ୍ତ୍ର ପ୍ରଭୃତି ଶବ୍ଦର ତଭବ ଶବ୍ଦମାନଙ୍କୁ କଥିତ ଭାଷାରେ ସେଜ, ଜନ୍ତା ପ୍ରଭୃତି କହି ଲେଖିବା ବେଳେ ଶେଯ, ଯନ୍ତା ଇତ୍ୟାଦି କରନ୍ତି।

ଓଡ଼ିଆରେ ଉପର ପ୍ରଦର୍ଶିତ କ୍ରମରେ ଯ କାରର ଅପବ୍ୟବହାର ପରି ଅନେକେ କେତେକସ୍ଥଳରେ ଶକାରର ମଧ୍ୟ ଅପବ୍ୟବହାର କରିଥାନ୍ତି। ଶକଟ, ଶପଥ, ଶର୍କରା ପ୍ରଭୃତି ଶବ୍ଦଜାତ ତଭବ ଶବ୍ଦମାନଙ୍କୁ କଥିତ ଭାଷାରେ ସଗଡ଼, ସପତ, ସାକର ଇତ୍ୟାଦି କହି ଲେଖିବାକୁ ଗଲେ ଶଗଡ଼, ଶପତ, ଶାକର ଇତ୍ୟାଦି କରନ୍ତି। ଏସବୁ ଭାଷାତତ୍ତ୍ୱରେ ଅନଭିଜ୍ଞତା ସୂଚକ। ଭାଷାର ତତ୍ତ୍ୱ ଏବଂ ତାହାର ସ୍ୱାଭାବିକ ଗୁଣ ଓ ବଳର ଜ୍ଞାନରେ ଜ୍ଞାନବାନ୍ ନ ହେଲେ ତାହାର ଯଥାଯଥ ବ୍ୟବହାର କରି ପାରିବା ଅସମ୍ଭବ।

ବିଶୁଦ୍ଧ ଓଡ଼ିଆ ଭାଷାରେ ବ୍ୟାବହାରିକ ଉଚ୍ଚାରଣତଃ ସର୍ବତ୍ର ଶ ଓ ଷ ନ ହୋଇ ଦନ୍ତ୍ୟ ସକାର କେବଳ ହେଉଥିବାରୁ ଏବଂ ପ୍ରାଚୀନ ତାଳପତ୍ରର ଓଡ଼ିଆ ପୁସ୍ତକମାନଙ୍କରେ ଓଡ଼ିଆ ଶବ୍ଦମାନଙ୍କରେ ସକାର ମାତ୍ର ଲେଖାଥିବାରୁ ଏବଂ ପ୍ରାକୃତମାନଙ୍କରେ ପ୍ରାକୃତାନୁଗତ ଦ୍ରାବିଡ଼ ପ୍ରଭୃତି ଭାଷାରେ ଏକମାତ୍ର ସକାରର ବ୍ୟବହାର ଥିବାରୁ ବିଶୁଦ୍ଧ ଓଡ଼ିଆ ଭାଷାର ବ୍ୟଞ୍ଜନମାଳାରେ ଶକାର ଓ ଷକାର ପରିଗଣିତ ହୋଇନାହିଁ।

ଏହି ଉଚ୍ଚାରଣାନୁଗତ ବର୍ଣ୍ଣଲେଖନର ପରିବୋଧନ ସ୍ଥଳରେ ଆଉ ଗୋଟିଏ କଥା ପ୍ରକାଶ କରିବା ଉଚିତ ମନେ କରୁଅଛୁ। ନୈଗଲା (ନେଇଗଲା) ଦୈପକାଇଲା (ଦେଇ ପକାଇଲା), ତୈଶି (ତେଇଶି) ଇତ୍ୟାଦି କେତେକ ଶୀଘ୍ରୋଚ୍ଚାରିତ ଐକାରଯୁକ୍ତାଦ୍ୟବର୍ଣ୍ଣ ପଦ, ଶୌବା (ଶୋଇବା), ଥୌବା (ଥୋଇବା), ଧୌବା (ଧୋଇବା), କୌଲି (କୋଇଲି), ଗୌଠା (ଗୋଇଠା), ବୌତ (ବୋଇତ) ଇତ୍ୟାଦି କେତେକ ଶୀଘ୍ରୋଚ୍ଚାରିତ ଔକାର ଯୁକ୍ତାଦ୍ୟବର୍ଣ୍ଣ ପଦମାନଙ୍କର ଉଚ୍ଚାରଣରେ ଠିକ୍ ଐ ଏବଂ ଔର ଧ୍ୱନି ହୋଇ ନ ଥାଏ। ଏ ପଦମାନଙ୍କ ଐକାର ଓ ଔକାର ଶୀଘ୍ରୋଚ୍ଚାରିତ ଏକପ୍ରକାର ସାନ୍ଧିକ ସଂମ୍ମିଶ୍ରଣରୁ ମାତ୍ର ଘଟିଥାଏ। ସମ୍ୟକ୍ ବିଚାର ପୂର୍ବକ ମନନ କରି ନିଅନ୍ତୁ ଯେ ନୈଗଲା ପ୍ରଭୃତି ପଦର ଉଚ୍ଚାରଣରେ ଯେପରି ଐକାରଯୁକ୍ତ ନକାର ଧ୍ୱନି ହୁଏ ଅଥଚ କୌଲି ପ୍ରଭୃତି ପଦର ଉଚ୍ଚାରଣରେ ଯେପରି ଔକାର ଯୁକ୍ତ କକାରର ଧ୍ୱନି ହୁଏ, ନୈକଟ୍ୟ, କୌଳିକ ଇତ୍ୟାଦି ପଦସ୍ଥ 'ନୈ' ଓ 'କୌ'ର ଉଚ୍ଚାରଣ ଧ୍ୱନି ସେପରି ନୁହେଁ। ନୈଗଲା ଓ ନୈକଟ୍ୟ, କୌଲି ଓ କୌଳିକ ପଦସ୍ଥ ନୈ ଓ କୌ ଦ୍ୱୟର ଉଚ୍ଚାରଣରେ କିଞ୍ଚିତ୍ ପ୍ରଭେଦ ଅଛି। ଏହି ପ୍ରଭେଦକୁ ପ୍ରତ୍ୟକ୍ଷରୂପେ ବୁଝାଇ ଦେବାକୁ ଅନ୍ୟ କୌଣସି ଉପାୟ ନାହିଁ। କେବଳ ନିଜେ ନିଜେ ତତ୍ ତତ୍ ସ୍ୱରଯୁକ୍ତ ପଦମାନଙ୍କର ସାବଧାନ ଉଚ୍ଚାରଣ କରି ବିଚାର ପୂର୍ବକ ବୁଝିନେବାକୁ ହେବ। ନୈଗଲା ଇତ୍ୟାଦି ସ୍ଥଳରେ ଏକାର ଓ ଇକାରର, କୌଲି ଇତ୍ୟାଦି ସ୍ଥଳରେ ଓକାର ଓ ଇକାରର ଶୀଘ୍ରୋଚ୍ଚାରଣରେ ବିଲକ୍ଷିତ ଏକପ୍ରକାର ସାନ୍ଧିକ ଐକାର ଏବଂ ଔକାରର ଧ୍ୱନି ଶୁଣାଯାଏ।

ବିଶୁଦ୍ଧ ଓଡ଼ିଆ ଭାଷାରେ ଐ କାର ଏବଂ ଔ କାର ନାହିଁ। ଶବ୍ଦଗତ ଅ+ଇ, ଅ+ଉ ର ଶୀଘ୍ରୋଚ୍ଚାରଣରେ କେବଳ ଐ ଏବଂ ଔ ହୋଇଥାଏ। ଏହି ଐ ଏବଂ ଔ ର ଉଚ୍ଚାରଣ ଅର୍ଥାତ୍ ଅ ବର୍ଣ୍ଣ ଓ ଇ ବର୍ଣ୍ଣର ଏବଂ ଅ ବର୍ଣ୍ଣ ଓ ଉ ବର୍ଣ୍ଣର ମିଶ୍ରଣରେ ଐ କାର ଏବଂ ଔକାର ଉଚ୍ଚାରଣ ଯଥାପ୍ରକାର ହୁଏ; କିନ୍ତୁ ପ୍ରଦର୍ଶିତ ନୈଗଲା କୌଲି ପ୍ରଭୃତି ପଦସ୍ଥ ଐ ଏବଂ ଔର ଉଚ୍ଚାରଣ ବିଲକ୍ଷିତ ଅଟେ। ତଥାପି ନୈଗଲା, କୌଲି ପ୍ରଭୃତିର ବିଲକ୍ଷିତ ଐକାର ଓ ଔକାରର ପାରମ୍ପରିକ ଅନେକ ମୁଖୋଚ୍ଚାରିତ ଉଚ୍ଚାରଣ ଅପବ୍ୟବହୃତ କୁହାଯାଇ ନପାରେ, ମାତ୍ର ଏପରି ଶୀଘ୍ରୋଚ୍ଚାରିତ ବିଲକ୍ଷିତ ସ୍ୱରଯୁକ୍ତ କେତେକ ପଦମାନଙ୍କର ସ୍ୱରଯୋଗ ଲିଖିତ ଭାଷାରେ ଯଥାଶ୍ରୁତରୂପେ ନ କରି ପ୍ରକୃତ ଶୁଦ୍ଧ ରୂପର ଅର୍ଥାତ୍ ନେଇଗଲା, କୋଇଲି ଇତ୍ୟାଦି ରୂପର ସ୍ୱରଯୋଗ କରିବା ବିଧେୟ। ଯଦି ଏପରି ଲେଖାରେ କାହାରି ଅନ୍ୟ ମତ ହୁଏ ତେବେ ଐ, ଔରୁ ଭିନ୍ନ ତାହାର ବିଲକ୍ଷିତ ଧ୍ୱନିଯୁକ୍ତ ଅନ୍ୟପ୍ରକାର ଦିଓଟି

ସ୍ୱର ସୃଷ୍ଟି କରିବା ଆବଶ୍ୟକ। କିନ୍ତୁ ଅତି ଅଳ୍ପ ଏମନ୍ତ କି ଅଯୁଗ୍ମ ସଂଖ୍ୟାରେ ପରିସମାପ୍ତ ସଂଖ୍ୟକ ବିଶେଷତଃ ଅଶିକ୍ଷିତଙ୍କ ମୁଖରେ ବ୍ୟବହୃତ କେତେଗୋଟି ପଦର ବିଲକ୍ଷିତ ଉଚ୍ଚାରଣ ଧ୍ୱନିକି ଧରି ଭାଷାରାଜ୍ୟରେ ବିଶ୍ୱାମିତ୍ର, ସୃଷ୍ଟି ପ୍ରାୟ ବିଲକ୍ଷଣ ସୃଷ୍ଟି କରିବା ସୁଦ୍ଧା ଉଚିତ ନୁହେଁ ଭାବି ଏଥିରୁ କ୍ଷାନ୍ତ ହେଲୁ। ଏ ସମ୍ବନ୍ଧରେ ସମୁଚିତ ସୁସଙ୍ଗତ ଅନ୍ୟ ବିଚାର ଥିଲେ ଭଷା ତତ୍ତ୍ୱଜ୍ଞମାନଙ୍କର ଚିନ୍ତନୀୟ।

## ଯୁକ୍ତବର୍ଣ୍ଣ ବିଧି

ବ୍ୟଞ୍ଜନ ବର୍ଣ୍ଣମାନଙ୍କରେ ପ୍ରଯୋଜ୍ୟ ଯୁକ୍ତ ସ୍ୱରମାନଙ୍କ ମଧ୍ୟରେ ଅକାରର କୌଣସି ଚିହ୍ନ ନ ଥିବାରୁ ସେହିଟି ଅନ୍ତର୍ନିହିତ ଥାଏ। ଯଥା- ଫଳ କହିଲେ ଫ, ଅ, ଳ ଏବଂ ଅ - ଏହି ଚାରି ବର୍ଣ୍ଣର ଉଚ୍ଚାରଣ ହୁଏ। ଯେଉଁ ବ୍ୟଞ୍ଜନବର୍ଣ୍ଣରେ ଅନ୍ତର୍ନିହିତ ଅକାର ସୁଦ୍ଧା ନଥାଏ, ତାହାକୁ ହଳନ୍ତ ବା ହସନ୍ତ କହନ୍ତି। କିନ୍ତୁ ପ୍ରାକୃତମାନଙ୍କ ପରି ବିଶୁଦ୍ଧ ଓଡ଼ିଆଭାଷାରେ ହସନ୍ତ ବର୍ଣ୍ଣର ବ୍ୟବହାର ନାହିଁ। ହସନ୍ତ ବର୍ଣ୍ଣ ଓଡ଼ିଆରେ ପ୍ରାକୃତପରି ସ୍ୱରାନ୍ତ ହୋଇଯାଏ। ହସନ୍ତ ବର୍ଣ୍ଣମାନେ ପରବର୍ତ୍ତୀ ବର୍ଣ୍ଣ ସଙ୍ଗେ ମିଳିତ ହୋଇ ଯୁକ୍ତାକ୍ଷରରେ ପରିଣତ ହୁଅନ୍ତି। ଯୁକ୍ତାକ୍ଷର ରୀତି ସର୍ବତ୍ର ସମାନ ନୁହେଁ। କେତେକ ବ୍ୟଞ୍ଜନ ଯୁକ୍ତ ସ୍ୱରମାନଙ୍କ ପରି ଭିନ୍ନାକୃତିକି ଧାରଣ କରନ୍ତି, କେତେକ ସସ୍ୱରୂପରେ ରହନ୍ତି। ଆଉ କେତେକ ସ୍ଥଳରେ କେତେକ ବ୍ୟଞ୍ଜନବର୍ଣ୍ଣଦ୍ୱୟର ଏକାତ୍ମପରିଣତି ହୋଇଥାଏ।

ଯ, ର, ଳ, (ଅବର୍ଗୀୟ) ବ, ନ, ମ, ଏହି ବ୍ୟଞ୍ଜନବର୍ଣ୍ଣମାନେ ଅନ୍ୟ ବ୍ୟଞ୍ଜନବର୍ଣ୍ଣରେ ଯୁକ୍ତ ହେଲେ ଭିନ୍ନ ଭିନ୍ନ ଆକାର ଧାରଣ କରନ୍ତି। କେତେବେଳେ ଏମାନଙ୍କର ନାମ ମାତ୍ରା ବା ଫଳା, କିନ୍ତୁ ବିଶୁଦ୍ଧ ଓଡ଼ିଆ ଭାଷାରେ ପ୍ରାକୃତ ପରି ଅବର୍ଗୀୟ ବକାରର ବ୍ୟବହାର ନ ଥିବାରୁ ପ୍ରୋକ୍ତ ବକାର ଯୁକ୍ତବର୍ଣ୍ଣ ରୂପେ ସୁଦ୍ଧା ରହେ ନାହିଁ।

ଯ କାରାଦିର ମାତ୍ରାମାନଙ୍କର ଆକୃତି ମୂଳରୂପର ଏକାଂଶାନୁକରଣରେ ଗଠିତ ହୋଇଅଛି। ସଂସ୍କୃତରେ ମଧ୍ୟ ଏଗୁଡ଼ିକର ଆକୃତି ଏହିପରି। ଓଡ଼ିଆ ବର୍ଣ୍ଣଗୁଡ଼ିକ ସଂସ୍କୃତବର୍ଣ୍ଣମାନଙ୍କ ରୂପର ଅନୁକରଣରେ ସୃଷ୍ଟ ହୋଇଅଛନ୍ତି ସତ୍ୟ; କିନ୍ତୁ ମାତ୍ରାଗୁଡ଼ିକ ଅବିକଳ ରୂପେ ସଂସ୍କୃତରୁ ଓଡ଼ିଆରେ ବ୍ୟବହୃତ। ମାତ୍ରାରୂପ ଯଥା- ଯ = ୍ୟ (ଏହିଟି ବର୍ଣ୍ଣର ପାର୍ଶ୍ୱରେ ରହେ), ର = ୍ର (ଏହିଟି ନିମ୍ନରେ), ର = ର୍ (ଏହିଟି ଊର୍ଦ୍ଧ୍ୱରେ), ଳ = ୍ଳ, ନ = ୍ନ, ମ = ୍ମ।

ପ୍ରାକୃତରେ ନକାର, ମକାର ଓ ଯକାରର ମାତ୍ରା ଯୋଗରେ ସ୍ୱରବର୍ଣ୍ଣର ବ୍ୟବହାର ନାହିଁ। ଏପରି ସ୍ଥଳରେ ପୂର୍ବୋକ୍ତ ମାତ୍ରା ଲୋପ ସଙ୍ଗେ ତତ୍‌ପୂର୍ବ ବର୍ଣ୍ଣର ଦ୍ୱିତ୍ୱ ହୁଏ। ଯଥା-

ମକାରନକାରଯରାକାରାଣାଂ ଯୁକ୍ତସ୍ୟାଧ ସ୍ଥିତାନାଂ ଲୋପୋ ଭବତି। ଯୁଗ୍ମଂ= ଜୁଗ୍ଗଂ, ନଗ୍ନଃ = ଣଗ୍ଗୋ, ଯୋଗ୍ୟଃ = ଜୋଗ୍ଗୋ, ଇତି ପ୍ରାକୃତ-ପ୍ରକାଶ।

ଓଡ଼ିଆ ଭାଷାର ସ୍ୱାଭାବିକ ଗୁଣ ହ୍ରସ୍ୱୋଚ୍ଚାରଣ ଓ କୋମଳୋଚ୍ଚାରଣ ପ୍ରଧାନ ଅଟେ। ଅତଏବ ଏଥିରେ ଦ୍ୱିତ୍ୱବର୍ଣ୍ଣ ନାହିଁ କହିଲେ ଚଳେ। ଯେତେଗୋଟି ଅତ୍ୟଳ୍ପ ଦ୍ୱିତ୍ୱବର୍ଣ୍ଣ ସମଗ୍ର ଭାଷା ମଧ୍ୟରେ ଦେଖାଯାଏ, ସେଗୁଡ଼ିକ ଲେଖକ ବା ବକ୍ତାମାନଙ୍କର କାଳ୍ପନିକ ମାତ୍ର। ସେଗୁଡ଼ିକୁ ଦ୍ୱିତ୍ୱହୀନ କଲେ କୌଣସି ଦୋଷ ଘଟିବାର ସମ୍ଭାବନା ନାହିଁ। ଦେଖନ୍ତୁ - ଜଗନ୍ନାହା, ଜଗନ୍ନେଠ, ଉଛୁରି, ଉଥୁଳିବା, ଉଲ୍ଲଙ୍ଗ, ଉଲ୍ଲସିବା ଏହି କେତେଗୋଟି ତଦ୍ଭବ ଶବ୍ଦ ଏବଂ ଧକ୍କା, ରଦ୍ଦ, ହଦ୍ଦ ଏହି କେତେଗୋଟି ଦ୍ୱିତ୍ୱଯୁକ୍ତ ବୈଦେଶିକ ଶବ୍ଦ ମାତ୍ର ଭାଷା ମଧ୍ୟରେ ବ୍ୟବହୃତ ଅଛି। ଏଗୁଡ଼ିକର ଦିତ୍ୱ ତ୍ୟାଗପୂର୍ବକ ମୃଦୁରୂପ ଗ୍ରହଣରେ ଅର୍ଥବୋଧ କିମ୍ବା ଅନ୍ୟପ୍ରକାର ସୁବିଧାରେ ମଧ୍ୟ ବାଧା ନାହିଁ। ଅତଏବ ବିଶୁଦ୍ଧ ଓଡ଼ିଆ ଭାଷାରେ ସର୍ବତ୍ର ଦ୍ୱିତ୍ୱବର୍ଣ୍ଣର ବ୍ୟବହାର ତାହାର ମୃଦୁ ସ୍ୱଭାବର ବାଧାଜନକ ଥିବାରୁ ପ୍ରାକୃତର ଏହି କ୍ରମ (ଦ୍ୱିତ୍ୱଯୋଗ) ଅନୁକରଣ କରାଯାଏ ନାହିଁ। କିନ୍ତୁ ପ୍ରାକୃତରେ ଯକାରାଦିର ମାତ୍ରାଯୋଗ ନାହିଁ ବୋଲି ଓଡ଼ିଆରେ ସେମାନଙ୍କର ଯୋଗ ସମଧିକ ସ୍ଥଳରେ ନ ହୋଇ ଅତି ଅଳ୍ପ ସ୍ଥଳରେ ମାତ୍ର ହୁଏ। ଯଥା-

ଯ- ଅଧ୍ୟା, ଅମନାତ୍ୟ, ଉତ୍ୟାନ, କାର୍ପୁଣ୍ୟ, ଗ୍ରାହିଯ୍ୟ, ନିତ୍ୟାନି, ବ୍ୟତକ, ଅହ୍ୟ, ଅହ୍ୟା, (ଜ୍ଞାନ ଶବ୍ଦ ଗିଆନ ଓ ଗ୍ୟାନ ହୁଏ)। ଲେଖକ ପ୍ରାୟ ସମଗ୍ର ପ୍ରାଚୀନ ଓଡ଼ିଆ ପୁସ୍ତକମାନ ଦେଖି ନେଇଅଛି ଯେ ଏହିପରି କେତେକ ଅଳ୍ପସଂଖ୍ୟକ ଶବ୍ଦରେ ମାତ୍ର ଯ ଫଳା ଯୁକ୍ତ ହୋଇଥାଏ। ଯ ଫଳାର ଉଚ୍ଚାରଣଧ୍ୱନି ଯ କାର ପରି ନ ହୋଇ ସଂସ୍କୃତରେ ପ୍ରଚଳିତ ୟକାରଦି ଧ୍ୱନି ପରି ହୁଏ। ମ ଫଳା ଏବଂ ନ ଫଳା ହ କାର ବିନା ଅନ୍ୟ ବର୍ଣ୍ଣରେ କୁତ୍ରାପି ପ୍ରାୟ ଯୁକ୍ତ ହୁଏ ନାହିଁ। ଯଥା -

ମ- ଗହ୍ମା, ଅହ୍ମଣିଆ, ଉହ୍ମେଇ, ବ୍ରାହ୍ମଣ, ବ୍ରହ୍ମାୟଣୀ।

ନ- କାହ୍ନୁ, କେହ୍ନେ, ଏହ୍ନେ, ଯେହ୍ନେ, ତେହ୍ନେ, ଚିହ୍ନାଇ, ଜହ୍ନ, ଜହ୍ନା, ଜହ୍ନି, ସେହ୍ନା।

ଯୁକ୍ତବର୍ଣ୍ଣର ଉପରି କିମ୍ବା ନିମ୍ନଭାଗରେ ମଧ୍ୟ ରକାର, ଲକାର ଓ ବକାର ଥିଲେ ପ୍ରାକୃତରେ ପୂର୍ବ ବା ପର ବର୍ଣ୍ଣକୁ ଦ୍ୱିତ୍ୱ ଦେଇ ପ୍ରାୟ ଲୁପ୍ତ ହୁଏ। ଅତଏବ ପ୍ରାକୃତରେ ରକାର ଲକାରର ମାତ୍ରା ଯୋଗ ହୁଏ ନାହିଁ। କିନ୍ତୁ ଏପରି ସ୍ଥଳରେ ତହିଁରେ ବର୍ଣ୍ଣମାନେ ଦ୍ୱିତ୍ୱ ପାଉଥିବାରୁ ଏହି କ୍ରମ (ରଫଳା ଓ ଲଫଳାର ତ୍ୟାଗକ୍ରମ) ଓଡ଼ିଆରେ ସମ୍ପୂର୍ଣ୍ଣ ଅନୁକୃତ ହୁଏ ନାହିଁ।

ପ୍ରାକୃତ ପ୍ରମାଣ, ଯଥା-

ଲକାର ବକାର ରେଫାଣାଂ ଯୁକ୍ତସ୍ୟୋପର୍ଯ୍ୟଧଃ-ସ୍ଥିତାନାଂ ଲୋପୋ ଭବତି। ବିକ୍ଳବଃ = ବିକ୍କବୋ, ପକ୍ୱଂ = ପକ୍କଂ, ଅର୍କଃ = ଅକ୍କୋ, ଶକ୍ରଃ -ସକ୍କୋ, ଇତ୍ୟାଦି। ଇତି ପ୍ରାକୃତ ପ୍ରକାଶ।

କିନ୍ତୁ ସେହି ପ୍ରାକୃତର କେତେକ ସ୍ଥଳରେ ରକାରର ଫଳାଯୋଗ ବୈକଳ୍ପିକ ଥିବାରୁ ତଦୈକଦେଶାନୁକରଣରେ ଓଡ଼ିଆ ଭାଷାରେ ରଫଳା ଓ ରେଫର ଯୋଗ ଘଟୁଅଛି।

ପ୍ରାକୃତ ପ୍ରମାଣ, ଯଥା-

ଦ୍ରଶବ୍ଦେ ରେଫସ୍ୟ ବା ଲୋପୋ ଭବତି - ଦ୍ରୋହଃ = ଦ୍ରୋହୋ, ଦୋହୋ। ଚନ୍ଦ୍ରଃ =ଚନ୍ଦ୍ରୋ, ଚନ୍ଦୋ। ରୁଦ୍ରଃ = ରୁଦ୍ରୋ, ରୁଦୋ। ଇତି ପ୍ରାକୃତ ପ୍ରକାଶ।

ଓଡ଼ିଆରେ, ଯଥା-

ର-ଅତ୍ରାହି, ଅହିବ୍ରତ, ଓପ୍ରୋଧ, ଇନ୍ଦ୍ରି, ଛଦ୍ରମ, ଛିନଛତ୍ର, ପ୍ରଘଟ, ପ୍ରାୟେ, ଅନୁବ୍ରତ, ଆଦ୍ରିବା, ଆସ୍ରା, ପ୍ରକ୍ରମ, ତ୍ରିପଣ୍ଡକାଳିଆ, ଚୁଚୁନ୍ଦ୍ରା ବା ଛୁଛୁନ୍ଦ୍ରା, ଇତ୍ୟାଦି କେତେକ ସ୍ଥଳରେ ବିଶେଷତଃ ତ ବର୍ଗ ଓ ପ ବର୍ଗରେ ର ଫଳା ଯୁକ୍ତ ହୋଇଥାଏ। ରେଫ ମଧ ଏହିପରି।

ରେଫ- ଖୁର୍ପି (ଘାସଚେଲିବା ଅସ୍ତ୍ର), କୁର୍ତା, ଅପର୍ତିଆଣି, ଅର୍ଦଳି, ଅସର୍ପା, ଅର୍ଖିତ, ଗର୍ଭଣାଗାଇ ଇତ୍ୟାଦି।

ଳ ଫଳା- ଲ ଫଳା ହକାରରେ ମାତ୍ର ଯୁକ୍ତ ହୁଏ। ତାହା ମଧ ଅତି ଅଳ୍ପ ସ୍ଥଳରେ ଦେଖାଯାଏ; ପରନ୍ତୁ ଳକାର ଉଚ୍ଚାରିତ ନ ହୋଇ ଲକାର କେବଳ ହୁଏ। ଓହ୍ଲାଇବା, ଗେହ୍ଲା, ଗେହ୍ଲାଇବା- ଏତିକି ଛଡ଼ା ଅନ୍ୟତ୍ର ଏହାର ଯୋଗ ଦେଖାଯାଏ ନାହିଁ।

ବିଶୁଦ୍ଧ ଓଡ଼ିଆ ଭାଷାରେ କ୍ଷ କାର ପ୍ରାୟଶଃ ନାହିଁ କହିଲେ ଚଳେ। କୌଣସି ପ୍ରାକୃତରେ ମଧ ଏହି ସଂଯୁକ୍ତାକ୍ଷରଟି ନାହିଁ। ପ୍ରାକୃତର କେତେକ ସ୍ଥଳରେ ଷ କାରର ଖ କାର ହେଉଥିବାରୁ କ୍ଷକାର 'କ୍ଖ' ହୋଇଥାଏ। (କେତେକ ସ୍ଥଳରେ କ୍ଷ, ଛ ମଧ ହୁଏ) ଅତଏବ ଓଡ଼ିଆର ସମଧିକ ତଦ୍ଭବ ଓ ଅପଭ୍ରଷ୍ଟ ଶବ୍ଦରେ ମୂଳଶବ୍ଦଗତ ଷ କାର ଖ କାରରେ ପରିଣତ ହୁଏ। ଓଡ଼ିଆରେ ମୂଳଶବ୍ଦଗତ କ୍ଷର 'ଖ' ହୁଏ, ଯଥା- ଇକ୍ଷୁ=ଆଖୁ, ଅକ୍ଷି=ଆଖି, କ୍ଷାର=ଖାର, କ୍ଷୀର=ଖିର, କ୍ଷୁର=ଖୁର, ସାକ୍ଷୀ=ସାଖି ଇତ୍ୟାଦି। ବିଶୁଦ୍ଧ ଓଡ଼ିଆ ଭାଷାଗତ ତକ୍ଷଣାଦିଗଣରେ ଅର୍ଥାତ୍ ତକ୍ଷଣ ପ୍ରଭୃତି ଅତି ଅଳ୍ପସଂଖ୍ୟକ ସଂସ୍କୃତଜ ଶବ୍ଦରେ ମାତ୍ର କ୍ଷ କାରର ଯୋଗ ହେଉଥିଲେ ହେଁ ତାହାର ଉଚ୍ଚାରଣରେ 'ଖ୍ୟ'କାର ମାତ୍ର

ହୋଇଥାଏ। ଯଦି ଏପରି ଉଚ୍ଚାରଣ ଭାଷାର ସ୍ୱଭାବସିଦ୍ଧ ହେଲା, ତେବେ ଏପରି ସ୍ଥଳରେ 'ଖ୍ୟ' ନ ଲେଖି 'କ୍ଷ' ଲେଖିବାରେ ତାଦୃଶ ପ୍ରୟୋଜନ ନାହିଁ। ଅନ୍ୟପକ୍ଷେ ଯେପରି ତାଲବ୍ୟାଦ୍ୟ ଓ ତାଲବ୍ୟାନ୍ତ ସଂସ୍କୃତଜ ଶବ୍ଦରେ ସଂସ୍କୃତ ବର୍ଣ୍ଣାନୁକରଣରେ କେତେକ ସ୍ଥଳରେ ଶ କାର ଲେଖାଯାଏ; ସେହପରି ତକ୍ଷଣାଦି ତଦ୍ଭବ ଶବ୍ଦରେ ଯଦି ମୌଳିକ 'କ୍ଷ' ଲେଖିବାକୁ ହେବ, ତାହାହେଲେ ସଂସ୍କୃତାନୁମୋଦିତ କ କାର ଷ କାର ଯୋଗର ପ୍ରକୃତ ଉଚ୍ଚାରଣ କରିବା ବିଧେୟ। ମାତ୍ର 'ଖ୍ୟ' ଉଚ୍ଚାରଣ କରି 'କ୍ଷ' ଲେଖିବା ବିଧି ନୁହେଁ। ଅନେକେ ଖିରି, ଅଖି ପ୍ରଭୃତି ତଦ୍ଭବ ଶବ୍ଦମାନଙ୍କର ଅପରିବର୍ତ୍ତନୀୟ ଖ କାରକୁ ବୃଥା କ୍ଷ କାର କରି ଲେଖିଥାନ୍ତି। ତାହା ଅସଙ୍ଗତ।

ପ୍ରାକୃତରେ ଯୁକ୍ତାକ୍ଷରମାନଙ୍କର ବ୍ୟବହାର ସମଧିକ ନ ଥିଲେହେଁ ପ୍ରାୟଶଃ ପଞ୍ଚମ ବର୍ଣ୍ଣରେ ସମେତ ଯୁକ୍ତାକ୍ଷରମାନଙ୍କର ବ୍ୟବହାର ଦେଖାଯାଏ। କିନ୍ତୁ ଏପରି ଯୁକ୍ତାକ୍ଷର ମାନଙ୍କର ପଞ୍ଚମ ବର୍ଣ୍ଣ ପରିବର୍ତ୍ତେ ଅନୁସ୍ୱାର ଯୋଗ ସୁଦ୍ଧା କରାଯାଇଥାଏ। ବିଶୁଦ୍ଧ ଓଡ଼ିଆ ଭାଷାରେ ମଧ୍ୟ ଏପରି ଯୁକ୍ତ ବର୍ଣ୍ଣମାନଙ୍କର ବ୍ୟବହାର ଅଛି।

ଙକାର ସଂସ୍କୃତରେ ସ୍ୱବର୍ଗୀୟ ଏବଂ ବାଙ୍ମୟ ପ୍ରଭୃତି ସ୍ଥଳରେ ଅନ୍ୟ ବର୍ଗୀୟ ବର୍ଣ୍ଣ ସଙ୍ଗେ ସୁଦ୍ଧା ଯୁକ୍ତ ହୋଇଥାଏ। ମାତ୍ର ପ୍ରାକୃତ ଏବଂ ଓଡ଼ିଆରେ ସ୍ୱବର୍ଗୀୟ ବର୍ଣ୍ଣ ସଙ୍ଗେ କେବଳ ଯୁକ୍ତ ହୁଏ। ଅତଏବ ଓଡ଼ିଆରେ ଙ କାର ଯୁକ୍ତ ସଂଯୁକ୍ତାକ୍ଷର ଙ୍କ, ଙ୍ଖ, ଙ୍ଗ, ଙ୍ଘ ର ବ୍ୟବହାର ଅବହୁବ୍ୟାପକ ରୂପେ ଚଳେ। କ୍ରମରେ ପ୍ରମାଣ, ଯଥା-

ଙ୍କ- ଆଙ୍କୁଡ଼ି, ଆଙ୍କିବା, ଆଡ଼ବାଙ୍କ, କଙ୍କି, କଙ୍କଡ଼ା।

ଙ୍ଖ- ଅସଙ୍ଖୁଳା, ଚେଙ୍ଖ (ଦାଗ), ସଙ୍ଖା, ସଙ୍ଖୁଆ, ସଙ୍ଖ।

ଙ୍ଗ- ଅଡ଼ଙ୍ଗ, ଇଡଙ୍ଗ, ଅଙ୍ଗ, କାଙ୍ଗୁରା।

ଙ୍ଘ- ଚାଙ୍ଘଡ଼ା, ଜଙ୍ଘିଆ (ଜଂଘିଆ), ଜିଙ୍ଘାସ (ଜିଂଘାସ), ସିଂଘା, ସିଂଘ (ସିଙ୍ଘ)

ପ୍ରାକୃତରେ ସଂଯୁକ୍ତାକ୍ଷରସ୍ଥ ଙକାରର କେତେକ ସ୍ଥଳରେ ଅନୁସ୍ୱାର ରଖାଯାଉଥିବାରୁ ବିଶୁଦ୍ଧ ଓଡ଼ିଆ ଭାଷାରେ ସିଂଘା, ଜଂଘିଆ, ଜିଂଘାସ ପ୍ରଭୃତି ଶବ୍ଦକୁ ଅନୁସ୍ୱାର ଯୋଗେ ଲେଖିବା ଦୋଷାବହ ନୁହେଁ।

ପ୍ରାକୃତ ଶବ୍ଦ, ଯଥା-

ପର୍ଯ୍ୟଙ୍କ = ପଲଙ୍କ, ବକ୍ର = ବଂକ, ବଙ୍କ, ତ୍ରୈଲଙ୍ଗ= ତେଲଙ୍ଗା, ସିଂହ= ସିଂଘ।

ପ୍ରାକୃତରେ 'ଙ୍ଖ' ଏହି ଯୁକ୍ତାକ୍ଷର ଦେଖାଯାଇ ନାହିଁ। ବିଶୁଦ୍ଧ ଓଡ଼ିଆ ଭାଷାରେ ଞ କାର ଛ କାର ଛଡ଼ା ଅନ୍ୟାନ୍ୟ ସ୍ୱବର୍ଗୀୟ ବର୍ଣ୍ଣରେ ମାତ୍ର ଯୁକ୍ତ ହୋଇଥାଏ। କିନ୍ତୁ

ଏପରି ସଂଯୁକ୍ତ ବର୍ଣ୍ଣର ଉଚ୍ଚାରଣରେ (ସଂସ୍କୃତରେ ମଧ୍ୟ ବହୁ ସ୍ଥଳରେ) ଙ କାରର ତୁଲ୍ୟ ଧ୍ୱନି ହୁଏ ନାହିଁ, ଅନୁସ୍ୱାର ଧ୍ୱନି ଶ୍ରୁତ ହୋଇଥାଏ। କେବଳ ଙକାରର ବୋଲି କହିବା କାହିଁକି ? ନ କାର ଓ ମ କାର ଛଡ଼ା ଅନ୍ୟ ପଞ୍ଚମ ବର୍ଣ୍ଣର ଧ୍ୱନି ସୁଦ୍ଧା ଅନୁସ୍ୱାରଂ ପରି ହୋଇଥାଏ। କିନ୍ତୁ ଙକାରରେ ଅନୁସ୍ୱାରର ଧ୍ୱନି ତୁଲ୍ୟତା ତା ଅନୁସ୍ୱାରର ଅନୁକୂଳ ସାନୁନାସିକତ୍ୱ ଧ୍ୱନି ଟିକିଏ ଅଧିକ ଥିବାରୁ ସଂଯୁକ୍ତ ବର୍ଣ୍ଣରେ ତାହାର (ଙକାରର) ଧ୍ୱନି ଅପେକ୍ଷାକୃତ ଟିକିଏ ସ୍ପଷ୍ଟ ହୋଇଥାଏ। କଞ୍ଚା, କାଞ୍ଜି, ଖଣ୍ଡ ଏପରି ଶବ୍ଦମାନଙ୍କର ଉଚ୍ଚାରଣରେ ଯେପରି କ କାରାଦି ବ୍ୟଞ୍ଜନ ପରେ ଅନୁସ୍ୱାରର ଧ୍ୱନି ଶୁଣାଯାଏ, ବଙ୍କା, ସଙ୍ଖା, ଅଙ୍ଗା ପ୍ରଭୃତି ଶବ୍ଦର ଉଚ୍ଚାରଣରେ ସେପରି ନୁହେଁ। ଏଥିରେ ଙ କାରର ଉଚ୍ଚାରଣ ବିଶୁଦ୍ଧତା ମିଳିତ ଥାଏ। କିନ୍ତୁ ଏପରି ସ୍ଥଳରେ ଆଉ ଗୋଟିଏ କଥା ପ୍ରକାଶ୍ୟ ଥିବା ଉଚିତ। ଏପରି ପଞ୍ଚମବର୍ଣ୍ଣ ସମେତ କେତେକ ଯୁକ୍ତାକ୍ଷର ଶବ୍ଦମାନଙ୍କର ଉଚ୍ଚାରଣରେ ଅନୁସ୍ୱାରର ଧ୍ୱନି ଶୁଣାଯାଉଥିବାରୁ ଅନେକେ ଇଙ୍ଗ୍ରାଜି ପ୍ରଭୃତି ଶବ୍ଦର 'ଙ' ଓ 'ଗ'କୁ ଲୋପ କରି ଅନୁସ୍ୱାର ଯୋଗେ 'ଇଂରାଜି' ପ୍ରଭୃତି ଶବ୍ଦ ଲେଖନ୍ତି, ଏହା ଭ୍ରାନ୍ତ ବିଚାର ଓ ଅସାଧୁ ଲେଖା। କାରଣ ଙକାର ଓ ଅନୁସ୍ୱାରର ଧ୍ୱନିରେ ତୁଲ୍ୟତା କଳ୍ପନା କରି ଅନୁସ୍ୱାର ଯୋଗ କରିଥିଲେ ସୁଦ୍ଧା ତତ୍ରତ୍ୟ ଗକାରର ଲୋପ କୌଣସି ପ୍ରକାରେ ସଙ୍ଗତ ନୁହେଁ।

କାହାରି କାହାରି ଜିଜ୍ଞାସା ହୋଇପାରେ ଯୁକ୍ତ ବର୍ଣ୍ଣ ସ୍ଥଳରେ ନ କାର ମ କାର ଛଡ଼ା ଅନ୍ୟ ପଞ୍ଚମ ବର୍ଣ୍ଣର ଧ୍ୱନି କେବଳ ଅନୁସ୍ୱାରର ତୁଲ୍ୟ କାହିଁକି ହୋଇଥାଏ ? ତେବେ ଜାଣନ୍ତୁ ଯେ ପ୍ରୋକ୍ତ ବର୍ଣ୍ଣତ୍ରୟର ଅଧିକାର ଏପରି ସ୍ଥଳରେ ପ୍ରଥମତଃ, ନ କାର ମ କାର ଜାତ ଅନୁସ୍ୱାରର କାଳରେ କଳ୍ପିତ ହୋଇଛି। ସାଂସ୍କୃତିକ ସନ୍ଧି ଅନୁସାରେ ନକାର-ମକାର-ଜାତ ଅନୁସ୍ୱାରର କାଳରେ କଳ୍ପିତ ଙ କାର, ଞକାର ଓ ଣକାର ଦେଖାଯାଏ। ଅତଏବ ଏପରି ସ୍ଥଳରେ ଏଗୁଡ଼ିକ ନିଜର ଧ୍ୱନିକି ଅନୁସରଣ ନ କରି ମୌଳିକ ଅନୁସ୍ୱାରର ଧ୍ୱନିକି ଅନୁସରିଥାନ୍ତି। ତଥାଚ ନ କାର ମ କାରର (ହସନ୍ତ ରୂପର- ମ୍ ନ୍) ଧ୍ୱନିରେ ଅନୁସ୍ୱାର ଧ୍ୱନିର ତୁଲ୍ୟତା ଥିବାରୁ ପରନ୍ତୁ ଅନୁସ୍ୱାର ତନ୍ନନ୍ୟ ଥିବାରୁ ସଂପୃକ୍ତ ବର୍ଣ୍ଣରେ ନକାର ଓ ମକାରର ଧ୍ୱନିର ବିଶୁଦ୍ଧତା ଲକ୍ଷିତ ହୋଇଥାଏ। ଓଡ଼ିଆ ଞ କାର ଯୁକ୍ତ ସଂଯୁକ୍ତ ବର୍ଣ୍ଣ ଯଥା-

ଞ୍ଚ- ଅଣଞ୍ଚାସ, ଅଲଘଞ୍ଚାଳ, ଉଞ୍ଚ, କଞ୍ଚନ, କଞ୍ଚା, ଆଞ୍ଚୁଆ, ଆଞ୍ଚିବା ଇତ୍ୟାଦି।

ଞ୍ଛ- ପ୍ରାକୃତରେ 'ଞ୍ଛ' ଏହି ବର୍ଣ୍ଣ ନ ଥିବାରୁ ଓଡ଼ିଆରେ ବାଞ୍ଛିବା ପ୍ରଭୃତି ସଂସ୍କୃତ ଧାତୁର କ୍ରିୟା ଛଡ଼ା ଅନ୍ୟତ୍ର 'ଞ୍ଛ' ଏହି ବର୍ଣ୍ଣ ନାହିଁ।

ଞ- କାଞ୍ଜି, ଖଞ୍ଜଣି, ଖଞ୍ଜନ, ଗଞ୍ଜା, ଗଞ୍ଜାଇ, ଗଞ୍ଜପା, ଗାଞ୍ଜିଆ ଇତ୍ୟାଦି।

(ଏହିଟି ସମଧିକ ସ୍ଥଳରେ କ ବର୍ଗ ବର୍ଣ୍ଣ ନିକଟରେ ରହେ।)

ଞ୍ଚ- ଝଞ୍ଚଟିଆ, ବାଞ୍ଚ - ଏପରି ଅତିଅଳ୍ପ ଶବ୍ଦରେ ଏହାର ପ୍ରଚାର। ଏଥିର ପ୍ରାକୃତ ଶବ୍ଦ ଯଥା- କାଞ୍ଚନ = କଞ୍ଚଣ, ଖଞ୍ଜିତ = ଖଞ୍ଜିଦ, (କେବଳ ପୈଶାଚିକରେ - ବିଜ୍ଞାତ = ବିଞ୍ଞାତ, ସର୍ବଜ୍ଞ = ସବଞ୍ଞୋ ହୁଏ) ସନ୍ଧ୍ୟା - ସଂଝା। ('ଞ୍ଝ' ବର୍ଣ୍ଣ ନାହିଁ।)

ଏହିଠାରେ ପ୍ରକାଶ କରିବା ଉଚିତ ଯେ ଆୟୁର୍ବେଦ ମତରେ ବିଭିନ୍ନ ଗୁଣାତ୍ମକ ଦୁଇଗୋଟି ବା ଅନେକ ଦ୍ରବ୍ୟର ଏକତ୍ର ସଂଯୋଗରେ ଯେପରି ତଦିତର ବା ତଦ୍‌ବିପରୀତ ଗୁଣର ସମ୍ଭୂତି ହୁଏ, ସେହିପରି ସଂପୃକ୍ତ ଅକ୍ଷରଦ୍ୱୟର ଉଚ୍ଚାରଣ ଧ୍ୱନି ବା ଗୁଣ ପୃଥକ୍ ପୃଥକ୍ ସ୍ୱତନ୍ତ୍ର ଥିଲେ ସୁଦ୍ଧା ସଂଯୋଗବଶରୁ କେତେକ ସ୍ଥଳରେ ସ୍ୱଭାବେତର ବା ତଦ୍‌ବିପରୀତ ଉଚ୍ଚାରଣ ଧ୍ୱନି ହୋଇଥାଏ। ଯଥା -

ଜ କାର ଓ ଞ କାର ସଂଯୋଗରେ ଜ୍ଞ, ଚକାର ଓ ଶକାରର ସଂଯୋଗରେ ଚ୍ଛ ଏବଂ ତକାର ଓ ସ କାରର ସଂଯୋଗରେ ତ୍ସ ହୁଏ। ତଦ୍‌ବତ ତ ଓ ହ ର ସଂଯୋଗରେ ଦ୍ଧ ହୋଇଥାଏ। କିନ୍ତୁ ଏପରି ସଂଯୁକ୍ତବର୍ଣ୍ଣମାନ ବିଶୁଦ୍ଧ ଓଡ଼ିଆ ଭାଷାରେ କୁତ୍ରାପି ବ୍ୟବହୃତ ନାହିଁ। 'ଜ୍ଞ' ଏହାର ଉଚ୍ଚାରଣ କେବଳ ବେଦ ପ୍ରକ୍ରିୟାରେ ଉଦାତ୍ତାଦିକ୍ରମେ ଠିକ୍ ହୋଇଥାଏ। 'ଯଜ୍ଞ' ଏ ଶବ୍ଦଟିକି ଯଜ୍ ଞ କରି ପ୍ରକୃତ ଉଚ୍ଚାରଣ କରିବାକୁ ହୁଏ। ଏହା ବିଶେଷତଃ ଦାକ୍ଷିଣାତ୍ୟ ପଣ୍ଡିତଙ୍କ ମୁଖରେ ଉଚ୍ଚାରିତ ହୋଇଥାଏ। କିନ୍ତୁ ସର୍ବସାଧାରଣ 'ଜ୍ଞ' ଏହି ବର୍ଣ୍ଣର ଉଚ୍ଚାରଣ ଗକାର ଓ ଞକାରର ମିଶ୍ରଣରେ କରିଥାନ୍ତି। ଏପରି ବର୍ଣ୍ଣଦ୍ୱୟର ଏକାତ୍ମପରିଣତ ମୂଳ ବର୍ଣ୍ଣର ଉଚ୍ଚାରଣରୁ ଭିନ୍ନ ପ୍ରକାର ଉଚ୍ଚାରିତ କେତେଗୋଟି ସଂଯୁକ୍ତବର୍ଣ୍ଣ ସଂସ୍କୃତରେ ମାତ୍ର ହୋଇଥାଏ। ସେ ଯାହାହେଉ 'ଜ୍ଞ' ଏହି ବର୍ଣ୍ଣଟି ଓଡ଼ିଆ ତଦ୍ଭବ ଶବ୍ଦ ସୃଷ୍ଟିରେ 'ଗ୍ୟ'ରେ ପରିଣତ ହୁଏ। ଜ୍ଞାନ = ଗ୍ୟାନ ବା ଗିଆନ। ଯଜ୍ଞ = ଯାଗ୍ୟ।"

ଣ କାର ନ କାର ମ କାର ଏହି ପଞ୍ଚମବର୍ଣ୍ଣତ୍ରୟ ସୁଦ୍ଧା ସ୍ୱବର୍ଗୀୟ ବର୍ଣ୍ଣମାନଙ୍କ ସଙ୍ଗେ କେବଳ ଯୁକ୍ତାକ୍ଷରରେ ରହନ୍ତି।

କ୍ରମରେ ପ୍ରମାଣ, ଯଥା-

ଣ୍ଟ- ଅଣ୍ଟା, ଆଣ୍ଟ, କଣ୍ଟ, କାଣ୍ଟି, ଖୁଣ୍ଟି, ଘଣ୍ଟିକା, ଝିଣ୍ଟିକା, ତଣ୍ଟି, ଥେଣ୍ଟା, ବେଣ୍ଟ।

ଣ୍ଠ- ଆଣ୍ଠୁ, କଣ୍ଠିମାଳ, ଗଇଣ୍ଠା (ଗଇଁଠା), ଗଣ୍ଠି (ଏହାର ବ୍ୟବହାର ଅତି ବିସ୍ତୃତ ନୁହେଁ।)

ଣ୍ଡ- ଅଣ୍ଡାଳିବା, ଅରଣ୍ଡା, ଭଣ୍ଡିବା, ଏରୁଣ୍ଡି, କୁଣ୍ଡା, ଖଣ୍ଡା, ପାରିଦଣ୍ଡ ଇତ୍ୟାଦି।

ଣ୍ଢ- କୁଣ୍ଢା, କଣ୍ଢାଇ, କୁଣ୍ଢାଇବା, ମେଣ୍ଢା, ମେଣ୍ଢାଇବା। (ଏହାର ବ୍ୟବହାର ସମଧିକ ନୁହେଁ।)

ପ୍ରାକୃତ ଶବ୍ଦ, ଯଥା-

ତାଳବୃନ୍ତ = ତାଳବେଣ୍ଟ, ଗ୍ରନ୍ଥି = ଗଣ୍ଠି, ଭିନ୍ଦିପାଳ = ଭିଣ୍ଡିବାଳ, କଳତ୍ର= ଟେଣ୍ଟା, ମଣ୍ଡକ = ମଣ୍ଡା, ଶିଖଣ୍ଡ = ସିହଣ୍ଡା। (ପ୍ରାକୃତରେ 'ଣ୍ଢ' ଏହି ବର୍ଣ୍ଣଟି ପ୍ରାୟ ନାହିଁ।)

ନ୍ତ- ଅନ୍ତୁଡ଼ି, ଅପନ୍ତରା, ଏଘାନ୍ତି, କାନ୍ତାନୀ, ଜନ୍ତା, ଅକରାନ୍ତି, ଜନ୍ତାଳ।

ନ୍ଥ- ଗନ୍ଥା, କାନ୍ଥ, ଗୁନ୍ଥିବା, ପେନ୍ଥିପେନ୍ଥି (ପୁଞ୍ଜା)। (ଏହି ବର୍ଣ୍ଣ ବ୍ୟବହାର ସମଧିକ ନୁହେଁ)

ନ୍ଦ- ଖନ୍ଦା, ଖାମୁନ୍ଦ, ଚାନ୍ଦ, ଛନ୍ଦଣି, ଫନ୍ଦା, କାନ୍ଦିବା ଇତ୍ୟାଦି।

ନ୍ଧ- ଅନ୍ଧୁଣୀ, ଅନ୍ଧାର, ଅଳନ୍ଧୁ, କନ୍ଧ, କାନ୍ଧ, ସଇନ୍ଧ୍ରୀ ଇତ୍ୟାଦି।

ପ୍ରାକୃତ ଶବ୍ଦ, ଯଥା -

ପଂକ୍ତି = ପନ୍ତି, ପର୍ଯ୍ୟନ୍ତ = ପେରନ୍ତ, ଗ୍ରନ୍ଥି = ଗନ୍ଥି, ଗୁମ୍ଫିତା = ଗୁନ୍ଥା, ପଞ୍ଚଦଶ = ପନ୍ଦର, ଚନ୍ଦ୍ର = ଚନ୍ଦ, ସ୍କନ୍ଧ - ଖନ୍ଧୋ ବା ଖଂଧୋ, ପିଧାନ = ପିନ୍ଧାଣ।

ମ୍ପ- କାମ୍ପ, କିମ୍ପା, କୁମ୍ପା, ଖୁମ୍ପିବା, ଝୁମ୍ପି, ଝାମ୍ପ, ପିମ୍ପୁଡ଼ି, ଫେମ୍ପର, ଇତ୍ୟାଦି।

ମ୍ଫ- ଗୁମ୍ଫ, ଗୁମ୍ଫା, ଡାମ୍ଫଣ, ଡେମ୍ଫ, ହାମ୍ଫୋଳିବା, ଇତ୍ୟାଦି।

ମ୍ବ- ଆମ୍ବ, ଆମ୍ବିଳ, ଖମ୍ବ, ଜମ୍ବେବ, ତମ୍ବୁ, ଇତ୍ୟାଦି।

ମ୍ଭ- ଅସମ୍ଭାଳ, ଗମ୍ଭିରି, ଆମ୍ଭର, ଉମ୍ଭାଇ, ଲେମ୍ଭାଉ, ଇତ୍ୟାଦି।

ପ୍ରାକୃତ ଶବ୍ଦ, ଯଥା -

ତାମ୍ର= ତମ୍ବୋ, ତଂବୋ। ସ୍ତମ୍ଭ = ଖମ୍ଭୋ, ଖଂଭୋ। କୁମ୍ଭକର = କୁମ୍ଭାର। (ପ୍ରାକୃତରେ 'ମ୍ପ' ଏବଂ 'ମ୍ଫ' ପ୍ରାୟ ନାହିଁ।)

ଏହି ଅନୁନାସିକ ପଞ୍ଚମବର୍ଣ୍ଣମାନଙ୍କର ଯୋଗ ସ୍ଥଳରେ ସାନୁନାସିକତ୍ୱ ଚନ୍ଦ୍ରବିନ୍ଦୁର ଯୋଗକ୍ରମ କହିବା ଆବଶ୍ୟକ। ଚନ୍ଦ୍ରବିନ୍ଦୁ ଅନେକ ସ୍ଥାନରେ ବିଶେଷତଃ ଙ ଏବଂ ଞର ସ୍ଥଳ ଅଧିକାର କରେ। ଅତଏବ ପ୍ରାକୃତରେ ପ୍ରୋକ୍ତ ଅକ୍ଷରଦ୍ୱୟକୁ ଉଠାଇ ଦେଇ ଚନ୍ଦ୍ରବିନ୍ଦୁର ବ୍ୟବହାର କରିଅଛନ୍ତି। ଓଡ଼ିଆରେ ମଧ୍ୟ ସେହିପରି ହୋଇଥାଏ। ଏହି ଚନ୍ଦ୍ରବିନ୍ଦୁଟି ପ୍ରାକୃତରୁ ଓଡ଼ିଆକୁ ଆସିଅଛି। ପ୍ରାକୃତରେ ଅନୁସ୍ୱାରର କୋମଳ ବା ଲଘୁ ଉଚ୍ଚାରଣାର୍ଥ ଅନୁସ୍ୱାରର ସ୍ଥଳରେ ଚନ୍ଦ୍ରବିନ୍ଦୁ ଧାର୍ଯ୍ୟ ହୋଇଅଛି। ପ୍ରାଚୀନ ଓଡ଼ିଆ ତାଳପତ୍ର ପୁସ୍ତକମାନଙ୍କରେ ଚନ୍ଦ୍ରବିନ୍ଦୁ

ବା ଅର୍ଦ୍ଧାନୁସ୍ୱାର ଦେଖାଯାଏ ନାହିଁ ସତ୍ୟ, କିନ୍ତୁ ପ୍ରାକୃତର କେତେକ ସ୍ଥଳରେ ଚନ୍ଦ୍ରବିନ୍ଦୁ ବା ଅର୍ଦ୍ଧାନୁସ୍ୱାରର ଏବଂ ଅନୁସ୍ୱାରର ଏକକାର୍ଯ୍ୟ ଘଟୁଥିବାରୁ ତଦନୁକରଣରେ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଚନ୍ଦ୍ରବିନ୍ଦୁ ନ ରଖି ଅନୁସ୍ୱାରକୁ କେବଳ କେତେକ ସ୍ଥଳରେ ତାହା ସ୍ଥାନୀୟ କରିଅଛନ୍ତି।

ଯେଉଁ ସ୍ଥଳରେ ଅନୁନାସିକ ବର୍ଣ୍ଣ ଙ କାରାଦିର ଲୋପସତ୍ତ୍ୱେ ଅନୁସ୍ୱାର ଯୋଗର ସୂତ୍ରପାତ ହୁଏ ଅଥଚ ସ୍ୱର ନାସିକା ସହିତ ଉଚ୍ଚାରିତ ହୁଏ, ସେପରି ସ୍ଥଳରେ କୋମଳ ଉଚ୍ଚାରଣ ଲାଗି ଚନ୍ଦ୍ରବିନ୍ଦୁ ବସାଯାଏ। ଯଥା-

ପେଙ୍କାଳି = ପେଂକାଳି = ପେଁକାଳି।

ବିଞ୍ଚଣା - ବିଂଚଣା = ବିଁଚଣା।

ବଇଞ୍ଚ ଗଛ = ବଇଂଚ ଗଛ = ବଇଁଚ ଗଛ

ସୋଣ୍ଠା (ଅନତିହ୍ରସ୍ୱ ମୋଟ ଠେଙ୍ଗା) = ସୋଂଠା - ସୋଁଠା।

ଚାନ୍ଦ = ଚାଂଦ = ଚାଁଦ।

ସମ୍ପିବା (ସମର୍ପିବା ଅର୍ଥ) ସଂପିବା- ସଁପିବା ଇତ୍ୟାଦି।

ଚନ୍ଦ୍ରବିନ୍ଦୁ ଅନୁସ୍ୱାର ପରିବର୍ତ୍ତେ ଅନେକ ସ୍ଥଳରେ କୋମଳ ବା ଲଘୁ ଉଚ୍ଚାରଣାର୍ଥ ପ୍ରାକୃତରେ ବ୍ୟବହୃତ ହେବାର ପ୍ରମାଣ, ଯଥା- ତଇନଥିଂ ଣଦିହିଂ ସଂତାରଂ ଦେଇ ତୋଚାହସି ସୋଲେହି = ତ୍ୱମସ୍ୟାଂ ନଦ୍ୟାଂ ସତାରଂ ଦତ୍ୱା ଯଦପେକ୍ଷସେ ତଦ୍ଗୃହାଣ।

ନଦ୍ୟାଂ = ନଦିହିଂ। ସଂତାରଂ=ସଂତାର। ଇତି ପିଙ୍ଗଳ।

ଚନ୍ଦ୍ରବିନ୍ଦୁ କିପରି ସ୍ଥଳମାନଙ୍କରେ ଯୋଗ କରାଯାଏ, ଏ ସମ୍ବନ୍ଧରେ ବିଭାଗପୂର୍ବକ ତିନିଗୋଟି କ୍ରମ ନିମ୍ନରେ ଲେଖାଯାଉଅଛି।

୧. ପ୍ରାକୃତରେ ଚନ୍ଦ୍ରବିନ୍ଦୁ ବିଶେଷତଃ ବ କାର ଓ ହ କାରରେ ଯୁକ୍ତ ହେଉଥିବାରୁ ବିଶୁଦ୍ଧ ଓଡ଼ିଆରେ ମଧ୍ୟ ତଦନୁରୂପ ହୁଏ। ଯଥା -

ବଇଁଶି, ବୟାଣୋଇଁ, ବାଇଁବା, ବଇଁଚ, ମଇଁଷୀ, ସାଇଁ, ହାଇଁପାଇଁ (ଆକୁଳ), କାହିଁପାଇଁ, ଆଜହୁଁ, ତହିଁ ତହୁଁ, କାହିଁକି, ତେବେହେଁ, ତୋତହୁଁ, ଦୁହିଁବା, ଦୁହେଁ।

୨. ପ୍ରାକୃତରେ ଚନ୍ଦ୍ରବିନ୍ଦୁ ପ୍ରଧାନତଃ ପୃଥଗ୍‌ଭୂତ ଇକାରରେ ଯୁକ୍ତ ହେଉଥିଲେ ହେଁ ଅନେକ ସ୍ଥଳରେ ପୃଥଗ୍‌ଭୂତ ଅକାର ଉକାରାଦିରେ ମଧ୍ୟ ଯୁକ୍ତ ହୋଇଥାଏ। ବିଶୁଦ୍ଧ ଓଡ଼ିଆରେ ମଧ୍ୟ ଏହି କ୍ରମ ଦେଖାଯାଏ। ଯଥା -

ପିଅଁଳା, ଭଅଁର, କଅଁଳ, ତଅଁର, ତଅଁଳା (ଆରଣ୍ୟକ ଜାତି), ଡିଆଁ, ବାଆଁରିବା, ଲୁଆଁଇବା, ସିଆଁ, କେଉଁ, ଡାଉଁ ଡାଉଁ, ବାଉଁରିବା, ଆଉଁସିବା, ଭଉଁରି, ସାଉଁଳିବା, ସାଉଁଟିବା, ସିଉଁଥି। ଇତ୍ୟାଦି।

୩. ଯେଉଁ ଯେଉଁ ସ୍ଥଳରେ ଚନ୍ଦ୍ରବିନ୍ଦୁର ଆଶ୍ରୟ ସ୍ଥାନ ବ୍ୟଞ୍ଜନବର୍ଣ୍ଣ ହୋଇଥାଏ, ତେତେବେଳେ ବ୍ୟଞ୍ଜନମାନ ପ୍ରାୟଶଃ ଦୀର୍ଘ ସ୍ୱରରେ ଯୁକ୍ତ ଥାନ୍ତି। ଯଥା-

ଫେଁକାଳି, ଟେଁସା (କର୍କଶ), ଠେଁସା (ଅଳସୁଆ), ଡାଁଆଣା (ଲୋଭୀ), ସୌଁଠା, ଭୂଯାଁ, ଇତ୍ୟାଦି।

ଗଁ ଗଁ, ଫଁ ଫଁ, ସଁପିବା - ଏପରି ହ୍ରସ୍ୱ ସ୍ୱରଯୁକ୍ତ ବ୍ୟଞ୍ଜନରେ ଚନ୍ଦ୍ରବିନ୍ଦୁର ଯୋଗ ଅତି ଅଳ୍ପ ସ୍ଥଳରେ ମାତ୍ର ହୁଏ।

ପ୍ରାକୃତରେ ପ୍ରାୟ ସର୍ବତ୍ର ଯୁକ୍ତବର୍ଣ୍ଣର ଅଧଃସ୍ଥ ଓ ଊର୍ଦ୍ଧ୍ୱସ୍ଥ ବର୍ଣ୍ଣମାନଙ୍କର ଲୋପ ହେବା ଅଧିକାର ଥିବାରୁ ଅଥଚ ଯୁକ୍ତବର୍ଣ୍ଣ ଲୋପରେ ସ୍ୱୀକୃତବର୍ଣ୍ଣର ଦ୍ୱିତ୍ୱ ହେଉଥିବାରୁ ସେଥିରେ ଯୁକ୍ତ ବର୍ଣ୍ଣମାନଙ୍କର ବହୁଳ ପ୍ରଚାର ନାହିଁ, ଏହା ଇତିପୂର୍ବେ ବ୍ୟକ୍ତ କରିଅଛୁ। ତଥାଚ ସଂଯୁକ୍ତ ବର୍ଣ୍ଣମାନଙ୍କର ଉପରିସ୍ଥ କ, ଗ, ଡ଼, ଢ଼, ଦ, ପ, ଷ ଓ ସ ବର୍ଣ୍ଣର ସର୍ବତ୍ର ଲୋପ ହୁଏ ବୋଲି ସେଥିରେ କ୍ତ, ଗ୍ଧ, ଡ୍ଗ, ପ୍ତ, କ୍ର, ଘ୍ର, ଦ୍ଧ, ଦ୍ଘ, ଦ୍ଧ, ଦ୍ଢ, ଦ୍ୱ, ଦ୍ଭ, ପ୍ତ, ଷ୍ଟ, ଷ୍ପ, ଷ୍କ, ଷ୍ମ, ସ୍ତ, ସ୍ଥ, ସ୍ୱ, ସ୍କ ପ୍ରଭୃତି ସଂଯୁକ୍ତ ବର୍ଣ୍ଣମାନ କୁତ୍ରାପି ବ୍ୟବହୃତ ହୁଅନ୍ତି ନାହିଁ। ପ୍ରାକୃତର ଅନୁକରଣରୁ ବିଶୁଦ୍ଧ ଓଡ଼ିଆ ଭାଷାରେ ମଧ୍ୟ ଏ ବର୍ଣ୍ଣଗୁଡ଼ିକ ପ୍ରାୟଶଃ ବ୍ୟବହୃତ ହୁଅନ୍ତି ନାହିଁ; କିନ୍ତୁ ଓଡ଼ିଆରେ ପ୍ରାକୃତ ପରି ସଂସ୍କୃତର ମଧ୍ୟ ଅନୁକରଣ ଥିବାରୁ ଅତି ଅଳ୍ପ ସଂସ୍କୃତଜ ଶବ୍ଦରେ ଏବଂ କେତେକ ବୈଦେଶିକ ଶବ୍ଦରେ କିମ୍ବା ବୈଦେଶିକ ଶବ୍ଦାନୁକୃତ ଶବ୍ଦରେ "ସ୍ତ" ପ୍ରଭୃତି, ବିଶେଷତଃ ସକାର ଯାହାର ଆଦିରେ ଥାଏ, ଏପରି କେତେକ ସଂଯୁକ୍ତ ବର୍ଣ୍ଣ ରହିଥାଏ। ଏପରି ଶବ୍ଦ ସଂଖ୍ୟା ମଧ୍ୟ ଅତି ଅଳ୍ପ। ଅପିଚ ଏପରି କେତେକ ସ୍ଥଳରେ ଦୁଇଗୋଟି ବର୍ଣ୍ଣର ଶୀଘ୍ରୋଚ୍ଚାରଣରୁ ସଂଯୋଗ ହୋଇଥାଏ।

ଓଡ଼ିଆରେ ଅନ୍ୟାନ୍ୟ ସଂଯୁକ୍ତ ବର୍ଣ୍ଣମାନଙ୍କର ପ୍ରମାଣ ଯଥାକ୍ରମରେ ଲେଖାଯାଉଅଛି।

ସ୍ତ ଓ ସ୍ଥ - ଅନାସ୍ତ (ଅନାସ୍ଥା ଶବ୍ଦର ଅନୁକୃତ), କାକୁସ୍ତ (କାକୁ + ସ୍ଥ - ଏହାର ଅନୁକୃତ), ପରସ୍ତେ (ପ୍ରସ୍ଥ ଶବ୍ଦର ଅନୁକୃତ), ସପ୍ତା (ଶପ୍ତ ଶବ୍ଦର ଅନୁକୃତ), ଲକସ୍ତକ (ବିନୟ ବା ବିନୟୀ ଅର୍ଥ- ଏହାର ପ୍ରକୃତି ଚିନ୍ତ୍ୟ), ଏକସତୋରି ପ୍ରଭୃତି ଶବ୍ଦସ୍ଥ 'ସ' ଓ 'ତ'ର ଶୀଘ୍ରୋଚ୍ଚାରଣରେ ଏକସ୍ତୋରି ପ୍ରଭୃତି ଶବ୍ଦରେ 'ସ୍ତ' କାର ଘଟିଅଛି। ବରଖାସ୍ତ, ବରଦାସ୍ତ, ଇସ୍ତଫା, ଇସ୍ତିହାର, କିସ୍ତି, ଜବରଦସ୍ତ, ପିସ୍ତଲ, ପୋସ୍ତା (ଅବଲମ୍ବନାର୍ଥ),

ଇତ୍ୟାଦି ବୈଦେଶିକ ଶବ୍ଦରେ 'ସ୍ତ' କାର ରହିଥାଏ। ସ୍ଥକାର ଅଶ୍ୱ□ ଶବ୍ଦଜାତ ଓସସ୍ଥ ଶବ୍ଦରେ ମାତ୍ର ଦେଖାଯାଏ।

ଷ୍ଟ ଓ ଷ୍ଟି-ଅରଷ୍ଟି = (ଅରିଷ୍ଟ ଶବ୍ଦଜ - ଅରିଷ୍ଟମଶୁଭେତକ୍ରେ-ଇତି ବିଶ୍ୱଃ), ଅସାଷ୍ଟମ (ଏହାର ପ୍ରକୃତି ଗବେଷଣୀୟ), ଚେରଷ୍ଟା (ଚେଷ୍ଟା ଶବ୍ଦଜ), ଦ୍ରପିଷ୍ଟ (ଦର୍ପିଷ୍ଟ ଶବ୍ଦଜ), ଜ୍ୟେଷ୍ଠ ମାତା ଓ ଯୁଧିଷ୍ଠିର ଶବ୍ଦର ଅନୁକରଣରେ ଜେଷ୍ଟାଇ ଓ ଯୁଧିଷ୍ଟି ଶବ୍ଦରେ ଷ୍ଟକାର ବ୍ୟବହୃତ ହୁଏ।

ସ୍କ- ଅସ୍କରା (ଅବସ୍କର ଶବ୍ଦଜ), ଟସ୍କର (ତସ୍କର ଶବ୍ଦାନୁକୃତ), ଅସ୍କତ-ଅଶକ୍ତ ଶବ୍ଦରୁ ଅପଭ୍ରଷ୍ଟ ଆସକତ ଶବ୍ଦର ଶୀଘ୍ରୋଚ୍ଚାରଣରେ ହୋଇଥାଏ। ସସ୍କାଳ - ସନ୍ଧ୍ୟାଃକାଳ ଶବ୍ଦର ଶୀଘ୍ରୋଚ୍ଚାରଣରୁ ଜାତ। ଫଂସକ୍ା ଶବ୍ଦ ଶୀଘ୍ରୋଚ୍ଚାରଣରେ ଫଂସ୍କା ହୋଇଥାଏ। ଉସ୍କେଇବା (ଉତ୍ତେଜିତ-କ), ମସ୍କରା (ଭଣ୍ଡ)। ଇତ୍ୟାଦି।

ଶ୍ଚ- ପ୍ରାୟଶ୍ଚିତ୍ତ ଶବ୍ଦର ଅପଭ୍ରଷ୍ଟ ପ୍ରାଶ୍ଚିତ ଶବ୍ଦରେ ଶ୍ଚକାର ରହିଥାଏ।

ସ୍ପ- ଇସ୍ପାତ (ଟାଣ ଲୁହା) ଏହି ବୈଦେଶିକ ବା ବୈଦେଶିକ ଶବ୍ଦାନୁକୃତ ଶବ୍ଦରେ ମାତ୍ର ସ୍ପ ଦେଖାଯାଏ।

ଗ୍ଧ- ସଂଶୟାର୍ଥ ସନ୍ଦିଗ୍ଧ ଶବ୍ଦର ଅନୁକୃତ ଦୁଗ୍ଧା ବା ଦୋଗ୍ଧା (ସନ୍ଦେହ ଅର୍ଥ) ଶବ୍ଦରେ 'ଗ୍ଧ' ଏହି ସଂଯୁକ୍ତ ବର୍ଣ୍ଣ ଦେଖାଯାଏ।

ବ୍ଦ- 'ଲବ୍ଦ' (ଏହାର ପ୍ରକୃତି ଗବେଷଣୀୟ) ଏହି ଶବ୍ଦରେ ମାତ୍ର 'ବ୍ଦ' ଏହି ସଂଯୁକ୍ତ ବର୍ଣ୍ଣ ଦେଖାଯାଏ।

ପ୍ତ, ଲ୍ତ- ରପ୍ତାନି ଓ ତଲ୍ତା ଆଦି ବୈଦେଶିକ ଶବ୍ଦରେ 'ପ୍ତ' ଓ 'ଲ୍ତ' ଏହି ସଂଯୁକ୍ତ ବର୍ଣ୍ଣଦ୍ୱୟ ଥାଏ।

ଳ୍କ- ଅନେକେ ଉଲ୍କୁଟିବା (ଜାତ ବା ପ୍ରକାଶ ହେବା ଅର୍ଥ) ପଦକୁ ଉଲ୍କୁଟିବା ଏବଂ ଉଲ୍କୁଟାଇବା ପଦକୁ (ଚିତ୍ରିତ ଓ ଖୋଦିତ କରିବା ଅର୍ଥ) ଉଲ୍କୁଟାଇବା ଲେଖନ୍ତି। ଏପରି ସ୍ଥଳରେ ମାତ୍ର 'ଳ୍କ' ଏହି ସଂଯୁକ୍ତ ବର୍ଣ୍ଣ ରହିଥାଏ।

ସ୍ପ- ଝାପସା (ଏହାର ଅର୍ଥ ଅସ୍ପଷ୍ଟ) ପ୍ରଭୃତି ଶବ୍ଦରେ ଶୀଘ୍ରୋଚ୍ଚାରଣରେ ଝାସ୍ପା ହେବାରୁ 'ସ୍ପ' ସଂଯୁକ୍ତ ଅକ୍ଷର ରହିଥାଏ।

ସ୍ତ୍ର- ଓଡ଼ିଆରେ ବ୍ୟବହୃତ 'ଇସ୍ତ୍ରି' ଏହି ବୈଦେଶିକ ଶବ୍ଦରେ 'ସ୍ତ୍ର' ଏହି ବ୍ୟଞ୍ଜନତ୍ରୟର ସଂଯୁକ୍ତାକ୍ଷର ରହିଥାଏ।

**ସମଗ୍ର ବର୍ଣ୍ଣମାନଙ୍କର ଲଘୁ ଗୁରୁଜ୍ଞାନ :**

ବର୍ଣ୍ଣ ସବୁ ଲଘୁ ଗୁରୁ ନିୟମରେ ଦୁଇପ୍ରକାର। ଯେଉଁ ବ୍ୟଞ୍ଜନବର୍ଣ୍ଣରେ ଅନୁସ୍ୱାର କିମ୍ବା ଦୀର୍ଘସ୍ୱର ଯୁକ୍ତ ଥାଏ, ଯେଉଁ ବର୍ଣ୍ଣ ସଂଯୁକ୍ତାକ୍ଷର ଓ ଦ୍ୱିତ୍ୱାକ୍ଷରର ପୂର୍ବରେ ଥାଏ, ପୃଥଗ୍‌ଭୂତ ଦୀର୍ଘସ୍ୱର, ଏସବୁ ଗୁରୁ ଏବଂ ହ୍ରସ୍ୱସ୍ୱର, କେବଳ ହ୍ରସ୍ୱସ୍ୱର ବା ଚନ୍ଦ୍ରବିନ୍ଦୁ ସହ ହ୍ରସ୍ୱସ୍ୱରରେ ଯୁକ୍ତ ବ୍ୟଞ୍ଜନବର୍ଣ୍ଣମାନ ଲଘୁ ନାମରେ ଅଭିହିତ ହୁଅନ୍ତି। ଅପିଚ ସ୍ଥାନେ ସ୍ଥାନେ ପାଦାନ୍ତସ୍ଥ ଲଘୁ ଗୁରୁରୂପେ ଧାର୍ଯ୍ୟ ହୁଏ। କେହି କେହି ପ୍ରମାଦତଃ ଅନୁସ୍ୱାରର ଅର୍ଦ୍ଧମାତ୍ରା ଚନ୍ଦ୍ରବିନ୍ଦୁର ଯୋଗରେ ବର୍ଣ୍ଣର ଗୁରୁତ୍ୱ କଳ୍ପନା କରିଥାନ୍ତି, ତାହା ଅସଙ୍ଗତ ଓ ଅସାଧୁ, ଚନ୍ଦ୍ରବିନ୍ଦୁ ଯୋଗେ କଦାପି ବର୍ଣ୍ଣ ଗୁରୁତ୍ୱ ପାଏ ନାହିଁ। ପ୍ରାକୃତ ଏବଂ ଦ୍ରାବିଡ଼ ତ୍ରୈଲଙ୍ଗ ପ୍ରଭୃତି (ଯହିଁରେ ଚନ୍ଦ୍ରବିନ୍ଦୁର ବ୍ୟବହାର ଅଛି) ଆଧୁନିକ ଦେଶୀୟ ଭାଷାରେ ଚନ୍ଦ୍ରବିନ୍ଦୁ ବା ଅର୍ଦ୍ଧାନୁସ୍ୱାର ଯୋଗେ ବର୍ଣ୍ଣର ଗୁରୁତ୍ୱ କଳ୍ପନା କରାଯାଏ ନାହିଁ। ତ୍ରୈଲଙ୍ଗ ପ୍ରଭୃତି ଭାଷାରେ ଚନ୍ଦ୍ରବିନ୍ଦୁ ଦିଆ ନଯାଇ ଅର୍ଦ୍ଧାନୁସ୍ୱାର ଦିଆଯାଏ। ଆମ୍ଭେମାନେ ଚନ୍ଦ୍ରବିନ୍ଦୁର ଉଚ୍ଚାରଣ ଯେପରି କରୁଁ, ତ୍ରୈଲଙ୍ଗାଦିମାନେ ଅର୍ଦ୍ଧାନୁସ୍ୱାରର ଉଚ୍ଚାରଣ ସେପରି କରନ୍ତି।

**ଅଥ ସନ୍ଧିକ୍ରମ :**

ସନ୍ନିହିତ ବର୍ଣ୍ଣଦ୍ୱୟର ସଂଯୋଗ ବିଶେଷକୁ ସନ୍ଧି କହନ୍ତି। ସନ୍ଧି ସମାସରେ ନିତ୍ୟ ହୁଏ, କିନ୍ତୁ ବାକ୍ୟରେ ବିବକ୍ଷାନୁଯାୟୀ ଘଟେ। ଏହା ସଂସ୍କୃତର କ୍ରମ। ଓଡ଼ିଆ ଭାଷାରେ ଉଚ୍ଚାରଣ ପ୍ରାୟଶଃ ଲଘୁ ଓ ମୃଦୁ ଥିବାରୁ ସନ୍ଧି ତାଦୃଶ ବିବକ୍ଷିତ ହୁଏ ନାହିଁ। ସନ୍ଧି ହେବାକୁ ଥିଲେ ସୁଦ୍ଧା ସନ୍ଧି ନ କରି ସମଧିକ ସ୍ଥାନରେ ଶ୍ରୁତିସୁଖାର୍ଥ ପଦକୁ ପୃଥକ ରଖିବାକୁ ହୁଏ। ସୁତରାଂ ବିବକ୍ଷାଭାବରୁ ସନ୍ଧି ସର୍ବତ୍ର କରାଯାଏ ନାହିଁ। ପ୍ରାକୃତର ସନ୍ଧି ନିୟମର ଆଉ ଟିକିଏ ବିଶେଷତ୍ୱ ଅଛି। ତାହା ଏହି ଯେ ସ୍ୱରବର୍ଣ୍ଣ ପରେ ଥିଲେ ପୂର୍ବପଦସ୍ଥିତ ଅନ୍ତ୍ୟ ସ୍ୱରର ଲୋପ ହୁଏ। ଏହି କ୍ରମ ସମଧିକ ସ୍ଥଳରେ ଘଟେ।

ସନ୍ଧି ସମ୍ବନ୍ଧରେ ପ୍ରାକୃତରେ ଯେଉଁ ବିଶେଷତ୍ୱ ଅଛି, ଓଡ଼ିଆ ଭାଷାରେ କେତେକ ସ୍ଥଳରେ ତାହାହିଁ ହୁଏ। ପରନ୍ତୁ ସାଂସ୍କୃତିକ ନିୟମାନୁସାରେ ଓଡ଼ିଆ ପଦମାନଙ୍କର ସନ୍ଧି ମଧ୍ୟ କେତେକ ସ୍ଥଳରେ ହୁଏ। ପ୍ରାକୃତାନୁକରଣରେ ବିଶୁଦ୍ଧ ଓଡ଼ିଆ ଭାଷାରେ ସ୍ୱର ସନ୍ଧି ମାତ୍ର ହୁଏ। ଅତଏବ ଓଡ଼ିଆରେ ସନ୍ଧି ଏକପ୍ରକାର। ଓଡ଼ିଆରେ ଯେ କୌଣସି ପ୍ରକାର ସନ୍ଧି ହେଉ, ପଦ୍ୟରେ ମାତ୍ର ଆବଶ୍ୟକ ମତେ କରାଯାଇଥାଏ।



# ବର୍ଣ୍ଣମାଳା ଓ ଧ୍ୱନିତତ୍ତ୍ୱ

## ବିନାୟକ ମିଶ୍ର

ପ୍ରତ୍ନତତ୍ତ୍ୱବିଦ୍‌ମାନେ ସ୍ଥିର କରିଅଛନ୍ତି ଯେ, ପ୍ରାଚୀନ କାଳରେ ଭାରତରେ ବ୍ରାହ୍ମୀ ଲିପିର କ୍ରମବିକାଶ ଫଳରେ ମାଗଧୀ ଲିପି ସୃଷ୍ଟ ହୋଇ ତହିଁରୁ ପରବର୍ତ୍ତୀ ଯୁଗରେ ଓଡ଼ିଆ, ବଙ୍ଗଳା ପ୍ରଭୃତି ବିଭିନ୍ନ ଲିପିର ସୃଷ୍ଟି ଘଟିଅଛି । ମାଗଧୀ ଲିପିରୁ ଓଡ଼ିଆ ଲିପିର ବିକାଶକ୍ରମ ଦେଖାଇବାକୁ ହେଲେ ବହୁ ପ୍ରାଚୀନ କାଳର ହିନ୍ଦୀ, ବଙ୍ଗଳା ଓ ଓଡ଼ିଆ ହାତଲେଖା ତାଳପତ୍ର ପୋଥିମାନ ଏବଂ ବିଭିନ୍ନ ସମୟର ତାମ୍ରଶାସନମାନ ସଂଗ୍ରହ କରି ତହିଁରୁ ବିଭିନ୍ନ ଲିପିର ଆକୃତି ତୁଳନା କରିବାକୁ ହେବ । ଏଠାରେ ସେପରି କରିବା ଅସମ୍ଭବ । ଏଣୁ ସଂକ୍ଷେପରେ ଓଡ଼ିଆ ଲିପିର ଉତ୍ପତ୍ତି ସମ୍ବନ୍ଧରେ ଉଲ୍ଲେଖ କରିବାକୁ ହେବ ।

ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଭୁବନେଶ୍ୱରସ୍ଥ ଧଉଳିଗିରିର ଓ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ଖଣ୍ଡଗିରିର ଖାରବେଳଙ୍କ ଶିଳାଲିପିରୁ ଜଣାଯାଏ ଯେ, ପ୍ରାଚୀନ କାଳରେ ଓଡ଼ିଶାରେ ବ୍ରାହ୍ମୀ ଲିପି ବ୍ୟବହୃତ ହେଉଥିଲା । ଖାରବେଳଙ୍କ ଉତ୍ତାରୁ ଓଡ଼ିଶାରେ ବ୍ରାହ୍ମୀ ଲିପି ବ୍ୟବହୃତ ହେଉଥିବାର ମଧ ଖଣ୍ଡଗିରିରୁ ପ୍ରମାଣ ମିଳେ । ଓଡ଼ିଶାରେ ବ୍ରାହ୍ମୀ ଲିପି ଯେ ବହୁକାଳ ବ୍ୟବହୃତ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । କିନ୍ତୁ ପ୍ରଥମ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ ବ୍ୟବହୃତ ଲିପିର ଆକୃତି ସମ୍ବନ୍ଧରେ ଏପର୍ଯ୍ୟନ୍ତ କୌଣସି ନିଦର୍ଶନ ମିଳିନାହିଁ । ପରବର୍ତ୍ତୀ ଯୁଗରେ ବ୍ରାହ୍ମୀଲିପିରୁ ବିକଶିତ ହୋଇ ଯେଉଁ ଲିପି ଉତ୍ତର - ଭାରତରେ ବ୍ୟବହୃତ ହେଉଥିଲା, ସେହି ଲିପି ଷଷ୍ଠ ଶତାବ୍ଦୀରେ ଓ ତାହାର ପରବର୍ତ୍ତୀ ଯୁଗରେ ଓଡ଼ିଶାରେ ମଧ ବ୍ୟବହୃତ ହେଉଥିବାର ପଟିଆକେଲା ତାମ୍ରଶାସନରୁ **(E.I.Vol. IX, p.285)**, ଗଞ୍ଜାମରୁ ଆବିଷ୍କୃତ ମାଧବରାଜଙ୍କ ତାମ୍ରଶାସନରୁ **(E.I.Vol. IV)** ଓ ହୁୟେନସାଂଙ୍କ ବିବରଣୀରୁ ଜଣାଯାଏ । ଏଥିରୁ ଜଣାଯାଏ ଯେ, ବ୍ରାହ୍ମୀ ଲିପି ଓଡ଼ିଶାରେ ସ୍ୱତନ୍ତ୍ର ଭାବରେ ବିକଶିତ ନ ହୋଇ ତାହାର ଉତ୍ତର ଭାରତୀୟ ବିକାଶକ୍ରମ ଓଡ଼ିଶାରେ ବ୍ୟବହୃତ ହେଉଥିଲା । କେବଳ ଓଡ଼ିଶାରେ ନୁହେଁ - ମଗଧରେ ବ୍ରାହ୍ମୀ ଲିପି ବିକଶିତ ହୋଇ ଶୌରସେନ, ମହାରାଷ୍ଟ୍ର ପ୍ରଭୃତି ପ୍ରତ୍ୟେକ ପ୍ରଦେଶକୁ ବିସ୍ତୃତ ହୋଇଥିଲା । କାରଣ, ମଗଧ ସେତେବେଳେ ଜ୍ଞାନଚର୍ଚ୍ଚାର କେନ୍ଦ୍ରସ୍ଥଳୀ ଥିବାରୁ ବିଭିନ୍ନ ପ୍ରଦେଶରୁ ପଣ୍ଡିତମାନେ

ସେଠାକୁ ଯାଇ ଲିପିର ବିକାଶକ୍ରମ ନିଜ ଦେଶକୁ ଘେନି ଆସୁଥିଲେ । ଏହି ହେତୁରୁ ବ୍ରାହ୍ମୀ ଲିପିରୁ କ୍ରମଶଃ ବିକଶିତ କୁଟିଳାକ୍ଷର ଦଶମ ଶତାବ୍ଦୀକି ଓଡ଼ିଶାରେ ବିସ୍ତୃତ ହୋଇଥିଲା ।

ଆଧୁନିକ ଓଡ଼ିଆ ଲିପିମାଳା ଯେ ପ୍ରାଚୀନ କୁଟିଳାକ୍ଷରରୁ ଉତ୍ପନ୍ନ, ଏ କଥା Epigraphia Indica ରେ ପ୍ରକାଶିତ କୁଟିଳାକ୍ଷରର ଶାସନପତ୍ରମାନ ଆଲୋଚନା କଲେ ଜଣାଯାଏ । ଆଧୁନିକ ଓଡ଼ିଆ ଲିପିମାଳା ମଧ୍ୟରୁ କ, ନ, ସ, ମ, ଟ, ଗ, ଲ, ତ, ଢ, ଭ, ୟ, ଷ, ପ, ଘ, ଥ, ଧ, ବ, ଜ - ଏହି କେତୋଟି ଲିପିକି ଆଧୁନିକ ହିନ୍ଦୀ ଲିପିମାଳାର ସେହି ଲିପିମାନଙ୍କ ସହିତ ତୁଳନା କଲେ ଘନିଷ୍ଠ ସୌସାଦୃଶ୍ୟ ଦେଖାଯାଏ । ଓଡ଼ିଆର ଖ, ଟ, ଶ, ଦ, ହ, ଚ ଓ ଇ ପ୍ରଭୃତି ଲିପିମାନଙ୍କ ସହିତ ପ୍ରାଚୀନ କୁଟିଳ ଲିପିମାନଙ୍କର ଯେ ଘନିଷ୍ଠ ସୌସାଦୃଶ୍ୟ ଅଛି, ତାହା ପ୍ରତିକୃତି ବିନା ପାଠକମାନଙ୍କୁ ବୁଝାଇବା ଅସମ୍ଭବ । ଏଣୁ ବିଶେଷ କଥା ଉଲ୍ଲେଖ ନକରି କେବଳ ଏତିକି ଉଲ୍ଲେଖ କଲେ ଚଳେ ଯେ, ଆଧୁନିକ ଓଡ଼ିଆ ଲିପିଗୁଡ଼ିକର ଉପରିଭାଗ ବର୍ତ୍ତୁଳାକାର ନ କରି କେବଳ ହିନ୍ଦୀ ଓ ବଙ୍ଗଳା ଅକ୍ଷର ଲେଖିବା ରୀତିରେ ରେଖା ଟାଣିଦେଲେ ଅନେକ ଓଡ଼ିଆ ଅକ୍ଷର କୁଟିଳାକ୍ଷରରେ ପରିଣତ ହୋଇଯିବ । କୁଟିଳାକ୍ଷରରୁ ଯେ ଓଡ଼ିଆ ଅକ୍ଷରର ଉତ୍ପତ୍ତି, ଏଥିରେ ସନ୍ଦେହ ନାହିଁ । କିନ୍ତୁ ବହୁ ପ୍ରାଚୀନ କାଳର ହାତଲେଖା ଓଡ଼ିଆ ତାଳପତ୍ର ପୋଥି ସଂଗୃହୀତ ହୋଇନଥିବାରୁ ଆଧୁନିକ ଓଡ଼ିଆ ଲିପିର ଉତ୍ପତ୍ତିକାଳ ନିରୂପଣ କରିବା କଠିନ । କେବଳ କପିଳେନ୍ଦ୍ର ଦେବଙ୍କ ଶିଳାଲିପି ଉପରେ ନିର୍ଭର କରି ଏତିକି କୁହାଯାଇ ପାରେ ଯେ, ପଞ୍ଚଦଶ ଶତାବ୍ଦୀକି ଓଡ଼ିଆ ଲିପି ସୃଷ୍ଟି ହୋଇସାରିଅଛି ।

ଓଡ଼ିଶାରୁ ଆବିଷ୍କୃତ କେତେଗୁଡ଼ିଏ ଶାସନପତ୍ର ପ୍ରକାଶ କରିବା ସମୟରେ ସେଗୁଡ଼ିକ ବଙ୍ଗଳା ଅକ୍ଷରରେ ଖୋଦିତ ବୋଲି କେହି କେହି ପ୍ରକାଶକ କହି ଥିବାରୁ ପାଠକମାନଙ୍କ ମଧ୍ୟରୁ କାହାରି କାହାରି ମନରେ ସନ୍ଦେହ ଉପସ୍ଥିତ ହୋଇଅଛି । ସେମାନେ ମନେକରନ୍ତି ଯେ, ଓଡ଼ିଶାରେ ପ୍ରାଚୀନ କାଳରେ ବଙ୍ଗଳା ଅକ୍ଷରରେ ଶାସନପତ୍ର ଖୋଦିତ ହୋଇଥିଲା ବୋଲି ଯେଉଁମାନେ କହନ୍ତି, ସେମାନେ ବଙ୍ଗଳା ଲିପିରୁ ଓଡ଼ିଆ ଲିପି ଉତ୍ପନ୍ନ ବୋଲି ପ୍ରମାଣ କରିବାକୁ ପ୍ରୟାସୀ । କିନ୍ତୁ ସେପରି ମନେ କରିବା ଠିକ୍ ନୁହେଁ । କୁଟିଳାକ୍ଷରରୁ ବିକଶିତ ଲିପିରେ ଉକ୍ତ ଶାସନପତ୍ରଗୁଡ଼ିକ ଖୋଦିତ । ସେହି ଶାସନପତ୍ର ଗୁଡ଼ିକ ଯେଉଁ ଲିପିରେ ଖୋଦିତ, ତାହା ପାଠକ ମାନଙ୍କୁ ସହଜରେ ବୁଝାଇବା ନିମନ୍ତେ ଉକ୍ତ ଶାସନପତ୍ର ମାନଙ୍କର ଲିପିଗୁଡ଼ିକୁ ପ୍ରାଚୀନ ବଙ୍ଗଳା ଅକ୍ଷର ବୋଲି କୁହାଯାଏ । କାରଣ, ପ୍ରାଚୀନ

ଓଡ଼ିଆ ଲିପି କହିଲେ ଲିପିମାନଙ୍କର ଆକୃତି ସମ୍ବନ୍ଧରେ ପାଠକମାନଙ୍କ ମନରେ କୌଣସି ଧାରଣା ଉପୁଜିବ ନାହିଁ । ଯାହାହେଉ, କୁଟିଳାକ୍ଷରରୁ ବିକଶିତ ସେହି ଲିପିର ଉପରିଭାଗ ବର୍ତ୍ତୁଳାକାର ହେବାରୁ ଓଡ଼ିଆ ଲିପି ଉତ୍ପନ୍ନ ହୋଇଅଛି । ଓଡ଼ିଆ ଅକ୍ଷରର ବର୍ତ୍ତୁଳାକାରର କାରଣ ସମ୍ବନ୍ଧରେ ବିମ୍ସ ସାହେବ ଯାହା ଅନୁମାନ କରନ୍ତି, ତାହା ଠିକ୍ ବୋଲି ମନେହୁଏ । ପୂର୍ବେ ଭାରତରେ ତାଳପତ୍ର ଓ ଲୁହାର ଲେଖନୀରେ ପୋଥି ଲେଖା ହେଉଥିଲା । ଏଣୁ ଅକ୍ଷରର ଉପରିଭାଗରେ ରେଖା ଟାଣିଲେ ତାଳପତ୍ର କଣା ହେବାର ଆଶଙ୍କା ଥିବାରୁ ଅକ୍ଷରର ଉପରିଭାଗର ରେଖାଟି ଟିକିଏ ବର୍ତ୍ତୁଳାକାର କରି ଦେବାକୁ ହେଉଥିଲା । ମୁସଲ୍‌ମାନମାନଙ୍କ ରାଜତ୍ୱ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ଉତ୍ତର ଭାରତରେ କାଳି କଲମ ବ୍ୟବହୃତ ହେଲା । ଏଣୁ ଅକ୍ଷରର ଉପରିଭାଗ ବର୍ତ୍ତୁଳାକାର କରିବାର ପ୍ରୟୋଜନ ହେଲାନାହିଁ । କିନ୍ତୁ ଓଡ଼ିଶାରେ ଆଜି ପର୍ଯ୍ୟନ୍ତ ଲୁହାର ଲେଖନୀ ଓ ତାଳପତ୍ର ବ୍ୟବହୃତ ହେଉଥିବାରୁ ଓଡ଼ିଆ ଲିପିମାନଙ୍କର ଈଷତ୍ ବର୍ତ୍ତୁଳାକାର କ୍ରମଶଃ ପୂର୍ଣ୍ଣ ବର୍ତ୍ତୁଳାକାରରେ ପରିଣତ ହୋଇଅଛି । ଆହୁରି ମଧ୍ୟ ପାର୍ଶ୍ୱବର୍ତ୍ତୀ ତେଲୁଗୁ ଲିପିର ଅନୁକରଣରେ ଓଡ଼ିଆ ଲିପି ପୂର୍ଣ୍ଣ ବର୍ତ୍ତୁଳାକାର ହୋଇଥିବ ବୋଲି ଅନୁମାନ କରାଯାଇପାରେ । ଯାହାହେଉ, ଲିପିମାନଙ୍କ ଉତ୍ପତ୍ତି ସମ୍ବନ୍ଧରେ ଆଲୋଚନା ନ କରି ବର୍ତ୍ତମାନ ସେମାନଙ୍କ ଧ୍ୱନି ସମ୍ବନ୍ଧରେ ଆଲୋଚନା କରିବାକୁ ହେବ ।

### ସ୍ୱରବର୍ଣ୍ଣ

ଅ – ଇ, ଈ, ବା ଉ, ଊ ମଧ୍ୟରେ ଯେତିକି ଉଚ୍ଚାରଣ ପ୍ରଭେଦ ଅଛି, ପ୍ରାଚୀନ କାଳରେ ବୈଦିକ ସଂସ୍କୃତ ଭାଷାରେ ଅ, ଆ ମଧ୍ୟରେ ତେତିକି ପ୍ରଭେଦ ଥିବାର, ଅର୍ଥାତ୍ 'ଅ' ହ୍ରସ୍ୱ 'ଆ' ରୂପେ ଉଚ୍ଚାରିତ ହେଉଥିବାର, ଭାଷାତତ୍ତ୍ୱବିତ୍ ମାନେ ଅନୁମାନ କରନ୍ତି । ଏବେ ମଧ୍ୟ ତେଲୁଗୁ, ତାମିଲୀ, କାନେରୀ ଓ ମରହଟ୍ଟୀ ଭାଷାରେ 'ଅ' ହ୍ରସ୍ୱ 'ଆ' ରୂପେ ଉଚ୍ଚାରିତ ହୁଏ । ସୁତରାଂ ପ୍ରାଚୀନ କାଳରେ ବୈଦିକ ସଂସ୍କୃତ ଭାଷାରେ 'ଅ'ର ସେପରି ଉଚ୍ଚାରଣ ଥିବା ଅସମ୍ଭବ ନୁହେଁ । କିନ୍ତୁ ସେ ଉଚ୍ଚାରଣ କେବେ ଲୁପ୍ତ ହୋଇଅଛି, କୁହାଯାଇ ନପାରେ । ଅଧ୍ୟାପକ ମାକ୍ ଡୋ଼ନେଲ (Mac Donel) ସାହେବ କହନ୍ତି, ଯେ ଯେଉଁ ସବୁ ଗ୍ରୀକ୍ ଶବ୍ଦ ପ୍ରାଚୀନ କାଳରେ ସଂସ୍କୃତ ଭାଷାରେ ମିଶିଥିଲା, ସେହି ସବୁ ଗ୍ରୀକ୍ ଶବ୍ଦର ଅ କାର ସ୍ଥାନରେ ଆ କାର ଯୋଗ କରି ବ୍ୟବହାର କରାଯାଇଥିବାରୁ ଜଣାଯାଏ ଯେ, ଭାରତୀୟ ଆର୍ଯ୍ୟମାନଙ୍କ ମଧ୍ୟରେ ହ୍ରସ୍ୱ 'ଆ'ର ଧ୍ୱନି ଲୁପ୍ତ ହୋଇପଡ଼ିଥିବାରୁ ସେମାନଙ୍କ କାନରେ ଗ୍ରୀକ୍ ଭାଷାର 'ଅ' 'ଆ' ରୂପେ ଧ୍ୱନିତ ହେଉଥିଲା । ପ୍ରାଚୀନ କାଳରେ

ସଂସ୍କୃତ ଭାଷାରୁ ହ୍ରସ୍ୱ 'ଆ'ର ଧ୍ୱନି ଯେତେବେଳେ ଲୁପ୍ତ ହୋଇଥିଲା, ତେତେବେଳେ ବର୍ତ୍ତମାନ ଓଡ଼ିଆ, ବଙ୍ଗଳା ପ୍ରଭୃତି ଭାଷାରେ 'ଅ' ଯେପରି ଉଚ୍ଚାରିତ ହୁଏ, ତହିଁରେ 'ଆ'ର ହ୍ରସ୍ୱ ଧ୍ୱନି ନ ଥିବା ବିଚିତ୍ର କଥା ନୁହେଁ । କିନ୍ତୁ ଏହି ଭାଷାମାନଙ୍କରେ କେତେକ ପାଲି ଶବ୍ଦ ତହିଁରେ ଥିବା ଅ କାର ସ୍ଥାନରେ ଆ କାର ଯୋଗ କରି ବ୍ୟବହାର କରାଯାଉଥିବାରୁ (ଯଥା ପା : ମଚ୍ଛ = ଓ : ବଂ : ମାଛ, ପା: ହତ୍ଥ = ଓ : ବଂ : ହାତ) ମନେ ହୁଏ, ଓଡ଼ିଶାର ଓ ବଙ୍ଗଳାର ଆଦିମ ଅଧିବାସୀମାନେ 'ଅ'କୁ ହ୍ରସ୍ୱ 'ଆ' ରୂପେ ଉଚ୍ଚାରଣ କରୁଥିଲେ । ବଙ୍ଗଳା ଭାଷାର ଏହା ପ୍ରାୟ ଗୋଟିଏ ସାଧାରଣ ପ୍ରକୃତି ଯେ, ପ୍ରାୟ ଅଧିକାଂଶ ପାଲି ଶବ୍ଦର ଆଦ୍ୟ ଅ କାର ସ୍ଥାନରେ ଆ କାର ଯୁକ୍ତ ହୋଇ ଉଚ୍ଚାରିତ ହୁଏ (ଯଥା, ପା: ଗଚ୍ଛ = ବଂ : ଗାଛ, ପା:ଭଦ୍ଦ = ବଂ : ଭାଲ, ପା : ପତ୍ଥର = ବଂ : ପାଥର); କିନ୍ତୁ ଓଡ଼ିଆରେ ସେପରି ହୁଏନାହିଁ । କେତେଗୁଡ଼ିଏ ପାଲିରୁ ରୂପାନ୍ତରିତ ନିର୍ଦ୍ଦିଷ୍ଟ ଶବ୍ଦର ଆଦ୍ୟ ଅକାର ସ୍ଥାନରେ ଆକାର ଉଚ୍ଚାରିତ ହୁଏ । ପାଲି ଭାଷାରେ ଅକାରାନ୍ତ ଯୁକ୍ତବର୍ଣ୍ଣ କିମ୍ବା ଖ, ଘ, ଛ, ଠ, ଥ, ଧ, ଭ, ହ ପ୍ରଭୃତି ମହାପ୍ରାଣବର୍ଣ୍ଣ ମଧ୍ୟରୁ ଗୋଟିଏ ବର୍ଣ୍ଣ ଯେଉଁ ଶବ୍ଦର ଦ୍ୱିତୀୟ ବର୍ଣ୍ଣ ରୂପେ ଥିଲା, ଓଡ଼ିଆ ଭାଷାରେ ସେହି ସବୁ ଶବ୍ଦର ଆଦ୍ୟବର୍ଣ୍ଣ ଅକାର ସ୍ଥାନରେ ଓଡ଼ିଆ ଭାଷାରେ ଆକାର ଉଚ୍ଚାରିତ ହେଉଅଛି (ଯଥା, ସଂ:ବକ୍ର = ପା: ବାଙ୍କ, ସଂ: ମର୍କଟ = ପା: ମକ୍କଟ = ଓ:ମାଙ୍କଡ଼, ସଂ: ଅଦ୍ୟ = ପା: ଅଜ୍ଜ = ଓ:ଆଜି, ସଂ:ଭୃଜ୍ = ପା:ଭଜ୍ଜ = ଓ: ଭାଜ୍, ସଂ:ମୃଜ୍ = ପା: ମଜ୍ଜ = ଓ: ମାଜ, ସଂ:ବର୍ତ୍ମ = ପା: ବଟ୍ଟ = ଓ:ବାଟ, ସଂ:ସଖୀ = ପା: ସାହା = ଓ:ସାହା, ସଂ:ଅଭ-= ପା: ଅବ୍ଭ = ଓ:ଆଭ) । କ୍ୱଚିତ୍ ଏହି ସୂତ୍ରର ବ୍ୟତିକ୍ରମ ଘଟିଥାଏ (ଯଥା, ସଂ:ପ୍ରସ୍ତର = ପା: ପତ୍ଥର = ଓ: ପଥର, ସଂ: ମତ୍ସ୍ୟ = ପା: ମଚ୍ଛ = ଓ: ମାଛ ପା: ଗଚ୍ଛ = ଓ: ଗଛ) । ଯାହାହେଉ ଦ୍ରାବିଡ଼ୀ ଭାଷାରେ 'ଅ' ହ୍ରସ୍ୱ 'ଆ' ରୂପେ ଉଚ୍ଚାରିତ ହେଉଥିବାରୁ ଓ ଓଡ଼ିଶାରେ ଦ୍ରାବିଡ଼ ଜାତି ଆଦିମ ଅଧିବାସୀ ଥିଲେ ବୋଲି ପ୍ରମାଣିତ ହେଉଥିବାରୁ, ଓଡ଼ିଆ ଭାଷାରେ ପ୍ରାଚୀନ କାଳରେ 'ଅ' ସ୍ଥାନେ ସ୍ଥାନେ ହ୍ରସ୍ୱ 'ଆ' ରୂପେ ଉଚ୍ଚାରିତ ହେଉଥିଲା ବୋଲି କୁହାଯାଇପାରେ । ସେହି ହେତୁରୁ ଅନେକ ଅକାରାନ୍ତ ସଂସ୍କୃତ ଶବ୍ଦ ଓଡ଼ିଆରେ ରୂପାନ୍ତରିତ ହୋଇ ଆକାରାନ୍ତ ହୋଇ ପଡ଼ି ଅଛନ୍ତି (ଯଥା, ସଂ:ସ୍ଫୋଟକ = ଓ:ଫୋଟକା, ସଂ:ଅଙ୍ଗନ=ଓ: ଅଗଣା) । ପୁଣି ନାମବାଚକ ଅକାରାନ୍ତ ଶବ୍ଦ ପ୍ରାୟ ସର୍ବଦା ଓଡ଼ିଆରେ ଆକାରାନ୍ତ ହୁଏ (ଯଥା, ମୋହନ = ମହନା, ଜଗ = ଜଗା, ବ୍ରଜ = ବରଜା) । ସୁତରାଂ 'ମହା', 'ଅଭିଜାତି' ପ୍ରଭୃତି ଶବ୍ଦ ଓଡ଼ିଆରେ 'ମାହା', 'ଆଭିଜାତି' ପ୍ରଭୃତି

ରୂପେ ଉଚ୍ଚାରିତ ହେବା ବିଚିତ୍ର ନୁହେଁ । ଏଣୁ ଅନୁମିତ ହୁଏ, ଓଡ଼ିଆରେ 'ଅ'କୁ ହ୍ରସ୍ୱ 'ଆ' ରୂପେ ଉଚ୍ଚାରଣ କରିବାର ପ୍ରବୃତ୍ତି ଏବେ ମଧ୍ୟ ଅଛି । କିନ୍ତୁ 'ଅ'ର ଉଚ୍ଚାରଣ ଓଡ଼ିଆ ଭାଷାରେ ସାଧାରଣତଃ ଇଂରାଜୀ ଭାଷାର 'O' (ଯଥା - pot, not) ରୂପେ ଉଚ୍ଚାରିତ ହେଉଥିବାରୁ 'ଅ'ର ହ୍ରସ୍ୱ 'ଆ' ଭଳି ଯେଉଁ ଧ୍ୱନି ବର୍ତ୍ତମାନ ଓଡ଼ିଆ ଭାଷାରେ ପ୍ରଚଳିତ ଅଛି ତାହା 'ଆ' ରୂପେ ଲିଖିତ ଭାଷାରେ ଚଳେ । ଏଣୁ ସେ ସମ୍ବନ୍ଧରେ ବିଶେଷ ଉଲ୍ଲେଖ କରିବାର ପ୍ରୟୋଜନ ନାହିଁ । କେବଳ ଏତିକି ଉଲ୍ଲେଖ କରିବା ଉଚିତ୍ ଯେ ଓଡ଼ିଶାର ଶୁଦ୍ରମାନେ ବର୍ତ୍ତମାନ 'ଆଇଲା' କହୁଥିବା ସ୍ଥଳେ ବ୍ରାହ୍ମଣମାନେ 'ଅଇଲା' କହୁଥିବାର ମନେହୁଏ, ବ୍ରାହ୍ମଣମାନଙ୍କ ସଂସ୍ରବରେ ଓଡ଼ିଆ 'ଅ'ରୁ ହ୍ରସ୍ୱ 'ଆ'ର ଧ୍ୱନି ଲୁପ୍ତ ହୋଇଅଛି । ଏଣୁ ଓଡ଼ିଆ ଛାତ୍ରମାନେ Cut, But ପ୍ରଭୃତି ଇଂରେଜୀ ଶବ୍ଦର ହ୍ରସ୍ୱ ଆକାର ଉଚ୍ଚାରଣ କରିନପାରି ସେଗୁଡ଼ିକୁ ସାଧାରଣତଃ ସାଧାରଣତଃ Cot, Bot ପ୍ରଭୃତି ରୂପେ ଉଚ୍ଚାରଣ କରନ୍ତି ।

ଅନେକ ସମୟରେ 'ଅ'ର ସ୍ୱର ଓଡ଼ିଆ ଭାଷାରେ ଏତେ ଲମ୍ବା ହୁଏ ଯେ, ତାହା ସାଧାରଣତଃ ଇଂରେଜୀ 'ball' ଶବ୍ଦ ନିହିତ ଅକାରର ଧ୍ୱନି ଦ୍ୱାରା ଚିହ୍ନିତ ହୋଇପାରେ । ସେହି ସ୍ୱରକୁ ଓଡ଼ିଆ ଲିପି ଦ୍ୱାରା ଚିହ୍ନିତ କରିବାକୁ ହେଲେ ଲେଖିବାକୁ ହେବ- କଣ = କଅଣ, ପକ୍ଷୀ = ପଅକ୍ଷୀ, ରବି = ରଅବି । ପିଲାମାନେ ଯେତେବେଳେ ବର୍ଣ୍ଣବୋଧ ପଢୁଥାନ୍ତି, ତେତେବେଳେ ଏହି ଉଚ୍ଚାରଣ ସ୍ପଷ୍ଟ ରୂପେ ଲକ୍ଷ୍ୟ କରାଯାଇପାରେ । ନିମ୍ନଲିଖିତ ପଦ୍ୟାଂଶରୁ ମଧ୍ୟ ଏହି ଉଚ୍ଚାରଣ ଧରା ପଡେ; ଯଥା - ଶଙ୍ଖଚିଲ, ମାହାବିଲ, ଧୋବଧାଉଳିଆ ପକ୍ଷୀ ( ପ-ଅ-କ୍ଷୀ) । କେବଳ 'ଅ' ଓଡ଼ିଆରେ ଏହି ରୀତିରେ ଉଚ୍ଚାରିତ ହୁଏ ନାହିଁ । ଅନ୍ୟାନ୍ୟ ସ୍ୱରବର୍ଣ୍ଣମାନେ ମଧ୍ୟ ଏହିଭଳି ଉଚ୍ଚାରିତ ହୋଇଥାନ୍ତି । ପିଲାମାନେ ବର୍ଣ୍ଣମାଳା ଶିଖିବା ବେଳେ ସାଧାରଣତଃ ଅ-ଅ, ଆ-ଆ, ଇ-ଇ, ଏହି ରୀତି ଅନୁସରଣ କରିଥାନ୍ତି । ଏହିଭଳି ସ୍ୱର ଗୁଡ଼ିକ ଏତେ ଦୀର୍ଘ ସମୟ ବ୍ୟାପୀ ଉଚ୍ଚାରିତ ହେଉଥିବାରୁ ଅନେକ ଶବ୍ଦର ମଧ୍ୟରେ 'ହ'ର ଧ୍ୱନି ଆଗମ ହୁଏ (ଯଥା, ମଳ  ମହଳ, ଉ - ମହଳ ଲୁଗା, ଗଣ = ଗହଣ, ଉ - ରଜାଙ୍କ ଗହଣ; ରାସ= ରାହାସ, ଦୋଳ = ଦୋହଳ) ।

ଇଂରେଜୀ 'O' ଭଳିଆ ଓଡ଼ିଆ 'ଅ' ସାଧାରଣତଃ ଉଚ୍ଚାରିତ ହେଉଥିବାରୁ ଏହାର ଧ୍ୱନି ସର୍ବଦା ପରିବର୍ତ୍ତିତ ହୁଏ । ଶବ୍ଦର ମଧ୍ୟରେ ବା ଅନ୍ତ୍ୟରେ ଆକାର ଥାଏ, ତାହା ପ୍ରାୟ ତାହାର ପୂର୍ବବର୍ତ୍ତୀ ବା ପରବର୍ତ୍ତୀ ସ୍ୱରକୁ ଅନୁସରଣ କରି ଉଚ୍ଚାରିତ ହୁଏ । ଦୃଷ୍ଟାନ୍ତ ସ୍ୱରୂପ ଏଠାରେ ଉଲ୍ଲେଖ କରାଯାଉଅଛି ଯେ, ସଂସ୍କୃତ 'ଉପକାର' ଶବ୍ଦ ଓଡ଼ିଆରେ ଯେପରି

ଭାବରେ ଉଚ୍ଚାରିତ ହୋଇଥାଏ, ତାହା ଯେକୌଣସି ବିଦେଶୀ ଲୋକର କାନକୁ 'ଉପୁକାର' ରୂପେ ଶୁଣାଯିବ । ସଂସ୍କୃତ ବା ପାଲି ଭାଷାର ଶବ୍ଦମାନ ପ୍ରାୟ ଏହି ନିୟମାନୁସାରେ ଓଡ଼ିଆ ଭାଷାରେ ରୂପାନ୍ତରିତ । ଆହୁରି ମଧ୍ୟ ଏଠାରେ ଏ କଥା ଉଲ୍ଲେଖ କଲେ ପାଠକେ ଅକ୍ଲେଶରେ ବୁଝିପାରିବେ ଯେ, କେହି କେହି 'ପୁଷ' (ପୁଷମାସ) କହନ୍ତି, କେହି କେହି 'ପୁଷୁ' (ପୁଷୁମାସ) କହନ୍ତି । ସେହିପରି ସାଧାରଣ ଲୋକେ 'ଛୁତକିଆ' [ଛୁତିକ (ସୁତକ) + ଇଆ] ଉଚ୍ଚାରଣ କରିନପାରି 'ଛୁତିକିଆ' ରୂପେ ଉଚ୍ଚାରଣ କରନ୍ତି । ବଙ୍ଗଳା ଭାଷାରେ ମଧ୍ୟ ଏହିପରି ସଂସ୍କୃତ 'ସୂତ୍ର' ଶବ୍ଦ 'ସୂତୁର୍' ରୂପେ ଉଚ୍ଚାରିତ ହୁଏ ।

ବାଗ୍‌ଯନ୍ତ୍ରର ବୈଜ୍ଞାନିକ ପରୀକ୍ଷାରୁ ଏହା ପ୍ରମାଣିତ ହୋଇଅଛି ଯେ, ଅ, ଇ, ଉ ଯଥାକ୍ରମେ ସଙ୍ଗୀତର ମଧ୍ୟମ, ଉଚ୍ଚ ଓ ନିମ୍ନସ୍ୱର ଅଟନ୍ତି । ସୁତରାଂ 'ଅ'ର ସ୍ୱର ଲଘୁ ହେଲେ ତାହା 'ଉ'ର ସ୍ୱରରେ ପରିଣତ ହେବା ବିଚିତ୍ର ନୁହେଁ । 'କହ' କ୍ରିୟାପଦ ବାଲେଶ୍ୱର ଅଞ୍ଚଳରେ କାହିଁକି 'କୁହ'ରେ ପରିଣତ ହୁଏ, ତାହାର କାରଣ ପାଠକେ ବୁଝି ପାରୁଥିବେ । ପୁରୀ ଓ କଟକ ଅଞ୍ଚଳରେ 'କହ୍', 'ସହ' ପ୍ରଭୃତି ଧାତୁରୁ 'କୁହାଗଲା', 'ସୁହାଗଲା' ପ୍ରଭୃତି ପଦମାନ ନିଷ୍ପନ୍ନ ହୋଇଥାଏ । ବର୍ତ୍ତମାନ କେବଳ ଏତିକି କହିବା ଉଚିତ୍ ଯେ, ବାଗ୍‌ଯନ୍ତ୍ରର ଗଢ଼ଣ ଫଳରୁ ପୃଥିବୀର ଯେକୌଣସି ଭାଷାରେ ଏପରି ଘଟିଥାଏ । ଶବ୍ଦର ମଧ୍ୟବର୍ତ୍ତୀ 'ଅ' କେଉଁଠାରେ ଲୁପ୍ତ ହୋଇପଡ଼େ ଓ ଆ କାର କେଉଁଠାରେ ଏକାରରେ ପରିଣତ ହୋଇଯାଏ (ଯଥା, କରୁଅଛି = କରୁଛି, ସଂ:ନକୁଳ ଓ: ନେଉଳ, ସଂ: ଶକୁଳ = ଓ: ଶେଉଳ) ।

ଆ-ଏହି ବର୍ଣ୍ଣଟି ସଂସ୍କୃତ ଭାଷାରେ ଯେପରି ଭାବରେ ଉଚ୍ଚାରିତ ହେଉଥିଲା, ତାହା ଇଂରାଜୀ 'Palm' ଶବ୍ଦ ନିହିତ ଆ କାରର ଧ୍ୱନିରୁ ବୁଝାଯାଇପାରେ । କିନ୍ତୁ ଓଡ଼ିଆ ଭାଷାରେ ବର୍ତ୍ତମାନନ 'ଆ'ର ସେ ଧ୍ୱନି ନାହିଁ । ଓଡ଼ିଆରେ ଆଦୌ ଦୀର୍ଘସ୍ୱର ନାହିଁ କହିଲେ ଚଳେ । ସୁତରାଂ ପ୍ରାଚୀନ କାଳରେ 'ଅ' ଯେପରି ଭାବରେ ଉଚ୍ଚାରିତ ହେଉଥିବାର ପୂର୍ବେ କୁହାଯାଇଅଛି, ଆଜିକାଲି ଆମ୍ଭେମାନେ 'ଆ'କୁ ସେହିଭଳି ଉଚ୍ଚାରଣ କରୁ; ଅର୍ଥାତ୍ ଓଡ଼ିଆ ଭାଷାରେ 'ଆ' ହ୍ରସ୍ୱ ଭାବରେ ଉଚ୍ଚାରିତ ହୋଇଥାଏ । ଆମ୍ଭେମାନେ 'ଆ'କୁ ଦୀର୍ଘ ଭାବରେ ଉଚ୍ଚାରଣ କରିବାରେ ଅଭ୍ୟସ୍ତ ନୋହୁ ବୋଲି ପାଲି, ସଂସ୍କୃତ, ଆରବୀ, ପାର୍ସୀ ପ୍ରଭୃତି ଭାଷାର ଯେଉଁ ଶବ୍ଦମାନଙ୍କରେ ପରସ୍ପରର ନିକଟବର୍ତ୍ତୀ ହୋଇ ଦୁଇଟି ଆକାର ଥିଲା, ସେହିସବୁ ଶବ୍ଦ ଓଡ଼ିଆ ଭାଷାରେ ବ୍ୟବହୃତ ହେବା ଫଳରେ ତହିଁରୁ ପ୍ରଥମ ଆକାର ଲୁପ୍ତ ହୋଇ ପଡ଼ିଅଛି; ଯଥା – ପା:ଖାପା = ଓ:ଖପା, ଆ: ଖାରାବ

= ଓ ଖରାପ, ସଂ: ଆଷାଢ଼ = ଓ: ଅଷାଢ଼, ସଂ: ରାଜା = ଓ:ରଜା, ସଂ:କାର୍ପାସ = ଓ:କପା । ଚାଷ, ବାଙ୍କ, ଫାଟ, ବାଟ (ବାଟିବା) ପ୍ରଭୃତିରେ 'ଆ' ପ୍ରତ୍ୟୟ ଯୋଗ କଲେ ସେଗୁଡ଼ିକ ଯଥାକ୍ରମେ ଚାଷା, ବାଙ୍କା, ଫାଟା, ବାଟା ପ୍ରଭୃତିରେ ପରିଣତ ନ ହୋଇ ଚଷା, ବଙ୍କା, ଫଟା, ବଟା ପ୍ରଭୃତିରେ କାହିଁକି ପରିଣତ ହୁଅନ୍ତି, ତାହାର କାରଣ ବର୍ତ୍ତମାନ ପାଠକେ ବୁଝିପାରୁଥିବେ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଆମ୍ଭେମାନେ 'ଆ'କୁ ସାଧାରଣତଃ ହ୍ରସ୍ୱ ଭାବରେ ଉଚ୍ଚାରଣ କରିବାକୁ ପ୍ରୟାସୀ । କିନ୍ତୁ ଏ କଥା ମନେ ରଖିବାକୁ ହେବ ଯେ, ଭାବର ଦୃଢ଼ତାବ୍ୟଞ୍ଜକ ଶକ୍ତିନ୍ୟାସ (emphasis) ଯେତେବେଳେ କୌଣସି ଶବ୍ଦର ଆକାର ଉପରେ ପଡ଼େ, ତେତେବେଳେ 'ଆ' ହ୍ରସ୍ୱଭାବରେ ଉଚ୍ଚାରିତ ନ ହୋଇ ଦୀର୍ଘ ଭାବରେ ଉଚ୍ଚାରିତ ହେବ । ପ୍ରତ୍ୟେକ ଭାଷାରେ ଶକ୍ତିନ୍ୟାସଯୋଗୁଁ ହ୍ରସ୍ୱସ୍ୱର ମଧ ଦୀର୍ଘ ଭାବରେ ଉଚ୍ଚାରିତ ହୋଇଥାଏ । ସୁତରାଂ ଯେତେବେଳେ ଦୃଢ଼ତାବ୍ୟଞ୍ଜକ ସ୍ୱରରେ କହିବାକୁ ହେବ - 'ଆସ', ତେତେବେଳେ 'ଆ' କଦାପି ହ୍ରସ୍ୱଭାବରେ ଉଚ୍ଚାରିତ ହେବନାହିଁ । ସେହିପରି ବାକ୍ୟସ୍ଥ ଏକାକ୍ଷର ପଦର ଆକାର ମଧ ହ୍ରସ୍ୱଭାବରେ ଉଚ୍ଚାରିତ ନ ହୋଇ ଦୀର୍ଘଭାବରେ ଉଚ୍ଚାରିତ ହୁଏ; ଯଥା-ମା (ମାତା), ଖା (ଖାଇବା ନିମନ୍ତେ ଆଦେଶ ଦେବା) । ଅପ୍ରାସଙ୍ଗିକ ହେଲେ ମଧ ଏଠାରେ ଏ କଥା ଉଲ୍ଲେଖ କରିବା ଉଚିତ୍ ଯେ, ଉକ୍ତ ଶବ୍ଦଗୁଡ଼ିକୁ କେହି କେହି 'ମାଆ', 'ଖାଆ' ପ୍ରଭୃତି ରୂପେ ଲେଖନ୍ତି-ଏହା ଯେ ନିତାନ୍ତ ଅସମୀଚୀନ, ତାହା ପ୍ରାୟ ପାଠକେ ବୁଝୁଥିବେ । ପୁଣି ଏକଥା ବକ୍ତବ୍ୟ ଯେ, କୌଣସି ଶବ୍ଦର ଆକାର ପରେ ଯଦି ଯୁକ୍ତବର୍ଣ୍ଣ ବା ମହାପ୍ରାଣବର୍ଣ୍ଣ ଥାଏ, ତାହା ହେଲେ ସେଠାରେ ମଧ 'ଆ' ସାମାନ୍ୟ ଦୀର୍ଘ ଭାବରେ ଉଚ୍ଚାରିତ ହୋଇଥାଏ ।

ବର୍ଣ୍ଣମାଳା ଶିଖିବା ବେଳେ ଆମ ଦେଶର ପିଲାମାନେ କିପରି ସ୍ୱରବର୍ଣ୍ଣ ଗୁଡ଼ିକୁ ଉଚ୍ଚାରଣ କରିଥାନ୍ତି, ତାହା ପୂର୍ବେ କୁହାଯାଇଅଛି । ସୁତରାଂ 'ଅ' ଭଳିଆ 'ଆ'ର ଦ୍ୱିତ୍ୱ ଉଚ୍ଚାରଣ ଅନେକ ସମୟରେ ଦେଖାଯାଇଥାଏ; ଯଥା-ଯାନ୍ତି = ଯାଆନ୍ତି, ଖାନ୍ତି = ଖାଆନ୍ତି । ନିମ୍ନୋଦ୍ଧୃତ ପଦ୍ୟାଂଶରୁ ମଧ 'ଆ'ର ଏହି ଦ୍ୱିତ୍ୱ ଉଚ୍ଚାରଣ ଧରାଯାଏ : ଯଥା-ଯେବେ ନୋହିବ ତହିଁରେ ଧାନ (ଧା-ଆ-ନ), ତେବେ କାଟିବ ତାକର କାନ (କା-ଆ-ନ) । କହିବା ବାହୁଲ୍ୟ ଯେ, ଏଠାରେ ମଧ 'ଆ'ର ଦୀର୍ଘ ଧ୍ୱନି ନ ଆସି ଦୁଇଟି ହ୍ରସ୍ୱ 'ଆ'ର ଧ୍ୱନି ଆସେ ।

ହ୍ରସ୍ୱ 'ଆ' ଓ ଦୀର୍ଘ 'ଆ'ର ଧ୍ୱନି ମଧରେ ପରସ୍ପରର କି ପ୍ରଭେଦ ଅଛି, ତାହା ପାଠକମାନଙ୍କ ମଧରୁ ବୋଧହୁଏ ଅନେକ ବୁଝି ପାରିବେ ନାହିଁ । ସୁତରାଂ ଏହା

ବୁଝାଇଦେବା ନିତାନ୍ତ ପ୍ରୟୋଜନ । ଇଂରେଜୀ ଭାଷାରେ 'Palm' ଶବ୍ଦ ନିହିତ 'a'କୁ ଉଚ୍ଚାରିବା ପାଇଁ ପାଟି ଯେତେ ମେଲା କରିବାକୁ ହୁଏ, ଓଡ଼ିଆ ଭାଷାର 'ଖାନ୍ତି', 'କାନ' ପ୍ରଭୃତିରେ ଥିବା ଆକାର ଉଚ୍ଚାରିବା ପାଇଁ ପାଟି ତେତେ ମେଲା କରିବାକୁ ହୁଏ ନାହିଁ ।

ଅଧିକାଂଶ ସ୍ଥଳରେ 'ଆ'କୁ ଆମ୍ଭେମାନେ ହ୍ରସ୍ୱ ଭାବରେ ଉଚ୍ଚାରଣ କରୁଁ ବୋଲି ଯେଉଁ ଶବ୍ଦରେ ଆକାର ପରେ 'ଉ'ର ଧ୍ୱନି ଥାଏ, ସେହି ଶବ୍ଦର ଆକାର ଅନେକ ସମୟରେ ଆକାରରେ ପରିଣତ ହୋଇଯାଏ । ସେହି ହେତୁରୁ କେହି କେହି 'ଫାଗୁଣ' (ସଂ: ଫାଲ୍‌ଗୁନ) ଉଚ୍ଚାରି ନ ପାରି 'ଫଗୁଣ' କହନ୍ତି । ସେହିପରି ସଂସ୍କୃତ 'ମାର୍ଗଶୀର୍ଷ', 'ମାଗଶିର'ରେ ପରିଣତ ହୋଇ ଯେତେବେଳେ 'ଗ'ରେ ଥିବା ଅକାର ଉ କାରରେ ପରିଣତ ହୋଇଯାଏ, ତେତେବେଳେ ତାହା ମାଗୁଶିର ରୂପେ ଉଚ୍ଚାରିତ ନ ହୋଇ 'ମଗୁଶିର' ରୂପେ ଉଚ୍ଚାରିତ ହୁଏ । ସେହିପରି କରାଉଛି, ଧରାଉଛି ପ୍ରଭୃତି କ୍ରିୟାପଦ ଯଥାକ୍ରମେ କରଉଛି, ଧରଉଛି ରୂପେ ଉଚ୍ଚାରିତ ।

କୌଣସି ଶବ୍ଦର ଶେଷରେ ଆକାର ଥିଲେ ସେହି ଆକାର ଏକାରରେ ପରିଣତ ହୁଏ ଓ ଶେଷରେ ଗୋଟିଏ ଇକାରର ଆଗମ ହୁଏ; ତହିଁ ଉତ୍ତାରୁ ସେ ଶବ୍ଦଟି ତାମିଲି ଭାଷାରେ ଉଚ୍ଚାରିତ ହୁଏ (ଯଥା, ସଂ: ଆଶା = ତା ଆସେଇ) । ଅନେକ ସମୟରେ ଓଡ଼ିଆ ଭାଷାରେ ମଧ୍ୟ ଅନ୍ତ୍ୟ ଆକାର ଠିକ୍ ଏହି ରୀତିରେ ଉଚ୍ଚାରିତ ହୋଇଥାଏ; ଯଥା - (ନାମବାଚକ) ଜଗ = ଜଗା = ଜଗେଇ, ଗଦା = ଗଦେଇ, ସନାତନ = ସନେଇ । ପୁରୀ ଜିଲ୍ଲାର ବ୍ରାହ୍ମଣମାନେ ଏହି ରୀତିରେ କକା ଓ ଦଦା ଶବ୍ଦ କକେଇ ଓ ଦଦେଇ ରୂପେ ଉଚ୍ଚାରଣ କରନ୍ତି । ସୁତରାଂ 'କରା + ଇବା' 'କରେଇବା'ରେ ବା 'ପିଲା + ଏ' 'ପିଲେ'ରେ ପରିଣତ ହେବା ବିଚିତ୍ର ନୁହେଁ ।

**ଇ, ଈ** - ଏହି ଦୁଇଟି ବର୍ଣ୍ଣର ଉଚ୍ଚାରଣ ସମ୍ବନ୍ଧରେ ବିଶେଷ ଉଲ୍ଲେଖଯୋଗ୍ୟ ବିଷୟ ନାହିଁ । ପୂର୍ବେ କୁହାଯାଇଅଛି ଯେ, ଓଡ଼ିଶାରେ ପ୍ରାୟ ଦୀର୍ଘସ୍ୱର ନାହିଁ । ସେହି ହେତୁରୁ ସଂସ୍କୃତ ଭାଷାର 'ଈ'ର ଧ୍ୱନି ଓଡ଼ିଆରେ ପ୍ରଚଳିତ ନାହିଁ । କେବଳ 'ଆ' ଭଳିଆ କୌଣସି ଶବ୍ଦରେ ଈକାରପରେ ଯୁକ୍ତବର୍ଣ୍ଣ ବା ମହାପ୍ରାଣବର୍ଣ୍ଣ ଥିଲେ ସେଠାରେ 'ଈ' ଟିକିଏ ଦୀର୍ଘ ଭାବରେ ଉଚ୍ଚାରିତ ହୁଏ । କିନ୍ତୁ ତାହା ଇଂରେଜୀ 'deem' ଶବ୍ଦନିହିତ ଈକାର ଭଳିଆ ଉଚ୍ଚାରିତ ହୁଏ ନାହିଁ । କେବଳ ଶବ୍ଦବିନ୍ୟାସ ହେତୁରୁ 'ଇ' ଅନେକ ସମୟରେ 'ଈ' ରୂପେ ଉଚ୍ଚାରିତ ହୁଏ; ଯଥା- 'ତୁମ୍ଭେ ଚୋରି କରିଅଛ', ଉତ୍ତର- 'କି' (କୀ) ।

ଉ, ଉ – 'ଉ'ର ଧ୍ୱନି ଓଡ଼ିଆରେ ନାହିଁ, ଏଠାରେ ଏ କଥା ପୁନରୁକ୍ତି ଭଳିଆ । କିନ୍ତୁ 'ଉ'ର ଉଚ୍ଚାରଣ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରକାର । ପୂର୍ବେ କୁହାଯାଇଅଛି- 'ଅ' ମଧ୍ୟମ ସ୍ୱର, 'ଉ' ଲଘୁସ୍ୱର । ସୁତରାଂ 'ଉ'ର ସ୍ୱରକୁ ଟିକିଏ ଗୁରୁଭାବରେ ଉଚ୍ଚାରଣ କଲେ ତାହା ଅନାୟାସରେ 'ଅ'ର ସ୍ୱରରେ ପରିଣତ ହୋଇଯିବ । ସେହି ହେତୁରୁ ସମ୍ବଲପୁର ଅଞ୍ଚଳରେ 'କରୁଛି' ପରିବର୍ତ୍ତରେ କରଛି ଉଚ୍ଚାରଣ କରନ୍ତି । କିନ୍ତୁ ପୁରୀ ଅଞ୍ଚଳରେ 'ଉ' ଯେପରି ଭାବରେ ଉଚ୍ଚାରିତ ହୁଏ, ତହିଁରେ 'ଓ'ର ଆଂଶିକ ଧ୍ୱନି ପ୍ରାୟ ଲାଗି ରହିଥାଏ । ଏଣୁ ସଂସ୍କୃତ ଉପବାସ, ଉଷ୍ଟ୍ର ପ୍ରଭୃତି ଶବ୍ଦ ସେ ଅଞ୍ଚଳରେ ଓପାସ, ଓଟ ପ୍ରଭୃତିରେ ପରିଣତ । ସଂସ୍କୃତ 'ଉଦର' ଶବ୍ଦ ପୁରୀ ଅଞ୍ଚଳରେ କେହି କେହି 'ଓଦର' ରୂପେ ମଧ୍ୟ ଉଚ୍ଚାରଣ କରିଥାନ୍ତି । ତାମିଲୀ ଭାଷାରେ 'ଉ'ର ପରେ ଯେକୌଣସି ବର୍ଣ୍ଣ ଥିଲେ ମଧ୍ୟ ତହିଁରେ ଯଦି ଇକାର, ଉକାର ବା ଏକାର ଯୁକ୍ତ ହୋଇନଥାଏ, ତେବେ ସେଠଶରେ 'ଉ' ପ୍ରାୟ 'ଓ' ଭଳି ଉଚ୍ଚାରଣ ହୁଏ; ତେଲ୍‌ଗୁ ଭାଷାରେ ସେପରି ସ୍ଥଳରେ ଉକାର ସ୍ଥାନରେ ଓକାର ମଧ୍ୟ ଲେଖାଯାଏ (Bishop Galdwell's Dravidian Gramnar, P.136) । ସୁତରାଂ ପୁରୀ ଅଞ୍ଚଳରେ 'ଉ' 'ଓ' ରୂପେ ଉଚ୍ଚାରିତ ହେବା ବିଚିତ୍ର ନୁହେଁ । ପୁଣି ଗୋଟିଏ 'ଅ' ଯେପରି ଅନେକ ସମୟରେ ଦୁଇଟି 'ଅ'ର ଧ୍ୱନିକି ଅନୁସରଣ କରି ଉଚ୍ଚାରିତ ହୁଏ, ସେହିପରି 'ଉ' ମଧ୍ୟ ଉଚ୍ଚାରିତ ହୋଇଥାଏ । ନିମ୍ନୋଦ୍ଧୃତ ପଦ୍ୟାଂଶରୁ ତାହା ପାଠକେ ବୁଝିପାରିବେ; ଯଥା – "ରାଇରଙ୍ଗ ଫିରିକି ଫୁଲୁ (ଫୁ-ଉ-ଲୁ), ରଜା ବୋଇଲେ ଏଇଟି ତୁଲୁ (ତୁ-ଉ-ଲୁ) ।

ଋ, ଋ – 'ରି' ଏହି ବର୍ଣ୍ଣଟି ଉଚ୍ଚାରଣ କଲେ ଯେଉଁ ଧ୍ୱନି ସୂଚିତ ହେବ, ସଂସ୍କୃତ ଭାଷାରେ 'ଋ'ର ଧ୍ୱନି ପ୍ରାୟ ତାହାର ନିକଟବର୍ତ୍ତୀ ଥିଲା । ସେହି ହେତୁରୁ ସଂସ୍କୃତ ଭାଷାର ସଦୃଶ, କୀଦୃଶ ପ୍ରଭୃତି ଶବ୍ଦ ପ୍ରାକୃତ ଭାଷାରେ ସରିସା, କେରିସ ପ୍ରଭୃତିରେ ପରିଣତ ହୋଇଥିଲା । ବର୍ତ୍ତମାନ ସଂସ୍କୃତ ଋତୁ, ଋଣ, ମୃଗ ପ୍ରଭୃତି କେତେକ ଶବ୍ଦ ଓଡ଼ିଆରେ ରିତୁ, ରିଣ, ମିରିଗ ପ୍ରଭୃତି ରୂପେ ଉଚ୍ଚାରିତ । ବଙ୍ଗଳା ଭାଷାରେ 'ଋ' ସର୍ବତ୍ର 'ରି' ରୂପେ ଉଚ୍ଚାରିତ । କିନ୍ତୁ ସ୍ଥୁଳତଃ କହିବାକୁ ହେଲେ ଓଡ଼ିଆରେ 'ଋ'ର ପ୍ରାଚୀନ ଧ୍ୱନି ବର୍ତ୍ତମାନ ପ୍ରାୟ ନାହିଁ । 'ଋ' ଓଡ଼ିଆରେ ବର୍ତ୍ତମାନ ସାଧାରଣତଃ 'ରୁ' ରୂପେ ଉଚ୍ଚାରିତ । କେବଳ ଋଦ୍ଧି, ଋତୁ ପ୍ରଭୃତି କେତେକ ସଂସ୍କୃତ ଶବ୍ଦର ବନାନ ଲେଖିବା ପାଇଁ ଓଡ଼ିଆ ବର୍ଣ୍ଣମାଳାରେ ଏହି ବର୍ଣ୍ଣଟି ରକ୍ଷିତ । କିନ୍ତୁ ଓଡ଼ିଆ ବର୍ଣ୍ଣମାଳାରେ 'ୠ' ରଖିବାର କୌଣସି ପ୍ରୟୋଜନ ନାହିଁ । ସେହିପରି (ଌ)କୁ ମଧ୍ୟ ଓଡ଼ିଆ ବର୍ଣ୍ଣମାଳାରେ ନରଖିଲେ ଚଳେ ।

ଦ୍ରାବିଡ଼ୀ ଭାଷା ପ୍ରଭାବରେ ଓଡ଼ିଆ ଭାଷାରୁ (ଌ) ଏହି ଦୁଇଟି ବର୍ଣ୍ଣର ଧ୍ୱନି ଲୁପ୍ତ ହୋଇଅଛି ବୋଲି ମନେ ହୁଏ । କାରଣ ତାମିଲୀ ଭାଷାରେ 'ଋ'(ଌ) ପ୍ରଭୃତି ସ୍ୱରବର୍ଣ୍ଣ ନାହିଁ ।

ଏ - ଏହି ବର୍ଣ୍ଣଟି ଯୁକ୍ତ ସ୍ୱର ନାମରେ ଅଭିହିତ । କାରଣ, ଏହାର ଧ୍ୱନି 'ଅ'ର ଧ୍ୱନିରେ 'ଇ'ର ଧ୍ୱନି ମିଶି ଉତ୍ପନ୍ନ ହୁଏ । ସେହି ହେତୁରୁ ସଂସ୍କୃତ ଭାଷାରେ ଏହା କଣ୍ଠ୍ୟତାଲବ୍ୟ ନାମରେ ଅଭିହିତ (କାରଣ, ଅ କଣ୍ଠରୁ ଉଚ୍ଚାରିତ ଏବଂ ଇ ତାଳୁରୁ ଉଚ୍ଚାରିତ) । ସେହିପରି 'ଓ'ର ଧ୍ୱନିଟି 'ଅ'ର ଧ୍ୱନି ଏବଂ 'ଉ'ର ଧ୍ୱନି ମିଶି ଉତ୍ପନ୍ନ ହୋଇଥିବାରୁ ଏହା କଣ୍ଠୌଷ୍ଠ୍ୟ ନାମରେ ଅଭିହିତ ('ଉ' ଓଷ୍ଠରୁ ଉଚ୍ଚାରିତ) ।

ସଂସ୍କୃତ ବ୍ୟାକରଣ ମାନଙ୍କରେ ଉଲ୍ଲେଖ ଅଛି ଯେ, 'ଏ' ଏବଂ 'ଓ'ର ହ୍ରସ୍ୱଧ୍ୱନି ନାହିଁ । କିନ୍ତୁ ପୃଥିବୀର ଅନେକ ଭାଷାରେ ଉକ୍ତ ବର୍ଣ୍ଣଦ୍ୱୟର ହ୍ରସ୍ୱଧ୍ୱନି ଥିବାର ଦେଖାଯାଏ । ସୁତରାଂ ସଂସ୍କୃତ ଭାଷାରେ ନଥିଲା ବୋଲି କୁହାଯାଇ ନପାରେ । ଯାହାହେଉ, ଏଠାରେ ସେ କଥା ଆଲୋଚନା କରିବାର ପ୍ରୟୋଜନ ନାହିଁ । କେବଳ ଏତିକି କହିବା ଉଚିତ୍ ଯେ, ତାମିଲୀ ଭାଷା ଭଳିଆ 'ଏ' ଏବଂ 'ଓ'ର ହ୍ରସ୍ୱଧ୍ୱନି ଓଡ଼ିଆରେ ଅଛି । ଏଠାରେ, ଏପରି, ଏଲାକା ପ୍ରଭୃତି ଶବ୍ଦର 'ଏ' ହ୍ରସ୍ୱଭାବରେ ଉଚ୍ଚାରିତ ହୁଏ ବୋଲି ତାହା ପ୍ରାୟ 'ଇ'ରେ ପରିଣତ ହୋଇଯାଏ । ସେହି ହେତୁରୁ ଉକ୍ତ ଶବ୍ଦଗୁଡ଼ିକୁ କେହି କେହି ଇଠାରେ, ଇପରି, ଇଲାକା ପ୍ରଭୃତି ରୂପେ ଲେଖିଥାନ୍ତି । ଏହି ହ୍ରସ୍ୱ ଉଚ୍ଚାରଣ ଫଳରେ ନେବ, ଦେବ ପ୍ରଭୃତି କ୍ରିୟାପଦମାନ ନବ, ଦବ ପ୍ରଭୃତିରେ ପରିଣତ ହୁଅନ୍ତି । ପୁଣି ବାଲେଶ୍ୱର ଅଞ୍ଚଳରେ 'ଓ' ଏପରି ହ ସ୍ୱଭାବରେ ଉଚ୍ଚାରିତ ହୁଏ ଯେ, ତାହା ଆମ୍ଭମାନଙ୍କୁ 'ଉ' ରୂପେ ଶୁଣାଯାଏ । ଆସାମୀ ଭାଷାରେ 'ଓ'ର ଏହିଭଳି ଉଚ୍ଚାରଣ ମଧ୍ୟ ସମ୍ପୂର୍ଣ୍ଣ ରୂପେ ଲକ୍ଷିତ ହୁଏ । ଏହାଛଡ଼ା, ପରେ ଯଦି ଅନୁନାସିକ ବର୍ଣ୍ଣ ଥାଏ, ତେବେ ଶବ୍ଦର ଆଦ୍ୟ ଓକାର ଉକାର ରୂପେ ଉଚ୍ଚାରିତ ହୁଏ ଏବଂ ପରେ 'ମ' ଥିଲେ ଆଦ୍ୟ ଓ କାର ଅ କାରରେ ମଧ୍ୟ ପରିଣତ ହୋଇଯାଏ; ଯଥା- ପ୍ରା ଲୋଣ = ଓ ଲୁଣ, ସଂ ସୋମଫୁଲ = ଓ ସୁଆଁ ଫୁଲ, ସଂ କୋଣ = ଓ କୁଣ, ସଂ ରୋମ = ଓ ରୁମ, ପ୍ରା ସୋଣ୍ଣ = ଓ ସୁନା, ସଂ ଯୋଯନ = ଓ ଯୁଣ, ସଂ କୋମଳ= ଓ କଁଳ, ସୋମନାଥ = ସମନାଥ, ସୋମବାର = ସଁବାର, ସଂ କୋମର = ଓ କମର । ସୁତରାଂ ବନାନ ସଂସ୍କାରକମାନଙ୍କର ମନେ ରଖିବା ଉଚିତ୍ ଯେ, ଜାତିବାଚକ 'ଡୋମ' ଶବ୍ଦ ଓଡ଼ିଆରେ 'ଡ଼ମ' ରୂପେ ଲେଖିବା ଉଚିତ ।

**ଐ, ଔ** - ଏ, ଓ, ଏହି ଦୁଇଟି ବର୍ଣ୍ଣ ଅତି ଦୀର୍ଘ ଭାବରେ ଉଚ୍ଚାରିତ ହେଲେ ଯଥାକ୍ରମେ ଐ ଏବଂ ଔ ର ଧ୍ୱନି ଉତ୍ପନ୍ନ ହୋଇଥାଏ । କିନ୍ତୁ ସଂସ୍କୃତ ଭାଷାରେ ଏହି

ଦୁଇଟି ବର୍ଣ୍ଣ ଯେପରି ଭାବରେ ଉଚ୍ଚାରିତ ହେଉଥିଲେ, ଓଡ଼ିଆ ଭାଷାରେ ସେପରି ଉଚ୍ଚାରିତ ହୁଅନ୍ତି ନାହିଁ । ଓଡ଼ିଆରେ ଏହି ବର୍ଣ୍ଣଦ୍ୱୟର ଉଚ୍ଚାରଣ ଏତେ ଶିଥିଳ ଯେ, ତାହା ସାଧାରଣତଃ 'ଅଇ' ଏବଂ 'ଅଉ' ରୂପେ ଶୁଣାଯାଏ । ସେହି ହେତୁରୁ ଅନେକ ଲୋକ କୈଳାସ, ବୌଦ୍ଧ ପ୍ରଭୃତି ଶବ୍ଦ କଇଳାସ, ବଉଦ୍ଧ ପ୍ରଭୃତି ରୂପେ ଲେଖିଥାନ୍ତି । ପୁଣି ତାମିଲୀ ଭାଷାରେ 'ଐ' ଯେପରି 'ଏଇ' ରୂପେ ଉଚ୍ଚାରିତ ହୁଏ, ଓଡ଼ିଆରେ ଶବ୍ଦର ଅନ୍ତ୍ୟ ଐ କାର ଠିକ୍ ସେହିପରି ଉଚ୍ଚାରିତ ହୁଏ । 'ମେଘୈ ର୍ମେଦୁରମମ୍ବରୈଃ, – ଏହି ଶ୍ଳୋକଟି ଯେତେବେଳେ କେହି ପଢୁଥିବେ, ତେତେବେଳେ ପାଠକେ 'ଐ'ର ଉକ୍ତ ଧ୍ୱନି ଲକ୍ଷ୍ୟ କରିପାରିବେ ।

**ବ୍ୟଞ୍ଜନବର୍ଣ୍ଣ**

ବ୍ୟଞ୍ଜନବର୍ଣ୍ଣମାନଙ୍କ ଉଚ୍ଚାରଣ ସମ୍ବନ୍ଧରେ ଉଲ୍ଲେଖ କରିବା ପୂର୍ବରୁ ଓଡ଼ିଆ ଭାଷାର ସାଧାରଣ ଉଚ୍ଚାରଣ-ପ୍ରକୃତି ସମ୍ବନ୍ଧରେ କିଛି କହିବା ଉଚିତ୍ । ଆମ୍ଭେମାନେ ପ୍ରତ୍ୟେକ ଶବ୍ଦର ଆଦ୍ୟ ଓ ଅନ୍ତ୍ୟବର୍ଣ୍ଣ ସମାନ ଭାବରେ ଉଚ୍ଚାରଣ କରୁଁ; କେବଳ ମଧ୍ୟବର୍ଣ୍ଣକୁ ଆଦ୍ୟ ଓ ଅନ୍ତ୍ୟବର୍ଣ୍ଣ ତୁଳନାରେ ଅପେକ୍ଷାକୃତ ଲଘୁଭାବରେ ଉଚ୍ଚାରଣ କରୁଁ । ସେହି ହେତୁରୁ ଅନେକ ସଂସ୍କୃତ ଓ ପାଲି ଶବ୍ଦର ମଧ୍ୟବର୍ଣ୍ଣ ଲୁପ୍ତ ହୋଇ ସେହି ଶବ୍ଦଗୁଡ଼ିକ ଓଡ଼ିଆ ଭାଷାରେ ବ୍ୟବହୃତ ହେଉଅଛନ୍ତି; ଯଥା-ସଂ ଆମଳକୀ = ଓ ଅଁଳା, ସଂ ଚାମର = ଓ ଚଁର, ସଂ କୋକିଳ = ଓ କୋଇଲି, ସଂ ଖଦିର = ଓ ଖଇର ପା ନିବ୍‌ବଟନ = ଓ ନେଉଟ । ଏହିପରି ସଂସ୍କୃତ ଓ ପାଲି ଭାଷାରୁ ଗୃହୀତ ଶବ୍ଦମାନଙ୍କ ମଧ୍ୟରୁ ଯେତେ ଶବ୍ଦର ମଧ୍ୟବର୍ଣ୍ଣ ଲୁପ୍ତ ହୋଇପଡ଼ିଅଛି, ଆଦ୍ୟ ବା ଅନ୍ତ୍ୟବର୍ଣ୍ଣ ତେତେ ଶବ୍ଦରୁ ଲୁପ୍ତ ହୋଇନାହିଁ । ଓଡ଼ିଆ ଭାଷାର ଏହି ଉଚ୍ଚାରଣ- ପ୍ରକୃତି ଯୋଗୁଁ ସାଧାରଣ ଲୋକେ ମାରିଲା, ସାରିଲା ପ୍ରଭୃତି କ୍ରିୟାପଦମାନଙ୍କୁ ମାଇଲା, ସାଇଲା ପ୍ରଭୃତି ରୂପେ ଉଚ୍ଚାରଣ କରନ୍ତି ।

ଶବ୍ଦର ଅନ୍ତ୍ୟବର୍ଣ୍ଣ ବଙ୍ଗାଳିମାନେ ଲଘୁଭାବରେ ଉଚ୍ଚାରଣ କରନ୍ତି ବୋଲି ମୋହିତ, ମାଛ, ଜଳ ପ୍ରଭୃତି ଶବ୍ଦ ସେମାନେ ଉଚ୍ଚାରଣ କଲାବେଳେ ସେଗୁଡ଼ିକ ଆମ୍ଭମାନଙ୍କ କାନକୁ ମୋହିତ୍, ମାଛ୍, ଜଲ୍ ପ୍ରଭୃତି ରୂପେ ଶୁଭେ । କିନ୍ତୁ ତାମିଲୀ ଭାଷାରେ ଯେପରି କୌଣସି ଶବ୍ଦର ଅନ୍ତ୍ୟବର୍ଣ୍ଣ ସ୍ୱରବର୍ଣ୍ଣର ବିନା ସାହାଯ୍ୟରେ ଉଚ୍ଚାରିତ ହୋଇପାରେ ନାହିଁ ସେହିପରି ଓଡ଼ିଆ ଭାଷାରେ କୌଣସି ଶବ୍ଦର ଅନ୍ତ୍ୟବର୍ଣ୍ଣ ହସନ୍ତ ରୂପେ ଉଚ୍ଚାରିତ ହୁଏ ନାହିଁ । ସୁତରାଂ ଆମ୍ଭେମାନେ ଶବ୍ଦର ମଧ୍ୟବର୍ଣ୍ଣ ଲଘୁ ଭାବରେ ଉଚ୍ଚାରଣ କରିବା ବିଚିତ୍ର ନୁହେଁ । କାରଣ, ଆଦ୍ୟବର୍ଣ୍ଣର ଉଚ୍ଚାରଣ ଉତ୍ତାରୁ ଶେଷ ବର୍ଣ୍ଣର ଉଚ୍ଚାରଣ ପର୍ଯ୍ୟନ୍ତ ପ୍ରଶ୍ୱାସର ଗତି ବନ୍ଦ ରହିନପାରେ ।

ବର୍ଣ୍ଣମାନଙ୍କ ଧ୍ୱନି ସମ୍ବନ୍ଧରେ ଆଲୋଚନା କରିବା ସଙ୍ଗେ ସଙ୍ଗେ ଏ କଥା ମନେ ରଖିଥିବା ଉଚିତ୍ ଯେ, ଜ୍ଞାନହୀନ ବ୍ୟକ୍ତି ଯେପରି ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ଜଳକଣାର ସମଷ୍ଟିରେ ସମୁଦ୍ରର ଅବସ୍ଥିତି ବୋଲି ବୁଝିପାରେ ନାହିଁ, ସେହିପରି ଯେ ଇଂରେଜୀ ଭାଷା ଜାଣେ ନାହିଁ, କେହି ଇଂରେଜୀ ଭାଷାରେ କଥା କହୁଥିବାର ସେ ଶୁଣିଲେ ଇଂରେଜୀ ଭାଷାର ବିଭିନ୍ନ ବର୍ଣ୍ଣମାନଙ୍କ ଧ୍ୱନି କଦାପି ବାରି ପାରିବ ନାହିଁ । ଏହାର କାରଣ କ'ଣ ? ଏକ ବାଗ୍‌ଯନ୍ତ୍ରରୁ ବାହାରୁଥିବା ବିଭିନ୍ନ ବର୍ଣ୍ଣମାନଙ୍କର ଧ୍ୱନି ମଧ୍ୟରେ ପରସ୍ପରରେ ଯେ ପ୍ରଭେଦ ଅଛି, ତାହା ଏତେ ଅଳ୍ପ ଯେ, ପ୍ରତ୍ୟେକ ଧ୍ୱନିକି ଚିହ୍ନି ନ ରଖିଲେ ସେମାନଙ୍କର ପରସ୍ପର ପ୍ରଭେଦ ବାରି ହେବନାହିଁ । ବର୍ଣ୍ଣମାନଙ୍କ ଧ୍ୱନି ଭିତରେ ଯେ ବେଶି ପ୍ରଭେଦ ନାହିଁ, ତାହା ଏହି ଅଧ୍ୟାୟର ପରବର୍ତ୍ତୀ ଅଂଶରୁ ମଧ୍ୟ ପାଠକମାନଙ୍କର ହୃଦ୍‌ଗତ ହେବ ।

**କ, ଖ, ଗ, ଘ** – ଏହି ବର୍ଣ୍ଣ ଗୁଡ଼ିକ କଣ୍ଠରୁ ଉଚ୍ଚାରିତ ବୋଲି ବ୍ୟାକରଣ ମାନଙ୍କରେ ଲେଖା ଅଛି । ଆଧୁନିକ ଯୁଗର ବାଗ୍‌ଯନ୍ତ୍ରର ବୈଜ୍ଞାନିକ ପରୀକ୍ଷା ଦ୍ୱାରା ମଧ୍ୟ ଏ କଥା ସତ୍ୟ ବୋଲି ଜଣାପଡ଼ିଅଛି । ସୁତରାଂ ପାଞ୍ଚୋଟି ବର୍ଣ୍ଣ ଯେତେବେଳେ ବାଗ୍‌ଯନ୍ତ୍ରର ଏକ ସ୍ଥାନରୁ ବାହାରନ୍ତି, ତେତେବେଳେ ସେମାନଙ୍କ ଧ୍ୱନି ଭିତରେ ବିଶେଷ ବୈଷମ୍ୟ ନଥିବା ବିଚିତ୍ର ନୁହେଁ । ପ୍ରଶ୍ୱାସର ଗତି ଟିକିଏ ପ୍ରଖର ହେଲେ 'କ'ର ଧ୍ୱନି ଅନାୟାସରେ 'ଖ'ର ଧ୍ୱନିରେ ପରିଣତ ହୋଇଯାଏ; ସେହିପରି 'ଖ'ର ଧ୍ୱନି ବାହାରିବା ବେଳେ ପ୍ରଶ୍ୱାସର ଗତି ଟିକିଏ ମନ୍ଦ ହେଲେ ତାହା 'କ'ର ଧ୍ୱନିରେ ପରିଣତ ହୋଇଯାଏ । ଗରାଖ, ଭିକ, ଭୋକ ପ୍ରଭୃତି ଓଡ଼ିଆ ଶବ୍ଦ ମାନଙ୍କର ବ୍ୟୁତ୍ପତ୍ତିକ୍ରମ ଆଲୋଚନା କଲେ ଏ କଥା ଆହୁରି ସ୍ପଷ୍ଟ ରୂପେ ହୃଦୟଙ୍ଗମ କରି ହେବ । ସଂସ୍କୃତ 'ଗ୍ରାହକ' ଶବ୍ଦର 'ହ' ଉଚ୍ଚାରଣ କରିବା ପାଇଁ ବାଗ୍‌ଯନ୍ତ୍ରରୁ ଯେ ପ୍ରଶ୍ୱାସ ବାହାରିଥିଲା, ତାହା 'କ'ର ଧ୍ୱନିକି 'ଖ'ର ଧ୍ୱନିରେ ପରିଣତ କରିଅଛି । 'ବୁଭୁକ୍ଷା' ଶବ୍ଦରୁ 'ବୁ' ଲୁପ୍ତ ହୋଇ 'ଭୁ' 'ଭୋ'ରେ ପରିଣତ ହେବାରୁ 'ଭୋ' ଉଚ୍ଚାରଣ କରିବା ପାଇଁ ବେଶି ପ୍ରଶ୍ୱାସର ପ୍ରୟୋଜନ ହୋଇଥିଲା (ମହାପ୍ରାଣ ବର୍ଣ୍ଣ ହେତୁରୁ) । ତହିଁ ଉତ୍ତାରୁ 'ଖ' ଉଚ୍ଚାରଣ କରିବା ପାଇଁ ବେଶି ପ୍ରଶ୍ୱାସ ନ ବାହାରିବାରୁ ତାହା 'କ' ରୂପେ ଉଚ୍ଚାରିତ ହେଲା । ସେହିପରି 'ଭିକ୍ଷା' ଶବ୍ଦ 'ଭିକ' ରୂପେ ରୂପାନ୍ତରିତ । ଏହି ହେତୁରୁ ପ୍ରତ୍ୟେକ ବର୍ଗର ବର୍ଣ୍ଣ ଦୁଇ ଭାଗରେ ବିଭକ୍ତ-ଅଳ୍ପ ପ୍ରାଣ (unaspirate) ଓ ମହାପ୍ରାଣ (aspirate) । ଖ, ଘ, ଛ, ଝ, ଠ, ଢ, ଥ, ଧ, ଫ,ଭ-ଏଗୁଡ଼ିକ ମହାପ୍ରାଣ ନାମରେ ଅଭିହିତ । କ, ଗ, ଚ, ଜ, ଟ, ଡ, ତ, ଦ, ପ, ବ-ଏଗୁଡ଼ିକ ଅଳ୍ପପ୍ରାଣ ବର୍ଣ୍ଣ ନାମରେ ଅଭିହିତ । ଅଳ୍ପପ୍ରାଣ ବର୍ଣ୍ଣ ଓ ମହାପ୍ରାଣ ବର୍ଣ୍ଣ ମଧ୍ୟରେ

କି ପ୍ରଭେଦ ଅଛି, ତାହା ପାଠକେ ବର୍ତ୍ତମାନ ବୁଝିପାରୁଥିବେ । 'ଅ' ଉଚ୍ଚାରଣ କଲାବେଳେ ପ୍ରଶ୍ୱାସର ଗତି ପ୍ରଖର ହେଲେ 'ହ'ର ଧ୍ୱନି ଉତ୍ପନ୍ନ ହୋଇଥାଏ । 'ହ' ମହାପ୍ରାଣ ବର୍ଣ୍ଣମାନଙ୍କ ଶ୍ରେଣୀଭୁକ୍ତ ହୋଇପାରେ । ଅନେକ ଶବ୍ଦର ମଧ୍ୟରେ କାହିଁକି 'ହ'ର ଧ୍ୱନି ଆଗମ ହୋଇଅଛି, ତାହାର କାରଣ ବର୍ତ୍ତମାନ ବୁଝାଯାଉଥିବ । 'ହ'ର ଧ୍ୱନି ନିମନ୍ତେ ପ୍ରଖର ପ୍ରଶ୍ୱାସର ପ୍ରୟୋଜନ ହେଉଥିବାରୁ ବିବାହ, ବହୁତ ପ୍ରଭୃତି ଶବ୍ଦ ସାଧାରଣ ଲୋକେ ବିଭା, ଭୋଉତ ପ୍ରଭୃତି ରୂପେ ଉଚ୍ଚାରଣ କରନ୍ତି । ସୁତରାଂ ବର୍ତ୍ତମାନ ଏ କଥା ଉଲ୍ଲେଖ କରିବାକୁ ହେଉଅଛି ଯେ, ପ୍ରତ୍ୟେକ ବର୍ଣ୍ଣର ଧ୍ୱନି ବାଗ୍‌ଯନ୍ତ୍ରର ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରୁ ବାହାରେ ନାହିଁ । ଶବ୍ଦର ପ୍ରତ୍ୟେକ ବର୍ଣ୍ଣର ଧ୍ୱନି ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଧ୍ୱନିକି ଆଶ୍ରୟ କରି ବାହାରେ । ଏହି କାରଣରୁ ବର୍ଣ୍ଣ ମାନଙ୍କର ଧ୍ୱନି ପରବର୍ତ୍ତିତ ହୁଏ ବୋଲି ବ୍ୟାକରଣ ମାନଙ୍କରେ ସନ୍ଧି- ସୂତ୍ରର ସୃଷ୍ଟି । ଏହିପରି ସୂକ୍ଷ୍ମ ଅନୁସନ୍ଧାନ କଲେ ଜଣାଯାଏ ଯେ, ବର୍ଣ୍ଣମାନଙ୍କ ଧ୍ୱନି ଭିତରେ ବେଶି ପ୍ରଭେଦ ନାହିଁ ଏବଂ କୌଣସି ବର୍ଣ୍ଣ ସର୍ବଦା ସମାନ ଭାବରେ ଉଚ୍ଚାରିତ ହୁଏ ନାହିଁ ।

ଅନୁନାସିକ ଧ୍ୱନିକି ଛାଡ଼ିଦେଲେ ବର୍ଗର ବାକି ଚାରୋଟି ଧ୍ୱନି ତାମିଲୀ ଭାଷାରେ ଗୋଟିଏ ଲିପି ଦ୍ୱାରା ଚିହ୍ନିତ । 'କ' ଅକ୍ଷର ଦ୍ୱାରା କ, ଖ, ଗ, ଘ, ଏହି ବର୍ଣ୍ଣ ଗୁଡ଼ିକର ପ୍ରତ୍ୟେକ ଧ୍ୱନି ଉକ୍ତ ଭାଷାରେ ଚିହ୍ନିତ ହୋଇଥାଏ । ଏହିପରି ପ୍ରତ୍ୟେକ ବର୍ଣ୍ଣର ବିଭିନ୍ନ ଧ୍ୱନି ଗୋଟିଏ ଲିପି ଦ୍ୱାରା ଚିହ୍ନିତ ହୁଏ । ତାମିଲୀ ଭାଷାର ଏହା ସାଧାରଣ ପ୍ରକୃତି ଯେ, ବର୍ଗର ପ୍ରଥମ ବର୍ଣ୍ଣ କୌଣସି ଶବ୍ଦର ମଧ୍ୟରେ ବା ଅନ୍ତ୍ୟରେ ଥିଲେ ତାହା ଉଚ୍ଚାରିତ ହୋଇପାରେ । (ଯଥା, ଚକ୍‌କନି) । ପୁଣି ବର୍ଗର ପ୍ରଥମ ବର୍ଣ୍ଣ ଛଡ଼ା ଅନ୍ୟ କୌଣସି ବର୍ଣ୍ଣ ଶବ୍ଦର ଆଦ୍ୟରେ ତାମିଲୀ ଭାଷାରେ ଉଚ୍ଚାରିତ ହୁଏନାହିଁ । ବର୍ଗର ପ୍ରଥମ ବର୍ଣ୍ଣ ଶବ୍ଦର ମଧ୍ୟରେ ଥିଲେ ତାହା ବର୍ଗର ତୃତୀୟ ବର୍ଣ୍ଣ ରୂପେ ଏବଂ ଯେକୌଣସି ବର୍ଣ୍ଣ ଶବ୍ଦର ଆଦ୍ୟରେ ଥିଲେ ମଧ୍ୟ ତାହା ପ୍ରଥମ ବର୍ଣ୍ଣ ରୂପେ ଉଚ୍ଚାରିତ ହୁଏ । ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଇପାରେ ଯେ, ସଂସ୍କୃତ 'ଶକଟ' ଶବ୍ଦ ତାମିଲୀ ଭାଷାରେ 'ଶଗଡ଼' ରୂପେ ଉଚ୍ଚାରିତ । ଏହିପରି ସଂସ୍କୃତ 'ଭାଗ' ଶବ୍ଦ 'ପାଗ' ରୂପେ ଉଚ୍ଚାରିତ; ସୁତରାଂ ସଂସ୍କୃତ ଶାକ, ପାକ, ବକ, ଭାଗ୍ୟ ପ୍ରଭୃତି ଶବ୍ଦ ଯେ ଓଡ଼ିଆ ଭାଷାରେ ତାମିଲୀ ଭାଷାର ଉଚ୍ଚାରଣ ରୀତି ଅନୁସାରେ ଶାଗ, ପାଗ (ଉ - ତରକାରି ପାଗ, ପାଗ ହାଣ୍ଡି), ବଗ, ପାଗ (ଯଥା - ତା ପାଗ ପଡ଼ିଛି) ପ୍ରଭୃତି ରୂପେ ଉଚ୍ଚାରିତ, ଏଥିରେ ସନ୍ଦେହ ନାହିଁ । ଏହିପରି ସଂସ୍କୃତ 'ଦଣ୍ଡ' ଶବ୍ଦ ଓଡ଼ିଆରେ କେହି କେହି 'ତଣ୍ଡ' ରୂପେ ଉଚ୍ଚାରଣ କରିଥାନ୍ତି; ଯଥା

ସେ ଚୋରି କରିଥିବାରୁ ତାଙ୍କୁ ଦଶ ଟଙ୍କା ଦଣ୍ଡ ପଡ଼ିଲା । ଏହିପରି ଉଚ୍ଚାରଣ ସମ୍ବନ୍ଧରେ ଆଲୋଚନା କଲେ ମନରେ ଯେ କୌତୂହଳ ଜାଗେ, ଏଥିରେ ସନ୍ଦେହ ନାହିଁ ।

ଉଚ୍ଚାରଣ ସମ୍ବନ୍ଧରେ କରୁଥିବା ଆଲୋଚନା ପଢ଼ି କେହି ମନେ କରିବେ ନାହିଁ ଯେ, ଏଠାରେ ଲିଖିତ ଭାଷାର ବର୍ଣ୍ଣମାନଙ୍କ ସମ୍ବନ୍ଧରେ ଆଲୋଚନା କରାଯାଉଅଛି । ଲିଖିତ ଭାଷାର ବର୍ଣ୍ଣଗୁଡ଼ିକୁ ଆମ୍ଭେମାନେ ପ୍ରାୟ ସଂସ୍କୃତ ଭାଷାର ରୀତି ଅନୁଯାୟୀ ଉଚ୍ଚାରଣ କରିଥାଉଁ । କେବଳ ଡ, ଢ଼, ଯ, (ଅନ୍ତସ୍ଥ) ବ, ଶ, ଷ, କ୍ଷ = ଏହି କେତୋଟି ଲିଖିତ ଭାଷାର ବର୍ଣ୍ଣ ଓଡ଼ିଶାର ଶିକ୍ଷିତ ଲୋକେ ମଧ୍ୟ ସଂସ୍କୃତ ଭାଷାର ରୀତି ଅନୁଯାୟୀ ଉଚ୍ଚାରଣ କରିପାରନ୍ତି ନାହିଁ । ସୁତରାଂ ଅନ୍ୟବର୍ଣ୍ଣମାନଙ୍କ ଉଚ୍ଚାରଣରେ ପ୍ରକୃତ ଆଲୋଚନା କରିବା ପୂର୍ବରୁ ଆଗେ ଏହି କେତୋଟି ବର୍ଣ୍ଣର ଉଚ୍ଚାରଣ ସମ୍ବନ୍ଧରେ ଆଲୋଚନା କରାଯିବ ।

ତାମ୍ରଶାସନ ବା ଶିଳାଲିପି ଆଲୋଚନା କଲେ କୌଣସି ଠାରେ ଡ, ଢ - ଏହି ଦୁଇ ବର୍ଣ୍ଣତଳେ ବିନ୍ଦୁ ବା ଶୂନ୍ୟ ଦିଆଯାଇଥିବାର ଦେଖାଯାଏ ନାହିଁ । ଏବେ ହିନ୍ଦୀ ବର୍ଣ୍ଣମାଳାରେ ସେହି ଦୁଇଟି ବର୍ଣ୍ଣତଳେ ବିନ୍ଦୁ ଦିଆଯାଏ ନାହିଁ । ଏଥିରୁ ସ୍ପଷ୍ଟ ଜଣାଯାଏ, ସଂସ୍କୃତ ଭାଷାରେ ଡ, ଢ-ଏହି ଦୁଇ ବର୍ଣ୍ଣର ଅନ୍ୟ ପ୍ରକାର ଧ୍ୱନି ନ ଥିଲା । କିନ୍ତୁ ଓଡ଼ିଆ ଓ ବଙ୍ଗଳା ଭାଷାରେ ଡ, ଢ ଶବ୍ଦର ପ୍ରଥମାକ୍ଷର ନ ହେଲେ କିମ୍ବା ଅନ୍ୟ ବର୍ଣ୍ଣ ସହିତ ଯୁକ୍ତ ନ ହେଲେ ଯଥାକ୍ରମେ ସେହି ଦୁଇଟି ବର୍ଣ୍ଣ ଡ଼, ଢ଼ ରୂପେ ଉଚ୍ଚାରିତ ହୁଅନ୍ତି; ଅର୍ଥାତ୍ ତହିଁରେ 'ର'ର ଆଂଶିକ ଧ୍ୱନି ଯୁକ୍ତ ହୁଏ । ସେହି ହେତୁରୁ ଓଡ଼ିଆରେ କେତେବେଳେ 'ଡ଼' ସ୍ଥାନରେ 'ର' ପୁଣି କେତେବେଳେ 'ର' ସ୍ଥାନରେ 'ଡ଼' ଉଚ୍ଚାରିତ ହୋଇଥାଏ [ଯଥା, ବଡ଼ି (ସଂ:ବଟିକା) = ବରି, କର = କଡ଼ (ଉ - କଡ଼ ମାଡ଼ି ଶୋଇବା), ମରା = ମଡ଼ା (ଶବ)] । ଏଠାରେ ଏକଥା ମଧ୍ୟ ଉଲ୍ଲେଖ କରିବା ଉଚିତ୍ ଯେ, ଦ୍ରାବିଡ଼ୀ ଭାଷାରୁ ଏହି 'ଡ଼'ର ଧ୍ୱନି ଓଡ଼ିଆ ଭାଷାକୁ ଆସିଅଛି । ତାମିଲୀ ଭାଷାରେ ଏହିପରି 'ଡ଼'ର ଧ୍ୱନି ଅଛି ।

'ର' -ରୁ 'ର' - ଧ୍ୱନି ଉତ୍ପନ୍ନ ବୋଲି ସଂସ୍କୃତ ଭାଷାରେ ଏହା ଅର୍ଦ୍ଧସ୍ୱର ନାମରେ ଅଭିହିତ । ସେହି ହେତୁରୁ ଓଡ଼ିଆରେ 'ଅ' ବା 'ଆ' ସ୍ଥାନରେ 'ର'ର ଧ୍ୱନି ଆଗମ ହୋଇଥାଏ (ଯଥା, ସଂ:ଆଲୁଂଚ = ଓ:ଆଞ୍ଜୁଡ଼ିବା ବା ରାଞ୍ଜୁଡ଼ିବା, ଆଣ = ରାଣ-ଶପଥ) । ଏହି 'ର'ର ଧ୍ୱନି ଓଡ଼ିଆ ଭାଷାରେ 'ଡ଼' ଓ 'ଳ'ରେ ନିହିତ ଥାଏ ବୋଲି କୁହାଯାଇଅଛି । ଉପେନ୍ଦ୍ର ଭଞ୍ଜ ମଧ୍ୟ ଡ, ର, ଳ – ଏହି ତିନି ବର୍ଣ୍ଣକୁ ଏକ ବର୍ଣ୍ଣ ମନେକରି କେତେବେଳେ 'ଡ଼' ସ୍ଥାନରେ 'ର' ବା 'ର' ସ୍ଥାନରେ 'ଳ' ମିତ୍ରାକ୍ଷରର ସୁବିଧା ନିମନ୍ତେ ରଚନାରେ

ବ୍ୟବହାର କରିପାରିବେ ବୋଲି ଲାବଣ୍ୟବତୀର ପ୍ରଥମ ଛାନ୍ଦରେ ଉଲ୍ଲେଖ କରିଅଛନ୍ତି (ଡ, ର, ଳ, ସାବର୍ଣ୍ଣ୍ୟ ବ୍ୟାକରଣରେ ଲିହି) । ଅଭିମନ୍ୟୁ ସାମନ୍ତସିଂହାର ମଧ୍ୟ 'ର' ସ୍ଥାନରେ ମିତ୍ରାକ୍ଷରର ସୁବିଧା ନିମନ୍ତେ 'ଳ' ବ୍ୟବହାର କରିଅଛନ୍ତି; ଯଥା – ଶ୍ରୀରାଧା ବାତୁଳୀ, ପ୍ରେମରସାତୁଳୀ (ପ୍ରେରସାତୁରୀ) । ଏଠାରେ 'ପ୍ରେମରସାତୁଳୀ' ଶବ୍ଦରୁ କୌଣସି ଅର୍ଥ ନିର୍ଦ୍ଦେଶିତ ହେଉଥିବାରୁ କେହି କେହି ଭ୍ରମରେ ପଡ଼ି ତାହାକୁ 'ପ୍ରେମରନୃତଳୀ' ରୂପେ ସିଦ୍ଧ କରନ୍ତି । କିନ୍ତୁ ଏହା କେତେଦୂର ସମୀଚୀନ, ତାହା ପାଠକେ ବିଚାର କରିବେ ।

ସଂସ୍କୃତ ଭାଷାରେ 'କ୍ଷ' ସାଧାରଣତଃ ପ୍ରଥମେ 'କ୍‌ଷ' ରୂପେ ଉଚ୍ଚାରିତ ହେଉଥିଲା । ପରବର୍ତ୍ତୀ ଯୁଗରେ ଏହା 'ଖ' ରୂପେ ଉଚ୍ଚାରିତ ହେବାରୁ ସଂସ୍କୃତ 'କ୍ଷୁଦ୍ରତାତ' ଶବ୍ଦ 'ଖୁଡ୍ରତାତ'ରେ ପରିଣତ ହୋଇଥିଲା । 'କ୍ଷ' ବର୍ତ୍ତମାନ ବଙ୍ଗଳା ଭାଷାରେ 'ଖ' ରୂପେ ଉଚ୍ଚାରିତ । କିନ୍ତୁ ଓଡ଼ିଆରେ ଏହା 'ଖ୍ୟ' ରୂପେ ଉଚ୍ଚାରିତ। ଯଦି 'କ୍ଷ' କୌଣସି ଶବ୍ଦରେ ଯୁକ୍ତାକ୍ଷର ରୂପେ ବ୍ୟବହୃତ ହୋଇଥାଏ, ତେବେ ସେଠାରେ କେବଳ ତାହାକୁ ଆମ୍ଭେମାନେ 'ଖ' ରୂପେ ଉଚ୍ଚାରଣ କରୁଁ; ଯଥା-ପକ୍ଷୀ=ପଖୀ, ଲକ୍ଷ୍ୟ=ଲଖ୍ୟ, ପକ୍ଷ=ପଖ ।

'କ୍ଷ' ପ୍ରାକୃତ ଭାଷାରେ ବେଳେ ବେଳେ 'ଛ' ରୂପେ ଉଚ୍ଚାରିତ ହୋଇଥିବାରୁ ସଂସ୍କୃତ ମକ୍ଷିକା ଓ କ୍ଷୁର ଶବ୍ଦଦ୍ୱୟରୁ ମାଛି ଓ ଛୁରି ଶବ୍ଦଦ୍ୱୟ ଉତ୍ପନ୍ନ ହୋଇଥିଲା । ବର୍ତ୍ତମାନ ଓଡ଼ିଶାରେ କେହି କେହି ଏହି ବର୍ଣ୍ଣଟିକି 'ଛ' ରୂପେ ଉଚ୍ଚାରଣ କରିଥାନ୍ତି । ସେହି ହେତୁରୁ 'କ୍ଷୌର', 'ଏହିକ୍ଷଣି' ପ୍ରଭୃତି ଶବ୍ଦ ଅନେକ ସମୟରେ 'ଛର' 'ଇଛିଣି' ପ୍ରଭୃତିରେ ପରିଣତ ହୁଅନ୍ତି । ପ୍ରାଚୀନ କାଳରେ 'କ୍ଷ' ଓଡ଼ିଆରେ ବୋଧ ହୁଏ ସର୍ବଦା 'ଛ' ରୂପେ ଉଚ୍ଚାରିତ ହେଉଥିଲା । ସେହି ହେତୁରୁ 'କ୍ଷ' 'ଛ' – ଏହି ଦୁଇବର୍ଣ୍ଣ ମଧ୍ୟରେ ଧ୍ୱନିର ପ୍ରଭେଦ ନଥିବାର ଦେଖି ସେ କାଳର କବିମାନେ କୌଣସି କୌଣସି ଶବ୍ଦସ୍ଥ 'କ୍ଷ' ପରିବର୍ତ୍ତରେ 'ଛ' ଯୋଗ କରି ସେହି ଶବ୍ଦ ସେମାନଙ୍କ କବିତାରେ ବ୍ୟବହାର କରିଅଛନ୍ତି । ଉଦାହରଣ ସ୍ୱରୂପ ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ମାର୍କଣ୍ଡ ଦାସ କେଶବ – କୋଇଲିରେ 'ଛନ୍ଦଣି ପରିବର୍ତ୍ତରେ 'କ୍ଷନ୍ଦଣି' ବ୍ୟବହାର କରିଅଛନ୍ତି (ଯଥା – କୋଇଲି କ୍ଷନ୍ଦଣୀ ବନ୍ଧଣୀ ଭୁଜଦଣ୍ଡ) ସେହିପରି ବଳରାମ ଦାସ ମଧ୍ୟ 'କାନ୍ତକୋଇଲି'ରେ 'ଛଛନ୍ଦରେ' (ସ୍ୱଚ୍ଛନ୍ଦରେ) ପରିବର୍ତ୍ତେ 'କ୍ଷକ୍ଷନ୍ଦେ' ବ୍ୟବହର କରିଅଛନ୍ତି (ଯଥା, କ୍ଷକ୍ଷନ୍ଦେ ଭଣିଲେ ଗୀତେ ବଳରାମ ଦାସ ଲୋ କୋଇଲି) ।

ଓଡ଼ିଆରେ 'ଶ', 'ଷ', ଏହି ଦୁଇଟି ବର୍ଣ୍ଣର ପ୍ରକୃତ ଧ୍ୱନି ପ୍ରାୟ ଲକ୍ଷିତ ହୁଏ ନାହିଁ; କେବଳ 'ସ'ର ଧ୍ୱନି ଲକ୍ଷିତ ହୁଏ । ସେହି ହେତୁରୁ ଇଂରେଜୀ Short ଓ Sort ଶବ୍ଦଦ୍ୱୟର

ଉଚ୍ଚାରଣ ମଧ୍ୟରେ ପରସ୍ପରରେ ଯେ ପ୍ରଭେଦ ଅଛି, ତାହା ଓଡ଼ିଆ ଛାତ୍ରମାନେ ପ୍ରଥମେ ପ୍ରଥମେ ବାରି ପାରନ୍ତି ନାହିଁ । ପୁଣି ତାମିଲୀ ଭାଷାରେ ଶ, ଷ, ସ, - ଏହି ତିନି ଧ୍ୱନି ନଥିବାରୁ ତାମିଲୀରେ ଏମାନଙ୍କ ଧ୍ୱନିସୂଚକ କୌଣସି ଲିପି ପ୍ରଚଳିତ ନାହିଁ । ଉକ୍ତ ଭାଷାରେ କୌଣସି ସଂସ୍କୃତ ଶବ୍ଦ ସ୍ଥିତ ଉକ୍ତ ଧ୍ୱନିଗୁଡ଼ିକ 'ଚ' ଲିପି ଦ୍ୱାରା ଚିହ୍ନିତ ହୋଇଥାନ୍ତି । କାରଣ ତାମିଲୀ ଭାଷାରେ ଶ, ଷ, ସ, - ଏଗୁଡ଼ିକ ପ୍ରାୟ 'ଚ' ରୂପେ ଉଚ୍ଚାରିତ । ଓଡ଼ିଆରେ ମଧ୍ୟ ଅନେକ ସମୟରେ ଉକ୍ତ ବର୍ଣ୍ଣ ଗୁଡ଼ିକ 'ଛ' ରୂପେ ଉଚ୍ଚାରିତ ହୁଅନ୍ତି । ଏଣୁ ସଂସ୍କୃତ ସ୍ୱଚ୍ଛନ୍ଦ, ସଞ୍ଜିବା, ସତ୍ର, ଶ୍ୱେତ, ସୂତକ, ସ୍ୱୟଂ, ଶାଳା ଓ ପ୍ରାକୃତ ସଚ୍ଚା (ସଂ:ସତ୍ୟ) ପ୍ରଭୃତି ଓଡ଼ିଆରେ କେହି କେହି ଛଚ୍ଛନ୍ଦ, ଛଞ୍ଜିବା, ଛତ୍ର (ଛତ୍ରଖିଆ), ଛେତା, ଛୁତକ, ଛାୟେଁ, ଚାଳ ଓ ଛଚ୍ଚା ପ୍ରଭୃତି ରୂପେ ଉଚ୍ଚାରଣ କରନ୍ତି । 'ଷ'ର ଧ୍ୱନି 'କ୍ଷ'ରେ ଥିବାରୁ 'କ୍ଷ', 'ଛ'ରେ ପରିଣତ ହୁଏ ଓ 'ଷ' ମଧ୍ୟ 'ଖ'ରେ ବେଳେ ବେଳେ ପରିଣତ ହୁଏ (ଯଥା, ଭାଷା = ଭାଖା) । ଯାହା ହେଉ, ଯାଉଛି, କରୁଛି ପ୍ରଭୃତି କ୍ରିୟାପଦଗୁଡ଼ିକ ସମ୍ବଲପୁର ଅଞ୍ଚଳରେ କାହିଁକି ଯାଉସି, କରସି ପ୍ରଭୃତିରେ ପରିଣତ ହୁଅନ୍ତି, ତାହାର କାରଣ ବର୍ତ୍ତମାନ ପାଠକେ ବୁଝି ପାରୁଥିବେ ।

ଆହୁରି ଗୋଟିଏ କଥା ଉଲ୍ଲେଖ କରିବା ଉଚିତ୍ ଯେ, ପୂର୍ବମାଗଧୀ ପ୍ରାକୃତରେ 'ଶ'ର ପ୍ରଚଳନ ବେଶି ଥିଲା । ସେହି ହେତୁରୁ ବଙ୍ଗଳା ଭାଷାରୁ 'ଶ'ର ଉଚ୍ଚାରଣ ଲୁପ୍ତ ହୋଇନାହିଁ । କିନ୍ତୁ ଶୌରସେନୀ ପ୍ରାକୃତରେ ଯେପରି 'ଶ'ର ଉଚ୍ଚାରଣ ନ ଥାଇ କେବଳ 'ସ'ର ଉଚ୍ଚାରଣ ଥିଲା, ଓଡ଼ିଆରେ ସେହିପରି କେବଳ 'ସ'ର ଉଚ୍ଚାରଣ ଅଛି । ଓଡ଼ିଶା - ପୁରାତତ୍ତ୍ୱରୁ ଏହା ଜଣାପଡ଼ିଅଛି ଯେ, ଉତ୍କଳରେ ବହୁ ପ୍ରାଚୀନ କାଳରୁ ଶବରମାନେ ବାସ କରୁଅଛନ୍ତି । ନାଟ୍ୟଶାସ୍ତ୍ରରେ ଉଲ୍ଲେଖ ଅଛି ଯେ, ଶବରମାନଙ୍କ ଭାଷାରେ କେବଳ 'ସ' ପ୍ରଚଳିତ (ଶବରାଣାଂଶକାଦୀନାଂ ତତ୍ସ୍ୱଭାବଶ୍ଚ ଯୋ ଗଣଃ ସକାର ଭାଷା ଯୋକ୍ତବ୍ୟା ଚଣ୍ଡାଳୀ ପୁକ୍କସାଦିଷୁ - ଅ ୧୭,ଶ୍ଳୋ ୧୩) ସୁତରାଂ ଶବରମାନଙ୍କ ସଂସ୍ରବରେ ଓଡ଼ିଆରୁ 'ଶ', 'ଷ' - ଏହି ଦୁଇ ବର୍ଣ୍ଣର ଧ୍ୱନି ଲୁପ୍ତ ହୋଇ କେବଳ 'ସ'ର ଧ୍ୱନି ତହିଁରେ ପ୍ରଚଳିତ ହୋଇଅଛି ବୋଲି ମନେ ହୁଏ ।

ବାଗ୍‌ଯନ୍ତ୍ରର ବୈଜ୍ଞାନିକ ପରୀକ୍ଷାରୁ ଜଣାଯାଇଅଛି ଯେ, ଖ, ଘ ପ୍ରଭୃତି ମହାପ୍ରାଣବର୍ଣ୍ଣ ଉଚ୍ଚାରଣ କରିବା ପାଇଁ ପ୍ରଶ୍ୱାସ ବାୟୁ ଯେପରି ବେଶି ପରିମାଣରେ ନିଃସାରିତ ହୁଏ, 'ସ' ଉଚ୍ଚାରଣ କରିବା ପାଇଁ ସେହିପରି ମଧ୍ୟ ନିଃସାରିତ ହୋଇଥାଏ । ସୁତରାଂ 'ସ'କୁ ମହାପ୍ରାଣ- ବର୍ଣ୍ଣମାନଙ୍କର ଶ୍ରେଣୀଭୁକ୍ତ କରାଯାଇପାରେ । ଏପରି ସ୍ଥଳରେ ଓଡ଼ିଆର ଶାସ୍ତ୍ର,

ସ୍ନାନ, ଶସ୍ତ୍ର ପ୍ରଭୃତି ଶବ୍ଦ ବେଳେ ବେଳେ ସାହାସ୍ର, ସ୍ରାହାନ ସହସ ପ୍ରଭୃତି ରୂପେ ଉଚ୍ଚାରିତ ହେବା ବିଚିତ୍ର ନୁହେଁ ।

ଭାଷାତତ୍ତ୍ୱବିତ୍ ମାନେ ଅନୁମାନ କରନ୍ତି ଯେ, ସଂସ୍କୃତ ଭାଷାରେ ପ୍ରଥମେ 'ଣ' ର ଧ୍ୱନି ନ ଥିଲା । ବର୍ତ୍ତମାନ ହିନ୍ଦୀ, ବଙ୍ଗଳା, ଆସାମୀ ପ୍ରଭୃତି ଭାଷାରେ ମଧ୍ୟ ଏହି ଧ୍ୱନିଟି ନାହିଁ । କିନ୍ତୁ ଦ୍ରାବିଡ଼ୀ ଭାଷାମାନଙ୍କରେ ଓ ଓଡ଼ିଆ ଭାଷାରେ ଏହି ଧ୍ୱନିଟି ଅଛି । ଭାଷାତତ୍ତ୍ୱବିତ୍‌ମାନେ କହନ୍ତି ଯେ, ଦ୍ରାବିଡ଼ୀ ଭାଷା ପ୍ରଭାବରେ ସଂସ୍କୃତ ଭାଷାର 'ନ' ଅନେକ ସ୍ଥାନରେ 'ଣ'ରେ ପରିଣତ ହୋଇଥିଲା । କେତେକ ନିର୍ଦ୍ଦିଷ୍ଟ ସ୍ଥାନରେ ସଂସ୍କୃତ ଭାଷାରେ 'ନ', 'ଣ'-ରେ ପରିଣତ ହୋଇଥିବାରୁ ଏବଂ କୌଣସି ସଂସ୍କୃତ ଧାତୁରେ 'ଣ' ନଥିବାରୁ ସଂସ୍କୃତ ଭାଷାରେ ପ୍ରଥମେ 'ଣ'ର ଧ୍ୱନି ନଥିଲା ବୋଲି ବିଶ୍ୱାସ ହୁଏ । ପ୍ରାକୃତ ଭାଷାରେ 'ଣ'ର ଧ୍ୱନି ଏତେ ବହୁଳ ହୋଇଥିଲା ଯେ, ଯେ କୌଣସି ସଂସ୍କୃତ ଶବ୍ଦ ସ୍ଥିତ 'ନ' ତହିଁରେ 'ଣ'ରେ ପରିଣତ ହୋଇପଡୁଥିଲା । ଏବେ ମଧ୍ୟ ସଂସ୍କୃତ ଜନ, ବନ ପ୍ରଭୃତି ଶବ୍ଦ ଓଡ଼ିଆରେ ଜଣ, ବଣ ପ୍ରଭୃତି ରୂପେ ଉଚ୍ଚାରିତ । 'ଣ'ର ଧ୍ୱନି 'ନ'ର ଧ୍ୱନି ଅପେକ୍ଷା କୋମଳ । 'ନ'ର ଧ୍ୱନିରେ 'ର'ର ଧ୍ୱନି ମିଶି 'ଣ'ର ଧ୍ୱନି ଉତ୍ପନ୍ନ । 'ନ'ର ଧ୍ୱନି କର୍କଶ ବୋଲି ଓଡ଼ିଆରେ 'ନ୍ନ' ସାଧାରଣ ଲୋକେ ଉଚ୍ଚାରଣ କରି ନପାରି 'ର୍ଣ' ରୂପେ ଉଚ୍ଚାରଣ କରନ୍ତି; ଯଥା - ଜଗନ୍ନାଥ, ଜଗର୍ଣ୍ଣାଥ, ଅନ୍ନ = ଅର୍ଣ୍ଣ ।

ଆହୁରି ଗୋଟିଏ କଥା ଉଲ୍ଲେଖ କରିବା ଉଚିତ୍ ଯେ, ଓଡ଼ିଶାର ଶିଶୁମାନେ 'ଣ' ଉଚ୍ଚାରଣ କରିପାରନ୍ତି ନାହିଁ । ପ୍ରାକୃତ ଭାଷା ତୁଳନାରେ ଓଡ଼ିଆରେ 'ଣ'-ର ଧ୍ୱନି 'ଣ' ଅତ୍ୟଚ୍ଚ ଥିବାରୁ ମନେ ହୁଏ, ଏହି ଧ୍ୱନିଟି କ୍ରମଶଃ ଲୁପ୍ତ ହୋଇପଡୁଅଛି ।

**ଙ, ଞ** - ଏହି ଦୁଇଟି ଅନୁନାସିକ ବର୍ଣ୍ଣ କୌଣସି ବର୍ଣ୍ଣରେ ଯୁକ୍ତ ନହୋଇ ସ୍ୱତନ୍ତ୍ର ଭାବରେ କୌଣସି ଶବ୍ଦରେ ରହିପାରନ୍ତି ନାହିଁ । କିନ୍ତୁ 'ମ' ଓଡ଼ିଆ ଭାଷାରେ ଅନେକ ସମୟରେ ସ୍ୱତନ୍ତ୍ର ଭାବରେ ରହିଲେ ମଧ୍ୟ ଯେଉଁସବୁ ସଂସ୍କୃତ ଶବ୍ଦର ଅନ୍ତ୍ୟରେ ବା ମଧ୍ୟରେ 'ମ' ଥିଲା; ସେହି ସବୁ ଶବ୍ଦ ଗୁଡ଼ିକ ଓଡ଼ିଆରେ ବ୍ୟବହୃତ ହେବା ଫଳରେ ତହିଁରୁ 'ମ'ର ଧ୍ୱନି ଲୁପ୍ତ ହୋଇ କେବଳ ଅର୍ଦ୍ଧ - ଅନୁନାସିକ ଧ୍ୱନି ରହିଅଛି (ଯଥା, ସଂ: କୋମଳ = ଓ: କଁଳ, ସଂ:ଭୂମି = ଓ:ଭୂଇଁ, ସଂ:ଯାମଳ = ଓ: ଯାଁଳା) । ଏହା ବୋଲି ସଂସ୍କୃତ ଭାଷାରେ 'ମ'ର ଧ୍ୱନି ଯେପରି ଉଚ୍ଚାରିତ ହେଉଥିଲା ଓଡ଼ିଆରେ ସେପରି ଉଚ୍ଚାରିତ ହୁଏନାହିଁ - ଏପରି କେହି ମନେ କରିବେ ନାହିଁ । ଯେଉଁସବୁ ସଂସ୍କୃତ ଶବ୍ଦ ରୂପାନ୍ତରିତ ହୋଇନାହିଁ, ସେହି ସବୁ ଶବ୍ଦସ୍ଥିତ 'ମ' ସଂସ୍କୃତ ଭାଷା ଭଳିଆ ଉଚ୍ଚାରିତ । କିନ୍ତୁ 'ମ'

ଯଦି ଫଳାରୂପେ କୌଣସି ବର୍ଣ୍ଣରେ ଯୁକ୍ତ ହୋଇଥାଏ, ତେବେ ସେଠାରେ 'ମ' ଆମ୍ଭେମାନେ 'ଉଅଁ' ବା 'ଉମ' ରୂପେ ଉଚ୍ଚାରଣ କରୁଁ, ଯଥା-ପଦ୍ମ = ପଦୁଅଁ, ସୂକ୍ଷ୍ମ = ସୁଖୁମ । ଏଥିରୁ ଜଣାଯାଉଅଛି ଯେ, 'ମ'ର ଧ୍ୱନି ଉଚ୍ଚାରିତ ହେଲାବେଳେ ତାହା 'ଉ'ର ଧ୍ୱନିକି ଅନୁସରଣ କରେ । ସୁତରାଂ ସଂସ୍କୃତ ବଂଶ (କୁଳ), ପାଁଶୁ, ମାଂସ, ବଂଶ ପ୍ରଭୃତି ଶବ୍ଦମାନ ଓଡ଼ିଆରେ କାହିଁକି ଯଥାକ୍ରମେ ବଉଁଶ, ପାଉଁଶ, ମାଉଁସ, ବାଉଁଶ ପ୍ରଭୃତିରେ ପରିଣତ, ହୁଅନ୍ତି ତାହାର କାରଣ ବର୍ତ୍ତମାନ ପାଠକମାନେ ବୁଝି ପାରୁଥିବେ । 'ମ' ଉଚ୍ଚାରଣ କରିବା ପାଇଁ 'ଉ'ର ଧ୍ୱନି ବାହାରୁ ଥିବାରୁ କୌଣସି ଶବ୍ଦରେ 'ମ'ର ପୂର୍ବରେ ଯଦି ଆକାର ଥାଏ, ତେବେ ତାହା ଓଡ଼ିଆ ଭାଷାରେ ଅକାର ରୂପେ ଉଚ୍ଚାରିତ ହୁଏ; ଯଥା -ସଂ:ଆମୀନ = ଓ:ଅମୀନ, ସଂ:ଚାମର = ଓ ଚଁର, ସଂ:ଆମଳକୀ = ଓ:ଅଁଳା । ଏପରି ଘଟିବାର କାରଣ ଏହି ଯେ, 'ଉ' ଉଚ୍ଚାରଣ କରିବା ପାଇଁ ପାଟି ମୁଦିବାକୁ ପଡୁଥିବାରୁ 'ଆ' ଉଚ୍ଚାରଣ କରିବା ପାଇଁ ପାଟି ମେଲା କରିବା ସହଜ ହୁଏ ନାହିଁ । ଯାହାହେଉ 'ଉଦିଲା' କ୍ରିୟାପଦ 'ଉଇଲା'ରେ ପରିଣତ ନହୋଇ 'ଉଇଁଲା'ରେ କାହିଁକି ପରିଣତ ହୁଏ, ତାହାର କାରଣ ବର୍ତ୍ତମାନ ବୋଧହୁଏ ଉଲ୍ଲେଖ ନକଲେ ଚଳେ । ଏଠାରେ କିନ୍ତୁ ଏ କଥା ଉଲ୍ଲେଖ କରିବା ଉଚିତ୍ ଯେ, 'ଉଇଁଲା' ନ ଲେଖି 'ଉଇଲା' ଲେଖିବା ସମୀଚୀନ । କାରଣ, 'ଉ'ର ଧ୍ୱନି ସଙ୍ଗେ ଓଡ଼ିଆରେ ଅର୍ଦ୍ଧ ଅନୁନାସିକ ଧ୍ୱନି ଉତ୍ପନ୍ନ ହୋଇଥାଏ । ସେହି ହେତୁରୁ 'କରୁ' କ୍ରିୟାପଦ 'କରୁଁ' ରୂପେ ଉଚ୍ଚାରିତ ହୋଇଥାଏ । 'ଉ' ଯେପରି ଓଷ୍ଠର ସାହାଯ୍ୟରେ ଉଚ୍ଚାରିତ ହୋଇଥାଏ, ପ, ଫ, ବ, ଭ, ମ, - ଏହି ବର୍ଣ୍ଣ ଗୁଡ଼ିକ ସେହିପରି ଓଷ୍ଠର ସାହାଯ୍ୟରେ ଉଚ୍ଚାରିତ ହୋଇଥାନ୍ତି । ସୁତରାଂ 'ଉ' ଉଚ୍ଚାରଣ କରିବାବେଳେ 'ମ'ର ଧ୍ୱନି ବା 'ମ' ଉଚ୍ଚାରଣ କରିବା ବେଳେ 'ଉ'ର ଧ୍ୱନି ଅନୁସରଣ କରିବା ବିଚିତ୍ର ନୁହେଁ ।

ବାଗଯନ୍ତ୍ରର ଏକ ସ୍ଥାନରୁ ଉଚ୍ଚାରିତ ବୋଲି ଅନେକ ଭାଷାରେ 'ମ'ର ଧ୍ୱନିକୁ 'ବ'ର ଧ୍ୱନି ଅନୁସରଣ କରିଥାଏ । ପାଲିରେ ସଂସ୍କୃତ ଆମ୍ର, ତାମ୍ର ପ୍ରଭୃତି ଶବ୍ଦ ଆମ୍ବ, ତାମ୍ବ ପ୍ରଭୃତି ରୂପେ ଉଚ୍ଚାରିତ ହେଉଥିଲେ । ଏଥିରୁ ଓଡ଼ିଆ ଆମ୍ବ, ତମ୍ବା ପ୍ରଭୃତି ଶବ୍ଦ ମାନଙ୍କର ସୃଷ୍ଟି । ଇଂରେଜୀରେ ମଧ୍ୟ Neumerus (Latin), Sluma (Old English), Thum (Old English), Humils ପ୍ରଭୃତି ଶବ୍ଦମାନଙ୍କରୁ Number, Slumber, Thumb, Humble ପ୍ରଭୃତି ଶବ୍ଦମାନ ଉତ୍ପନ୍ନ । 'ମ'ର ଧ୍ୱନି ବାଗଯନ୍ତ୍ରର ଯେଉଁ ସ୍ଥାନରୁ ବାହାରେ, 'ବ'ର ଧ୍ୱନି ସେହି ସ୍ଥାନର ଅତି ନିକଟରୁ ବାହାରେ ବୋଲି ଏପରି ଘଟିଥାଏ - ଏକଥା

Dumville ସାହେବ ନିଜ ରଚିତ 'Science of Speech'ରେ ଲେଖିଅଛନ୍ତି। ଏହି ହେତୁରୁ 'ବ' ଅନେକ ଭାଷାରେ 'ମ'ରେ ପରିଣତ ହୋଇଯାଏ । ଓଡ଼ିଆରେ 'ବିନତି' ପରିବର୍ତ୍ତରେ 'ମିନତି' ଉଚ୍ଚାରିତ ହୋଇଥାଏ । ପୁଣି ସଂସ୍କୃତରେ ମଧ୍ୟ 'ବତ୍' ପ୍ରତ୍ୟୟ 'ମତ୍'ରେ ଏବଂ ବତ୍ ଓ ମତ୍ ପ୍ରତ୍ୟୟାନ୍ତ ଶବ୍ଦଗୁଡ଼ିକ ବହୁବଚନରେ ବନ୍ତ ଓ ମନ୍ତ ପ୍ରତ୍ୟୟାନ୍ତ ହୋଇପଡ଼ନ୍ତି । ବର୍ତ୍ତମାନ ଓଡ଼ିଆରେ ଏକବଚନରେ ମଧ୍ୟ 'ବନ୍ତ' ଓ 'ମନ୍ତ' ପ୍ରତ୍ୟୟ ବ୍ୟବହୃତ; ଯଥା,- ଧନବନ୍ତ ବା ଧନମନ୍ତ । ସୁତରାଂ ସଂସ୍କୃତ 'ବକ୍ର' ଶବ୍ଦ ପାଲିରେ 'ବକ୍କରେ ପରଣିତ ହୋଇ ତହିଁରୁ ଓଡ଼ିଆ 'ବାଙ୍କ' ଶବ୍ଦ ଉତ୍ପନ୍ନ ହେବାପାଇଁ ଅନୁନାସିକ ଧ୍ୱନି ଆସିବା ବିଚିତ୍ର ନୁହେଁ । ସେହିପରି 'ଗ'ର ଧ୍ୱନି ସଙ୍ଗେ ମଧ୍ୟ ଓଡ଼ିଆରେ ଅନୁନାସିକ ଧ୍ୱନି ବାହାରେ (ଯଥା, ଫିଗ = ଫିଙ୍ଗ) ଏ କଥା ମଧ୍ୟ ଏଠାରେ ଉଲ୍ଲେଖ କରିବା ଉଚିତ୍ ଯେ, ଦ୍ରାବିଡ଼ୀ ଭାଷାରେ 'ଗ'ର ଧ୍ୱନିକି ଅନୁନାସିକ ଧ୍ୱନି ଅନୁସରଣ କରିଥାଏ ।

ବର୍ତ୍ତମାନ ଏହା ବକ୍ତବ୍ୟ ଯେ, 'ମ୍ମ' ଓଡ଼ିଆରେ ସାଧାରଣତଃ ବେଳେ ବେଳେ 'ନମ' ରୂପେ ଉଚ୍ଚାରିତ (ଯଥା, ସମ୍ମୁଖ = ସନମୁଖ, ସମ୍ମାନ = ସନମାନ, ସମ୍ମତି = ସନମତି)। କିନ୍ତୁ 'ଅମାତ୍ୟ' କାହିଁକି ଓଡ଼ିଆରେ 'ଅମନାତ୍ୟ' ରୂପେ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବ୍ୟବହୃତ ହୋଇଅଛି, କହିହେବ ନାହିଁ ।

ଚ, ଛ, ଜ, ଝ ପ୍ରଭୃତି ତାଲବ୍ୟ ବର୍ଣ୍ଣ ଏବଂ ତ, ଥ, ଦ, ଧ ପ୍ରଭୃତି ଦନ୍ତ୍ୟବର୍ଣ୍ଣଗୁଡ଼ିକର ଉଚ୍ଚାରଣ ସଂସ୍କୃତ ଭାଷାର ଉଚ୍ଚାରଣାନୁରୂପେ ଓଡ଼ିଆରେ ପ୍ରଚଳିତ ଥିଲେ ମଧ୍ୟ ଅନେକ ସମୟରେ କୌଣସି କୌଣସି ତାଲବ୍ୟ ବର୍ଣ୍ଣ ଦନ୍ତ୍ୟବର୍ଣ ରୂପେ ଓ କୌଣସି କୌଣସି ଦନ୍ତ୍ୟବର୍ଣ୍ଣ ତାଲବ୍ୟ ବର୍ଣ୍ଣ ରୂପେ ସାଧାରଣ ଲୋକେ ଉଚ୍ଚାରଣ କରନ୍ତି । ସଂସ୍କୃତ 'ତର୍ଜ୍ଜ'ରୁ ଓଡ଼ିଆରେ 'ରଜିବା' ପ୍ରଚଳିତ । ପୁଣି 'ଜ'କୁ 'ଦ'ରେ ପରିଣତ କରି କେହି କେହି 'ଚଦିବା' ମଧ୍ୟ କହନ୍ତି । ଆହୁରି ମଧ୍ୟ 'ଚାଷ' ଶବ୍ଦର 'ଷ'କୁ ଯେତେବେଳେ 'ସ'ରେ ପରିଣତ କରି ଉଚ୍ଚାରଣ କରୁଁ, ତେତେବେଳେ 'ଚ' ମଧ୍ୟ 'ତ'ରେ ପରିଣତ ହୋଇ ଉକ୍ତ ଶବ୍ଦଟି 'ତାସ' ରୂପେ ଉଚ୍ଚାରିତ ହୋଇଥାଏ । ସେହିପରି 'ପିଶାଚ' ଶବ୍ଦର ବର୍ଣ୍ଣ ବିପର୍ଯ୍ୟୟ ଘଟି ଯେତେବେଳେ ତାହା 'ପିଚାଶ'ରେ ପରିଣତ ହୁଏ, ତେତେବେଳେ ଉକ୍ତ ଶବ୍ଦଟି 'ପିତାସ' ରୂପେ ଉଚ୍ଚାରିତ ହୋଇଥାଏ । ନାମବାଚକ 'ସତ୍ୟବାଦୀ' ଶବ୍ଦର ଶେଷାଂଶ 'ବାଦୀ'ରୁ 'ବାଜି'ର ମଧ୍ୟ ଉତ୍ପତ୍ତି ଘଟିଥାଏ। ଏହିପରି ସଂସ୍କୃତ 'ମୁଦ୍' ଧାତୁ 'ମୁଜ୍'ରେ (ତୁଂ, ବଂ, ମୁଜ) ପରିଣତ ହୋଇ ତହିଁରୁ ଓଡ଼ିଆ 'ବୁଜ୍' ଧାତୁ (ଉ : ଆଖି ବୁଜିବା)

ଉତ୍ପନ୍ନ ହୋଇଅଛି । ପୁଣି ସଂସ୍କୃତ 'ବୁଧ୍' ଧାତୁ ଓଡ଼ିଆରେ 'ବୁଝ' ରୂପେ ଓ 'ଯଶ' ଶବ୍ଦ 'ଦଛ' ରୂପେ ଉଚ୍ଚାରିତ ।

ଯୁକ୍ତାକ୍ଷରର ଉଚ୍ଚାରଣ ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ଏକଥା ଉଲ୍ଲେଖ କରିବା ଉଚିତ୍ ଯେ, ତାମିଲୀ ଭାଷାରେ ଯୁକ୍ତାକ୍ଷରର ବ୍ୟବହାର ଅତ୍ୟଳ୍ପ । ତାମିଲୀ ଭାଷାରେ ଏକବର୍ଣ୍ଣରେ, ସେହି ବର୍ଣ୍ଣ ଯେଉଁ ବର୍ଗର ଅନ୍ତର୍ଗତ, ସେହି ବର୍ଣ୍ଣର ଅନୁନାସିକ ଧ୍ୱନିଯୁକ୍ତ ହୋଇପାରେ ଅଥବା ଯେକୌଣସି ବର୍ଣ୍ଣର ଦ୍ୱିତ୍ୱ ଘଟିପାରେ । ଙ୍କ, ଞ୍ଚ, ଣ୍ଟ, ନ୍ଦ, କ୍କ, ଚ୍ଚ, ଟ୍ଟ ପ୍ରଭୃତି କେତେଗୁଡ଼ିଏ ଯୁକ୍ତବର୍ଣ୍ଣ ଛାଡ଼ିଦେଲେ ଅନ୍ୟପ୍ରକାର ଯୁକ୍ତବର୍ଣ୍ଣ, ଅର୍ଥାତ୍ ଏକ ବ୍ୟଞ୍ଜନ ବର୍ଣ୍ଣରେ ଅନ୍ୟ ବ୍ୟଞ୍ଜନ ବର୍ଣ୍ଣ ଯୁକ୍ତ ହେଲେ ତାହା ତାମିଲୀ ଭାଷାରେ ଉଚ୍ଚାରିତ ହୋଇପାରେ ନାହିଁ । ସେହିପରି ଅନୁନାସିକ ଧ୍ୱନିଯୁକ୍ତ ବର୍ଣ୍ଣଗୁଡ଼ିକୁ ଛାଡ଼ିଦେଲେ ଅନ୍ୟ ଯୁକ୍ତବର୍ଣ୍ଣର ଧ୍ୱନି ଓଡ଼ିଶାର ସାଧାରଣ ଲୋକେ ଉଚ୍ଚାରଣ କରିପାରନ୍ତି ନାହିଁ । ସଂସ୍କୃତ 'ସ୍ଥାନ' ଶବ୍ଦ ତାମିଲୀ ଭାଷାରେ ଯେପରି 'ଟାନ' ରୂପେ ଉଚ୍ଚାରିତ, ଓଡ଼ିଆରେ ସେହିପରି 'ଥାନ' ରୂପେ ଉଚ୍ଚାରିତ ହୁଏ । ପୁଣି ତାମିଲୀ ଭାଷାର ଉଚ୍ଚାରଣ - ପ୍ରକୃତିର ଅନୁରୂପେ ଓଡ଼ିଆ ଭାଷାର ଉଚ୍ଚାରଣ - ପ୍ରକୃତି ଏପରି ସରଳ ହୋଇପଡ଼ିଅଛି ଯେ, କୌଣସି ଶବ୍ଦର ପ୍ରାରମ୍ଭରେ ଯୁକ୍ତବର୍ଣ୍ଣ ଥିଲେ ତାହା ଉଚ୍ଚାରିତ ନହୋଇ ତହିଁରୁ ଗୋଟିଏ ବର୍ଣ୍ଣ ଉଚ୍ଚାରିତ ହୋଇଥାଏ । ସେହି ହେତୁରୁ ସଂସ୍କୃତ ସ୍ଫୁଟ, ସ୍ଥାଳ, ଶ୍ମଶାନ ପ୍ରଭୃତିରୁ ଓଡ଼ିଆ ଫୋଡ଼, ଥାଳ, ମଶାଣି ପ୍ରଭୃତି ଉତ୍ପନ୍ନ । ପୁଣି ତାମିଲୀ ଭାଷାରେ କୌଣସି ବିଦେଶୀ ଶବ୍ଦର ଆଦ୍ୟ ଯୁକ୍ତବର୍ଣ୍ଣ ଉଚ୍ଚାରଣ କରିବାକୁ ହେଲେ ପ୍ରଥମେ 'ଇ'ର ଧ୍ୱନି ଯେପରି ଉଚାରିବାର ପ୍ରୟୋଜନ ହୁଏ, ଓଡ଼ିଆରେ ସେହିପରି ମଧ୍ୟ ହୁଏ । ସ୍କୁଲ, ଷ୍ଟେଶନ ପ୍ରଭୃତି ଓଡ଼ିଆରେ ଇସ୍କୁଲ, ଇଷ୍ଟେଶନ ପ୍ରଭୃତି ରୂପେ ଉଚ୍ଚାରିତ । ଆହୁରି ମଧ୍ୟ କୌଣସି କୌଣସି ଶବ୍ଦସ୍ଥ ଆଦ୍ୟ ଯୁକ୍ତବର୍ଣ୍ଣ ଭାଙ୍ଗିଯାଇ ପ୍ରଥମ ବର୍ଣ୍ଣରେ ଇ କାର ଯୁକ୍ତ ହୁଏ, ତହିଁ ଉତ୍ତାରୁ ସେହି ଶବ୍ଦଟି ଓଡ଼ିଆରେ ଉଚ୍ଚାରିତ ହୁଏ; ଯଥା,-ଶ୍ରାବଣ=ଶିରାବଣ, କ୍ଲେଶ=କିଳେଶ, ସ୍ଲେଟ=ସିଲଟ ।

କୌଣସି ଶବ୍ଦରେ 'ର' ଯୁକ୍ତ ବର୍ଣ୍ଣ ଥିଲେ ସାଧାରଣ ଲୋକେ ତାହା ଉଚ୍ଚାରଣ କଲାବେଳେ ଉକ୍ତ ଯୁକ୍ତବର୍ଣ୍ଣର ଧ୍ୱନି ଦୁଇଟି ପୃଥକ୍ ପୃଥକ୍ ଧ୍ୱନିରେ ପରିଣତ ହୁଅନ୍ତି; ଅଥବା 'ର'ର ଧ୍ୱନି ତହିଁରୁ ଲୁପ୍ତ ହୁଏ; ଯଥା-ପ୍ରବାସ = ପରବାସ, ପ୍ରସନ୍ନ = ପରସନ, ଗର୍ଜନ = ଗରଜନ, ବର୍ଷା = ବରଷା, ବ୍ରାହ୍ମଣ = ବାହ୍ମଣ, ଦ୍ରୋହି = ଦୋହି । 'ର' ଯୁକ୍ତ ବର୍ଣ୍ଣ ଓଡ଼ିଆରେ ସାଧାରଣତଃ ଏହିପରି ଉଚ୍ଚାରିତ ହୋଇଥାଏ । ବଙ୍ଗଳା ଓ ଆସାମୀ

ଭାଷାରେ ମଧ୍ୟ ଏହିଭଳି ଉଚ୍ଚାରଣର ଦୃଷ୍ଟାନ୍ତ ମିଳେ । କିନ୍ତୁ ଓଡ଼ିଆରେ ଆଉ ଏକପ୍ରକାର ଅଦ୍ଭୁତ ଉଚ୍ଚାରଣ ଅଛି । ଅପରାଧ, ଉପରୋଧ, ଗରଜନ, ବରଷା ପ୍ରଭୃତି ଶବ୍ଦକୁ କେହି କେହି ଅପ୍ରାଧ, ଓପ୍ରୋଧ, ଗ୍ରଜନ, ବ୍ରଷା ପ୍ରଭୃତି ରୂପେ ଉଚ୍ଚାରଣ କରିଥାନ୍ତି । 'ର' ଯୁକ୍ତ ବର୍ଣ୍ଣ ଉଚ୍ଚାରିତ ନ ହେଉଥିବା ସ୍ଥଳେ ପୁଣି 'ର' ଗୋଟିଏ ବର୍ଣ୍ଣରେ ବଳାତ୍କାରରେ କିପରି ଯୁକ୍ତ ହୁଏ, ତାହାର କାରଣ ନିର୍ଣ୍ଣୟ କରିବା କଠିନ । ବୋଧ ହୁଏ, ଶୁଦ୍ଧ ରୂପେ ଉଚ୍ଚାରଣ କରିବାକୁ ଚେଷ୍ଟା କରୁଁ କରୁଁ ଲୋକେ ଉକ୍ତ ଶବ୍ଦଗୁଡ଼ିକୁ ବିକୃତ ଭାବରେ ଉଚ୍ଚାରଣ କରିଥାନ୍ତି ।

ବର୍ତ୍ତମାନ ଓଡ଼ିଆ ଭାଷାରେ ଯେପରି ଯ, ୟ, ଦୁଇଟି ପୃଥକ୍ ବର୍ଣ୍ଣ ଅଛି, ସଂସ୍କୃତ ଭାଷାରେ ସେପରି ନଥିଲା । ଓଡ଼ିଆରେ 'ୟ' ଯେପରି ଉଚ୍ଚାରିତ ହୁଏ, ସଂସ୍କୃତ ଭାଷାରେ 'ମ'ର ପରବର୍ତ୍ତୀ ବର୍ଣ୍ଣ ଠିକ୍ ସେହିପରି ଉଚ୍ଚାରିତ ହେଉଥିଲା । ସେହି ହେତୁରୁ ତାହା ଅର୍ଦ୍ଧସ୍ୱର ଆଖ୍ୟାରେ ବ୍ୟାକରଣ ମାନଙ୍କରେ ଅଭିହିତ । କାରଣ, ତହିଁରେ 'ଇ', 'ଅ'- ଏହି ଦୁଇଟି ସ୍ୱରବର୍ଣ୍ଣର ଧ୍ୱନି ନିହିତ ଅଛି । କିନ୍ତୁ ସେହି ବର୍ଣ୍ଣଟି କୌଣସି ଶବ୍ଦର ଆଦ୍ୟରେ ରହିଲେ ତାହା 'ଜ' ରୂପେ ଓଡ଼ିଆରେ ଉଚ୍ଚାରିତ ହେବାରୁ ଓଡ଼ିଆ ବର୍ଣ୍ଣମାଳାରେ ଯ, ୟ- ଏହି ଦୁଇଟି ପୃଥକ୍ ଲିପି ପ୍ରଚଳିତ ।

ଓଡ଼ିଆରେ କୌଣସି କୌଣସି ଶବ୍ଦର ମଧ୍ୟବର୍ତ୍ତୀ 'ୟ' ମଧ୍ୟ 'ଜ' ରୂପେ ଉଚ୍ଚାରିତ ହୁଏ । (ମୟୂର = ମଜୁର) । ପୁଣି ପଣ୍ଡିତମାନେ ଶୁଦ୍ଧ ରୂପେ ଉଚ୍ଚାରଣ କରିବା ଅଭିପ୍ରାୟରେ 'ଯ'କୁ 'ଜ୍ୟ' ରୂପେ ଉଚ୍ଚାରଣ କରିଥାନ୍ତି । କିନ୍ତୁ 'ଯ' କୌଣସି ବର୍ଣ୍ଣରେ ଯୁକ୍ତ ହୋଇଥିଲେ ତାହା 'ଇଅ' ରୂପେ ଉଚ୍ଚାରିତ । ସେହି ହେତୁରୁ ବାକ୍ୟ, ଶକ୍ୟ ପ୍ରଭୃତି ଶବ୍ଦଗୁଡ଼ିକୁ ଓଡ଼ିଶାର ସାଧାରଣ ଲୋକେ ବାକିଅ, ଶକିଅ ପ୍ରଭୃତି ରୂପେ ଉଚ୍ଚାରଣ କରିଥାନ୍ତି । କେବଳ ଓଡ଼ିଶାର ଉତ୍ତରାଞ୍ଚଳର ଲୋକେ 'ବାହ୍ୟ' ଶବ୍ଦଟିକୁ ବଙ୍ଗାଳୀମାନଙ୍କ ପରି 'ବାଝ୍ୟ' ରୂପେ ଉଚ୍ଚାରଣ କରିଥାନ୍ତି । ଏଠାରେ 'ୟ' ଫଳାକୁ 'ଜ' ରୂପେ ଉଚ୍ଚାରଣ କରିବାରୁ ତାହା 'ହ' ଯୋଗୁଁ ଅଳ୍ପେଶରେ 'ଝ'ରେ ପରିଣତ ହୋଇଯାଏ ।

ଉ, ଅ – ଏହି ଦୁଇଟି ବର୍ଣ୍ଣର ଧ୍ୱନି ମିଶି ଅନ୍ତସ୍ଥ 'ବ'ର ଧ୍ୱନି ଉତ୍ପନ୍ନ ହୋଇଥିବାରୁ ସଂସ୍କୃତ ବ୍ୟାକରଣ ମାନଙ୍କରେ ଏହା ଅର୍ଦ୍ଧସ୍ୱର ବୋଲି ପରିଚିତ । ସେହି ହେତୁରୁ ଦ୍ୱାର, ତତ୍ତ୍ୱ, ସ୍ୱତ୍ୱ, ପ୍ରଭୃତି ସଂସ୍କୃତ ଶବ୍ଦ ଓଡ଼ିଶାର ସାଧାରଣ ଲୋକେ ଦୁଆର, ତତୁଅ, ସତୁଅ ପ୍ରଭୃତି ରୂପେ ଉଚ୍ଚାରଣ କରନ୍ତି ଓ ସଂସ୍କୃତ ଅବତାର, ଅବଲମ୍ବ ପ୍ରଭୃତି ଶବ୍ଦ ପାଲିରେ ଓତାର, ଓଲମ ପ୍ରଭୃତି ରୂପେ ରୂପାନ୍ତରିତ ହୋଇଥିଲା । ବିଦେଶୀ ଶବ୍ଦମାନଙ୍କରେ ଥିବା ଅନ୍ତସ୍ଥ 'ବ'କୁ ଆମ୍ଭେମାନେ ଠିକ୍ ରୂପେ ଉଚ୍ଚାରଣ କରିଥାଉଁ । କିନ୍ତୁ ବର୍ଣ୍ଣମାଳାରେ ଅନ୍ତସ୍ଥ

'ବ' ଓ ଓଷ୍ଠ୍ୟ 'ବ' ମଧ୍ୟରେ ଆକୃତିଗତ ବୈଷମ୍ୟ ନ ଥିବାରୁ ସାଧାରଣ ଲେଖକମାନେ ବିଦେଶୀ ଶବ୍ଦର ଅନ୍ତସ୍ଥ 'ବ' ସ୍ଥାନରେ 'ଓ' ବର୍ଣ୍ଣ ବ୍ୟବହାର କରିଥାନ୍ତି; ଯଥା - ଓ୍ୱାପସ, ଦେଓ୍ୱାନ । ବିଦେଶୀ ଶବ୍ଦ ଛଡ଼ା ଅନ୍ୟତ୍ର ଆମ୍ଭେମାନେ ଅନ୍ତସ୍ଥ 'ବ'କୁ ଓଷ୍ଠ 'ବ' ରୂପେ ଉଚ୍ଚାରଣ କରିଥାଉଁ । ସେହି ହେତୁରୁ ସଂସ୍କୃତ ସମ୍ବାଦ, ବଶମ୍ବଦ ପ୍ରଭୃତି ଶବ୍ଦଗୁଡ଼ିକୁ ଆମ୍ଭେମାନେ ସମ୍ବାଦ, ବଶମ୍ବଦ ପ୍ରଭୃତି ରୂପେ ଲେଖିଥାଉଁ ।

ଆଜିକାଲି ଓଡ଼ିଆ ଭାଷାରେ ଲ, ଳ - ଏହି ଦୁଇଟିର ବିଭିନ୍ନ ଧ୍ୱନି ଯେପରି ପ୍ରଚଳିତ ଅଛି, ପୂର୍ବେ ସଂସ୍କୃତ ଭାଷାରେ ସେପରି ନଥିଲା । ଏବେ ମଧ୍ୟ ଓଡ଼ିଆ 'ଳ' ବର୍ଣ୍ଣର ଧ୍ୱନି ହିନ୍ଦୀ, ବଙ୍ଗଳା ପ୍ରଭୃତି ଭାଷାରେ ନାହିଁ, କେବଳ 'ଇ'ର ଧ୍ୱନି ଉକ୍ତ ଭାଷା ମାନଙ୍କରେ ଅଛି । ସଂସ୍କୃତ ଭାଷାରେ 'ଲ'ର ଧ୍ୱନି 'ଌ'ର ଧ୍ୱନିରୁ ଉତ୍ପନ୍ନ ବୋଲି ତାହା ଅର୍ଦ୍ଧସ୍ୱର ଆଖ୍ୟା ଲଭିଥିଲା । 'ଲ'ରେ 'ର'ର ଧ୍ୱନି ମିଶି ଓଡ଼ିଆ 'ଳ'ର ଧ୍ୱନି ଉତ୍ପନ୍ନ । ତାମିଲୀ ଭାଷାରେ 'ଳ'ର ଧ୍ୱନି ଥିବାରୁ ଆଦିମ ଦ୍ରାବିଡ଼ ଜାତିମାନଙ୍କ ଦ୍ୱାରା ଏହି ଧ୍ୱନିଟି ଓଡ଼ିଆରେ ରକ୍ଷିତ ହୋଇଅଛି ବୋଲି ମନେ ହୁଏ । ଏବେ ମଧ୍ୟ ପାଠଶାଳାରେ ପଢୁଥିବା କନ୍ଧ ପିଲାମାନେ 'ଲ' ଉଚ୍ଚାରଣ କରିନପାରି ସର୍ବଦା 'ଳ' ଉଚ୍ଚାରଣ କରୁଅଛନ୍ତି। କିନ୍ତୁ ଓଡ଼ିଆରେ 'ଳ' ବର୍ଣ୍ଣଟି କୌଣସି ଶବ୍ଦର ଆଦ୍ୟରେ ଉଚ୍ଚାରିତ ହୋଇପାରେ ନାହିଁ । ଆମ୍ଭେମାନେ ପ୍ରତ୍ୟେକ ଶବ୍ଦର ଆଦ୍ୟରେ 'ଲ' ବର୍ଣ୍ଣଟି ବ୍ୟବହାର କରୁ । ଯେଉଁ ସଂସ୍କୃତ ଶବ୍ଦର ଅନ୍ତ୍ୟରେ 'ଲ' ଯୁକ୍ତବର୍ଣ୍ଣ ରୂପେ ବ୍ୟବହୃତ ହେଉଥିଲା, ସେହି ସବୁ ଶବ୍ଦ ଓଡ଼ିଆରେ ରୂପାନ୍ତରିତ ହୋଇ ତହିଁରେ 'ଲ'ର ଧ୍ୱନି ରକ୍ଷିତ ହୋଇଅଛି (ଯଥା, ସଂ: ବିଲ୍ୱ = ଓ: ବେଲ, ସଂ: ଫୁଲ୍ଲ ଓ: ଫୁଲ) । ଅନ୍ୟତ୍ର ଶବ୍ଦର ମଧ୍ୟରେ ବା ଅନ୍ତ୍ୟରେ କେବଳ 'ଳ' ଉଚ୍ଚାରିତ ହୁଏ ବୋଲି କହିଲେ ଚଳେ ।

ସମ୍ବଲପୁର ଅଞ୍ଚଳରେ 'ଳ'ର ଧ୍ୱନି ନାହିଁ । ପୁରୀ ବା କଟକ ଅଞ୍ଚଳର ଛୋଟ ପିଲାମାନେ ମଧ୍ୟ 'ଳ'ର ଧ୍ୱନି ଉଚ୍ଚାରଣ କରିପାରନ୍ତି ନାହିଁ । ପୁଣି ସାଧାରଣ ଲୋକେ ବେଳେ ବେଳେ 'ଲ'କୁ 'ନ' ରୂପେ ଉଚ୍ଚାରଣ କରିଥାନ୍ତି; ଯଥା - ସଂ: ଲବଣ = ପ୍ରା: ଲୋଣ = ଓ:ଲୁଣ ବା ନୁଣ, ସଂ:ନଗ୍ନ = ପା:ଣଗ୍‌ଗଳ = ଓ:ଲଙ୍ଗଳା ବା ନଙ୍ଗଳା । ପୃଥିବୀର ପ୍ରତ୍ୟେକ ଭାଷାରେ ଏପରି ଘଟୁଥିବାର ଧ୍ୱନିବିଜ୍ଞାନରୁ ଜଣାଯାଏ ।

ପୂର୍ବେ ଦେଖା ଯାଇଅଛି ଯେ, କେହି କେହି 'ତ'କୁ 'ଚ' ରୂପେ ଓ 'ସ'କୁ 'ଛ' ରୂପେ ଉଚ୍ଚାରଣ କରନ୍ତି । ସୁତରାଂ 'ତ୍ସ' ଏହି ଯୁକ୍ତବର୍ଣ୍ଣଟି 'ତ୍‌ସ' ରୂପେ ଉଚ୍ଚାରିତ ନ ହୋଇ 'ଛ' ରୂପେ ଉଚ୍ଚାରିତ ହେବା ବିଚିତ୍ର ନୁହେଁ, ଯଥା, - ବତ୍ସ = ବଚ୍ଛା = ବଚ୍ଚା, ଉତ୍ସାହ = ଉଚ୍ଛାହ ।

କକ୍, ଚଚ୍, ଦ୍ଦ, ଦ୍ଧ, ତ୍ତ ପ୍ରଭୃତି ଯୁକ୍ତବର୍ଣ୍ଣ ରୂପେ ଉଚ୍ଚାରିତ ନ ହୋଇ ସାଧାରଣତଃ ସେଗୁଡ଼ିକ କ, ଚ, ଦ, ଧ, ତ, ପ୍ରଭୃତି ରୂପେ ଉଚ୍ଚାରିତ ହୋଇଥାନ୍ତି। କିନ୍ତୁ 'କ୍ଷ' ବର୍ଣ୍ଣଟି ଯୁକ୍ତବର୍ଣ୍ଣ ରୂପେ ଉଚ୍ଚାରିତ ହେଲେ ମଧ୍ୟ ଓଡ଼ିଆ ଭାଷାରେ ଏହାର ପ୍ରକୃତ ଧ୍ୱନି ନାହିଁ । 'ଜ', 'ଞ' - ଏହି ଦୁଇଟି ବର୍ଣ୍ଣର ଧ୍ୱନିଯୁକ୍ତ ବର୍ଣ୍ଣଟି ଓଡ଼ିଆରେ 'ଗଁ୍ୟ' ରୂପେ ବା 'ଗ୍ୟ' ରୂପେ ଉଚ୍ଚାରିତ (ଯଥା, ଆଜ୍ଞା = ଆଗଁ୍ୟା, ବିଜ୍ଞାନ = ବିଗ୍ୟାନ, ଅଜ୍ଞାନ = ଅଗ୍ୟାନ) ।

ସଂସ୍କୃତ ଭାଷାର ବିସର୍ଗର ଧ୍ୱନି ପାଲି ଭାଷାରେ 'ଓ' ରୂପେ ଉଚ୍ଚାରିତ ହେଉଥିଲା; ଯଥା,- ସଂ: ଗଜଃ = ପା: ଗଜୋ; କିନ୍ତୁ ବର୍ତ୍ତମାନ ଓଡ଼ିଆରୁ ବିସର୍ଗର ଉଚ୍ଚାରଣ ପ୍ରାୟ ଲୁପ୍ତ ହୋଇପଡ଼ିଲାଣି ।

ଏହି ଅଧ୍ୟାୟରେ ଓଡ଼ିଆ ସନ୍ଧି ସମ୍ବନ୍ଧରେ ମଧ୍ୟ ଆଲୋଚନା କରିପାରିଥାନ୍ତି । କିନ୍ତୁ ଓଡ଼ିଆ ଭାଷାରେ ପ୍ରାୟ ସନ୍ଧି ନଥିବାରୁ ତହିଁରେ ଆଲୋଚନାରୁ କ୍ଷାନ୍ତ ହେଲି । ଦୁଇଟି ଶବ୍ଦକୁ ଟାଣି ଓଟାରି ଏକତ୍ର କରିବା ସଂସ୍କୃତ ସନ୍ଧିର ଉଦ୍ଦେଶ୍ୟ ନଥିଲା । ଯେଉଁଠାରେ ପ୍ରାକୃତିକ ନିୟମରେ ଦୁଇଟି ଶବ୍ଦ ମିଳିଯାଇଥାନ୍ତି, ସେଠାରେ କିପରି ବିଶ୍ଳେଷଣ କରି ଦୁଇଟି ଶବ୍ଦକୁ ପୃଥକ୍ ପୃଥକ୍ ରୂପେ ବାରିବାକୁ ହେବ, ସେଥିନିମନ୍ତେ ସଂସ୍କୃତ ବ୍ୟାକରଣ ମାନଙ୍କରେ ସନ୍ଧିସୂତ୍ରର ସୃଷ୍ଟି ହୋଇଥିଲା । କିନ୍ତୁ ପରବର୍ତ୍ତୀ ଯୁଗର ସଂସ୍କୃତ ଭାଷାରେ ଅନେକ କୃତ୍ରିମ ସନ୍ଧିର ସୃଷ୍ଟି ହୋଇଅଛି । ଏହା ବୋଲି ଓଡ଼ିଆରେ 'କରୁ + ଅଛି' 'କରୁଛି'ରେ ପରିଣତ ହୋଇନପାରେ । ଓଡ଼ିଆରେ ପ୍ରାକୃତିକ ସନ୍ଧିର ଯେଉଁ କେତୋଟି ଦୃଷ୍ଟାନ୍ତ ମିଳେ, ସେହି କେତୋଟିକି ଘେନି କୌଣସି କଥା ଆଲୋଚନା କରାଯାଇ ନପାରେ । କେବଳ ସେମାନଙ୍କ ମଧ୍ୟରୁ ଏଠାରେ କେତୋଟିର ଉଦାହରଣ ଦିଆଯାଇଅଛି; ଯଥା - ମନ + ଅନ୍ତର = ମନାନ୍ତର, ପାଞ୍ଚ + ଜଣ = ପାଁଜଣ, ଭାଇ + ନନା = ଭାଇନା, ପାଞ୍ଚ + ଟି = ପାଞ୍ଚୋଟି, କେତେ + ଟି = କେତୋଟି ।



# ବର୍ଣ୍ଣ ଓ ଅକ୍ଷର

## ଗିରିଜା ଶଙ୍କର ରାୟ

**ଧ୍ୱନି ଓ ଅକ୍ଷର :** କୌଣସି ଶବ୍ଦକୁ ବିଶ୍ଲେଷଣ କଲେ ଆମ୍ଭେମାନେ ସର୍ବାଦୌ ତହିଁରେ କେତେକ ଧ୍ୱନିଗତ ଓ ରୂପଗତ ପୃଥକ୍ ସତ୍ତାମାନଙ୍କର ସମାବେଶ ଓ ବିନ୍ୟାସ ବିଷୟରେ ଅବହିତ ହେଉଁ। ଏହି ମୂଳବସ୍ତୁମାନଙ୍କୁ 'ବର୍ଣ୍ଣ' ଆଖ୍ୟା ଦିଆଯାଇଥାଏ। 'ରାମ' ଏହି ଶବ୍ଦଟିରେ ର୍+ଆ+ମ୍+ଅ ଏହି ଚାରିଗୋଟି ବର୍ଣ୍ଣର ସମାବେଶ ଘଟିଅଛି। 'ର୍' ର ଗୋଟିଏ ଧ୍ୱନିସୂଚକ ଉଚ୍ଚାରଣ ଅଛି ଓ ତାହାର ଗୋଟିଏ ଲିଖନ ପଦ୍ଧତି ବା ଧ୍ୱନିର ସାଙ୍କେତିକ ରୂପ ମଧ୍ୟ ଅଛି। ଏହି ସାଙ୍କେତିକ ରୂପକୁ ସାଧାରଣତଃ ଅକ୍ଷର ବୋଲାଯାଏ ଏବଂ ଉଚ୍ଚାରଣ ଓ ଅକ୍ଷରର ସାମଞ୍ଜସ୍ୟ ସୂଚକ ସଂକେତକୁ ବର୍ଣ୍ଣ ବୋଲାଯାଇଥାଏ। ପ୍ରଥମେ ଧ୍ୱନିର ଅନୁକରଣ କରାଯାଇ ପରେ ଅକ୍ଷର ସୃଷ୍ଟି ହେଲା, କିମ୍ବା ପରିଚିତ ବସ୍ତୁ ବା ପ୍ରାଣୀମାନଙ୍କ ରୂପର ଅନୁକରଣ କରାଯାଇ ଶବ୍ଦ ସୃଷ୍ଟିହେଲା, ସେ ବିଷୟରେ ବର୍ତ୍ତମାନ ମଧ୍ୟ କେତେକ ସ୍ଥଳରେ ସନ୍ଦେହର ଅବକାଶ ଅଛି। ମାତ୍ର ଅଧିକାଂଶ ଭାଷାରେ ପ୍ରଥମରେ ଉଚ୍ଚାରଣ ବା ଧ୍ୱନିମୂଳକ ଶବ୍ଦମାନଙ୍କର ବ୍ୟବହାର ପ୍ରଚଳିତ ହୋଇ ଅନେକ କାଳ ପରେ ରୂପମୂଳକ ଅକ୍ଷରମାଳାର ପ୍ରଚଳନ ହୋଇଥିଲା। ଅର୍ଥାତ୍ ଅନେକ ଭାଷାରେ 'ରାମ' ଶବ୍ଦଟିର ବ୍ୟବହାର ପ୍ରଥମରେ, ପରେ ତାହାର ଧ୍ୱନିମାନଙ୍କର ବିଶ୍ଲେଷଣ ଏବଂ ତାର ବହୁପରବର୍ତ୍ତୀ କାଳରେ ତାହାର ଅକ୍ଷରମାନଙ୍କର ଲିଖିତରୂପର ପ୍ରଚଳନ ହୋଇଥିଲା ବୋଲି ପଣ୍ଡିତମାନଙ୍କର ମତ। କେତେକ ଭାଷାରେ ଏ ପର୍ଯ୍ୟନ୍ତ ଲିଖିତ ରୂପ ବା ଲିପି ପ୍ରଚଳିତ ହୋଇନାହିଁ। 'ବର୍ଣ୍ଣ' ଏହି ଶବ୍ଦଟି ବର୍ତ୍ତମାନ ଗୋଟିଏ ବ୍ୟାକରଣଗତ ସଂକେତ, ଏହାର ଅର୍ଥ ଲିପି ଓ ଉଚ୍ଚାରଣ ଯୁକ୍ତ ଶବ୍ଦର ସାଙ୍କେତିକ ବିଶ୍ଳିଷ୍ଟ ସତ୍ତା। ଅର୍ଥାତ୍ 'ର' ବର୍ଣ୍ଣ ଗୋଟିଏ ଧ୍ୱନିକୁ ପ୍ରକାଶିତ କରେ ଓ ଏହାର ଗୋଟିଏ ଲିଖିତ ରୂପ ମଧ୍ୟ ଅଛି। ମାତ୍ର ପ୍ରାଚୀନ କାଳରେ ବର୍ଣ୍ଣକୁ ଏପରି ଅର୍ଥରେ ବ୍ୟବହାର କରାଯାଉନଥିଲା। ସମ୍ଭବତଃ ଶବ୍ଦମାନଙ୍କର ଲିଖନ ପଦ୍ଧତି ଯେତେବେଳେ ପ୍ରଚଳିତ ହେଲା ତେତେବେଳେ ପ୍ରଥମେ ସେମାନଙ୍କୁ ଚିତ୍ରିତ କରିବାର ପ୍ରକ୍ରିୟା ଉଦ୍ଭାବିତ ହୋଇଥିବ ଓ କାଠଫଳକ ବା ଅନ୍ୟ ସମଜାତୀୟ ପଦାର୍ଥରେ ଅଙ୍ଗାର ପ୍ରଭୃତି ଦ୍ୱାରା ରେଖାଙ୍କିତ କରିବାର ଚେଷ୍ଟା କରାଯାଇଥିବ ଓ ଏହି

ରେଖାଙ୍କନ ଚେଷ୍ଟା ଓ ଚିତ୍ରଣ ବିଦ୍ୟାରେ ବ୍ୟବହୃତ ରଙ୍ଗର ସମାବେଶ ହେତୁରୁ ଏମାନଙ୍କୁ 'ବର୍ଣ୍ଣ' ଆଖ୍ୟା ଦିଆଯାଇଥିବ। 'ଲିପି' ଶବ୍ଦ ମଧ୍ୟ ଏହିପରି କ୍ରମବିକାଶକୁ ସମର୍ଥିତ କରୁଅଛି। କ୍ରମଶଃ ହତିଆରର ବ୍ୟବହାର ସୁପ୍ରଚଳିତ ହେବାରୁ ଓ ଲିପିମାନଙ୍କର ସ୍ଥାୟିତ୍ୱ ଆବଶ୍ୟକ ହେବାରୁ ପ୍ରସ୍ତରଫଳକରେ ବା କାଷ୍ଠଗାତ୍ରରେ ଅଥବା ଅନ୍ୟ ଧାତବ ପଦାର୍ଥରେ ଲିପିମାନଙ୍କୁ ଉତ୍କୀର୍ଣ୍ଣ କରିବାର ଚେଷ୍ଟା କରାଯାଇଥିଲା। ଏପରି ଉତ୍କୀର୍ଣ୍ଣ ଲିପିର ସ୍ଥାୟିତ୍ୱକୁ ଅବଲମ୍ବନ କରି ଏମାନଙ୍କୁ ଅକ୍ଷର ବୋଲାଯାଉଥିଲା, ଅର୍ଥାତ୍ ମୂଳତଃ ବର୍ଣ୍ଣ ଓ ଅକ୍ଷର ଏକ ପଦାର୍ଥ-ଗୋଟିଏ ଧ୍ୱନିର ଚିତ୍ରିତ ରୂପ ଓ ଅନ୍ୟଟି ତାହାର ଉତ୍କୀର୍ଣ୍ଣ ରୂପ। ବର୍ଣ୍ଣର ଏହି ଅର୍ଥ କିନ୍ତୁ ବର୍ତ୍ତମାନ ଲୁପ୍ତହୋଇ ଏହା ବର୍ତ୍ତମାନ ଗୋଟିଏ ସାଙ୍କେତିକ ଶବ୍ଦ ରୂପରେ ବ୍ୟବହୃତ ହେଉଅଛି। ବର୍ତ୍ତମାନ ଆମ୍ଭମାନଙ୍କୁ ଏହି କାରଣରୁ ବର୍ଣ୍ଣର ଉଚ୍ଚାରଣ ଓ ବର୍ଣ୍ଣମାନଙ୍କର ସ୍ୱର ଓ ବ୍ୟଞ୍ଜନ ଅନୁସାରେ ବିଭାଗ ବିଷୟ ପାଠ କରିବାକୁ ହୋଇଥାଏ।

ବର୍ତ୍ତମାନ ଭାଷାରେ 'ବର୍ଣ୍ଣ'ର ଅର୍ଥ ଶବ୍ଦର ବିଶ୍ଳେଷିତ ମୂଳସତ୍ତା। ଉଚ୍ଚାରଣ ବର୍ଣ୍ଣର ଧ୍ୱନିଗତ ସତ୍ତା ଓ ଅକ୍ଷର ତାହାର 'ରୂପଗତ' ସତ୍ତା ପ୍ରକାଶ କରିଥାଏ। ପ୍ରତ୍ୟେକ ବର୍ଣ୍ଣର ଉଚ୍ଚାରଣ ଓ ଅକ୍ଷର ବା ଲିପି ଭାଷାରେ ବ୍ୟବହୃତ ହୋଇଥାଏ। ବର୍ଣ୍ଣ ଯେ ଗୋଟିଏ ସାଙ୍କେତିକ ବସ୍ତୁ ତାହା ଯଦି ସହଜରେ ପ୍ରମାଣିତ ହୋଇପାରେ, କାରଣ ଅନେକ ଭାଷାରେ ଏକ ଉଚ୍ଚାରଣ ଥିଲେ ହେଁ ଲିଖନ ପ୍ରଣାଳୀ ଏକ ନୁହେଁ ଓ ଓଡ଼ିଆରେ 'ଠ' ଲେଖିଲେ ଯେଉଁ ଧ୍ୱନି ନିର୍ଦ୍ଦିଷ୍ଟ ହୁଏ ଇଂରାଜୀରେ ସେହି ଧ୍ୱନି ନିର୍ଦ୍ଦେଶିତ ହୁଏ ନାହିଁ ଓ ଲିପିର ଆକୃତିଗତ ସମତା ଥିଲେ ହେଁ ଧ୍ୱନିଗତ ପାର୍ଥକ୍ୟ ସୁପରିସ୍ଫୁଟ। ନାନା ଭାଷାରେ, ନାନା ଐତିହାସିକ କାରଣରୁ ନାନା ପ୍ରକାର ବର୍ଣ୍ଣ ପ୍ରଚଳିତ ହୋଇଅଛି ଓ ସେମାନଙ୍କର ଉଚ୍ଚାରଣ ଓ ଲିଖନ ପ୍ରଣାଳୀରେ ମଧ୍ୟ ନାନା ପ୍ରକାର ବୈଷମ୍ୟ ଦେଖାଯାଉଅଛି ଓ ଅନେକ ଭାଷାର ଉତ୍ପତ୍ତି ଏକ ମୂଳ ଭାଷାରୁ ଅନୁସରଣ କରିବା ସମ୍ଭବପର ହେଲେହେଁ ସେମାନଙ୍କ ମଧ୍ୟରେ ଉଚ୍ଚାରଣଗତ ଓ ଲିପିଗତ ନାନା ପ୍ରକାର ପାର୍ଥକ୍ୟ ମନୁଷ୍ୟ ମନରେ ବିଭ୍ରମ ସୃଷ୍ଟି କରୁଅଛି।

## ଲିପି ବା ଅକ୍ଷର :

ଉପସ୍ଥିତ ଲୋକ ସହିତ କଥାବାର୍ତ୍ତା କରିବା ନିମନ୍ତେ ଧ୍ୱନିର ଅର୍ଥସୂଚକ ବ୍ୟବହାର ଅତି ପୁରାତନ କାଳରୁ ପ୍ରଚଳିତ ହୋଇଥିଲା, କିନ୍ତୁ ଭାଷାର ବ୍ୟବହାର କ୍ରମଶଃ ପ୍ରସାର ଲାଭ କରିବାରୁ ଓ ଦୂରସ୍ଥିତ ଲୋକମାନଙ୍କ ସହିତ ଭାବର ଆଦାନ ପ୍ରଦାନ ସହଜସାଧ୍ୟ କରିବା ନିମନ୍ତେ ଲିପି ବା ଅକ୍ଷରର ପ୍ରୟୋଜନ ଅନୁଭୂତ ହୋଇଥିଲା ଓ ବିଭିନ୍ନ ଦେଶରେ ବିଭିନ୍ନ ସମୟରେ ବିଭିନ୍ନ ଅକ୍ଷର ସୃଷ୍ଟି ହୋଇ ବର୍ଣ୍ଣମାନଙ୍କର ରୂପ ନିର୍ଦ୍ଦିଷ୍ଟ କରାଯାଇ

ଭାଷାରେ ଲିଖନ ପ୍ରଣାଳୀ ଉଦ୍ଭାବିତ ହୋଇଥିଲା। କେତେକ ଭାଷାରେ (ଯଥା ଇଜିପ୍ଟ ଦେଶରେ) ଲେଖା ଧ୍ୱନିର ପ୍ରାୟ ସମକାଳୀନ, ଅନ୍ୟ ଅଧିକାଂଶର ଭାଷାରେ ଧ୍ୱନି ଯୁକ୍ତ ଶବ୍ଦ ବ୍ୟବହାରର ବହୁ ପରବର୍ତ୍ତୀ କାଳରେ ଅକ୍ଷର ବା ଲିପିର ପ୍ରଚଳନ ହୋଇଥିଲା। ପୁଣି ଆଧୁନିକ କେତେକ ଅନୁନ୍ନତ ଭାଷାରେ ଲିପିର ପ୍ରଚଳନ ଆଦୌ ନାହିଁ। ଲିପି ନ ଥାଇ କେବଳ ଧ୍ୱନି ସମଷ୍ଟିଯୁକ୍ତ ଭାଷାର ପ୍ରଚଳନ ବର୍ତ୍ତମାନ ମଧ୍ୟ ଦେଖାଗଲେ ହେଁ, ଧ୍ୱନି ନ ଥାଇ କେବଳ ଲିପିଗତ ଭାଷାର ପ୍ରଚଳନ ଆଦୌ ନାହିଁ। ଏଥିରୁ ସ୍ପଷ୍ଟ ଅନୁମାନ କରାଯାଇ ପାରେ ଯେ, ଭାଷାରେ ଧ୍ୱନି ହିଁ ମୂଳ ପଦାର୍ଥ, ଲିପି ଧ୍ୱନିର ଦ୍ୟୋତକ ମାତ୍ର। ଏଣୁ ଭାଷାର ଆରମ୍ଭ ଧ୍ୱନିରୁ ଓ ଲିପି କେବଳ ଧ୍ୱନିମାନଙ୍କର ରୂପକୁ ପ୍ରକାଶ କରିବା ନିମନ୍ତେ ପରବର୍ତ୍ତୀ କାଳର ବ୍ୟବହୃତ ରୀତି ମାତ୍ର। ଆଜିକାଲି ଯେତେ ଭାଷା ସାଧାରଣତଃ ବ୍ୟବହୃତ ହୁଏ, ସେମାନଙ୍କର ଲିପିଗତ ବୈଷମ୍ୟ ଧ୍ୱନିଗତ ବୈଷମ୍ୟ ଅପେକ୍ଷା ଅନେକ ଅଧିକ ଓ ସେହି କାରଣରୁ ଦୁଇଗୋଟି ଭାଷା ମଧ୍ୟରେ ନାନା ପ୍ରକାର ସାମଞ୍ଜସ୍ୟ ଥିଲେ ହେଁ ଲିପିର ଅନୈକ୍ୟ ହେତୁରୁ ଭାଷା ଶିକ୍ଷାକରିବା ଅସମ୍ଭବ ହୋଇପଡ଼େ। ଯଦି ପୃଥିବୀରେ ଏକପ୍ରକାର ଲିପି ପ୍ରଚଳିତ ଥାନ୍ତା, ତେବେ ବିଭିନ୍ନ ଭାଷା ଆୟତ୍ତ କରିବା ସହଜ ସାଧ୍ୟ ହୋଇଥାନ୍ତା, କିନ୍ତୁ ପ୍ରତ୍ୟେକ ଭାଷାଭାଷୀ ଜାତି ନିଜର ଲିପି ବିଷୟରେ ସଜାଗ, ଏଣୁ ଏକ ଭାଷାର ପ୍ରବର୍ତ୍ତନ ଅସମ୍ଭବ।

ଅବଶ୍ୟ କୌଣସି ଭାଷାର ଲିପି ଆଦର୍ଶସ୍ଥାନୀୟ ନୁହେଁ। ଲିପିର କାର୍ଯ୍ୟ ଧ୍ୱନିର ପାର୍ଥକ୍ୟକୁ ରୂପ ଦେବା, ଏଣୁ ପ୍ରତ୍ୟେକ ବର୍ଣ୍ଣର ପୃଥକ୍ ଧ୍ୱନିକୁ ସୁସ୍ପଷ୍ଟ ଭାବରେ ପ୍ରକାଶ କରିବା ନିମନ୍ତେ ପୃଥକ୍ ଅକ୍ଷରର ପ୍ରୟୋଜନ ହୋଇଥାଏ। ମାତ୍ର ଓଡ଼ିଆରେ ଜ ଓ ଯ ର ଉଚ୍ଚାରଣ ଏକ ହେଲେହେଁ ଦୁଇଗୋଟି ଅକ୍ଷର ବ୍ୟବହୃତ ହୋଇଅଛି ଓ 'ଶ' 'ଷ' 'ସ' ମଧ୍ୟରେ ଧ୍ୱନିଗତ କୌଣସି ପାର୍ଥକ୍ୟ ଭାଷାର ବ୍ୟବହାର ସମୟରେ ଅନୁଭୂତ ନ ହେଉଥିଲେ ହେଁ ଏହି ତିନି ଅକ୍ଷର ଭାଷାରେ ସୁପ୍ରଚଳିତ। ବଙ୍ଗଳା ଭାଷାରେ ଏହିପରି ନ ଓ ଣ ର ଲିପିଗତ ପାର୍ଥକ୍ୟ ଥିଲେ ହେଁ ଧ୍ୱନିଗତ ପାର୍ଥକ୍ୟ ନାହିଁ ଓ ଇଂରାଜୀରେ J ଓ G, C ଓ K ପ୍ରଭୃତି ବର୍ଣ୍ଣମାନଙ୍କ ଉଚ୍ଚାରଣ ଅନେକ କ୍ଷେତ୍ରରେ ଏକାପରି ହେଲେହେଁ ଦୁଇଗୋଟି ପୃଥକ୍ ଅକ୍ଷର ବ୍ୟବହୃତ ହୋଇଥାଏ। ବୈଜ୍ଞାନିକ ଭାବରେ 'g'ର ଗ ଓ ଜ ଦୁଇ ପ୍ରକାର ଧ୍ୱନି ସୂଚନା କରିବା ଅସମ୍ଭବ ଓ C ଅକ୍ଷର କ ଓ ସ ଉଭୟ ଧ୍ୱନିପ୍ରକାଶ କରିବା ନିମନ୍ତେ ସ୍ଥାନ ବିଶେଷରେ ବ୍ୟବହୃତ ହେଉଥିବାରୁ ଭାଷା ବ୍ୟବହାରରେ ବିଶୃଙ୍ଖଳା ଅବଶ୍ୟମ୍ଭାବୀ।

ଆଦର୍ଶ ଲିପିର କେତେଗୁଡ଼ିଏ ଗୁଣ ଥିବା ଆବଶ୍ୟକ। ପ୍ରତ୍ୟେକ ଲିପି ଗୋଟିଏ ନିର୍ଦ୍ଦିଷ୍ଟ ଓ ସୁସ୍ପଷ୍ଟ ଧ୍ୱନି ପ୍ରକାଶ କରୁଥିବ, ପ୍ରତ୍ୟେକ ଲିପିର ଗୋଟିଏ ସୁସ୍ପଷ୍ଟ ଓ ଅନ୍ୟ

ଲିପିମାନଙ୍କଠାରୁ ସଂପୂର୍ଣ୍ଣ ଭିନ୍ନ ରୂପରେଖ ଥିବ, ପ୍ରତ୍ୟେକ ଲିପି ଦ୍ରୁତଲିଖନର ଉପଯୋଗୀ ଥିବ ଓ ଲେଖା ଛାପା ହେବା ସମୟରେ ଅଧିକ ପ୍ରୟାସ ବା ଯତ୍ନ ଆବଶ୍ୟକ କରୁନଥିବ। ଏହି ଦୃଷ୍ଟିରୁ ଦେଖିଲେ ପୃଥିବୀରେ କୌଣସି ଲିପି ଆଦର୍ଶସ୍ଥାନୀୟ ନୁହେଁ। ଆଜିକାଲି ରୋମକ ଲିପି (a b c d ପ୍ରଭୃତି)ର ବ୍ୟବହାର ଅନେକ ଭାଷାତତ୍ତ୍ୱବିତ୍ ଅନୁମୋଦନ କରୁଅଛନ୍ତି, ସେମାନଙ୍କ ମତରେ ଏହି ଲିପିରେ ଯୁକ୍ତାକ୍ଷର ନଥିବାରୁ, ଅକ୍ଷରଗୁଡ଼ିକ ଲେଖିବା ସମୟରେ ପରସ୍ପର ସହିତ ସଂଲଗ୍ନ କରିବାର ସୁବିଧା ଥିବାରୁ, ଅକ୍ଷରର ସଂଖ୍ୟା ଅଳ୍ପ ଥିବାରୁ ଓ ମାତ୍ରା ଆଦିର ବ୍ୟବହାର ନ ଥିବାରୁ ଏହି ଅକ୍ଷର କଳଲେଖା, ଦ୍ରୁତଲେଖା, ଛାପା ପ୍ରଭୃତିର ବିଶେଷ ଉପଯୋଗୀ ଓ ସେମାନଙ୍କର ମତରେ ଭାଷା ପୃଥକ୍ ହେଲେ ହେଁ ସବୁ ଭାଷା ରୋମକ ଲିପିରେ ଲେଖାହେବା ଉଚିତ୍। ଏହି ମତବାଦର ବଶବର୍ତ୍ତୀ ହୋଇ ତୁରସ୍କ ଦେଶରେ ରୋମକ ଲିପି ପ୍ରବର୍ତ୍ତିତ ହୋଇଅଛି ଓ ଚୀନ ମହାଦେଶରେ ମଧ ଏହି ଲିପିର ବ୍ୟବହାର ବିଷୟରେ ଅନୁକୂଳ ଆନ୍ଦୋଳନ ଦେଖାଦେଇଅଛି। ଜର୍ମାନ୍ ଋଷୀୟ ପ୍ରଭୃତି ଭାଷାରେ ଏହି ଲିପି ଜାତୀୟ ଲିପିର ବିକଳ୍ପରେ ବ୍ୟବହୃତ ହୋଇଅଛି। ଅବଶ୍ୟ ଓଡ଼ିଆ ଲିପି ଆଲୋଚନା କଲେ ଆମ୍ଭେମାନେ ଦେଖୁଁ ଯେ, ଓଡ଼ିଆରେ ଅକ୍ଷରମାନଙ୍କର ସଂଖ୍ୟା ଅତ୍ୟଧିକ ପୁଣି ସଂଯୁକ୍ତ ବର୍ଣ୍ଣ, ଫଳା ବା ମାତ୍ରାର ବ୍ୟବହାର ଦ୍ୱାରା ଲିପିଗୁଡ଼ିକ ନାନାଭାବରେ ଜଟିଳ ହୋଇଅଛି ଓ ଛାପା ସମୟରେ ବା ଦ୍ରୁତଲିଖନରେ ନାନାପ୍ରକାର ଅସୁବିଧା ଅନୁଭୂତ ହେଉଅଛି। ଏହି ଲିପିର ଆଉ ଗୋଟିଏ ଦୋଷ ଏହି ଯେ ଏଥିରେ ଲିପିର ମୂଳଭାଗ ଅପେକ୍ଷା ତାହାର ମଣ୍ଡଳୀ ବା ବେଷ୍ଟନୀ ଆକାରରେ ବଡ଼ ଓ ଏହି କାରଣରୁ ଭ ଓ ଉ, ଡ ଓ ଢ , ଧ ଓ ଥ, ପ ଓ ଯ ପ୍ରଭୃତି ଲିପିମାନଙ୍କ ମଧରେ ପାର୍ଥକ୍ୟ ଦ୍ରୁତଲିଖନ ସମୟରେ ଗୌଣ ହୋଇପଡ଼େ ଏବଂ ଫ ଲେଖିଲେ ପ ସହିତ ଅନୁସ୍ୱାର ଯୁକ୍ତ ହୋଇଅଛି, କିମ୍ବା ପ ର ମହାପ୍ରାଣ ବର୍ଣ୍ଣ ଫ (Ph) ଲିଖିତ ହୋଇଅଛି, ଏ ବିଷୟରେ ଘୋର ସନ୍ଦେହ ଜାତ ହୋଇଥାଏ। କିନ୍ତୁ ଏ ଲିପିର ସୁବିଧା ମଧରେ ଏଥିରେ ପ୍ରତ୍ୟେକ ଅକ୍ଷର ଗୋଟିଏ ଧ୍ୱନିସତ୍ତା ପ୍ରକାଶ କରେ ଅର୍ଥାତ୍ 'ଥି' ଏହି ଧ୍ୱନିକୁ ଗୋଟିଏ ସତ୍ତା ବୋଲି ଗଣନା କରାଯାଇ 'ଥ' ସହିତ 'ଇ'ର ମାତ୍ରା ଯୁକ୍ତ କରାଯାଇ ଗୋଟିଏ ଲିପି ବୋଲି କଳ୍ପିତ ହୋଇଥାଏ। ଇଂରାଜୀରେ 'ଥି' ଗୋଟିଏ syllable ଅଥବା ଧ୍ୱନି ସମଷ୍ଟି। ଏହାକୁ ପ୍ରକାଶ କରିବା ନିମନ୍ତେ T.H.I. ଏହି ତିନିଗୋଟି ପୃଥକ ବର୍ଣ୍ଣର ପ୍ରୟୋଜନ ହୋଇଥାଏ। ଓଡ଼ିଆରେ ବାସ୍ତବିକ ଯାହା ଗୋଟିଏ ଅକ୍ଷର ଇଂରାଜୀରେ ତାହା ଗୋଟିଏ syllable ବା ଅକ୍ଷର ସମଷ୍ଟି। ଏଣୁ ରୋମକ ଲିପି ବ୍ୟବହାରରେ ଅଧିକ ଅକ୍ଷର ଲେଖିବାର

ଆବଶ୍ୟକ ହୋଇଥାଏ, କିନ୍ତୁ ରୋମକ ଲିପିରେ ଅକ୍ଷରଗୁଡ଼ିକକୁ ପରସ୍ପର ବିଚ୍ଛିନ୍ନ ଭାବରେ ଲେଖିବାର ରୀତି ପ୍ରଚଳିତ ଥିବାରୁ ତାହା ଅପେକ୍ଷାକୃତ ଦ୍ରୁତଭାବରେ ଲେଖାଯାଇପାରେ। ବାସ୍ତବରେ ବର୍ଣ୍ଣମାନଙ୍କର ଧ୍ୱନି ଯେପରି ବୈଜ୍ଞାନିକ ଭିତ୍ତି ଉପରେ ପ୍ରତିଷ୍ଠିତ ନୁହେଁ, ସେମାନଙ୍କର ରୂପ ମଧ୍ୟ କୌଣସି ବୈଜ୍ଞାନିକ ଭିତ୍ତି ଉପରେ ପ୍ରତିଷ୍ଠିତ ନୁହେଁ।

ମାତ୍ର ବର୍ଣ୍ଣମାନଙ୍କର ଧ୍ୱନି ଓ ରୂପର ବୈଜ୍ଞାନିକ କାରଣ ଓ ଇତିହାସ ଅଛି। ଏହି ଇତିହାସକୁ ଅନୁଶୀଳନ କଲେ ଆମ୍ଭେମାନେ ନାନା ତଥ୍ୟ ଜାଣିପାରୁଁ। ଭାରତରେ ଅନୁନ୍ନତ ଜାତିମାନଙ୍କ ମଧ୍ୟରେ ଘାସ ବା ସୂତାର ଗଣ୍ଠିଦ୍ୱାରା ମିଳିତ ହେବାର ଇଙ୍ଗିତ ଦିଆଯାଏ, ବର୍ତ୍ତମାନ ପର୍ଯ୍ୟନ୍ତ ଏହି ରୀତି ପ୍ରତି ଭାଷାର 'ଗଣ୍ଠିପେରାଇବା' ପଦର ବ୍ୟବହାର ଦ୍ୱାରା ଇଙ୍ଗିତ କରାଯାଇଅଛି। ପ୍ରାଚୀନ ଚୀନମାନଙ୍କ ମଧ୍ୟରେ ଓ ଦକ୍ଷିଣ ଆମେରିକାର ପେରୁଦେଶବାସୀ ଇନ୍‌କାମାନଙ୍କ (Inca) ମଧ୍ୟରେ ଏହି ରୀତି ପ୍ରଚଳିତ ଥିଲା। ଗ୍ରନ୍ଥିର ବନ୍ଧନଭଙ୍ଗୀ, ସୂତାର ରଙ୍ଗ, ଗ୍ରନ୍ଥିର ସଂଖ୍ୟା ପ୍ରଭୃତି ଦ୍ୱାରା ନାନା ବିଭିନ୍ନ ଭାବ ପ୍ରକାଶ କରାଯାଇଥିଲା। ଏହି 'ଗ୍ରନ୍ଥିଲେଖା'ରେ ଜଡ଼ ପଦାର୍ଥର ସମନ୍ୱୟ ଦ୍ୱାରା ଭାଷା ପ୍ରକାଶର ଉଦାହରଣ ଆମ୍ଭେମାନେ ପାଇଥାଉଁ ଓ ବାସ୍ତବରେ ଏଗୁଡ଼ିକ ଲିପି ନ ହେଲେ ହେଁ ବା ସେଥିରୁ ଲିପିର ଉଦ୍ଭବ ସମ୍ଭବପର ନ ହେଲେହେଁ, ଭାବର ଆଦାନ ପ୍ରଦାନ ବିଷୟକ କୃତ୍ରିମତା ଏହି ରୀତିରେ ଅନୁସୃତ ହୋଇଅଛି। ସେହି କୃତ୍ରିମତା ଲିପିର ବ୍ୟବହାରରେ ସୁସ୍ପଷ୍ଟ। ବାସ୍ତବିକ ପ୍ରତ୍ୟେକ ଲିପି କୌଣସି ଧ୍ୱନିର ସାଙ୍କେତିକ ଚିହ୍ନ ଏବଂ ରୂପଦ୍ୱାରା ଧ୍ୱନି ନିର୍ଦ୍ଦେଶ କରିବା ଏହି କୃତ୍ରିମ ସଙ୍କେତମାନଙ୍କର ଉଦ୍ଦେଶ୍ୟ।

ଅକ୍ଷର ବା ଲିପିମାଳାର ସୃଷ୍ଟି ଅତ୍ୟନ୍ତ ରହସ୍ୟମୟ ଓ ସଂସ୍କୃତ ଅକ୍ଷରମାନଙ୍କର ଇତିହାସ ଏପର୍ଯ୍ୟନ୍ତ ସମ୍ୟକ ଭାବରେ ଆଲୋଚିତ ହୋଇନାହିଁ। ଅତି ପୁରାତନ କାଳରେ ଯେପରି ପାରିପାର୍ଶ୍ୱିକ ନାନା ପ୍ରାକୃତିକ ଧ୍ୱନିକୁ ଅବଲମ୍ବନ କରି ଅର୍ଥଦ୍ୟୋତକ ଶବ୍ଦ ଗଠିତ ହୋଇଥିଲା, ସେହିପରି ନିଜର ଆବେଷ୍ଟନୀ ମଧ୍ୟସ୍ଥ ପଦାର୍ଥମାନଙ୍କର ରୂପକୁ ଅନୁକରଣ କରି ଲିପି ଗଠିତ ହୋଇଥିବା ସମ୍ଭବ। ଆଦିମ ଯୁଗରେ ଚିତ୍ରଲେଖା ରୀତି ପ୍ରଚଳିତ ଥିଲା ଅର୍ଥାତ୍ ଇଜିପଟ ପ୍ରଭୃତି ଦେଶରେ ଚିତ୍ରାଙ୍କନଦ୍ୱାରା ଅନ୍ୟକୁ ନିଜର ମନୋଭାବ ଜ୍ଞାପିତ କରିବାର ରୀତି ଅନୁସୃତ ହୋଇଥିଲା। ନିଜର ବାସଗୃହ, ନିଜର ଅଙ୍ଗପ୍ରତ୍ୟଙ୍ଗ, ନିଜର ଗୃହପାଳିତ ପଶୁ, ସୂର୍ଯ୍ୟ, ଚନ୍ଦ୍ର, ନଦୀ, ପର୍ବତ ପ୍ରଭୃତି ପ୍ରାକୃତିକ ଦୃଶ୍ୟ ଇତ୍ୟାଦି ନାନା ପଦାର୍ଥର ଛବି ଅଙ୍କନ କରି ଦୂରସ୍ଥିତ ବ୍ୟକ୍ତିକୁ କୌଣସି ବିଷୟ ଜ୍ଞାପିତ କରାଯିବାର ରୀତି ପ୍ରଚଳିତ ହୋଇଥିଲା। ଆଦିମ ଅବସ୍ଥାରେ ପ୍ରତ୍ୟେକ ବସ୍ତୁକୁ ଯଥାଯଥ ଭାବରେ ଚିତ୍ରିତ

କରିବାର ପ୍ରୟାସ କରାଯାଉଥିଲା, କିନ୍ତୁ ପରେ ଦ୍ରୁତ ଅଙ୍କନ କରିବାର ପ୍ରୟାସରୁ ଓ ସମସ୍ତଙ୍କର ଅଙ୍କନ କରିବାର ଅପାରଗତା ହେତୁରୁ ଚିତ୍ରଗୁଡ଼ିକ ସଙ୍କେତରେ ପର୍ଯ୍ୟବସିତ ହୋଇଥିଲା । ପ୍ରଥମରେ ମନୁଷ୍ୟର ସମ୍ପୂର୍ଣ୍ଣ ଚିତ୍ର ଅଙ୍କନ କରିବାର ରୀତି ଥିଲା, ମାତ୍ର ପରେ କ୍ରମଶଃ ଅନ୍ୟାନ୍ୟ ଇତର ପ୍ରାଣୀମାନଙ୍କଠାରୁ ମନୁଷ୍ୟର ବିଭିନ୍ନତା ସୂଚକ 'ଦ୍ୱିପଦ' ଗୁଣକୁ ଆଶ୍ରୟ କରି λ ଏହି ଚିତ୍ର ସାଙ୍କେତିକ ଭାବରେ ମନୁଷ୍ୟ ଅର୍ଥରେ ବ୍ୟବହୃତ ହେବା ସମ୍ଭବପର । ଏହିପରି ମହିଷ ବା ଗାଈର ପୂର୍ଣ୍ଣ ଚିତ୍ର ପରିବର୍ତ୍ତରେ କେବଳ ଶୃଙ୍ଗଦ୍ୱୟ ସହିତ ତ୍ରିକୋଣାକୃତି ମୁଖ (∀), ଗୃହର ପୂର୍ଣ୍ଣ ଏବଂ ଚିତ୍ର ପରିବର୍ତ୍ତରେ କେଳବ ଘର ଚାଳର ଚିତ୍ର (W) ଅଙ୍କିତ ହେବା ସ୍ୱାଭାବିକ । ନାନା ଭାଷାର ଆଦିମ ଅବସ୍ଥାରେ ଏହିପରି ସାଙ୍କେତିକ ଚିତ୍ରର ଅଙ୍କନ ରୀତି ପ୍ରଚଳିତ ଥିଲା ବୋଲି ଧାରଣା କରାଯାଇପାରେ ।

ଇଜିପ୍ଟ ଦେଶର ଚିତ୍ରାଙ୍କନ ପଦ୍ଧତି ଓ ଚିତ୍ର ଲିପିର ଯେଉଁ ଉଦାହରଣମାନ ଆଜି ପର୍ଯ୍ୟନ୍ତ ବିଦ୍ୟମାନ ଅଛି, ସେଥିରୁ ଏହି ଚିତ୍ରମାନଙ୍କ ବିଷୟରେ ଆମ୍ଭେମାନେ କେତେକ ଜ୍ଞାନ ଲାଭ କରିପାରୁଁ ଓ ଏହି ଇଜିପ୍ଟ ଦେଶୀୟ ରୀତି କାଳକ୍ରମେ ନାନା ଦେଶୀୟ ଭାଷାର ଲିପିରେ ପରିଣତ ହୋଇଥିଲା ବୋଲି ଭାଷାତତ୍ତ୍ୱବିତ୍‌ମାନଙ୍କର ମତ । ଭାରତୀୟ ଦେବନାଗରୀ ଲିପିମାଳା ଯେ ଏହି ଚିତ୍ରାଙ୍କନରୀତିରୁ ଫିନିସୀୟମାନଙ୍କ ଦ୍ୱାରା ଭାରତରେ ପ୍ରଚଳିତ ହୋଇଥିଲା ଓ ସେମାନଙ୍କ ସହିତ ସଂସ୍ପର୍ଶରେ ଆସିଥିବା ଭାରତୀୟ ମନୀଷୀମାନଙ୍କ ଦ୍ୱାରା କଳ୍ପିତ ହୋଇଥିଲା, ସେଥିରେ ସନ୍ଦେହ ନାହିଁ । ମାତ୍ର ଠିକ୍ କେଉଁ ସମୟରେ ଲିପିମାନ ଏପରି ଭାବରେ ପ୍ରଚଳିତ ହେଲା, ସେ ବିଷୟରେ ନାନା ମତବାଦ ଦେଖାଯାଇଥାଏ ।

ଏହି ଚିତ୍ରଗୁଡ଼ିକ ସଙ୍କେତ ହେଉ ବା ପୂର୍ଣ୍ଣଚିତ୍ର ହେଉ, ତାହା ଗୋଟିଏ ସମ୍ପୂର୍ଣ୍ଣ ଭାବ ବା ଶବ୍ଦର ଦ୍ୟୋତକ ବୋଲି ମନେ କରାଯାଇ ପାରେ । ଅର୍ଥାତ୍ ଏଗୁଡ଼ିକ ଅକ୍ଷର ବା ବର୍ଣ୍ଣ ସହିତ ସମ୍ପୃକ୍ତ ନୁହନ୍ତି, ଭାବ ବା ବସ୍ତୁ ସହିତ ପ୍ରତ୍ୟକ୍ଷ ଭାବରେ ସମ୍ପୃକ୍ତ, ଯେପରି λ ଲେଖିଲେ 'ମ' କିମ୍ବା ସେହିପରି ଧ୍ୱନି ସଙ୍କେତକୁ ନ ବୁଝାଇ 'ମନୁଷ୍ୟ' ଏହି ଭାବବସ୍ତୁକୁ ବୁଝାଉଥିଲା । ମୂଳତଃ ପ୍ରତ୍ୟେକ ଚିତ୍ର ଗୋଟିଏ ସମ୍ପୂର୍ଣ୍ଣ ଅର୍ଥଦ୍ୟୋତକ ପଦ ଓ ତାହା କୌଣସି ବସ୍ତୁର ପ୍ରତିଛବି । ଏଣୁ ଏହି ରୀତି ଯଦି ଅନୁସୃତ ହୋଇଥାନ୍ତା, ତେବେ ପୃଥିବୀର ପ୍ରତ୍ୟେକ ଲୋକ ଅନ୍ୟ ଲୋକର ଭାବକୁ ବୁଝିପାରନ୍ତା । ଗାଈର ଗୋଟିଏ ଛବି ଆଙ୍କିଲେ ତାହା ପୃଥିବୀର ସମସ୍ତ ଲୋକ 'ଗାଈ' ବୋଲି ଧାରଣା କରିପାରିବେ ଓ ସେହି ଧାରଣା ସବୁଠାରେ ସମାନ ହେବ । କୌଣସି ଭାଷାରେ ଗାଈର ନିର୍ଦ୍ଦେଶକ ବିଶିଷ୍ଟ ଶବ୍ଦ

ନଥିଲେ ମଧ୍ୟ ସେହି ଭାଷାଭାଷୀ ବ୍ୟକ୍ତିମାନେ ନିର୍ଦ୍ଦେଶିତ ପ୍ରାଣୀ ବିଷୟରେ ଓ ସେହି ଧାରଣା ସବୁଠାରେ ସମାନ ହେବ। କୌଣସି ଭାଷାରେ ଗାଈର ନିର୍ଦ୍ଦେଶକ ବିଶିଷ୍ଟ ଶବ୍ଦ ନଥିଲେ ମଧ୍ୟ ସେହି ଭାଷାଭାଷୀ ବ୍ୟକ୍ତିମାନେ ନିର୍ଦ୍ଦେଶିତ ପ୍ରାଣୀବିଷୟରେ ଧାରଣା କରିପାରିବେ। ଏଣୁ ଚିତ୍ର ବା ଚିତ୍ରଲିପିକୁ ସାର୍ବଜନୀନ ଭାଷା ବୋଲାଯାଇ ପାରେ। ବର୍ତ୍ତମାନ ମଧ୍ୟ ବିଦେଶରେ ନିଜର ମନୋଭାବ ବ୍ୟକ୍ତ କରିବା ନିମନ୍ତେ ଲୋକେ ଚିତ୍ର ବା ଅଙ୍ଗବିଶେଷପର ଆଶ୍ରୟ ନେଇଥାନ୍ତି। କ୍ରମଶଃ ଚିତ୍ରଗୁଡ଼ିକ ସାଙ୍କେତିକ ରୂପରେ ପରିଣତ ହେଲା। ଆସ୍ତେ ଆସ୍ତେ ବସ୍ତୁ ନିରପେକ୍ଷ ଭାବକୁ ପ୍ରକାଶ କରିବା ନିମନ୍ତେ ନାନା ପ୍ରକାର ଚିତ୍ରସଂକେତ ପ୍ରଚଳିତ ହେଲା। କ୍ରମଶଃ ଧ୍ୱନିକୁ ବିଶ୍ଳିଷ୍ଟ କରି ବର୍ଣ୍ଣର ଉଦ୍ଭାବନା ରୀତିରେ ଚିତ୍ରକୁ ବିଶ୍ଳିଷ୍ଟ କରି ଧ୍ୱନି ସହିତ ସମ୍ପୃକ୍ତ କରିବାର ରୀତି ପ୍ରଚଳିତ ହେଲା ଓ ଏହି କାରଣରୁ ବିଭିନ୍ନ ଭାଷାରେ ବିଭିନ୍ନ ଲିପିର ପ୍ରଚଳନ କରାଯାଇ ଥିଲା। ଚୀନ ଭାଷାରେ ଏହିପରି ପାଞ୍ଚଶତ ଗୋଟି ବିଭିନ୍ନ ଲିପି ପ୍ରଚଳିତ ଓ ପ୍ରତ୍ୟେକ ଲିପି ଗୋଟିଏ ପୂର୍ଣ୍ଣ ଧ୍ୱନି ସହିତ ସମ୍ପୃକ୍ତ କରିବାର ରୀତି ପ୍ରଚଳିତ ହେଲା ଓ ଏହି କାରଣରୁ ବିଭିନ୍ନ ଭାଷାରେ ବିଭିନ୍ନ ଲିପିର ପ୍ରଚଳନ କରାଯାଇଥିଲା। ଚୀନ ଭାଷାରେ ଏହିପରି ପାଞ୍ଚଶତ ଗୋଟି ବିଭିନ୍ନ ଲିପି ପ୍ରଚଳିତ ଓ ପ୍ରତ୍ୟେକ ଲିପି ଗୋଟିଏ ପୂର୍ଣ୍ଣ ଧ୍ୱନି ବା ଧ୍ୱନି ସମଷ୍ଟିର ସୂଚକ। ଇଂରାଜୀ ଲିପିମାନଙ୍କୁ ବିଶ୍ଲେଷଣ କରି ସେମାନଙ୍କର ଇତିହାସ ନିର୍ଦ୍ଦେଶ କରାଯାଇଅଛି ଓ ଏଥିରୁ ଆମ୍ଭେମାନେ ନାନା ବର୍ଣ୍ଣର ଲିପିରୂପର ଉଦ୍ଭବ ଓ ପରିଣତି ବିଷୟରେ ନାନା କୌତୂହଳୋଦ୍ଦୀପକ ତଥ୍ୟ ପାଇଥାଉଁ। ଇଂରାଜୀ A ଅକ୍ଷରଟି ପୂର୍ବୋକ୍ତ ମହିଷ ବା ଗାଈ ସୂଚକ ଚିତ୍ରଲେଖାରୁ ଉଦ୍ଭୁତ। ଏହି ଚିତ୍ରଦ୍ୱାରା ଗାଈ ସୂଚିତ ହେଉଥିଲା। ଗାଈର ପୂର୍ବନାମ ଫିନିସୀୟ ଦେଶରେ Aleph ଏହି ∀ ଚିତ୍ର ପରିବର୍ତ୍ତିତ ହୋଇ କ୍ରମଶଃ Aରେ ପରିଣତ ହେଲା ଓ Alephର ପ୍ରଥମ ଧ୍ୱନି 'ଆ'ର ଦ୍ୟୋତକ ରୂପରେ ବ୍ୟବହୃତ ହେଲା। ଏହିପରି K ଅକ୍ଷରଟି ☐ ହାତର ପ୍ରତିଛବିରୁ ଗୃହୀତ, ଏହି ଛବିର ଆଦିମ ଧ୍ୱନିରୂପ କାଫ, ବର୍ତ୍ତମାନ କେତେକ ଭାଷାରେ 'କାଫ' ହାତ ଅର୍ଥରେ ପ୍ରଚଳିତ ଓ ଏହି ଧ୍ୱନିର K ଅକ୍ଷର 'କ' ଧ୍ୱନି ସହିତ ସଂଶ୍ଳିଷ୍ଟ ହୋଇ ବର୍ତ୍ତମାନ ବ୍ୟବହୃତ ହେଉଛି। 'C' ଅକ୍ଷରଟି ଏହିପରି ଶୋଇଥିବା ଓଟର ଚିତ୍ରର ସାଙ୍କେତିକ ପରିଣତି, M ଅକ୍ଷର ଜଳତରଙ୍ଗର ଅନୁକୃତି, R ଅକ୍ଷର ମସ୍ତକର ପାର୍ଶ୍ୱଦେଶ ଚିତ୍ରରୁ ଉତ୍ପନ୍ନ, D ଅକ୍ଷରଟି ତମ୍ବୁର ତ୍ରିକୋଣାକୃତି ଦ୍ୱାରଦେଶ (△)ର ଅନୁକୃତିରୁ ଜାତ । ଏହିପରି ପ୍ରତ୍ୟେକ ଇଂରାଜୀ ଅକ୍ଷରର ଉତ୍ପତ୍ତି ରହସ୍ୟ, କ୍ରମବିକାଶ ଓ ପରିଣତି ସମ୍ବନ୍ଧରେ ଆମ୍ଭମାନଙ୍କର ପୂର୍ଣ୍ଣଜ୍ଞାନ ଭାଷାତତ୍ତ୍ୱବିଦ୍‌ମାନଙ୍କର ଅକ୍ଳାନ୍ତ ପରିଶ୍ରମରୁ ସମ୍ଭବପର ହୋଇଅଛି। ଗୋଟିଏ ଗୋଟିଏ ଅକ୍ଷରର ପୂର୍ଣ୍ଣ ପରିଣତି ପଛରେ ସହସ୍ରସହସ୍ର ବର୍ଷର

ଇତିହାସ ନିହିତ। ଏହି ଇତିହାସ ଅନୁଶୀଳନ କରିବା ଭାଷାତତ୍ତ୍ୱ ଜିଜ୍ଞାସୁମାନଙ୍କର ଅବଶ୍ୟ କର୍ତ୍ତବ୍ୟ।

## ଓଡ଼ିଆ ଲିପିର ସୃଷ୍ଟି :

ଆମ୍ଭମାନଙ୍କର ଓଡ଼ିଆଲିପି ସଂସ୍କୃତରେ ବ୍ୟବହୃତ ଲିପିରୁ ଓ ମୂଳତଃ ବ୍ରାହ୍ମୀ ଲିପିରୁ ଜାତ ହୋଇଅଛି। ଏହି ବ୍ରାହ୍ମୀ ଅକ୍ଷର ମଧ୍ୟ ଚିତ୍ରଲେଖାରୁ ଉଦ୍ଭୂତ ହୋଇଅଛି। ପ୍ରାଚୀନ ତାମ୍ରଲିପି ଓ ପ୍ରସ୍ତର ଗାତ୍ରରେ ଉତ୍କୀର୍ଣ୍ଣ ଲିପିମାନଙ୍କର ଅନୁଶୀଳନ କଲେ ଆମ୍ଭେମାନେ ଏହି ଚିତ୍ରଲେଖାର କିଞ୍ଚିତ୍ ପରିଚୟ ପାଇଥାଉଁ, ମାତ୍ର ତାହା ଅତି ସାମାନ୍ୟ। ବ୍ରାହ୍ମୀଲିପି କେଉଁ ସମୟରେ ଉଦ୍ଭାବିତ ହୋଇଥିଲା ଏବଂ ଚିତ୍ରରୁ ସାଙ୍କେତିକ ଅକ୍ଷରରେ ପରିଣତ ହୋଇ କିପରି ଭାବରେ କ୍ରମବିକାଶ ବା ବିବର୍ତ୍ତନ ମଧ୍ୟ ଦେଇ ବର୍ତ୍ତମାନ ଲିପିମାନଙ୍କରେ ପର୍ଯ୍ୟବସିତ ହୋଇଅଛି, ସେହିସବୁ ପୂର୍ଣ୍ଣ ବିବରଣ ପାଇବା ବର୍ତ୍ତମାନ ସମ୍ଭବପର ନୁହେଁ। ମହାମହୋପାଧ୍ୟାୟ ଶାମଯାସ୍ତ୍ରୀଙ୍କ ମତରେ ଦେବତା ମାନଙ୍କର ପୂଜା ପ୍ରଭୃତିରେ ବ୍ୟବହୃତ ହେଉଥିବା ନାନା ପ୍ରକାର ଉପକରଣକୁ ଅନୁକରଣ କରି ପୂର୍ବେ ବ୍ରାହ୍ମୀଲିପିର ବିକାଶ ସାଧିତ ହୋଇଥିଲା। ପୁଣି କେତେକ ଭାଷାତତ୍ତ୍ୱବିତ୍ ପଣ୍ଡିତଙ୍କ ମତରେ ମୂଳ ଫିନିସୀୟ ଲିପିରୁ ବ୍ରାହ୍ମୀଲିପି ଓ ଜଗତର ପ୍ରାୟ ଅନ୍ୟାନ୍ୟ ସମସ୍ତ ଲିପିର ଉଦ୍ଭବ ହୋଇଅଛି। ଇଉରୋପୀୟ ଭାଷାତତ୍ତ୍ୱବିତ୍‌ମାନଙ୍କ ମତରେ ଇଜିପ୍ଟଦେଶୀୟ ଚିତ୍ରଲେଖା ପଦ୍ଧତିରୁ ଏକ ଦିଗରେ ଫିନିସୀୟ ଲିପି ଓ ତହିଁରୁ ଗ୍ରୀକ୍ ଲାଟିନ୍ ପ୍ରଭୃତିରେ ବ୍ୟବହୃତ ରୋମକ ଲିପିମାଳା ଓ ଅନ୍ୟ ଦିଗରେ ଆର୍ମାନୀୟ ଲିପି ଓ ତହିଁରୁ ହିବ୍ରୁ, ପାରସିକ, ଭାରତୀୟ ବ୍ରାହ୍ମୀ ବା ଦେବନାଗରୀ ଲିପି ଓ ଚୀନ ଦେଶରେ ବ୍ୟବହୃତ ମୋଙ୍ଗଳ ଓ ମାନ୍‌ଚୁ ଲିପିମାନ ଉଦ୍ଭୂତ ହୋଇଅଛି। ଫିନସୀୟ ଆର୍ମାନୀୟ ଲିପି ମଧ୍ୟରେ ପ୍ରଧାନ ପାର୍ଥକ୍ୟ ଏହି ଯେ ଫିନିସୀୟ ଲିପିମାନଙ୍କରେ ସ୍ୱରବର୍ଣ୍ଣର ମାତ୍ରା ଚିହ୍ନ (ା, ି, ୁ ପ୍ରଭୃତି) ବ୍ୟବହୃତ ହୁଏ ନାହିଁ, କିନ୍ତୁ ପ୍ରାଚ୍ୟ ଭାଷାମାନଙ୍କରେ ଆର୍ମାନିୟ ଭାଷାକୁ ଅନୁସରଣ କରି ମାତ୍ରା ଚିହ୍ନ ମାନ ବ୍ୟବହୃତ ହୁଏ। ପୁଣି ସଂସ୍କୃତରେ ଯେପରି ମାତ୍ରା ଚିହ୍ନ ବ୍ୟବହୃତ ହୁଏ, ଜାପାନୀ ଭାଷାରେ ମଧ୍ୟ ସେହିପରି ମାତ୍ରା ଚିହ୍ନର ବ୍ୟବହାର ସୁପ୍ରଚଳିତ। ଏହି ଭାଷାର ଲିପି ମୂଳତଃ ଚୀନ ଲିପିମାଳାର ଅନୁକରଣରେ ରଚିତ ହୋଇଥିଲେ ହେଁ କେବୋତାଇଷି ନାମକ ଜଣେ ଜାପାନ ଦେଶବାସୀ ଭାଷାତତ୍ତ୍ୱବିତ୍ ସଂସ୍କୃତ ଚର୍ଚ୍ଚା କରି ଲିପିମାଳାର ବ୍ୟବହାର ପ୍ରବର୍ତ୍ତନ କରିବାରେ ବ୍ରତୀ ହୋଇଥିବାରୁ ଚୀନ ଭାଷାରେ ଅବ୍ୟବହୃତ ମାତ୍ରା ଚିହ୍ନମାନ ଜାପାନରେ ସୁପ୍ରଚିଳିତ ହୋଇଅଛି।

ଯାହା ହେଉ, ବ୍ରାହ୍ମୀ ଲିପିର ଉଦ୍ଭବ ବିଷୟରେ ମତାନ୍ତର ଥିଲେ ହେଁ ଏହି ଲିପିକୁ ଅବଲମ୍ବନ କରି ଓଡ଼ିଆ, ବଙ୍ଗଳା, ହିନ୍ଦୀ, ପ୍ରଭୃତି ଭାଷାର ଲିପି ଯେ ପ୍ରଚଳିତ ହୋଇଅଛି ଏଥିରେ ସନ୍ଦେହ ନାହିଁ। ଅଶୋକଙ୍କ ସମୟରେ ꟸ ଦ୍ୱାରା 'ଅ', ⁚ ·, ଦ୍ୱାରା 'ଇ', L ଦ୍ୱାରା 'ଉ', + ଦ୍ୱାରା 'କ', Λ ଦ୍ୱାରା 'ଗ' d ଦ୍ୱାରା 'ଚ' E ବା ٤ ଦ୍ୱାରା ଛ ⅄ ଦ୍ୱାରା 'ତ', ⊥ ଦ୍ୱାରା 'ନ' ଓ I ଦ୍ୱାରା 'ର', ଧ୍ୱନି ସୂଚିତ ହେଉଥିଲା ଓ ଏହି ଅକ୍ଷରମାନଙ୍କ ମଧ୍ୟରୁ ଅନେକ ଗୁଡ଼ିଏ ଇଂରାଜୀ ରୋମକ ଲିପିର ମୂଳସ୍ଥାନୀୟ ଫିନିସୀୟ ଲିପି ସହିତ ଅନେକାଂଶରେ ସମାନ। ମାତ୍ର ଫିନିସୀୟ + ଚିହ୍ନ ଦ୍ୱାରା ଟ ଧ୍ୱନି ସୂଚିତ ହେଉଥିବା ସ୍ଥଳେ ଏହି ଚିହ୍ନଦ୍ୱାରା ଅଶୋକଙ୍କ ଲିପିରେ 'କ' ଧ୍ୱନି ସୂଚିତ ହେଉଅଛି ଓ ଫିନିସୀୟ ꟸ ଦ୍ୱାରା 'କ' ଧ୍ୱନି ସୂଚିତ ହେଉଥିବା ସ୍ଥଳେ ଏହି ଚିହ୍ନଦ୍ୱାରା ଅଶୋକଙ୍କ ଲିପିରେ 'ଅ' ଧ୍ୱନି ସୂଚିତ ହେଉଅଛି ଓ ଅନ୍ୟାନ୍ୟ ଲିପିମାନଙ୍କରେ ମଧ୍ୟ ଏହିପରି ପାର୍ଥକ୍ୟ ସୁପରିସ୍ଫୁଟ। ଅବଶ୍ୟ ଅଶୋକଙ୍କ ଲିପି ଯେଉଁ ସମୟରେ ବ୍ୟବହୃତ ହୋଇଥିଲା, ସେ ସମୟରେ ବୈଦିକ ଭାଷା ଅତ୍ୟନ୍ତ ଉନ୍ନତି ଲାଭ କରିଥିଲା ଓ ସେଥିରୁ ପାଲି, ପ୍ରାକୃତ ପ୍ରଭୃତି ଉପଭାଷାମାନଙ୍କର ଉତ୍ପତ୍ତି ସାଧିତ ହୋଇଥିଲା, ଏଣୁ ଏହି ଲିପି ଯେ ପ୍ରାଚୀନତମ, ଏହା ବୋଲାଯାଇ ନ ପାରେ। ପ୍ରାଚୀନତମ ଭାରତୀୟ ଲିପି ବିଷୟରେ ବର୍ତ୍ତମାନ ମଧ୍ୟ ଗବେଷଣାର ଅବକାଶ ଅଛି, ମାତ୍ର ଅଶୋକଙ୍କ ପୂର୍ବବର୍ତ୍ତୀକାଳର କୌଣସି ସମ୍ପୂର୍ଣ୍ଣ ଭାରତୀୟ ଲିପି ଆଜିପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନ ଥିବା ସ୍ଥଳେ ଗିରିନାର ଚଟାଣରେ ଲିଖିତ ଲିପିକୁ ଆମ୍ଭେମାନେ ଅତି ପ୍ରାଚୀନ ବୋଲି ମନେ କରିଥାଉଁ। କିନ୍ତୁ ଏହି ଲିପି ବ୍ୟବହାର ଅନ୍ତତଃ ତିନି ହଜାର ବର୍ଷ ପୂର୍ବେ ଭାରତୀୟ ସଭ୍ୟତାର ଯେଉଁ ନମୁନାମାନ ବର୍ତ୍ତମାନ ଆବିଷ୍କୃତ ହେଉଅଛି ଓ ଭାରତୀୟ ସାହିତ୍ୟର ଯେଉଁ ଉନ୍ନତି ଓ ପ୍ରସାର ଆମ୍ଭମାନଙ୍କର ନୟନଗୋଚର ହୁଏ, ସେଥିରୁ ଏହି ଲିପି ବ୍ୟବହାରର ବହୁ ଶତାବ୍ଦୀ ପୂର୍ବେ ଅନ୍ୟ ପ୍ରକାର ଲିପି ପ୍ରଚଳିତ ଥିବା ସମ୍ଭବ। ଏହି ପ୍ରାଚୀନତମ ଲିପିର ସ୍ୱରୂପ ଆମ୍ଭମାନଙ୍କୁ ଜଣା ନାହିଁ। ବୋଧହୁଏ, ଏହି ପ୍ରାଚୀନତମ ଲିପିରେ ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣମାନ ପୃଥକ୍ ପୃଥକ୍ ଭାବରେ ଚିହ୍ନିତ ହୋଇ ନଥିଲା। ବୋଧହୁଏ ସ୍ୱରବର୍ଣ୍ଣର ଦୀର୍ଘତାସୂଚକ ପୃଥକ ଲିପିର ବ୍ୟବହାର ନ ଥିଲା ଏବଂ ସ୍ୱରବର୍ଣ୍ଣମାନଙ୍କର ମାତ୍ରାଚିହ୍ନ ମଧ୍ୟ ବ୍ୟବହୃତ ହେଉ ନଥିଲା। ମାତ୍ର ଏ ସମସ୍ତ କେବଳ ଅନୁମାନ। ଏଗୁଡ଼ିକର କୌଣସି ଐତିହାସିକ ଭିତ୍ତି ନାହିଁ। ଗିରିନାର ଲିପିରେ ମାତ୍ରାର ବ୍ୟବହାର ଥିବାରୁ ତାହାର ପ୍ରାଚୀନତା ବିଷୟରେ ସନ୍ଦେହ ମଧ୍ୟ ଅନୁମାନ ଉପରେ ପ୍ରତିଷ୍ଠିତ।



# ବର୍ଣ୍ଣ ପ୍ରକରଣ

## ସୂର୍ଯ୍ୟନାରାୟଣ ଦାଶ

ବର୍ଣ୍ଣ ଦୁଇ ପ୍ରକାର - ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନବର୍ଣ୍ଣ।

ଅନ୍ୟ ବର୍ଣ୍ଣର ସାହାଯ୍ୟ ନ ନେଇ ଯେଉଁ ବର୍ଣ୍ଣ ସ୍ପଷ୍ଟଭାବରେ ଉଚ୍ଚାରିତ ହୁଏ, ତାହାର ନାମ ସ୍ୱରବର୍ଣ୍ଣ। 'ଅ' ଏହି ବର୍ଣ୍ଣଟି ଉଚ୍ଚାରଣ କଲା ବେଳକୁ ଅନ୍ୟ କୌଣସି ବର୍ଣ୍ଣର ସାହାଯ୍ୟ ନେବାକୁ ପଡ଼େ ନାହିଁ।

ଯେଉଁ ବର୍ଣ୍ଣ ସ୍ୱରବର୍ଣ୍ଣ ସାହାଯ୍ୟ ନ ନେଇ ଉଚ୍ଚାରିତ ହୋଇପାରେ ନାହିଁ, ତାହାର ନାମ ବ୍ୟଞ୍ଜନବର୍ଣ୍ଣ। 'କ' ଏହି ବର୍ଣ୍ଣଟି ଉଚ୍ଚାରଣ କଲାବେଳକୁ 'କ' ଓ 'ଅ'ର ଧ୍ୱନି ମିଶି ଉଚ୍ଚାରିତ ହେଉଛି। 'ଅ' ସ୍ୱରବର୍ଣ୍ଣର ସାହାଯ୍ୟ ବ୍ୟତୀତ 'କ' ସ୍ୱତନ୍ତ୍ରଭାବରେ ଉଚ୍ଚାରିତ ହୋଇପାରେ ନାହିଁ।

ଓଡ଼ିଆ ଭାଷାରେ ୪୯ଟି ବର୍ଣ୍ଣ ଅଛି। ଏଥିରୁ ସ୍ୱରବର୍ଣ୍ଣ ୧୩ଟି ଓ ବ୍ୟଞ୍ଜନବର୍ଣ୍ଣ ୩୬ଟି।

### ସ୍ୱରବର୍ଣ୍ଣ

ଅ, ଆ, ଇ, ଈ, ଉ, ଊ, ଋ, ୠ, ଌ, ଏ, ଐ, ଓ, ଔ - ଏହି ୧୩ଟି ସ୍ୱରବର୍ଣ୍ଣ।

ସ୍ୱର ଦୁଇ ପ୍ରକାର - ହ୍ରସ୍ୱ ଓ ଦୀର୍ଘ।

ହ୍ରସ୍ୱସ୍ୱର - ଅ, ଇ, ଉ, ଋ, ଌ।

ଦୀର୍ଘସ୍ୱର- ଆ, ଈ, ଊ, ୠ, ଏ, ଐ, ଓ, ଔ।

ହ୍ରସ୍ୱସ୍ୱର ଉଚ୍ଚାରଣ କରବାକୁ ଅଳ୍ପ ସମୟ ଲାଗେ। ଦୀର୍ଘସ୍ୱର ଉଚ୍ଚାରଣ କରିବା ପାଇଁ ହ୍ରସ୍ୱସ୍ୱର ଅପେକ୍ଷା ବେଶୀ ସମୟ ଲାଗେ।

**ପ୍ଲୁତସ୍ୱର-** ପ୍ଲୁତ ବୋଲି ଆଉ ଗୋଟିଏ ସ୍ୱର ଅଛି। ହ୍ରସ୍ୱ ଓ ଦୀର୍ଘସ୍ୱର ଉଚ୍ଚାରଣ କରିବା ପାଇଁ ଯେତେ ସମୟ ଲାଗେ, ପ୍ଲୁତସ୍ୱର ଉଚ୍ଚାରଣ କରିବା ପାଇଁ ତା ଅପେକ୍ଷା ବେଶୀ ସମୟ ଲାଗେ। ଏହି ପ୍ଲୁତ ସ୍ୱରର ସ୍ୱତନ୍ତ୍ର ଆକାର ନାହିଁ। ଗାନ, ରୋଦନ ପ୍ରଭୃତି କେତେକ ଶବ୍ଦ ଉଚ୍ଚାରଣ କଲାବେଳେ ସ୍ୱର ଅତି ଦୀର୍ଘ ହୁଏ। ଓଡ଼ିଆ ଭାଷାରେ ପ୍ଲୁତସ୍ୱରର ବ୍ୟବହାର ବହୁତ ଦେଖାଯାଏ ନାହିଁ। କେତେ ଲେଖକ ମାତ୍ରା ହିସାବରେ ହ୍ରସ୍ୱ, ଦୀର୍ଘ ଓ

ପ୍ଳୁତସ୍ୱର ନିର୍ଣ୍ଣୟ କରିଥାନ୍ତି । ହ୍ରସ୍ୱସ୍ୱରର ଉଚ୍ଚାରଣ ସମୟକୁ ଏକମାତ୍ରା, ଦୀର୍ଘସ୍ୱରର ଉଚ୍ଚାରଣ ସମୟକୁ ଦୁଇ ମାତ୍ରା ଓ ପ୍ଳୁତସ୍ୱରର ଉଚ୍ଚାରଣ ସମୟକୁ ତିନି ମାତ୍ରା ବୋଲି ଧରି ନେଇଥାନ୍ତି । କିନ୍ତୁ ଓଡ଼ିଆ ଭାଷାରେ ପ୍ଳୁତସ୍ୱର ନାହିଁ କହିଲେ ବିଶେଷ ଦୋଷ ହେବ ନାହିଁ ।

**ଯୁକ୍ତସ୍ୱର-** ଦୁଇଟି ସ୍ୱର ଏକତ୍ର ଉଚ୍ଚାରିତ ହେଲେ ଯୁକ୍ତସ୍ୱର ବୋଲାଯାଏ । ଇଉରୋପ-ଏଠାରେ "ଇଉ' ଏକ ସଙ୍ଗରେ ଅର୍ଥାତ୍ ଯୁକ୍ତ ଭାବରେ ଉଚ୍ଚାରିତ ହୋଇଅଛି । ସେହି ହେତୁ ଏଠାରେ ଯୁକ୍ତସ୍ୱର ହେଲା । "ଐକାର", "ଔକାର" ଯୁକ୍ତସ୍ୱର । "ଐ" ବର୍ଣ୍ଣଟି "ଅଇ", "ଔ"- "ଅଉ" ରୂପରେ ଉଚ୍ଚାରିତ ହୁଅନ୍ତି । (ଆଇ, ଆଉ, ଇଉ, ଏଇ, ଏଉ, ଅଓ ପ୍ରଭୃତି କେତେଗୁଡ଼ିଏ ଯୁକ୍ତସ୍ୱର ମଧ୍ୟ ଅଛି ।) 'ଏ', 'ଓ'କୁ ମଧ୍ୟ ବ୍ୟାକରଣରେ ଯୁକ୍ତସ୍ୱର ତଳେ ନିଆଯାଏ । "ଏ"ରେ "ଅ" ଓ "ଇ"ର ଧ୍ୱନି, "ଓ" ରେ "ଅ" ଓ "ଉ"ର ଧ୍ୱନି ମିଶ୍ରିତ ଅଛି ବୋଲି "ଏ" ଏବଂ "ଓ"କୁ ଯୁକ୍ତସ୍ୱର ବୋଲି କୁହାଯାଏ ।

**ବନାନ-** ସ୍ୱରବର୍ଣ୍ଣ ଯେତେବେଳେ ବ୍ୟଞ୍ଜନ ବର୍ଣ୍ଣ ସହିତ ଯୁକ୍ତ ହୁଏ, ସେତେବେଳେ ସେ ଭିନ୍ନ ଆକାର ଧାରଣ କରେ । "ଅ" କାର ଭିତରେ ରହିଥାଏ, ତାହାର ଭିନ୍ନ ଆକୃତି ରହି ନ ଥାଏ । ଆ- ା, ଇ- ି, ଈ- ୀ, ଉ- ୁ, ଊ- ୂ, ଏ- େ, ଐ- ୈ, ଓ- ୋ, ଔ- ୌ । ଏହି ଚିହ୍ନଗୁଡ଼ିକୁ ବ୍ୟଞ୍ଜନବର୍ଣ୍ଣ ସହିତ ଯୋଗ କରିବା ପ୍ରଣାଳୀକୁ ବର୍ଣ୍ଣଯୋଜନା, ବନାନ ବା ବନା ବୋଲାଯାଏ ।

କ୍+ଅ=କ, କ୍+ଆ=କା, କ୍+ଇ=କି, କ୍+ଈ=କୀ, କ୍+ଉ=କୁ, କ୍+ଊ=କୂ, କ୍+ଏ=କେ, କ୍+ଐ+କୈ, କ୍+ଓ=କୋ, କ୍+ଔ=କୌ ।

## ବ୍ୟଞ୍ଜନବର୍ଣ୍ଣ

ବ୍ୟଞ୍ଜନବର୍ଣ୍ଣ- କ ଖ ଗ ଘ ଙ, ଚ ଛ ଜ ଝ ଞ, ଟ ଠ ଡ ଢ ଣ, ତ ଥ ଦ ଧ ନ, ପ ଫ ବ ଭ ମ, ଯ ର ଳ ବ, ଶ ଷ ସ ହ, ଂ ଁ ଃ । କ ଠାରୁ ଙ କୁ କ ବର୍ଗ, ଚ ଠାରୁ ଞ କୁ ଚ ବର୍ଗ, ଟ ଠାରୁ ଣ କୁ ଟ ବର୍ଗ, ତ ଠାରୁ ନ କୁ ତ ବର୍ଗ ଓ ପ ଠାରୁ ମ ପର୍ଯ୍ୟନ୍ତ ପ ବର୍ଗ ବୋଲାଯାଏ ।

ବ୍ୟଞ୍ଜନବର୍ଣ୍ଣ ତିନି ଭାଗରେ ବିଭକ୍ତ- ବର୍ଗ୍ୟ, ଅବର୍ଗ୍ୟ ଓ ଆଶ୍ରିତ । କ ଠାରୁ ମ ପର୍ଯ୍ୟନ୍ତ ବର୍ଗ୍ୟ, ଯ ଠାରୁ ହ ପର୍ଯ୍ୟନ୍ତ ଅବର୍ଗ୍ୟ, ଂ, ଁ, ଃ ଆଶ୍ରିତ ।

**ବର୍ଗ୍ୟ, ଅବର୍ଗ୍ୟ, ଉଷ୍ମ-** କ ଠାରୁ ମ ପର୍ଯ୍ୟନ୍ତ ଏହି ୨୫ଟି ବର୍ଗୀୟ ବା ବର୍ଗ୍ୟ ବର୍ଣ୍ଣକୁ ସ୍ପର୍ଶ ବର୍ଣ୍ଣ ବୋଲାଯାଏ । କାରଣ ଜିହ୍ୱାର ଅଗ୍ର, ମଧ୍ୟ ବା ମୂଳଦ୍ୱାରା, କଣ୍ଠ, ତାଳୁ,

ମୂର୍ଦ୍ଧା, ଦନ୍ତ ଓ ଓଷ୍ଠ ସ୍ପର୍ଶ କରି ଏହି ସବୁ ବର୍ଣ୍ଣ ଉଚ୍ଚାରିତ ହୁଅନ୍ତି। ଶ, ଷ, ସ, ହ ଏହି ଚାରୋଟି ବର୍ଣ୍ଣକୁ ଉଚ୍ଚାରଣ କଲାବେଳେ ବାୟୁର ପ୍ରାଧାନ୍ୟ ଥାଏ ବୋଲି ଏଗୁଡ଼ିକୁ ଉଷ୍ମ ବର୍ଣ୍ଣ କହନ୍ତି। ବର୍ଗ୍ୟବର୍ଣ୍ଣ ଓ ଉଷ୍ମବର୍ଣ୍ଣର ମଧ୍ୟରେ ଥିବା ହେତୁରୁ ଯ ର ଳ ବ ଏହି ଚାରୋଟିକୁ ଅନ୍ତଃସ୍ଥ ବର୍ଣ୍ଣ ବୋଲାଯାଏ।

**ଉଚ୍ଚାରଣସ୍ଥାନ ଭେଦରେ ବର୍ଣ୍ଣବିଭାଗ-** ଉଚ୍ଚାରଣ ଭେଦରେ ବର୍ଣ୍ଣଗୁଡ଼ିକୁ ବିଭକ୍ତ କରାଯାଇଥାଏ। ଯେଉଁ ବର୍ଣ୍ଣଗୁଡ଼ିକ କଣ୍ଠରୁ ଉଚ୍ଚାରିତ ହୁଅନ୍ତି, ସେଗୁଡ଼ିକ କଣ୍ଠ୍ୟବର୍ଣ୍ଣ। ଏପରି ତାଳୁରୁ ତାଳବ୍ୟ, ମୂର୍ଦ୍ଧାରୁ ମୂର୍ଦ୍ଧନ୍ୟ, ଦନ୍ତରୁ ଦନ୍ତ୍ୟ, ଓଷ୍ଠରୁ ଓଷ୍ଠ୍ୟ। କେତୋଟି ବର୍ଣ୍ଣ ଦୁଇଟି ସ୍ଥାନରୁ ଉଚ୍ଚାରିତ ହୁଅନ୍ତି। କଣ୍ଠ ଓ ତାଳୁରୁ ଉଚ୍ଚାରିତ ହେଲେ କଣ୍ଠତାଳବ୍ୟ ଏବଂ ଦନ୍ତ ଓ ଓଷ୍ଠରୁ ଉଚ୍ଚାରିତ ହେଲେ ଦନ୍ତୌଷ୍ଠ୍ୟ ବୋଲାଯାଏ।

**ସ୍ୱଳ୍ପପ୍ରାଣ, ମହାପ୍ରାଣ-** ପ୍ରତ୍ୟେକ ବର୍ଗର ପ୍ରଥମ, ତୃତୀୟ ଓ ପଞ୍ଚମ ବର୍ଣ୍ଣଗୁଡ଼ିକର ଉଚ୍ଚାରଣ କୋମଳ ବା ମୃଦୁ ହେବାରୁ ଏଗୁଡ଼ିକୁ ସ୍ୱଳ୍ପପ୍ରାଣ ବର୍ଣ୍ଣ ବୋଲାଯାଏ। ଦ୍ୱିତୀୟ ଓ ଚତୁର୍ଥ ବର୍ଣ୍ଣର ଉଚ୍ଚାରଣ କଠିନ ହେବାରୁ ଏଗୁଡ଼ିକୁ ମହାପ୍ରାଣ ବର୍ଣ୍ଣ ବୋଲାଯାଏ। ଙ ଞ ଣ ନ ମ ଏଗୁଡ଼ିକ ନାସିକାକୁ ଅନୁସରଣ କରି ଉଚ୍ଚାରିତ ହେଉଥିବାରୁ ଏମାନଙ୍କ ନାମ ଅନୁନାସିକ। ଅନ୍ୟ ବର୍ଣ୍ଣକୁ ସାନୁନାସିକ କରିବାକୁ ହେଲେ ତା ଉପରେ ँ ଦେବାକୁ ହୁଏ। ଯଥା- କାଁଚ, ହେଁ।

**ଉଚ୍ଚାରଣ ଅନୁସାରେ ବର୍ଣ୍ଣ ବିଭାଗ -**

| | ସ୍ୱର | ସ୍ପର୍ଶବର୍ଣ୍ଣ | ଅନ୍ତସ୍ଥ | ଉଷ୍ମ |
|---|---|---|---|---|
| କଣ୍ଠ୍ୟ | ଅ ଆ | କ ଖ ଗ ଘ ଙ | — | ହ |
| ତାଳବ୍ୟ | ଇ ଈ | ଚ ଛ ଜ ଝ ଞ | ଯ | ଶ |
| ଓଷ୍ଠ୍ୟ | ଉ ଊ | ପ ଫ ବ ଭ ମ | — | — |
| ମୂର୍ଦ୍ଧନ୍ୟ | ଋ ୠ | ଟ ଠ ଡ ଢ ଣ | ର | ଷ |
| ଦନ୍ତ୍ୟ | ଌ — | ତ ଥ ଦ ଧ ନ | ଳ | ସ |
| କଣ୍ଠତାଳବ୍ୟ | ଏ ଐ | | — | — |
| କଣ୍ଠୌଷ୍ଠ୍ୟ | ଓ ଔ | | — | — |
| ଦନ୍ତୌଷ୍ଠ୍ୟ | | | ବ | |
| | | ଅଳ୍ପପ୍ରାଣ ମହାପ୍ରାଣ ଅଳ୍ପପ୍ରାଣ ମହାପ୍ରାଣ ଅନୁନାସିକ | | |

ଙ, ଞ, ଏ ଦୁଇଟି ଅକ୍ଷର ସଂଯୁକ୍ତାକ୍ଷରରେ କେବଳ ବିଶେଷ ଭାବରେ ବ୍ୟବହୃତ ହୋଇଥାନ୍ତି, ପୃଥକ୍ ଭାବରେ ରହି ନ ଥାନ୍ତି। ଏହି ଅକ୍ଷର ଦୁଇଟି ଶବ୍ଦର ଆଦ୍ୟରେ ମଧ୍ୟ ରହି ନ ଥାନ୍ତି।

ଣ- ଆରମ୍ଭରେ ଣ ରହି କୌଣସି ଶବ୍ଦ ଓଡ଼ିଆ ଭାଷାରେ ନାହିଁ।

ଳ-ଲ, ଆରମ୍ଭରେ ଳ ରହି କୌଣସି ଓଡ଼ିଆ ଶବ୍ଦ ନାହିଁ। ଶବ୍ଦର ଆରମ୍ଭରେ ଳ ରହିଲେ ଲ କାରର ଧ୍ୱନି ହୁଏ। ଉଚ୍ଚାରଣରେ ଏହି ଦୁଇଟିର ପ୍ରଭେଦ ରହିଥିବା ଯୋଗୁଁ ଏ ଦୁଇଟି ଅକ୍ଷର ବ୍ୟବହୃତ ହୋଇଥିବା ଶବ୍ଦମାନଙ୍କର ଅର୍ଥରେ ମଧ୍ୟ ପ୍ରଭେଦ ଅଛି। କାଳ ଓ କାଲ, ବେଳ ଓ ବେଲ ଏମାନଙ୍କର ଅର୍ଥ ସମାନ ନୁହେଁ।

ୟ- ଯ, ଶବ୍ଦ ମଧ୍ୟରେ ଅ କାରାଦି ସ୍ୱର ଓ କ କାରାଦି ବ୍ୟଞ୍ଜନବର୍ଣ୍ଣର ପରେ ଦ୍ୱିତୀୟ ବର୍ଣ୍ଣ ହେଲେ ଯ ୟକାର ଭାବରେ ଉଚ୍ଚାରିତ ହୁଏ। ଓଡ଼ିଆରେ ଶବ୍ଦ ଆରମ୍ଭ ଯ ଥିଲେ ୟର ଉଚ୍ଚାରଣ ହୁଏ ନାହିଁ।

ଯଥା- ଦୟା, ମାୟା ଇତ୍ୟାଦି। ଶବ୍ଦର ମଧ୍ୟସ୍ଥିତ ଅସଂଯୁକ୍ତ ଯ ସମୟ ସମୟରେ ୟ ହୁଏ, ସମୟ ସମୟରେ ୟ  ହୁଏ ନାହିଁ। ଉଦାହରଣ-

ୟ ହୁଏ, ଯଥା - ବିୟୋଗ, ଆୟତ, ଦାୟ, ଆୟୋଜନ ଇତ୍ୟାଦି।

ଯ ରହିଥାଏ, ଯଥା- ସୁଯୋଗ, ଅଭିଯୋଗ, ବିଯୋଗ, ବିଯୁକ୍ତ ଇତ୍ୟାଦି।

ଶବ୍ଦର ଶେଷରେ ୟ ହୁଏ। ଯଥା- ସମୟ, ତନୟ, ବିନୟ ଇତ୍ୟାଦି। ଏହାର ବ୍ୟତିକ୍ରମ ମଧ୍ୟ ଦେଖାଯାଏ। ଯଥା- ସରଯୂ, ସୂର୍ଯ୍ୟ।

ବ- ଅବର୍ଗୀୟ ବ ର ବର୍ଗୀୟ ବ ଠାରୁ ସ୍ୱତନ୍ତ୍ର ଉଚ୍ଚାରଣ ଥିଲେ ମଧ୍ୟ ଓଡ଼ିଆରେ ସେପରି ହେଉ ନାହିଁ। କୌଣସି ପ୍ରାକୃତ ଭାଷାରେ ଏହି ବର୍ଣ୍ଣର ବ୍ୟବହାର ନାହିଁ। ଓଡ଼ିଆ ଭାଷାରେ ଅବର୍ଗ୍ୟ "ବ"ର ଉଚ୍ଚାରଣ ଓ ଆକାର ବର୍ଗ୍ୟ "ବ" ଠାରୁ ପୃଥକ୍ ହୋଇ ନ ଥାଏ। ଅବର୍ଗ୍ୟ "ବ" ଥିବା ବିଦେଶୀ ଶବ୍ଦ ଓ ସଂସ୍କୃତ ଶବ୍ଦର ଉଚ୍ଚାରଣ ମଧ୍ୟ ବର୍ଗ୍ୟ "ବ" ପରି କରଯାଏ। ଆକାରରେ ମଧ୍ୟ ପ୍ରଭେଦ ରହେ ନାହିଁ। ଦେବାନ, ବାପସ, ଅବତାର, ଅବଲମ୍ବନ ପ୍ରଭୃତି ଶବ୍ଦମାନଙ୍କରେ ଅବର୍ଗ୍ୟ "ବ" ରହିଛି। ଏହି ଶବ୍ଦଗୁଡ଼ିକର ଉଚ୍ଚାରଣ ବର୍ଗ୍ୟ "ବ" ଥିଲେ ଯେପରି ହୋଇଥାନ୍ତା, ସେପରି ହେବା ଠିକ୍ ନୁହେଁ। କେହି କେହି ଦେବାନ୍‌କୁ ଦେଓ୍ୱାନ, ବାପସ୍‌କୁ ଓ୍ୱାପାସ୍ ଏପରି ଲେଖନ୍ତି। କିନ୍ତୁ ସଂସ୍କୃତ ଶବ୍ଦ ଅବତାର ଅୱତାର ରୂପେ ଲେଖା ହୁଏ ନାହିଁ। ଅବର୍ଗ୍ୟ "ବ"କୁ "ୱ" ରୂପେ ଲେଖିବା ମଧ୍ୟ ଠିକ୍ ନୁହେଁ। କେହି କେହି ଏହି ବର୍ଣ୍ଣଟିକୁ "ବ" ରୂପେ ଲେଖିବାକୁ ପରାମର୍ଶ ଦିଅନ୍ତି। "ୱ" ରୂପରେ ଲେଖିବା ସୁବିଧା ହେବ।

ଡ଼, ଢ଼- ଶବ୍ଦର ଆରମ୍ଭରେ ଡ ନ ଥିଲେ କିମ୍ବା ଅନ୍ୟ ବର୍ଣ୍ଣ ସହିତ ଯୁକ୍ତ ହୋଇ ନ ଥିଲେ 'ଡ଼' ରୂପେ ଉଚ୍ଚାରିତ ହୁଏ।

ଯଥା- କଡ଼, ବଡ଼।

'ଢ'ର ନିୟମ ମଧ୍ୟ 'ଡ଼' ପରି। ଉଦାହରଣ- ମୂଢ଼, ଗୂଢ଼, ଦୃଢ଼, ଢଗ, ଢମାଳୀ-

କ୍ଷ- ସଂସ୍କୃତ ଭାଷାରେ "କ୍ଷ" ରୂପେ ଉଚ୍ଚାରିତ ହେଉଥିଲା। ଏବେ ଓଡ଼ିଆରେ ସାଧାରଣତଃ "ଖ୍ୟ" ରୂପରେ ଉଚ୍ଚାରିତ ହେଉଛି।

ଶ, ଷ, ସ- ଓଡ଼ିଆରେ ଏ ତିନୋଟି ଅକ୍ଷର ସାଧାରଣତଃ ସ ରୂପେ ଉଚ୍ଚାରିତ ହୁଏ। କେବଳ ସଂସ୍କୃତରୁ ଆସିଥିବା କେତେକ ଶବ୍ଦକୁ ଲେଖିବା ପାଇଁ ଶ ଓ ଷ ର ଆବଶ୍ୟକତା ରହିଛି।

ଂ, ଁ , ଃ - ଂ, ଁ , ଃକୁ ଅଯୋଗବାହ ବର୍ଣ୍ଣ ବୋଲି କୁହାଯାଏ। " ଁ ", "ଂ"ର ଅର୍ଦ୍ଧମାତ୍ରା ବୋଲି କେତେକଙ୍କର ମତ। ସେହି କାରଣରୁ କେତେକ ଗ୍ରନ୍ଥରେ " ଁ "କୁ ସ୍ୱତନ୍ତ୍ର ବର୍ଣ୍ଣରୂପରେ ଧରାଯାଇ ନାହିଁ।

**ହସନ୍ତ**- କୌଣସି ସ୍ୱରବର୍ଣ୍ଣ ପରେ ନ ଥିଲେ ବ୍ୟଞ୍ଜନବର୍ଣ୍ଣକୁ ହସନ୍ତବର୍ଣ୍ଣ (ହଳନ୍ତ) କୁହାଯାଏ। ଏହି ବର୍ଣ୍ଣର ତଳେ ଗୋଟିଏ ତୀର୍ଯ୍ୟକ୍ ରେଖା ( ୍ ) ଦିଆଯାଇଥାଏ। ଏହି ରେଖାକୁ ହସନ୍ତ ବା ହଳନ୍ତ ଚିହ୍ନ କୁହାଯାଏ। ସ୍ୱରବର୍ଣ୍ଣ ଲାଗିଲେ ହସନ୍ତ ଚିହ୍ନ ଲୋପ ହୋଇଯାଏ।

**ସଂଯୁକ୍ତବର୍ଣ୍ଣ**- ପୂର୍ବେ ବା ପରେ ସ୍ୱରବର୍ଣ୍ଣ ନ ଥିଲେ ବ୍ୟଞ୍ଜନବର୍ଣ୍ଣ ଉଚ୍ଚାରିତ ହୋଇପାରେ ନାହିଁ "କ" କହିବା ମାତ୍ରେ କ ବର୍ଣ୍ଣରେ ଅକାର ସଂଯୁକ୍ତ କରି ଉଚ୍ଚାରଣ କରିବାକୁ ହୁଏ। କ୍ + ଅ - କ।

ଦୁଇ ବା ତତୋଽଧିକ ବ୍ୟଞ୍ଜନବର୍ଣ୍ଣ ମଧ୍ୟରେ ସ୍ୱରବର୍ଣ୍ଣ ନ ଥିଲେ ସେଗୁଡ଼ିକ ଯୁକ୍ତ ହୁଅନ୍ତି ଏବଂ ଏହି ଯୁକ୍ତ ବର୍ଣ୍ଣର ନାମ ସଂଯୁକ୍ତବର୍ଣ୍ଣ। "ପଦ୍ମ" ଏହି ଶବ୍ଦଟିରେ ପ୍+ଅ+ଦ୍+ମ୍+ଅ ଏହି ପାଞ୍ଚଟି ଅକ୍ଷର ଅଛି। "ଦ୍" ଓ "ମ୍" ମଧ୍ୟରେ କୌଣସି ସ୍ୱରବର୍ଣ୍ଣ ନ ଥିବାରୁ ଏ ଦୁଇଟି ଅକ୍ଷର ଯୁକ୍ତ ହୋଇ "ଦ୍ମ" ହେଲା। ସ୍ୱରସଂଯୁକ୍ତ ବ୍ୟଞ୍ଜନବର୍ଣ୍ଣକୁ ସଂଯୁକ୍ତବର୍ଣ୍ଣ ବୋଲାଯାଏ ନାହିଁ। ଯଥା- "କ"ରେ ସ୍ୱରବର୍ଣ୍ଣ ଯୁକ୍ତ ହୋଇଥିଲେ ମଧ୍ୟ ଏହା ଯୁକ୍ତବର୍ଣ୍ଣ ନୁହେଁ। କେତେକ ସ୍ଥାନରେ ସଂଯୁକ୍ତ ବ୍ୟଞ୍ଜନବର୍ଣ୍ଣର ଆକାର ପରିବର୍ତ୍ତିତ ହୁଏ।

କେତେକ ସଂଯୁକ୍ତ ବ୍ୟଞ୍ଜନବର୍ଣ୍ଣ- ଙ୍+କ=ଙ୍କ, ଙ୍+ଗ=ଙ୍ଗ, ଞ୍+ଚ=ଞ୍ଚ, ଣ୍+ଟ=ଣ୍ଟ, ସ୍+କ=ସ୍କ, ଶ୍+ଚ=ଶ୍ଚ ଇତ୍ୟାଦି।

ଙ ଞ ଣ ନ ମ ଯଥାକ୍ରମେ କ ବର୍ଗ, ଚ ବର୍ଗ, ଟ ବର୍ଗ, ତ ବର୍ଗ ଓ ପ ବର୍ଗ ସହିତ ଯୁକ୍ତ ହୁଅନ୍ତି। ଯଥା- ଙ୍+କ=ଙ୍କ, ଞ୍+ଚ=ଞ୍ଚ, ଣ୍+ଟ=ଣ୍ଟ, ନ୍+ତ=ନ୍ତ, ନ୍+ପ=ମ୍ପ ଇତ୍ୟାଦି।

ଣ, ନ, ବ, ମ, ଯ, ର, ଲ, ଏହି ବ୍ୟଞ୍ଜନବର୍ଣ୍ଣ ଗୁଡ଼ିକ ଅନ୍ୟ ବ୍ୟଞ୍ଜନବର୍ଣ୍ଣ ସହିତ ଯୁକ୍ତ ହେଲେ ଏମାନଙ୍କର ଭିନ୍ନ ଆକାର ହୁଏ। ସେତେବେଳେ ଏମାନଙ୍କର ନାମ ମାତ୍ରା ବା ଫଳା।

ମାତ୍ରାରୂପ-ଯ=ୢ, ର=୍ର (ଏହା ବର୍ଣ୍ଣର ତଳେ ରହେ), ର୍=ର୍ (ଏହା ବର୍ଣ୍ଣ ଉପରେ ରହେ)· ଲ=୍ଲ ,ଣ=୍ଣ , ନ =୍ନ , ମ= ୍ମ।

ଷ୍+ଣ = ଷ୍ଣ, ହ୍+ନ = ହ୍ନ, କ୍+ବ = କ୍ୱ, ଦ୍+ମ = ଦ୍ମ, କ୍+ଯ = କ୍ୟ, କ୍+ର = କ୍ର (ର+କ=ର୍କ), କ୍+ଲ = କ୍ଲ। ର ଅନ୍ୟ ବ୍ୟଞ୍ଜନବର୍ଣ୍ଣର ପୂର୍ବେ ବସିଲେ ରେଫ୍ (ର୍) ଓ ପରେ ବସିଲେ ଫଳା (୍ର) ବୋଲାଯାଏ। ଯଥା- ର୍+କ = ର୍କ, ର+ଯ= ର୍ଯ, କ୍+ର = କ୍ର, ବ+ର = ବ୍ର।

ରେଫ୍ ଯୁକ୍ତ ହେଲେ ଚ, ଛ, ଜ, ତ, ଦ, ଧ, ବ, ମ, ଯ, ଲ ବର୍ଣ୍ଣମାନଙ୍କର ବିକଳ୍ପରେ ଦ୍ୱିତ୍ୱ ହୁଏ। ଯଥା- ଗର୍ଦ୍ଦଭ, କର୍ଦ୍ଦମ। ବର୍ଗର ଦ୍ୱିତୀୟ ଓ ଚତୁର୍ଥ ବର୍ଣ୍ଣର ଦ୍ୱିତ୍ୱ ହେଲେ ଏହାର ପୂର୍ବ ବର୍ଣ୍ଣଟି ଯଥାକ୍ରମେ ପ୍ରଥମ ଓ ତୃତୀୟ ବର୍ଣ୍ଣ ହୋଇଯାଏ। ଯଥା- ମୂର୍ଦ୍ଧା, ଅନ୍ତର୍ଦ୍ଧାନ, ସ୍ୱଚ୍ଛ ଇତ୍ୟାଦି।

" ଁ " ବା " ଂ " ଅନେକ ସ୍ଥଳରେ ଙ ଏବଂ ଞ ର ବଦଳରେ ଲେଖା ଯାଇଥାଏ। ଯଥା-

ପେଙ୍କାଳି = ପେଂକାଳି, ପେଁକାଳି

ବଇଞ୍ଚ = ବଇଂଚ-ବଇଁଚ

କଇଞ୍ଛ-କଇଂଛ-କଇଁଛ

**ଗୁରୁ, ଲଘୁ** - ଗୁରୁ ଲଘୁ ନିୟମରେ ବର୍ଣ୍ଣଗୁଡ଼ିକୁ ମଧ୍ୟ ବିଭକ୍ତ କରାଯାଏ।

ଗୁରୁବର୍ଣ୍ଣ -

(୧) ଯେଉଁ ବ୍ୟଞ୍ଜନବର୍ଣ୍ଣରେ ଅନୁସ୍ୱାର କିମ୍ବା ଦୀର୍ଘସ୍ୱର ଯୁକ୍ତ ଥାଏ। ଯଥା- କଂ, ଖଂ, ଚଂ, କା, କୀ ଇତ୍ୟାଦି।

(୨) ଯେଉଁ ବର୍ଣ୍ଣ ସଂଯୁକ୍ତାକ୍ଷର ଓ ଦ୍ୱିତ୍ୱାକ୍ଷରର ପୂର୍ବରେ ଥାଏ। ଯଥା- ଟଙ୍କା, ଧକ୍କା।

(୩) ପୃଥକ୍ ଭାବରେ ରହିଥିବା ଦୀର୍ଘସ୍ୱର।

(୪) ବିସର୍ଗର ପରବର୍ତ୍ତୀ ବ୍ୟଞ୍ଜନବର୍ଣ୍ଣ ଦ୍ୱିତ୍ୱ ଭାବରେ ଉଚ୍ଚାରିତ ହୁଏ। ଯଥା- ଦୁଃଖ, ମନଃପୁତ। ଏଠାରେ "ଦୁ" ଓ "ନ"ର "ଉ" ଓ "ଅ" ଗୁରୁ।

ଲଘୁବର୍ଣ୍ଣ -

(୧) ହ୍ରସ୍ୱ ସ୍ୱର- ଅ, ଇ ,ଉ , ଋ, ଌ

(୨) ହ୍ରସ୍ୱ ସ୍ୱର ସହିତ ଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ, ଯଥା - କ, ଖ, ଗ ଇତ୍ୟାଦି।

ହ୍ରସ୍ୱସ୍ୱର ସହିତ ଯୁକ୍ତ ବ୍ୟଞ୍ଜନବର୍ଣ୍ଣ, ଯଥା- କ, ଖ, ଗ ଇତ୍ୟାଦି।

(ଚନ୍ଦ୍ରବିନ୍ଦୁ ସହ ହ୍ରସ୍ୱସ୍ୱରରେ ଯୁକ୍ତ ବ୍ୟଞ୍ଜନବର୍ଣ୍ଣ ମାନଙ୍କୁ ମଧ୍ୟ କେହି କେହି ଲଘୁବର୍ଣ୍ଣ ବୋଲି କହନ୍ତି।)




[ରାଜଗୁରୁ, ଓଡ଼ିଆ ଲିପି , 'ଓଡ଼ିଆ ଲିପି ଓ ଭାଷା', ପୃ.୭ ରୁ ସଂଗୃହୀତ]



# ଓଡ଼ିଆ ବର୍ଣ ବିଚାରର ସଂକ୍ଷିପ୍ତ ସୂଚନା

## ନୀଳକଣ୍ଠ ଦାସ

ବର୍ଣ କହିଲେ ଲିଖିତ ଅକ୍ଷର ଓ ଅକ୍ଷରର ଉଚ୍ଚାରଣ ଉଭୟ ବୁଝାଯାଏ। ମାତ୍ର ଭଲ କରି ବୁଝିଲେ ଦେଖାଯିବ ମୁଖର ଉଚ୍ଚାରଣ ହିଁ ବର୍ଣ। ଲିଖିତ ଅକ୍ଷର ସଙ୍ଗେ ତାହାର କୌଣସି ଦୃଷ୍ଟି ବା ସାକ୍ଷାତ୍ ସମ୍ବନ୍ଧ ନାହିଁ। ଲିଖିତ ଅକ୍ଷର ବର୍ଣର ଗୋଟିଏ ସଂକେତ ବା ଚିହ୍ନ। ଲିଖିତ ଅକ୍ଷରରେ ଉଚ୍ଚାରଣ ନଥାଏ। ଉଚ୍ଚାରଣ ଲୋକମୁଖରେ। ସେହି ଲୋକମୁଖର ଉଚ୍ଚାରଣ ସବୁ ବ୍ୟକ୍ତିଙ୍କ ମୁଖରେ ସମାନ କରିବା ପାଇଁ ବର୍ଣର ସଙ୍କେତ ସ୍ୱରୂପ ଲିଖିତ ଅକ୍ଷରର ସୃଷ୍ଟି।ଗୋଟିଏ ଗୋଟିଏ ଅକ୍ଷରକୁ ଗୋଟିଏ ଗୋଟିଏ ବିଶିଷ୍ଟ ଉଚ୍ଚାରଣ ନାମିତ କରି ସମସ୍ତେ ସେହି ଲିଖିତ ଚିହ୍ନ ଦେଖିଲେ, ସେହି ଉଚ୍ଚାରଣ ପ୍ରକାଶ କରିବେ ବୋଲି ଧରି ନିଆଯାଏ। ଏଥିରେ ଭାଷାର ସାର୍ବଜନୀନତା ଓ ସ୍ଥାୟିତ୍ୱ ଦୃଢ଼ ହୁଏ। ଗୋଟିଏ ଗୋଟିଏ ଅକ୍ଷର ଗୋଟିଏ ଗୋଟିଏ ଉଚ୍ଚାରଣ ନିର୍ଦ୍ଦେଶ କରେ। ଉଚ୍ଚାରଣ ହିଁ ସେ ଅକ୍ଷରର ପ୍ରାଣ। ଉଚ୍ଚାରଣରେ ବ୍ୟତିକ୍ରମ ଘଟିଲେ, ଏକ ଅକ୍ଷର ବିଭିନ୍ନ ମୁଖରେ ବିଭିନ୍ନ ଉଚ୍ଚାରଣ ପାଇଲେ, ଭାଷାର ବ୍ୟାପକତା ବିଶୃଙ୍ଖଳ ଓ ସ୍ଥିତି ସନ୍ଦେହାପନ୍ନ ହୁଏ। ସେଥିପାଇଁ କାଳକ୍ରମେ ପଣ୍ଡିତମାନେ ଉଚ୍ଚାରିତ ବର୍ଣ ଓ ଲିଖିତ ଅକ୍ଷର ମଧ୍ୟରେ କୌଣସି ପ୍ରଭେଦ ରଖିପାରି ନାହାନ୍ତି। ମୁଖର ଉଚ୍ଚାରଣ ଓ ଲେଖନର ବିକାଶ ଅନେକଙ୍କୁ ଏକ ବୋଲି ବୋଧ ହେଉଅଛି। ପାଣିନି ପ୍ରଭୃତି ବ୍ୟାକରଣର ସୂତ୍ରକାରମାନେ ଲିଖିତ ଅକ୍ଷର ଧରି ବ୍ୟାକରଣ ଲେଖି ନଥିଲେ। ମୁଖର ଉଚ୍ଚାରଣ ହିଁ ତାଙ୍କ ବ୍ୟାକରଣର ସର୍ବସ୍ୱ। ମାତ୍ର ପରିବର୍ତ୍ତୀ କାଳର ବୈୟାକରଣ ବ୍ୟାକରଣ ଟୀକାରେ ହେଳାରେ ରଖିଗଲେ-

"ଜଳତୁମ୍ବିକା ନ୍ୟାୟେନ ରେଫସ୍ୟୋର୍ଦ୍ଧ୍ୱ ଗମନଂ"

"ଏକବିନ୍ଦୁରନୁସ୍ୱାରଃ" । ଇତ୍ୟାଦି।

ମାତ୍ର ଏ ସବୁ ପ୍ରମାଦ ନିମନ୍ତେ ମୂଳର ସୂତ୍ରକାର, ବୃତ୍ତିକାର, ଏମନ୍ତ କି ଭାଷ୍ୟକାର, କାହାରି ଲେଖାରେ ଲେଶମାତ୍ର ଅବକାଶ ନାହିଁ। 'ରେଫ' ଅର୍ଥାତ୍ 'ର' ମନୁଷ୍ୟର ସ୍ୱରଯନ୍ତ୍ରରୁ ବାହାରିବ। ଜଳତୁମ୍ବିକା ପରି ତାହା ସ୍ୱରଯନ୍ତ୍ରରେ ବା ଉଠିଯିବ କିପରି ? ଅନୁସ୍ୱାର ଗୋଟିଏ ଅନୁନାସିକ ଉଚ୍ଚାରଣ। ତାହା ସ୍ୱରଯନ୍ତ୍ରରେ ଗୋଟିଏ ବିନ୍ଦୁ ନୁହେଁ। ପୁଣି ଦେବନାଗର

ଅକ୍ଷରରେ ତାହା ବିନ୍ଦୁ। ବଂଗଳାରେ ଆଉ ଗୋଟିଏ ଲାଞ୍ଜ ଅଛି। ତେବେ ବଂଗାଳୀଙ୍କ ଅନୁସ୍ୱାର କ'ଣ ସଂସ୍କୃତଭାଷୀଙ୍କ ଅନୁସ୍ୱାରଠାରୁ ଭିନ୍ନ? ଏ ସବୁ ପ୍ରମାଦର ବିଶେଷ ଆଲୋଚନା ନିଷ୍ପ୍ରୟୋଜନ। କ, ମ, ଳ, ଏହି ତିନୋଟି ଅକ୍ଷର ସଙ୍ଗେ ପଦ୍ମଫୁଲର ଯେ ସମ୍ବନ୍ଧ ଅକ୍ଷର ସଂଗେ ବର୍ଣ୍ଣର ପ୍ରାୟ ସେହିପରି ସଂବଂଧ। କ, ମ, ଳ, ଏହି ତିନୋଟି ଅକ୍ଷରରେ ଆମୋଦ ନାଇ। ସେଥିରେ ଚାରୁକିଞ୍ଜଳ୍କରୁଚି ବିକାଶ ପାଏ ନାହିଁ। ସେହିପରି ଲିଖିତ ଅକ୍ଷରରେ ବର୍ଣ୍ଣର ଉଚ୍ଚାରଣ ବା ଉଚ୍ଚାରଣର ପ୍ରାଣ ଥାଇ ନ ପାରେ। ଅତଏବ ବର୍ଣ୍ଣର ବିଚାର କଲାବେଳେ ଉଚ୍ଚାରଣ ହିଁ ଆଦୌ ବିଚାର୍ଯ୍ୟ। ଲିଖିତ ଅକ୍ଷର ଚିହ୍ନ ମାତ୍ର। ତାହାର ସେତିକି ମର୍ଯାଦା ପାଇବା ଉଚିତ।

ଭାଷାର ଆଦି ତେବେ କେଉଁଠାରେ? ଅବଶ୍ୟ ଲେଖନରେ ନୁହେ, ଉଚ୍ଚାରଣରେ। ଲେଖନ ପଦ୍ଧତି ଲୋକମୁଖ ଉଚ୍ଚାରଣର ଅନୁସରଣ କରେ ମାତ୍ର। ଏହି କ୍ରମରେ ଭାଷାର ଅକ୍ଷର ନିୟମ ସ୍ଥିର ହେଲାପରେ ଭାଷାର ସାର୍ବଜନୀନତା ରଖିବାପାଇଁ ଉଚ୍ଚାରଣକୁ କୌଣସି ଆଦର୍ଶରେ ନିବଦ୍ଧ କରିବା ପାଇଁ ଲୋକେ ହୁଏତ ଲିଖିତ ଅକ୍ଷରରୁ ଉଚ୍ଚାରଣ ଶିଖିଥିବେ। ସଂସ୍କୃତ ଭାଷାରେ ଏହି ନିୟମରେ ଲୋକେ ସର୍ବଦା ବର୍ଣ୍ଣର ଲେଖନ ବିକାଶରୁ ତାହାର ନିର୍ଦ୍ଦିଷ୍ଟ ଉଚ୍ଚାରଣ ଶିଖୁଅଛନ୍ତି। କୌଣସି କଥିତ ଭାଷା ବିଦେଶୀ ଲୋକ ଶିଖିଲାବେଳେ ସେହିପରି କରିବେ। ତଥାପି କଥିତ ବା ପ୍ରାକୃତ ଭାଷାମାନଙ୍କରେ ଲୋକମୁଖର ଉଚ୍ଚାରଣରେ ବହୁ ବିଶେଷତ୍ୱ ଅଛି। ଓଡ଼ିଆ, ବଂଗଳା ପ୍ରଭୃତି ପ୍ରାକୃତ ଭାଷାର ସଂସ୍କୃତ ସଂଗେ ନିତ୍ୟ ସଂବଂଧ। ହେଲେହେଁ ଏହି ପ୍ରାକୃତ ଭାଷାମାନଙ୍କରେ ଲୋକମୁଖର ଉଚ୍ଚାରଣ ହିଁ ବର୍ଣ୍ଣ-ବିନ୍ୟାସ ବା ଅକ୍ଷର-ଗଠନର ଆଦର୍ଶ ହେବା ଉଚିତ ବୋଲି ମନେହୁଏ। ସଂସ୍କୃତ ଭାଷାର ଦୃଢ଼ବଦ୍ଧ ପଦ୍ଧତି ଅନେକେ ଏ କ୍ଷେତ୍ରରେ ଯଥା ଅଯଥା ଅନୁକରଣ କରନ୍ତି। ସେପରି ଅନୁକରଣ କରିବାରେ ଜାତିର ପ୍ରତ୍ନଜୀବନ ପ୍ରତି ପ୍ରଂଶସନୀୟ ପ୍ରୀତି ବା ଅନୁରାଗ ଥାଇପାରେ। କିନ୍ତୁ ସମୀଚୀନତା ଅଛି କି ନା ଏହା ବିଶେଷରେ ଆଲୋଚନୀୟ।

ଏ ଆଲୋଚନାରେ ପ୍ରବେଶ କରିବା ପୂର୍ବରୁ ସଂସ୍କୃତଭାଷା ତଥା ତାହାର ବର୍ଣ୍ଣ-ବିନ୍ୟାସ ପଦ୍ଧତିର ପ୍ରକୃତି, ସଂସ୍କୃତ ଓ ପ୍ରାକୃତର ସଂପର୍କ ପ୍ରତି ପ୍ରଣିଧାନ ଦେବାକୁ ହେବ। ଆଦିମ ଅର୍ଥରେ ବୁଝିଲେ 'ସଂସ୍କୃତ'ର ଅର୍ଥ 'ସମ୍+କୃତ୍', ଅର୍ଥାତ୍, ଏକତ୍ରୀକୃତ ଏବଂ ସୂକ୍ଷ୍ମ ପ୍ରୟୋଗରେ ସଂସ୍କୃତର ଅର୍ଥ ପରିଷ୍କୃତ ବା ନବୀନୀକୃତ। ଏହି ଶବ୍ଦାର୍ଥରୁ ପ୍ରତୀତ ହୁଏ, ସଂସ୍କୃତ କଦାପି କୁତ୍ରାପି ଆଦିମ କଥିତ ଭାଷା ନଥିଲା। ପ୍ରାକୃତ ଭାଷା ହିଁ ସର୍ବଦା କଥିତ ଭାଷା। ପାଲି ହେଉ, ମାଗଧୀ ହେଉ, ଶୌରସେନୀ ହେଉ, ପୈଶାଚୀ ହେଉ,

ଓଡ଼ିଆ ବା ବଂଗଳା ହେଉ, ସମସ୍ତେ ପ୍ରାକୃତ, ଅର୍ଥାତ୍ ପ୍ରକୃତି ବା ଲୋକସାଧାରଣଙ୍କ ଦ୍ୱାରା ବ୍ୟବହୃତ।

ପାଲି, ଭାରତର ପ୍ରାଚୀନତମ ପ୍ରାକୃତ ଭାଷା। ଅବଶ୍ୟ ଆଦିମ ବୈଦିକ କାଳରେ ପ୍ରାକୃତ ଭାଷା କିପରି ଥିଲା, ତାହା ଗବେଷଣାପର ତତ୍ତ୍ୱସନ୍ଧିତ୍ସୁମାନଙ୍କର ଅନୁସନ୍ଧେୟ। ସମ୍ଭବତଃ ତାହା ପାଲିଠାରୁ କିଂଚିତ୍ ଭିନ୍ନ ଥିଲା। ମାତ୍ର ଭେଦ ବଡ଼ ବିଶେଷ ନଥିବ। ପୁଣି ଆଧୁନିକ ସଂସ୍କୃତଭାଷା ସୃଷ୍ଟିର ନିତାନ୍ତ ପୂର୍ବବର୍ତୀ ନ ହେଉ ପଛକେ ପାଲି କଦାପି ବହୁପରିମାଣରେ ତା'ର ପରବର୍ତ୍ତୀ ଭାଷା ନୁହେଁ। ଆଧୁନିକ ସଂସ୍କୃତ ଭାଷାର ବ୍ୟବହାର ରାମାୟଣ, ମହାଭାରତ କାଳରୁ ପ୍ରାଚୀନ ନୁହେଁ। କିଂତୁ ସମସ୍ତେ ଜାଣନ୍ତି, ବୁଦ୍ଧଦେବଙ୍କ ଜନ୍ମ ବେଳକୁ ପାଲି ଭାରତୀୟ ଆର୍ଯ୍ୟମାନଙ୍କର କଥିତ ଭାଷା ଥିଲା। ତେବେ ପାଲି ସଂସ୍କୃତ ଠାରୁ ନିତାନ୍ତ ନବୀନ ହେବ କିପରି ? ସମସ୍ତ ଦର୍ଶନ, କାବ୍ୟ, ପୁରାଣ, ନାଟକାଦି ବୁଦ୍ଧ-କାଳ ପରେ ଲିଖିତ ହୋଇଥିବାର ପ୍ରମାଣ ମିଳେ। ଅତି ପ୍ରାଚୀନ ପୁରାଣମାନଙ୍କରେ ମଧ୍ୟ ମଗଧର ନନ୍ଦବଂଶର ଉଲ୍ଲେଖ ଅଛି। ବୁଦ୍ଧ-କାଳର ପ୍ରାୟ ତିନିଶହ ବର୍ଷ ପରେ ମଗଧର ନନ୍ଦବଂଶ। ଏହିପରି ପାଲିଠାରୁ ସଂସ୍କୃତ ଗ୍ରନ୍ଥମାନଙ୍କର ଆଧୁନିକତା ସଂବଂଧରେ ବହୁ ପ୍ରମାଣ ଉଲ୍ଲେଖ କରାଯାଇପାରେ।

ଆଉ ଗୋଟିଏ କଥା। ସଂସ୍କୃତ ନାଟକମାନଙ୍କରେ ପ୍ରାକୃତ ହିଁ ଲୋକସାଧାରଣ ଭାଷା ଏବଂ ସେ ପ୍ରାକୃତ, ପାଲି ନୁହେ। ପାଲି ତୁଳନାରେ ଆଧୁନିକ ମାଗଧୀ, ପୈଶାଚୀ ପ୍ରଭୃତି ବହୁବିଧ ପ୍ରାଦେଶିକ ପ୍ରାକୃତ ଭାଷାର ଉଲ୍ଲେଖ ନାଟକମାନଙ୍କରେ ଦେଖାଯାଏ। ବୋଧହୁଏ, ଯେତେବେଳେ ଭାରତରେ ଆର୍ଯଜାତି ମୁଷ୍ଟିମେୟ ବ୍ରହ୍ମାବର୍ତ ତଥା ସ୍ୱଳ୍ପ-ବିସ୍ତୃତ ବ୍ରହ୍ମର୍ଷି ଦେଶର ସୀମାଲଙ୍ଘନ କରି ବହୁ ବିସ୍ତୀର୍ଣ ଭୂଖଣ୍ଡରେ ବ୍ୟାପ୍ତ ହେଲା ସେତେବେଳେ ଏକ ପ୍ରାକୃତ ଭାଷା ସ୍ୱାଭାବତଃ ପ୍ରାଦେଶିକତା ଓ ବିଭିନ୍ନ ଜାତୀୟ ଲୋକ ସଂସ୍ରବ ହେତୁରୁ ବହୁବିଧ ଭାଷାରେ ପରିଣତ ହେବାକୁ ଲାଗିଲା ଏବଂ ଫଳରେ ଆର୍ଯର ସମୂହ-ଜାତୀୟତା ବିଚ୍ଛିନ୍ନ ହେବାର ଆଶଙ୍କା ହେଲା। ସେତିକିବେଳେ ମନୀଷୀମାନେ ଜାତୀୟ ଭାଷା ଓ ଜାତୀୟ ସାହିତ୍ୟ ସୂତ୍ରରେ ଆର୍ଯଜାତୀୟତା ସଂରକ୍ଷଣ କରିବାକୁ ପ୍ରୟାସ କରି ଦୃଢ଼ ନିୟମବଦ୍ଧ ସଂସ୍କୃତ ଭାଷାର ସୃଷ୍ଟିକଲେ। ସେହି ସଂସ୍କୃତ ଭାଷା ହିଁ ଏପର୍ଯ୍ୟନ୍ତ ଭାରତ ଭୂମିରେ ଆର୍ଯର ମହାଜାତୀୟ ଭାଷା ରୂପେ ପ୍ରତିଷ୍ଠା ପାଉଅଛି। କାହିଁ ମାଲବାରର ଶଙ୍କରାଚାର୍ଯ୍ୟ, କାହିଁ କାଶ୍ମୀରର କଲ୍‌ହନ, କାହିଁ ବା ଉତ୍କଳର ବିଶ୍ୱନାଥ, କାହିଁ ବା କଲ୍ୟାଣର ବିଲ୍‌ହଣ- ସମସ୍ତେ ଏହି ସଂସ୍କୃତ ଭାଷାକୁ ନିଜର ଜାତୀୟ ଭାଷା ମଣି ତହିଁରେ ଗ୍ରନ୍ଥମାନ ଲେଖିଯାଇ ଅଛନ୍ତି।

ସଂସ୍କୃତ ଭାଷାର ଏ ପ୍ରକୃତି ବୁଝିଲେ ତାହାର ନିର୍ଦ୍ଦିଷ୍ଟ ଅପରିବର୍ତ୍ତନୀୟ ବର୍ଣ୍ଣାକ୍ଷର ନିୟମ ବୁଝିବାରେ ଆଉ କିଛି ଅସୁବିଧା ନାହିଁ। ସଂସ୍କୃତକୁ ଦେବଭାଷା କହନ୍ତି। ବାସ୍ତବିକ ଏହା ଅଲୌକିକ ଅପୌରୁଷେୟ ଦେବଭାଷା। ଲୋକମୁଖରେ ଏ ଭାଷାର ଆଦି ବିକାଶ ନୁହେଁ, ଏବଂ ଏହା କଦାପି ଲୋକ ସାଧାରଣର ଭାଷା ହୋଇ ନ ପାରେ। ନିର୍ଦ୍ଦିଷ୍ଟ ନିୟମ ଧରି ଲୋକ ସଂସ୍କୃତ ଭାଷାର ବର୍ଣ୍ଣ-ବିକାଶ ଶିଖି ଆସିଅଛି ମାତ୍ର। ପୁଣି ସଂସ୍କୃତ ଭାଷାର ବର୍ଣ୍ଣ-ନିୟମ ଓ ବିକାଶ-ପଦ୍ଧତି ଅତ୍ୟନ୍ତ ଜଟିଳ ଏବଂ ନିୟମବଦ୍ଧ। ଗୋଟିଏ ମହାଜାତିକୁ ଗୋଟିଏ ଭାଷା ସୂତ୍ରରେ ବାନ୍ଧି ରଖିବାର ଉଦ୍ୟମ ବେଳେ ଭାଷାଟି ଏପରି ନ ହୋଇ ଆଉ କଅଣ ହୋଇପାରେ ? ପୁଣି ଏହାର ଅନ୍ୟତର କାରଣ ମଧ୍ୟ ଅଛି।

ଭାରତ ସର୍ବଦା ପ୍ରାଚୀନତାର ଭକ୍ତ। ପ୍ରାଚୀନତା ମଧ୍ୟରେ ରହି ପୁରାଣ ପ୍ରୀତିର ପାବନ ମହନୀୟ ଅନୁଭୂତି ମଧ୍ୟରେ ଭାରତ ସର୍ବଦା ଜୀବନର ଭୂୟୋବିକାଶ କରିଅଛି। ଯାହା ପ୍ରାଚୀନ, ଭାରତବାସୀ ପକ୍ଷରେ ତାହା ଅଲଂଘନୀୟ ପରମ ପ୍ରମାଣ। ସଂସ୍କୃତ ଭାଷା ସୃଷ୍ଟିର ବହୁ ପୂର୍ବରୁ ବେଦ, ଏବଂ ସେହି ବେଦର ଭାଷା କଳ୍ପିତ ସଂସ୍କୃତଭାଷାର ଆଦର୍ଶ ହୋଇଥିବା ସ୍ୱାଭାବିକ। ଅବଶ୍ୟ ବୈଦିକ କାଳର ପ୍ରାକୃତ ବା ଲୋକମୁଖର ଭାଷା ଆଦର୍ଶ ହୋଇଥିଲେ ସଂସ୍କୃତ ଭାଷାର ପ୍ରକୃତି କଅଣ ହୋଇ ଥାଆନ୍ତା ତାହା ଆଜି କହିହେବନାହିଁ। କିନ୍ତୁ ବୈଦିକ କାଳର କଥିତ ଭାଷା ସେତେବେଳେ ନଥିଲା। ଥିଲା କେବଳ ଶ୍ରୁତି-ପରମ୍ପରା-ଲବ୍ଧ ବେଦ, ବା ବୈଦିକ ସ୍ତବ ସବୁ। ସେ ସବୁ ସ୍ତବ, ସଂଗୀତ; ଏବଂ ସେଥିରେ ହ୍ରସ୍ୱ ଦୀର୍ଘ ବିସର୍ଗାଦିର ପ୍ରାଚୁର୍ଯ୍ୟ ସ୍ୱାଭାବିକ। ଫଳତଃ ସେହି ଅନୁକ୍ରମରେ ବର୍ଣ୍ଣ-ବୈଭବମୟ, ସ୍ୱରସଂଗୀତ- ସଂକୁଳ ସଂସ୍କୃତ ଭାଷାର ସୃଷ୍ଟି। ଲୋକମୁଖର କଥିତ ପ୍ରାକୃତ ଭାଷା ସ୍ୱର- ନିୟମାଦିରେ ସଂସ୍କୃତ ସମାନ ହୋଇ ନ ପାରେ। ପ୍ରାଚୀନତମ ସଂସ୍କୃତର ସମସାମୟିକ ପାଲିଭାଷାରେ ମଧ୍ୟ ଏହା ନଥିଲା। ଯେଉଁମାନେ ପାଲିଭାଷା ଆଲୋଚନା କରନ୍ତି, ସେମାନେ ଜାଣିଥିବେ ପାଲିଭାଷାରେ ବର୍ଣ୍ଣସଂଖ୍ୟା ଏକଚାଳିଶ। ବିସର୍ଗାଦିର କଥା ଦୂରେ ଥାଉ, ଋ, ଌ, ଐ, ଔ, ଏହି ସ୍ୱରମାନଙ୍କର ମଧ୍ୟ ଭାଷାରେ ସ୍ଥାନ ନାଇ। ସମାସ ଓ ସନ୍ଧି ପ୍ରଭୃତି ଅତି ସରଳ ଓ ସ୍ୱାଭାବିକ। ସେ କାଳର ପ୍ରାକୃତ ପାଲିଭାଷାର 'ଐ' ପରିବର୍ତ୍ତରେ 'ଅଇ' ଓ 'ଔ' ପରିବର୍ତ୍ତରେ 'ଅଉ' ପ୍ରଭୃତିର ବ୍ୟବହାର ଦେଖିଲେ ଆଜି ଆମ୍ଭମାନଙ୍କର ପ୍ରଚଳିତ ପ୍ରାକୃତ ଓଡ଼ିଆ ଭାଷାର କଥା ସ୍ୱତଃ ମନେ ପଡ଼େ।

ଓଡ଼ିଆ ଭାଷାର ବର୍ଣ୍ଣ ବିଚାର ସବଂଧରେ କିଛି କହିବାକୁ ଗଲାବେଳେ ଆଉ ଗୋଟିଏ ପ୍ରମାଦର କଥା ସ୍ପଷ୍ଟ ଉଲ୍ଲେଖ କରି ରଖିବା ଅସଙ୍ଗତ ନୁହେଁ। ଅନେକ ଗତାନୁଗତିକ

ନ୍ୟାୟରେ ବୁଝନ୍ତି, ସଂସ୍କୃତ ହିଁ ଆର୍ଯ୍ୟର ମୂଳଭାଷା। ପ୍ରାକୃତ ସବୁ ତାହାର ବିକୃତି। ଏହା ଆଜି ନୁହେଁ, ଅନେକ ଦିନରୁ ଭାରତବାସୀ ବୁଝି ଆସୁଅଛନ୍ତି। ବାସ୍ତବିକ ଅନେକ ପଣ୍ଡିତଙ୍କର ଏହାହିଁ ଧାରଣା ଥିଲା, ଅପୌରୁଷେୟ ବେଦର ଭାଷାରୁ ଦେବଭାଷା ସଂସ୍କୃତର ଉତ୍ପତ୍ତି। ସେ ଭାଷାକୁ ଭକ୍ତି କରିବା ହିଁ ମାନବର କାର୍ଯ୍ୟ। ତାହାର ମୂଳ ପ୍ରକୃତି ବିଶ୍ଳେଷଣ ସମ୍ବନ୍ଧରେ ପ୍ରଶ୍ନ କରିବ କିଏ? ପୁଣି ଭାରତର ପ୍ରାଚୀନ ଜାତୀୟ ସାହିତ୍ୟରେ ପ୍ରାକୃତ ଭାଷାର ବା ସ୍ଥାନ କାହିଁ? ଭାରତଗୌରବ ବୁଦ୍ଧଦେବ ସେହି ଭାଷା ବ୍ୟବହାର କରିଥିବାରୁ ସମ୍ଭବତଃ ଜନ୍ମଭୂମିରେ ଅନାଦୃତ ହୋଇଅଛନ୍ତି। ଆଉମାନଙ୍କ କଥା ଦୂରେ ଥାଉ, ସ୍ୱୟଂ ପ୍ରାକୃତ ବ୍ୟାକରଣକାର କହି ଅଛନ୍ତି-

"ପ୍ରକୃତିତସ୍ତୁସଂସ୍କୃତେର୍ବିକୃତିଃ ବିକୃତିଃ ପ୍ରାକୃତୀ ମତା"

ଅର୍ଥାତ୍ ପ୍ରକୃତି, ଅର୍ଥାତ୍ ଲୋକସାଧାରଣଙ୍କ ମୁଖରେ ସଂସ୍କୃତର ଯେ ବିକୃତି ହେଲା, ତାହାହିଁ ପ୍ରାକୃତଭାଷା। ଏହି ଧାରଣାର ବଶବର୍ତ୍ତୀ ହେଲେ, କଥିତଭାଷା ଯାହା ହେଉ, ତାହାର ଲେଖନ ଉଚ୍ଚାରଣ ମୁଖଭଙ୍ଗୀ ପ୍ରଭୃତିରେ ସଂସ୍କୃତର ଅନୁକରଣ କରି ପଣ୍ଡିତମନ୍ୟତାରେ ସ୍ଫୀତ ହେବା ଲୋକ ପକ୍ଷରେ ସ୍ୱାଭାବିକ। ଭାରତ ସମାଜର ଅତି ନିୟମବଦ୍ଧ ଜାତିବିଭାଗ ସଂଗେ ଏ ଅନୁଭବଟି ମଧ୍ୟ ଖାପ ଖାଉଅଛି ଏବଂ ଫଳରେ କେବଳ କେତେକ ଉଚ୍ଚ ଜାତିଙ୍କ ମଧ୍ୟରେ ବିଦ୍ୟା ଓ ଶାସ୍ତ୍ର ଚର୍ଚ୍ଚାଦି ସୀମାବଦ୍ଧ ହୋଇ ରହିଅଛି। ଆଜି ଯେଉଁମାନେ ପ୍ରାକୃତ ଭାଷାର ପ୍ରକୃତି ନ ବୁଝି ସଂସ୍କୃତର ମୂଳ ବିଶ୍ଳେଷଣ ପ୍ରତି ସମ୍ଭବତଃ ପାରମ୍ପର୍ଯ୍ୟ- ଉକ୍ତି ପ୍ରଭାବରେ ପରାଙ୍ମୁଖ ହୋଇ ସେହି ଗତାନୁଗତିକ ନ୍ୟାୟରେ ଚାଲୁଅଛନ୍ତି, ସେମାନଙ୍କ ବିଚାରରେ ମୌଳିକତାର ଏକାନ୍ତ ଅଭାବ ଦେଖି କେବଳ ବ୍ୟଥିତ ହେବାକୁ ହୁଏ।

ଓଡ଼ିଆ, ପ୍ରାକୃତ ବା ଉତ୍କଳ ସାଧାରଣର କଥିତଭାଷା। ଅତଏବ ଏହାର ବର୍ଣ୍ଣବିନ୍ୟାସ ସର୍ବଦା ଲୋକମୁଖରୁ ଗୃହୀତ ହେବ। ଅକ୍ଷରର ଉଚ୍ଚାରଣ ମଧ୍ୟ ଲୋକମୁଖ ଉଚ୍ଚାରଣର ଅନୁରୂପ ହେବା ଉଚିତ। ତାହା ନ ହେଲେ ଭାଷାର ଜୀବ, ଶକ୍ତି ଓ ବର୍ଦ୍ଧିଷ୍ଣୁତା ପ୍ରତିବନ୍ଧ ହେବାର ଆଶଙ୍କା ଅଛି। ସଂସ୍କୃତ ଭାଷାର ଉଚ୍ଚାରଣ ନିୟମରେ ଓଡ଼ିଆର ବର୍ଣ୍ଣବିନ୍ୟାସ କଲେ ଆମ୍ଭମାନଙ୍କର ଉଚ୍ଚାରିତ ଭାଷା ଲୋକରେ ଦୂରଧିଗମ୍ୟ ହେବ। ପକ୍ଷାନ୍ତରେ ଆମ୍ଭମାନଙ୍କର ଲିଖିତ ଭାଷା ଲୋକର ଉଚ୍ଚାରଣରେ ଉଚ୍ଚାରିତ ନ ହେଲେ ତାହା ଯେ କେବଳ ଜାତୀୟ ଭାଷା ନ ହେବ ଏମନ୍ତ ନୁହେଁ, ଭାଷାର ସ୍ଥାୟିତ୍ୱ ଓ ସାର୍ବଜନୀନତା ବିନଷ୍ଟହେବ। କୌଣସି ବିଦେଶୀ ଆମ୍ଭ ଭାଷା ଶିଖି ପାରିବେ ନାହିଁ।

ଶିଖିଲେ ମଧ୍ୟ ଉଚ୍ଚାରଣ ଦୋଷରୁ ଆମ୍ଭମାନଙ୍କ ଲୋକଙ୍କ ସଂଗେ କଥାବାର୍ତ୍ତା କରିପାରିବେ ନାହିଁ। ଆମ୍ଭମାନଙ୍କର ସୁପରିଚିତ ଇଂରେଜି ଭାଷାରେ ଏ ଦୁଃସହ ଦୋଷ ସ୍ପଷ୍ଟ ଦେଖାଯାଏ। ସେଥିପାଇଁ ସେମାନେ ଅଭିଧାନରେ ବନାନ ଲେଖିସାରି ପୁଣି ଗୋଟିଏ ଉଚ୍ଚାରଣ ଚିହ୍ନାଇ ଥାନ୍ତି, ଏବଂ ଏତେ କାଳ ପ୍ରଚଳନରେ ମଧ୍ୟ ଏହି ଅସୁବିଧା ଦୂର କରିବା ପାଇଁ ଅକ୍ଷର ନିୟମକୁ ଲୋକମୁଖର ଉଚ୍ଚାରଣ ସଂଗେ ସମାନ କରିବା ପାଇଁ ଆଜି ବିଲାତରେ କେତେକ ଲୋକଙ୍କର ତୀବ୍ର ଉଦ୍ୟମ। ଆମେରିକା ଏହା ଏକପ୍ରକାର କରି ସାରିଅଛି। ବାସ୍ତବିକ ତାହା ନ ହେଲେ ଗୋଟିଏ ପ୍ରଚଳିତ ଭାଷା ଜାତୀୟ ଭାଷା ହେବ କିପରି ? ଓଡ଼ିଆର ଲେଖନ ଉଚ୍ଚାରଣ ଭିନ୍ନ ହେଲେ ଲିଖିତ ସାହିତ୍ୟ ଆମ୍ଭମାନଙ୍କର ଜାତୀୟ ସାହିତ୍ୟର କାର୍ଯ୍ୟ କରିବ କିପରି ?

ଓଡ଼ିଆ ଭାଷାର ସଂସ୍କୃତ ଭାଷା ସଙ୍ଗେ ସମ୍ବନ୍ଧ ଅଛି। କିନ୍ତୁ ଓଡ଼ିଆ ବ୍ୟବହାରରେ, ପଦବିନ୍ୟାସରେ ତଥା ଉଚ୍ଚାରଣରେ- କାହିଁରେ ସଂସ୍କୃତ ନୁହେ। ଦିନ ଥିଲା ଯେତେବେଳେ ସଂସ୍କୃତ ଭାଷା କଳ୍ପିତ, ସୁଚିନ୍ତିତ ଜାତୀୟ ଭାଷା ଥିବାରୁ ରାଜଦରବାର ଓ ପଣ୍ଡିତ ସଭାଠାରୁ ମୁଖ୍ୟ ବ୍ୟକ୍ତିମାନଙ୍କର କଥୋପକଥନରେ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା। ଶିକ୍ଷା, ସଭ୍ୟତା ଓ ଶାସ୍ତ୍ରାଲୋଚନା ସେତେବେଳେ କେତେକ ଉଚ୍ଚ ଶ୍ରେଣୀୟ ଲୋକମାନଙ୍କ ମଧ୍ୟରେ ମାତ୍ର ସୀମାବଦ୍ଧ ଥିଲା ଏବଂ ଲୋକସାଧାରଣର ଆଚାର ବ୍ୟବହାର, ପ୍ରକ୍ରିୟା ପଦ୍ଧତି, ଶିକ୍ଷା ସଭ୍ୟତା, ଏପରିକି ସମସ୍ତ ଜାତୀୟ ଜୀବନଟା ସମାଜର ସେହି ଉଚ୍ଚ ଶ୍ରେଣୀର କେତେକ ଲୋକଙ୍କ ହସ୍ତରେ କ୍ରୀଡ଼ନକ ପରି ଥିଲା। ଲୋକେ ସର୍ବଦା ଜୀବନର କିଞ୍ଚିତ୍ ପରିଣତ ବୟସରେ ନାଟକିତ ପରି ସଂସ୍କୃତ ଭାଷାରେ କଥୋପକଥନ ଆରମ୍ଭ କଲେ ମଧ୍ୟ ସଂସ୍କୃତ ଭାଷା ହିଁ ମୁଖ୍ୟଭାଷା ବୋଲି ବିବେଚିତ ହେଉଥିଲା ଏବଂ ସମାଜର ମୁଖ୍ୟ ବ୍ୟକ୍ତିମାନେ କାଳକ୍ରମେ ପ୍ରାକୃତର ଅସ୍ତିତ୍ୱ ରହିବ ନାହିଁ ବୋଲି ବିଶ୍ୱାସ କରୁଥିଲେ। ମାତ୍ର ବିଶାଳ ପ୍ରକୃତିର ନୈସର୍ଗିକତା ପ୍ରତିରୁଦ୍ଧ ହେବାର ନୁହେଁ। ସହସ୍ର ସହସ୍ର ବର୍ଷବ୍ୟାପୀ କଠୋର ସାଧନାରେ ମଧ୍ୟ ପ୍ରକୃତ ଭାଷାର ଲୋପ ହେଲାନାହିଁ। ସଂସ୍କୃତ ତାକୁ ପ୍ରଭାବିତ କରିଅଛି। କିନ୍ତୁ ନିର୍ମୂଳ କରି ଉଠାଇ ଦେଇ ପାରିନାହିଁ। ଭାରତର ସେ ଯୁଗରେ, ଏତେକାଳ କଠୋର ସାଧନାରେ ଯାହା ହୋଇନାହିଁ ଆଜି ତାହା ହେବ କି ? ତେବେ ଯେଉଁମାନେ ଉଚ୍ଚାରଣ, ବର୍ଣ୍ଣବିନ୍ୟାସ ତଥା ବାକ୍ୟଗଠନ ପ୍ରଭୃତି ପ୍ରକ୍ରିୟାରେ ସଂସ୍କୃତର ଅନୁକରଣ କରିବେ, ସେମାନଙ୍କର କେବଳ ପୁରୋଦୃଷ୍ଟିର ଅଭାବ ବୁଝିବାକୁ ହେବ। ସେମାନେ ହୁଏତ ଇତିହାସର ଯଥାଯଥ ଆଲୋଚନା କରିବାରେ ଅକ୍ଷମ, କିମ୍ବା ଅତ୍ୟନ୍ତ ରକ୍ଷଣଶୀଳତା

ହେତୁରୁ ତାଙ୍କର ପୁରୋଦୃଷ୍ଟି ଭୂୟୋଦର୍ଶନ ଉପରେ ସୁପ୍ରତିଷ୍ଠିତ ହେଉନାହିଁ। ଫଳତଃ ସେମାନଙ୍କର ବିଡ଼ମ୍ବିତ ଉଦ୍ୟମ ଚିନ୍ତାହୀନତାର ଲକ୍ଷଣ ମାତ୍ର।

ପୁଣି ଭାରତୀୟ ଜାତୀୟତାରେ ଆଉ ଗୋଟିଏ ସ୍ୱତନ୍ତ୍ର ବିଭାବ ଫୁଟି ଉଠିଅଛି। ବ୍ୟାକରଣ ନିବନ୍ଧ ସଂସ୍କୃତ ଯେତେ ଦିନ ଭାରତର ଜାତୀୟ ଭାଷା ଥିଲା, ତେତେ ଦିନ ଜାତୀୟ ଜୀବନରେ କେବଳ ନିୟମ ଓ ବିଧିବଦ୍ଧ ଅନୁଷ୍ଠାନ ପ୍ରବଣତା ହିଁ ପରମ ଲକ୍ଷଣ ରୂପେ ପ୍ରତିଭାତ ହେଉଥିଲା। ଆଜି ଯେ କାରଣରୁ ହେଉ, ଜୀବନକ୍ରିୟାରେ ପରିବର୍ତ୍ତନ ଘଟିଅଛି। ଜାତୀୟ ଜୀବନର ଧାରା ନିର୍ଦ୍ଦିଷ୍ଟ ରୀତି ବା ପ୍ରଣାଳୀ ପୂର୍ଣ୍ଣ କରି ଉପକୂଳରେ ଉଚ୍ଛ୍ୱସିତ ଓ ବିସ୍ତୀର୍ଣ୍ଣ ହେଉଅଛି। ଜୀବନର ଏ ତରଳରଙ୍ଗିନତା ତଥା ବିଶ୍ୱପ୍ରାଣ ସଂସ୍ରବଜନିତ ଏ ଉଦାର ଭାବ ଅଯଥା ଅବରୁଦ୍ଧ ହେଲେ ମଙ୍ଗଳ ନାହିଁ। ଆଜି ଲୋକେ ସେଥିପାଇଁ କଥିତ ଭାଷାକୁ ହିଁ ଜାତୀୟ ସାହିତ୍ୟର ଏକମାତ୍ର ଆଧାର ବୋଲି ବୁଝୁ ଅଛନ୍ତି, ଏବଂ ତାହାକୁ ହିଁ ଲୋକସାଧାରଣର ଶକ୍ତି ଉଦ୍‌ବୋଧନରେ ଲଗାଉଅଛନ୍ତି। ତାହା ନ କଲେ ଏ ଜୀବନସଂଘର୍ଷରେ ତିଷ୍ଠିବା ଅସମ୍ଭବ ହୋଇପଡ଼ିବ। ଭାବବିକାଶରେ ଘୋର ନିୟମବଦ୍ଧତା ଆଉ ଚଳିବ କି? ଅତଏବ କଥା ଯାହା ହେବ ଲେଖା ତାହା ହିଁ ପ୍ରକାଶ କରିବା ଉଚିତ। ଲେଖାର ଉଚ୍ଚାରଣ ଲୋକସାଧାରଣଙ୍କ ଉଚ୍ଚାରଣରୁ ଭିନ୍ନ ହେଲେ ଲୋକେ ଭାବରେ ପ୍ରଭାବିତ ହେବେ କିପରି? ଆଜି ଭାଷାର ଯେ ସାହିତ୍ୟ ହେବ ସେ ଆଉ ସ୍ମୃତି ନୁହେଁ ଯେ କେତେକ ମାତ୍ର ଲୋକ ବୁଝି ତାହାର ବ୍ୟବସ୍ଥା ଦେବେ; ସେ ଆଉ ବେଦାନ୍ତ ନୁହେଁ ଯେ ଅନଧିକାରୀର ତହିଁରେ ପ୍ରବେଶ ରହିବ ନାହିଁ; ଶାସ୍ତ୍ର ନୁହେଁ ଯେ କେବଳ କେତେକ ପଣ୍ଡିତଙ୍କର ସ୍ଥିର ସମ୍ପଦ ହୋଇ ରହିବ। ତାହା ମଧ୍ୟ ପୁରାଣ ପରି ହେବା ଉଚିତ ନୁହେଁ। ଓଡ଼ିଆ ଉପନ୍ୟାସକୁ ଓଡ଼ିଆଙ୍କୁ ବୁଝାଇବା ପାଇଁ ଆଉ କଥକ ନିଯୁକ୍ତ ହେବା ଉଚିତ କି? ଜାତୀୟ ସାହିତ୍ୟ ଆଜି ଜାତୀୟ ଲୋକସାଧାରଣଙ୍କର ସମ୍ପଦ ଏବଂ ଜାତିର କଥିତ ଭାଷାରେ ତାହା ପ୍ରକାଶିତ ହେବା ଉଚିତ। ଲୋକ ବ୍ୟବହାର ନିମନ୍ତେ ମଧ ଏହା ହିଁ କରଣୀୟ। କଥାରେ ସମସ୍ତେ କହିବେ 'ମୂସାଜନ୍ତା' ଲେଖା ପଢ଼ି ସଂସ୍କୃତ ଅକ୍ଷର ନିୟମରେ ଉଚ୍ଚାରଣ କରିବେ 'ମୂଷାୟନ୍ତା'। ବଜାରରେ 'ମୂସାଜନ୍ତା' ନ ମାଗି 'ମୂଷାୟନ୍ତା' ମାଗିଲେ ଦୋକାନୀ ଦେବ ତ? ବର୍ତ୍ତମାନ ଲେଖା କଥାର ଏ ପ୍ରଭେଦ ଅନେକେ ଭଲ ବୁଝି ନ ପାରନ୍ତି। କିନ୍ତୁ ମନେକର, ଜଣେ ଜାପାନୀ, ପୁସ୍ତକରୁ ଓଡ଼ିଆ ପଢ଼ିଛନ୍ତି। ସେ ଲେଖାରେ 'ମୂଷାୟନ୍ତା' ପଢ଼ି 'ମୁସାଜନ୍ତା' ଉଚ୍ଚାରଣ କରିବେ କି? ସେ ଯଦି ବଜାରକୁ କିଣିବାକୁ ଆସନ୍ତି ତାଙ୍କର କି ଦଶା ହେବ? ଉତ୍କଳର ମୁଖ୍ୟବ୍ୟକ୍ତିମାନଙ୍କର ବର୍ଣ୍ଣ ବିଚାର ବେଳେ ଏ କଥା ପ୍ରତି ଆଦୌ ପ୍ରଣିଧାନ ଦେବା ଉଚିତ।

ଏ ସମସ୍ତ କଥାରୁ ଅବଶ୍ୟ ବୁଝିବା ଉଚିତ ନୁହେଁ ଯେ, ବର୍ଣ ବିନ୍ୟାସରେ କୌଣସି ନିୟମ ବା ଆଦର୍ଶ ରହିବ ନାହିଁ। ଏପରି କେହି କେହି ବୁଝିବାର ଆଶଂକା ଅଛି। କାରଣ, ସବୁ ଶବ୍ଦ ଲୋକମୁଖର ଉଚ୍ଚାରଣରେ ସମାନ ନୁହେ। ଭିନ୍ନଭିନ୍ନ ସ୍ଥାନର ଓ ନିଜ ନିଜ ଜାତିର ଲୋକେ ଏକ ଶବ୍ଦକୁ ଭିନ୍ନ ଭିନ୍ନ ଭାବରେ ଉଚ୍ଚାରଣ କରନ୍ତି। ପୁଣି ଏକ ପଦାର୍ଥକୁ ଭିନ୍ନ ଭିନ୍ନ ନାମରେ ମଧ୍ୟ କହନ୍ତି। ଏ ସମସ୍ତ ମଧ୍ୟରେ ଗୋଟିଏ ଆଦର୍ଶ ନ ରହିଲେ ଭାଷାର କୌଣସି ସ୍ଥିରତା ରହିବ ନାହିଁ। ପ୍ରତ୍ୟେକ ବ୍ୟକ୍ତିର ଭାଷା ଓ ଲେଖା ଭିନ୍ନ ଭିନ୍ନ ହେଲେ ଭାଷାଟି ଜାତୀୟ ଭାଷା ହେବ ବା କିପରି ? ସେଥିପାଇଁ ଭାଷାର ଆଦର୍ଶ ରହିବ ସତ, କିନ୍ତୁ ସେ ଆଦର୍ଶ କଦାପି ସଂସ୍କୃତ ଭାଷା ହେବନାହିଁ। ଆଦର୍ଶ ଭାଷା ମଧ୍ୟ ଓଡ଼ିଆ ହେବ। ପୃଥିବୀର ଯେ କୌଣସି ଶ୍ରୀସଂପନ୍ନ ପ୍ରାକୃତ ବା ଲୋକମୁଖର ଭାଷା ଆଦର୍ଶହୀନ ହୋଇ ରହି ନ ପାରେ। ଇଂରେଜି ଅଭିଧାନରେ ମଧ୍ୟ ବହୁ ଶବ୍ଦ ପ୍ରାଦେଶିକ ଏବଂ ନୀଚ-ଲୋକାଚାରିତ ବୋଲି ଚିହ୍ନାଇ ଦିଆ ହୋଇଅଛି। ଏଥିରୁ ବୋଧ ହେଉଅଛି, କୌଣସି ସ୍ଥାନରେ ଓ କୌଣସି ଶ୍ରେଣୀ ଲୋକର ମୁଖରେ ଚଳୁଥିବା ଭାଷାକୁ ଆଦର୍ଶ ଧରି, ବାକି ସବୁକୁ ସେହି ମାପକାଠିରେ ବିଚାର କରିବାକୁ ହୁଏ। ମିଡ଼୍‌ଲ୍‌ସେକ୍‌ସ ଓ ଲଣ୍ଡନର ଉଚ୍ଚଶ୍ରେଣୀ ଲୋକଙ୍କର ଭାଷା ଇଂରେଜି ଭାଷାର ଆଦର୍ଶ। ତେଣୁ ଚେମ୍ବର୍‌ସ୍ ପ୍ରକାଶିତ ଅଭିଧାନର ଉଚ୍ଚାରଣ ସର୍ବଦା ସାଧୁ ବୋଲି ଗୃହୀତ ହୁଏ। ଓୟେବ୍‌ଷ୍ଟର୍ ପ୍ରଭୃତି ବଡ଼ ବଡ଼ ଅଭିଧାନ ଥିଲେ ମଧ୍ୟ ଉଚ୍ଚାରଣରେ ସେମାନେ ଆଦର୍ଶ ନୁହନ୍ତି, ଏବଂ ଅକ୍‌ସଫୋର୍ଡ ପରି ଶିକ୍ଷାକେନ୍ଦ୍ରର ଅଭିଧାନ ମଧ୍ୟ ଉଚ୍ଚାରଣରେ ସେହି ଲଣ୍ଡନ ଆଦର୍ଶ ଅନୁବର୍ତ୍ତନ କରିବାକୁ ଚେଷ୍ଟା କରିଅଛନ୍ତି।

ଓଡ଼ିଆ ଭାଷାରେ ସେ ଆଦର୍ଶ ବିଚାର କରିବାରେ ଅନେକଗୁଡ଼ିଏ ସମସ୍ୟାର ସମାଧାନ ଆବଶ୍ୟକ ହେବ। ଏ ସୂଚନାରେ କେବଳ ସମସ୍ୟାଗୁଡ଼ିକର ଯଥାକିଞ୍ଚିତ୍ ଇଙ୍ଗିତ ମାତ୍ର ଦିଆଯାଉଅଛି। ସେମାନଙ୍କର ସମାଧାନ ବହୁବିଚାର ସାପେକ୍ଷ। ଉତ୍କଳର ସୁଧୀମଣ୍ଡଳୀ ଅଚିରେ ସେ ସବୁ ପ୍ରତି ପ୍ରଣିଧାନ ଦେବେ ବୋଲି ଆଶା କରାଯାଏ।

**ସମାହିତବ୍ୟ ବିଷୟର ସୂଚନା-**

୧. ଉତ୍କଳ ଜାତୀୟ ଜୀବନର କେନ୍ଦ୍ର କେଉଁଠାରେ ? ଅର୍ଥାତ୍ କେଉଁ ସ୍ଥାନର ରୀତି ବ୍ୟବହାରାଦି ଉତ୍କଳପ୍ରାଣକୁ ପ୍ରଭାବିତ କରିବାରେ ଅଧିକ ସମର୍ଥ ?

୨. କେଉଁ ସ୍ଥାନର ଭାଷାରେ ବିଦେଶୀ ସଂସ୍ରବ ସବୁଠାରୁ ଊଣା ?

୩. କେଉଁ ଶ୍ରେଣୀରେ ଲୋକେ ସମାଜରେ ସମୂହ ଭାବରେ ସମ୍ମାନିତ ?

୪. ପ୍ରାଚୀନ ଉତ୍କଳର ଗରିମାଦି କେଉଁ ସ୍ଥାନର ଲୋକଙ୍କୁ ଅଧିକ ପ୍ରଭାବିତ କରି ରଖିଅଛି ? ଐତିହାସିକ ଉତ୍କଳର ପରମ୍ପରା କେଉଁଠାରେ ଅଧିକ ରହିଅଛି ? ଇତିହାସ ସମ୍ମାନିତ ଉତ୍କଳର ବଂଶଧର କେଉଁଠାରେ ଅଧିକ ଅଛନ୍ତି ?

୫. ପ୍ରାଚୀନ ସାହିତ୍ୟରେ କେଉଁ ସ୍ଥାନର କେଉଁ ଲୋକଙ୍କ ଭାଷା ବହୁତ ପ୍ରଚାର ଲଭିଅଛି ।

୬. କେଉଁ ସ୍ଥାନର କେଉଁ ଲୋକଙ୍କ ଭାଷାକୁ ଅଦ୍ୟାପି ଲୋକେ ବିଶେଷ ଆଦର ଓ ସମ୍ମାନ କରନ୍ତି ?

୭. ଭୌଗୋଳିକ ଓ ରାଜନୈତିକ ଭାବରେ କେଉଁଠାରେ ବାହାରର ଶକ୍ତି ଓ ପ୍ରଭାବ ଅଧିକ ପ୍ରବେଶ କରୁନାହିଁ ? ଇତ୍ୟାଦି ଏବଂ ଏହିଭଳି ବହୁ ବିଷୟରେ ଆଲୋଚନା କରି ଆଦର୍ଶ ସ୍ଥିର କରିବାକୁ ହେବ ।

ସାଧୁ ଓଡ଼ିଆ ଭାଷାର ଆଦର୍ଶ ସ୍ଥିର ହେଲେ ପ୍ରାଦେଶିକ ଓ ଗ୍ରାମ୍ୟ ବା ଅତିଜାନପଦ ଭାଷା ଓ ଶବ୍ଦାଦି ସ୍ଥିରହେବ । ଆଜିକାଲି ବେଳେ ବେଳେ ପରୀକ୍ଷା ପ୍ରଶ୍ନାଦିରେ ପଡ଼େ 'ଚାଉଳ'ର ସାଧୁଶବ୍ଦ ଲେଖ । ପରୀକ୍ଷାର୍ଥୀ ଉତ୍ତରରେ ଲେଖେ 'ତଣ୍ଡୁଳ', ଏବଂ ତାହାହିଁ ପ୍ରକୃତ ଉତ୍ତର ବୋଲି ଧରାହୁଏ । କିନ୍ତୁ ସଂସ୍କୃତ ଓଡ଼ିଆର ସାଧୁଭାଷା ନୁହେଁ । 'ଆମେ' ନ ଲେଖି 'ଅହଂ' ଲେଖିଲେ କଦାପି ସାଧୁ ଓଡ଼ିଆ ଲେଖା ହୁଏ ନାହିଁ । ବରଂ 'ନରଦୀ' ପରିବର୍ତ୍ତରେ 'ହଳଦୀ' ଲେଖିବା ସାଧୁଭାଷା ବୋଲି କୁହାଯାଇପାରେ । ସାଧୁଭାଷାର ଆଦର୍ଶ ରହିବ, କିନ୍ତୁ ବର୍ତ୍ତମାନ କିଏ ସାଧୁ, ତାହା ଆମ୍ଭେ କହୁନାହୁଁ । ପଣ୍ଡିତମାନେ ବିବେଚନା କରି ସମସ୍ୟାର ସମାଧାନ କରନ୍ତୁ ।

ଏ ପ୍ରଶ୍ନର ସମାଧାନ ଓଡ଼ିଶାରେ ହୋଇ ନାହିଁ ସତ, କିନ୍ତୁ ହିନ୍ଦୀ, ମରହଟ୍ଟୀ ପ୍ରଭୃତି ପ୍ରାକୃତ ଭାଷାମାନେ ଲେଖନ ଓ ଉଚ୍ଚାରଣ ଏକ କରିସାରିଛନ୍ତି । ସେମାନେ ସଂସ୍କୃତକୁ ସାଧୁ ପ୍ରାକୃତ ଭାଷାର ମାନଦଣ୍ଡ ବୋଲି ଧରି ନାହାନ୍ତି । ଅକ୍ଷରବିନ୍ୟାସରେ ମଧ ସଂସ୍କୃତର ଅତିଦାସତ୍ୱ ସେମାନଙ୍କ ଭାଷାରେ ଆଦୌ ନାହିଁ । ହିନ୍ଦୀରେ ଲେଖାହୁଏ ଜୋ(ଯେ), ଜିସ୍ (ଯାହା), ଜାବେଗା (ଯିବ), ହୋ ସକ୍ତା (ହେବାକୁ ଶକ୍ତ) ଇତ୍ୟାଦି । ନାମ ଲେଖିଲା ବେଳେ ସେମାନେ ଲେଖନ୍ତି, 'ରମେସଚନ୍ଦ୍ର', 'ପୁରୁସୋତ୍ତମ' । ଏଥିରେ ସେମାନଙ୍କ ଭାଷାର ପ୍ରାକୃତତା ସୁରକ୍ଷିତ ହେଉଅଛି, ଏବଂ ଭାଷା ଜାତିର ଭାଷା ହେବା ଆଡ଼କୁ ଯାଉଅଛି ।

କେବଳ ବଙ୍ଗଳା ଭାଷାର ଏ କ୍ଷେତ୍ରରେ ବହୁଦିନୁ ପନ୍ଥା ଭିନ୍ନ ହୋଇଥିଲା। ବିଦ୍ୟାସାଗର ପ୍ରଭୃତି ସଂସ୍କୃତିର ଅନୁକରଣରେ ଶବ୍ଦ ଲେଖି ଯାଇଥିଲେ। ତାହା ଏତେଦିନ ଲେଖକମାନଙ୍କୁ ପ୍ରଭାବିତ କରି ଆସିଥିଲା। ଅଳ୍ପଦିନ ହେଲା ସେ ବିଷୟରେ ପ୍ରତିବାଦ ଉଠିଅଛି। ମାତ୍ର ନୂତନ ରୀତି ସମୀଚୀନ ହେଲେ ହେଁ ପ୍ରାଚୀନ ପ୍ରୀତିର ବନ୍ଧ ସହଜରେ ଭାଙ୍ଗି ପାରୁନାହିଁ। ଓଡ଼ିଶାର ବହୁ ମୁଖ୍ୟଲୋକେ ନାନାଭାବରେ ବଙ୍ଗଳାଠାରେ ନିଜକୁ ଋଣୀ ମନେ କରନ୍ତି। କରିବାର ମଧ୍ଯ କାରଣ ଅଛି। କିନ୍ତୁ ସେ ଋଣର ସୀମା ଭୁଲିଯିବା ଠିକ୍ ନୁହେଁ। ବଙ୍ଗଳାରେ ଯେଉଁ ବିଭାଗରେ ଯାହା ହେଲା ଓଡ଼ିଶାରେ ତାହାର ଅନୁକରଣ ଚିରକାଳ ଚାଲିଥିବ- ଏ ଧାରଣା ଅନେକଙ୍କର ଥିବା ବଡ଼ ଆକ୍ଷେପର କଥା। କେତେକ ବାସ୍ତବିକ ଯୁକ୍ତି କରିବାର ଶୁଣାଯାଇଛି- 'ବଙ୍ଗଳାରେ ମଧ୍ଯ ଆଜିଯାଏ ଏ କଥା ହୋଇ ପାରିନାହିଁ।' ଭାଷା ପ୍ରଭୃତି କ୍ଷେତ୍ରରେ ଏପରି କଥା ଅଯଥା ପ୍ରୟୋଗ କରିବାର ଶୁଣିଲେ ଆତ୍ମଗ୍ଲାନି ଓ ଯାତନା ହୁଏ। ବୁଝିବା ଉଚିତ, ଆଲୋଚନାରେ ଅତିଦାସତ୍ୱ ଅବଲମ୍ବନ କଲେ, ଜାତୀୟ ଶକ୍ତି ଜାଗେ ନାହିଁ।

ଉପସଂହାରରେ ଆଉ ଗୋଟିଏ କଥା କହି ରଖିବା ଉଚିତ। କଅଣ ବିଧେୟ, କଅଣ କରିବା ଉଚିତ- ତାହାହିଁ ଏ ପର୍ଯ୍ୟନ୍ତ ପ୍ରାୟତଃ କୁହାଯାଉଅଛି। ମାତ୍ର କେବଳ କୁହାଯାଉଅଛି, ସଂସ୍କୃତର ବହୁ ସାଧନାରେ ମଧ୍ୟ ପ୍ରାକୃତ ଲୋପ ପାଇନାହିଁ। ଲୋକମୁଖର ଭାଷା ଓ ଉଚ୍ଚାରଣ ଲୋପ ପାଇବା ଅସମ୍ଭବ। ଆଜି ଯେଉଁମାନେ ଅକ୍ଷରବିନ୍ୟାସରେ ସଂସ୍କୃତର ଅନୁବୃତ୍ତି ହିଁ ବିଧି ବୋଲି ପ୍ରଚାର କରନ୍ତି, ସେମାନଙ୍କର ଉଦ୍ୟମ କିପରି ଫଳପ୍ରଦ ହେବ, ବିଚାର କରିବା ଉଚିତ। କେତେଗୁଡ଼ିଏ ଦେଶ୍ୟ ଶବ୍ଦ ଅଛି। ତାର ସଂସ୍କୃତ ମୂଳଶବ୍ଦ ସେମାନେ ପାଆନ୍ତି ନାହିଁ। ସେଠାରେ ତ ନିଶ୍ଚୟ ଲୋକମୁଖର ଉଚ୍ଚାରଣ ହିଁ ସେମାନଙ୍କର ଅକ୍ଷର ବିନ୍ୟାସରେ ସମାନ। ତେବେ ଯେଉଁ ବ୍ୟବହୃତ ଶବ୍ଦ ସଂଗେ ସଂସ୍କୃତ ଶବ୍ଦର ସାମଞ୍ଜସ୍ୟ ମିଳେ ବା ସଂପର୍କ ଅନୁମିତ ହୁଏ, ସେହିଠାରେ ସେମାନଙ୍କର ଆପତ୍ତି ହୋଇଥାଏ। ସେଠାରେ ମଧ୍ଯ ଭାଷାର ପ୍ରକୃତି ସେମାନଙ୍କର ନୀତି ରଖି ଦେଉନାହିଁ। ଏହା ସେମାନେ ଦେଖି ଦେଖୁ ନାହାନ୍ତି। ସେମାନେ କହନ୍ତି, ଲବଣରୁ ଲୁଣ ହୋଇଅଛି, ଏବଂ 'ଲୁଣ' ଲେଖିଲାବେଳେ ସେମାନେ ସଂସ୍କୃତର 'ଅବ' ସ୍ଥାନରେ ଓଡ଼ିଆର 'ଉ' ଲେଖିବାକୁ ଆପତ୍ତି କରନ୍ତି ନାହିଁ; କିନ୍ତୁ କହନ୍ତି 'ନୁଆ' ଲେଖନ୍ତି 'ନୂଆ', କହନ୍ତି 'ଜମ', ଲେଖନ୍ତି 'ଯମ', କହନ୍ତି 'ସହେ' ଲେଖନ୍ତି 'ଶହେ'। କେବଳ କେତୋଟି ଦୀର୍ଘ ହ୍ରସ୍ୱ ଓ ୟ,ଶ ପ୍ରଭୃତିରେ ସେମାନଙ୍କ ନୀତି ସୀମାବଦ୍ଧ ରହିଅଛି ମାତ୍ର। ଏହିତକ ହୁଏତ ସେମାନେ

ଛାଡ଼ିବାକୁ ନାରାଜ। ଆଉ କୌଣସିଠାରେ ପ୍ରାକୃତ ପ୍ରଭାବ ତାଙ୍କ କଥା ରଖି ଦେଉନାହିଁ। ହ୍ରସ୍ୱ ଦୀର୍ଘାଦିରେ ମଧ୍ୟ ସେମାନେ ବେଳେ ବେଳେ ଶତ ଚେଷ୍ଟା କରି ନିଜର ବର୍ଣ୍ଣବିନ୍ୟାସ ରଖିବାକୁ ଅକ୍ଷମ ହେଉଅଛନ୍ତି। 'ପ୍ରାଣ ପୁରିଉଠେ', 'ପୁରୁବ ଗଗନ', 'ଚାହାଳୀର ଶୁନ ଏକ' ପ୍ରଭୃତି ଆଜିକାଲି ବହୁ ସ୍ଥଳରେ ପ୍ରାକୃତିକ ଉଚ୍ଚାରଣରେ ଲେଖାହେବା ଆଡ଼ିକି ଚାଲି ଯିବାର ଦେଖାଯାଉଅଛି। ତାହା ଚେଷ୍ଟା କଲେ ମଧ୍ୟ କେହି ବାରଣ କରି ପାରୁନାହିଁ। ତେବେ ଆଉ କେବଳ ରକ୍ଷଣଶୀଳତାର କେତେଗୁଡ଼ିଏ ପରିବଦ୍ଧ ଧାରଣା ଘେନି ବର୍ଣ୍ଣବିନ୍ୟାସରେ ଅନୈସର୍ଗିକ ଉତ୍ପାତ ଓ ବିଭ୍ରାଟ ଘଟାଇ ଜାତୀୟ ଶକ୍ତି କ୍ଷୟ କରିବାରେ କି ଲାଭ ଅଛି? ଯାହା ଉଚିତ ନୁହେଁ, ପୁଣି ପ୍ରକୃତି ଯାହା ରଖି ଦେଉନାହିଁ, ସେଥିର ଆଲୋଚନାରେ ଯେଉଁମାନେ କ୍ରିୟାଗତି ଲକ୍ଷ୍ୟ କରିବାକୁ ଅକ୍ଷମ, ସେମାନଙ୍କର ବିଚାର ନିମନ୍ତେ ଏ ଲୋକଶକ୍ତି ଗଠନ ଯୁଗରେ ଏହି କେତେକ ବିଷୟରେ ଅବତାରଣା କରାଗଲା।

**ଚୀନରେ ପ୍ରଚଳିତ ଶବ୍ଦାକ୍ଷର**

臣 = ସେବକ (Servant)

目 = ଦେଖିଲା (Saw)

来 = ଆସ (Come)

鳥 = ପକ୍ଷୀ ଗୁଡ଼ିକ (Birds)

自 = ଠାରୁ (From)

東 = ପ୍ରାଚ୍ୟ (The eastern)

林 = ବଣିଗୁ (Grove)

[ରାଜଗୁରୁ, ଓଡ଼ିଆ ଲିପି, 'ଓଡ଼ିଆ ଲିପି ଓ ଭାଷା', ପୃ. ୧୫ ରୁ ସଂଗୃହୀତ]



# ଓଡ଼ିଆ ବର୍ଣ୍ଣ ଓ ଲିପି

## ନୀଳକଣ୍ଠ ଦାସ

ଓଡ଼ିଆ ଭାଷାରେ ବର୍ଣ୍ଣର ଶୁଦ୍ଧାଶୁଦ୍ଧତ୍ୱ ବିଚାର ତଥା ପାରିଭାଷିକ ଶବ୍ଦ ତିଆରି କରି ପ୍ରଚାର କରିବା ପାଇଁ ସରକାର ଗୋଟିଏ କମିଟି ଗଢ଼ିଛନ୍ତି। ପଣ୍ଡିତ ନୀଳକଣ୍ଠ ଦାସ ସେହି କମିଟିର ସଭାପତି। ପଣ୍ଡିତ ଗୋପାଳଚନ୍ଦ୍ର ପ୍ରହରାଜ, ପଣ୍ଡିତ ଗୋଦାବରୀଶ ମିଶ୍ର, ଶ୍ରୀଯୁକ୍ତ ଶ୍ୟାମଚନ୍ଦ୍ର ତ୍ରିପାଠୀ, ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପରିଜା, ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି, ଶ୍ରୀଯୁକ୍ତ ଗିରିଜାଶଙ୍କର ରାୟ, ଶ୍ରୀଯୁକ୍ତ ଗୁରୁଚରଣ ମହାନ୍ତି, ଶ୍ରୀଯୁକ୍ତ ମହେଶ ଚନ୍ଦ୍ର ପ୍ରଧାନ, ଶ୍ରୀଯୁକ୍ତ ହରିହର ମଣ୍ଡ, ମୌଲବି ରହେମତ୍ ଅଲି, ଶ୍ରୀଯୁକ୍ତ ରାମଚନ୍ଦ୍ର ମହାପାତ୍ର ପ୍ରଭୃତି ସାହିତ୍ୟିକମାନଙ୍କ ସାହାଯ୍ୟ ମଧ୍ୟ ନିଆଯାଉଛି। ସେମାନେ ଏବେ କେତୋଟି କଥା ନିର୍ଦ୍ଦିଷ୍ଟ ମତ ବୋଲି ପ୍ରାରମ୍ଭିକ ଭାବରେ ପ୍ରକାଶ କରିଛନ୍ତି। ମୋଟାମୋଟି ତାହା ଏହି-

୧) ଓଡ଼ିଆରେ ଅର୍ଥାତ୍ ତଦ୍ଭବ ଦେଶୀ ଓ ବିଦେଶୀ ଶବ୍ଦରେ ଗୋଟିଏ 'ଇ'କାର ଓ ଗୋଟିଏ 'ଉ'କାର ରହିବ । ତାହାର ଉଚ୍ଚାରଣ ହ୍ରସ୍ୱ। ବର୍ତ୍ତମାନ ପାଇଁ ତାହାର ମାତ୍ରା ହ୍ରସ୍ୱ ଇକାର ଓ ହ୍ରସ୍ୱ ଉକାର ହେବ।

୨) ହାତୀ, କୁମ୍ଭୀ, ସପ୍ତଫେଣୀ ପ୍ରଭୃତି ଓଡ଼ିଆ ଇନ୍ ଭାଗାନ୍ତ ଶବ୍ଦ ତଥା ହସ୍ତୀ, ଗୁଣୀ, ଧନୀ ପ୍ରଭୃତି ଇନ୍ ଭାଗାନ୍ତ ଶବ୍ଦ ମଧ୍ୟ ଦୀର୍ଘ ଇ ମାତ୍ରାରେ ପ୍ରକାଶ କରାଯିବ। ହାତୀକୁ, ଗୁଣୀକୁ, ହାତୀମାନେ, ଗୁଣୀମାନେ, କୁମ୍ଭୀପାଣି, ସପ୍ତଫେଣୀବଣ, ଧନୀମାନୀ ପ୍ରଭୃତି ସକଳ ବିଭକ୍ତ୍ୟନ୍ତ ଓ ସମସ୍ତ ପଦରେ ସେହି ଦୀର୍ଘ ଇ ମାତ୍ରା ରହିବ। କିନ୍ତୁ ଏଠାରେ କଥା ହେଲା, ଏହାର ଉଚ୍ଚାରଣ ହ୍ରସ୍ୱ ହେଲେ ମଧ୍ୟ ସଂସ୍କୃତ ନିୟମରେ ଏହାର ପ୍ରଥମା ଏକବଚନ ଏବେ ଦୀର୍ଘ ଇରେ ପ୍ରକାଶ କରଯାଉଚି, ପରେ ଓଡ଼ିଆର ସମସ୍ତ ହ୍ରସ୍ୱଇ ଏହି ଦୀର୍ଘ ଇ ମାତ୍ରାରେ ପ୍ରକାଶ କଲେ ଲେଖା ଓ ଛାପାରେ ସୁବିଧା ହେବ। ମାତ୍ର ଏହା ଲିପି-ସଂସ୍କାରର ଅପେକ୍ଷା ରଖେ।

୩) ବ୍ୟଞ୍ଜନ ପୂର୍ବରୁ ବର୍ଗର ୫ମ ବର୍ଣ୍ଣ ସର୍ବତ୍ର ଅନୁସ୍ୱାରରେ ପ୍ରକାଶିତ ହେବ; କିନ୍ତୁ ଏଠାରେ ପ, ଫ, ଠ ପ୍ରଭୃତିରେ ଅନୁସ୍ୱାର ଦେବା ଏବେ ଅସୁବିଧାଜନକ। ପଙ୍କ,

ଫନ୍ଦା, ଠେଙ୍ଗା ପ୍ରଭୃତିରେ ପ, ଫ ଓ ଠ ପରେ ଅନୁସ୍ୱାର ଦେବା ସୁବଧାଜନକ ନୁହେଁ। ତେଣୁ ଏହି ସବୁ ଅକ୍ଷରର ସୁବିଧାଜନକ ଆକାର ଲିପି ସଂସ୍କାରର ଅଙ୍ଗୀଭୂତ।

୪) ତଦ୍ଭବ ଦେଶୀ ଓ ବିଦେଶୀ ଶବ୍ଦରେ ସବୁ ପ୍ରକାର ସକାର କେବଳ 'ସ'ରେ ପ୍ରକାଶିତ ହେବ। ସେହିପରି ଯାହା, ଯେତେ, ଯଥା, ଯମୁନା ପ୍ରଭୃତିର ଯ 'ଜ'ରେ ପ୍ରକାଶିତ ହେବ। କ୍ଷ ଲେଖାଯିବ ଖ୍ୟ। ସେହିପରି 'ଜ୍ଞ' ଗ୍ୟଁ।

୫) ସମସ୍ତ ତତ୍ସମ ବା ସଂସ୍କୃତରୁ ଆସୁଥିବା ଶବ୍ଦ ବର୍ତ୍ତମାନ ପାଇଁ ସ କାର ଓ ହ୍ରସ୍ୱ ଦୀର୍ଘ ସ୍ୱର ସମ୍ପର୍କରେ ଠିକ୍ ସଂସ୍କୃତରେ ଯେପରି ଅଛି ସେହିପରି ଲେଖିବାକୁ ହେବ। ଇତ୍ୟାଦି।

ଅବଶ୍ୟ ଓଡ଼ିଆରେ ଲିପିର ସଂସ୍କାର ନିତାନ୍ତ ଦରକାର। ଶିଶୁର ଶିକ୍ଷାର ସୁବିଧା ପାଇଁ ଦରକାର, ତଥା ଲେଖକ ଓ ମୁଦ୍ରାକରର ମଧ୍ୟ ଦରକାର। ଓଡ଼ିଆ ଅକ୍ଷର ବିକାଶର ଇତିହାସ ଦେଖିଲେ ସ୍ପଷ୍ଟ ଦେଖାଯାଏ, ଦଶମ ଶତାବ୍ଦୀର କୁଟିଳାକ୍ଷର, ତାଳପତ୍ର ଲେଖାଯୋଗେ ଆଜିର ଓଡ଼ିଆ ଅକ୍ଷରରେ ପରିଣତ ହୋଇଛି। ଉପରର ସିଧା ଗାର ସବୁ ତାଳପତ୍ରଟି ଫାଟିଯିବା ଭୟରେ ଲୋକେ ଗୋଲ କରି ଲେଖୁ ଲେଖୁ କାଳକ୍ରମେ ବର୍ତ୍ତମାନର ଓଡ଼ିଆ ଅକ୍ଷର ହୋଇଯାଇଛି। ଠିକ୍ କେତେଦିନ ହେଲା ଏହା ହୋଇଛି ତାହା ନିର୍ଦ୍ଦେଶ କରାହୋଇନାହିଁ। ମାତ୍ର ଏହା ନିଶ୍ଚିତ ଜଣାପଡ଼ୁଛି, ଖ୍ରୀଷ୍ଟପଞ୍ଚଦଶ ଶତାବ୍ଦୀ ବେଳକୁ ବର୍ତ୍ତମାନ ପରି ଓଡ଼ିଆ ଅକ୍ଷର ଗୋଲ ହୋଇ ସାରିଥିଲା । ତେଣୁ ଆଜିର ଓଡ଼ିଆ ଅକ୍ଷର ପଛରେ ଅନ୍ତତଃ ପାଞ୍ଚଶହ ବର୍ଷର ପରମ୍ପରା ଅଛି। ଏହି ପରମ୍ପରା ସଙ୍ଗେ ନାନା ଅଭିଜାତ ସମ୍ପର୍କ ଓ ପ୍ରତିଷ୍ଠିତ ଭାବ ଜଡ଼ିତ ରହିଛି। ତେଣୁ ଲିପିର ଆଜି ସଂସ୍କାର କରିବାକୁ ହେଲେ ସାରା ଓଡ଼ିଆଭାଷୀ ମୁଲକର ସାକ୍ଷରସାଧାରଣ ବୁଝି ମତ ଦେବା ଉଚିତ। ଅନ୍ତତଃ ବିଶେଷଜ୍ଞମାନଙ୍କ ନବ ଲିପି ଗଠନ କ୍ରିୟାରେ ଲୋକେ ସର୍ବତୋ ଭାବରେ ପ୍ରଭାବିତ ହେବା ଉଚିତ। କାରଣ, ହଠାତ୍ ଲିପିର ଘୋର ସଂସ୍କାର ଆରମ୍ଭ କରିଦେଲେ ଭାଷାର ପ୍ରକାଶ ରାଜ୍ୟରେ ଏହା ଗୋଟିଏ ଘୋର ବିପ୍ଲବ ସୃଷ୍ଟି କରିବ। ସ୍କୁଲ କଲେଜରେ ଚିପି ଭର୍ତ୍ତି କଲେ ମଧ୍ୟ ତାହା ସହଜରେ ଚଳିବ ନାହିଁ - ହୁଏ ଦୁର୍ଲଙ୍ଘ୍ୟ ପ୍ରତିବାଦ ହେବ। ସେଥିପାଇଁ ଏଡ଼େ ବଡ଼ ମୌଳିକ ସଂସ୍କାର କିପରି କାର୍ଯ୍ୟରେ ପରିଣତ ହେବ, ତାହାର ପନ୍ଥା ଠିକ୍ କରିବା ଉଚିତ । ବିଶେଷଜ୍ଞମାନେ ଚିଠା ଦେଇପାରନ୍ତି କିନ୍ତୁ ସମସ୍ୟାର ସମାଧାନ ତାଙ୍କ ହାତେ ନାହିଁ, ରହିବା ଉଚିତ ନୁହେଁ।

ପ୍ରାକୃତ ଭାଷାରେ ବହୁ ପ୍ରାଚୀନ କାଳରେ ମଧ୍ୟ କେବଳ ହ୍ରସ୍ୱସ୍ୱର ଓ ଗୋଟିଏ ମାତ୍ର 'ସ' କାର ତଥା ଜ ଓ ଯ ପାଇଁ ଗୋଟିଏ ମାତ୍ର 'ଜ' କାର ସ୍ୱୀକୃତ ହୋଇଥିଲା। ଓଡ଼ିଆ ପ୍ରାକୃତ ଭାଷା। ତେଣୁ ଓଡ଼ିଆରେ ସେହିପରି ଚଳିବାର ଯୁକ୍ତି ଯଥେଷ୍ଟ । ପ୍ରାକୃତ ଭାଷାରେ ମଧ୍ୟ ଦିନେ ସମସ୍ତ ବୌଦ୍ଧ 'ବିନୟ' ଓ 'ଅଭିଧର୍ମ' ପ୍ରଚାରିତ ହୋଇଥିଲା। ସେଥିରେ ଆବଶ୍ୟକ ମତେ ପରିଭାଷାର ମଧ୍ୟ ଅଭାବ ନ ଥିଲା; ଏପରିକି ସଂସ୍କୃତ ଶବ୍ଦ ସବୁ ସଂସ୍କୃତରୁ ଅଣା ହୋଇ ପ୍ରାକୃତ ଉଚ୍ଚାରଣରେ ତଦ୍‌ଭବ ପରି ଲେଖାଯାଉଥିଲା। 'ପ୍ରବର୍ତ୍ତିତୁ' ନ ଲେଖି ରାଜଶେଖର ଲେଖିଛନ୍ତି 'ପଅଦ୍ଦଉ', 'ସରସ୍ୱତୀ' ନ ଲେଖି ଲେଖିଛନ୍ତି 'ସଅସସଈ' ଇତ୍ୟାଦି। କିନ୍ତୁ କେବଳ ଛନ୍ଦ ନିୟମରେ ସ୍ୱରର ହ୍ରସ୍ୱ ଦୀର୍ଘ ଥିଲା। ତା ନ ରହିବାକୁ ଚାରା ନାହିଁ। ଏବେ ମଧ୍ୟ ଓଡ଼ିଆ ଛାନ୍ଦରେ ତାହା ଅଛି। କିନ୍ତୁ ଓଡ଼ିଆ ଛାନ୍ଦର ପ୍ରକୃତି ସଂସ୍କୃତର ଛନ୍ଦ ନିୟମରୁ ପୃଥକ୍ ଥିବା ହେତୁ ସଂସ୍କୃତର ଦୀର୍ଘ ହ୍ରସ୍ୱ ବିଚାର ଓଡ଼ିଆ ଛାନ୍ଦରେ ନାହିଁ। ଗାୟକର ସ୍ୱରରେ ଦୀର୍ଘ ହ୍ରସ୍ୱ ରହିଛି। ପ୍ରାକୃତର ଛନ୍ଦ କିନ୍ତୁ ସଂସ୍କୃତ ନିୟମରେ ଥିବାରୁ ସଂସ୍କୃତର ଦୀର୍ଘ ଓ ଗୁରୁବର୍ଣ୍ଣସବୁ ପ୍ରାକୃତ ଛନ୍ଦରେ ଅବିକଳ ବ୍ୟବହାର କରାଯାଉଥିଲା। କିନ୍ତୁ ସେତେବେଳେ ଲେଖାରେ ତାହା ହ୍ରସ୍ୱ ଦୀର୍ଘରେ ପ୍ରକାଶ କରାଯାଉଥିଲା କି ନା, କହି ହେଉ ନାହିଁ। ପ୍ରାକୃତ ବ୍ୟାକରଣକାର ସେ ସମ୍ପର୍କୀୟ ଲିପି ସମ୍ବନ୍ଧରେ କିଛି କହି ନାହାନ୍ତି। ହେଲେହେଁ ଓଡ଼ିଆ ଛାନ୍ଦରେ ଲିପିର ଦୀର୍ଘ ହ୍ରସ୍ୱ ବିଚାର ଦରକାର ହୋଇନାହିଁ। ଲେଖା ଓ ଛାପାରେ ଏବେ ୫୦।୬୦ ବର୍ଷ ହେଲା ଯେ ଦୀର୍ଘ ହ୍ରସ୍ୱ ଓ ସକାରାଦିର ବିଚାର ରହିଛି, ତାହା କେବଳ ଅନୁକରଣ; ଆହରଣ ନୁହେଁ। ଓଡ଼ିଆ ଭାଷାର ତଦ୍ୱାରା କୌଣସି ଲାଭ ହୋଇନାହିଁ।

କୂଅ, ନୂଆ ପ୍ରଭୃତି ଆମେ ଦୀର୍ଘ ଉ କାରରେ ଲେଖିବା ଆରମ୍ଭ କରିଥିଲୁ। ସେଇପରି ଲେଖୁଥିଲୁ ନଈ, ଗାଈ, ଗ୍ରୀଷମ, ପୀରିତି (ପୀରତି) ପ୍ରଭୃତି। କିନ୍ତୁ ସଙ୍ଗେ ସଙ୍ଗେ ଲେଖୁଥିଲୁ- ଖିରିପିଠା, ଚିରାଲୁଗା। ପୁଣି ସ୍ତ୍ରୀ ପ୍ରତ୍ୟୟର 'ଈ'ର ଅନୁକରଣରେ ଆମେ ଲେଖୁ ବୁଢ଼ୀ, ମାଲୁଣୀ ତଥା ମେଢ଼ୀ, ମଢ଼ୀ, ତୁଣ୍ଡୀ, ଥାଳୀ, କଳିହୁଡ଼ୀ ପ୍ରଭୃତି। କିନ୍ତୁ ସଙ୍ଗେ ସଙ୍ଗେ ଲେଖୁ ଡିଙ୍କି, ବଗୁଲି, ଖଡ଼ି, ବଢ଼ି, ମରୁଡ଼ି ପ୍ରଭୃତି। ସ ସମ୍ବନ୍ଧରେ ମଧ୍ୟ ସେଇପରି ବିଶୃଙ୍ଖଳା। ଏବେ ଲେଖୁଛୁ ଶେଜ, ଶଗଡ଼ ମାତ୍ର ସଉରୀ, ସାମ, ପରସିବା, କସିବା, ଚୂଡ଼ାଘସା ଇତ୍ୟାଦି।

ଗୀତ, ଶୀତ, ଶୀତଳ ପ୍ରଭୃତିର ଉଚ୍ଚାରଣ ଠାରୁ ଲେଖା ବରାବର ଭିନ୍ନ। କ୍ଷ ଓ ଜ୍ଞର ଉଚ୍ଚାରଣ ଆଦୌ ନାହିଁ, କିନ୍ତୁ ଏସବୁରେ ବନାନ ସମାଧାନ କରିବା ନିତାନ୍ତ ଦରକାର।

ତତ୍ସମ ବା ସଂସ୍କୃତ ଶବ୍ଦକୁ ମୁଖର ଉଚ୍ଚାରଣ ପରି ଲେଖିବାକୁ ହେବ। ଏ ସମସ୍ୟା ମଧ୍ୟ ଏଥିରେ ଜଡ଼ିତ ଅଛି। ଶକଟରୁ ହେଲା ସଗଡ଼। ଏଠାରେ ବ୍ୟଞ୍ଜନ ବର୍ଣ୍ଣର ଉଚ୍ଚାରଣ ଯେପରି ବଦଳିଗଲା, ଗିତନାଟ ବା ଅନ୍ଧକୂପ କହିଲା ବେଳେ ସେହିପରି ଗୀତ ବା କୂପର ସ୍ୱର ଉଚ୍ଚାରଣ ବଦଳିଗଲା। ତେବେ ଶକଟକୁ ଶଗଡ଼ ଲେଖି, ଗୀତକୁ ଗିତ ନ ଲେଖିବା କାରଣ କ'ଣ ? କେହି କହନ୍ତି, ଏପରି ହେଲେ ସଂସ୍କୃତରୁ ସମ୍ବନ୍ଧ ଛିଡ଼ିଯିବ, ନୂତନ ଶବ୍ଦ ତିଆରି କରିବାରେ ଅସୁବିଧା ହେବ। ତେଣୁ ଏସବୁର  ସମାଧାନ ନିମନ୍ତେ ବିଶେଷଜ୍ଞମାନେ କେବଳ ନଜ ମତ ଉପରେ ନିର୍ଭର କରିବା କେତେଦୂର ସଂଗତ ହେବ, ତାହା ଭାବିବାର ଅଛି। ସମସ୍ତ ସଂସ୍କାର ପରଂପରା ସଙ୍ଗେ ପରିସ୍ଥିତି ବିଚାର କରି ଭବିଷ୍ୟତ ମଙ୍ଗଳ ନିମନ୍ତେ କରିବାକୁ ହେବ। ଏ ବିଚାରରେ ଦେଶର ଲୋକେ ସତର୍କ ଭାବରେ ବିଚାର କରିବା ଉଚିତ। ସେହି ରୀତିରେ କାର୍ଯ୍ୟ ହେଉ ବୋଲି ଆମର ମତ।

ଲୌହ ଲେଖନୀ ଚାଳନା



ସୌଜନ୍ୟ : ଇଣ୍ଟରନେଟ୍

♦ ♦ ♦

# ଲିପି

## ଗୋଲୋକ ବିହାରୀ ଧଳ

ମନୁଷ୍ୟର ମୁଖନିଃସୃତ ଧ୍ୱନିକୁ ନେଇ ଭାଷା ତିଆରି ହୋଇଥାଏ ବୋଲି ଭାଷାବିତ୍‌ମାନେ ଯେ କୌଣସି ପ୍ରକାର ଭାଷା ଅଧ୍ୟୟନ ପାଇଁ ସର୍ବପ୍ରଥମେ ଧ୍ୱନି ବିଷୟରେ ଆଲୋଚନା କରିଥାନ୍ତି। କିନ୍ତୁ ଧ୍ୱନି ଅଳ୍ପକାଳ ସ୍ଥାୟୀ ହୁଏ। ତେଣୁ ଲିପି ସାହାଯ୍ୟରେ ଭାଷାକୁ ଅଧିକ କାଳ ସ୍ଥାୟୀ କରିବାର ଚେଷ୍ଟା ଅନେକ କାଳରୁ ଚାଲିଆସିଛି। ଅବଶ୍ୟ ଏକଥା ସତ୍ୟ ଯେ ମନୁଷ୍ୟର ଭାଷା ସୃଷ୍ଟି ତୁଳନାରେ ଲିଖନ ପଦ୍ଧତିର ସୃଷ୍ଟି ମାତ୍ର ଅଳ୍ପ ଦିନର କଥା। ଲିପିସୃଷ୍ଟିର ଇତିହାସ ଖୁବ୍ ସ୍ପଷ୍ଟ ନୁହେଁ। ଆଦିମକାଳରୁ ଗୁମ୍ଫାମାନଙ୍କରେ ପଶୁପକ୍ଷୀମାନଙ୍କର ଯେଉଁ ଚିତ୍ର ଅଛି, ତାକୁ ଅନୁକରଣ କରିବା ପାଇଁ କିମ୍ବା ମନ୍ତ୍ରତନ୍ତ୍ର ସମ୍ବଳିତ ଯାଦୁବିଦ୍ୟା ସାଧନ ପାଇଁ ଛବି ଇତ୍ୟାଦି ଲେଖୁ ଲେଖୁ ମନୁଷ୍ୟ ପ୍ରଥମେ ଲେଖିବାର ଆବଶ୍ୟକତା ଅନୁଭବ କରିଥିବ ବୋଲି ଲିପିବିତ୍‌ମାନେ ଅନୁମାନ କରନ୍ତି।

ମନୁଷ୍ୟମାନଙ୍କର ଇତିହାସରେ ତିନିପ୍ରକାର ଲିଖନପଦ୍ଧତିର ସନ୍ଧାନ ମିଳିଛି। ଇଜିପ୍ଟ, ସୁମେର ଓ ଚୀନରୁ ଯେଉଁ ଲିପିସବୁ ଜନ୍ମଲାଭ କରିଥିଲା ସେମାନଙ୍କର ଉତ୍ସ ଏକ ଥିଲା ବୋଲି ମନେ କରାଯାଏ। କିନ୍ତୁ ଗ୍ରୀକ୍ ଓ ଫୋନେସିଆନମାନଙ୍କ ସାହାଯ୍ୟରେ ଇଜିପ୍ଟର ଲିପି ବିକଶିତ ହୋଇ ଆମ୍ଭମାନଙ୍କ ଦ୍ୱାରା ଅଧୁନା ବ୍ୟବହୃତ ଲିପିମାନଙ୍କରେ ପରିଣତ ହୋଇଛି। ଇଜିପ୍ଟ ଲେଖାରେ ଚିତ୍ରାକ୍ଷର ବ୍ୟବହୃତ ହେଉଥିଲା। ସେଗୁଡ଼ିକୁ ଇଂରେଜିରେ ହିଏରୋଗ୍ଲିଫ (hieroglyph) ବୋଲି କୁହାଯାଏ। ଏହି ଚିତ୍ରାକ୍ଷରରେ ଅନେକ ବସ୍ତୁକୁ ତାହାର ଛବିଦ୍ୱାରା ପ୍ରକାଶ କରାଯାଉଥିଲା, ଅର୍ଥାତ୍ ମୁଣ୍ଡ ବା ହାତ ବୁଝାଇବାକୁ ହେଲେ ଗୋଟାଏ ମୁଣ୍ଡ ବା ହାତର ଚିତ୍ର ଦିଆଯାଉଥିଲା। ଇଜିପ୍ସୀୟ ହିଏରୋଗ୍ଲିଫରେ ପାଞ୍ଚଶହ ଗୋଟି ଛବି ଅକ୍ଷର ବ୍ୟବହୃତ ହେଉଥିଲା। ସେମାନଙ୍କ ମଧ୍ୟରେ ସ୍ୱରବର୍ଣ୍ଣ ପାଇଁ କୌଣସି ଅକ୍ଷର ନଥିଲା।

ହିଏରୋଗ୍ଲିଫ୍ ଚିତ୍ରଲିପିକୁ ଛାଡ଼ିଦେଲେ ଅନ୍ୟ ପ୍ରଧାନ ଲିପି ହେଲା ସୁମେରୀୟମାନଙ୍କ ଦ୍ୱାରା ବ୍ୟବହୃତ କ୍ୟୁନିଫର୍ମ ଲିପି। ଇରାକର ଟାଇଗ୍ରିସ୍ ଓ ଇଉଫ୍ରେଟସ୍ ନଦୀ ମଧ୍ୟସ୍ଥିତ ଅଞ୍ଚଳରେ ସୁମେରୀୟମାନେ ବସବାସ କରୁଥିଲେ। ଏହି ଲିପିକୁ ବାଣମୁଖ, କୀଳକାକ୍ଷର

ବା ତ୍ରିପାର୍ଶ୍ୱିକ ଅକ୍ଷର ବୋଲି କହନ୍ତି। କଞ୍ଚା ମାଟିରେ ସ୍ଲେଟ୍ ପରି ପଟା ତିଆରି କରି ତାହା ଉପରେ କାଠିର ଲେଖନୀ ସାହାଯ୍ୟରେ ଏହି ଅକ୍ଷର ଲେଖାଯାଉଥିଲା। ଏଗୁଡ଼ିକର ଆକୃତି ତିନିକୋଣିଆ ହୋଇଥିବାରୁ ଏଗୁଡ଼ିକୁ ବାଣମୁଖ ବା ତ୍ରିପାର୍ଶ୍ୱିକ ବୋଲି କୁହାଯାଇଛି। ଏସିଆ ମାଇନରରେ ବାସ କରୁଥିବା ଅନେକ ଜାତିର ଲୋକେ ଏହି ଲିପି ବ୍ୟବହାର କରୁଥିଲେ। ଏହି ଲିପି ସୁମେରୀୟାନ୍‌ମାନଙ୍କଠାରୁ ଆକାଡ଼ିଆନ୍‌ମାନଙ୍କ ହାତକୁ ଆସିଥିଲା ଓ ପରେ ହିଟାଇଟ ଲୋକେ ତାକୁ ବ୍ୟବହାର କରିଥିଲେ। କିନ୍ତୁ ଚତୁର୍ଥ ଖ୍ରୀଷ୍ଟାବ୍ଦ ବେଳକୁ ଏହି ଲିପି ଅଚଳ ହୋଇ କାଳକ୍ରମେ ଅଜ୍ଞାତ ଅବସ୍ଥାରେ ରହିଥିଲା। ପୁଣି ଊନବିଂଶ ଶତାବ୍ଦୀରେ ଭାଷାବିତ୍‌ମାନେ ତାହାକୁ ଲୋକଲୋଚନକୁ ଆଣିଥିଲେ।



ହିଏରୋଗ୍ଲିଫ୍

କ୍ୟୁନିଫର୍ମ ଲିପିର ବ୍ୟବହାର ଲୋପ ହୋଇଗଲା, କିନ୍ତୁ ଇଜିପ୍‌ସୀୟ ଲିପି ପ୍ରାଚ୍ୟ ଓ ପାଶ୍ଚାତ୍ୟ ବହୁ ଦେଶରେ ନାନା ଭାବରେ ବିକଶିତ ହୋଇ ଏବେ ମହତ୍ତ୍ୱପୂର୍ଣ୍ଣ ଲିପି ଭାବରେ ପ୍ରଚଳିତ ଅଛି। ଇଂରେଜି, ଗ୍ରୀକ୍, ରୁଷ୍, ସଂସ୍କୃତ ପ୍ରଭୃତି ଭାଷାମାନଙ୍କର ଲିପିର ଇତିହାସ ଏହି ଇଜିପ୍‌ସୀୟ ଲିପିର ଇତିହାସ ସହିତ ଜଡ଼ିତ। ପ୍ରାଚୀନ କାଳରେ ଭୂମଧ୍ୟସାଗରରେ ଯେଉଁ ଫୋନେସୀୟାନ୍‌ମାନେ ବାଣିଜ୍ୟ ବ୍ୟବସାୟ କରୁଥିଲେ ସେମାନେ ଇଜିପ୍‌ସୀୟ ଲିପିକୁ ଗ୍ରୀସ୍, ଆସିରିଆ ଓ ଆରବ ଇତ୍ୟାଦି ଦେଶରେ ପହଞ୍ଚାଇ ଦେଇଥିଲେ। ଗ୍ରୀକ୍‌ମାନେ ଯେତେବେଳେ ଫୋନେସୀୟାନମାନଙ୍କ ଠାରୁ ଅକ୍ଷର ନେଲେ ସେତେବେଳେ ସେମାନଙ୍କ ଭାଷା ପାଇଁ ଯେତିକି ଧ୍ୱନି ଦରକାର ସେତିକି ନେଲେ, କିନ୍ତୁ ରୋମାନମାନେ ଗ୍ରୀକ୍‌ମାନଙ୍କଠାରୁ ଯେତେବେଳେ ଏହି ଲିପି ନେଲେ, ସେତେବେଳେ ଏହି ଲିପି ସେମାନଙ୍କ ପାଇଁ ଯଥେଷ୍ଟ ହୋଇନଥିଲା। ତେଣୁ ରୋମାନ ଲିପିରେ ଲିଖିତ ଲାଟିନ୍ ଓ ଇଂରେଜି ଧ୍ୱନିବିଜ୍ଞାନସମ୍ମତ ହୋଇପାରି ନଥିଲା, ଅର୍ଥାତ୍ ସେମାନଙ୍କର ଧ୍ୱନିମାନଙ୍କଠାରୁ ଅକ୍ଷର ସଂଖ୍ୟା କମ୍ ଥିଲା।

[illegible]

## କ୍ୟୁନଫର୍ମ

ଏଣେ ସେହି ଇଜିପ୍‌ସୀୟ ଲିପି ନାନାଭାବରେ ପରିମାର୍ଜିତ ହୋଇ ଆରାମାଇକ୍, ଆରବିକ୍, ପ୍ରଭୃତି ସେମିଟିକ୍ ଭାଷାମାନଙ୍କ ପାଇଁ ବ୍ୟବହୃତ ହେଲା। ଏହି ସେମଟିକ୍ ଭାଷାର ଗୋଟିଏ ଶାଖାର ଲିପି ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀ ବେଳକୁ ପୂର୍ବ ଆଫଗାନିସ୍ଥାନ ଓ ପଶ୍ଚିମ ପଞ୍ଜାବରେ ପ୍ରଚଳିତ ହୋଇଥିଲା ବୋଲି ପ୍ରଫେସର ଜି.ବ୍ୟୁହଲର କହନ୍ତି। ଏହି ଲିପିର ନାମ ଖରୋଷ୍ଟ୍ରୀ, ଏହା ଦକ୍ଷିଣରୁ ବାମକୁ ଲେଖାଯାଏ। ପୁଣି ଏହି ସେମଟିକ୍ ଲିପିର ଅନ୍ୟ ଏକ ଶାଖାରୁ ଭାରତରେ ଯେଉଁ ଲିପି ପ୍ରଚଳିତ ହୋଇଥିଲା ତାହାର ନାମ ବ୍ରାହ୍ମୀ। ଏହା ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀ ବେଳକୁ ଭାରତରେ ପ୍ରଚଳିତ ହୋଇସାରିଥିଲା ବୋଲି ପ୍ରଫେସର ବ୍ୟୁହଲରଙ୍କର ମତ (History of Sanskrit Literature. A.A Macdonell, 1961. P.15)। ଏହି ବ୍ରାହ୍ମୀଲିପି ଭାରତର ଜାତୀୟ ଲିପି। ଏହା ନାନା ରୂପରେ ନାନା ଭାରତୀୟ ଭାଷାରେ ବ୍ୟବହୃତ ହେଉଛି। ସେମିଟିକ୍ ଲିପିମାଳାରେ ୨୨ଟି ଅକ୍ଷର ଥିଲା। ତାହା ସଂସ୍କୃତରେ ପୂର୍ଣ୍ଣ ଲିପିମାଳାରେ ପରିଣତ ହେବାପାଇଁ ଅନେକ ଦିନ ଲାଗିଥିବ ନିଶ୍ଚୟ। ଖ୍ରୀଷ୍ଟପୂର୍ବ ପାଞ୍ଚଶହ ଶତାବ୍ଦୀବେଳକୁ ବ୍ରାହ୍ମଣମାନେ ଏହି ଲିପିମାଳାକୁ ପୂର୍ଣ୍ଣାଙ୍ଗ କରି ଦେଇଥିବେ ବୋଲି ଅନେକ ସ୍ୱୀକାର କରିଛନ୍ତି। ବ୍ରାହ୍ମୀଲିପି ବାମରୁ ଡାହାଣକୁ ଲେଖାଯାଏ। ଏହି ଲିପି ଦୁଇ ପ୍ରକାର : ଉତ୍ତରବ୍ରାହ୍ମୀ ଓ ଦକ୍ଷିଣବ୍ରାହ୍ମୀ। ଉତ୍ତରବ୍ରାହ୍ମୀ ଲିପି ସହିତ ସଂସ୍କୃତ, ହିନ୍ଦୀ, ମରାଠୀ ଓ ଓଡ଼ିଆ ଇତ୍ୟାଦି ଉତ୍ତର ଭାରତୀୟ ଲିପିଗୁଡ଼ିକ ସଂପୃକ୍ତ ଓ ଦକ୍ଷିଣବ୍ରାହ୍ମୀ ସହିତ ତେଲୁଗୁ, ତାମିଲ, କନ୍ନଡ ଇତ୍ୟାଦି ସଂପୃକ୍ତ।

ବଙ୍ଗଳା, ଅସମୀୟା ପ୍ରଭୃତି ପୂର୍ବୀ ଲିପିଗୁଡ଼ିକ ରୈଖିକ ତଥା ତ୍ରିକୋଣାକାର ହେବାବେଳେ ଓଡ଼ିଆ ଲିପିଗୁଡ଼ିକ ଗୋଲାକୃତ। ଆର୍ଯ୍ୟ ଦ୍ରାବିଡ ଉଭୟ ସଂସ୍କୃତିର ସମନ୍ୱୟରେ ଓଡ଼ିଆ ଅକ୍ଷର ବର୍ତ୍ତୁଳାକାର ହୋଇଛି ବୋଲି କୁହାଯାଉଛି। କ ଘ ଜ ନ ପ ଇତ୍ୟାଦି ଓଡ଼ିଆ ଅକ୍ଷରମାନଙ୍କରେ ଉପରର ଗୋଲାକୃତିକୁ ବାଦ ଦେଇଦେଲେ ତାହା

ଦେବନାଗରୀ ଅକ୍ଷର ପରି ଦେଖାଯିବ। କାଲ୍‌ଡ଼ୀୱେଲ କହନ୍ତି ଯେ ଦ୍ରାବିଡ଼ୀ ଅକ୍ଷରମାନଙ୍କର ପ୍ରଭାବରେ ଓଡ଼ିଆ ଅକ୍ଷର ଗୋଲାକୃତ ହୋଇଛି। ଏହା ଛଡ଼ା ସେ ଆହୁରି କହନ୍ତି ଯେ ଓଡ଼ିଆ ଭାଷା ପୂର୍ବେ ତାଳପତ୍ରରେ ଲୌହ ଲେଖନୀ ସାହାଯ୍ୟରେ ଲେଖା ହେଉଥିବାରୁ ଅକ୍ଷରର ଉପର ଭାଗକୁ ଗୋଲ କରି ଲେଖିବାକୁ ପଡୁଥିଲା। ହିନ୍ଦୀରେ ଯେମିତି ଶିରୋରେଖା କଟାହୁଏ, ସେମିତି ଗାର କାଟିଦେଲେ ହୁଏତ ତାଳପତ୍ର ଫାଟି ଯା'ନ୍ତା, କାରଣ ତାଳପତ୍ରର ତନ୍ତୁଗୁଡ଼ିକ ଲମ୍ବା ଆକାରରେ ଥାଏ। ଜନ୍ ବୀମ୍‌ସ୍ କହନ୍ତି (A Comparative Grammar of the Modern Aryan languages of India) ଯେ ଓଡ଼ିଆ ଅକ୍ଷରମାନଙ୍କ ମଧ୍ୟରେ ଏତେ ସାମ୍ୟ ଅଛି ଯେ ଗୋଟିକୁ ଅନ୍ୟଠାରୁ ଭିନ୍ନ କରି ଚିହ୍ନିବା ଭାରି କଷ୍ଟ। କିନ୍ତୁ ଏହା ଠିକ୍ ବୋଲି ମନେ ହୁଏ ନାହିଁ। କାରଣ ତେଲୁଗୁ, ତାମିଲ ନ ଜାଣିଥିବା ଲୋକ ସେହି ଭାଷାମାନଙ୍କର ଲିପି ଦେଖିଲେ ଏହିପରି ଭ୍ରମରେ ମଧ୍ୟ ପଡିଥାଏ। କିନ୍ତୁ ଏକଥା ସତ୍ୟ ଯେ ଓଡ଼ିଶା ଉତ୍ତର ଏବଂ ଦକ୍ଷିଣ ଉଭୟର ଭାଷା ଓ ସଂସ୍କୃତିର ତୋରଣ ଦ୍ୱାର ରୂପରେ ରହିଥିବାରୁ ଦକ୍ଷିଣର ପ୍ରଭାବ ଓଡ଼ିଆରେ ପରିଲକ୍ଷିତ ହୁଏ। ତା'ଛଡ଼ା ଓଡ଼ିଶା ଅନେକ କାଳ ପର୍ଯ୍ୟନ୍ତ ଦକ୍ଷିଣାଗତ ରାଜାମାନଙ୍କ ଦ୍ୱାରା ଶାସିତ ହୋଇଥିବାରୁ ଏପରି ଘଟିବା ସ୍ୱାଭାବିକ।

ପ୍ରାଚୀନ ଓଡ଼ିଆ ଲିପି ବ୍ରାହ୍ମୀ ଲିପିରୁ ଆଗତ ବୋଲି ଲିପିବିତ୍‌ମାନେ କହନ୍ତି। ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଧଉଳିଗିରିରେ ଅଶୋକଙ୍କର ଓ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଉଦୟଗିରିରେ ଖାରବେଳଙ୍କର ଯେଉଁ ଶିଳାଲିପି ଦେଖାଯାଏ ତାହା ବ୍ରାହ୍ମୀଲିପିରେ ଉତ୍କୀର୍ଣ୍ଣ ହୋଇଛି। ଉଭୟ ଶିଳାଲେଖର ଲିପିଗତ ଉତ୍ସ ଏକ ହେଲେ ମଧ୍ୟ ଅଶୋକଙ୍କ କାଳରୁ ଖାରବେଳଙ୍କ କାଳମଧ୍ୟରେ ବ୍ରାହ୍ମୀ ଲିପିରେ ଯେଉଁ ପରିବର୍ତ୍ତନ ଆରମ୍ଭ ହୋଇଥିଲା, ତାର କେତେକ ଲକ୍ଷଣ ଖାରବେଳଙ୍କ ଶିଳାଲିପିରେ ଦେଖା ପଡିଥିଲା।

ଏହାପରେ ଗୁପ୍ତଯୁଗରେ ଗୁପ୍ତଲିପିର ପ୍ରଚଳନ ଦେଖାଯାଇଥିଲା। କଳାହାଣ୍ଡିରୁ ପ୍ରାପ୍ତ ତୁଷ୍ଟିକରଙ୍କ ତାମ୍ରପତ୍ର, ଗଞ୍ଜାମ ଜିଲାର ଜଉଗଡ଼ର ସୁମଙ୍ଗଳ ଗ୍ରାମରୁ ପ୍ରାପ୍ତ ଧର୍ମରାଜଙ୍କ ତାମ୍ରପତ୍ର ଓ ବାଲେଶ୍ୱର ଜିଲାର ସୋରୋଠାରୁ ପ୍ରାପ୍ତ ରାଜା ଶମ୍ଭୁଯଶଙ୍କ ତାମ୍ରପତ୍ର ଓ ପୁରୀଜିଲାର କଣାସଠାରୁ ପ୍ରାପ୍ତ 'କଣାସ ତାମ୍ରପତ୍ର'ରେ ଗୁପ୍ତଲିପି ବ୍ୟବହୃତ ହୋଇଥିଲା।

ଏହାପରେ ସପ୍ତମରୁ ଦ୍ୱାଦଶ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପ୍ରଚଳିତ ଲିପିର ନାମ ଥିଲା 'କଳିଙ୍ଗ ଲିପି'। ଏହି ଲିପି ଦ୍ରାବିଡ଼ ଲିପିଦ୍ୱାରା ବିଶେଷ ଭାବରେ ପ୍ରଭାବିତ।

ସୋମବଂଶ ଓ ଗଙ୍ଗବଂଶର ରାଜାମାନଙ୍କ ରାଜତ୍ୱ କାଳରେ ଯେଉଁ ରେଖା ଓ କୋଣ ବିଶିଷ୍ଟ ଲିପି ବ୍ୟବହୃତ ହୋଇଥିଲା ତାହାକୁ 'ପ୍ରୋଟୋବେଙ୍ଗଲୀ' ବା 'ପ୍ରତ୍ନବଙ୍ଗୀୟ'

ବୋଲି କୁହାଯାଏ। ଭୁବନେଶ୍ୱରରୁ ପ୍ରାପ୍ତ ଗଙ୍ଗବଂଶୀୟ ସମ୍ରାଟ୍ ନରସିଂହ ଦେବଙ୍କ ତାମିଲ ଓଡ଼ିଆ ଶିଳାଲେଖରେ ଓ ସୋନପୁରରୁ ପ୍ରାପ୍ତ ଭାନୁଦେବଙ୍କ ଶିଳାଲେଖରେ ଏହି କୋଣ ବିଶିଷ୍ଟ ଲିପି ବ୍ୟବହୃତ ହୋଇଛି। 'ପ୍ରୋଟୋବେଙ୍ଗଲୀ' ନାମଟି ପ୍ରଫେସର ଜି.ବ୍ୟୁହଲରଙ୍କ ସୃଷ୍ଟି। ଜି.ଏଚ୍.ଓଝା ତାଙ୍କ 'ପ୍ରାଚୀନ ଲିପିମାଳା' (୧୯୧୮) ପୁସ୍ତକରେ ଓ ଆର.ଡି.ବାନାର୍ଜୀ ତାଙ୍କ 'ଅରିଜିନ୍ ଅଫ୍ ବେଙ୍ଗଲୀ ସ୍କ୍ରିପ୍ଟ' (୧୯୧୯) ପୁସ୍ତକରେ କହିଛନ୍ତି ଯେ ଅସମୀୟା ଓ ବଙ୍ଗଳା ପରି ଓଡ଼ିଆ ଲିପି ମଧ୍ୟ ପ୍ରତ୍ନବଙ୍ଗୀୟ ଲିପିରୁ ଉଦ୍ଭୂତ। କିନ୍ତୁ ଗ୍ରୀୟରସନ୍ କହନ୍ତି ଯେ ଓଡ଼ିଆ ଲିପିନାଗରୀ ଲିପିରୁ ଉଦ୍ଭୂତ ହୋଇ ପଶ୍ଚିମରୁ ସିଧା ଆସି ଓଡ଼ିଶାରେ ବ୍ୟବହୃତ ହୋଇଥିଲା। ଉତ୍ତର ପୂର୍ବ ଭାରତ ବର୍ଷରେ ପ୍ରଚଳିତ ଓଡ଼ିଆ, ବଙ୍ଗଳା, ଅସମୀୟା ଓ ମୈଥିଳୀ ଭାଷାର ଯେଉଁ ପ୍ରତ୍ନରୂପ ଥିଲା, ତହିଁରୁ ଓଡ଼ିଆ, ବଙ୍ଗଳା, ଅସମୀୟା ଓ ମୈଥିଳୀ ଜନ୍ମଲାଭ କରିଥିବ। ତେଣୁ ସେହି ଭାଷାମାନଙ୍କର ପୂର୍ବଲିପିକୁ 'ପ୍ରତ୍ନ-ଉତ୍ତର ପୂର୍ବ-ଭାରତୀୟ' ଲିପି କହିବା ଅଧିକ ସମୀଚୀନ। କିନ୍ତୁ ତା ନ କରି କେହି କେହି ଉଦ୍ଦେଶ୍ୟପୂର୍ଣ୍ଣ ଭାବରେ ତାହାକୁ 'ପ୍ରତ୍ନବଙ୍ଗୀୟ' ବୋଲି କହିଦେବା ଫଳରେ ଭାଷା ବିଷୟ ନେଇ କେତେକ ଭ୍ରାନ୍ତ ଧାରଣା ପ୍ରଚାର ଓ ପ୍ରସାର ଲାଭ କରିଛି। ଓଡ଼ିଆ ବଙ୍ଗଳା ଲିପିକୁ ଏକ ଉତ୍ସରୁ ଜାତ ବୋଲି ଦେଖାଇବାକୁ ଯାଇ କେହି କେହି ଓଡ଼ିଆ ଭାଷାକୁ ବଙ୍ଗଳା ଭାଷାର ଏକ ଶାଖା ବୋଲି କହିବାକୁ ଭୁଲିନାହାନ୍ତି। ବସ୍ତୁତଃ ତାହା ଠିକ୍ ନୁହେଁ। ବ୍ୟୁହଲରଙ୍କ 'ପ୍ରୋଟୋବେଙ୍ଗଲୀ' ଶବ୍ଦଟି ବ୍ୟବହାର ନ କରି ବରଂ ପ୍ରୋଟୋ ବା ପ୍ରତ୍ନ-ଉତ୍ତରପୂର୍ବ ଭାରତୀୟ ଲିପି ବୋଲି କହିଲେ କୌଣସି ପ୍ରକାର ବିବାଦର ଆଶଙ୍କା ରହିବ ନାହିଁ।




(ପ୍ରତ୍ନ-ଉତ୍ତରପୂର୍ବ ଭାରତୀୟ ଲିପି ଓ ଓଡ଼ିଆ)

ଗଙ୍ଗସମ୍ରାଟ୍ ନରସିଂହ ଦେବଙ୍କ ଦାନପତ୍ରରେ ବ୍ୟବହୃତ ତଥାକଥିତ ପ୍ରତ୍ନବଙ୍ଗୀୟ ଲିପିର ଉପରିଭାଗ ସାମାନ୍ୟ ମୋଡ଼ିହୋଇ ଯେଉଁ ଲିପିର ସୃଷ୍ଟି ହୋଇଥିଲା ତାହାକୁ ପ୍ରତ୍ନ-ଓଡ଼ିଆ ଲିପି କୁହାଯାଇପାରେ। କିନ୍ତୁ ସେତେବେଳକୁ ଓଡ଼ିଆ ସମ୍ପୂର୍ଣ୍ଣ ପରିସ୍ଫୁଟ ହେବାପାଇଁ ଆହୁରି ସମୟ ବାକୀ ଥିଲା।

ପୁରୀ ମନ୍ଦିରର 'ଜୟବିଜୟ' ତୋରଣର ଉଭୟ ପାର୍ଶ୍ୱରେ ଓଡ଼ିଆ ଭାଷାରେ ବାରଗୋଟି ଶିଳାଲେଖ ଉତ୍କୀର୍ଣ୍ଣ ହୋଇଛି। ସୂର୍ଯ୍ୟବଂଶୀ ସମ୍ରାଟ୍ କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଓ ପ୍ରତାପରୁଦ୍ର ଦେବଙ୍କ କାଳରେ ବିଭିନ୍ନ କାର୍ଯ୍ୟୋପଲକ୍ଷରେ ଏହି ଶିଳାଲେଖଗୁଡ଼ିକ ଖୋଦିତ ହୋଇଥିଲା। ଏମାନଙ୍କ ମଧ୍ୟରୁ ସର୍ବ ପ୍ରଥମ ଶିଳାଲେଖ ୧୪୩୬ ମସିହାରେ ଖୋଦିତ ହୋଇଥିଲା ବୋଲି ମନମୋହନ ଚକ୍ରବର୍ତ୍ତୀ ସ୍ଥିର କରିଛନ୍ତି। ବର୍ତ୍ତୁଳାକାର ଓଡ଼ିଆ ଲିପିର ଆଦ୍ୟପ୍ରକାଶ ଏହି ଶିଳାଲେଖଗୁଡ଼ିକରେ ହିଁ ହୋଇଥିଲା। ଚତୁର୍ଦ୍ଦଶ ଶତାବ୍ଦୀର ଶେଷ ଓ ପଞ୍ଚଦଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଆ ଭାଷାର ବିକାଶ କାଳରେ ଓଡ଼ିଆ ଲିପିର ବିକାଶ ମଧ୍ୟ ହୋଇଥିଲା।

ସହଯୋଗୀ ଗ୍ରନ୍ଥ ସୂଚୀ :


- Oriya and Assamese (Current Trends in Linguistics, 5 Monton 1970), D. P. Pattanaik.
- Historical Linguistices (1966), Winfred P. Lehmann.
- The Evolution of Oriya Language & Script, K.B. Tripathy.
- ଓଡ଼ିଆ ସାହିତ୍ୟର ଆଦିପର୍ବ (୧୯୬୩) ସୁରେନ୍ଦ୍ର ମହାନ୍ତି।




# ସିଲେବ୍ଲ ବା ଅକ୍ଷର

## ଗୋଲୋକ ବିହାରୀ ଧଳ

ଇଂରେଜିରେ ବ୍ୟବହୃତ ସିଲେବ୍ଲ ଶବ୍ଦଟିକୁ ଓଡ଼ିଆରେ ଅକ୍ଷର କୁହାଯାଇପାରେ। ଧ୍ୱନିବିଜ୍ଞାନରେ ସିଲେବ୍ଲ ଗୋଟିଏ ସମସ୍ୟାମୂଳକ ବିଷୟ ଯାହାର ସଠିକ୍ ନିଷ୍ପତ୍ତି ଏକ କଠିନ ବ୍ୟାପାର (ଧ୍ୱନିବିଜ୍ଞାନ, ୬ଷ୍ଠ ଅଧ୍ୟାୟ)। ତଥାପି ପ୍ରତ୍ୟେକ ଭାଷାରେ ଏହାର ବିଚାରର ଏକ ପଦ୍ଧତି ଅଛି ଓ ସବୁ ଭାଷାରେ ସିଲେବ୍ଲ ବ୍ୟବହୃତ ହେଉଛି।

ସିଲେବ୍ଲ କଥାଟି ସାଧାରଣ ଭାବରେ ବୁଝିବା ପାଇଁ ଗୋଟିଏ ଦୁଇଟି ଉଦାହରଣ ଦିଆଯାଇପାରେ। ଓଡ଼ିଆରେ କ, ଖ, ଗ ପ୍ରତ୍ୟେକ ଗୋଟିଏ ଗୋଟିଏ ଅକ୍ଷର ବା ସିଲେବ୍ଲ। 'କ' କହିଲେ କ୍+ଅ; ଖ ଓ ଗ ସେହିପରି ଯଥାକ୍ରମେ ଖ୍+ଅ ଓ ଗ୍+ଅ, ଗୋଟିଏ ସ୍ୱର ଓ ଗୋଟିଏ ବ୍ୟଞ୍ଜନ। ସିଲେବ୍ଲ ଭିତରେ ଥିବା ସ୍ୱରକୁ ସିଲେବ୍ଲର ମୂଳ ଉପାଦାନ ବା କେନ୍ଦ୍ର ଭାବରେ ଗ୍ରହଣ କରାଯାଏ ଓ ବ୍ୟଞ୍ଜନକୁ ତାହାର ଆଶ୍ରିତ ଭାବରେ ଧରାଯାଏ। ତେଣୁ ଗୋଟିଏ ଶବ୍ଦରେ ଯେତୋଟି ସ୍ୱରଥାଏ, ସେଥିରେ ସେତିକି ଗୋଟି ସିଲେବ୍ଲ ଥାଏ ବୋଲି କୁହଯାଏ। ଉଦାହରଣ ସ୍ୱରୂପ 'କଟକ' କହିଲେ ସେଥିରେ ତିନୋଟି ସ୍ୱର ଅଛି। ତେଣୁ କଟକ ଶବ୍ଦରେ ତିନୋଟି ସିଲେବ୍ଲ ବା ଅକ୍ଷର ଅଛି, ଯଥା- କ, ଟ, କ। କହିବା ଅନାବଶ୍ୟକ ଯେ ପ୍ରତ୍ୟେକ ସ୍ୱର ଗୋଟିଏ ଗୋଟିଏ ସିଲେବ୍ଲ ଯଥା ଅ, ଆ, ଇ। 'ଖାଇବୁ' ଶବ୍ଦରେ ତିନୋଟି ସିଲେବ୍ଲ ଅଛି, ଖା, ଇ, ବୁ; ଏଥିରୁ ଦୁଇଟି ସିଲେବ୍ଲରେ ସ୍ୱର ବ୍ୟଞ୍ଜନ ସହିତ ଓ ବାକୀ ଗୋଟିଏ ସିଲେବ୍ଲରେ ସ୍ୱର ବିନା ବ୍ୟଞ୍ଜନରେ ଅଛି।

ଓଡ଼ିଆ, ବଙ୍ଗଳା, ହିନ୍ଦୀ ଓ ସଂସ୍କୃତ ପ୍ରଭୃତି ଭାଷାରେ ସ୍ୱରମାନଙ୍କ ଛଡ଼ା କ, ଖ, ଗ, ଘ ଇତ୍ୟାଦି ବ୍ୟଞ୍ଜନ ଯେମିତି ଗୋଟିଏ ଗୋଟିଏ ସିଲେବ୍ଲ ଇଂରେଜିରେ b [b], c [s], d [d] ଇତ୍ୟାଦି ବ୍ୟଞ୍ଜନ ସେମିତି ଗୋଟିଏ ଗୋଟିଏ ସିଲେବ୍ଲ ନୁହନ୍ତି। ସେହି ସେହି ଲିପିରୁ ଯେଉଁ ଧ୍ୱନି ଜାତ ହୁଏ ତାହା କୋଷ୍ଠକ ମଧ୍ୟରେ ଦେଖାଇ ଦିଆଯାଇଛି। ସେଥିରେ ଅନ୍ୟ ସ୍ୱର ମିଳିତ ନ ହେଲେ ସେଗୁଡ଼ିକ ଶବ୍ଦରେ ବ୍ୟବହୃତ ହୋଇପାରନ୍ତି ନାହିଁ। ସ୍ୱର ସହିତ ମିଳିତ ହେଲେ ସେମାନେ ସିଲେବ୍ଲ ହୁଅନ୍ତି। ଉଦାହରଣ ସ୍ୱରୂପ b ବା d ଗୋଟିଏ ଗୋଟିଏ ସିଲେବ୍ଲ ନୁହନ୍ତି, କିନ୍ତୁ bee [b:] ଓ door [dc] ପ୍ରତ୍ୟେକ ଗୋଟିଏ ଗୋଟିଏ

ସିଲେବ୍ଲ। ଇଂରେଜି ଓ ସଂସ୍କୃତ ପରି ପୃଥିବୀରେ ଅନେକ ଭାଷା ଅଛି ଯହିଁରେ ଲ ମ ନ [l, m, n] ବ୍ୟଞ୍ଜନ ମଧ୍ୟ ସିଲେବ୍ଲସୂଚକ ସ୍ୱର ପରି ବ୍ୟବହୃତ ହୁଅନ୍ତି। ଉଦାହରଣ ସ୍ୱରୂପ little, mutton ଓ button [litl, m^tn,b^tn]

ଇଂରେଜି ଓ ଅନ୍ୟ କେତେକ ଭାଷାରେ କିପରି ସିଲେବ୍ଲ ବିଭାଜନ ହୁଏ, ତା'ର କେତୋଟି ଉଦାହରଣ ଦେଖନ୍ତୁ।

ଇତାଲିୟନ୍- telegrafo te-le-gra-fo (ଚାରି ସିଲେବ୍ଲ)

ସ୍ପାନିସ୍- desmbolsado de-sem-bol-sa-do (ପାଞ୍ଚ ସିଲେବ୍ଲ)

ଇଂରେଜି- water wa-ter (ଦୁଇ ସିଲେବ୍ଲ)

ଭାଷାତତ୍ତ୍ୱର ପୁସ୍ତକମାନଙ୍କରେ ସିଲେବ୍ଲ ବା ଅକ୍ଷର ବିଶ୍ଲେଷଣ ପାଇଁ c ଓ v ଦୁଇଟି ସଙ୍କେତ ବ୍ୟବହାର କରାଯାଏ, c b ବ୍ୟଞ୍ଜନ ଥିଲେ ତାକୁ ଆବଦ୍ଧ ଅକ୍ଷର (checked syllable) ଓ ଯାହା ଶେଷରେ v ଥାଏ ତାକୁ ମୁକ୍ତ ଅକ୍ଷର (free syllable) କୁହାଯାଏ। ନିମ୍ନରେ କେତେକ ଇଂରେଜି ଓ ଓଡ଼ିଆ ଶବ୍ଦର ଅକ୍ଷର ବିଭାଜନର ଉଦାହରଣ ଦିଆଗଲା।

| | |
|---|---|
| cat - [k∂et]-cvc | ଓଡ଼ିଆ-କନକ - cvcvcv |
| matter [m∂et∂] - cvcv | ମଉସା - c v v c v |
| Come [KΛ m] - cvc | ଆସ୍ - vc |
| an [∂en] - vc | ଆ - v |
| a [ei] - v | |

ଓଡ଼ିଆ ଭାଷାରେ ଥିବା ଶବ୍ଦମାନଙ୍କରୁ ଅନେକ ସଂସ୍କୃତରୁ ଆଗତ ତତ୍‌ସମ ଓ ତଦ୍‌ଭବ ଶବ୍ଦ। ଏହାଛଡ଼ା ହିନ୍ଦୀ, ଉର୍ଦ୍ଦୁ, ଇଂରେଜି ପ୍ରଭୃତି ବିଦେଶୀ ଶବ୍ଦ ମଧ୍ୟ ଅଛି। ଓଡ଼ିଆ ଭାଷାରେ ସିଲେବ୍ଲଗୁଡ଼ିକ ସାଧାରଣତଃ ମୁକ୍ତ, cv କିମ୍ବା କେବଳ v; କାରଣ ଏହି ପ୍ରାୟ ସବୁ ଶବ୍ଦ (ଅଳ୍ପ କେତେକ ଛାଡ଼ିଦେଲେ) ସ୍ୱରାନ୍ତ, ଇଂରେଜି କିମ୍ବା ହିନ୍ଦୀ ପରି ବ୍ୟଞ୍ଜନାନ୍ତ ନୁହନ୍ତି।

ବିଭିନ୍ନ ସଂଖ୍ୟକ ମୁକ୍ତ ଅକ୍ଷର ବିଶିଷ୍ଟ କେତେକ ଓଡ଼ିଆ ଶବ୍ଦ :

| | | |
|---|---|---|
| ଗା | cv | (୧ ଅକ୍ଷର) |
| ଗାଇବା | cv-v-cv | (୩ ଅକ୍ଷର) |
| ଅଭିନିଯୋଗ | v-cv-cv-ev-cv | (୫ ଅକ୍ଷର) |

ଇଂରେଜି, ହିନ୍ଦୀ ଓ ଉର୍ଦ୍ଦୁ ଭାଷାରୁ ଗୃହୀତ ଶବ୍ଦମାନଙ୍କରେ ଶେଷରେ ସ୍ୱର ନ ଥାଇ ବ୍ୟଞ୍ଜନ ଥାଏ। ତେଣୁ ସେପରି ଶବ୍ଦରେ ଆବଦ୍ଧ ଅକ୍ଷର ଦେଖାଯାଏ। ଉଦାହରଣ –

| | |
|---|---|
| ଇଂରେଜି | ସ୍କୁଲ- ccvc |
| | ଅଫିସ୍ – v-cvc |
| ହିନ୍ଦୀ | ଖୁବ୍ -cvc |
| | ଘର୍ – cvc |
| ଉର୍ଦ୍ଦୁ | ତଫାତ୍ – cv-cvc |
| | ଫରକ୍- cv-cvc |

ଓଡ଼ିଆରେ କେତେକ ନିର୍ଦ୍ଦେଶାତ୍ମକ ତଥା ପ୍ରଶ୍ନାତ୍ମକ ଏକାକ୍ଷର ବିଶିଷ୍ଟ ଶବ୍ଦ ଅଛି ଯାହାଦ୍ୱାରା ବକ୍ତା ଓ ଶ୍ରୋତାଙ୍କ ମଧ୍ୟରେ ଖୁବ୍ ଆତ୍ମୀୟତା ବୁଝାଇବା ସଙ୍ଗେ ସଙ୍ଗେ କେତେକ ସ୍ଥଳରେ ଅବିନୟ ଓ ପ୍ରଭୁତ୍ୱ ଇତ୍ୟାଦି ମଧ୍ୟ ବୁଝାଇଥାଏ। ସେପରି ଶବ୍ଦରେ ଆବଦ୍ଧ ଅକ୍ଷରର ଉଦାହରଣ ଦେଖାଯାଏ।

| | | |
|---|---|---|
| ନିର୍ଦ୍ଦେଶାତ୍ମକ | ରଖ୍ | cvc |
| | ଉଠ୍ | vc |
| ପ୍ରଶ୍ନାତ୍ମକ | କ'ଣ ? | cvc |

**ଗ୍ରନ୍ଥ ସୂଚନା :**


- An outline of English Phonetics... Daniel Jones
- ...Phonetics (1947) ... K.L. Pike
- General Phonetics ...R.M.S. Heffner
- Practical Phonetics (1971) J.C. Well & Greta Colson
- Aspiration in Oriya (1966) ...G.B. Dhall
- ଧ୍ୱନି ବିଜ୍ଞାନ (1973) ...ଗୋଲୋକ ବିହାରୀ ଧଳ
- ଓଡ଼ିଆ ଭାଷାତତ୍ତ୍ୱ (1968) ...ପଣ୍ଡିତ ଗୋପୀନାଥ ନନ୍ଦ




# ଅଭିଲେଖର ଭାଷାତାତ୍ତ୍ୱିକ ମୂଲ୍ୟ

## ଗୋଲୋକ ବିହାରୀ ଧଳ

ମନୁଷ୍ୟର ସବୁ ସଭ୍ୟତା ଓ ସଂସ୍କୃତି ମୂଳରେ ଅଛି ତା'ର ଭାଷା। କିନ୍ତୁ ମୁଖନିଃସୃତ ଭାଷା ନିତାନ୍ତ କ୍ଷଣସ୍ଥାୟୀ। ତେଣୁ ତାକୁ ଚିରସ୍ଥାୟୀ ନୋହିଲେ ମଧ୍ୟ ଅପେକ୍ଷାତର ଅଧିକ କାଳ ସ୍ଥାୟୀ କରିବା ପାଇଁ ମନୁଷ୍ୟ ବରାବର ଚେଷ୍ଟା କରିଆସୁଛି। ଆଜିର କାଳି, କଲମ ଓ ଛପାଯନ୍ତ୍ର ଜରିଆରେ ଭାଷାକୁ ଯେମିତି ଲେଖି ରଖାଯାଇଛି, ଯେତେବେଳେ ଏହିସବୁ ସରଞ୍ଜାମ ଆଦୌ ନ ଥିଲା ସେତେବେଳେ ମାଟି ଓ ପଥର ଠାରୁ ଆରମ୍ଭ କରି ବୃକ୍ଷର ପତ୍ର ଓ ବଲ୍‌କଳ ପର୍ଯ୍ୟନ୍ତ ବ୍ୟବହାର କରି ଭାଷାକୁ ସେହିପରି ରକ୍ଷା କରାଯାଉଥିଲା। ଓଡ଼ିଆ ଲୋକେ କାଗଜ ବ୍ୟବହାର କରିବା ପୂର୍ବରୁ ତାଳପତ୍ର ବ୍ୟବହାର କରୁଥିଲେ। ଏବେ ମଧ୍ୟ ଜନ୍ମପତ୍ରାଦି ତାଳପତ୍ରରେ ଲେଖାଯାଇଥାଏ। କିନ୍ତୁ ବହୁପୂର୍ବରୁ ଓଡ଼ିଶାରେ ପଥର ଓ ତମ୍ବାପଟା ଦେହରେ ରାଜନିର୍ଦ୍ଦେଶ, ସନନ୍ଦ ଓ ଦାନପତ୍ର ଇତ୍ୟାଦି ଖୋଦିତ ହେଉଥିଲା। ଆଧୁନିକ ଭାରତୀୟ ଭାଷାମାନଙ୍କ ମଧ୍ୟରେ ମରାଠୀ ଓ ଓଡ଼ିଆ ଏହି ଦୁଇଭାଷାରେ ବହୁତ ଅଭିଲେଖ ଅଛି। ତାମ୍ରଲେଖା ଅପେକ୍ଷା ପ୍ରସ୍ତରଲେଖା ଆମ ଓଡ଼ିଶାରେ ଅଧିକ ପରିମାଣରେ ଦେଖାଯାଏ। ଏହି ପ୍ରକାର ପ୍ରସ୍ତର ଲେଖା ଓଡ଼ିଶାରେ ଓ ଆନ୍ଧ୍ରପ୍ରଦେଶର ଉତ୍ତରାଞ୍ଚଳରେ ବଡ଼ ବଡ଼ ମନ୍ଦିରମାନଙ୍କର ସ୍ତମ୍ଭ ଓ କାନ୍ଥମାନଙ୍କରେ ମିଳିଥାଏ। ଆଜିଯାଏ ଓଡ଼ିଆ ଭାଷାରେ ସମୁଦାୟ ୮୦ଟି ପ୍ରାଚୀନ ଅଭିଲେଖ ଆବିଷ୍କୃତ ହୋଇଛି। ଏଗୁଡ଼ିକ ୧୦୫୧ ମସିହା ଠାରୁ ୧୫୬୮ ମସିହା ମଧ୍ୟରେ ଲିଖିତ। ଏମାନଙ୍କ ମଧ୍ୟରୁ ଗଙ୍ଗବଂଶ ରାଜତ୍ୱକାଳରେ ୧୮ଟି ଓ ସୂର୍ଯ୍ୟବଂଶୀ ରାଜତ୍ୱ କାଳରେ ୫୦ଟି ଓ ଅନ୍ୟାନ୍ୟ ସମୟରେ ବାକିଗୁଡ଼ିକ ଲିଖିତ। ସର୍ବପ୍ରଥମ ଅଭିଲେଖ ୧୦୫୧ ମସିହାରେ ଓ ସର୍ବଶେଷ ଅଭିଲେଖ ୧୫୬୮ରେ ଲିଖିତ।

୧୦୫୧ ମସିହାରେ ଖୋଦିତ ପ୍ରଥମ ଓଡ଼ିଆ ଶିଳାଲେଖର ନାମ ଉରଜାମ୍ ଶିଳାଲେଖ। ଗଙ୍ଗବଂଶୀୟ ରାଜା ବଜ୍ରହସ୍ତ ଦେବଙ୍କର ଏହି ଶିଳାଲେଖ ଶ୍ରୀକାକୁଲାମ୍ ଜିଲ୍ଲାର ଉରଜାଂ ତାଲୁକରେ ପରିଦୃଷ୍ଟ। ନାଗରୀ ଲିପିରେ ଲିଖିତ ଏହି ସଂସ୍କୃତ ଶବ୍ଦ-ପ୍ରଧାନ ଅଭିଲେଖରେ ମଝିରେ ମଝିରେ ମେଲାଣ, କରିଲା, ଧିଲା, ଥିଲାଇ ଇତ୍ୟାଦି ଅଚ୍ଚ

କେତୋଟି ଓଡ଼ିଆ ଶବ୍ଦ ଦେଖାଯାଏ। ଅଳ୍ପ କେତେକ ଅପଭ୍ରଷ୍ଟ ଓଡ଼ିଆ ଶବ୍ଦ ଛଡ଼ା, ପୂର୍ଣ୍ଣାଙ୍ଗ ଓଡ଼ିଆ ବାକ୍ୟ ଦୃଷ୍ଟିରୁ ଓଡ଼ିଆ ଭାଷାର ଅଭିବୃଦ୍ଧି ବିଷୟରେ ଏଥିରେ ବିଶେଷ କିଛି ସମ୍ବାଦ ମିଳେ ନାହିଁ।

କିନ୍ତୁ ତ୍ରୟୋଦଶ ଶତାବ୍ଦୀରେ ନରସିଂହ ଦେବଙ୍କର (୧୨୪୯) ଭୁବନେଶ୍ୱରରୁ ପ୍ରାପ୍ତ ଦ୍ୱୈଭାଷିକ ଶିଳାଲେଖ ଖୁବ୍ ମହତ୍ତ୍ୱପୂର୍ଣ୍ଣ। ଏଥିରେ ଗୋଟିଏ ପାଖରେ ତାମିଲ ଲିପିରେ ଓ ଅନ୍ୟ ପାଖରେ ପ୍ରତ୍ନଓଡ଼ିଆ ଲିପିରେ ଖୋଦନ କରାଯାଇଛି। ଏହି ଶିଳାଲେଖରେ ବିକଶିତ ପୂର୍ଣ୍ଣାଙ୍ଗ ବାକ୍ୟର ନମୁନା ଦେଖାଯାଏ। ଏହା ହିଁ ଶିଳାଲେଖମାନଙ୍କର ଓଡ଼ିଆ ଭାଷା ବିକାଶର ଦ୍ୱିତୀୟ ପର୍ଯ୍ୟାୟ।

ସେହି ଗଙ୍ଗବଂଶର ରାଜତ୍ୱକାଳରେ ନରସିଂହଦେବଙ୍କ ପୁରୀ ତ୍ରିମାଳୀ ମଠ ତମ୍ବାପଟାରେ (୧୩୮୪), ଚତୁର୍ଥ ନରସିଂହ ଦେବଙ୍କ ଶଙ୍କରାନନ୍ଦ ମଠ ତମ୍ବାପଟାରେ (୧୩୯୫) ଓ ସେହି ଚତୁର୍ଥ ନରସିଂହ ଦେବଙ୍କ ଯାଜପୁର ସିଦ୍ଧେଶ୍ୱର ମନ୍ଦିରସ୍ଥ ସ୍ତମ୍ଭର ଅଭିଲେଖରେ ପ୍ରାଚୀନ ଓଡ଼ିଆ ଭାଷାର ବିକାଶ ସ୍ପଷ୍ଟ ସୂଚିତ ହୁଏ। ଓଡ଼ିଆ ଭାଷା ଏହି ଗଙ୍ଗବଂଶୀୟ ରାଜାମାନଙ୍କର ରାଜତ୍ୱକାଳରେ ଯେ ସଂସ୍କୃତ ପ୍ରଭାବରୁ ମୁକ୍ତି ଲାଭ କରି ଜନତାର ଭାଷାର ନିକଟବର୍ତ୍ତୀ ହୋଇପାରିଥିଲା ତାହା ନରସିଂହ ଦେବଙ୍କର ପୁରୀ ତ୍ରିମାଳୀ ମଠ ତମ୍ବାପଟା ଭାଷାରୁ ବେଶ୍ ଜଣାପଡ଼େ। ସେହି ତମ୍ବାପଟାରୁ କେତେକାଂଶ ଏଠାରେ ଦିଆଯାଇଛି। ଏଥିରେ ଗୋଟିଏ ଗ୍ରାମର ସୀମା ବର୍ଣ୍ଣନା କରାଯାଇଛି- "ଦକ୍ଷିଣ ସୀମା। ଭାଖର ସାହି ଗ୍ରାମର ଚକଳିଆ ଅଲଣ୍ଡା ବିଆଳି ଉଠ୍ଥ ଭୂଇଁର ଉତ୍ତର ଦଣ୍ଡା ଅର୍ଦ୍ଧ ବଥପଡ଼ା ଗ୍ରାମର ଉତ୍ତର ରାସଚଛର ଅର୍ଦ୍ଧ ବସାଖଣ୍ଡ ଗ୍ରାମର ଦୋସୀମନ୍ତ ବନ୍ଧ ଉପର ନାଅ ପଥର କଲୁମାଦି କରି ଲଙ୍କବଡ଼ ଗ୍ରାମର ଉତ୍ତର ଗାଳୀ ନଇର ଅର୍ଦ୍ଧ ମକୁଲୁଣ୍ଡାଗ୍ରାମର ନଇତଡ଼ ପାଣିଶିଳା ଖଂଭାର ପୂର୍ବହିଡ଼ ପର୍ଯ୍ୟନ୍ତ ସୀମାନମାଦି କୃତ୍ୱା। [ଦକ୍ଷିଣ ସୀମା। ଆଭାଖର ସାହୀ ଗ୍ରାମର ଚକଳିଆ ଲୁଣ୍ଡା ବିଆଳି ଓନ୍ଧ ଭୁଇର ଉତ୍ତର ଦଣ୍ଡା ଅର୍ଦ୍ଧ। ରଥପଡ଼ା ଗ୍ରାମର ଉତ୍ତର ରାଛର ଅର୍ଦ୍ଧ। ରସାଖଣ୍ଡ ଗ୍ରାମର ଦୋସୀମାନ୍ତ ବନ୍ଧ ଉପର ନାଅଠ (ଳ) ପଥର କଣ୍ଟମାଦି କରି ଲଙ୍କାବଡ଼ ଗ୍ରାମର ଉତ୍ତରମାଳୀ ନଇର ଅର୍ଦ୍ଧ। ମହୁଲୁଣ୍ଡା ଗ୍ରାମର ନଈତଡ଼ ପାଣି ଶିଳା ଖଂଡ଼ାରପୁର ହିଡ଼ ପର୍ଯ୍ୟନ୍ତ ସୀମାନୁମାଦିଂ କୃତ୍ୱା।]

ଗଙ୍ଗବଂଶ ରାଜତ୍ୱକାଳରେ ପ୍ରଥମରେ ଉରଜାଂ ଶିଳାଲେଖ ଓ ଦ୍ୱିତୀୟରେ ତ୍ରିମାଳୀମଠ ଦାନପତ୍ରରେ ଆମ୍ଭେମାନେ ଯଥାକ୍ରମେ ଓଡ଼ିଆ ଭାଷାର ପ୍ରଥମ ଓ ଦ୍ୱିତୀୟ ପର୍ଯ୍ୟାୟର ପରିପ୍ରକାଶ ଦେଖୁ। କିନ୍ତୁ ସୂର୍ଯ୍ୟବଂଶୀ ରାଜାମାନଙ୍କ କାଳରେ, ବିଶେଷତଃ

୧୪୩୫-୧୫୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଓଡ଼ିଆ ଅଭିଲେଖମାନଙ୍କରେ ଓଡ଼ିଆ ଭାଷାର ତୃତୀୟ ତଥା ଶେଷ ପର୍ଯ୍ୟାୟର ବିକାଶର ସୂଚନା ମିଳେ। ୧୪୩୫ ଖ୍ରୀଷ୍ଟାବ୍ଦ ବେଳକୁ ଓଡ଼ିଶାର ପ୍ରଥମ ଗଜପତି ରାଜା ଥିଲେ କପିଳେନ୍ଦ୍ର ଦେବ। ତାଙ୍କରି ରାଜତ୍ୱକାଳରେ ଶାରଳା ଦାସ ତାଙ୍କର ମହାଭାରତକୁ ଯେପରି ଭାବରେ ଲେଖିଥିଲେ ତହିଁରୁ ଓଡ଼ିଆ ଭାଷାର ପୂର୍ଣ୍ଣାଙ୍ଗ ପ୍ରାପ୍ତି ବେଶ୍ ଜଣାପଡୁଥିଲା। ଗଜପତି କପିଳେନ୍ଦ୍ର ଦେବଙ୍କର ଯେଉଁ କୋଡ଼ିଏଟି ଶିଳାଲେଖ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇଛି, ସେମାନଙ୍କ ମଧ୍ୟରୁ ଯେ କୌଣସି ଗୋଟିକର ଭାଷା ପରୀକ୍ଷା କଲେ ସ୍ପଷ୍ଟ ଜଣାଯିବ ଯେ ଗଙ୍ଗବଂଶକାଳୀନ ଓଡ଼ିଆଠାରୁ ସୂର୍ଯ୍ୟବଂଶକାଳୀନ ଓଡ଼ିଆ ବହୁଭାବରେ ମାର୍ଜିତ ଓ ସ୍ୱୟଂସମ୍ପୂର୍ଣ୍ଣ। ତାହାର ଏକ ନମୁନା ତଳେ ଦିଆଗଲା -

ବୀର ଶ୍ରୀ ଗଜପତି ଗୌଡ଼େସର ପ୍ରତାପ କପିଳେସ୍ୱର ଦେବ ମହାରାଜାଙ୍କର ବିଜେ ରାଜ୍ୟେ ସମସ୍ତ ୩୫ ଶ୍ରାହୀ ମେଷ ବୃ ୪ ବୁଧବାରେ। ଭୋ ଜଗର୍ଣାଥ, ତୋହ ସେବକ ଏ ମତ ଜଣାଉଅଛୀ। ରାଇଜଯାକେ ଏ ସାଆନ୍ତମାନଙ୍କୁ ମୁଇଁ ପାଇକ ରାଉତକୁ କରି ବିଉଅ ଧାଲି। ବାଳକାଳୁ ପୋସି ଆଣିଲି। ଏମାନେ ମାତେ ସବୁହେ ଛାଡ଼ିଲେ। ଏମାନଙ୍କୁ ମୁଇଁ ଯେ ଯାହା ଅନୁରୂପେ ବିହୀବି ନିଗୀରିହିବି। ଜଗର୍ଣାଥ, ଏ କଥା ମୋହୋର। ଦୋସ ଅଦୋସ ବିଚାର। (ଖ୍ରୀ ୧୪୬୪, ଅପ୍ରେଲ ୨୫)

ପଞ୍ଚଦଶ ଖ୍ରୀଷ୍ଟାବ୍ଦର କେତେକ ଅଭିଲେଖରେ ଏଠିସେଠି ଗୋଟାଏଅଧେ ଯାବନିକ ଶବ୍ଦ ଦେଖିବାକୁ ମିଳେ। କିନ୍ତୁ ମୋଗଲ ଶାସନ କାଳରେ ଖୋଦିତ ଅଭିଲେଖ ବହୁ ଯାବନିକ ଶବ୍ଦରେ ପୂର୍ଣ୍ଣ ହୋଇଥିଲା, ଏପରି କି ଓଡ଼ିଶାରେ ସମ୍ପୂର୍ଣ୍ଣ ଫରାସୀ ଭାଷାରେ ମଧ୍ୟ ଅଭିଲେଖ ଖୋଦିତ ହୋଇଥିଲା। ସର୍ବପ୍ରଥମ ଉରଜାଂ ଶିଳାଲେଖ ଠାରୁ ଆରମ୍ଭ କରି ୧୫୬୮ରେ ଖୋଦିତ ସର୍ବଶେଷ ଶିଳାଲେଖ ପର୍ଯ୍ୟନ୍ତ ଅଧ୍ୟୟନ କଲେ ସେଥିରୁ କେତେକ ଭାଷାତତ୍ତ୍ୱ ଜ୍ଞାନ ନିଶ୍ଚୟ ଉପଲବ୍ଧ ହେବ। ବର୍ତ୍ତମାନ ଭାଷାତାତ୍ତ୍ୱିକ ଦୃଷ୍ଟିରୁ ସେଗୁଡ଼ିକର ବିଚାର କରିବା।

ଯଦିଓ ଲିପିତତ୍ତ୍ୱ (ପାଲିଓଗ୍ରାଫ)କୁ ଭାଷାତତ୍ତ୍ୱ କହିବା ସମ୍ପୂର୍ଣ୍ଣ ଠିକ୍ ନୁହେଁ, ତଥାପି ଭାଷା ଓ ଲିପିର ନିକଟ ସମ୍ପର୍କ ଯୋଗୁ ଭାଷାବିତ୍‌ମାନେ ଆନୁଷଙ୍ଗିକ ଭାବରେ ଲିପି ବିଷୟରେ ବିଚାର କରିଥାନ୍ତି। ଓଡ଼ିଆ ଭାଷାରେ ଆବିଷ୍କୃତ ଅଭିଲେଖମାନଙ୍କର ଅଧ୍ୟୟନ କଲେ ଓଡ଼ିଆ ଲିପି କାଳକ୍ରମେ ବିଭିନ୍ନ ସ୍ତର ଦେଇ କିପରି ତାହାର ବାର୍ତ୍ତମାନିକ ଗୋଲାକୃତି ରୂପ ଧାରଣ କରିଛି ତାହା ଆମ ଦେଖିପାରିବା। ଅଭିଲେଖମାନଙ୍କର ଅନୁପସ୍ଥିତିରେ ଏପରି

ଅଧ୍ୟୟନ କେବେ ସମ୍ଭବ ହୁଅନ୍ତା ନାହିଁ। ତେଣୁ ଭାଷାବିଜ୍ଞାନର ଏକ ଅନୁପୂରକ ବା ଆନୁସଙ୍ଗିକ ଲିପିବିଜ୍ଞାନ ଅଧ୍ୟୟନ ପାଇଁ ଅଭିଲେଖ ନିତାନ୍ତ ଆବଶ୍ୟକ।

ଭାଷାର ଐତିହାସିକ ତଥ୍ୟ ବିଭିନ୍ନ ସ୍ତରର ତୁଳନାତ୍ମକ ଅଧ୍ୟୟନ ପାଇଁ ଅଭିଲେଖ ଖୁବ୍ ମହତ୍ତ୍ୱପୂର୍ଣ୍ଣ। ଭାଷାର କ୍ରମିକ ପ୍ରଗତି ଅର୍ଥାତ୍ ଭାଷା ପରିବର୍ତ୍ତନ ମଧ୍ୟ ଦେଇ କ୍ରମେ କିପରି ବର୍ତ୍ତମାନର ରୂପ ଧାରଣ କଲା, ତାହା ଅଭିଲେଖ ଅଧ୍ୟୟନରୁ ଜଣାପଡ଼େ। ଶ୍ରୀ ସତ୍ୟନାରାୟଣ ରାଜଗୁରୁ, ଡକ୍ଟର ଦୀନେଶ ଚନ୍ଦ୍ର ସରକାର ଓ ଡକ୍ଟର କୁଞ୍ଜବିହାର ତ୍ରିପାଠୀ ଓଡ଼ିଆ ଅଭିଲେଖମାନ ଆଲୋଚନା କରି କହିଛନ୍ତି ଯେ, ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷାରେ କଥିତ ଓ ସାହିତ୍ୟିକ ଉଭୟ ରୂପ ସମ୍ପୂର୍ଣ୍ଣ ହୋଇ ସାରିଥିଲା; ସଂସ୍କୃତ, ପ୍ରାକୃତ ଓ ଅପଭ୍ରଂଶ ଖୋଳ ମଧ୍ୟରୁ ଓଡ଼ିଆ ଭାଷାର ନୂତନ ରୂପ ସ୍ପଷ୍ଟ ହୋଇଉଠିଥିଲା। ପ୍ରାଚୀନ ଅଭିଲେଖରେ ବ୍ୟବହୃତ ଗଦ୍ୟପଦ୍ୟ କଥା ବିଚାର କଲେ ଦେଖାଯିବ ଯେ ଏପର୍ଯ୍ୟନ୍ତ ଆବିଷ୍କୃତ ସମସ୍ତ ଅଭିଲେଖ ଗଦ୍ୟରେ ଲିଖିତ। କେବଳ ସତ୍ୟନାରାୟଣ ରାଜଗୁରୁ ବାଲେଶ୍ୱରରୁ ଗୋଟିଏ ମୂର୍ତ୍ତି ପାଇଥିଲେ ଯାହାର ତଳଭାଗରେ ଏକପଦୀ କବିତାଟିଏ ଲିଖିତ ଅଛି- 'ଦେବ କହି ଭଗତି କରୁଣ, ଅଛନ୍ତି ଭୋ କୁମାର ସେଣ।' ଶ୍ରୀରାଜଗୁରୁ ଏହାକୁ ଦଶମ ଏକାଦଶ ଶତାବ୍ଦୀର ବୋଲି କହିଛନ୍ତି।

ଓଡ଼ିଆ ଅଭିଲେଖମାନଙ୍କର ଶବ୍ଦାବଳୀ ପରୀକ୍ଷା କଲେ ଅନ୍ୟାନ୍ୟ ଭାଷା ସହିତ ଆମର ସମ୍ପର୍କ ଜଣାପଡ଼େ। ଓଡ଼ିଆ ଅଭିଲେଖମାନଙ୍କରେ ଦ୍ରାବିଡ଼ କୋଟ (ଦୁର୍ଗ), ତୋଟା, ଧଣ୍ଡା (ବଡ଼ମାଳା) ଜିତ (ମୂଲ୍ୟ) ଗୁଣ୍ଡ, ବାଟି, କୁଞ୍ଚା, ପଳ, ବିଷା ପୌଟୀ ଶବ୍ଦର ବହୁଳ ବ୍ୟବହାର ଦେଖାଯାଏ। ବହୁ ଯାବନିକ ଶବ୍ଦ ଆରବୀ ହଦ୍ (ସୀମା), ସରହଦ୍ (ଚତୁଃସୀମା) କୀମଦ (ଦାମ), ଚପରାସୀ (ପାରସିକ ଜପରାଶି) ପ୍ରଭୃତି ଶବ୍ଦରୁ ଓଡ଼ିଆ ସହିତ ଯାବନିକ ଭାଷାର ସମ୍ପର୍କ ଜଣାପଡ଼େ। ମୁସଲମାନ୍ ରାଜତ୍ୱର ପୂର୍ବରୁ ମଧ୍ୟ ଓଡ଼ିଆ ଅଭିଲେଖରେ ବହୁ ଯାବନିକ ଶବ୍ଦ ପରିଲକ୍ଷିତ ହୁଏ। ଏହି ଶବ୍ଦାବଳୀ କ୍ଷେତ୍ରରେ ଅନେକ ଶବ୍ଦନିର୍ମାଣର ନୂତନ ତଥ୍ୟ ମଧ୍ୟ ଉଦ୍‌ଘାଟିତ ହୁଏ। ଉଦାହରଣ ସ୍ୱରୂପ, ଅଭିଲେଖରେ ବ୍ୟବହୃତ 'ଶ୍ରାହୀ' ଏକ ଯାବନିକ ଶବ୍ଦ ବୋଲି ଭାଷାକୋଷରେ ଲିଖିତ; କିନ୍ତୁ ବର୍ତ୍ତମାନର ବିଶ୍ଳେଷଣରେ ତାହା 'ଶରତ' ଶବ୍ଦର ସପ୍ତମୀ ଶରଦି (ସଂ ଶରତ୍ > ପ୍ରା. ସରଅ, ୭ମୀ ଏକବଚନ ସରଅହି > ସାହି, ସ୍ରାହୀ ବା ଶ୍ରାହୀ)ରୁ ନିର୍ଗତ ବୋଲି କେହି କେହି ବିଚାର କରୁଛନ୍ତି।

ଧ୍ୱନି ଦୃଷ୍ଟିରୁ ବିଚାର କଲେ ଓଡ଼ିଆ ଅଭିଲେଖମାନଙ୍କରେ ଋ ଌ ସହିତ ଅ ଠାରୁ କ୍ଷ ପର୍ଯ୍ୟନ୍ତ ସମସ୍ତ ଅକ୍ଷର ପ୍ରଯୁକ୍ତ ହୋଇଥିବାରୁ ଆଜି ପରି ସେତେବେଳେ ମଧ୍ୟ ସେହି

ଅକ୍ଷରମାନଙ୍କ ଦ୍ୱାରା ସୂଚିତ ସବୁ ଧ୍ୱନି ବ୍ୟବହୃତ ହୋଇଥିବାର ମନେହୁଏ। ହ୍ରସ୍ୱ ଇ, ଦୀର୍ଘ ଈ, ହ୍ରସ୍ୱ ଉ, ଦୀର୍ଘ ଊ ଯାଦୃଚ୍ଛ ଭାବରେ ବ୍ୟବହୃତ ହେବାର ଦେଖାଯାଏ। ନରସିଂହ ଦେବଙ୍କର ସିଦ୍ଧେଶ୍ୱର ଶିଳାଲେଖରେ 'ବୀର ଶ୍ରୀ ନରସୀଙ୍ଘ' ଲିଖିତ ଅଛି। ତହିଁରେ ଦ୍ୱିତୀୟ ପଙ୍କ୍ତିରେ ଅଛି, ଚତରୁଦୀଗେ ଦଣ୍ଡ ପରୀକ୍ଷା ଶ୍ରୀକ୍ରଣ ପଟାନାଏକ ବିସନାଥ ମାହାସେନାପତୀଙ୍କ ଦଣ୍ଡ ପରୀକ୍ଷା ପୁରୁବ ଦୀଗ ଦଣ୍ଡ।' ଏଥିରେ ଥିବା ଶବ୍ଦମାନଙ୍କରୁ 'ଦୀଗେ', 'ପରୀକ୍ଷା', 'ସେନାପତୀ', ପୁରୁବ' ଇତ୍ୟାଦି ଦେଖିଲେ ସ୍ପଷ୍ଟ ଜାଣିହେବ ଯେ ଏଥିରେ ହ୍ରସ୍ୱ ଦୀର୍ଘ ଇ ଧ୍ୱନି ଓ ଉ ଧ୍ୱନି ଯେଉଁଠି ଇଚ୍ଛା ସେଠି ବ୍ୟବହୃତ ହୋଇଛି। 'ଋ' ଧ୍ୱନି କେତେବେଳେ 'ଇ' 'ରି' ଭାବରେ ବ୍ୟବହୃତ ହୋଇଛି।

ଯଥା- କୃତବାସ > କୀତ୍ତୀବାସ (ଋ > ଇ), ସୁକୃତ > ସୁକ୍ରୀତ (ଋ > ରି) 'କଌ', 'ଦେଌ', ପ୍ରଭୃତି ଶବ୍ଦରୁ ଜାଣିହୁଏ ଯେ 'ଌ' 'ଲ + ଉ' ପରି ଉଚ୍ଚାରିତ ହେଉଥିଲା, ସଂସ୍କୃତ 'ଌ' ପରି ନୁହେଁ।

ତାଲବ୍ୟ ଅର୍ଦ୍ଧସ୍ୱର 'ୟ' (ଲିଖିତ ରୂପ ଯ) କେତେକ ସ୍ଥଳରେ ଅର୍ଦ୍ଧସ୍ୱର ଭାବରେ ବ୍ୟବହୃତ ନ ହୋଇ ବରଂ ଏକ ସ୍ପର୍ଶସଂଘର୍ଷୀ ପରି ଉଚ୍ଚାରିତ ହେଉଥିଲା। ଯଥା 'ବିଯେ'। ଅର୍ଦ୍ଧସ୍ୱର ୱ ଓ ଦ୍ୱ୍ୟୋଷ୍ୟ ବ, ଏହି ଦୁହିଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ଆଦୌ ରକ୍ଷା କରାଯାଇ ନାହିଁ । [b], [w] ର ତଫାତ୍ ୭୧ଟି ଶିଳାଲେଖ ମଧ୍ୟରେ କେବଳ ଗୋଟିଏ ଶିଳାଲେଖରେ ଦେଖାଇ ଦିଆଯାଇଛି।

ବ୍ୟଞ୍ଜନଧ୍ୱନିମାନଙ୍କ ମଧ୍ୟରୁ ସ୍ପର୍ଶସଂଘର୍ଷୀ ମହାପ୍ରାଣ ଛ, ଥ, ଫ, ଓ ଝ, ଧ, ଭ ଗଞ୍ଜାମ ଓ ବିଶାଖାପାଟଣା ଜିଲ୍ଲାରେ ଅଳ୍ପପ୍ରାଣ ଚ, ତ, ପ, ଓ ଜ, ଦ, ଫ ପରି ଉଚ୍ଚାରିତ ହୁଅନ୍ତି। ସଂଘର୍ଷୀ ସ, ଷ, ଶ, ର ଯଥେଚ୍ଛା ବ୍ୟବହାର ଦେଖାଯାଏ (ସିଦ୍ଧେଶ୍ୱର > ସୀଦ୍ଧେସର, ବିଶ୍ୱନାଥ > ବିସନାଥ) କିନ୍ତୁ ଓଡ଼ିଆରେ ଦନ୍ତ୍ୟ 'ସ'ର ବ୍ୟବହାର ସବୁଠୁ ବେଶୀ ହୁଏ। କେଉଁଠି କେଉଁଠି 'ଷ'ର ଉଚ୍ଚାରଣ 'ଖ' ପରି ହୁଏ। ଭାଷା > ଭାଖା। 'କ୍ଷ' କୁ 'ଛ' ପରି ମଧ୍ୟ ଉଚ୍ଚାରଣ କରାଯାଏ ଯଥା ପରିକ୍ଷା > ପରିଛା, ବିକ୍ଷା > ବିଛା (ସୌର ମାସ)।

ଅଭିଲେଖର ଭାଷାରେ ଧ୍ୱନିଲୋପ ଓ ଧ୍ୱନି-ଆଗମର ବହୁଳ ଉଦାହରଣ ଦେଖାଯାଏ।

| ଧ୍ୱନିଲୋପ | ଧ୍ୱନି ଆଗମ |
|---|---|
| ଗୁରୁବାର > ଗୁବାର | ପର୍ଯ୍ୟନ୍ତ > ପରିଯନ୍ତ |
| ପୁରୁଷୋତ୍ତମ > ପୁଷୋତ୍ତମ | ପରିଦର୍ଶନ > ପରିଦରଶନ |

ସେନାପତିଙ୍କର > ସେନାପତୀଙ୍କ୍ର    ପୂର୍ବ > ପୁରୁବ
ଗଜପତି > ଗଜପ୍ତି    କୃଷ୍ଣ > କୀସଣ
କରଣ > କ୍ରଣ

ଅଭିଲେଖରେ ବ୍ୟବହୃତ ବିଭକ୍ତି ଚିହ୍ନ ମଧ୍ୟରୁ କେତେକ ଏବେ ପ୍ରଚଳିତ ଓ କେତେକ ଲୁପ୍ତ।

କର୍ତ୍ତାକାରକ ପ୍ରଥମା ବିଭକ୍ତି ବହୁବଚନର ଚିହ୍ନରୂପେ ଏ, ମାନେ, ମାନ, ଯାକ ବ୍ୟବହୃତ ହୋଇଛି। କିନ୍ତୁ 'ଏ' ମାନ୍ୟାର୍ଥରେ ଏକବଚନରେ ମଧ୍ୟ ବ୍ୟବହୃତ ହୋଇଛି, ଯଥା- କପିଳେଶ୍ୱର ରାଜାଏ ଦିଲେ।

କର୍ମକାରକ ଦ୍ୱିତୀୟା ବିଭକ୍ତିର ଚିହ୍ନ କୁ, ନ୍ତି ଯଥା ସମସ୍ତନ୍ତୀ (ସମସ୍ତଙ୍କୁ) ଖୋଇଦେଲି। ପ୍ରାଚୀନ ଅଭିଲେଖମାନଙ୍କରେ 'କୁ' ଅପେକ୍ଷା 'କଇ' ବା 'କୈ'ର ବ୍ୟବହାର ବେଶି।

କରଣ କାରକ ତୃତୀୟା ବିଭକ୍ତିରେ ବ୍ୟବହୃତ ଚିହ୍ନ - ଏଂ, ଏଁ

ସମ୍ପ୍ରଦାନ କାରକ ଚତୁର୍ଥୀ ବିଭକ୍ତିରେ ବ୍ୟବହୃତ ଚିହ୍ନ - କୁ, କି, କଇ, କୈ, କେ। ବହୁବଚନରେ ଙ୍କୁ, ଙ୍କୀ, ଙ୍କଇ, ଙ୍କେ

ଆପାଦାନ କାରକ ପଞ୍ଚମୀ ବିଭକ୍ତିରେ ବ୍ୟବହୃତ ଚିହ୍ନ - ତହୁଁ, ହୁଁ ଉ, ଉଁ, ଠୋ, ରୁ ବା ରୁଂ।

ଷଷ୍ଠୀ ବିଭକ୍ତିରେ ବ୍ୟବହୃତ ଚିହ୍ନ- ସ, ର, କୋ, ବହୁବଚନରେ ଙ୍କ, ଙ୍କର, ଙ୍କରି, ମାନର, ମାନଙ୍କର।

ଅଧିକରଣ କାରକ ସପ୍ତମୀ ବିଭକ୍ତି ଚିହ୍ନ- ଏ, ଏଂ, ରେ, ଇ, ରଇ, ଠି, ବହୁବଚନରେ ମାନଙ୍କରେ।

ସମ୍ବୋଧନ ଚିହ୍ନ- ସମ୍ବୋଧନରେ କୌଣସି ଚିହ୍ନ ନ ଥାଏ, ମାତ୍ର ସମ୍ବୋଧନକୁ ସୂଚାଇବା ପାଇଁ ପଦ ପୂର୍ବରୁ 'ଭୋ' ଅବ୍ୟୟ ବ୍ୟବହୃତ ହୋଇଅଛି।

ଉପରେ ଲିଖିତ ଚିହ୍ନଗୁଡ଼ିକ ଛଡ଼ା କରି, ଯାଇ, ପ୍ରତି, ବୋଲି, ବିତରକେ, ମୂଳେ, ଲାଗି, ସହିତେ ପ୍ରଭୃତି ଶବ୍ଦ ମଧ୍ୟ ବିଭକ୍ତିର ଚିହ୍ନ ରୂପେ ବ୍ୟବହୃତ ହୋଇଅଛି।

ଶବ୍ଦ ରୂପରେ ଯେତେ ପରିବର୍ତ୍ତନ ଦେଖାଯାଏ, କ୍ରିୟା ରୂପରେ ସେତେ ଦେଖାଯାଏ ନାହିଁ। ତେବେ ଅଳ୍ପ କେତୋଟି ବୈଶିଷ୍ଟ୍ୟ ଏଠାରେ ଦେଖାଇ ଦିଆଯାଇପାରେ। ବର୍ତ୍ତମାନ ଓଡ଼ିଆରେ ବ୍ୟବହୃତ ଅସମାପିକା କ୍ରିୟା କରି, ଖାଇ, ଘେନି ଇତ୍ୟାଦିରେ ଅନୁନାସିକତା

ବ୍ୟବହୃତ ହେଉଥିଲା। ତେଣୁକରି କରିँ (କରିଂ), ଖାଇଁ (ଖାଇଂ), ଘେନିँ (ଘେନିଂ) ଇତ୍ୟାଦି ରୂପ ଦେଖାଯାଉଥିଲା। କରିବାକୁ, ଛାଡ଼ିବାକୁ ଇତ୍ୟାଦି କୁ-ଅନ୍ତ ଅସମାପିକା କ୍ରିୟାରେ ଅନୁନାସିକତା ଓ 'କଇ' ପ୍ରତ୍ୟୟ ମଧ୍ୟ ବ୍ୟବହୃତ ହେଉଥିଲା ଯଥା- କରିବାକୁଁ, ଛାଡ଼ିବାକଇ ଇତ୍ୟାଦି। କ୍ରିୟାରେ 'କ' ପ୍ରତ୍ୟୟ ଲଗାଇ ଉଚିତାର୍ଥ ପ୍ରକାଶ କରାଯାଉଥିଲା। ଯଥା- ଯିବାକ (ଯିବା ଉଚିତ), କରିବାକ (କରିବା ଉଚିତ)। ବର୍ତ୍ତମାନ କାଳରେ ତୃତୀୟ ପୁରୁଷ ଏକବଚନରେ କହୁଛି, ଧରୁଛି ସ୍ଥାନରେ କହଇ, ଧରଇ ରୂପ ବ୍ୟବହୃତ ହେଉଥିଲା। ଅତୀତ କାଳରେ 'ଏଲି' ପ୍ରତ୍ୟୟ ସ୍ଥାନରେ 'ଇଲି' ପ୍ରତ୍ୟୟ ବ୍ୟବହୃତ ହେଉଥିଲା, ଯଥା- ଦେଲି ସ୍ଥାନରେ ଦିଲି ('ଧିଲି' ମଧ୍ୟ)। ଭବିଷ୍ୟତରେ ବ୍ୟବହୃତ 'ବେ' ସ୍ଥାନରେ 'ବେଁ' ଓ 'ବ' ସ୍ଥାନରେ 'ମ' ବ୍ୟବହୃତ ହେଉଥିଲା, ଯଥା ରହିବେ ସ୍ଥାନରେ ରହିବେଁ ଓ ନେବି ସ୍ଥାନରେ ନେମି ଇତ୍ୟାଦି।

**ସହଯୋଗୀ ଗ୍ରନ୍ଥ ସୂଚୀ :**


- W.P. Lehmann- Historical Linguistics
- A.A. Macdonell- Historical of Sanskrit Literature
- K.B. Tripathy- Prachin Odia Abhilekha
- S.N. Rajguru- Prachin Oriya Lipi


ତାଳପତ୍ର ପୋଥି



ସୌଜନ୍ୟ : ଇଣ୍ଟରନେଟ୍



# ଓଡ଼ିଆ ଲିପିତତ୍ତ୍ୱ

## କୁଞ୍ଜବିହାରୀ ତ୍ରିପାଠୀ

ଓଡ଼ିଆ ଲିପି ଅନ୍ୟ ସହୋଦରା ଲିପିମାନଙ୍କ ପରି ପ୍ରାଚୀନଭାରତର ବ୍ରାହ୍ମୀଲିପିରୁ ବିବର୍ତ୍ତିତ ହୋଇ ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀଠାରୁ ଆରମ୍ଭ କରି ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ କେତେକ ସ୍ତରରେ ଗତି କରିଅଛି। ଶେଷୋକ୍ତ ଶତାବ୍ଦୀରେ ଏହା ପ୍ରାୟ ଗୋଲାକାର ଓଡ଼ିଆ ଲିପିରେ ପରିଣତ ହୋଇଅଛି। ଓଡ଼ିଆ ଏବଂ ଭାରତର ବିଭିନ୍ନ ଅଞ୍ଚଳମାନଙ୍କରୁ ପ୍ରାପ୍ତ ଅନେକ ଶିଳାଲେଖ ତଥା ତାମ୍ରଲେଖ ଏହି ସ୍ତରଗୁଡ଼ିକର ସାକ୍ଷ୍ୟ ପ୍ରଦାନ କରନ୍ତି। ତେଣୁ ଏହି ଖୋଦିତ ଲେଖାବଳୀର ଲିପିଗୁଡ଼ିକୁ କେତେକ ସ୍ତର ବା ଶ୍ରେଣୀରେ ଅନ୍ତର୍ଭୁକ୍ତ କରି ନିମ୍ନଲିଖିତ ଐତିହାସିକ କାଳାନୁକ୍ରମରେ ବିଭକ୍ତ କରାଯାଇପାରେ।

୧-ବ୍ରାହ୍ମୀଲିପି (ଖ୍ରୀ:ପୂ:ତୃତୀୟ ଶତାବ୍ଦୀରୁ ଆରମ୍ଭ କରି ଖ୍ରୀ:ଅ.ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ)।

୨- ଗୁପ୍ତଲିପି (ପ୍ରାୟ ଖ୍ରୀ:ଅ ତୃତୀୟ ଶତାବ୍ଦୀଠାରୁ ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ)।

୩- ସୂକ୍ଷ୍ମକୋଣୀଲିପି (କଣ୍ଟକ ଶୀର୍ଷକ ଓ କୀଳକ ଶୀର୍ଷକ ଲିପି ସମେତ)। (ଷଷ୍ଠ ଶତାବ୍ଦୀଠାରୁ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ)

୪- ମାଗଧୀଲିପି- (=ବ୍ୟୁହ୍ଲରଙ୍କ ଅନୁସାରେ ପ୍ରଟୋ-ବେଙ୍ଗଲୀ ଲିପି) (୧୧ଶ ଶତାବ୍ଦୀଠାରୁ ୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ।)

୫- ପ୍ରାଚୀନ ଓଡ଼ିଆ ଲିପି (୧୪ଶ ଶତାବ୍ଦୀଠାରୁ ୧୬ଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ)।

୬- ବର୍ତ୍ତମାନ ବା ଆଧୁନିକ ଓଡ଼ିଆ ଲିପି (୧୬ଶ ଶତାବ୍ଦୀଠାରୁ ଅଦ୍ୟାବଧି)।

ବସ୍ତୁତଃ, ପ୍ରତ୍ୟେକ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଲିପି ମଧ୍ୟରେ ଗୋଟିଏ ସଂକ୍ରମଣାତ୍ମକ ବା ଅନ୍ତବର୍ତ୍ତୀ ସ୍ତର ଅଛି। କାରଣ ପ୍ରତ୍ୟେକ ସ୍ତର କ୍ରମଶଃ ଅଲକ୍ଷ୍ୟ ଭାବରେ ପରବର୍ତ୍ତୀ ସ୍ତରରେ ବିବର୍ତ୍ତିତ ହୁଏ। ଅଧିକନ୍ତୁ, ଉଲ୍ଲିଖିତ କାଳ ବିଭାଜନ ପ୍ରାୟିକ ଭାବରେ ଗ୍ରହଣୀୟ ଏବଂ କ୍ୱଚିତ୍ ଏକ ସ୍ତର ଅନ୍ୟ ସ୍ତର ସହିତ ସମାନ୍ତରାଳରେ ଗତି କରିବାର ଦୃଷ୍ଟିଗୋଚର ହୁଏ।ଏହି ପ୍ରସଙ୍ଗରେ ଏହା ଉଲ୍ଲେଖନୀୟ ଯେ ମାଗଧୀ ଲିପି ଏବଂ ସମ୍ଭବତଃ ସୂକ୍ଷ୍ମକୋଣୀ

ଲିପି ନିଜର ପରବର୍ତ୍ତୀ ଅବସ୍ଥାରେ ସମୟେ ସମୟେ ନାଗରୀ ଲିପିଦ୍ୱାରା ପ୍ରଭାବିତ ହେଉଥିଲା।

ଖ୍ରୀ:ଅ:ପ୍ରଥମ ଶତାବ୍ଦୀଠାରୁ ହିଁ ଉତ୍ତର ଭାରତର ବ୍ରାହ୍ମୀ ଲିପିରେ ଅନେକ ପରିବର୍ତ୍ତନ ଦେଖିବାକୁ ମିଳେ। ଏହାର ସ୍ପଷ୍ଟ ଉଦାହରଣ କୁଶାଣ-ଖୋଦିତ-ଲେଖରେ ଦୃଷ୍ଟିଗୋଚର ହୁଏ। ସାଧାରଣତଃ କୁଶାଣ ସମ୍ରାଟ୍‌ମାନଙ୍କ ସହିତ ଏହି ଲିପିର ସମ୍ବନ୍ଧ ସ୍ଥାପିତ ହୋଇଅଛି। ଅତଏବ, କୁହାଯାଇପାରେ ଯେ, ବ୍ରାହ୍ମୀଲିପି ନିମ୍ନଲିଖିତ ଦୁଇଟି ଅବସ୍ଥାରେ ଦୃଷ୍ଟିଗୋଚର ହୁଏ।

୧. ପୂର୍ବବର୍ତ୍ତୀ ବ୍ରାହ୍ମୀ ବା ମୌର୍ଯ୍ୟ ବ୍ରାହ୍ମୀ

(ଅଶୋକଙ୍କ ଖୋଦିତ ଲେଖାବଳୀରେ ଉଦାହୃତ)

୨. ପରବର୍ତ୍ତୀ ବ୍ରାହ୍ମୀ ବା କୁଶାଣ-ବ୍ରାହ୍ମୀ

ଓଡ଼ିଶାର ନିମ୍ନଲିଖିତ ଶିଳାଲେଖ ପୂର୍ବବର୍ତ୍ତୀ ବ୍ରାହ୍ମୀରେ ଲିଖିତ।

୧-ପୁରୀ ଜିଲ୍ଲାର ଭୁବନେଶ୍ୱର ନିକଟବର୍ତ୍ତୀ ଧଉଳି ଓ ଗଞ୍ଜାମ ଜିଲ୍ଲାର ପୁରୁଷୋତ୍ତମପୁର ନିକଟବର୍ତ୍ତୀ ଜଉଗଡ଼ରେ ସମ୍ରାଟ୍ ଅଶୋକଙ୍କଦ୍ୱାରା ପର୍ବତ ଗାତ୍ରରେ ଖୋଦିତ ଅନୁଶାସନ (ଖ୍ରୀ:ପୂ:୩ୟ ଶତାବ୍ଦୀ)।

୨- ପୁରୀ ଜିଲ୍ଲାର ଭୁବନେଶ୍ୱରର ଅତି ନିକଟବର୍ତ୍ତୀ ଉଦୟଗିରିରେ ଖୋଦିତ ସମ୍ରାଟ୍ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖ ଏବଂ କେତେକ କ୍ଷୁଦ୍ରକ୍ଷୁଦ୍ର ଶିଳାଲେଖ (ପ୍ରାୟ ଖ୍ରୀ:ପୂ:୧ମ ଶତାବ୍ଦୀ)।

ଖାରବେଳକାଳୀନ ଅଭିଲେଖଗୁଡ଼ିକରେ ପୂର୍ବବର୍ତ୍ତୀ ବ୍ରାହ୍ମୀ ଲିପିର ମୌଳିକ ଅକ୍ଷରଗୁଡ଼ିକର ବହୁତ ପରିବର୍ତ୍ତନ ଦେଖିବାକୁ ମିଳେ।

ବାଲେଶ୍ୱର ଜିଲ୍ଲାରେ ଭଦ୍ରକଠାରେ ପ୍ରାପ୍ତ ମହାରାଜ ଗଣଙ୍କର ରାଜତ୍ୱର ଅଷ୍ଟମ ବର୍ଷରେ ଖୋଦିତ ଶିଳାଲେଖରେ କୁଶାଣ-ବ୍ରାହ୍ମୀ ଲିପିର ନିଦର୍ଶନ ମିଳେ। ଲିପିତତ୍ତ୍ୱ ଦୃଷ୍ଟିରୁ ଏହି କ୍ଷୁଦ୍ର ଶିଳାଲେଖର ସମୟ ଖ୍ରୀ:ଅ:ତୃତୀୟ ଶତାବ୍ଦୀ ବୋଲି ଗ୍ରହଣୀୟ। ଏହା ଏପିଗ୍ରାଫିଆ ଇଣ୍ଡିକାର ୨୯ଶ ଖଣ୍ଡର ୨୩ଶ ଭାଗରେ ପ୍ରକାଶିତ।

ଉତ୍ତର ଭାରତର ଗୁପ୍ତ ସମ୍ରାଟଗଣ ତଥା ସେମାନଙ୍କର ଅଧୀନ ଏବଂ ସମସାମୟିକ ରାଜନ୍ୟବର୍ଗଙ୍କର ପ୍ରାପ୍ତ ଖୋଦିତ ଲେଖଗୁଡ଼ିକରେ ଲିପି ବିକାଶର ପରବର୍ତ୍ତୀ ସ୍ତର ଦୃଷ୍ଟିଗୋଚର ହୁଏ। ଏଥିପାଇଁ ଗୁପ୍ତଯୁଗର ଉତ୍ତର ଭାରତୀୟ ଅଭିଲେଖଗୁଡ଼ିକର ଲିପିକୁ ଗୁପ୍ତଲିପି କୁହାଯାଏ। ଲ,ଷ,ହ ଆଦି କେତେକ ଅକ୍ଷରକୁ ଭିତ୍ତି କରି ବା ଅବଲମ୍ବନ କରି ଏହି ଲିପିକୁ ପ୍ରାଚ୍ୟ ଏବଂ ପ୍ରତୀଚ୍ୟ ଏହି ଦୁଇଭାଗରେ ବିଭକ୍ତ କରାଯାଇପାରେ।

ପ୍ରଧାନତଃ ନିମ୍ନଲିଖିତ ଅଭିଲେଖଗୁଡ଼ିକରେ ଗୁପ୍ତଲିପି ବ୍ୟବହୃତ ହୋଇଅଛି।

(୧) କଳାହାଣ୍ଡିରୁ ପ୍ରାପ୍ତ ମହାରାଜ ତୁଷ୍ଟିକରଙ୍କ ତାମ୍ରପତ୍ର। ସନ ୧୯୪୭ରେ ଏହା ତତ୍‌କାଳୀନ ଗଡ଼ଜାତ କଳାହାଣ୍ଡିରୁ, ଆବିଷ୍କୃତ ହୋଇ ବଲାଙ୍ଗୀର ପାଟଣାରୁ ପ୍ରକାଶିତ ହେଉଥିବା କଳିଙ୍ଗ ଐତିହାସିକ ଗବେଷଣା ସମିତିର ପତ୍ରିକାରେ ପ୍ରକାଶିତ ହୋଇଥିଲା। ଏଥିରେ ବର୍ଷର ଉଲ୍ଲେଖ ନାହିଁ। ଲିପିତତ୍ତ୍ୱ ଦୃଷ୍ଟିରୁ ଏହା ପ୍ରାୟ ଚତୁର୍ଥ ଶତାବ୍ଦୀର ବୋଲି କୁହାଯାଇପାରେ।[୧]

(୨) ୨୫୦ ଗୁପ୍ତାବ୍ଦ (=୫୬୯-୭୦ ଖ୍ରୀ:ଅ)ର ଧର୍ମରାଜଙ୍କ ତାମ୍ରପତ୍ର। ଏହା ଗଞ୍ଜାମ ଜିଲ୍ଲାର ଜଉଗଡ଼ ନିକଟବର୍ତ୍ତୀ ସୁମଣ୍ଡଳ ଗ୍ରାମ ନିକଟରେ ଏକ ସ୍ତୂପରୁ ଆବିଷ୍କୃତ ହୋଇଥିଲା। ଏହାର ସର୍ବପ୍ରଥମ ପ୍ରକାଶନ ବ୍ରହ୍ମପୁରରୁ 'ମନୋରମା' ନାମକ ସଂସ୍କୃତ ପତ୍ରିକାର ୧ମ ଖଣ୍ଡ ୧ମ ସଂଖ୍ୟାରେ ପ୍ରଥମେ ପ୍ରକାଶିତ ହୋଇଥିଲା।[୨]

(୩) ୨୬୦ ଗୁପ୍ତାବ୍ଦ- (=୫୭୯-୮୦)। ସୋରରୁ ପ୍ରାପ୍ତ ମହାରାଜ ଶମ୍ଭୁନନ୍ଦଙ୍କ ତାମ୍ରପତ୍ର। ଏହା ବାଲେଶ୍ୱର ଜିଲ୍ଲାର ସୋରୋ ନାମକ ସ୍ଥାନର ନିକଟରୁ ଅନ୍ୟ ତିନିଗୋଟି ତାମ୍ରପତ୍ର ସହିତ ପ୍ରାପ୍ତ ହୋଇଥିଲା।[୩]

(୪) ୨୮୦ ଗୁପ୍ତାବ୍ଦ (=୫୯୯ ଖ୍ରୀ:ଅ)ର ଲୋକବିଗ୍ରହଙ୍କର କଣାସ ତାମ୍ରପତ୍ର। ଏହାପୁରୀ ଜିଲ୍ଲାର କଣାସ ଗ୍ରାମରୁ ପ୍ରାପ୍ତ ହୋଇଥିଲା ଏବଂ ତାମ୍ରପତ୍ରର ଚିତ୍ର ସହିତ ଏହାର ବିବରଣ କଳିଙ୍ଗ ଐତିହାସିକ ଗବେଷଣା ସମିତିର ପତ୍ରିକା (ଜାନୁଆରୀ ୧୯୫୦)ରେ ପ୍ରକାଶିତ।

(୫) ଶିବରାଜଙ୍କ କଟକ ଜିଲ୍ଲାର ପଟିଆକିଲା ତାମ୍ରଲେଖ (ଗୁପ୍ତାବ୍ଦ ୨୮୩= ଖ୍ରୀ:ଅ ୬୦୨)। ଏହା ଏପିଗ୍ରାଫିଆ ଇଣ୍ଡିକା ୧ମ ଖଣ୍ଡର ୨୮୫ ପୃଷ୍ଠାରେ ପ୍ରକାଶିତ।

ଗୁପ୍ତଯୁଗର ଗଞ୍ଜାମ-ଚିକାକୋଲ (ଶ୍ରୀକାକୁଲମ୍) ଅଞ୍ଚଳରେ ପ୍ରାପ୍ତ କେତେକ ଅଭିଲେଖରେ (ଯଥା- କଳିଙ୍ଗର ମାଠର ରାଜାମାନଙ୍କ ଅଭିଲେଖରେ) କେତେକ ଦକ୍ଷିଣୀ ଲକ୍ଷଣ ଦୃଷ୍ଟିଗୋଚର ହୁଏ। ଏଗୁଡ଼ିକ ଓଡ଼ିଆ ଲିପିର ବିବର୍ତ୍ତନରେ ବିଶେଷ ପ୍ରଭାବ ପକାଇ ନାହାନ୍ତି।

'ପରବର୍ତ୍ତୀ କଳିଙ୍ଗ ଲିପି' (୭ମ ଶତାବ୍ଦୀଠାରୁ ୧୨ଶ ଶତାବ୍ଦୀ ପର୍ଯ୍ୟନ୍ତ)। ଶେଷୋକ୍ତ ଅଞ୍ଚଳରେ ଏହାର ବିକାଶ ଘଟିଥିଲା ଏବଂ ଏହା ଦକ୍ଷିଣୀ ବର୍ଣ୍ଣମାଳାଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲା। ଗଞ୍ଜାମ ଏବଂ ଭିଜାଖାପଟମ୍ (ବିଶାଖାପତ୍ତନ) ଅଞ୍ଚଳର ପ୍ରାଚୀନ ଓଡ଼ିଆ ଲିପିରେ ମିଳୁଥିବା କେତେକ ଅକ୍ଷର ଏହି ଲିପିରୁ ଆସିଥିବା ଅନୁମିତ ହୁଏ। ସମୟେ ସମୟେ କଳିଙ୍ଗ ନଗରର, ପରବର୍ତ୍ତୀ ଗଙ୍ଗରାଜାଙ୍କ ଅଭିଲେଖରେ ମାଗଧୀ (ପ୍ରତୋବେଙ୍ଗଲୀ ବା ପ୍ରତ୍ନବଙ୍ଗୀୟ) ଲିପିର କେତେକ ଅକ୍ଷର (letters) ଦୃଷ୍ଟିଗୋଚର ହୁଏ। (୧୦୫୧ ଖ୍ରୀ:ଅ:ର ଉରଜାମ୍ ଅଭିଲେଖ ତୁଳନୀୟ)।

୭ମ ଶତାବ୍ଦୀରୁ ୧୧ଶ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍ତର ଭାରତର ଅନେକ ଅଭିଲେଖରେ ବ୍ୟବହୃତ ବର୍ଣ୍ଣମାଳାରେ କେତେକ ପ୍ରଧାନ ଓ ବିଶିଷ୍ଟ ଲକ୍ଷଣ ଦେଖାଯାଏ। ଏହି ଲକ୍ଷଣଗୁଡ଼ିକ ଯୋଗୁଁ ଏହି ବର୍ଣ୍ଣମାଳା, କୀଳକ-ଶୀର୍ଷକ, କଣ୍ଟକଶୀର୍ଷକ, ସୂକ୍ଷ୍ମକୋଣୀ, ସିଦ୍ଧମାତୃକା ଏବଂ କୁଟିଳ ନାମରେ ଅଭିହିତ କରାଯାଏ।

୭ମ ଶତାବ୍ଦୀରେ ସୂକ୍ଷ୍ମକୋଣୀ ଲିପିରେ ସାଧାରଣତଃ କୀଳକ-ଶୀର୍ଷ ଦୃଷ୍ଟିଗୋଚର ହୁଏ। ଏପରି ଲିପି ଓଡ଼ିଶାର ଶୈଳୋଦ୍‌ଭବବଂଶୀୟ ପ୍ରଜାମାନଙ୍କ ପ୍ରଦତ୍ତ ତାମ୍ରଶାସନରେ ପ୍ରାୟଶଃ ମିଳେ। ଯଥା-

(୧) ୩୦୦ ଗୁପ୍ତାବ୍ଦ (ଖ୍ରୀ:ଅ ୬୧୯-୬୨୦)ରେ ଅଙ୍କିତ ଶଶାଙ୍କଙ୍କର ସମସାମୟିକ ମହାସାମନ୍ତ ମାଧବରାଜଙ୍କ ଗଞ୍ଜାମ ତାମ୍ରପତ୍ର (ଏପିଗ୍ରାଫିଆ ଇଣ୍ଡିକା ୬ଷ୍ଠ ଖଣ୍ଡ, ପୃ.୧୪୩...)।

(୨) ସୈନ୍ୟଭୀତ-ମାଧବରାଜଙ୍କ ଖୋରଧା ତାମ୍ରପତ୍ର (J.A.S.B,1904 Pt.I, Page 284)।

ସୂକ୍ଷ୍ମକୋଣୀ ବର୍ଣ୍ଣମାଳା ଅଥବା ସୂକ୍ଷ୍ମକୋଣ ଏବଂ ପ୍ରତ୍ନବଙ୍ଗୀୟ ଏ ଦୁଇ ବର୍ଣ୍ଣମାଳାର ମଧ୍ୟବର୍ତ୍ତୀ ଅବସ୍ଥାର ବର୍ଣ୍ଣମାଳା (ଯହିଁରେ ସବୁ କୀଳକ-ଶୀର୍ଷ ଧୀରେ ଧୀରେ ଛୋଟ ଅନୁପ୍ରସ୍ଥ (horizontal) ଊର୍ଦ୍ଧ୍ୱରେଖାରେ ପରିଣତ ହୋଇଅଛି)। ଓଡ଼ିଶାରେ ନିମ୍ନଲିଖିତ ସନନ୍ଦରେ ଦେଖିବାକୁ ମିଳେ। ୭ମ-୯ମ ବା ୮ମ-୧୦ମର ଭୌମକର ରାଜାମାନଙ୍କ ଏବଂ ଏମାନଙ୍କ ସମସାମୟିକଙ୍କ ସନନ୍ଦ; ୧୦ମ ଶତାବ୍ଦୀ ମଧ୍ୟଭାଗରୁ ଆରମ୍ଭ କରି ୧୨ଶ ଶତାବ୍ଦୀର ପ୍ରାରମ୍ଭ ପର୍ଯ୍ୟନ୍ତ ସୋମବଂଶର ପ୍ରାରମ୍ଭିକ ରାଜାମାନଙ୍କ ଓ ସେମାନଙ୍କ ସମସାମୟିକଙ୍କ ସନନ୍ଦ।

ଏଥିରୁ କେତେକ ନିମ୍ନରେ ନିର୍ଦ୍ଦିଷ୍ଟ ହେଲା-

(କ) (୧) ଶୁଭାକରଙ୍କ ନେଉଳପୁର ଫଳକ (ଇ.ଆଇ.୧୫ ପୃ.୧, ବାନାର୍ଜି)।

(୨) ଦଣ୍ଡି-ମହାଦେବଙ୍କ ଦୁଇଟି ଦାନପତ୍ର (ଇ.ଆଇ.୬, ପୃ.୧୩୩,କୀଲହର୍ନ)

(ଖ) (୧) ବିଦ୍ୟାଧର ଭଞ୍ଜଙ୍କ ସନନ୍ଦ (ଜେ.ଏ.ଏସ୍.ବି.୪୬, ୧ମ ଭାଗ, ଫଳକ ୯, ଆର୍.ଏଲ୍.ମିତ୍ର)

(୨) ନେଟ୍ଟ ଭଞ୍ଜଙ୍କ ତାମ୍ର-ଶାସନ

(ଜେ.ବି.ଓ.ଆର୍.ଏସ୍.୧୮,ପୃ.୧୦୪,ମିଶ୍ର)

(ଗ) (୧) କଟକର ସୋମବଂଶୀରାଜାଙ୍କ ଅଭିଲେଖ

(ଇ.ଆଇ.୩, ପୃ.୩୨୩, ପ୍ଲେଟ୍)

(୨) ୨ୟ ମହାଭବଗୁପ୍ତଙ୍କ ସମ୍ବଲପୁର ଜିଲ୍ଲାସ୍ଥ କୁଦପଲ୍ଲୀ ଫଳକ (ଇ.ଆଇ.୪, ପୃ.୨୫୪, କୀଲହର୍ନ)

୭ମ ଶତାବ୍ଦୀ ମଧ୍ୟଭାଗରୁ ୧୦ମ ଶତାବ୍ଦୀ ଭିତରେ ଉତ୍ତର ଭାରତର ପୂର୍ବ ଭାଗରେ ଯେଉଁ ସୂକ୍ଷ୍ମକୋଣୀ ବର୍ଣ୍ଣମାଳାଗୁଡ଼ିକ ପ୍ରଚଳିତ ଥିଲା, ସେଗୁଡ଼ିକ ଅଗ୍ରଗତି କରି ୧୦ମ ଶତାବ୍ଦୀର ଅନ୍ତିମ ପାଦରେ କେତେକ ବିଶିଷ୍ଟ ଲକ୍ଷଣ ଧାରଣ କଲା। ଏହି ଲକ୍ଷଣଗୁଡ଼ିକରେ ଆଧୁନିକ ବଙ୍ଗୀୟ ଲିପିର ଆଭିମୁଖ୍ୟ ପ୍ରକାଶିତ ହୁଏ। ଏଥିପାଇଁ ବ୍ୟୁହ୍ଲର ଏହାକୁ ପ୍ରତ୍ନବଙ୍ଗୀୟ[୪] ବୋଲି 'ତାଙ୍କ ଭାରତୀୟ ଲିପିତତ୍ତ୍ୱ' ଗ୍ରନ୍ଥରେ ଅଭିହିତ କଲେ। ଡକ୍ଟର ଦୀନେଶ ଚନ୍ଦ୍ର ସରକାର ଅଲବରୁନୀଙ୍କୁ ଅନୁସରଣ କରି ଏହାକୁ 'ଗୌଡ଼ୀ ଲିପି' ବୋଲି କହନ୍ତି। ବସ୍ତୁତଃ ଏହି ଲିପି ଓଡ଼ିଶା, ବଙ୍ଗ, ଉତ୍ତରବିହାର ଏବଂ ଆସାମର ପ୍ରାଚୀନ ଅଭିଲେଖରେ ବ୍ୟବହୃତ ହୋଇଅଛି। ଏବଂ ଏଥିରୁ ଆଧୁନିକ ଓଡ଼ିଆଲିପି, ବଙ୍ଗଲିପି, ମୈଥିଳୀଲିପି ଓ ଆସାମୀୟଲିପି ବିବର୍ତ୍ତିତ ହୋଇଅଛି। ଏହାକୁ ଅର୍ଥାତ୍ 'ପ୍ରଟୋ-ବେଙ୍ଗଲି'କୁ ପାରିଭାଷିକ- ଶବ୍ଦ-ରୂପରେ ଗ୍ରହଣ କରାଯାଇପାରେ। ଏହାକୁ 'ମାଗଧୀ' ଲିପି ବୋଲି କହିବା ସମୀଚୀନ ହେବ।

ଓଡ଼ିଶାରେ ପରବର୍ତ୍ତୀ ସୋମବଂଶୀୟ ରାଜାଙ୍କ ଏବଂ ଗଙ୍ଗବଂଶୀୟ ସମ୍ରାଟଙ୍କ ସନନ୍ଦ ତଥା ସେମାନଙ୍କ ସମସାମୟିକ ଅଭିଲେଖରେ ଏହି ଲିପି ଦେଖିବାକୁ ମିଳେ (୧୧ଶ ଶତାବ୍ଦୀଠାରୁ ୧୫ଶ ଶତାବ୍ଦୀର ୧ମ ପାଦ ପର୍ଯ୍ୟନ୍ତ)।

(କ) ନିମ୍ନଲିଖିତ ସଂସ୍କୃତରେ ଲିଖିତ ଅଭିଲେଖ ଦ୍ରଷ୍ଟବ୍ୟ-

(୧)ସୋମବଂଶୀ ମହାରାଜ ଇନ୍ଦ୍ରରଥଙ୍କ ବାଣପୁର ଶାସନ (ଜେ.ଏ.ଏସ୍.ବି. ୮ମ ଖଣ୍ଡ, ସଂଖ୍ୟା ୪, ୧୯୬୬ ପୃ.୨୭୧,ତ୍ରିପାଠୀ)

(୨)୪ର୍ଥ ନରସିଂହ ଦେବଙ୍କ ତ୍ରିମାଳୀ ମଠ ତାମ୍ରଫଳକ (ଜେ.ଏ.ଏସ୍.ବି ୫୬ଖଣ୍ଡ, ୧ମ ଭାଗ ୧୮୯୫, ଇ.ଓ.ଏଲ୍.ଏସ୍., ପୃ.୨୩୪)

(ଏଥିରେ ପ୍ରଟୋ-ବେଙ୍ଗଲୀ ଓ ନାଗରୀର ମିଶ୍ରଣ ଦୃଷ୍ଟ ହୁଏ)।

ଓଡ଼ିଆ ଭାଷା ଏବଂ ପ୍ରତ୍ନବଙ୍ଗୀୟ ଲିପିରେ ଲିଖିତ ନିମ୍ନଲିଖିତ ଅଭିଲେଖ ଉଦାହରଣ ଯୋଗ୍ୟ-

(୧) ଚିକାକୋଲ ଜିଲ୍ଲାର ଉରଜାଁ ଗ୍ରାମରୁ ଆବିଷ୍କୃତ ଅନନ୍ତ ବର୍ମାଙ୍କ ଶିଳାଲେଖ। ଏହାର ସମୟ ୧୦୫୧ ଖ୍ରୀ:ଅ:। ଏଥିରେ ପ୍ରତ୍ନବଙ୍ଗୀୟ ଲିପି ସହିତ ପରବର୍ତ୍ତୀ କଳିଙ୍ଗ ଲିପିର ମିଶ୍ରଣ ଦେଖାଯାଏ। ଏହା ଇ.ଓ.ଏଲ୍.ଏସ୍‌ରେ ଅବିକଳ ପ୍ରତିଲିପି ସହ ପ୍ରକାଶିତ।

(୨) ଭୁବନେଶ୍ୱରରୁ ପ୍ରାପ୍ତ ନରସିଂହଦେବଙ୍କ ୨୨ ସମ୍ବତ୍ସରରେ ଲିଖିତ ତାମିଲ ଓଡ଼ିଆ ଶିଳାଲେଖ ଏହାର ସମୟ ୧୩ ବା ୧୪ଶ ଶତାବ୍ଦୀ।

(୩) ବଲାଙ୍ଗୀର -ପାଟଣାଜିଲ୍ଲାର ସୋନପୁର ନଗରରୁ ଆବିଷ୍କୃତ ଭାନୁଦେବଙ୍କ ସମୟର ଶିଳାଲେଖ। ଏହା ୧୩ଶ ଶତାବ୍ଦୀର ବୋଲି ବୋଧହୁଏ। ଏହା ଇଣ୍ଡିଆନ୍ ଲିଙ୍ଗ୍ୟୁଷ୍ଟିକ୍ସ୍ ୧୭ଖଣ୍ଡ, ପୃଷ୍ଠା ୪୭, ୧୯୫୭ରେ ତ୍ରିପାଠୀଙ୍କ ଦ୍ୱାରା ପ୍ରକାଶିତ।

ପ୍ରାଚୀନ ଓଡ଼ିଆଲିପି ଓଡ଼ିଶାରେ 'ପ୍ରତ୍ନ-ବଙ୍ଗୀୟ'ର ପରବର୍ତ୍ତୀ ବିକାଶ ସ୍ତର। ଉପରିଭାଗର ଅନୁପ୍ରସ୍ଥ (horizontal)ର ବକ୍ରତା ଏହାର ବିଶିଷ୍ଟ ଲକ୍ଷଣ। ୧୪ଶ ଶତାବ୍ଦୀଠାରୁ ୧୬ଶ ଶତାବ୍ଦୀର ଶେଷପର୍ଯ୍ୟନ୍ତ ଅନେକ ଓଡ଼ିଆ ଅଭିଲେଖରେ ଏହି ଲିପି ବ୍ୟବହୃତ। ଏହାର କେତେକ ଉଦାହରଣ ନିମ୍ନରେ ଦିଆଗଲା-

(୧) ଚିକାକୋଲର ଇଚ୍ଛାପୁର ତାଲୁକସ୍ଥ ପୋଟଙ୍ଗୀ ଗ୍ରାମରେ ଅବସ୍ଥିତ ପୋତେଶ୍ୱର ଦେବାଳୟରେ ଥିବା ଭାନୁଦେବଙ୍କ ୧୩୭୬ଖ୍ରୀ:ଅ:ରେ ଖୋଦିତ ଶିଳାଲେଖ।

(୨) କଟକଜିଲ୍ଲା ଯାଜପୁର ନିକଟବର୍ତ୍ତୀ ସିଦ୍ଧେଶ୍ୱର ଗ୍ରାମର ସିଦ୍ଧେଶ୍ୱର ମନ୍ଦିରର ୪ର୍ଥ ନରସିଂହଦେବଙ୍କ ୧୯ ଅଙ୍କର ଶିଳାଲେଖ।

(୩) ସମ୍ବଲପୁର ଜିଲ୍ଲାର ପଦ୍ମପୁର ନିକଟସ୍ଥ ନରସିଂହନାଥ ଦେବାଳୟରେ ଥିବା ବୈଜଳଦେବଙ୍କ ଶିଳାଲେଖ( ୧୪୧୩ ଖ୍ରୀ:ଅ)।

(୪) ପୁରୁଷୋତ୍ତମଦେବଙ୍କ ପରଶୁଶୀର୍ଷକ ତାମ୍ରପତ୍ର (ବାଲେଶ୍ୱର ଗଡ଼ପଡ଼ାରୁ ପ୍ରାପ୍ତ) (ଖ୍ରୀ:ଅ ୧୪୭୨)।

(୫) ପୁରୀ ଜଗନ୍ନାଥ ମନ୍ଦିରର ଜୟବିଜୟ ଦ୍ୱାରରେ ଖୋଦିତ କପିଳେଶ୍ୱର, ପୁରୁଷୋତ୍ତମଦେବ ଓ ପ୍ରତାପରୁଦ୍ରଦେବଙ୍କ ଶିଳାଲେଖ (୧୪୩୭-୧୫୩୧ ଖ୍ରୀ:ଅ)।

(୬) ମେଦିନୀପୁର ଜିଲ୍ଲାର କେସିଆରିଠାରୁ ୩ମାଇଲ୍ ଦୂରବର୍ତ୍ତୀ ଗଗନେଶ୍ୱର- ଦୁର୍ଗ- ଭଗ୍ନାବଶେଷରେ ଖୋଦିତ କପିଳେଶ୍ୱରଦେବଙ୍କ ସମୟର ଶିଳାଲେଖ।

(୭) ବିଶାଖାପତ୍ତନ ଜିଲ୍ଲାର ସୀମାଚଳର ଲକ୍ଷ୍ମୀନାରାୟଣ ମନ୍ଦିର ଗାତ୍ରରେ ଖୋଦିତ ନ୍ୟୂନତଃ ୩୧ଟି ଅଭିଲେଖ। ଏଗୁଡ଼ିକର ସମୟ ହେଉଛି ସମ୍ରାଟ କପିଳେଶ୍ୱର ଦେବଙ୍କ ରାଜତ୍ୱକାଳ (୧୪୫୩-୧୪୬୭ଖ୍ରୀ:ଅ)ଠାରୁ ଆରମ୍ଭ କରି ଓଡ଼ିଶାର ଶେଷ ସମ୍ରାଟ ମୁକୁନ୍ଦ ଦେବଙ୍କ ରାଜତ୍ୱକାଳ (୧୫୬୮ ଖ୍ରୀ:ଅ:) ପର୍ଯ୍ୟନ୍ତ।

(୮) ଆନ୍ଧ୍ର ରାଜ୍ୟର କର୍ଣ୍ଣୁଲ (kurnool) ଜିଲ୍ଲାର ଶ୍ରୀଶୈଳମ୍‌ଠାରେ ଖୋଦିତ କପିଳେଶ୍ୱରଦେବଙ୍କ ଶିଳାଲେଖ (ଇ.ଆଇ.୩୬, ଭାଗ୨,ପୃ.୭୫,୧୯୬୫ ମସିହା)। ଏହା ଶକାବ୍ଦ ୧୩୮୨ରେ ଖୋଦିତ।

(୯) ଗୁଣ୍ଟୁର ଜିଲ୍ଲାର ବାପଟ୍ଲାରୁ ଆବିଷ୍କୃତ କପିଳେଶ୍ୱରଦେବଙ୍କ ତାମ୍ରଶାସନର ଓଡ଼ିଆ-ଫଳକ। ଏହାର ଶକାବ୍ଦ ୧୩୮୦ (=ଖ୍ରୀ:ଅ୧୪୫୮) ଏବଂ ଉକ୍ତ ଜିଲ୍ଲାର କୋଣ୍ଡବିଡୁ ପର୍ବତର ଶିଖରରେ ଥିବା ଓଡ଼ିଆ ଅଭିଲେଖ। ଏଥିର ସମୟ ସ୍ପଷ୍ଟଭାବରେ ପଠିତ ହେଉ ନଥିଲେ ସୁଦ୍ଧା ଏହା କପିଳେଶ୍ୱରଦେବଙ୍କ ସମୟର ବୋଲି ଅନୁମିତ।

*ପ୍ରାୟ ୧୭ଶ ଶତାବ୍ଦୀଠାରୁ ପ୍ରାଚୀନ ଓଡ଼ିଆ ଲିପି ଧୀରେ ଧୀରେ ଆଧୁନିକ ଓଡ଼ିଆ ଲିପିରେ ପରିଣତ ହେବାକୁ ଲାଗିଲା। ଏଥିରେ ଅକ୍ଷରଗୁଡ଼ିକର (ଆଳଙ୍କାରିକ) ଉପରିଭାଗର ବକ୍ରରେଖାଗୁଡ଼ିକ ଗୋଲାକାର ରୂପ ଧାରଣ କଲେ। ୧୭ଶ ଶତାବ୍ଦୀ ଏବଂ ଏହାର ପରବର୍ତ୍ତୀ ଅଭିଲେଖରେ, ଓଡ଼ିଶାର ଅଗଣିତ ତାଳପତ୍ର ପୋଥିଗୁଡ଼ିକରେ ଓ ଆଜିକାଲି ମୁଦ୍ରିତ ଗ୍ରନ୍ଥମାନଙ୍କରେ ଏହି ଲିପି ବ୍ୟବହୃତ।

ଆଧୁନିକ ଓଡ଼ିଆ ଲିପିର ୨ଟି ଭେଦ ବା ପଦ୍ଧତି। (୧) ପାଠଶାଳୀୟ ପଦ୍ଧତି (ଯାହା ସ୍କୁଲ, କଲେଜ ଏବଂ ପୁସ୍ତକାବଳିରେ ବ୍ୟବହୃତ ହୁଏ)। (୨) କରଣୀ ପଦ୍ଧତି (ଯହିଁରେ ମୋହରିରମାନେ କଚେରୀ କାଗଜପତ୍ରରେ ଲେଖନ୍ତି)। ଏହି ପାଠଶାଳୀୟ ଲିପି ଓ କରଣୀ ଲିପିରେ ଅନେକ ଅକ୍ଷର ସମାନ। କ,ଢ,ଟ,ତ,ବ,ର,ଲ,ସ,ହ, ଲେଖିବାରେ କରଣୀ ଲିପି ବା ପଦ୍ଧତିରେ ପାର୍ଥକ୍ୟ ଲକ୍ଷଣୀୟ।

ପ୍ରାଚୀନ ଓଡ଼ିଆ ଲିପି (ଯହିଁରୁ ଆଧୁନିକ ଓଡ଼ିଆ ଲିପି ବିବର୍ତ୍ତିତ)ପ୍ରଧାନତଃ ପ୍ରଟୋ-ବେଙ୍ଗଲୀ (ପ୍ରାଚ୍ୟ ଲିପି)ରୁ ବିବର୍ତ୍ତିତ। ଅ, ଆ ପ୍ରଭୃତି ଅଳ୍ପ କେତୋଟି ଅକ୍ଷର ନାଗରୀ (ପ୍ରତୀଚ୍ୟ ଏବଂ ଉଦୀଚ୍ୟ ଲିପି) ଦ୍ୱାରା ପ୍ରଭାବିତ। 'ପରବର୍ତ୍ତୀ କଳିଙ୍ଗ ଲିପି' (ଦକ୍ଷିଣୀ ଲିପି)ର ପ୍ରଭାବ ଅତି ସ୍ୱଳ୍ପ ବୋଲି ଗ୍ରହଣୀୟ। (ପ୍ରଟୋ-ବେଙ୍ଗଲି ଓ ନାଗରୀ ଲିପି ଏ ଦୁହିଁର ସମ୍ବନ୍ଧ ହେଉଛି ପ୍ରାୟ ଭଗିନୀର ସମ୍ବନ୍ଧ।)

ପରବର୍ତ୍ତୀ ଫଳକ -ଚିତ୍ର ଓ ଚାର୍ଟ (chart) ଓଡ଼ିଆ ଲିପି ବିବର୍ତ୍ତନରେ ଆଲୋକପାତ କରେ।

---

୧. ସେପ୍ଟମ୍ବେର - ଡିସେମ୍ବର ୧୯୪୭ ଦ୍ୱିତୀୟ ଖଣ୍ଡ, ସଂଖ୍ୟା ୨ ଏବଂ ୩।

୨. ଏପିଗ୍ରାଫିଆ ଇଣ୍ଡିକା ୨୮ଖଣ୍ଡ, ପୃ.୭୯

୩. ଏପିଗ୍ରାଫିଆ ଇଣ୍ଡିକା ୨୩ଖଣ୍ଡ, ପୃ.୧୯୭

୪. ନୟପାଳ ଦେବଙ୍କ ଇର୍ଦା (ବାଲେଶ୍ୱର ଜିଲ୍ଲାସ୍ଥ) ଫଳକରେ ସର୍ବପ୍ରଥମ ପ୍ରଟୋ ବେଙ୍ଗଲି ବର୍ଣ୍ଣମାଳା ବ୍ୟବହୃତ ହୋଇଥିବାର ଶ୍ରୀ ଚକ୍ରବର୍ତ୍ତୀ ଲେଖିଛନ୍ତି।
(ଜେ.ଆର୍.ଏ.ଏସ୍.ବି.୧୯୩୮, ୪ର୍ଥ ଖଣ୍ଡ)

* କଟକ ଜିଲ୍ଲାର ଶୁକ୍ଳେଶ୍ୱର ଗ୍ରାମସ୍ଥ ମାଣିକେଶ୍ୱର-ମନ୍ଦିରର ଭଗ୍ନାବଶେଷରୁ ପ୍ରାପ୍ତ ଖଣ୍ଡିତ ଶିଳାଲେଖ।



# ଓଡ଼ିଆ ବର୍ଣ୍ଣମାଳା ଓ ତାହାର ଉଚ୍ଚାରଣ ବିଧି

## କୁଞ୍ଜବିହାରୀ ତ୍ରିପାଠୀ

ଓଡ଼ିଆ ବର୍ଣ୍ଣମାଳା ଅର୍ଥାତ୍ ଅ, ଆ, କ, ଖ ପ୍ରଭୃତି ବର୍ଣ୍ଣ ବିଷୟରେ ଆଲୋଚନା କରିବା ପୂର୍ବରୁ ଶବ୍ଦର ସୃଷ୍ଟି ଓ ମନୁଷ୍ୟର କଥା କହିବା ଅବୟବ ବା ବାଗ୍‌ଯନ୍ତ୍ର ସମ୍ବନ୍ଧରେ କେତେକ କଥା ଜାଣିବା ଆବଶ୍ୟକ। ବାୟୁ ଜୋର୍‌ରେ ଆହତ ହେଲେ ବା ସଂକୀର୍ଣ୍ଣ ପଥ ଦେଇ ଜୋର୍‌ରେ ପ୍ରବାହିତ ହେଲେ ଶବ୍ଦ ଜାତ ହୁଏ। ମନୁଷ୍ୟ ଶରୀରରେ ସର୍ବଦା ବାୟୁର ନିର୍ଗମନ ଏବଂ ଉଦ୍‌ଗମନ କ୍ରିୟା ଚାଲୁଅଛି। ସାଧାରଣତଃ ନାସିକାରନ୍ଧ୍ର ସାହାଯ୍ୟରେ କଣ୍ଠବିବର ଓ ଶ୍ୱାସନଳୀ ଦ୍ୱାରା ମନୁଷ୍ୟ ଫୁସ୍‌ଫୁସ୍‌କୁ ବାୟୁ ନିଏ ଏବଂ ଫୁସ୍‌ଫୁସ୍‌ରୁ ଠିକ୍ ସେହି ବାଟ ଦେଇ ନାସିକାରନ୍ଧ୍ରରେ ବାୟୁ ତ୍ୟାଗକରେ। ଏହି ପ୍ରକ୍ରିୟାକୁ ନିଃଶ୍ୱାସ ପ୍ରଶ୍ୱାସ କୁହାଯାଏ। ଶ୍ୱାସନଳୀର ଅଗ୍ରଭାଗ ଆଡ଼କୁ ଗୋଟିଏ ସ୍ଥାନରେ ଶ୍ୱାସନଳୀର ଗୋଟିଏ ଦୁଆର ଥାଏ। ଏଠାରେ ଶ୍ୱାସନଳୀର ଉଭୟପାର୍ଶ୍ୱରୁ ଦୁଇଟି ସୂକ୍ଷ୍ମ ପ୍ରସାରଣଶୀଳ ତନ୍ତ୍ରୀ ବା ପରଦା ସଂଲଗ୍ନ ହୋଇ ରହିଥାଏ। କଣ୍ଠର ବାହାରଭାଗର ଯେଉଁ ଅଂଶଟି ଉଚ୍ଚ ହୋଇଥାଏ ସେହି ଅଂଶର ଭିତରେ ଥିବା ଶ୍ୱାସନଳୀରେ ଏହି ଦ୍ୱାରଟି ରହିଥାଏ। ଶ୍ୱାସନଳୀର ଏହି ପରଦା ଦୁଇଟି ଉଭୟ ପାର୍ଶ୍ୱକୁ ସଂକୁଚିତ ହୋଇଯାଇପାରେ କିମ୍ବା ଉଭୟ ପାର୍ଶ୍ୱରୁ ପରସ୍ପର ଆଡ଼କୁ ପ୍ରସାରିତ ହୋଇ ଯାଇପାରେ। ଯେତେବେଳେ ପରଦାଦ୍ୱୟ ଉଭୟପାର୍ଶ୍ୱରୁ ପରସ୍ପର ଆଡ଼କୁ ପ୍ରସାରିତ ହୋଇଥାଏ, ତେତେବେଳେ ବାୟୁର ଉଦ୍‌ଗମନପଥ ସଂକୀର୍ଣ୍ଣ ହୋଇଥାଏ। ଶ୍ୱାସନଳୀର ବାୟୁ ଏହି ସଂକୀର୍ଣ୍ଣ ପଥ ଦେଇ ବେଗରେ ବହିର୍ଗତ ହେଲାବେଳେ ଉକ୍ତ ପରଦାଦ୍ୱୟର ପ୍ରାନ୍ତଭାଗ ବାରମ୍ବାର କମ୍ପିତ ହୁଏ। ଏହି କମ୍ପନ ଫଳରେ ଯେଉଁ ଧ୍ୱନି ଜାତ ହୁଏ ତାକୁ ଧ୍ୱନି-ବିଜ୍ଞାନଶାସ୍ତ୍ରରେ 'ଘୋଷ' କୁହାଯାଏ ଏବଂ ଉକ୍ତ ପରଦା ବା ତନ୍ତ୍ରୀ ଦୁଇଟିକୁ ସ୍ୱରତନ୍ତ୍ରୀ କୁହାଯାଏ ଏବଂ ଶ୍ୱାସନଳୀରେ ସ୍ୱରତନ୍ତ୍ରୀ ଥିବା ସ୍ଥାନକୁ ଘୋଷ-ପଟିକ କୁହାଯାଏ। ଏହି ସ୍ୱରତନ୍ତ୍ରୀ ଦୁଇଟିକୁ ରଙ୍ଗମଞ୍ଚରେ ଝୁଲୁଥିବା ପରଦା ସହିତ ତୁଳନା କରାଯାଇପାରେ। ଯେପରି ପରଦାଦୁଇଟି ପରସ୍ପର ଆଡ଼କୁ ପ୍ରସାରିତ ଓ ସଂଲଗ୍ନ ହୋଇ ରଙ୍ଗମଞ୍ଚର ଦୃଶ୍ୟକୁ ଆବୃତ୍ତ କରିଦିଅନ୍ତି ଏବଂ ସଂକୁଚିତ ହୋଇ ଅର୍ଥାତ୍ ବିପରୀତ ଦିଗକୁ

ଅପସୃତ ହୋଇ ରଙ୍ଗମଞ୍ଚର ଦୃଶ୍ୟକୁ ଖୋଲିଦିଅନ୍ତି, ସେହିପରି ସ୍ୱରତନ୍ତ୍ରୀ ପ୍ରସାରିତ ହୋଇ ଶ୍ୱାସନଳୀକୁ (ପ୍ରାୟ) ରୁଦ୍ଧ କରିଦିଅନ୍ତି ଓ ସଂକୁଚିତ ହୋଇ ଏହାକୁ ଖୋଲିଦିଅନ୍ତି। ସାଧାରଣତଃ ନିଃଶ୍ୱାସ ପ୍ରଶ୍ୱାସ ସମୟରେ ଏହି ଦୁଆରଟି ଖୋଲାଥାଏ ଏବଂ ଭାରୀ ବୋଝ ଉଠାଇବା ସମୟରେ ଏହା ବନ୍ଦ ରହିଥାଏ। ଅ ଆ, ପ୍ରଭୃତି ସ୍ୱରଧ୍ୱନିଗୁଡ଼ିକ ଉଚ୍ଚାରଣ କଲାବେଳେ, ଏହି ଦ୍ୱାରଟି ସଂକୀର୍ଣ୍ଣ ହୋଇ ଭିତରରୁ ଆସୁଥିବା ବାୟୁପ୍ରବାହ ଦ୍ୱାରା ସ୍ୱରତନ୍ତ୍ରୀର ପ୍ରାନ୍ତଭାଗ କମ୍ପିତ ହେଉଥିବାରୁ ସବୁ ସ୍ୱରବର୍ଣ୍ଣଗୁଡ଼ିକୁ ସଘୋଷ କୁହାଯାଏ। ସେହିପରି ବର୍ଗର ତୃତୀୟ, ଚତୁର୍ଥ ବର୍ଣ୍ଣଗୁଡ଼ିକର (ଗ୍ ଘ୍ ପ୍ରଭୃତି)ର ଉଚ୍ଚାରଣରେ ଦ୍ୱାରଟି ସଂକୀର୍ଣ୍ଣ ହୋଇ ସ୍ୱରତନ୍ତ୍ରୀର ପ୍ରାନ୍ତଭାଗ କମ୍ପିତ ହେଉଥିବାରୁ ସେଗୁଡ଼ିକୁ ସଘୋଷ ବ୍ୟଞ୍ଜନବର୍ଣ୍ଣ କୁହାଯାଏ। ବର୍ଗର ପ୍ରଥମ ଦ୍ୱିତୀୟ ବର୍ଣ୍ଣଗୁଡ଼ିକର (କ୍, ଖ୍ ପ୍ରଭୃତିର)ର ଉଚ୍ଚାରଣ ସମୟରେ ଦ୍ୱାରଟି ଖୋଲା ରହୁଥିବାରୁ ଏଗୁଡ଼ିକୁ ଅଘୋଷ କୁହାଯାଏ।

ସ୍ୱରଯନ୍ତ୍ରର କିଛି ଦୂର ଉପରେ ଏହାର ଢାଙ୍କୁଣି ରହିଥାଏ। ତାହାକୁ 'ଅଭିକାକଳ' ବା ସ୍ୱରଯନ୍ତ୍ରାବରଣ (Epiglottis) କୁହାଯାଏ। ଭୋଜନ ବେଳେ ବା ପିଇବା ବେଳେ ଏହା ତଳକୁ ଆସି ଶ୍ୱାସନଳୀକୁ ବନ୍ଦ କରେ। ତା'ର ଉର୍ଦ୍ଧ୍ୱରେ ଯେଉଁ ସ୍ଥାନ ଅଛି ତାହାକୁ ଗୋଟିଏ ଛକ (crossing) ବୋଲାଯାଇପାରେ। ଏହାର ନାମ 'ଗଳବିଳ'। ଏହା ଗୋଟିଏ ଖୋଲାସ୍ଥାନ ଯେଉଁଠାରୁ କି ଚାରୋଟି ପଥ ଚାରି ଦିଗକୁ ପଡ଼ିଅଛି ଯଥା- ପୂର୍ବରେ କୁହାଯାଇଥିବା ଶ୍ୱାସନଳୀ, ଖାଦ୍ୟନଳୀ, ମୁଖ ବିବର, ନାସିକା ବିବର। ଏହି ଖାଲି ସ୍ଥାନର ଉପରେ ଜିଭ ପରି ମାଂସର ଗୋଟିଏ ଛୋଟ ଭାଗ ଥାଏ। ଏହାକୁ କୌଆ ବା ଅଲିଜିଭ (ଘଟିକା) କୁହାଯାଏ। ଏହାଦ୍ୱାରା ନାସିକା ବିବରକୁ ଯିବାବାଟ ବନ୍ଦ କରାଯାଇପାରେ। ସ୍ୱରଯନ୍ତ୍ରରୁ ସ୍ୱରତନ୍ତ୍ରୀ କମ୍ପନ ସହିତ ବହିର୍ଗତ ବାୟୁ ଏହି ଛକ ଦେଇ ଯଦି ନାସିକା ବା ନାସିକା ଓ ମୁଖ ଉଭୟ ପଥରେ ବହିର୍ଗତ ହୁଏ ତାହାହେଲେ ଆମ୍ଭେ ନାସିକ୍ୟ ବା ଅନୁନାସିକ ସ୍ୱରଧ୍ୱନିର ଉଚ୍ଚାରଣ ପାଉଁ। ଯଥା- ଅଁ, ଇଁ, ଉଁ ପ୍ରଭୃତି।

ମୁଖ ବିବରର ଉପରଭାଗ ହେଉଛି, ତାଲୁ। ଏହା କଣ୍ଠସ୍ଥାନରୁ ଦାନ୍ତ ପର୍ଯ୍ୟନ୍ତ ବିସ୍ତୃତ। ଏହାକୁ ଚାରିଭାଗରେ ବିଭକ୍ତ କରାଯାଇଥାଏ। ଯଥା- କୋମଳ ତାଲୁ, ମୂର୍ଦ୍ଧା, କଠିନ ତାଲୁ, ଦାନ୍ତର ମାଢ଼ି; କୋମଳ ତାଲୁ ଓ କଠିନ ତାଲୁ ଏ ଦୁଇ ଅଂଶର ସୀମା ମୂର୍ଦ୍ଧା ବୋଲି ପ୍ରାଚୀନ ଧ୍ୱନିବିତ୍‌ମାନଙ୍କର ମତ। ଏହି ଚାରିଅଂଶକୁ ଜିହ୍ୱା ସ୍ପର୍ଶ କରି ଶ୍ୱାସନଳୀରୁ ଆସୁଥିବା ବାୟୁକୁ କ୍ଷଣମାତ୍ର ରୋଧକରି ଛାଡ଼ିବା ଫଳରେ ମୁଖରେ ବିଭିନ୍ନ ବ୍ୟଞ୍ଜନଧ୍ୱନି ଉଚ୍ଚାରିତ ହୋଇଥାଏ।

ମୁଖବିରର ତଳଭାଗରେ ଜିହ୍ୱା ଥାଏ। ବାଗ୍‌ଯନ୍ତ୍ର‌ଂ ମଧ୍ୟରେ ଜିହ୍ୱା ସବୁଠାରୁ ପ୍ରଧାନ ଅଂଶ ଗ୍ରହଣ କରିଥାଏ। ସାଧାରଣ ଅବସ୍ଥାରେ ଜିଭ ଢିଲା ହୋଇ ମୁଖବିରର ତଳଭାଗରେ ଥାଏ। କଥା କହିବା ସମୟରେ ଏହା ମୁଖବିବରରେ ବିଭିନ୍ନ ପ୍ରକାରରେ ସଞ୍ଚାଳିତ ହୁଏ। ଜିହ୍ୱାକୁ ସାଧାରଣତଃ ଚାରିଭାଗରେ ବିଭକ୍ତ କରାଯାଏ। ଯଥା- (୧) ଜିହ୍ୱାର ଅଗ୍ରବିନ୍ଦୁ, (୨) ଜିହ୍ୱାର ଫଳକ ବା ଅଗ୍ରଭାଗ, (୩) ମଧ୍ୟଭାଗ, (୪) ପଶ୍ଚାଦ୍‌ଭାଗ। ଜିଭ, ଦାନ୍ତ ତଥା ତାଲୁର ବିଭିନ୍ନ ଭାଗକୁ ଛୁଇଁ ବାୟୁର ବେଗକୁ କ୍ଷଣମାତ୍ର ରୁଦ୍ଧ କରିବାଦ୍ୱାରା ବା ତାଲୁର ନିକଟବର୍ତ୍ତୀ ହୋଇ ବାୟୁର ଉଦ୍‌ଗମନ ପଥକୁ ସଂକୀର୍ଣ୍ଣ କରିବା ଦ୍ୱାରା ବିଭିନ୍ନ ବ୍ୟଞ୍ଜନବର୍ଣ୍ଣ ବା ୟ୍, ର୍ ପ୍ରଭୃତି ଅନ୍ତଃସ୍ଥବର୍ଣ୍ଣ ଉଚ୍ଚାରିତ ହୁଏ। ମୁଖବିବରରେ ତାଲୁ ତଥା ଜିହ୍ୱାକୁ ଛାଡ଼ି ଦେଲେ ଆଉ ଗୋଟିଏ ପ୍ରଧାନ ଭାଗ ଦେଉଛି ଦାନ୍ତ, ଯାହାକି କଥା କହିବା ବେଳେ ଆମକୁ ସାହାଯ୍ୟ କରିଥାଏ। ଏହାକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ। ଯଥା- ଦାନ୍ତର ମୂଳଭାଗ ଓ ଅଗ୍ରଭାଗ। ତାହାପରେ ବାଗ୍‌ଯନ୍ତ୍ରର ସର୍ବାପେକ୍ଷା ବହିରଙ୍ଗ ଅଂଶ ହେଉଛି ଓଷ୍ଠଦ୍ୱୟ। ଏହା ପରସ୍ପର ମିଳିତ ହୋଇ ବା ଦାନ୍ତର ସାହାଯ୍ୟ ନେଇ କେତେକ ଧ୍ୱନି ଉତ୍ପାଦିତ କରିପାରନ୍ତି।

ବର୍ତ୍ତମାନ ଆମେ ଜାଣିଲେ ଯେ, ଶ୍ୱାସନଳୀରୁ ସ୍ୱରତନ୍ତ୍ରୀର କମ୍ପନ ସହିତ ବହିର୍ଗତ (ଉତ୍‌ଥିତ) ବାୟୁ ନିର୍ବାଧରେ ଗଳବିବର ଓ ମୁଖବିବର ମଧ୍ୟଦେଇ ବହିର୍ଗତ ହେଲେ ଯେଉଁ ଧ୍ୱନି ଜାତ ହୁଏ ତାକୁ ସ୍ୱରବର୍ଣ୍ଣ କୁହାଯାଏ। ବ୍ୟଞ୍ଜନ ହେଉଛି ସେହି ଧ୍ୱନି ଯାହାର ଉଚ୍ଚାରଣରେ ବାୟୁ ଅବାଧଗତିରେ ମୁଖରୁ ବାହାରେ ନାହିଁ। ଅନ୍ୟ କଥାରେ କହିବାକୁ ଗଲେ ବ୍ୟଞ୍ଜନ ଧ୍ୱନିର ଉଚ୍ଚାରଣରେ ଶ୍ୱାସନଳୀରୁ ଆସୁଥିବା ମୁଖବିରସ୍ଥ ବାୟୁ ଜିହ୍ୱାଦ୍ୱାରା ପୂର୍ଣ୍ଣତଃ ବା ଆଂଶିକ ଭାବରେ ଅବରୁଦ୍ଧ ହୋଇ, ହଠାତ୍ ଅବରୋଧରୁ ମୁକ୍ତ ହୋଇ ବାହାରକୁ ଗତି କରେ। ସାଧାରଣତଃ ଜିହ୍ୱାଦ୍ୱାରା ମୁଖବିବର ମଧ୍ୟରେ ଏହି ଅବରୋଧ କାର୍ଯ୍ୟ ହୁଏ କିମ୍ବା ଓଷ୍ଠଦ୍ୱୟ ଦ୍ୱାରା ଏହି ଅବରୋଧ କାର୍ଯ୍ୟ ହୁଏ।

ଓଡ଼ିଆ ଭାଷାରେ ଅ, ଆ, କ, ଖ ପ୍ରଭୃତି ବର୍ଣ୍ଣମାଳାକୁ ଦୁଇ ଭାଗରେ ବିଭକ୍ତ କରାଯାଏ। (୧) ସ୍ୱରବର୍ଣ୍ଣ, (୨) ବ୍ୟଞ୍ଜନବର୍ଣ୍ଣ। ଓଡ଼ିଆ ଭାଷାରେ ସ୍ୱରବର୍ଣ୍ଣଗୁଡ଼ିକ ଅ, ଆ, ଇ, ଈ, ଉ, ଊ, ଏ, ଐ, ଓ, ଔ। ସଂସ୍କୃତ ଭାଷାରେ ଏଗୁଡ଼ିକ ବ୍ୟତୀତ ଋ, ୠ, ଌ ସ୍ୱରବର୍ଣ୍ଣ ଥିଲା। ଏହା ଓଡ଼ିଆ ଭାଷାରେ ଠିକ୍ ଉଚ୍ଚାରିତ ହୁଏ ନାହିଁ। ସଂସ୍କୃତର ଋ, ୠ, ଌକୁ ଉଚ୍ଚାରଣ କଲାବେଳେ ଓଡ଼ିଆଭାଷୀ ଲୋକ 'ର'ରେ 'ଉ' ଯୁକ୍ତକରି ଓ 'ଲ'ରେ

'ଉ' ଯୁକ୍ତକରି ଉଚ୍ଚାରଣ କରିଥାନ୍ତି। ସ୍ୱରବର୍ଣ୍ଣ ଦୁଇପ୍ରକାର, ହ୍ରସ୍ୱ ଓ ଦୀର୍ଘ। ହ୍ରସ୍ୱସ୍ୱରରେ ଗୋଟିଏ ମାତ୍ରା, ଦୀର୍ଘରେ ଦୁଇଟି ମାତ୍ରା। ଓଡ଼ିଆରେ 'ଅ'କୁ ହ୍ରସ୍ୱ ଓ ତା'ର ଅନୁରୂପ ଦୀର୍ଘସ୍ୱରକୁ 'ଆ' ବୋଲି ଧରାଯାଇଥାଏ। କିନ୍ତୁ ଏହା ଠିକ୍ ନୁହେଁ। 'ଅ'ର ଅନୁରୂପ ଦୀର୍ଘସ୍ୱର 'ଆ' ନୁହେଁ। ସଂସ୍କୃତର 'ନଦୀ' 'ବଧୂ' ପ୍ରଭୃତି ଦୀର୍ଘ ସ୍ୱରାନ୍ତଗୁଡ଼ିକୁ ଓଡ଼ିଆଭାଷୀ ଲୋକ ସାଧାରଣତଃ ହ୍ରସ୍ୱସ୍ୱରାନ୍ତ ଭାବରେ ଉଚ୍ଚାରଣ କରିଥାଏ। ଓଡ଼ିଆରେ ଏ, ଓ ସାଧାରଣତଃ ହ୍ରସ୍ୱସ୍ୱର ଭାବରେ ଉଚ୍ଚାରିତ ହୁଏ। ତୁଳନୀୟ-ଏକ, ଏଣୁଅ। ଓଡ଼ିଆରେ ଐ ଔ ହେଉଛନ୍ତି ସନ୍ଧ୍ୟକ୍ଷର। ଅ, ଇ ମିଶି ଐକାର ହୋଇଥାଏ। ଅ, ଉ ମିଶି ଔ ହୋଇଥାଏ। ଅର୍ଥାତ୍ 'ଅ' 'ଇ'ର ଦ୍ରୁତ ଉଚ୍ଚାରଣରେ 'ଐ' ଏବଂ 'ଅ' 'ଉ'ର ଦ୍ରୁତ ଉଚ୍ଚାରଣରେ ଔ ହୋଇଥାଏ। ଐ, ଔ ବ୍ୟତୀତ କଥିତ ଓଡ଼ିଆରେ ଆଇ, ଆଉ, ଇଆ, ଇଏ, ଉଆ, ଉଇ, ଓଉ ପ୍ରଭୃତିକୁ ଦ୍ରୁତ ଉଚ୍ଚାରଣରେ ଅନ୍ୟ କେତୋଟି ସନ୍ଧ୍ୟକ୍ଷର (diphthong) ର ବ୍ୟବହାର ଅଛି। କିନ୍ତୁ ସେଗୁଡ଼ିକର ସ୍ୱତନ୍ତ୍ର ଲିପି ନାହିଁ।

## ଓଡ଼ିଆ ବ୍ୟଞ୍ଜନ ବର୍ଣ୍ଣମାଳାର ଉଚ୍ଚାରଣ ସ୍ଥାନ ଓ ଉଚ୍ଚାରଣ ପ୍ରକାର

| | ଓଷ୍ଠ୍ୟ | ଦନ୍ତ୍ୟ | ବର୍ତ୍ସ୍ୟ | ମୂର୍ଦ୍ଧଣ୍ୟ | ତାଲବ୍ୟ | କଣ୍ଠ୍ୟ | କାକଲ୍ୟ |
|---|---|---|---|---|---|---|---|
| ସ୍ପର୍ଶ | ପଫବଭ | ତଥଦଧ | | ଟଠଡଢ | | କଖଗଘ | |
| ନାସିକ୍ୟ | ମ | | ନ | ଣ | | ଙ | |
| ପାର୍ଶ୍ୱିକ | | | ଲ | ଳ | | | |
| ଲୋଡ଼ିତ | | | | ର | | | |
| ଉତ୍କ୍ଷିପ୍ତ | | | | ଡ଼ଢ଼ | | | |
| ସଂଘର୍ଷୀ | | ସ | | | | | ହ |
| ସ୍ପର୍ଶ-ସଂଘର୍ଷୀ | | | | | ଚଛଜଝ | | |
| ଅର୍ଦ୍ଧସ୍ୱର | ବ | | | | ୟ | | |

ଦ୍ରଷ୍ଟବ୍ୟ-ଉଲ୍ଲିଖିତ ବ୍ୟଞ୍ଜନଗୁଡ଼ିକ ହଳନ୍ତଭାବରେ ଗ୍ରହଣୀୟ

କ ଠାରୁ ମ ପର୍ଯ୍ୟନ୍ତ ୨୫ଟି ବର୍ଣ୍ଣକୁ ଓଡ଼ିଆରେ ବ୍ୟଞ୍ଜନବର୍ଣ୍ଣ କୁହାଯାଏ। ଏହାକୁ ଓଡ଼ିଆରେ ୫ଟି ବର୍ଗରେ ବିଭକ୍ତ କରାଯାଇପାରେ।

| | | | | | |
|---|---|---|---|---|---|
| କ ବର୍ଗ | କ୍ | ଖ୍ | ଗ୍ | ଘ୍ | ଙ୍ |
| ଚ ବର୍ଗ | ଚ୍ | ଛ୍ | ଜ୍ | ଝ୍ | ଞ୍ |
| ଟ ବର୍ଗ | ଟ୍ | ଠ୍ | ଡ୍ | ଢ୍ | ଣ୍ |
| ତ ବର୍ଗ | ତ୍ | ଥ୍ | ଦ୍ | ଧ୍ | ନ୍ |
| ପ ବର୍ଗ | ପ୍ | ଫ୍ | ବ୍ | ଭ୍ | ମ୍ |

କ ବର୍ଗ ଉଚ୍ଚାରଣ କରିବାବେଳେ ମୁଖବିବରରେ ଜିହ୍ୱାର ପଶ୍ଚାଦ୍‌ଭାଗ ଅପସୃତ ହୋଇ କୋମଳ ତାଲୁକୁ କ୍ଷଣମାତ୍ର ସ୍ପର୍ଶ କରିବାଦ୍ୱାରା ଶ୍ୱାସନୀଳରୁ ନିର୍ଗତ ବାୟୁ ଅବରୁଦ୍ଧ ହୋଇ ମୁକ୍ତ ହୁଏ। ଏଗୁଡ଼ିକୁ କଣ୍ଠ୍ୟବର୍ଣ୍ଣ କୁହାଯାଏ।

ଚ ବର୍ଗର ଧ୍ୱନିଗୁଡ଼ିକୁ ଉଚ୍ଚାରଣ କରିବା ବେଳେ ଜିହ୍ୱାର ଅଗ୍ରଭାଗ କଠୋର ତାଲୁକୁ ସ୍ପର୍ଶ କରି, ଶ୍ୱାସନଳୀରୁ ବହିର୍ଗତ ବାୟୁକୁ ମୁଖବିବରରେ କ୍ଷଣମାତ୍ର ବାଧା ଦେଇ ଛାଡ଼ିଦିଏ। ତେଣୁ ସାଧାରଣତଃ ଏହାକୁ ତାଲବ୍ୟବର୍ଣ୍ଣ କୁହାଯାଏ।

ଟ ବର୍ଗ ଅର୍ଥାତ୍ ଟ୍, ଠ୍, ଡ୍, ଢ୍, ଣ୍ ବର୍ଣ୍ଣର ଉଚ୍ଚାରଣରେ ଜିହ୍ୱା କଠିନ ତାଲୁ ଓ କୋମଳ ତାଲୁ ସୀମାକୁ ବା ପ୍ରାଚୀନ ବୈୟାକରଣଙ୍କ ଭାଷାରେ ମୂର୍ଦ୍ଧାକୁ ସ୍ପର୍ଶ କରିବାରୁ ଏହାକୁ ମୂର୍ଦ୍ଧନ୍ୟବର୍ଣ୍ଣ କୁହାଯାଏ।

'ତ' ବର୍ଗ ଅର୍ଥାତ୍ ତ୍, ଥ୍, ଦ୍, ଧ୍, ନ୍ – ଏହି ବ୍ୟଞ୍ଜନଗୁଡ଼ିକୁ ଓଡ଼ିଆଭାଷୀ ଉଚ୍ଚାରଣ କଲାବେଳେ ଜିହ୍ୱାର ଅଗ୍ର ଅଂଶ ଦାନ୍ତ ମାଡ଼ିକୁ ସ୍ପର୍ଶ କରିଥାଏ। ତେଣୁ ଏହାକୁ ସାଧାଣତଃ ଦନ୍ତ୍ୟବର୍ଣ୍ଣ କୁହାଯାଉଥିଲେ ସୁଦ୍ଧା ଏଗୁଡ଼ିକୁ ଦନ୍ତମୂଳୀୟ ବର୍ଣ୍ଣ କୁହାଯିବା ଉଚିତ।

'ପ' ବର୍ଗ ଅର୍ଥାତ୍ ପ୍, ଫ୍, ବ୍, ଭ୍, ମ୍ କୁ ଉଚ୍ଚାରଣ କରିବା ବେଳେ ଶ୍ୱାସନଳୀରୁ ବହିର୍ଗତ ବାୟୁ ଓଷ୍ଠଦ୍ୱାରା କ୍ଷଣମାତ୍ର ଅବରୁଦ୍ଧ ହୋଇ ଉନ୍ମୁକ୍ତ ହୁଏ। ତେଣୁ ଏଗୁଡ଼ିକୁ ଓଷ୍ଠ୍ୟ ବର୍ଣ୍ଣ କୁହାଯାଏ। ଙ୍, ନ୍, ଞ୍, ଣ୍, ମ୍ – ଏହି ବ୍ୟଞ୍ଜନବର୍ଣ୍ଣ ଉଚ୍ଚାରଣ କରିବା ବେଳେ ଜିହ୍ୱା ବିଭିନ୍ନ ସ୍ଥାନ ସ୍ପର୍ଶ କରିବା ବ୍ୟତୀତ ଶ୍ୱାସନଳୀରୁ ବହିର୍ଗତ ବାୟୁ ଆଂଶିକ ଭାବରେ ନାସିକା ମଧ୍ୟ ଦେଇ ବାହାରି ଯାଉଥିବାରୁ ଏହାକୁ ଅନୁନାସିକ ବର୍ଣ୍ଣ କୁହାଯାଏ। ଏକକ ଞ ଧ୍ୱନି ଓଡ଼ିଆରେ ନାହିଁ। ଅନୁନାସିକ ବର୍ଣ୍ଣ ଉଚ୍ଚାରଣ ବେଳେ କୋମଳ ତାଲୁ ତଳକୁ ଓହଳି ରହେ।

ବର୍ଗର ୧ମ ଓ ୩ୟ ଦୁଇଟି ବର୍ଣ୍ଣକୁ ଅଳ୍ପପ୍ରାଣ ଓ ୨ୟ, ୪ର୍ଥ ବର୍ଣ୍ଣକୁ ମହାପ୍ରାଣ କହନ୍ତି। ଅଳ୍ପପ୍ରାଣ ଉଚ୍ଚାରଣ ଅପେକ୍ଷା ମହାପ୍ରାଣ ବର୍ଣ୍ଣ ଉଚ୍ଚାରଣରେ ମୁହଁବାଟେ ଅଧିକ ପବନ ଯାଏ।

ସ୍ୱର ଏବଂ ବ୍ୟଞ୍ଜନବର୍ଣ୍ଣ ବ୍ୟତୀତ ଓଡ଼ିଆରେ ୟ୍, ର୍, ଲ୍, ୱ୍, ସ୍, ହ୍ ଉଚ୍ଚାରିତ ହୁଏ, ଏଗୁଡ଼ିକ ଅନ୍ତଃସ୍ଥ ବର୍ଣ୍ଣ। ଏତଦ୍‌ବ୍ୟତୀତ 'ଳ'ର ଉଚ୍ଚାରଣ ମଧ୍ୟ ଓଡ଼ିଆ ଭାଷାର ଗୋଟିଏ ବୈଶିଷ୍ଟ୍ୟ। ୟ, ର, ଲ ପ୍ରଭୃତିକୁ ଅନ୍ତଃସ୍ଥ ବର୍ଣ୍ଣ କହିବାର ତାତ୍ପର୍ଯ୍ୟ ହେଉଛି, ବ୍ୟଞ୍ଜନବର୍ଣ୍ଣ ଓ ସ୍ୱରବର୍ଣ୍ଣର ମଧ୍ୟବର୍ତ୍ତୀ ଏଗୁଡ଼ିକର ସ୍ଥାନ। ସ୍ୱରବର୍ଣ୍ଣ ଉଚ୍ଚାରଣରେ ବାୟୁ କୌଣସିଠାରେ ବାଧାପ୍ରାପ୍ତ ହୁଏ ନାହିଁ ବା ଅବରୁଦ୍ଧ ହୁଏ ନାହିଁ। ବ୍ୟଞ୍ଜନ ଉଚ୍ଚାରଣରେ ବାୟୁ ସ୍ପଷ୍ଟ ଭାବରେ ଅବରୁଦ୍ଧ ହୁଏ। କିନ୍ତୁ ଅନ୍ତଃସ୍ଥ ବର୍ଣ୍ଣ ଉଚ୍ଚାରଣରେ ବାୟୁର ପଥ ସଂକୀର୍ଣ୍ଣ ହୋଇଯାଏ ବା ମୁଖବିବରରେ ବାୟୁର ପଥ ଅଳ୍ପ ଅବରୁଦ୍ଧ ହୁଏ। ତେଣୁ ଏହାକୁ ସ୍ୱର ଓ ବଞ୍ଜନର ମଧ୍ୟବର୍ତ୍ତୀ ବର୍ଣ୍ଣ କହିବା ଭୁଲ ହେବ ନାହିଁ।

ଅନ୍ତଃସ୍ଥ 'ୟ' ଉଚ୍ଚାରଣ କଲାବେଳେ ଜିହ୍ୱାର ସମ୍ମୁଖଭାଗ କଠିନ ତାଲୁର ଅତି ସମୀପବର୍ତ୍ତୀ ହୁଏ। ସ୍ୱରତନ୍ତ୍ରୀଦ୍ୱୟ କମ୍ପିତ ହୁଏ। ତେଣୁ ଏହାକୁ ତାଲବ୍ୟ ଅର୍ଦ୍ଧସ୍ୱର (Semivowel) କୁହାଯାଇପାରେ। 'ର' ଉଚ୍ଚାରଣ କଲାବେଳେ ଜିହ୍ୱାର ଅଗ୍ରଭାଗ ମୂର୍ଦ୍ଧାଆଡ଼କୁ ଗତିକରି ଓ ମୂର୍ଦ୍ଧାକୁ ସାମାନ୍ୟ ସ୍ପର୍ଶ କରି କମ୍ପିତ ହେଉଥିବାରୁ ବା ହଲୁଥିବାରୁ ଏହାକୁ ମୂର୍ଦ୍ଧନ୍ୟ ଅନ୍ତଃସ୍ଥ ବର୍ଣ୍ଣ କୁହାଯାଇଥାଏ କିମ୍ବା କମ୍ପିତ 'ର' (Thrilled'r) କୁହାଯାଇଥାଏ।

'ଲ' ଉଚ୍ଚାରଣ କଲାବେଳେ ଜିହ୍ୱାର ଅଗ୍ରବିନ୍ଦୁ ତାଳୁର ଅଗ୍ରଭାଗ ବା ଦାନ୍ତର ମାଢ଼ି ସ୍ପର୍ଶ କରୁଥିବାରୁ ଏବଂ ଜିହ୍ୱାର ଉଭୟ ପାର୍ଶ୍ୱରେ ବା ଏକ ପାର୍ଶ୍ୱରେ ବାୟୁ ବହି ନିର୍ଗତ ହେଉଥିବାରୁ ଏହାକୁ ପାର୍ଶ୍ୱିକ ବର୍ଣ୍ଣ କୁହାଯାଏ। ଏଥିରେ ସ୍ୱରତନ୍ତ୍ରୀଦ୍ୱୟର କମ୍ପନ ମଧ୍ୟ ହୁଏ। ଓଡ଼ିଆଭାଷୀ 'ଲ' ଉଚ୍ଚାରଣ କଲାବେଳେ ତାହାର ଜିହ୍ୱା ଦାନ୍ତକୁ ସ୍ପର୍ଶ କରୁ ନ ଥିବାରୁ ଏବଂ ଦନ୍ତମୂଳକୁ ସ୍ପର୍ଶ କରୁଥିବାରୁ ଏହାକୁ ଦନ୍ତ୍ୟ ବର୍ଣ୍ଣ ନ କହି ଦନ୍ତମୂଳୀୟ କୁହାଯାଇପରେ।

ସଂସ୍କୃତର 'ୱ' ଏକକ ହୋଇ ରହିଲେ ଓଡ଼ିଆରେ ବର୍ଗୀୟ 'ବ' ଭାବରେ ଉଚ୍ଚାରିତ ହୁଏ। କିନ୍ତୁ ବ୍ୟଞ୍ଜନ ଧ୍ୱନିର ଅବ୍ୟବହିତ ପରେ ରହିଲେ ଏହା ଠିକ୍ ଭାବେ ଉଚ୍ଚାରିତ ହୋଇଥାଏ। ଏହାର ଉଚ୍ଚାରଣରେ ଜିହ୍ୱା 'ଉ' ଉଚ୍ଚାରଣ ସ୍ଥାନରେ ରହି ଅପେକ୍ଷାକୃତ ବିବୃତ ସ୍ୱର ଉଚ୍ଚାରଣ କରିବା ସ୍ଥାନକୁ ଶୀଘ୍ର ଯାଏ। ସ୍ୱରତନ୍ତ୍ରୀ କମ୍ପିତ ହୁଏ। ଜିହ୍ୱାର ପଶ୍ଚାଦ୍‌ଭାଗ ଉତ୍ତୋଳିତ ହୁଏ। ଓଷ୍ଠ ଗୋଲାକୃତ ହୋଇ ସ୍ୱାଭାବିକ ଅବସ୍ଥା ଲାଭ କରେ। 'ଳ' ଉଚ୍ଚାରଣ କରିବା ବେଳରେ ଜିହ୍ୱାର ଅଗ୍ରଭାଗ ତାଳୁର ତଳେ ବକ୍ର ହୋଇ ହଠାତ୍ ମୂର୍ଦ୍ଧାକୁ ସ୍ପର୍ଶ କରି ବେଗରେ ତଳକୁ ଆସି ଅବସ୍ଥାନ କରେ ବୋଲି ଏହାକୁ ମୂର୍ଦ୍ଧନ୍ୟତର ବା ତାଡ଼ିତ (Flapped) ବର୍ଣ୍ଣ ବୋଲାଯାଇପାରେ।

ଓଡ଼ିଆଭାଷୀ ସାଧାରଣତଃ 'ଶ' 'ଷ' ଉଚ୍ଚାରଣ କରେ ନାହିଁ। ସଂସ୍କୃତର 'ଶ' 'ଷ'କୁ ସେ 'ସ' ଭାବରେ ଉଚ୍ଚାରଣ କରେ। ସଂସ୍କୃତର 'ସବିଶେଷ' ଏହି ସମାସ

ପଦଟିରେ ତିନୋଟିଯାକ 'ଶ' 'ଷ' 'ସ' ଥିଲେ ମଧ୍ୟ ଓଡ଼ିଆଭାଷୀ ସେସବୁକୁ ସାଧାରଣ ଭାବରେ 'ସ' ବୋଲି ଉଚ୍ଚାରଣ କରିଥାଏ। ଏହି ଦନ୍ତ୍ୟ 'ସ'' ଉଚ୍ଚାରଣ କଲାବେଳେ ଜିହ୍ୱାର ସମ୍ମୁଖଭାଗ କଠିନ ତାଲୁଆଡ଼କୁ ଉତ୍ତୋଳିତ ହୋଇଥାଏ ଏବଂ ତାଲୁ ଆଉ ଜିହ୍ୱା ମଧ୍ୟବର୍ତ୍ତୀ ସ୍ଥାନ ଏତେ ସଂକୀର୍ଣ୍ଣ ହୋଇଯାଏ ଯେ ଶ୍ୱାସନଳୀରୁ ବହିର୍ଗତ ବାୟୁ ଉକ୍ତ ସଂକୀର୍ଣ୍ଣ ସ୍ଥାନ ଦେଇ ଗତି କଲାବେଳେ ଘର୍ଷଣ ଧ୍ୱନି ଜାତ ହୁଏ। ଜିହ୍ୱାର ଅଗ୍ରବିନ୍ଦୁ ଦନ୍ତର ମୂଳକୁ ସ୍ପର୍ଶ କରୁଥିବାରୁ ଏହାକୁ ଦନ୍ତ୍ୟ 'ସ' ନ କହି ଦନ୍ତମୂଳୀୟ 'ସ' କହିବା ଉଚିତ। ଆଧୁନିକ ଧ୍ୱନିଶାସ୍ତ୍ରରେ ପୂର୍ବୋକ୍ତ ସଂଘର୍ଷ ହେତୁ ଏହାକୁ ଘୃଷ୍ଟ ବା Fricative ଧ୍ୱନି କୁହାଯାଏ।



[ ବାଗ୍‌ଯନ୍ତ୍ର ]

୧. ଓଷ୍ଠ ୨. ଦାନ୍ତ , ୩.ବର୍ତ୍ସ, ୪. କଠିନ ତାଲୁ, ୫. କୋମଳ ତାଲୁ, ୬. ଘଣ୍ଟିକା, ୭ ଜିହ୍ୱାଗ୍ର, ୮. ଜିହ୍ୱାଫଳକ, ୯. ଅଗ୍ରଜିହ୍ୱା, ୧୦. ପଶ୍ଚାତ୍ ଜିହ୍ୱା, ୧୧. ଗଳାଗହ୍ୱର, ୧୨. ସ୍ୱରଯନ୍ତ୍ରାବରଣ, ୧୩. ସ୍ୱରତନ୍ତ୍ରୀ, ୧୪. ଶ୍ୱାସନଳୀ, ୧୫. ନାସାରନ୍ଧ୍ର ମାର୍ଗ ।



(ଓଡ଼ିଆ ସ୍ୱରମାନଙ୍କର ସ୍ଥିତି)

'ହ' ଧ୍ୱନି ଉଚ୍ଚାରଣ କଲାବେଳେ ସ୍ୱରତନ୍ତ୍ରୀର କମ୍ପନ ସହିତ ଶ୍ୱାସନଳୀରୁ ନିର୍ଗତ ବାୟୁ ଜୋର୍‌ରେ ପ୍ରବାହିତ ହେବା ଫଳରେ କଣ୍ଠବିବରରେ ସାମାନ୍ୟ ଘର୍ଷଣ ମାତ୍ର ଶୁଣାଯାଏ। 'ଅ' ଅପେକ୍ଷା ଏଥିରେ ବହିଃସୃତ ବାୟୁର ମାତ୍ରା ଅଧିକ। କଣ୍ଠ ଭିତରେ ଘର୍ଷଣ ହେଉଥିବାରୁ ଏହାକୁ ସାଧାରଣତଃ କଣ୍ଠ୍ୟବର୍ଣ୍ଣ ବୋଲି ପ୍ରାଚୀନ ବୈୟାକରଣମାନେ କହିଛନ୍ତି।

'କ୍ଷ'କୁ କେହି କେହି ଏକକ ବ୍ୟଞ୍ଜନ ବୋଲି ଧରନ୍ତି। କିନ୍ତୁ ପ୍ରକୃତ ପକ୍ଷେ ଏହା ଯୁକ୍ତାକ୍ଷର। 'କ୍' 'ଷ'ର ମିଶ୍ରଣରେ ଏହା ଉଚ୍ଚାରିତ ହୋଇଥାଏ। କିନ୍ତୁ ଓଡ଼ିଆରେ ଏହା ସାଧାରଣଃ 'ଖ୍ୟ' ଭାବରେ ଉଚ୍ଚାରିତ ହୁଏ।

ଓଡ଼ିଆର ସ୍ୱରବର୍ଣ୍ଣ[୩]ଗୁଡ଼ିକ ଉଚ୍ଚାରଣ କରିବାରେ କେତେକ ସ୍ଥଳରେ ଜିହ୍ୱାର ସମ୍ମୁଖଭାଗ ମୁଖବିବରରେ ଆଗକୁ ପ୍ରସାରିତ ହୋଇଥାଏ କିମ୍ବା ପଶ୍ଚାଦ୍‌ଭାଗ ପ୍ରତ୍ୟାହୃତ ହୋଇଥାଏ। ତେଣୁ ଆଧୁନିକ ବିଜ୍ଞାନରେ 'ଇ' 'ଏ' ପ୍ରଭୃତିକୁ ସମ୍ମୁଖ ସ୍ୱର ଏବଂ 'ଉ' 'ଓ' ପ୍ରଭୃତିକୁ ପଶ୍ଚାତ୍ ସ୍ୱର କୁହାଯାଏ। ସ୍ୱରବର୍ଣ୍ଣଗୁଡ଼ିକ ଉଚ୍ଚାରଣରେ ଓଷ୍ଠଦ୍ୱୟ ଅଳ୍ପାଧିକ ପରିମାଣରେ ବିବୃତ ବା ସଂବୃତ ହୋଇଥାଏ। ତେଣୁ ସ୍ୱରବର୍ଣ୍ଣଗୁଡ଼ିକୁ ମୋଟାମୋଟି ବିବୃତ ସ୍ୱର ବା ସଂବୃତ ସ୍ୱର ବୋଲି ବିଭକ୍ତ କରାଯାଏ। ଏହି ପର୍ଯ୍ୟାୟରେ 'ଇ' 'ଉ'କୁ ସଂବୃତ ସ୍ୱର (Close vowel) ଏବଂ 'ଆ'କୁ ବିବୃତ ସ୍ୱର (Open vowel) କୁହାଯାଇପାରେ।

ଓଡ଼ିଆରେ ସାଧାରଣତଃ ଆଠଗୋଟି ସ୍ୱର ଅଛି : ଅ,ଆ,ଇ,ଉ,ଏ, ଓ,ଐ,ଔ ଏମାନଙ୍କ ମଧ୍ୟରୁ ପ୍ରଥମ ଛଟି ଶୁଦ୍ଧସ୍ୱର ଓ ଶେଷ ଦୁଇଟି ଐ,ଔ,ସଂଯୁକ୍ତ ସ୍ୱର । କେତେକ ଭାଷାବିତ୍ ଶେଷ ସଂଯୁକ୍ତ ସ୍ୱର ଦୁଇଟିକୁ ଦୁଇଟି ସ୍ୱତନ୍ତ୍ର ସ୍ୱର ବୋଲି ସ୍ୱୀକାର ନ କରି ବରଂ ସେମାନଙ୍କୁ ଅ,ଇ,ଓ ଅ,ଉର ସିକ୍ୱେନ୍‌ସ ବା ଅନୁକ୍ରମ ବୋଲି ବିଚାର କରିଥାନ୍ତି । ସେମାନଙ୍କୁ ଫୋନେଟିକସ୍ ଅକ୍ଷର ବା ଧ୍ୱନିଲିପିରେ ଯଥାକ୍ରମେ [ɔi] [ɔu] ଭାବରେ ସୂଚିତ କରିଥାନ୍ତି ।

---

୧. "(ବକ୍ତ୍ର) ଭିତରେ ଜିହ୍ୱା ବୋଲି ବସ୍ତୁ ଏକ ମର୍କଟୀ ଖଟାଇଲା ଅଛି। ସେ ମର୍କଟୀର ଶରୀର ସର୍ପର ପ୍ରାୟେକ ଅଛି।" (ରୁଦ୍ରସୁଧାନିଧି, ପୃ.୬୮)

୨. ଅଷ୍ଟୌ ସ୍ଥାନାନି ବର୍ଣ୍ଣାନାମ୍ ଉରଃ କଣ୍ଠଃ ଶିରସ୍ତଥା।
ଜିହ୍ୱାମୂଳଂଚ ଦନ୍ତାଶ୍ଚ ନାସିକୌଷ୍ଠୌ ଚ ତାଲୁ ଚ ॥
ଅଚୋଽସ୍ପୃଷ୍ଟା ଯଣସ୍ତ୍ୱୀଷନ୍ନେମସ୍ପୃଷ୍ଟାଃ ଶଲଃ ସ୍ମୃତାଃ ।
ଶେଷାଃ ସ୍ପୃଷ୍ଟା ହଲଃ ପ୍ରୋକ୍ତା ନିବୋଧାନୁପ୍ରଦାନତଃ ॥
ଞମୋଽନୁନାସିକା ନହ୍ନୌ ନା ଦିନୋ ହଝ୍‌ଷଃ ସ୍ମୃତାଃ ।
ଈଷନ୍ନାଦା ଯଣୋ ନଶ୍ଚ ଶ୍ୱାସିନସ୍ତୁ ଖଫାଦୟଃ ॥ (ପାଣିନୀୟ ଶିକ୍ଷା)

୩. ୧୨/୬/ଭାଗବତ

ଯେକାକ୍ଷର ବ୍ରହ୍ମ ପ୍ରଣବ । ଶବଦ ରୂପୀ ସର୍ବଜୀବ ॥
ତାଙ୍କର ତହୁଁ ଉତପନ୍ନ । 'ଅ'କାରାଦି ଚଉଦ ବର୍ଣ୍ଣ ॥
ଯେ ଭାବେ ଏ ଅକ୍ଷର ପଂକ୍ତି । ଚଉଦ ସ୍ୱର ଏ ବୋଲନ୍ତି ॥
'କ' କାରାଦି ଯେ ଚଉତ୍ରିଂଶ । ବ୍ୟଞ୍ଜନ ସ୍ୱର ଯେ ବିଶେଷ ॥
ସ୍ୱରମାନେ ଦୀର୍ଘ ହରସ୍ୱ । ପ୍ଳୁତମ ନାମେ ସର୍ବ ଲିସ ॥
ସନ୍ଧି ଅକ୍ଷର ଯେ ବୋଲାଇ । 'ଇ' କାରାଦି 'ମ' କାର ହୋଇ
ପଞ୍ଚାକ୍ଷରେ ପଞ୍ଚ ପଞ୍ଚ । ପାଞ୍ଚ ବର୍ଣ୍ଣରେ ବର୍ଗ ସଞ୍ଚ ॥
ଅନ୍ତସ୍ଥ ଯେଥୁ ଅନନ୍ତରେ । 'ଯ''ର''ଳ''ବ'ଘେନ ମନରେ ॥
ଶ,ଷ,ସ,ହ,ଯେ ଚାରି ବର୍ଣ୍ଣ । ଉଷ୍ମ ବର୍ଣ୍ଣେଣ ବିଦ୍ୟମାନ ॥
ବିନ୍ଦୁ ଅନୁସ୍ୱାର ବୋଲାଇ । ସେ ବିନ୍ଦୁ ଦୁଇ ଯେବେ ହୋଇ
ବିସର୍ଗ ନାମ ସେ ବୋଲାଇ । ବିସର୍ଗ ତିନି ରୂପ ହୋଇ ॥
ଦ୍ୱିବିନ୍ଦୁ ବକ୍ରାକୃତି କହି । ଗଜ କୁମ୍ଭାକୃତି ଯେ ହୋଇ ॥
ଯେମନ୍ତ ହୋଇ ଶଦ ବ୍ରହ୍ମ । ପଞ୍ଚାଶ ବର୍ଣ୍ଣ ଭେଦ ନାମ ॥

ତାଳପତ୍ର ପୋଥି



ସୌଜନ୍ୟ : ଇଣ୍ଟରନେଟ୍



# ଓଡ଼ିଆ ଲିପିର କ୍ରମବିକାଶ

ସତ୍ୟନାରାୟଣ ରାଜଗୁରୁ

**ଲିପିର ପ୍ରାଚୀନତମ ଅବସ୍ଥା :**

ଓଡ଼ିଆ ଲିପିର ମୌଳିକ ଆକୃତି ତାହାର ବିକାଶ ଓ ପରିବର୍ତ୍ତନ ସମ୍ବନ୍ଧେ ଆଲୋଚନା କରିବାକୁ ହେଲେ ପ୍ରାୟ ଦୁଇ ହଜାର ବର୍ଷ ପୂର୍ବେ ଯେଉଁ ଅକ୍ଷର ଏ ଦେଶରେ ପ୍ରଚଳିତ ଥିଲା, ସେଥିପ୍ରତି ଧ୍ୟାନ ଦେବାକୁ ହେବ। ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ମୌର୍ଯ୍ୟବଂଶୀୟ ରାଜା ଅଶୋକ କଳିଙ୍ଗ ଜୟ କରି ଓଡ଼ିଶା ଅନ୍ତର୍ଗତ ଧଉଳି ଓ ଜଉଗଡ଼ରେ ତାଙ୍କର ଧର୍ମ ଅନୁଶାସନ ଶିଳାଗାତ୍ରରେ ଖୋଳାଇଥିଲେ। ଆମ୍ଭେ ଜାଣିବାରେ ତାହାହିଁ ଏ ଦେଶର ସର୍ବପ୍ରଥମ ଲିପି। ଏହାକୁ ପଣ୍ଡିତମାନେ 'ପ୍ରାଚୀନ-ବ୍ରାହ୍ମୀ' ବୋଲି କହୁଛନ୍ତି। ଏ ଲିପିର ଅଧିକାଂଶ ଅକ୍ଷର କୋଣ ବିଶିଷ୍ଟ ଏବଂ ସରଳ ବା ଗୋଲ-ରେଖାରେ ଅଙ୍କିତ ହେଉଥିଲା। କେହି କେହି ପଣ୍ଡିତଙ୍କ ମତରେ ଏ ଲିପି ମଧ୍ୟଏସିଆ ତଥା ମିଶର ପ୍ରଭୃତି ଦେଶରେ ସେତେବେଳେ ପ୍ରଚଳିତ ଅକ୍ଷରମାନଙ୍କର ଅନୁକରଣରେ ସୃଷ୍ଟି ହୋଇଥିଲା। କିନ୍ତୁ, ସିନ୍ଧୁ ଉପତ୍ୟକାରୁ ଖ୍ରୀଷ୍ଟପୂର୍ବ ୨୦୦୦ ବା ତତୋଧିକ କାଳର ମାନବ-ସଭ୍ୟତାର ଯେଉଁ ନିଦର୍ଶନ ଭୂଗର୍ଭରୁ ଆବିଷ୍କୃତ ହେଲା, ତାହା ପରୀକ୍ଷା କରିବାରେ ଜଣାଯାଇଛି ଯେ, ଭାରତକୁ ଆର୍ଯ୍ୟମାନେ ଆସିବାର ବହୁକାଳ ପୂର୍ବରୁ ଗୋଟିଏ ସଭ୍ୟ-ଶିକ୍ଷିତ ସଂପ୍ରଦାୟ ଏଠାରେ ବାସ କରୁଥିଲେ। ସେମାନେ ଏକପ୍ରକାର ଅଦ୍ଭୁତ ଲିପି ବ୍ୟବହାର କରୁଥିଲେ। ସେଥିର ନମୁନା ସେ ଯୁଗରେ ବ୍ୟବହୃତ ମୃତ୍ତିକା-ନିର୍ମିତ ମୁଦ୍ରା ଓ କେତେକ ଗୃହୋପଯୋଗୀ ଉପକରଣରୁ ପ୍ରକଟିତ ହୁଏ।

ପୁଣି ସେ ଲିପିମାନଙ୍କର ଆକୃତି ସାଙ୍କେତିକ ଚିତ୍ରପରି ଦେଖାଯାଏ। ସମ୍ଭବତଃ ମିଶର, ବାବିଲୋନିଆ ପ୍ରଭୃତି ଦେଶରେ ଅତି ପ୍ରାଚୀନ ଯୁଗରେ ଯେପରି ଚିତ୍ର ସାହାଯ୍ୟରେ ଭାବ ପ୍ରକାଶ କରାଯାଉଥିଲା, ପୁଣି କାଳର ପ୍ରସାର ସଙ୍ଗେ ସଙ୍ଗେ ସେହି ଚିତ୍ରଗୁଡ଼ିକ କ୍ରମେ ସାଙ୍କେତିକ ଚିତ୍ରରେ ପରିଣତ ହେଲା ଓ ପରେ ସେଥିରୁ ଦୁର୍ବୋଧ୍ୟ ରେଖାସମ୍ବଳିତ ଅକ୍ଷରାବଳୀ ଗଠିତ ହେଲା, ସେହିପରି ରେଖା ସାହାଯ୍ୟରେ ଶବ୍ଦ ଓ ଭାବ ଲିପିବଦ୍ଧ କରାଯାଉଥିଲା। ଚିତ୍ରଲିପି (Hieroglyph) ଯୁଗରୁ ଆରମ୍ଭ କରି ପ୍ରାଚୀନ-ବ୍ରାହ୍ମୀଲିପି ସୃଷ୍ଟି

ହେବା ମଧ୍ୟରେ ହୁଏତ ଦୁଇ ବା ଅଢ଼େଇ ହଜାର ବର୍ଷ ଗତ ହୋଇଯାଇଛି। ସିନ୍ଧୁ-ଉପତ୍ୟକାରୁ ମିଳିଥିବା ଲିପି ଏବଂ ଅଶୋକଙ୍କର ଲିପି ମଧ୍ୟରେ ଅନ୍ୟୁନ ୨୦୦୦ ବର୍ଷ ପ୍ରଭେଦ ରହୁଥିବାରୁ ପୁଣି ଏ ଉଭୟ ଲିପିର ମଧ୍ୟକାଳରେ ବ୍ୟବହୃତ ଅନ୍ୟ କୌଣସି ଅକ୍ଷର ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇନଥିବାରୁ, ଅଶୋକ-ଲିପି ସାହାଯ୍ୟରେ ସିନ୍ଧୁ-ଉପତ୍ୟକାରୁ ପ୍ରାପ୍ତ ଲିପିଗୁଡ଼ିକ ପାଠକରିବା ସମ୍ଭବପର ହେଉନାହିଁ। ତେବେ, ଭାରତବାସୀଙ୍କର ଲିପିଜ୍ଞାନ ସମ୍ବନ୍ଧେ ସେହି ସୈନ୍ଧବ ଲିପି ହିଁ ସମସ୍ତ ସନ୍ଦେହ ଦୂର କରି ଦେଇଛି।

**ପ୍ରାଚୀନ-ବ୍ରାହ୍ମୀଲିପି :**

ଆଗରୁ କୁହାଯାଇଛି ଯେ, ଭାରତବର୍ଷରୁ ଆବିଷ୍କୃତ ଓ ପଠିତବ୍ୟ ଲିପିମାନଙ୍କ ମଧ୍ୟରେ ପ୍ରାଚୀନ-ବ୍ରାହ୍ମୀ ସର୍ବପ୍ରଥମ; ସେତେବେଳେ ଖରୋଷ୍ଟ୍ରୀ ନାମକ ଅନ୍ୟ ଏକପ୍ରକାର ଲିପି ସୁଦୂର ପଞ୍ଜାବ ପ୍ରଦେଶରେ ବ୍ୟବହୃତ ହେଉଥିଲା। ତେବେ ଏ ଦେଶର ଶିକ୍ଷିତ ସଂପ୍ରଦାୟ ବ୍ରାହ୍ମୀଲିପିକୁ ହିଁ ଅବଲମ୍ବନ କରିଥିଲେ। ଭାରତରେ ଲିଖିତ ଗ୍ରନ୍ଥମାନଙ୍କ ମଧ୍ୟରେ ଯାସ୍କଙ୍କର ନିରୁକ୍ତ, ପାଣିନିଙ୍କର ବ୍ୟାକରଣ ଏବଂ ପତଞ୍ଜଳିଙ୍କର ଭାଷ୍ୟ ପ୍ରାଚୀନତମ। ସେଗୁଡ଼ିକର ସୃଷ୍ଟିକାଳ ଖ୍ରୀଷ୍ଟପୂର୍ବ ୫ମଠାରୁ ୨ୟ ଶତାବ୍ଦୀ ମଧ୍ୟରେ ବୋଲି ନିରୂପିତ ହୋଇଥାଏ। ଏଥିର କିଛିକାଳ ପୂର୍ବରୁ ବ୍ରାହ୍ମୀଲିପିର ବିକାଶ ଯୁଗ ନିରୂପିତ ହେବା ସମୀଚୀନ। ଭାରତରେ ବର୍ତ୍ତମାନ ଯେଉଁ ବିଭିନ୍ନ ପ୍ରକାର ଲିପି ଭିନ୍ନ ଭିନ୍ନ ପ୍ରଦେଶରେ ବ୍ୟବହୃତ ହୁଏ, ସେ ସମସ୍ତର ମୂଳ 'ବ୍ରାହ୍ମୀ'। ଏଣୁ କୌଣସି ପ୍ରାଦେଶିକ ଭାଷାପାଇଁ ସ୍ୱତନ୍ତ୍ର ଲିପିର କଳ୍ପନା କରିବା ଠିକ୍ ନୁହେଁ। ସ୍ଥୁଳରେ କହିବାକୁ ଗଲେ, ଅନ୍ୟାନ୍ୟ ଲିପିମାନଙ୍କ ପରି ଓଡ଼ିଆ ଲିପିର ଆଦିମ ଆକୃତି ବ୍ରାହ୍ମୀ-ଲିପିର ଅନ୍ତର୍ଗତ। (ପ୍ରଥମ ନମ୍ବର ଚିତ୍ରରେ ଏହା ପ୍ରଦର୍ଶିତ ହେଲା)[୧]। ପରବର୍ତ୍ତୀ ଯୁଗରେ, ଉପରବର୍ଣ୍ଣିତ ବ୍ରାହ୍ମୀଲିପିର କ୍ରମବିକାଶ ଲାଗି ଯେଉଁ କାରଣଗୁଡ଼ିକ ନିର୍ଦ୍ଦେଶ କରାଯାଇପାରେ, ସେଥିମଧ୍ୟରୁ ଲିପିକାରର ରୁଚି ଏବଂ ଲିଖନ ଉପାଦାନଗୁଡ଼ିକର ବୈଶିଷ୍ଟ୍ୟ ପ୍ରଧାନ କହିଲେ ଚଳେ। ଲିପିକାର ରୂପେ ପୂର୍ବେ ରାଜାମାନଙ୍କ ଠାରୁ ଉପାଧି ପାଇ କେତୋଟି ନିର୍ଦ୍ଦିଷ୍ଟ ପରିବାର ବିଭିନ୍ନ ରାଷ୍ଟ୍ରରେ ରହୁଥିଲେ। ସେମାନଙ୍କର କୌଳିକ ତଥା ପାରିବାରିକ କର୍ମ ଓ ଜୀବିକା ଥିଲା ଲିଖନ-ବିଦ୍ୟା। ସମ୍ଭବତଃ ପରବର୍ତ୍ତୀକାଳରେ ପାରିବାରିକ ବା କୌଳିକ ରୁଚିର ସ୍ୱାତନ୍ତ୍ର୍ୟ ରକ୍ଷା ପାଇଁ ସରଳରେଖାଯୁକ୍ତ ବ୍ରାହ୍ମୀଲିପିକୁ କେବେ କେବେ ସାମାନ୍ୟ ପରିବର୍ତ୍ତନ କରି ସେମାନେ ଲେଖୁଥିଲେ। ସେହିପରି ଲିଖନ ଉପାଦାନରେ ଲିପିର ସ୍ଥାୟିତ୍ୱ ଦୃଷ୍ଟିରୁ ମଧ୍ୟ ସରଳ ରେଖାବଳୀ କ୍ରମେ ବଙ୍କା ଓ ଗୋଲ ହୋଇଗଲା। ଅତଏବ ଅଶୋକଙ୍କ ସମୟରେ ବିଭିନ୍ନ ଫଳକରେ ଯେଉଁ

ଅକ୍ଷରଗୁଡ଼ିକ ଲେଖା ଅଛି, ସେଥିରୁ ଗୋଟିଏ ଗୋଟିଏ ଅକ୍ଷରର ଆକୃତି ମଧ୍ୟରେ କିଛି କିଛି ପରିବର୍ତ୍ତନ ଦେଖିବାକୁ ମିଳେ। (୨ ନମ୍ବର ଚିତ୍ରରେ ଏହା ଦ୍ରଷ୍ଟବ୍ୟ।)[୨]

ଉପରୋକ୍ତ ବିଧିରେ ବକ୍ରରେଖା ସମ୍ବଳିତ ଅକ୍ଷର ଓଡ଼ିଶାରେ ପ୍ରବର୍ତ୍ତିତ ହେବା ମୂଳରେ ତାଳପତ୍ର ଓ ଲୌହ ଲେଖନୀର ବ୍ୟବହାର ହିଁ ପ୍ରଧାନ କାରଣରୂପେ ନିର୍ଦ୍ଦେଶ କରାଯାଇପାରେ। ତାଳପତ୍ରରେ ସରଳରେଖାଯୁକ୍ତ ଅକ୍ଷର ଲେଖିଲେ ତାହା ଅଚିରେ ନଷ୍ଟହେବା ସମ୍ଭବ। ଏହା ଦୂର କରିବାପାଇଁ ତତ୍କାଳୀନ ଲିପିକାର ସରଳରେଖା ସ୍ଥାନରେ ବକ୍ରରେଖା ପ୍ରବର୍ତ୍ତିତ କରିବାକୁ ବାଧ୍ୟ ହେଲେ। ଦାକ୍ଷିଣାତ୍ୟରେ ଏହି ଗୋଲ ଅକ୍ଷର ବିଶେଷ ଭାବରେ ପ୍ରଚଳିତ ଥିଲା। କାରଣ ସେହି ପ୍ରଦେଶରେ ତାଳପତ୍ରର ବ୍ୟବହାର ଖୁବ୍ ବେଶୀ। ଏହି ଗୋଲ ଆକୃତିର ଲିପିକୁ ତାମିଲ ଭାଷାଭାଷୀ ଅଞ୍ଚଳରେ କୋଟ୍ଟେଲୁତ୍ତୁ (ବର୍ତ୍ତୁଳତ୍ୱ) କୁହାଯାଇଛି।

**ପରବର୍ତ୍ତୀ ବ୍ରାହ୍ମୀଲିପି** (ଖ୍ରୀ:ପୂ: ୧ମ-ଖ୍ରୀ:ପୂ:୪ର୍ଥ ଶତାବ୍ଦୀ)

କାଳକ୍ରମେ ପ୍ରାଚୀନ ବ୍ରାହ୍ମୀଲିପିରେ ପ୍ରାଦେଶିକ ଭେଦରେ ସାମାନ୍ୟ ପରିବର୍ତ୍ତନ ଘଟିଲା। ଏ ଲିପିକୁ 'ପରବର୍ତ୍ତୀ ବ୍ରାହ୍ମୀ' ବୋଲି କୁହାଯାଏ। ସାଧାରଣତଃ, ଓଡ଼ିଶାରେ ଖାରବେଳଙ୍କ ସମୟର ଲିପି ଏ ଶୈଳୀର ଅନ୍ତର୍ଗତ। ଭୁବନେଶ୍ୱର ନିକଟରେ ଉଦୟଗିରି ପାହାଡ଼ରେ ଥିବା ହାତୀଗୁମ୍ଫାରେ ଯେଉଁ ଦୀର୍ଘ ଅନୁଶାସନଟି ଖୋଦିତ ଅଛି, ସେଥିରୁ ପାଲି ଭାଷାରେ କଳିଙ୍ଗ ରାଜା ଖାରବେଳଙ୍କ ରାଜତ୍ୱର ୧୩ ବର୍ଷର କାର୍ଯ୍ୟାବଳୀ ଜଣାଯାଏ। (ଏଥିରେ ବ୍ୟବହୃତ ଅକ୍ଷର **ତୃତୀୟ ନମ୍ବର ଛବିରେ** ପ୍ରଦର୍ଶିତ ହେଲା।)[୩]

କଳିଙ୍ଗରାଜା ଖାରବେଳଙ୍କର ଅନୁଶାସନରେ ଯେଉଁ ଲିପି ବ୍ୟବହୃତ ହୋଇଅଛି, ଠିକ୍ ସେ ଧରଣର ଲିପି ସୁଦୂର ମଥୁରାରେ କୁଷାଣ ବଂଶୀୟ ରାଜାମାନଙ୍କ ଦ୍ୱାରା ପ୍ରଚଳିତ ହେଉଥିଲା। ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଭାରତରେ ଏ ଲିପି ସବୁ ସ୍ଥାନରେ ପରିଚିତ ଓ ପ୍ରଚଳିତ ଥିଲା। ଅଶୋକଙ୍କ ସମୟରେ ଗୋଟିଏ ବିନ୍ଦୁ ସଂଯୁକ୍ତ କରିବା ବ୍ୟବସ୍ଥା ନଥିଲା। କିନ୍ତୁ ପରବର୍ତ୍ତୀ ବ୍ରାହ୍ମୀଲିପିରେ ଏପ୍ରକାର ଚୂଳ ରଖାଯିବା ମୂଳରେ ଅକ୍ଷରର ସୌନ୍ଦର୍ଯ୍ୟ ବର୍ଦ୍ଧନ ହିଁ ସେଥିର କାରଣ ବୋଲି ନିର୍ଦ୍ଦେଶ କରାଯାଇପାରେ। ପୁଣି ଏ ଧାରଣା ଆମ୍ଭ ମନରେ ସ୍ପଷ୍ଟ ହୁଏ ଯେ, ଗୁପ୍ତ ଓ ପ୍ରାକ୍-ମଧ୍ୟଯୁଗର ଲିପିମାନଙ୍କରେ ସେହି କ୍ଷୁଦ୍ର ବିନ୍ଦୁଟି ଗୋଟିଏ ସୁନ୍ଦର ତ୍ରିକୋଣ ବା ଚତୁଷ୍କୋଣ ଆକୃତି ଧାରଣ କଲା।

ଏଠାରେ କହିରଖିବା ଉଚିତ ଯେ, ଅକ୍ଷରର ପରିବର୍ତ୍ତନ ମୂଳରେ ପ୍ରଧାନତଃ ଚାରୋଟି କାରଣ ରହିଛି, ଯଥା:-

୧) ଅକ୍ଷର ଗୁଡ଼ିକୁ ସ୍ପଷ୍ଟ, ସରଳ ଓ ପଢ଼ିବାର ଉପଯୋଗୀ କରିବା।

୨) ଅକ୍ଷରର ସୌନ୍ଦର୍ଯ୍ୟ ବଢ଼ାଇବା।

୩) ଅକ୍ଷରକୁ ସହଜରେ ଲେଖି ପାରିବା।

୪) ତାଳପତ୍ର ଆଦି ଯେଉଁ ପତ୍ରରେ ଲିପି ଲେଖିବାକୁ ହୁଏ, ସେଥିରେ ତାହା ଯେପରି ବହୁକାଳ ସ୍ଥାୟୀ ହୋଇପାରେ, ସେପରି ଭାବରେ ତାକୁ ଲେଖିବା।

ଉପରୋକ୍ତ କାରଣଗୁଡ଼ିକୁ ବିଚାର କରି ଅକ୍ଷରର ପରିବର୍ତ୍ତନ ଯୁଗେ ଯୁଗେ କିପରି ଘଟିଥିଲା, ସେ ସମ୍ବନ୍ଧେ ଅଦ୍ୟାପି ଆମ ଦେଶରେ ବିଶେଷ ଗବେଷଣା ହୋଇ ପାରିନାହିଁ। ତଥାପି ଶିଳା ଓ ତାମ୍ରଫଳକରେ ଯେଉଁ ଲିପି ସବୁ ଏ ପର୍ଯ୍ୟନ୍ତ ଓଡ଼ିଶା ଓ ଓଡ଼ିଶା ନିକଟର ରାଜ୍ୟମାନଙ୍କରୁ ଆବିଷ୍କୃତ ହୋଇପାରିଛି, ତାହା ସାହାଯ୍ୟରେ ଓଡ଼ିଆ ଲିପିର କ୍ରମବିକାଶ ସମ୍ବନ୍ଧେ ସମ୍ୟକ୍ ଆଲୋଚନା କରିବା ଅବକାଶ ମିଳେ।

ଏଠାରେ ଅନ୍ୟ ଏକ ବିଷୟ ପ୍ରତି ପାଠକଙ୍କର ଦୃଷ୍ଟି ଆକର୍ଷଣ କରିବା ଆବଶ୍ୟକ। ଓଡ଼ିଆ ବର୍ଣ୍ଣମାଳାର ଯେତେ ଗୁଡ଼ିଏ ଅକ୍ଷର ବର୍ତ୍ତମାନ ଚଳୁଛି, ସେଥିରୁ ପ୍ରତ୍ୟେକର ଆକୃତି ଓ ବିକାଶ ଭିନ୍ନ ଭିନ୍ନ ଯୁଗରେ ସ୍ୱତନ୍ତ୍ରଭାବରେ ଓ ବିଭିନ୍ନ ଅବସ୍ଥା ମଧ୍ୟଦେଇ ଘଟିଥିବାର ଜଣାଯାଏ। ଉଦାହରଣ ସ୍ୱରୂପ, ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀର 'ଠ'ଅକ୍ଷରରେ ଲିଖନ ଆକୃତିରେ ଆଧୁନିକ ଯୁଗ ପର୍ଯ୍ୟନ୍ତ କୌଣସି ପରିବର୍ତ୍ତନ ଘଟିନାହିଁ। ଅକ୍ଷରର ବିକାଶ ପାଇଁ ଉପରେ ଯେଉଁ ୪ଟି କାରଣ ନିର୍ଦ୍ଦେଶ କରାଯାଇଛି, ସେ ଦୃଷ୍ଟିରୁ ଏହି ଅକ୍ଷରଟିର ପରିବର୍ତ୍ତନରେ କୌଣସି ଆବଶ୍ୟକତା ନଥିବାରୁ ବୋଧହୁଏ ଏଥିର ଆକୃତି ପୂର୍ବପରି ରହି ପାରିଛି। ତେଣୁ 'ଠ' ଅକ୍ଷରର ପରମାୟୁ ପ୍ରାୟ ୨୩୦୦ ବର୍ଷରୁ କମ୍ ନୁହେଁ।

**ଖ୍ରୀ:୪ର୍ଥ ଠାରୁ ୭ମ ଶତାବ୍ଦୀ ପର୍ଯ୍ୟନ୍ତ ଲିପିର ସ୍ୱରୂପ :**

ଖ୍ରୀଷ୍ଟୀୟ ୩ୟ ଶତାବ୍ଦୀ ଶେଷରେ ଗୁପ୍ତଯୁଗର ଆରମ୍ଭ। ସେତେବେଳେ ଦକ୍ଷିଣ-ଓଡ଼ିଶା ଅର୍ଥାତ୍ କଳିଙ୍ଗରେ ମହେନ୍ଦ୍ର ପର୍ବତର ପାରିପାର୍ଶ୍ୱିକ ଅଞ୍ଚଳରେ ମାଠରବଂଶୀୟ ରାଜାମାନେ ଶାସନ ବିସ୍ତାର କରିଥିଲେ। ସେମାନଙ୍କର ଆଧିପତ୍ୟ ସେଠାରେ ଖ୍ରୀଷ୍ଟୀୟ ୬ଷ୍ଠ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ବିସ୍ତାରଲାଭ କରିଥିଲା। ସେ ବଂଶରେ ବିଶାଖବର୍ମା, ଉମବର୍ମା, ଅନନ୍ତଶକ୍ତିବର୍ମା, ଶକ୍ତିବର୍ମା, ଅନନ୍ତବର୍ମା, ନନ୍ଦପ୍ରଭଞ୍ଜନବର୍ମା, ପ୍ରଭାଞ୍ଜନବର୍ମା ପ୍ରଭୃତି ରାଜାମାନେ ଯେଉଁ ତାମ୍ରଶାସନମାନ ବ୍ରାହ୍ମଣମାନଙ୍କୁ ଦାନ କରିଛନ୍ତି, ସେସବୁ ସାହାଯ୍ୟରେ ଏ ଦେଶରେ ଖ୍ରୀଷ୍ଟୀୟ ୪ର୍ଥ ଠାରୁ ୭ମ ଶତାବ୍ଦୀ ପର୍ଯ୍ୟନ୍ତ ବ୍ୟବହୃତ ଲିପିର ଆକୃତି ଆମ୍ଭେମାନେ ଜାଣିପାରୁ। ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀରେ ଗୁପ୍ତବଂଶୀୟ ରାଜା ସମୁଦ୍ର ଗୁପ୍ତଙ୍କର

ପ୍ରୟାଗ ସ୍ତମ୍ଭଲିପିରେ ବ୍ୟବହୃତ ଅକ୍ଷର ସଙ୍ଗେ ଏ ଲିପିର ସାମଞ୍ଜସ୍ୟ ରହିଛି। ଏଣୁ ଏହାକୁ 'ଗୁପ୍ତଲିପି' ନାମରେ ଅଭିହିତ କରିବା ଯୁକ୍ତିଯୁକ୍ତ।

କଳିଙ୍ଗରେ ମାଠରବଂଶୀୟ ରାଜାମାନଙ୍କର ତାମ୍ରଶାସନରେ କୌଣସି ଅବ୍ଦ ବ୍ୟବହୃତ ହୋଇ ନଥିବାରୁ ସେମାନଙ୍କର ସଠିକ୍ ସମୟ ନିର୍ଣ୍ଣୟ କରିବା ସମ୍ଭବ ନୁହେଁ। କିନ୍ତୁ ସେ ସମୟରେ ଉତ୍ତର ଗଞ୍ଜାମ ତଥା ପୁରୀ ଜିଲ୍ଲାରୁ ତିନୋଟି ତାମ୍ରଶାସନ ମିଳିଥିଲା। ସେଥିରେ ଗୁପ୍ତାବ୍ଦ ୨୫୦(ଖ୍ରୀ:ଅ:୫୭୦), ୨୮୦ (ଖ୍ରୀ:ଅ:୬୦୦) ଏବଂ ୩୦୦ (ଖ୍ରୀ:ଅ:୬୨୦) ବ୍ୟବହୃତ ହୋଇଥିବାରୁ ଓଡ଼ିଶାର ସମଗ୍ର ଉତ୍ତରାଂଶ ଗୁପ୍ତମାନଙ୍କର ଅଧିକୃତ ହୋଇ ତାଙ୍କଦ୍ୱାରା ନିଯୁକ୍ତ 'ବିଗ୍ରହ' ଉପାଧିଧାରୀ କେତେକ ଶାସନକର୍ତ୍ତା (Governor) ଏଠାରେ ଶାସନକାର୍ଯ୍ୟ ଚଳାଉଥିବା ପ୍ରମାଣିତ ହୁଏ। ଖଲ୍ଲିକୋଟରେ ଥିବା 'ସୁମଣ୍ଡଳ' ଗ୍ରାମରୁ ପ୍ରାପ୍ତ 'ପୃଥିବୀ ବିଗ୍ରହ'ଙ୍କ ସମୟର ସାମନ୍ତରାଜା ଧର୍ମ୍ମରାଜ ଗୁପ୍ତାବ୍ଦ ୨୫୦ ବା ୫୭୦ ଖ୍ରୀଷ୍ଟାବ୍ଦରେ ଗୋଟିଏ ତାମ୍ରଶାସନ ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ। ସେଥିରୁ ୩୦ବର୍ଷ ପରେ ଅର୍ଥାତ୍ ଗୁପ୍ତାବ୍ଦ ୨୮୦ (ଖ୍ରୀ:ଅ:୬୦୦)ରେ ପୁରୀ ଜିଲ୍ଲାର କଣାସ ଗ୍ରାମରୁ ପ୍ରାପ୍ତ ଆଉ ଗୋଟିଏ ତାମ୍ରଶାସନରେ 'ମହାରାଜ ମହାସାମନ୍ତ' ଉପାଧିଧାରୀ ଶ୍ରୀଲୋକ ବିଗ୍ରହଙ୍କ ନାମ ପ୍ରକଟିତ ହୁଏ। ଏ କାଳର ପୁଣି ୨୦ବର୍ଷ ପରେ ଗଞ୍ଜାମରୁ ପ୍ରାପ୍ତ ଶୈଳୋଦ୍ଭବବଂଶୀୟ ରାଜା ମାଧବ ବର୍ମା ସୈନ୍ୟଭୀତି 'ମହାରାଜ ମହାସାମନ୍ତ' ଉପାଧି ଧାରଣ କରି ନିଜକୁ ଶ୍ରୀ ଶଶାଙ୍କଙ୍କର ସାମନ୍ତ ରାଜାରୂପେ ଗୁପ୍ତାବ୍ଦ ୩୦୦ (ଖ୍ରୀ:ଅ:୬୨୦)ରେ ଆଉ ଏକ ତାମ୍ରଶାସନ ବ୍ରାହ୍ମଣମାନଙ୍କ ଉଦ୍ଦେଶ୍ୟରେ ଲେଖାଇଥିଲେ। ଏହି ତିନୋଟି ତାମ୍ରଶାସନରେ ଯେଉଁ ଲିପି ବ୍ୟବହୃତ ହୋଇଅଛି ତାହା ମାଠରବଂଶୀୟ ପ୍ରଥମରାଜା ବିଶାଖବର୍ମା ଓ ଉମବର୍ମାଙ୍କ ଲିପିର କ୍ରମିକ ବିକାଶ ବୋଲି ଧାର୍ଯ୍ୟହେବା ସମୀଚୀନ। (ଏମାନଙ୍କ ଲିପିର ଏକ ତୁଳନାତ୍ମକ ନମୁନା ତଳେ ୪ ନମ୍ବରଚିତ୍ରରେ ପ୍ରଦର୍ଶିତ ହେଲା)।[୪]

ଏହି ୪ ନମ୍ବର ଚିତ୍ରରୁ ସ୍ପଷ୍ଟ ଜଣାଯାଏ ଯେ, ଓଡ଼ିଆ ବର୍ଣ୍ଣମାଳାରେ ଖ,ଗ,ଣ,ଥ,ଦ ଏବଂ ଶ ଏହି ଛ'ଟି ଅକ୍ଷରର ଆଧୁନିକ ଆକୃତି ଉଣା ଅଧିକେ ଗୁପ୍ତ-ଲିପିରୁ ପ୍ରକଟିତ ହୁଏ। ତେଣୁ ଏଗୁଡ଼ିକର ପରମାୟୁ ପ୍ରାୟ ୧୫୦୦ ବର୍ଷ ବୋଲି କହିଲେ ଅସଙ୍ଗତ ହେବନାହିଁ।

**ମଧ୍ୟଯୁଗର କଳିଙ୍ଗ-ଲିପି :**

ମୌର୍ଯ୍ୟଯୁଗରେ କଳିଙ୍ଗର ପ୍ରସାର ସମ୍ଭବତଃ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବ୍ୟାପିଥିଲା। ଶାସନଗତ ସୁବିଧା ପାଇଁ ସେ ରାଜ୍ୟଟି ଦୁଇଭାଗରେ ବିଭକ୍ତ ହେଲା,

ଯଥା:- କଳିଙ୍ଗ ଓ ତୋଷଳୀ; କିନ୍ତୁ ଗୁପ୍ତ-ଯୁଗରେ ସେ ଦୁଇଟି ଖଣ୍ଡ ରାଜନୈତିକ ଦୃଷ୍ଟିରୁ ସ୍ୱତନ୍ତ୍ର ହୋଇପଡିଲା। କଳିଙ୍ଗ ସଙ୍ଗେ ଶାସନତାନ୍ତ୍ରିକ ତଥା ରାଜନୈତିକ ସମ୍ପର୍କ ଗଙ୍ଗବଂଶୀୟ ରାଜାମାନଙ୍କ ରାଜତ୍ୱ ସମୟରେ ସଂପୂର୍ଣ୍ଣ ରୂପେ ତୁଟିଗଲା। ଖ୍ରୀଷ୍ଟୀୟ ୭ମ ଶତାବ୍ଦୀର ପ୍ରଥମାର୍ଦ୍ଧରେ କଳିଙ୍ଗ ଓ ତୋଷଳୀ ମଧ୍ୟରେ କୋଙ୍ଗୋଦ ନାମକ ଆଉ ଗୋଟିଏ ନୂଆ ରାଜ୍ୟ ଗଠିତ ହେଲା। ଚିଲିକାର ଆଖପାଖ ଅଞ୍ଚଳରେ ଏହି ରାଜ୍ୟ ଥିବାର ଜଣାଯାଏ। ସେହି କ୍ଷୁଦ୍ର ରାଜ୍ୟଟି ଶୈଳୋଦ୍ଭବ ବଂଶୀୟ ରାଜାମାନଙ୍କ ଦ୍ୱାରା ଖ୍ରୀଷ୍ଟୀୟ ୭ମ ଶତାବ୍ଦୀ ଆରମ୍ଭରୁ ୮ମ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଶାସିତ ହେଉଥିଲା। ହୁଏନ୍‌ସାଂ ତାଙ୍କର ଭ୍ରମଣ ବୃତ୍ତାନ୍ତରେ ଏ ରାଜ୍ୟ ସମ୍ବନ୍ଧେ ବର୍ଣ୍ଣନା କଲାବେଳେ ଉଲ୍ଲେଖ କରିଛନ୍ତି ଯେ, ଏଠାର ଅଧିବାସୀମାନେ ଉତ୍ତର-ଭାରତୀୟ ଭାଷା ବ୍ୟବହାର କରନ୍ତି। ପ୍ରକୃତରେ ଦେଖିବାକୁ ଗଲେ ଶୈଳୋଦ୍ଭବବଂଶୀୟ ରାଜାମାନେ ଅଶ୍ୱମେଧ ଓ ବାଜପେୟାଦି ଯଜ୍ଞ ଅନୁଷ୍ଠାନ କରି ସ୍ୱୀୟ ବଂଶର ଗୌରବ ବର୍ଦ୍ଧନ କରିଥିଲେ। ଏଥିପାଇଁ ସମ୍ଭବତଃ ଉତ୍ତର-ଭାରତୀୟ ବ୍ରାହ୍ମଣମାନଙ୍କୁ ଅଣାଇ କୋଙ୍ଗୋଦରେ ଗ୍ରାମଦାନ କରିବାକୁ ପଡିଲା। ଫଳତଃ ସେହି ନୂଆ ହୋଇ ଆସିଥିବା ଶିକ୍ଷିତ ବ୍ରାହ୍ମଣ ସଂପ୍ରଦାୟ ଦ୍ୱାରା ଏ ସ୍ଥାନର ଭାଷା ଓ ଲିପି ଉତ୍ତର-ଭାରତୀୟ ଭାଷା ଓ ଲିପି ସଙ୍ଗେ ସମ୍ବନ୍ଧରକ୍ଷା କଲା। ସେତେବେଳେ ଭାରତର ବିଭିନ୍ନ ପ୍ରଦେଶରେ ପ୍ରଚଳିତ ଭାଷାରେ ଯଥେଷ୍ଟ ପରିମାଣରେ ଶବ୍ଦଗତ ପ୍ରଭେଦ ରହୁଥିଲେ ସୁଦ୍ଧା ସେପରି ବିଶେଷ କିଛି ପ୍ରଭେଦ ଲିଖନ ଭଙ୍ଗୀରେ ଦେଖାଯାଉ ନଥିବାରୁ କୋଙ୍ଗୋଦରେ ପ୍ରଚଳିତ ଲିପି ସଙ୍ଗେ ଓଡ଼ିଶାର ଅନ୍ୟାନ୍ୟ ପ୍ରାନ୍ତୀୟ ଲିପିର ବିଶେଷ ପ୍ରଭେଦ ଦେଖାଯାଏ ନାହିଁ।

ମଧ୍ୟଯୁଗରେ ସଂସ୍କୃତ ସାହିତ୍ୟରେ କାବ୍ୟ ରଚନାର ଉତ୍କର୍ଷ ସାଧିତ ହେଲା। ସେତେବେଳେ ବିଭିନ୍ନ ରାଜ୍ୟରେ ଯେଉଁ କବି ଓ ପଣ୍ଡିତମାନେ ଥିଲେ ସେମାନଙ୍କ ଦ୍ୱାରା ମୁଖ୍ୟତଃ ଦେଶର ଶାସନକାର୍ଯ୍ୟ ଚଳୁଥିଲା। ବ୍ରାହ୍ମଣ୍ୟ ଯୁଗର ଅଭ୍ୟୁଦୟ ବେଳେ ଶିକ୍ଷିତ ସମ୍ପ୍ରଦାୟ ବିଭିନ୍ନ ରାଜ୍ୟରେ ରାଜକୀୟ ସମ୍ମାନ ପାଉଥିବାରୁ ସେମାନେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଉଠିଯାଇ ବସତି ସ୍ଥାପନ କରୁଥିଲେ। ବିଶେଷତଃ ଉତ୍ତର-ଭାରତରେ ଶକ, ହୁଣ ପ୍ରଭୃତି ବିଭିନ୍ନ ବୈଦେଶିକ କର୍ତ୍ତୃକ ଉତ୍ପୀଡିତ ହୋଇ, ବହୁ ଶିକ୍ଷିତ ପରିବାର ଆର୍ଯ୍ୟାବର୍ତ୍ତରୁ ଉଠିଆସି ଦାକ୍ଷିଣାତ୍ୟରେ ବାସ କରିବାକୁ ଲାଗିଲେ। ସେହିପରି ମଧ-କଳିଙ୍ଗର ରାଜକୀୟ ପରିବାର ସଙ୍ଗେ ପଡ଼ୋଶୀ ରାଜ୍ୟମାନଙ୍କର ବୈବାହିକ ସମ୍ବନ୍ଧ ହେତୁ ଏହିଭଳି ଉପନିବେଶମାନ ଘଟୁଥିଲା। ସୁତରାଂ ବିଭିନ୍ନ ରାଜ୍ୟ ସଙ୍ଗେ ଏ ଦେଶର ଶିକ୍ଷିତ ସଂପ୍ରଦାୟ

ଘନିଷ୍ଠଭାବେ ସଂପୃକ୍ତ ହେଉଥିଲେ। ଏଥିର ଫଳ ସ୍ୱରୂପ ବିଭିନ୍ନ ଦେଶର ସଭ୍ୟତା ସଙ୍ଗେ ସଂପୃକ୍ତ ରହି କଳିଙ୍ଗର ଭାଷା ଓ ଲିପିର ବିକାଶ ଘଟିବା ଅତି ସ୍ୱାଭାବିକ।

ମଧ-ଯୁଗରେ ଓଡ଼ିଶାର ଭୌଗୋଳିକ ଅବସ୍ଥା ପ୍ରତି ଲକ୍ଷ୍ୟ କଲେ ଆମ୍ଭେ ବୁଝିପାରୁଁ ଯେ, ବର୍ତ୍ତମାନ ଯେଉଁ ପ୍ରଦେଶକୁ ଓଡ଼ିଆ ଭାଷାଭାଷୀ ପ୍ରଦେଶ କୁହାଯାଏ ତାହା ମୁଖ୍ୟତଃ ଚାରୋଟି ଭୌଗୋଳିକ ପ୍ରଦେଶର ଅନ୍ତର୍ଗତ ଥିଲା। ପୂର୍ବୋତ୍ତର ଅଂଶ ଅର୍ଥାତ୍ ମୟୂରଭଂଜଠାରୁ କଟକ ଜିଲ୍ଲା ପର୍ଯ୍ୟନ୍ତ ଅଞ୍ଚଳର 'ତୋଷଳୀ' ବୋଲି ନାମ ଥିଲା, ମହାନଦୀଠାରୁ ଋଷିକୁଲ୍ୟା ପର୍ଯ୍ୟନ୍ତ କୋଙ୍ଗୋଦ ନାମରେ ପରିଚିତ ଥିଲା, ଋଷିକୁଲ୍ୟାଠାରୁ ଦକ୍ଷିଣକୁ ପ୍ରାୟ ସିଂହାଚଳ ପର୍ଯ୍ୟନ୍ତ ଅଂଶ 'କଳିଙ୍ଗ' ବୋଲାଉଥିଲା। ଏଥିର ପଶ୍ଚିମାଂଚଳ, ଅର୍ଥାତ୍ କୋରାପୁଟଠାରୁ ସମ୍ବଲପୁର ପର୍ଯ୍ୟନ୍ତ ଅଂଶଟି ଦକ୍ଷିଣକୋଶଳରେ ଅନ୍ତର୍ଭୁକ୍ତ ଥିଲା। ଏହିସବୁ ଅଞ୍ଚଳଗୁଡ଼ିକରେ କେତୋଟି ଛୋଟ ଛୋଟ ସାମନ୍ତ ରାଜ୍ୟର ଅଭ୍ୟୁଦୟ ଘଟିଥିଲା, ଯଥା- ଭଞ୍ଜ, ନନ୍ଦ, ନାଗ, ନନ୍ଦୋଦ୍ଭବ, ତୁଙ୍ଗ, ଶୁଲ୍କି ପ୍ରଭୃତି। ଏମାନଙ୍କ ମଧ୍ୟରୁ କେତେକ ହିନ୍ଦୁ ଏବଂ ଆଉ କେତେକ ବୌଦ୍ଧଧର୍ମ ଅବଲମ୍ବନ କରିଥିଲେ। ସେହିପରି ମୁଖ୍ୟ ଅଂଶ ଗୁଡ଼ିକରେ ଯେଉଁ ରାଜବଂଶମାନେ ମଧ୍ୟଯୁଗରେ ପ୍ରାଧାନ୍ୟ ବିସ୍ତାର କଲେ, ସେମାନଙ୍କ ମଧ୍ୟରୁ କଳିଙ୍ଗର ଗଙ୍ଗ, ଦକ୍ଷିଣ କୋଶଳର ପାଣ୍ଡୁ ଓ ସୋମବଂଶୀ ଏବଂ କୋଙ୍ଗୋଦର ଶୈଳୋଦ୍ଭବ ବଂଶୀୟ ରାଜାମାନେ ବୈଦିକ ଧର୍ମର ପୋଷକତା କରୁଥିଲେ। କିନ୍ତୁ ଓଡ଼ିଶାର ପୂର୍ବୋତ୍ତର ଅଂଶଟି, ଯାହାକି ତୋଷଳୀ ନାମରେ ପରିଚିତ, ସେଥିରେ ଖ୍ରୀଷ୍ଟୀୟ ୮ମ ଶତାବ୍ଦୀର ପ୍ରଥମ ଭାଗରୁ ଆରମ୍ଭ କରି ପ୍ରାୟ ୨୦୦ ବର୍ଷ ପର୍ଯ୍ୟନ୍ତ ଭୌମ ରାଜବଂଶ ଶାସନ-ବିସ୍ତାର ପୂର୍ବକ ବୌଦ୍ଧଧର୍ମର ପ୍ରଧାନ ପୃଷ୍ଠପୋଷକ ଥିଲେ। କିନ୍ତୁ ଭୌମ-ରାଜତ୍ୱର ଶେଷଭାଗରେ ସେମାନେ ହିନ୍ଦୁଧର୍ମରେ ଦୀକ୍ଷିତ ହେବାର ପ୍ରମାଣ ମିଳେ। ସେ ଯାହାହେଉ, ଗୋଟିଏ ଏକ ଭାଷାଭାଷୀ ରାଜ୍ୟରେ ବହୁ ପ୍ରାଚୀନ କାଳରୁ ହିନ୍ଦୁ ଓ ବୌଦ୍ଧମାନଙ୍କ ମଧ୍ୟରେ ସଂଘର୍ଷ ହେବା ଫଳରେ ତହିଁର ସଭ୍ୟତା ମଧ୍ୟ ସେଥିରେ ପ୍ରଭାବିତ ହେଉଥିଲା। ଭୌମମାନେ ସମ୍ଭବତଃ ଆସାମ ବା କାମରୁପରୁ ଉଠିଆସିଥିବାରୁ ସେହି ଅଞ୍ଚଳ ପ୍ରତି ତୋଷଳୀର ସଭ୍ୟତା ଉନ୍ମୁଖ ହେଉଥିଲା। ବାସ୍ତବରେ ଦେଖିବାକୁ ଗଲେ, ତାଙ୍କର ପ୍ରଦତ୍ତ ଅନୁଶାସନ ଗୁଡ଼ିକରେ ଯେଉଁ ଲିପି ବ୍ୟବହୃତ ହୋଇଅଛି, ତାହା ପରବର୍ତ୍ତୀ ମଧ-ଯୁଗରେ ବ୍ୟବହୃତ ପୂର୍ବ-ଭାରତୀୟ ଲିପି ପରି ହୋଇଅଛି। କିନ୍ତୁ ଓଡ଼ିଶାର ଦକ୍ଷିଣାଂଶ ଅର୍ଥାତ୍ କୋଙ୍ଗୋଦ, କଳିଙ୍ଗ ଏବଂ ଦକ୍ଷିଣ-କୋଶଳରେ ହିନ୍ଦୁଧର୍ମ ପ୍ରାଧାନ୍ୟ ବିସ୍ତାର କରିଥିବାରୁ ସେହି ସେହି ପ୍ରଦେଶର ରାଜବଂଶମାନେ ମୁଖ୍ୟଭାବରେ ଦକ୍ଷିଣ-ଭାରତ

ସଙ୍ଗେ ଘନିଷ୍ଠ ସମ୍ପର୍କ ରକ୍ଷା କଲେ। କାରଣ ଦାକ୍ଷିଣାତ୍ୟରେ ସେତେବେଳେ ଚାଲୁକ୍ୟ ବଂଶୀୟ ରାଜାମାନେ ଏ ରାଜ୍ୟର ପଡ଼ୋଶୀ ରୂପେ ଅତ୍ୟନ୍ତ ବଳଶାଳୀ ହୋଇ ଉଠିଲେ। ଖ୍ରୀଷ୍ଟୀୟ ୭ମ ଶତାବ୍ଦୀର ପ୍ରଥମ ଭାଗରେ ଯେତେବେଳେ ଉତ୍ତର-ଭାରତରେ ହର୍ଷବର୍ଦ୍ଧନଙ୍କର ଅଭ୍ୟୁଦୟ ଘଟିଲା, ସେତେବେଳେ ଗୋଟିଏ ପ୍ରବଳ ଯୁଦ୍ଧ ତିନୋଟି ରାଜଶକ୍ତି ମଧ୍ୟରେ ଆରମ୍ଭ ହୋଇଥିଲା। ହର୍ଷଙ୍କ ସଙ୍ଗେ ଦାକ୍ଷିଣାତ୍ୟ ଆଡୁ ଚାଲୁକ୍ୟ ବଂଶୀୟ ରାଜା ପୁଲକେଶୀ ଏବଂ ପୂର୍ବ-ଭାରତରୁ ଶଶାଙ୍କ ଯୁଦ୍ଧ କରିଥିଲେ। ତା' ଫଳରେ ମଧ୍ୟ-ଓଡ଼ିଶାର କୋଙ୍ଗୋଦ ତଥା ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳଗୁଡ଼ିକ ବିଶେଷ ରୂପେ ପ୍ରଭାବିତ ହେଲା। ଶେଷରେ ଦେଖାଗଲା ଯେ, ସେତିକି ବେଳେ ଋଷିକୁଲ୍ୟାଠାରୁ ସିଂହାଚଳ ପର୍ଯ୍ୟନ୍ତ କଳିଙ୍ଗ ରାଜ୍ୟରୁ ମାଠର ରାଜବଂଶ ଲୋପ ପାଇ ତାଙ୍କ ସ୍ଥାନରେ ଗଙ୍ଗମାନେ ଆଧିପତ୍ୟ ବିସ୍ତାର କରିଛନ୍ତି। ଦକ୍ଷିଣ-କୋଶଳର ଶିରିପୁରଠାରୁ ସେଠାର ପ୍ରାଚୀନ ରାଜବଂଶକୁ ଲୋପ କରି ପାଣ୍ଡୁ ବା ସୋମବଂଶୀୟ ରାଜନ୍ୟବର୍ଗ ପ୍ରବଳ ହୋଇଅଛନ୍ତି। କୋଙ୍ଗୋଦ ତଥା ତୋଷଳୀରୁ 'ବିଗ୍ରହ' ନାମଧାରୀ ରାଜନ୍ୟଶ୍ରେଣୀ ଲୁପ୍ତ ହୋଇ ତାଙ୍କ ସ୍ଥାନଟି ଶୈଳୋଦ୍ଭବମାନେ ଅଧିକାର କରିଛନ୍ତି। ଏପରି ଭାବେ ଗୋଟିଏ ବିରାଟ ରାଜନୈତିକ ପରିବର୍ତ୍ତନ ମଧ୍ୟରେ ଖ୍ରୀଷ୍ଟୀୟ ୭ମ ଶତାବ୍ଦୀର ସଭ୍ୟତା ଅଭ୍ୟୁତ୍‌ଥିତ ହୋଇଥିବାରୁ ଏ ଦେଶର ଲିପିଗତ ପରିବର୍ତ୍ତନ ଓ ବିକାଶ ସମ୍ଭବ ହୋଇଥିଲା ଏବଂ ୭ମ ଶତାବ୍ଦୀରୁ କେତେକ ପରିମାଣରେ ତାହା ବିଭିନ୍ନ ଆକୃତି ଧାରଣ କଲା।

**ପେଟିକା-ଶିର ଲିପି :**

ମଧ୍ୟ-ଭାରତ, ଅର୍ଥାତ୍ ଦକ୍ଷିଣ-କୋଶଳ ଏବଂ କଳିଙ୍ଗରେ ଖ୍ରୀଷ୍ଟୀୟ ୫ମ ବା ୬ଷ୍ଠ ଶତାବ୍ଦୀରେ 'ପେଟିକା-ଶୀର୍ଷକ' ଲିପି ପ୍ରବର୍ତ୍ତନ ହୋଇ ୮ମ ଶତାବ୍ଦୀରେ ତାହା ଲୁପ୍ତ ହୋଇଥିଲା। ପ୍ରଥମେ କୁହାଯାଇଛି ଯେ, "ପରବର୍ତ୍ତୀ-ବ୍ରାହ୍ମୀ" ଲିପିରେ ଚୂଳ ସଂଯୋଗ କରି ଅକ୍ଷରର ଆକାର ସୁନ୍ଦର କରି ଗଢ଼ିବାକୁ ସେକାଳର ଲେଖକମାନେ ଚେଷ୍ଟା କରୁଥିଲେ। ସେଥିର ପ୍ରମାଣ 'ପେଟିକା-ଶୀର୍ଷକ' ଲିପି (Box-head character)ରୁ ଆମ୍ଭେ ଦେଖିବାକୁ ପାଉଁ। ଏହି ବର୍ଣ୍ଣମାଳା ଅନ୍ତର୍ଗତ ପ୍ରାୟ ପ୍ରତି ଅକ୍ଷରର ଶିରଦେଶକୁ ପେଡ଼ି ପରି ଚାରି କୋଣିଆ କରାଯାଇଥିବାରୁ ଏହାକୁ ପେଟିକା-ଶୀର୍ଷକ ଆଖ୍ୟା ଦିଆଯାଇଛି।

ସର୍ବପ୍ରଥମେ ବାକାଟକ-ବଂଶୀୟ ମହାରାଜା ପ୍ରବରସେନ (୨ୟ)ଙ୍କର ତାମ୍ର-ଫଳକରେ ଏ ଲିପି ସ୍ପଷ୍ଟରୂପେ ଦେଖା ଦେଲା। ଗୁପ୍ତ-ଯୁଗର ଅବସାନ ପରେ ବାକାଟକମାନେ ମଧ୍ୟଭାରତ ସମେତ ଆର୍ଯ୍ୟାବର୍ତ୍ତରେ ଆଧିପତ୍ୟ ବିସ୍ତାର କରିଥିଲେ।

ଖ୍ରୀଷ୍ଟୀୟ ୬ଷ୍ଠ ଶତାବ୍ଦୀରେ ସେମାନଙ୍କ ରାଜତ୍ୱର ଅବସାନ ପରେ ତାଙ୍କ ରାଜଧାନୀ ନନ୍ଦିବର୍ଦ୍ଧନ ନନ୍ଦବଂଶୀୟ ରାଜାମାନଙ୍କର ହସ୍ତଗତ ହେଲା । ତାଙ୍କ ମଧ୍ୟରୁ ମହାରାଜା ଭବଦତ୍ତ ବର୍ମା ନିଜର ତାମ୍ରଶାସନରେ (E.I.XI XP.100) ଯେଉଁ ଲିପି ବ୍ୟବହାର କରିଛନ୍ତି, ତାହା ଏହି ପେଟିକା-ଶୀର୍ଷକ ଶ୍ରେଣୀରେ ଅନ୍ତର୍ଗତ । ନନ୍ଦମାନଙ୍କ ପରେ ଶରଭପୁରୀୟ ରାଜା ମହାସୁଦେବ ରାଜା ଏବଂ ତାଙ୍କ ପରେ ଦକ୍ଷିଣ-କୋଶଳର ଶିରିପୁରଠାରୁ ପାଣ୍ଡୁ ବଂଶୀୟ ରାଜା ମହାଶିବ ତିବରଦେବ, ସେମାନେ ଦେଇଥିବା ତାମ୍ରଶାସନ ଓ ସ୍ୱର୍ଣ୍ଣମୁଦ୍ରାରେ ଏ ଧରଣର ଲିପି ବ୍ୟବହାର କରିଥିବାରୁ ଖ୍ରୀଷ୍ଟୀୟ ୫ମ ଠାରୁ ୬ଷ୍ଠ ବା ୭ମ ଶତାବ୍ଦୀ ପର୍ଯ୍ୟନ୍ତ ମଧ୍ୟ-ଭାରତରେ ତାହା ସର୍ବତ୍ର ଆଦୃତ ଓ ପ୍ରଚଳିତ ହୋଇଥିଲା । ଉପରୋକ୍ତ ରାଜାମାନଙ୍କର ସମସାମୟିକ କଳିଙ୍ଗର ଗଙ୍ଗାବଂଶୀୟ ରାଜା ଇନ୍ଦ୍ରବର୍ମା, ସାମନ୍ତବର୍ମା ଓ ହସ୍ତିବର୍ମା ସେମାନଙ୍କ ଦାନ-ଶାସନରେ ପେଟିକା-ଶୀର୍ଷକ ଲିପି ପ୍ରବର୍ତ୍ତିତ କଲେ । କିନ୍ତୁ ଓଡ଼ିଶାର ଦକ୍ଷିଣ ଓ ପଶ୍ଚିମାଞ୍ଚଳ ବ୍ୟତୀତ ସେ ଯୁଗରେ ଏ ଲିପି ଅନ୍ୟତ୍ର ବ୍ୟବହୃତ ହେଉଥିବାର ପ୍ରମାଣ ନାହିଁ । କୋଙ୍ଗୋଦ ବା ତୋଷଳୀର କୌଣସି ପ୍ରାଚୀନ ଶିଳା ବା ତାମ୍ରଫଳକରେ ଏ ଲିପି ପ୍ରାୟ ଦେଖିବାକୁ ମିଳେନାହିଁ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, କଳିଙ୍ଗ ସଙ୍ଗେ ଓଡ଼ିଶାର ସେହି ଦୁଇଟି ଅଂଶର ରାଜନୈତିକ ସମ୍ବନ୍ଧ ଛିନ୍ନ ହୋଇ ଯାଇଥିଲା । ଏଣୁ ହୁଏନ୍‌ସାଂ ତାଙ୍କ ଭ୍ରମଣ-ବୃତ୍ତାନ୍ତରେ କୋଙ୍ଗୋଦରେ ଉତ୍ତର-ଭାରତୀୟ ଭାଷା ଶୁଣିବାକୁ ପାଇଥିଲେ ଓ ତାହା ସେ ଉଲ୍ଲେଖ କରିଥିଲେ (Walters Huentsanng Vol.II. ଦ୍ରଷ୍ଟବ୍ୟ) (ପ୍ରଦତ୍ତ ୫ ନମ୍ବର ଚିତ୍ରରେ ପେଟିକା-ଶିର ଲିପି ପ୍ରଦର୍ଶିତ ହେଲା ।)[୫]

ସେ ସମୟରେ ସମ୍ଭବତଃ ଭାରତରେ ବ୍ୟବହୃତ ବିଭିନ୍ନ ଅଞ୍ଚଳର ଲିପିଗୁଡ଼ିକ ଧୀରେ ଧୀରେ ପରସ୍ପରଠାରୁ ସ୍ୱତନ୍ତ୍ର ଆକାର ଧାରଣ କରୁଥିଲେ । ତେଣୁ ବୋଧହୁଏ "ସମବାୟ ସୂତ୍ର" ନାମକ ଏକ ଜୈନ ଗ୍ରନ୍ଥରେ ଥିବା ୧୭ ପ୍ରକାର ଲିପିର ଗୋଟିଏ ତାଲିକା ଦିଆଗଲା ଯଥା:- (୧) ବ୍ରାହ୍ମୀ, (୨) ଯବନାନୀ, (୩) ଦଶୋତ୍ତରିୟା (୪) ପୁଷ୍କରବାରିକା, (୫) ପାର୍ବତିକା, (୬) ଉତ୍ତରକୁରୁକା, (୭) ଅକ୍ଷର ପୁସ୍ତିକା, (୮) ଭୌମବହିକା, (୯) ବିକ୍ଷେପିକା, (୧୦) ନିକ୍ଷେପିକା, (୧୧) ଅଙ୍କ ଲିପି, (୧୨) ଗଣିତ ଲିପି, (୧୩) ଗନ୍ଧର୍ବ ଲିପି, (୧୪) ଆଦର୍ଶକ ଲିପି, (୧୫) ମାହେଶ୍ୱର ଲିପି, (୧୬) ଦ୍ରାବିଡ଼ୀ ଲିପି ଏବଂ (୧୭) ବୋଳିନ୍ଦି ବା ପୋଳିନ୍ଦା ଲିପି ।

ଉପରୋକ୍ତ ଲିପିମାନଙ୍କ ମଧ୍ୟରୁ ଅଙ୍କ ଲିପି ଓ ଗଣିତ ଲିପି ବ୍ୟତୀତ ଅନ୍ୟ ୧୫ ପ୍ରକାର ଲିପିର ଅସ୍ତିତ୍ୱ ଉପଲବ୍ଧ ହେବା ବିଷୟ ଏଥିରୁ ପ୍ରମାଣିତ ହୁଏ । ଏ ଯୁଗରେ

ବିଭିନ୍ନ ଭାଷାଭାଷୀ ଲୋକେ ବିଭିନ୍ନ ରୁଚି ଅନୁଯାୟୀ ଯେଉଁ ଯେଉଁ ଶୈଳୀ ଅବଲମ୍ବନରେ ଅକ୍ଷର ଲେଖିବାକୁ ଲାଗିଲେ ଓ ସେ ସମୟର ଲିପିକାରମାନେ ପ୍ରବୃତ୍ତ ହେଲେ ସେଥିରୁ ଅନୁମିତ ହୁଏ ଯେ, ଅଜ୍ଞାତ ସାରରେ କାଳକ୍ରମେ ଅକ୍ଷରର ଆକୃତି ତାଙ୍କ ଦ୍ୱାରା ବଦଳିବାକୁ ଲାଗିଲା। କ୍ରମେ ସେହି ପରିବର୍ତ୍ତନ ଏତେ ଦୂର ପ୍ରସାରିତ ହୋଇଗଲା ଯେ, ପ୍ରତ୍ୟେକ ଲିପି ପ୍ରଣାଳୀରେ ସଂଗଠିତ ହୋଇଛି ବୋଲି ଭ୍ରମ ଧାରଣା ଜାତ ହେବା ସ୍ୱାଭାବିକ। ଏଣୁ ଉପରୋକ୍ତ ଜୈନ ଗ୍ରନ୍ଥ 'ସମବାୟ ସୂତ୍ର' ରେ ବର୍ଣ୍ଣିତ ଲିପିଗୁଡ଼ିକୁ ସ୍ୱତନ୍ତ୍ର ନାମରେ ପରିଚିତ କରିବା କଦାପି ଅସଙ୍ଗତ ହୋଇନାହିଁ। କେବଳ ସେତିକି ନୁହେଁ, 'ଲଳିତ ବିସ୍ତାର' ନାମକ ଗୋଟିଏ ପ୍ରାଚୀନ ବୌଦ୍ଧଗ୍ରନ୍ଥର ଦଶମ ଅଧ୍ୟାୟରେ ଉଲ୍ଲେଖ କରାଯାଇଛି ଯେ, ନିମ୍ନୋକ୍ତ ୬୪ ପ୍ରକାର ଲିପି ବୁଦ୍ଧଦେବ ଆୟତ୍ତ କରିଥିଲେ:-

(୧) ବ୍ରାହ୍ମୀ, (୨) ଖରୋଷ୍ଟ୍ରୀ, (୩) ପୁଷ୍କରସାରୀ, (୪) ଅଙ୍ଗ ଲିପି, (୫) ବଙ୍ଗ ଲିପି, (୬) ମଗଧ ଲିପି (୭) ମାଙ୍ଗଲ୍ୟ ଲିପି, (୮) ମନୁଷ୍ୟ ଲିପି, (୯) ଅଙ୍ଗୁଳୀୟ ଲିପି, (୧୦) ଶକାରି ଲିପି (୧୧) ବ୍ରହ୍ମବଲ୍ଲୀ ଲିପି, (୧୨) ଦ୍ରାବିଡ ଲିପି, (୧୩) କିନାରୀ ଲିପି, (୧୪) ଦକ୍ଷିଣ ଲିପି, (୧୫) ଉଗ୍ର ଲିପି, (୧୬) ସଂଖ୍ୟା ଲିପି, (୧୭) ଅନୁଲୋମ ଲିପି, (୧୮) ଅର୍ଦ୍ଧଧନୁ ଲିପି, (୧୯) ଦରଦ ଲିପି, (୨୦) ଖାସ୍ୟ ଲିପି, (୨୦) ଚୀନ ଲିପି, (୨୨) ହୁଣ ଲିପି, (୨୩) ମଧ୍ୟାକ୍ଷର ବିସ୍ତର ଲିପି, (୨୪) ପୁଷ୍ପଲିପି, (୨୫) ଦେବ ଲିପି, (୨୬) ନାଗ ଲିପି, (୨୭) ଯକ୍ଷ ଲିପି (୨୮) ଗନ୍ଧର୍ବ ଲିପି (୨୯)କିନ୍ନର ଲିପି, (୩୦) ମହୋରଗ ଲିପି, (୩୧) ଅସୁର ଲିପି, (୩୨) ଗରୁଡ଼ ଲିପି, (୩୩) ମୃଗଚକ୍ର ଲିପି , (୩୪) ଚକ୍ର ଲିପି, (୩୫) ବାୟୁ ମରୁଲ୍ଲିପି, (୩୬) ଭୌମଦେବ ଲିପି, (୩୭) ଅନ୍ତରୀକ୍ଷ ଦେବ ଲିପି, (୩୮) ଉତ୍ତର-କରୁଦ୍ୱୀପ ଲିପି, (୩୯) ଅପରଗୌଡ଼ାଦି ଲିପି, (୪୦) ପୂର୍ବ-ବିଦେହ ଲିପି, (୪୧) ଉତ୍କ୍ଷେପ ଲିପି (୪୨) ନିକ୍ଷେପ ଲିପି, (୪୩) ବିକ୍ଷେପ ଲିପି (୪୪) ପ୍ରକ୍ଷେପ ଲିପି, (୪୫) ସାଗର ଲିପି, (୪୬) ବଜ୍ର ଲିପି (୪୭) ଲେଖ ପ୍ରତିଲେଖ ଲିପି, (୪୮) ଅନୁଦ୍ରୁତ ଲିପି, (୪୯) ଶାସ୍ତ୍ରାବର୍ତ୍ତ ଲିପି, (୫୦) ଗଣନ ଲିପି, (୫୧) ଉତ୍କ୍ଷେପାବର୍ତ୍ତ ଲିପି, (୫୨) ବିକ୍ଷେପାବର୍ତ୍ତ ଲିପି, (୫୩) ପାଦଲିଖିତ ଲିପି, (୫୪) ଦ୍ୱିରୁତ୍ତର ପଦସନ୍ଧି ଲିପି, (୫୫) ଦଶୋତ୍ତର ପଦସନ୍ଧି ଲିପି,(୫୬) ଆଧାହାରିଣୀ ଲିପି, (୫୭) ସର୍ବରୁତ ସଂଗ୍ରହିଣୀ ଲିପି, (୫୮) ବିଦ୍ୟାନୁଲୋମ ଲିପି, (୫୯) ବିମିଶ୍ରିତ ଲିପି, (୬୦) ଋଷିତପସ୍ତପ୍ତା ଲିପି; (୬୧) ଧରଣୀକ୍ଷେପଣ ଲିପି, (୬୨) ସର୍ବୌଷଧିନିଷ୍ୟନ୍ଦା ଲିପି, (୬୩) ସର୍ବୋସାରସଂଗ୍ରହିଣୀ

ଲିପି ଏବଂ (୬୪)ସର୍ବଭୂତରତଗ୍ରହଣୀ ଲିପି ('ଲଳିତ ବିସ୍ତର' ଗ୍ରନ୍ଥର ପରବର୍ତ୍ତୀକାଳରେ ସଂକ୍ଷିପ୍ତ ହୋଇଥିବା ସମ୍ଭବ)।

## ଓଡ଼ିଶାର ଲିପିରେ ବିଭିନ୍ନ ଆଞ୍ଚଳିକ ପ୍ରଭାବ :

ଭାଷା ମାଧ୍ୟମରେ ପ୍ରାଦେଶିକ ପ୍ରଭେଦ ପ୍ରସାର ଘଟିବା ସଙ୍ଗେ ସଙ୍ଗେ ଲିପିରେ ମଧ୍ୟ ଭାଷାଗତ ପ୍ରଭେଦ ବଢ଼ିବାକୁ ଲାଗିଲା। ଉତ୍ତର-ଭାରତୀୟ ଭାଷା ଓ ଲିପିଠାରୁ ଦକ୍ଷିଣ-ଭାରତୀୟ ଭାଷା ଓ ଲିପି ବିଶେଷରୂପେ ଭିନ୍ନ ହୋଇପଡ଼ିଲା। ଖ୍ରୀଷ୍ଟୀୟ ୮ମ ଶତାବ୍ଦୀ ପରେ ସେଥିର ଆକୃତି ଏତେଦୂର ବିକୃତ ହୋଇଗଲା ଯେ, ଉଭୟ ଲିପିର ମୂଳ ଯେ ବ୍ରାହ୍ମୀ, ଏକଥା ଆଉ ସହଜରେ ବୁଝା ପଡ଼ିଲା ନାହିଁ।

କଳିଙ୍ଗ ତଥା ଉତ୍କଳର ଅବସ୍ଥିତି ଭାଷା ଓ ଲିପି ଦୃଷ୍ଟିରୁ ଭାରତରେ ଗୋଟିଏ ମୁଖ୍ୟ ଅଂଶ ଗ୍ରହଣ କରିଥିଲା। କଳିଙ୍ଗର ଗଙ୍ଗାବଂଶୀୟ ରାଜାମାନେ ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀ ପର୍ଯ୍ୟନ୍ତ ଯେଉଁ ଲିପି ବ୍ୟବହାର କରୁଥିଲେ, ତାହା ଉତ୍ତର-ଭାରତୀୟ ତଥା ଦାକ୍ଷିଣାତ୍ୟ ଲିପି ମଧ୍ୟରେ ଏକପ୍ରକାର ସଂଯୋଗ ସ୍ଥାପନ କରିବା ପ୍ରଚେଷ୍ଟା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ଖ୍ରୀଷ୍ଟୀୟ ୮ମ ଶତାବ୍ଦୀରୁ ଆରମ୍ଭ କରି ୧୧ଶ ଶତାବ୍ଦୀ ପର୍ଯ୍ୟନ୍ତ ଯେଉଁ ଶାସନାବଳୀ ଓଡ଼ିଶାରେ ଉତ୍କୀର୍ଣ୍ଣ କରାଯାଇଛି, ସେଗୁଡ଼ିକ ପରୀକ୍ଷା କଲେ ସ୍ପଷ୍ଟ ଜଣାଯାଏ ଯେ, ମଧ୍ୟଯୁଗରେ ପ୍ରଚଳିତ ଦୁଇ ପ୍ରକାର ଲିଖନଶୈଳୀ ଅନ୍ତର୍ଗତ ବର୍ଣ୍ଣମାଳା କାଳକ୍ରମେ ସାମାନ୍ୟ ପରିବର୍ତ୍ତିତ ଆକାରରେ ଦେଖା ଦେଲା। ତା' ଫଳରେ ଓଡ଼ିଶାରେ ବିଭିନ୍ନ ପ୍ରକାର ଲେଖା ଦେଖାଗଲା। ପୂର୍ବୋତ୍ତର ଅଞ୍ଚଳସ୍ଥ ଭୌମ, ତୁଙ୍ଗ, ଶୁଳ୍କି, ନନ୍ଦୋଦ୍ଭବ ପ୍ରଭୃତି ବଂଶୀୟ ରାଜାମାନେ ଯେଉଁ ଲିପି ସେମାନଙ୍କର ଶାସନାବଳୀରେ ବ୍ୟବହାର କରିଛନ୍ତି, ତାହା ଓଡ଼ିଶାର ଦକ୍ଷିଣ-ପଶ୍ଚିମାଞ୍ଚଳରେ ପ୍ରାୟ ଦେଖାଯାଏ ନାହିଁ। ଦକ୍ଷିଣାଞ୍ଚଳ, ଅର୍ଥାତ୍ କଳିଙ୍ଗରେ ତତ୍କାଳୀନ ବ୍ୟବହୃତ ଲିପି ସଙ୍ଗେ ସେ ସମୟରେ ପଡ଼ୋଶୀ ରାଜ୍ୟ ବେଙ୍ଗିରେ ବ୍ୟବହୃତ ଲିପିର ସାମଞ୍ଜସ୍ୟ ସ୍ପଷ୍ଟ ଲକ୍ଷିତ ହୁଏ। ସେହିପରି ପଶ୍ଚିମାଞ୍ଚଳ, ଅର୍ଥାତ୍ ଦକ୍ଷିଣ-କୋଶଳରେ ସୋମବଂଶୀ ଭଞ୍ଜ, ନାଗ ପ୍ରଭୃତି ରାଜାମାନଙ୍କ ବ୍ୟବହୃତ ଲିପିରେ ଉତ୍ତର-ଭାରତୀୟ ଶୈଳୀର ପ୍ରଭାବ ପଡ଼ିଥିବା ଦେଖାଯାଏ। ପୂର୍ବ-ଭାରତୀୟ ଶୈଳୀ ଭୌମମାନଙ୍କର ବ୍ୟବହୃତ ଅନୁଶାସନ ଗୁଡ଼ିକରେ ପରିଦୃଷ୍ଟ ହୁଏ। ସଂକ୍ଷେପରେ କହିବାକୁ ଗଲେ, ଭାରତୀୟ ବର୍ଣ୍ଣମାଳାର ପ୍ରାଚୀନ ଆକୃତି କାଳକ୍ରମେ ପ୍ରାଦେଶିକ ଭେଦରେ ବଦଳିଯିବା ସଙ୍ଗେ ସଙ୍ଗେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ଏପରି ଲିପିର ଭେଦ ଘଟିଥିଲା।

**୬, ୭ ଏବଂ ୮ ନମ୍ବର ଛବିରେ** ଦକ୍ଷିଣ (କଳିଙ୍ଗ)ର ଗଙ୍ଗା ପୂର୍ବୋତ୍ତର ଅଞ୍ଚଳ (ତୋଷଳୀ)ର

ଭୌମ ଏବଂ ପଶ୍ଚିମାଞ୍ଚଳ ଦକ୍ଷିଣ (କୋଶଳ)ର ସୋମବଂଶୀ ରାଜାମାନଙ୍କର ବ୍ୟବହୃତ ଲିପିମାଳା ପ୍ରଦର୍ଶିତ ହେଲା।

ଉପରୋକ୍ତ ତିନିପ୍ରକାର ବର୍ଣ୍ଣମାଳା ପରୀକ୍ଷା କଲେ ସ୍ପଷ୍ଟ ଜଣାଯାଏ ଯେ, ଓଡ଼ିଶାର ପୂର୍ବୋତ୍ତର ଏବଂ ପଶ୍ଚିମାଞ୍ଚଳରେ ଯେଉଁ ଲିପି ବ୍ୟବହୃତ ହେଉଥିଲା, ତାହା ପୂର୍ବ ଏବଂ ଉତ୍ତର-ଭାରତୀୟ ଲିପିମାନଙ୍କ ସହିତ ସଂପୃକ୍ତ; କିନ୍ତୁ ଦକ୍ଷିଣାଞ୍ଚଳର ଲିପିମାନଙ୍କରେ ଦାକ୍ଷିଣାତ୍ୟ ପ୍ରଭାବ ପୂର୍ଣ୍ଣ ମାତ୍ରାରେ ପଡ଼ିଅଛି।

## ପ୍ରତ୍ନ-ଓଡ଼ିଆ ଲିପିର ପ୍ରାରମ୍ଭ ଯୁଗ :

ଖ୍ରୀଷ୍ଟୀୟ ୯ମ ଶତାବ୍ଦୀର ଶେଷଭାଗରେ ଆଧୁନିକ ଓଡ଼ିଆ ବର୍ଣ୍ଣମାଳାର ନିମ୍ନୋକ୍ତ ଅକ୍ଷରମାନଙ୍କର ପ୍ରାୟ ସଠିକ୍ ଆକୃତି ଗଠିତ ହୋଇପାରିଥିଲା-

ଏ, କ, ଖ, ଗ, ଥ, ଧ, ମ, ଯ, ଳ, ଶ, ଷ, ହ। ଏହାପରେ କେତୋଟି ସ୍ୱରବର୍ଣ୍ଣର ବନାନ ମାତ୍ରା ଆଧୁନିକ ଲିଖନଭଙ୍ଗୀର ରୂପ ନେଇ ଗଠିତ ହେଲା; ଯଥା-

ଆ, ଈ, ଏ, ଐ, ଓ, ଔ, ଠ।

ଓଡ଼ିଆ ଲିପିର ବିଶେଷତ୍ୱ ଏହି ଯେ, ଓଡ଼ିଆ ବର୍ଣ୍ଣମାଳା ଅନ୍ତର୍ଗତ କେତୋଟି ଅକ୍ଷର ତଳେ ପୁଚ୍ଛପରି ଗୋଟିଏ ଚିହ୍ନ ଯୁକ୍ତ କରାଯାଏ; ଯଥା- ଝ, ଉ, ର,ଲ, ହ। ଏହି ପୁଚ୍ଛର ଉତ୍ପତ୍ତି ବୋଧହୁଏ ଭୌମଯୁଗରେ ଆରମ୍ଭ ହୋଇଥିଲା। ୭ ନମ୍ବର ଚିତ୍ରରୁ ଏଥିର ସୂଚନା ମିଳେ। ଏହି ଲିପି ତୋଷଳୀରେ ଭୌମବଂଶୀୟ ରାଜାମାନେ ପ୍ରଥମେ ବ୍ୟବହାର କରୁଥିଲେ। ତା'ପରେ ସୋମବଂଶୀୟ ରାଜାମାନେ ତାହା ଅନୁକରଣ କଲେ। ପ୍ରାୟ ପ୍ରତି ଅକ୍ଷରତଳକୁ କ୍ଷୁଦ୍ର ପୁଚ୍ଛପରି ଗୋଟିଏ ଗୋଟିଏ ବକ୍ରରେଖା ଯୁକ୍ତ କରି ଅକ୍ଷରର ସୌନ୍ଦର୍ଯ୍ୟ ବଢ଼ାଇବାକୁ ବୋଧହୁଏ ଲିପିକାରମାନେ ସେତେବେଳେ ଚେଷ୍ଟା କରିଥିଲେ।

ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀ ପରେ ଓଡ଼ିଆ ବର୍ଣ୍ଣମାଳା ଗୋଟିଏ ସ୍ୱତନ୍ତ୍ର ଆକାର ଧାରଣ କଲା। ସେଥିର ଆକୃତି ଆଧୁନିକ ଓଡ଼ିଆ ଅକ୍ଷର ସଙ୍ଗେ ଅଧିକାଂଶ କ୍ଷେତ୍ରରେ ପ୍ରାୟ ସମାନ, କହିଲେ ଚଳେ। ଏହି ଅକ୍ଷରଗୁଡ଼ିକର ଲିଖନ-ଭଙ୍ଗୀ କଳିଙ୍ଗର ଗଙ୍ଗାବଂଶୀୟ ରାଜା ଅନନ୍ତବର୍ମ ଚୋଡ଼ଗଙ୍ଗଙ୍କର (ଖ୍ରୀ.ଅ. ୧୦୭୭ -୧୧୫୭) ତାମ୍ର ଶାସନରେ ଦେଖାଯାଏ । ତାଙ୍କ ପରେ ଖିଞ୍ଜିଳି ରାଜ୍ୟ (ଗୁମୁସର)ର ଭଞ୍ଜବଂଶୀୟ ରାଜାମାନେ ମଧ୍ୟ ସେ ଲିପି ଅନୁକରଣ କରିଥିବାର ଜଣାଯାଏ। ଏହି କାଳମଧ୍ୟରେ ସମ୍ଭବତଃ ଓଡ଼ିଆ ଭାଷା କଥିତ ଓ ଲିଖିତ ଭାଷାମାନଙ୍କ ମଧ୍ୟରେ ଆଦୃତ ହେଲା, ଏଥିପୂର୍ବରୁ ରାଜକୀୟ ବ୍ୟାପାରରେ ସଂସ୍କୃତ ଭାଷାହିଁ ବ୍ୟବହୃତ ହେଉଥିଲା। ସାଧାରଣ ଲୋକଙ୍କ ତୁଣ୍ଡରେ କୌଣସି ଗୋଟିଏ

ବିକୃତ ପ୍ରାକୃତ ଭାଷା ରହିଥିଲା। ପଣ୍ଡିତମାନଙ୍କ ମତାନୁଯାୟୀ ତାହା ଅର୍ଦ୍ଧମାଗଧୀ ଭାଷାର ଅନ୍ତର୍ଗତ। ଆଜିଯାଏଁ ସେଥିର ସ୍ପଷ୍ଟ ସ୍ୱରୂପ ଜାଣିବାର ଉପାୟ ନଥିଲେ ସୁଦ୍ଧା ଏ ଦେଶରୁ ପ୍ରାପ୍ତ ବହୁ ତାମ୍ରଶାସନ ଓ ଶିଳାଲିପିରେ ବ୍ୟବହୃତ ସଂସ୍କୃତ ଓ ପ୍ରାକୃତ ଭାଷା ସଙ୍ଗେ ଏପରି କେତେକ ସ୍ଥାନୀୟ ଲୋକପ୍ରଚଳିତ ଶବ୍ଦ ମିଶିଯାଇଛି, ଯାହା ଉପରେ ପ୍ରାଚୀନ ଓଡ଼ିଆ ଭାଷାର ଗୋଟିଏ ଅସ୍ପଷ୍ଟ ପ୍ରଭାବ ପଡ଼ିଅଛି।

ଉଦାହରଣ ସ୍ୱରୂପ ସୋରୋ ସନ୍ନିକଟ ଗଣ୍ଡିବେଢ଼ା ନାମକ ସ୍ଥାନରୁ କିଛିଦିନ ପୂର୍ବେ ଏ ଲେଖକ ଗୋଟିଏ ବୌଦ୍ଧ ପ୍ରତିମା ପାଇଥିଲା। ସେହି ପ୍ରତିମାର ପାଦଦେଶରେ ଦୁଇ ଧାଡ଼ି ଲେଖା ରହିଛି। ସେଥିରେ ଖ୍ରୀଷ୍ଟୀୟ ୧୦ମ ବା ୧୧ଶ ଶତାବ୍ଦୀ ଲିପି ବ୍ୟବହୃତ ହୋଇଥିବାରୁ, ପୁଣି ଓଡ଼ିଆ ପଦ୍ୟରେ ତାହା ଲେଖାଯାଇଥିବାରୁ ତାକୁ ଆମେ ଓଡ଼ିଆ ଭାଷାର ଆଦିମ ଅବସ୍ଥା ବୋଲି ନିର୍ଦ୍ଦେଶ କରୁ(Orissa Historical Research Journal, Vol II, No.2, P 21 ଦ୍ରଷ୍ଟବ୍ୟ)। ଏହାପରେ ଦ୍ୱିତୀୟ ନିର୍ଦ୍ଦେଶ ହେଉଛି, ଗଙ୍ଗାବଂଶୀୟ ରାଜା ବଜ୍ରହସ୍ତଙ୍କର ଗୋଟିଏ ତାମ୍ରଶାସନ। ଏହି ଶାସନସ୍ଥ ଲିପି ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀରେ ପ୍ରଚଳିତ ଥିଲା। ଏଣୁ ରାଜକୀୟ ଲେଖାମାନଙ୍କରେ ଓଡ଼ିଆ ଭାଷାର ବ୍ୟବହାର ୧୦ମ ବା ୧୧ଶ ଶତାବ୍ଦୀରେ ଆରମ୍ଭ ହୋଇଥିଲା ବୋଲି ନିର୍ଦ୍ଦେଶ କରାଯାଇପାରେ(Ep. Ind Vol.III, P.20 ଦ୍ରଷ୍ଟବ୍ୟ)। ତଥାପି ବହୁକାଳ ପର୍ଯ୍ୟନ୍ତ ସଂସ୍କୃତ ଭାଷାହିଁ ଏ ଦେଶରେ ବ୍ୟବହୃତ ଏବଂ ଆଦୃତ ରାଜକୀୟ ଭାଷା ଥିଲା।

ଯେଉଁ ସମୟରେ ଦାକ୍ଷିଣାତ୍ୟ-ଲିପି ସଙ୍ଗେ ଉତ୍ତର ଓ ପୂର୍ବ ଭାରତୀୟ ଲିପିଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ବିଚ୍ଛିନ୍ନ ହୋଇପଡ଼ିଲେ, ପୁଣି ଦାକ୍ଷିଣାତ୍ୟ ଭାଷା ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଦୁର୍ବୋଧ ହେଲା, ସେତେବେଳେ ସେହି ଉଭୟ ପ୍ରକାର ଲିପି ମଧ୍ୟରେ ଯୋଗସୂତ୍ର ରକ୍ଷା କରିବା ପାଇଁ କଳିଙ୍ଗର ଲେଖକମାନେ ଚେଷ୍ଟିତ ହେଲେ। ଏଥିର ପ୍ରମାଣ ରୂପେ ମହାରାଜା ବଜ୍ରହସ୍ତ ଏବଂ ଅନ୍ୟ କେତେକ ଗଙ୍ଗାବଂଶୀୟ ରାଜାଙ୍କର ତାମ୍ରଶାସନ ଗ୍ରହଣ କରାଯାଇପାରେ। ବଜ୍ରହସ୍ତଙ୍କର ଏକ ତାମ୍ରଶାସନରେ ଉତ୍ତର-ଭାରତୀୟ ଲିପି ସଙ୍ଗେ ଦାକ୍ଷିଣାତ୍ୟ-ଲିପି ସଂଯୁକ୍ତ କରି ଲିପିକାର ଏହି ଅନୁଶାସନଟି ପୂର୍ଣ୍ଣ କରିଛନ୍ତି। ଯଦି ଉଭୟ ପ୍ରକାର ଲିପି ଏ ଦେଶରେ (କଳିଙ୍ଗରେ) ପ୍ରଚଳିତ ହୋଇ ସୁପରିଚିତ ହୋଇ ନଥାନ୍ତା, ତା' ହେଲେ ରାଜକୀୟ ଶାସନରେ ଏପରି ମିଶ୍ରିତ ଲିପି କଦାପି ବ୍ୟବହାର କରାଯାନ୍ତା ନାହିଁ। ମହାରାଜା ଚୋଡ଼ଗଙ୍ଗଦେବଙ୍କର ଦୁଇଟି ତାମ୍ରଶାସନରୁ ଗୋଟିକରେ ଦାକ୍ଷିଣାତ୍ୟ-ଲିପି ଏବଂ ଅନ୍ୟଟିରେ ଉତ୍ତର-ଭାରତୀୟ ଲିପି ବ୍ୟବହୃତ ହୋଇଅଛି (Andhra Historical

Research. Journal, Vol. I P.I. and Indian Antiquary Vol. XVIII, P.165 - ଦ୍ରଷ୍ଟବ୍ୟ।) ଏଣୁ ଉପରୋକ୍ତ ମତ ଏହାଦ୍ୱାରା ଦୃଢ଼ୀଭୂତ ହୁଏ।

ସଂକ୍ଷେପରେ କହିବାକୁ ଗଲେ, ଖ୍ରୀଷ୍ଟୀୟ ଦଶମ ଏବଂ ଏକାଦଶ ଶତାବ୍ଦୀରେ ଏ ଦେଶରେ ଯେଉଁ ଉତ୍ତର-ଭାରତୀୟ ଲିପି ଅନୁରୂପ ଅକ୍ଷର ପ୍ରଚଳିତ ହେଲା, ତହିଁରୁ ଆଧୁନିକ ଓଡ଼ିଆ ବର୍ଣ୍ଣମାଳାର ଅଧିକାଂଶ ଅକ୍ଷର ରୂପ ଧାରଣ କରିଛି। **୯ ନମ୍ବର** ଚିତ୍ରରେ ଏ ଲିପିର କ୍ରମବିକାଶ ପ୍ରଦର୍ଶିତ ହେଲା।

ଖ୍ରୀଷ୍ଟୀୟ ୧୩ଶ ଶତାବ୍ଦୀରେ ଓଡ଼ିଆ ଲିପିର ଆକୃତି ଆଧୁନିକ ଅକ୍ଷରର ଆକୃତି ପରି ହେଲା। ଏହାକୁ ଆମେ ପ୍ରତ୍ନଓଡ଼ିଆ ଲିପି (Proto Oriya Characters) ବୋଲି କହୁଁ। ଏ ସମୟରେ ଯେଉଁ ତାମ୍ରଶାସନ ଓ ଶିଳାଲିପିଗୁଡ଼ିକ ସଂସ୍କୃତଭାଷା ଆଶ୍ରୟରେ ଲେଖାଯାଉଥିଲା, ତାହା ଉପରୋକ୍ତ ପ୍ରତ୍ନ-ଓଡ଼ିଆ ('ପ୍ରତ୍ନ-ଓଡ଼ିଆ' ଲିପିକୁ କେହି କେହି ଐତିହାସିକ 'ପ୍ରତ୍ନ-ବଙ୍ଗଳା ଲିପି' ବୋଲି କହିଥାନ୍ତି। ଏଥିରେ ମୁଁ ଏକମତ ନୁହେଁ। କାରଣ ବଙ୍ଗଳା ଓ ଆସାମରେ ବ୍ୟବହୃତ ଖ୍ରୀ.ଦ. ୧୩ଶ ଶତାବ୍ଦୀର ଲିପି ସଙ୍ଗେ ଆଧୁନିକ ଓଡ଼ିଆ ଲିପିର ସାମ୍ୟ ବିଦ୍ୟମାନ।) ଲିପିରେ ଲେଖା ନ ହୋଇ 'ପ୍ରତ୍ନ-ନାଗରୀ' ଲିପିର ଆଶ୍ରୟ ଗ୍ରହଣ କରିଛି। ଏଥିର ପ୍ରମାଣ ସ୍ୱରୂପ ଗଙ୍ଗବଂଶ ରାଜାମାନଙ୍କର କେତୋଟି ତାମ୍ରଶାସନ ଧାର୍ଯ୍ୟ ହୋଇପାରେ। ସେହି ଶାସନମାନଙ୍କରେ ବ୍ୟବହୃତ ଲିପିର ନମୁନା ନିମ୍ନରେ **୧୦ନମ୍ବର** ଚିତ୍ରରେ ପ୍ରଦର୍ଶିତ ହେଲା।

ଉପରୋକ୍ତ ଲିପି ଅନୁସାରେ ଆଧୁନିକ ଓଡ଼ିଆ ବର୍ଣ୍ଣମାଳାର ନିମ୍ନୋକ୍ତ ଅକ୍ଷରଗୁଡ଼ିକର ଆକୃତି ସଙ୍ଗେ ତାହା ଦେଖିବାକୁ ପ୍ରାୟ ସମାନ -

୧. ସ୍ୱରବର୍ଣ୍ଣ- ଏ,ଐ, ଓ, ଔ।

୨. ବ୍ୟଞ୍ଜନବର୍ଣ୍ଣ- ଖ, ଗ, ଘ, ଟ, ଠ, ଣ, ଶ, ଷ, ହ, କ୍ଷ।

ଏହିପରି ଭାବେ ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣ ମିଶି ମୋଟରେ ୧୪ଟି ବର୍ଣ୍ଣ ସଙ୍ଗେ ଆଧୁନିକ ଓଡ଼ିଆ ଅକ୍ଷରର ଆକୃତିଗତ ସାମ୍ୟ ଦେଖବାକୁ ମିଳେ।

ପାଠକଙ୍କୁ ପୁନର୍ବାର ସ୍ମରଣ କରାଇ ଦେବା ଉଚିତ ଯେ, ଓଡ଼ିଆ ବର୍ଣ୍ଣମାଳାର ବିଭିନ୍ନ ଅକ୍ଷର ଭିନ୍ନ ଭିନ୍ନ ସମୟରେ ପ୍ରଚଳିତ ବିଭିନ୍ନ ପ୍ରଦେଶର ଲିପିରୁ ସୃଷ୍ଟି ହୋଇଥିଲା। ଏଠାରେ କହିରଖିବା ଆବଶ୍ୟକ ଯେ, ଆଧୁନିକ ଓଡ଼ିଆ ବର୍ଣ୍ଣମାଳାର ପ୍ରଥମ ଦୁଇଟି ଅକ୍ଷର, ଅର୍ଥାତ୍ ଅ ଏବଂ ଆ, ପୂର୍ବ ବା ଉତ୍ତରଭାରତୀୟ କୌଣସି ଲିପିରେ ନାହିଁ। ସୁଦୂର ଦକ୍ଷିଣ-ଭାରତରେ ତାମିଲ୍‌ଭାଷା-ଭାଷୀ ପ୍ରଦେଶରେ ଖ୍ରୀଷ୍ଟୀୟ ୮ମ ଶତାବ୍ଦୀରେ ପ୍ରଚଳିତ

'ବଟ୍ଟେଲୁତ୍ତୁ' (ବର୍ତ୍ତୁଳନ୍ଧ) ନାମକ ବର୍ଣ୍ଣମାଳାରୁ ତାହା ସଂଗୃହୀତ ହୋଇଅଛି (Burnell's Elements of South-Indian Palaeography Plate No. XX ଦ୍ରଷ୍ଟବ୍ୟ ।) ।

ଦାକ୍ଷିଣାତ୍ୟର, 'ବଟ୍ଟେଲୁତ୍ତୁ' ଲିପି ହେଉଛି ତାମିଲ ଭାଷାର ଅଶୋକୋତ୍ତର ଯୁଗର ବର୍ଣ୍ଣମାଳା । ତାହା ପ୍ରଧାନତଃ ତାଞ୍ଜୋର ଜିଲ୍ଲାର ଦକ୍ଷିଣରେ ପୁଣି ଦକ୍ଷିଣ-ମାଲବାର୍ ଏବଂ ତ୍ରାଭାନକୋର୍ ଜିଲ୍ଲାମାନଙ୍କରେ ପ୍ରଚଳିତ ଥିଲା । ଏ ଅଞ୍ଚଳଟି ପୂର୍ବେ ପାଣ୍ଡ୍ୟ ଓ ଚେର ବଂଶୀୟ ରାଜାମାନଙ୍କର ଶାସନାଧୀନ ଥିଲା । ପେରିପ୍ଲାସ୍ (Periplus) ନାମକ ଜଣେ ଗ୍ରୀକ୍ ପଣ୍ଡିତ ଉଲ୍ଲେଖ କରିଛନ୍ତି ଯେ, ଏ ଦେଶର କୁମାରୀକା ଅନ୍ତରୀପ (Cape Comorin) ଠାରେ ଜଣେ ଦେବୀ (କୁମାରୀ କନ୍ୟା) ସମୁଦ୍ରରେ ସ୍ନାନ କରନ୍ତି । ଏ ବିଷୟଟି ସେ ତାଙ୍କ ସମୟର କୌଣସି ଲିଖିତ ତାମିଲ୍ ଗ୍ରନ୍ଥରୁ ସଂଗ୍ରହ କରିଥିବା ଅନୁମିତ ହୁଏ (Hudson "Geography Graeci Miuores" Vol.I, P.33, ଦ୍ରଷ୍ଟବ୍ୟ ।) । ଏ ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ 'ବଟ୍ଟେଲୁତ୍ତୁ' ବର୍ଣ୍ଣମାଳା ପ୍ରାୟ ୨୦୦୦ ବର୍ଷ ପୂର୍ବରୁ ସେଠାରେ ପ୍ରଚଳିତ ଥିଲା । କ୍ରମେ ସେ ଲିପିରୁ ଆଧୁନିକ ତାମିଲ୍ ଲିପିର ସୃଷ୍ଟି ହୋଇଛି ।

**ପ୍ରତ୍ନ-ଓଡ଼ିଆ ଲିପିର ସ୍ପଷ୍ଟ ସ୍ୱରୂପ :**

ଗଙ୍ଗବଂଶ ପରେ ୧୪୩୫ ଖ୍ରୀଷ୍ଟାବ୍ଦରୁ ଓଡ଼ିଶାରେ ସୂର୍ଯ୍ୟବଂଶର ଅଭ୍ୟୁଦୟ ଘଟିଥିଲା । ସେହି ବଂଶର ମହାରାଜା କପିଳେଶ୍ୱର ଦେବ କୌଣସି ରାଜପରିବାରରେ ଜନ୍ମଲାଭ କରି ଓଡ଼ିଶାର ସିଂହାସନ ଅଧିକାର କରିଥିଲେ । ସେ ଓଡ଼ିଆ ଭାଷାର ସମ୍ମାନ ଉତ୍ତରୋତ୍ତର ବୃଦ୍ଧି କରାଇଲେ । ତାଙ୍କ ସମୟରୁ ଓଡ଼ିଆ ସାହିତ୍ୟ ଉନ୍ନତି ପଥରେ ଅଗ୍ରସର ହେବାକୁ ଲାଗିଲା । ଓଡ଼ିଶାର ମହାକବି ଶୂଦ୍ରମୁନି ସାରଳା ଦାସ ଏ ସମୟରେ ମହାଭାରତକୁ ଓଡ଼ିଆରେ ରଚନା କଲେ । (ଓଡ଼ିଆ ମହାଭାରତ ସଂସ୍କୃତ ଭାଷା ବ୍ୟତୀତ ଅପରାପର ଉତ୍ତର-ଭାରତୀୟ ପ୍ରଚଳିତ ଭାଷାମାନଙ୍କ ମଧ୍ୟରେ ଏକ ପ୍ରାଚୀନ ଗ୍ରନ୍ଥ ବୋଲି କୁହାଯିବ, କାରଣ ବଙ୍ଗଳା ଏବଂ ଆଉ କେତେକ ଭାଷାରେ ମହାଭାରତ ପରବର୍ତ୍ତୀ କାଳରେ ରଚିତ ହୋଇଥିଲା) । କପିଳେଶ୍ୱରଙ୍କ ବହୁ ତାମ୍ର ଓ ଶିଳାନୁଶାସନ ଓଡ଼ିଆ ଭାଷାରେ ଲେଖାଯାଇଛି । ପୁରୀ ଜଗନ୍ନାଥ ମନ୍ଦିରରେ ନାଟମନ୍ଦିରସ୍ଥ ପ୍ରବେଶ ପଥର ଉଭୟ ପାର୍ଶ୍ୱରେ କପିଳେଶ୍ୱର, ପୁରୁଷୋତ୍ତମ, ପ୍ରତାପରୁଦ୍ର ପ୍ରଭୃତି ସୂର୍ଯ୍ୟବଂଶୀୟ ରାଜାମାନଙ୍କର ଯେଉଁ ଦାନ ବିଷୟକ ଅଭିଲେଖମାନ ଶିଳାଗାତ୍ରରେ ଦେଖାଯାଏ, ତାହା ସେ ସମୟରେ ପ୍ରଚଳିତ ଓଡ଼ିଆ ଭାଷା ଓ ଲିପିର ପ୍ରକୃଷ୍ଟ ନିଦର୍ଶନ । ସେଥିରେ ବ୍ୟବହୃତ ଲିପିକୁ "ପ୍ରତ୍ନ-ଓଡ଼ିଆ ଲିପି"ର (Proto

Oriya Characters)ର **ସ୍ପଷ୍ଟ** ପ୍ରକାଶ ବୋଲି ନିର୍ଦ୍ଦେଶ କରାଯାଇପାରେ। ଏହା **୧୧** ନଂ ଚିତ୍ରରେ ପ୍ରଦର୍ଶିତ ହେଲା।

**ଓଡ଼ିଆରେ ସଂଯୁକ୍ତ-ବ୍ୟଞ୍ଜନାକ୍ଷର ଓ ଶବ୍ଦ-କୁଞ୍ଚନ ପ୍ରଥା :**

ଖ୍ରୀଷ୍ଟୀୟ ୧୫ଶ ଶତାବ୍ଦୀଠାରୁ ୧୭ଶ ଶତାବ୍ଦୀ ମଧ୍ୟରେ ଯେଉଁ ଓଡ଼ିଆ ଲିପି ଏ ଦେଶରେ ବ୍ୟବହୃତ ହେଉଥିଲା, ତାକୁ ମଧ୍ୟ ଆମେ "ପ୍ରତ୍ନ ଓଡ଼ିଆ ଲିପି" ବୋଲି କହୁଁ। ଏ ସମୟରେ କେତେଗୁଡ଼ିଏ ଯୁକ୍ତବ୍ୟଞ୍ଜନାକ୍ଷର ସୃଷ୍ଟି ହୋଇ ଓଡ଼ିଆ ବର୍ଣ୍ଣମାଳାର ସଂଖ୍ୟା ବୃଦ୍ଧି କରିଥିବାର ଜଣାଯାଏ। ଶବ୍ଦ କୁଞ୍ଚନ ଉଦ୍ଦେଶ୍ୟରେ ଏହା କରାଯାଇଥିବ। ଉଦାହରଣ ସ୍ୱରୂପ ନିମ୍ନରେ କେତୋଟି ସଂଯୁକ୍ତ ବ୍ୟଞ୍ଜନାକ୍ଷର ସମ୍ବଳିତ ଶବ୍ଦ ଦିଆଗଲା -

ମହାରାଜା - ମହାର୍ଜା
ରତ୍ନମଣି - ରତ୍ନମ୍ଣି
ତାହାଙ୍କର - ତାଙ୍କ୍ର
ଏହାଙ୍କର - ଯାଙ୍କ୍ର
ଶଙ୍କର - ଶଙ୍କ୍ର
ମହାପ୍ରଭୁ - ମାଆପ୍ରୁ
ଗଜପତି - ଗଜପ୍ତୀ

(ଅଧିକାଂଶ ପ୍ରାଚୀନ ଓଡ଼ିଆ, ଲିପିରେ 'ମହାରାଜା' ସ୍ଥାନରେ 'ମାହାରାଜା' ଲେଖାଅଛି। କଳିଙ୍ଗର ଜଣେ ଗଙ୍ଗାବଂଶୀୟ ରାଜାଙ୍କର ତାମ୍ରଲିପିରେ ଖ୍ରୀ.ଅ.୯ମ ଶତାବ୍ଦୀରେ ମଧ୍ୟ ମହାରାଜା ସ୍ଥାନରେ ମାହାରାଜା ଶବ୍ଦ ଲେଖାଥିବା ଦେଖାଯାଏ। (E.P. and XXXI.P.45) ଦ୍ରଷ୍ଟବ୍ୟ)।

ଏ ପ୍ରକାର ଶବ୍ଦ-କୁଞ୍ଚନ ପ୍ରଣାଳୀରେ ସେବର ଓଡ଼ିଆ ବର୍ଣ୍ଣମାଳାରେ କେତେକ ଜଟିଳ ମିଶ୍ରାକ୍ଷର ସୃଷ୍ଟି କରାଗଲା। ସମ୍ଭବତଃ କିଛିକାଳ ସକାଶେ ଏହା ଏକ ପରୀକ୍ଷାମୂଳକ ବ୍ୟାପାର ହୋଇଥିବ। କାରଣ ୧୭ଶ ଶତାବ୍ଦୀ ପରେ ଓଡ଼ିଆ ଭାଷାରେ ଏପରି ଶବ୍ଦାବଳୀ ବ୍ୟବହୃତ ହେବାର ପ୍ରମାଣ ନାହିଁ। ଏ ପ୍ରକାର ଶବ୍ଦକୁଞ୍ଚନ ଫଳରେ ଲିପିକ୍ଷେତ୍ରରେ ଜଟିଳତା ସୃଷ୍ଟି ହେବାରୁ ଖ୍ରୀଷ୍ଟୀୟ ୧୮ଶ ଶତାବ୍ଦୀ ପରେ ସେସବୁ ଅକ୍ଷରର ବ୍ୟବହାର ସମ୍ପୂର୍ଣ୍ଣରୂପେ ଲୋପ ପାଇଲା।

ଓଡ଼ିଆ ଭାଷାର ଶବ୍ଦତତ୍ତ୍ୱ ଓ ଧ୍ୱନିତତ୍ତ୍ୱ ଯେଉଁ କେତୋଟି ପଦ୍ଧତିରେ ନିୟନ୍ତ୍ରିତ ହୋଇଥିଲା, ତନ୍ମଧ୍ୟରୁ ଉପରବର୍ଣ୍ଣିତ ଶବ୍ଦକୁଞ୍ଚନ ବ୍ୟାପାର ଅନ୍ୟତମ। ଭାଷାତତ୍ତ୍ୱ ଦୃଷ୍ଟିରୁ ଏଥିରେ ସ୍ୱତନ୍ତ୍ର ଗବେଷଣା ଆବଶ୍ୟକ ବୋଲି ମୋର ମତ।

ଖ୍ରୀଷ୍ଟୀୟ ୧୭ଶ ଶତାବ୍ଦୀ ପରେ ଏ ଦେଶରେ ମୁଦ୍ରାଯନ୍ତ୍ର ବ୍ୟବହୃତ ହେବାପର୍ଯ୍ୟନ୍ତ ଯେଉଁ ଲିପିମାଳା ପ୍ରଚଳିତ ଥିଲା, ତାହା ପ୍ରାଚୀନ ତାଳପତ୍ର ପୋଥିମାନଙ୍କରୁ ସଂଗ୍ରହ କରାଯାଇପାରେ। ତାଳପତ୍ରରେ ଲେଖୁ ଲେଖୁ "ପ୍ରତ୍ନ-ଓଡ଼ିଆ ଲିପି" ଅନ୍ତର୍ଗତ ନିମ୍ନୋକ୍ତ କେତୋଟି ଅକ୍ଷରର କିଛି ଆକୃତିଗତ ପରିବର୍ତ୍ତନ ଘଟିଛି- ଉ, ଉ; ଚ, ଜ, ଟ, ଡ, ତ,

ଭ, ଯ, ଲ, କ୍ଷ। ଆଧୁନିକ ଲିପି ସଙ୍ଗେ ୧୧ ନମ୍ବର ଚିତ୍ରସ୍ଥ ଏହି ଅକ୍ଷରଗୁଡ଼ିକ ତୁଳନା କଲେ ଏହା ସ୍ପଷ୍ଟ ବୁଝାଯିବ।

**ପ୍ରାଚୀନ ଅଙ୍କ ଲିଖନ ପଦ୍ଧତି:**

ବର୍ତ୍ତମାନ ଓଡ଼ିଆରେ ଯେଉଁ ଆକୃତିରେ ଓ ଯେଉଁ ନିୟମରେ ସଂଖ୍ୟାବାଚକ ଚିହ୍ନଗୁଡ଼ିକ ଉଲ୍ଲେଖ କରାଯାଉଛି, ପୂର୍ବେ ଏ ଦେଶରେ ସେପରି ଆକୃତି ଓ ନିୟମରେ ଅଙ୍କ ଲେଖାଯାଉ ନଥିଲା। କଳିଙ୍ଗ ତଥା ଓଡ଼ିଶାରେ ଯେଉଁ ନିୟମରେ ଅଶୋକଙ୍କ ସମୟରୁ ଆରମ୍ଭ କରି ପ୍ରାୟ ହଜାର ବର୍ଷ ପର୍ଯ୍ୟନ୍ତ ଯେଉଁ ପ୍ରକାର ଅଙ୍କଲିଖନ ରୀତି ଭାରତରେ ପ୍ରଚଳିତ ଥିଲା, ଠିକ୍ ତାହା କଳିଙ୍ଗରେ ପ୍ରଚଳିତ ଥିବାର ପ୍ରମାଣ ମିଳେ। ସେହି ଅଙ୍କଲିଖନ ରୀତି ଅନୁସାରେ କୌଣସି ସଂଖ୍ୟା ଉଲ୍ଲେଖ କରିବାକୁ ହେଲେ ତାହା ସ୍ଥାନ-ପ୍ରଧାନ ନ ହୋଇ ସଙ୍କେତ ପ୍ରଧାନ ହେଉଥିଲା। ଉଦାହରଣ ସ୍ୱରୂପ, 'ଏକଶତ ଏଗାର' ସଂଖ୍ୟା ଲେଖିବାକୁ ହେଲେ ବର୍ତ୍ତମାନ ଆମେ ଏକ ସଂଖ୍ୟା ପାଇଁ ଯେଉଁ ସଙ୍କେତ ରହିଛି, ଠିକ୍ ସେ ଆକାରର ଅଙ୍କ ଗୋଟିଏ ପଂକ୍ତିରେ ତିନିଥର ଉଲେଲଖ କରୁଁ; ଯଥା- ୧୧୧। ଏଥିରୁ ଯଦି ଗୋଟିଏ ଅଙ୍କ ଲିଭାଇ ଦିଆଯାଏ, ତେବେ ମୋଟ ସଂଖ୍ୟାରୁ ଏକଶତ କଟିଯାଇ ଅବଶିଷ୍ଟ ଏଗାର ରହେ, ପୁଣି ଦୁଇଟି ଅଙ୍କ ଲିଭାଇ ଦେଲେ ମୋଟ ସଂଖ୍ୟାରୁ ଶହେଦଶ କଟି ଏକ ସଂଖ୍ୟା ମାତ୍ର ଅବଶିଷ୍ଟ ରହେ। ଏଣୁ ଏ ରୀତିକୁ ସଙ୍କେତ ପ୍ରଧାନ ନ କହି ସ୍ଥାନ-ପ୍ରଧାନ କୁହାଯାଏ, କିନ୍ତୁ ଭାରତର ପ୍ରାଚୀନ ନିୟମ ସ୍ଥାନ-ପ୍ରଧାନ ନ ହୋଇ ସଙ୍କେତ ପ୍ରଧାନ ଥିବାରୁ ୯୯୯ ପର୍ଯ୍ୟନ୍ତ ବିଭିନ୍ନ ସଂଖ୍ୟା ବୁଝାଇବାକୁ ହେଲେ ୨୭ଟି ସଙ୍କେତ ଚିହ୍ନ ବ୍ୟବହାର କରିବାକୁ ପଡୁଥିଲା। ଅର୍ଥାତ୍ ୧୦ରୁ ୯ ପର୍ଯ୍ୟନ୍ତ ଏକକ ସ୍ଥାନର ସଂଖ୍ୟା ନ' ଗୋଟି, ୧୦ଠାରୁ ୯୦ପର୍ଯ୍ୟନ୍ତ ସଂଖ୍ୟା ନ'ଗୋଟି ଏବଂ ୧୦୦ଠାରୁ ୯୦୦ ପର୍ଯ୍ୟନ୍ତ ସଂଖ୍ୟା ନ'ଗୋଟି- ଏପରି ମୋଟରେ ୯୯୯ ପର୍ଯ୍ୟନ୍ତ ଚିହ୍ନ ସଂଖ୍ୟା ଉଲ୍ଲେଖ କରିବାକୁ ହେଲେ ୨୭ଟି ଭିନ୍ନ ଭିନ୍ନ ସାଙ୍କେତିକ ଚିହ୍ନ ବୁଝିବା ଦରକାର। ଉଦାହରଣ ସ୍ୱରୂପ, ୧୧୧ସଂଖ୍ୟା ଲେଖିବାକୁ ହେଲେ ପ୍ରାଚୀନ ରୀତି ଅନୁସାରେ ତିନୋଟି ଭିନ୍ନ ପ୍ରକାର ସଙ୍କେତ ଉଲ୍ଲେଖ କରିବାକୁ ପଡୁଥିଲା। ସ୍ଥୂଳରେ  କହିବାକୁ ଗଲେ ଶତ ସ୍ଥାନ, ଦଶ ସ୍ଥାନ ଏବଂ ଏକକ ସ୍ଥାନର ପ୍ରତ୍ୟେକ ସଂଖ୍ୟା ପାଇଁ ଭିନ୍ନ ଭିନ୍ନ ସାଙ୍କେତିକ ଚିହ୍ନ ରହିଥିଲା, ଯଥା:-

୧, ୨, ୩, ୪, ୫, ୬, ୭, ୮, ୯।

୧୦, ୨୦, ୩୦, ୪୦, ୫୦, ୬୦, ୭୦, ୮୦, ୯୦।

୧୦୦, ୨୦୦, ୩୦୦, ୪୦୦, ୫୦୦, ୬୦୦, ୭୦୦, ୮୦୦, ୯୦୦।

## ଚିତ୍ର -୧

| ଅ | ଆ | ଇ | ଉ | ଏ | ଓ | | |
|---|---|---|---|---|---|---|---|
| 𑀅 | 𑀆 | 𑀇 | 𑀉 | 𑀏 | 𑀑 | | |
| କ | ଖ | ଗ | ଘ | ଚ | ଛ | ଜ | ଝ |
| 𑀓 | 𑀔 | 𑀕 | 𑀖 | 𑀘 | 𑀙 | 𑀚 | 𑀛 |
| ଞ | ଟ | ଠ | ଡ | ଢ | ଣ | ତ | ଥ |
| 𑀜 | 𑀝 | 𑀞 | 𑀟 | 𑀠 | 𑀡 | 𑀢 | 𑀣 |
| ଦ | ଧ | ନ | ପ | ଫ | ବ | ଭ | ମ |
| 𑀤 | 𑀥 | 𑀦 | 𑀧 | 𑀨 | 𑀩 | 𑀪 | 𑀫 |
| ଯ | ର | ଲ | ବ | ଷ | ଶ | ହ | |
| 𑀬 | 𑀭 | 𑀮 | 𑀯 | 𑀰 | 𑀱 | 𑀲 | |
| କା | କି | କୀ | କୁ | କେ | କୈ | କୋ | |
| 𑀓𑀸 | 𑀓𑀺 | 𑀓𑀻 | 𑀓𑀼 | 𑀓𑁂 | 𑀓𑁃 | 𑀓𑁄 | |

ପ୍ରାଚୀନ-ବ୍ରାହ୍ମୀ ଲିପି (ଖ୍ରୀ: ପୂ: ୩୦୦ ଅବ୍ଦ)

ଚିତ୍ର -୨

ଅ - 𑀅 𑀅 𑀅

ଗ - 𑀕 𑀕 𑀕

ଜ - 𑀚 𑀚 𑀚

ର - 𑀭 𑀭 𑀭

ଅଶୋକଙ୍କ ସମୟର ଲିପି

ଚିତ୍ର -୩

ଅ ଆ ଇ ଉ ଏ ଓ

𑀅 𑀆 𑀇 𑀉 𑀏 𑀑

କ ଖ ଗ ଘ ଚ ଛ ଜ ଝ

𑀓 𑀔 𑀕 𑀖 𑀘 𑀙 𑀚 𑀛

ଟ ଠ ଡ ଢ ଣ ତ ଥ ଦ ଧ ନ

𑀝 𑀞 𑀟 𑀠 𑀡 𑀢 𑀣 𑀤 𑀥 𑀦

ପ ଫ ବ ଭ ମ ଯ ର ଲ ବ ଶ

𑀧 𑀨 𑀩 𑀪 𑀫 𑀬 𑀭 𑀮 𑀯 𑀰

ଷ ସ ହ

𑀱 𑀲 𑀳

କା କି କୁ କେ କୈ କୋ କୌ

𑀓𑀸 𑀓𑀺 𑀓𑀼 𑀓𑁂 𑀓𑁃 𑀓𑁄 𑀓𑁅

ପରବର୍ତ୍ତୀ ବ୍ରାହ୍ମୀ ଲିପି

## ଚିତ୍ର -୪

ପ୍ରଥମ ଅକ୍ଷର—ପୃଥ୍ୱୀ ବର୍ମଣଙ୍କର ସମୟ (ଖ୍ରୀ: ପ: ୫୭୦)

ଦ୍ୱିତୀୟ ଅକ୍ଷର—ମହାରାଜା ଉମା ବର୍ମା ଜଣଙ୍କର ମାଠରବଂଶୀୟ ରାଜା—ଖ୍ରୀ: ୪ର୍ଥ ଶତାବ୍ଦୀ ।

ତୃତୀୟ ଅକ୍ଷର—କୋଙ୍ଗଦର ଶୈଳୋଦ୍ଭବବଂଶୀୟ ରାଜା ମାଧବ ବର୍ମା ଖ୍ରୀ: ପ: ୬୨୦ ।

ଦ୍ରଷ୍ଟବ୍ୟ—୪ ନମ୍ବର ଚିତ୍ରରେ 'ସ' ତଳେ ଯେଉଁ ୪ଟି ଅକ୍ଷର ଅଛି, ତହିଁରୁ ତୃତୀୟଟି 'ଷ' ତଳେ ରହିବ ଓ 'ଷ' ତଳର ଅକ୍ଷରଟି ତା ସ୍ଥାନକୁ ଯିବ ।

ଚିତ୍ର -୭

ଅ ଆ ଇ ଉ ଏ

କ ଖ ଗ ଘ ଢ଼ ଢ଼ ଛ ଢ

ଟ ଠ ଡ଼ ଢ଼ ଣ ତ ଥ ଦ

ଧ ନ ପ ଫ ବ ଭ ମ ଯ

ର ଲ ଵ ସ ଶ ଷ ହ କ୍ଷ

ମଧ୍ୟଯୁଗ ଓଡ଼ିଆ ଲିପି (ଖ୍ରୀ: ୯ମ ଶତାବ୍ଦୀ)

ଭୌମ ସମ୍ବତ୍ ୧୫୮ ଅବ୍ଦ; ଅର୍ଥାତ୍ ପ୍ରାୟ ୯୦୦ ଖ୍ରୀଷ୍ଟାବ୍ଦରେ କୋଷାଳିରେ ଅର୍ଥାତ୍ ରୂପନାରାୟଣଠାରୁ ଚିଲିକା ହ୍ରଦ ପର୍ଯ୍ୟନ୍ତ ପ୍ରଦେଶରେ ଏ ଲିପି ପ୍ରଚଳିତ ଥିଲା। ଭୌମ ରାଜବଂଶୀୟ ରାଣୀ ତ୍ରିଭୁବନ ମହାଦେବୀଙ୍କର ତାମ୍ର ଶାସନରେ ଏ ଲିପି ଦେଖାଯାଏ।

## ଚିତ୍ର -୮

| | | | | | | | |
|---|---|---|---|---|---|---|---|
| ଅ | ଆ | ଇ | ଉ | ଏ | ଐ | ଓ | ଔ |
| କ | ଖ | ଗ | ଘ | ଙ | ଜ | ଟ | ଠ |
| ଡ | ଢ | ଣ | ତ | ଥ | ଦ | ଧ | ନ |
| ପ | ଫ | ବ | ଭ | ମ | ଯ | ର | ଲ |
| ଵ | ଷ | ଶ | ସ | ହ | କ୍ଷ | | |

କୋଶଳୋତ୍କଳ କୁଟିଳ ଲିପି (ଖ୍ରୀ ୧୦ମ ୧୧ ଶ ଶତାବ୍ଦୀ)

କୋଶଳ-ଉତ୍କଳର ରାଜା ଜନମେଜୟ ମହାଗୁପ୍ତଙ୍କ ସମୟର ଲିପି। ଏ ରାଜାଙ୍କର ରାଜତ୍ୱ ସମୟ ଖ୍ରୀ:୧୦ମ-୧୧ଶ ଶତାବ୍ଦୀ ମଧ୍ୟରେ ନିର୍ଣ୍ଣୀତ ହୁଏ।

## ଚିତ୍ର -୯

ଅ ଆ ଇ ଉ ଏ ଐ ଓ ଔ

କ ଖ ଗ ଘ ଚ ଛ ଟ ଠ

ଡ ଢ ଣ ତ ଥ ଦ ଧ ନ

ପ ଫ ବ ଭ ମ ଯ ର ଲ

ଵ ଶ ଷ ସ ହ କ୍ଷ

## ଚିତ୍ର -୧୦

ଅ ଆ ଇ ଉ ଏ ଐ ଓ ଔ

କ ଖ ଗ ଘ ଚ ଛ ଜ ଝ

ଠ ଡ ଢ ଣ ତ ତ ଥ ଦ

ଧ ନ ନ ପ ଫ ବ ଭ ମ

ମ ଯ ର ଳ ବ ସ ଶ ଶ

ଷ ହ କ୍ଷ

ଗଙ୍ଗବଂଶୀୟ ରାଜା ୪ର୍ଥ ନରସିଂହଙ୍କ ସମୟର ଲିପି

(ଖ୍ରୀ: ୧୪ଶ ଶତାବ୍ଦୀ)

## ଚିତ୍ର -୧୧

ଅ ଅ ଆ ଆ ଇ ଉ ଊ ଋ ଏ ଓ

କ କ କ ଖ ଗ ଘ ଚ ଛ ଜ ଟ ୦

ଡ଼ ଢ଼ ଣ ତ ଥ ଦ ଧ ନ ପ ଫ

ବ ଭ ମ ଯ ର ର ଲ ବ ସ ଶ

ଷ ହ କ୍ଷ

ଅ ଆ

ପ୍ରତ୍ନ-ଓଡ଼ିଆ ଲିପି (ଖ୍ରୀ: ୧୫ଶ ଶତାବ୍ଦୀ)

ଯେଉଁ ଅ, ଆ ଦୁଇଟି ଅକ୍ଷର ଦର୍ଶାଇ ଦିଆଯାଇଛି, ତାହା ପ୍ରତ୍ନ-ବଙ୍ଗଳା ଲିପିର ଅନ୍ତର୍ଗତ । ତଥାପି କେତେକ ପ୍ରାଚୀନ ଓଡ଼ିଆ ତାଳପତ୍ର ପୋଥିରେ ଏଥିର ବ୍ୟବହାର ଦେଖାଯାଏ ।

## ଭାରତୀୟ ଅକ୍ଷରମାନଙ୍କ କ୍ରମବିକାଶ ମାନ (Table)

ବ୍ରାହ୍ମୀ-ଲିପି ( ଅଶୋକାକ୍ଷର )

( ଖ୍ରୀ: ପୂ: ୩୦୦ )

ପରବର୍ତ୍ତୀ ବ୍ରାହ୍ମୀ ଲିପି ( ଖାରବେଳ ଓ କୁଷାଣ ଲିପି )




[+ ଓଡ଼ିଆ ଲିପି ଓ ଭାଷା, ପ୍ରକାଶକ ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର-୧୪, ୧୯୮୨, ପୁସ୍ତକରେ ପ୍ରକାଶିତ ଡ. ସତ୍ୟନାରାୟଣ ରାଜଗୁରୁଙ୍କ ଓଡ଼ିଆ ଲିପି (ପୃ.୩୪) ପ୍ରବନ୍ଧରେ ପ୍ରଦତ୍ତ]

♦ ♦ ♦

# ଉତ୍କଳୀୟ ଲିପି ସଂସ୍କାର

## ସତ୍ୟନାରାୟଣ ରାଜଗୁରୁ

ଆଜିକାଲି ଓଡ଼ିଶାର କେତେକ ମୁଖ୍ୟ ସମ୍ବାଦପତ୍ରରେ ତଥା ସାହିତ୍ୟିକ ସଭାରେ "ଉତ୍କଳୀୟ ଲିପିସଂସ୍କାର" ମୂଳକ ଆଲୋଚନା ଖୁବ୍ ଗମ୍ଭୀର ଭାବରେ ଚାଲିଛି- ଏହା ବୋଧହୁଏ ଆପଣ ସମସ୍ତେ ଅବଗତ ଥିବେ । କିଛିଦିନ ପୂର୍ବେ ସତ୍ୟବାଦୀର ବକୁଳବନ ଭେଦପୂର୍ବକ ଏପରି ଗୋଟିଏ ଆନ୍ଦୋଳନ ସର୍ବପ୍ରଥମେ ଅଙ୍କୁରିତ ହୋଇ ଅକାଳରେ ଶୁଷ୍କହୋଇ ପଡ଼ିଥିଲା, ତଥାପି ସେହି ଆନ୍ଦୋଳନ ଫଳରେ ଆଜିକାଲି ପ୍ରେସ୍ କମ୍ପୋଜିଟର୍‌ମାନେ ଓଡ଼ିଆ ବର୍ଣ୍ଣମାଳାର ଅନୁନାସିକ ଯୁକ୍ତାକ୍ଷର ବାଛିବା ଭଳି ଭୀଷଣ ବ୍ୟାପାରରୁ ସମୟ ସମୟରେ ଅବ୍ୟାହତି ପାଇଁ ତତ୍‌ପରିବର୍ତ୍ତରେ ଅନୁସ୍ୱାର ଚିହ୍ନର ସଦ୍‌ବ୍ୟବହାର କରିଥାନ୍ତି । ଏତିକିରେ ସେହି ଆନ୍ଦୋଳନର 'ଇତିଶ୍ରୀ' ବୋଲି କହିଲେ ଯଥେଷ୍ଟ ହେବ । ବର୍ତ୍ତମାନ ସେହି ବିସ୍ମୃତପ୍ରାୟ 'ଇତିଶ୍ରୀ'କୁ "ଅଥମାରମ୍ଭ" କରିବା ପାଇଁ ବୋଧହୁଏ ସମୟ ଆସିଥିବା ଦେଖି ସେହି ପ୍ରେସ୍‌ବାଲାମାନେ ଟିକିଏ ଆଶାନ୍ୱିତ ହୋଇଥିବେ । କିନ୍ତୁ ଏହା ସେମାନଙ୍କର ଦୁରାଶା ବୋଲି ଆମ୍ଭେମାନେ କହୁ । ଏହାର ମୂଳରେ ଯେଉଁ କାରଣ ବିଦ୍ୟମାନ, ତାହା ଏହି ପ୍ରବନ୍ଧରେ କ୍ରମଶଃ ପ୍ରକଟିତ ହେବ ।

ମନୁଷ୍ୟ ସମାଜର ଇତିହାସକୁ ଗୋଟାଏ ଯୁଗାନ୍ତବ୍ୟାପୀ ସଂସ୍କାରର ଇତିହାସ ବୋଲି କହିଲେ ବୋଧହୁଏ ଅତ୍ୟୁକ୍ତି ହେବନାହିଁ । ଚିର ଉନ୍ନତିଶୀଳ ମନୁଷ୍ୟ ତଦୀୟ ଜ୍ଞାନ, ବୁଦ୍ଧି ଓ ବିବେକ ବଳରେ ଆବହମାନ ଯୁଗରୁ କେତେ ନୂତନତାର ଆବିଷ୍କ୍ରିୟାରେ ଅଗ୍ରସର ହୋଇ, ତା'ର ସେହି ମୌଳିକ ସଂସ୍କାରରୁ ଏତେଦୂର ବିଚ୍ଛିନ୍ନ ହୋଇପଡ଼ିଛି ଯେ, ଆଜି ସେହି ଡାର୍‌ଉଇନ୍‌ଙ୍କର ଥିୟରି (Theory) ଅନୁଯାୟୀ ନକହି ଯଦି ତାକୁ ଇଙ୍ଗିତ ଦିଏ, ତୁମ୍ଭର ସେହି ଆଦିମ ଯୁଗର ପିତୃପୁରୁଷଗଣ ଶାଖାମୃଗ ହୋଇ ତୁମ୍ଭର ପ୍ରାଥମିକ ଅବସ୍ଥାର ସୂଚନା ଦିଅନ୍ତି, ତା ହେଲେ ସେଥିରେ ସେ ଭୀଷଣ ଆପତ୍ତି ଉଠାଇବାକୁ ବୋଧହୁଏ ପରାଙ୍ମୁଖ ହେବନାହିଁ । ଏହା ମନୁଷ୍ୟର ସ୍ୱଭାବସିଦ୍ଧ କଥା । ବୋଧହୁଏ ଏ ଗୋଟାଏ ସଂସ୍କାର । ଏହି ସଂସ୍କାରବଳରେ ମନୁଷ୍ୟ ତା'ର ଦୈନନ୍ଦିନ ଜୀବନର ନିତ୍ୟ ଅନୁଭୂୟମାନ ଘଟଣାବଳୀ ସଙ୍ଗେ ଏପରି ଘନିଷ୍ଠ ଭାବରେ ଜଡ଼ିତ ରହିଛି ଯେ, ସେଥିରୁ ତା'ର ମୁକ୍ତି ହେବାର ଉପାୟ ଆଦୌ ନାହିଁ କହିଲେ ଚଳେ । ଏହାହିଁ ମାନବର ପ୍ରଧାନ ବିଶେଷତ୍ୱ ।

ସେ ଆଜିକୁ ପ୍ରାୟ ୬ହଜାର ବର୍ଷ ପୂର୍ବର କଥା, ଯେତେବେଳେ ସୁଦୂର ଇଜିପ୍ଟ, ମିସର, ବାବିଲୋନିଆ, ଫିନିଶୀୟ ପ୍ରଭୃତି ପାଶ୍ଚାତ୍ୟ ପ୍ରଦେଶରେ ମନୁଷ୍ୟ ତା'ର ମାନସିକ ଭାବରାଶି ଚିତ୍ର ସାହାଯ୍ୟରେ ଉତ୍କୀର୍ଣ୍ଣ କରି ରଖୁଥିଲା, ତେତେବେଳେ ଯେଉଁ ଚିତ୍ରଲିପି ପାଶ୍ଚାତ୍ୟ ପ୍ରଦେଶରେ ବ୍ୟବହୃତ ହେଉଥିଲା, ତାକୁ ପଣ୍ଡିତମାନେ 'Hieroglyphy' ବା 'Ideogram' ନାମରେ ଅଭିହିତ କରନ୍ତି । ଆଜି ସମଗ୍ର ପୃଥିବୀ ବକ୍ଷରୁ ଏପରି ଚିତ୍ରଲିପି ସମ୍ବଳିତ ପ୍ରସ୍ତର ମୋଟେ ୬ଖଣ୍ଡ ମାତ୍ର ଆବିଷ୍କୃତ ହୋଇଅଛି । ଅଳ୍ପଦିନ ତଳେ କଟକ ସନ୍ନିକଟ ନରାଜ ନାମକ ଇତିହାସପ୍ରସିଦ୍ଧ ପାହାଡ଼ର ପାଦଦେଶରୁ ଖଣ୍ଡିଏ ଚିତ୍ରଲିପି ମିଳିଥିଲା । ଏହି ଲିପି ସମ୍ବନ୍ଧରେ କେତେକ ବିଷୟ ଆଲୋଚନା କରି ସେଥିରେ ଗୋଟିଏ ପ୍ରତିକୃତି ସହ ଖଣ୍ଡିଏ ପ୍ରବନ୍ଧ ପ୍ରାୟ ଦେଢ଼ବର୍ଷ ତଳେ ପ୍ରାଚୀସମିତିରୁ ପ୍ରକାଶିତ ଇଂରାଜୀ ପତ୍ରିକାର ପ୍ରଥମ ସଂଖ୍ୟାରେ ପ୍ରକଟିତ ହୋଇଥିଲା । ବିଲାତ ପରି ଦେଶ ହୋଇଥିଲେ ଏହି ଲିପିକୁ ଅବଲମ୍ବନ କରି ଐତିହାସିକ ଗବେଷଣା-ଜଗତରେ ଗୋଟାଏ ବିପ୍ଳବ ଉଠନ୍ତାଣି । କିନ୍ତୁ ଆମ୍ଭେମାନେ ବଡ଼ ଶାନ୍ତିପ୍ରିୟ ଜାତି; ଏଣୁ ଏପରି ଗୋଟାଏ ନୀରସ ବିଷୟ ନେଇ ଅନାବଶ୍ୟକ ବିପ୍ଳବକୁ ବରଣ କରିନାହୁଁ । ଓଡ଼ିଆମାନେ ଗୀତାର ସେହି 'ସନ୍ତୁଷ୍ଟୋ ଯେନକେନଚିତ୍' ନୀତିଟି ବରାବର ନିଷ୍ଠାର ସହ ପାଳନ କରିଥାନ୍ତି ବୋଧହୁଏ । ପ୍ରକୃତରେ ଏହି ନୀତିରେହିଁ ଆଧୁନିକ ଓଡ଼ିଆର ପ୍ରାଣପ୍ରତିଷ୍ଠା ।

ଓଡ଼ିଶାରେ ଲିପି-ସଂସ୍କାର କହିଲେ କେହି କେହି ମନେ କରିପାରନ୍ତି ଯେ, ବର୍ତ୍ତମାନ ଆମ ମାତୃଭାଷାରେ ଯେଉଁ ବର୍ଣ୍ଣମାଳା ଆମେ ବ୍ୟବହାର କରୁ; ସେଥିମଧ୍ୟରୁ କେତେଗୁଡ଼ିଏ ଅକ୍ଷର ସମ୍ପୂର୍ଣ୍ଣରୂପେ ଲୁପ୍ତ କରିବା ଉଦ୍ଦେଶ୍ୟରେ ଏହି ପ୍ରବନ୍ଧର ଅବତାରଣା । କିନ୍ତୁ ସେପରି କିଛି ଉଦ୍ଦେଶ୍ୟ ନେଇ ଆମ୍ଭେ ବର୍ତ୍ତମାନ ଏଠାହର ଉପସ୍ଥିତ ହୋଇନାହୁଁ । ବର୍ତ୍ତମାନ ପ୍ରାକୃତିକ ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରେ ଯେଉଁ ଏକାଧିକ ଆକାର ବିଶିଷ୍ଟ ଅକ୍ଷର ପ୍ରଚଳିତ ହୋଇ ସର୍ବସାଧାରଣ ଲିଖିତ ଅକ୍ଷରର ଶୈଳୀ ହରାଇଛି ଏବଂ ଛାପା ଅକ୍ଷର ଓ ଲେଖା ଅକ୍ଷର ମଧ୍ୟରେ ଯେଉଁ ବ୍ୟବଧାନ ସୃଷ୍ଟି କରିଛି, ସେଥିର ପ୍ରତିବିଧାନ ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ନୀତିରେ ଉତ୍କଳୀୟ ବର୍ଣ୍ଣମାଳାକୁ ନିୟନ୍ତ୍ରିତ କରିବା ବିଷୟରେ କେତେକ ପ୍ରସ୍ତାବ ଏଠାରେ ଆମ୍ଭେ ଉପସ୍ଥାପିତ କରିବୁ । ବିଷୟର ଗୁରୁତ୍ୱ ଦୃଷ୍ଟିରୁ ଓଡ଼ିଆ ବର୍ଣ୍ଣମାଳାର ଆକାରଗତ ସଂସ୍କାର ସମସ୍ୟା ବିଚାର କରିବାକୁ ହେବ ।

କିଛିଦିନ ତଳେ ଉତ୍କଳ-ସାହିତ୍ୟ-ସମାଜର ଗୋଟିଏ ବିଶେଷ ଅଧିବେଶନରେ ବାବୁ ଭଗବାନ ପତି "ଓଡ଼ିଆ ବର୍ଣ୍ଣମାଳା ଓ ଲିପିସଂସ୍କାର" ଶୀର୍ଷକ ଗୋଟିଏ ଗବେଷଣାପୂର୍ଣ୍ଣ ପ୍ରବନ୍ଧ ପାଠ କରିଥିଲେ । ସେ କହିଥିଲେ ଯେ, ବର୍ତ୍ତମାନ ଓଡ଼ିଆ ବର୍ଣ୍ଣମାଳାରୁ କେତେ ଗୋଟି ଅକ୍ଷର ସମ୍ପୂର୍ଣ୍ଣରୂପେ ଉଠାଇଦେବା ଉଚିତ ଏବଂ

ଯୁକ୍ତାକ୍ଷରଗୁଡ଼ିକ କ୍ଲିଷ୍ଟ ତଥା ଜଟିଳ ହୋଇ ପଡ଼ିଥିବାରୁ ଅନୁସ୍ୱାର ଓ ହସନ୍ତ ପ୍ରଭୃତି ଚିହ୍ନରେ ତାହା ପ୍ରତିପାଦିତ କରିବା ଆବଶ୍ୟକ । ଅବଶ୍ୟ ଦୂର ଭବିଷ୍ୟତରେ ଏପରି ସଂସ୍କାର ଯେ ନ ହେବ, ଆମ୍ଭେମାନେ କହୁନାହୁଁ । ଓଡ଼ିଆରେ ନବୋଦ୍ଭାବିତ ଟାଇପ୍ ରାଇଟାର୍‌ର ବହୁଳ ବ୍ୟବହାର ସଙ୍ଗେ ସଙ୍ଗେ ଏପରି ପରିବର୍ତ୍ତନ ସମ୍ଭବପର ହୋଇପାରେ କିମ୍ବା ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେଲେ, ଆଉ ଭାରତରେ ସ୍ୱରାଜ୍ୟ ପ୍ରତିଷ୍ଠିତ ହେଲେ ଆମ୍ଭମାନଙ୍କ ବର୍ଣ୍ଣମାଳା ଆପେ ଆପେ ସୁସଂସ୍କୃତ ହୋଇପଡ଼ିବ । ତେତେବେଳେ ଓଡ଼ିଆ ଭାଷାରେ 'କ୍ଷୁଦ୍ରହସ୍ତ' ଲିପି (short hand) ନିତାନ୍ତ ଦରକାର ହେବ, ଆଉ ଯଦି ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ରାଜ୍ୟରେ କେବେ ପରିଣତ ହୁଏ, ତେବେ ଓଡ଼ିଶାର ଜାତୀୟ ସୈନ୍ୟମାନଙ୍କର 'ପତାକା-ଶିକ୍ଷା' ନିମନ୍ତେ ଟେଲିଗ୍ରାଫିକ୍ ବର୍ଣ୍ଣମାଳାର ନିର୍ଦ୍ଦେଶ ସକାଶେ ଓଡ଼ିଆ ବର୍ଣ୍ଣମାଳାରେ ପ୍ରଚଳିତ 'ବଳା' ଓ 'ଫଳା' ମାତ୍ରାଗୁଡ଼ିକ ମଧ୍ୟ ଉଠାଇ ଦେବାକୁ ପଡ଼ିବ । ତେତେବେଳେ କଠୋର ବିଜ୍ଞାନସମ୍ମତ ଭାବରେ ଆମ୍ଭେମାନେ ସେହି ଲିପିସଂସ୍କାର କାର୍ଯ୍ୟରେ ବ୍ରତୀ ହେବା । କିନ୍ତୁ ସେହି ଯୁଗ ଅଦ୍ୟାପି ଦୂର ଚକ୍ରବାଳର ତମିସ୍ର ଅନ୍ତରାଳ ମଧ୍ୟରେ ଲୁକ୍କାୟିତ । ସୁତରାଂ ସେହି ସୁଦୂର ଯୁଗର ଆଗମନ ଆଶାରେ ଏତେବେଳୁ ଆମ୍ଭମାନଙ୍କର ପ୍ରସ୍ତୁତ ହୋଇ ଚାହିଁ ରହିଥିବା ବୋଧହୁଏ ସମୀଚୀନ ନୁହେଁ । ବର୍ତ୍ତମାନ ଆମର ଯାହା ନିତାନ୍ତ ଦରକାର, ଯାହା ଆମେ ଏବେ ଅଭାବ ବୋଲି ଅନୁଭବ କରୁଛେଁ, ସେଥିର ସଂସ୍କୃତି ବିଷୟରେ ବ୍ରତୀ ହେବା ବୁଦ୍ଧିମାନର କାର୍ଯ୍ୟ । ସୁତରାଂ ବର୍ତ୍ତମାନ ପ୍ରଚଳିତ ଅକ୍ଷର ସଂଖ୍ୟାରେ ଯେତେ ଅଛି, ତେତିକି ରହୁ, ଚିନ୍ତା ନାହିଁ; କିନ୍ତୁ ସେଗୁଡ଼ିକର ଆକାର କିଞ୍ଚିତ୍ ପରିବର୍ତ୍ତିତ ହେବା ଆବଶ୍ୟକ ବୋଲି ଆମ୍ଭେମାନେ ଉପଲବ୍ଧି କରୁଁ । ଏହି ପରିବର୍ତ୍ତନର ଆବଶ୍ୟକତା କ'ଣ, ତାହା କେହି ପଚାରିପାରନ୍ତି । ସେଥିର ଉତ୍ତର ଦେବା ପୂର୍ବରୁ ବର୍ଣ୍ଣମାଳାର ମୂଳଭିତ୍ତି ଓ ଆବଶ୍ୟକତା ସମ୍ବନ୍ଧରେ ପଦେଅଧେ କହିବା ନିତାନ୍ତ ପ୍ରୟୋଜନୀୟ ।

ମନୁଷ୍ୟର ମାନସିକ ଭାବ ଅଭିବ୍ୟକ୍ତ କରିବା ନିମନ୍ତେ ଯେପରି ଭାଷାର ସୃଷ୍ଟି, ତଦ୍ରୂପ ଭାଷାକୁ ଲିପିବଦ୍ଧ କରି ରଖିବା ପାଇଁ ବର୍ଣ୍ଣମାଳାର ଉତ୍ପତ୍ତି । ବର୍ଣ୍ଣମାଳାର ପ୍ରାଥମିକ ଯୁଗରେ ଯେତେବେଳେ ମନୁଷ୍ୟ ଚିତ୍ରଲିପି ବ୍ୟବହାର କରୁଥିଲା, ତେତେବେଳେ ସେହି ପଦ୍ଧତି କେତେଗୁଡ଼ିଏ ବିଶିଷ୍ଟ ଭାଗରେ ବିଭକ୍ତ କରାଯାଇଥିଲା । ସେହି ଭାଗମାନଙ୍କୁ ପାଶ୍ଚାତ୍ୟ ଲିପିତତ୍ତ୍ୱବିତ୍‌ମାନେ ବସ୍ତୁଚିତ୍ର, ଭାବଚିତ୍ର, ଶବ୍ଦଚିତ୍ର, ଶବ୍ଦାଂଶଚିତ୍ର ଓ ବର୍ଣ୍ଣଚିତ୍ର ବୋଲି ନାମକରଣ କରିଅଛନ୍ତି । ଏହି ଚିତ୍ରଲିପି ଅନୁଯାୟୀ ସାମାନ୍ୟ ଭାବର ଅଭିବ୍ୟକ୍ତି ନିମନ୍ତେ ପ୍ରଚୁର ସାଙ୍କେତିକ ଚିହ୍ନ ବ୍ୟବହାର କରିବାକୁ ପଡୁଥିଲା । କ୍ରମେ ମନୁଷ୍ୟ ଜ୍ଞାନର ଉନ୍ମେଷ ସଙ୍ଗେ ତଥା ଲିଖନ ବିଦ୍ୟାର ପ୍ରସାର ସଙ୍ଗେ ସଙ୍ଗେ ସେହି ଚିତ୍ରଲିପିର

ଜଟିଳତା କ୍ରମେ ଅପସାରିତ ହୋଇ, ଭାଷାନ୍ତର୍ଗତ ସ୍ୱର ସାହାଯ୍ୟରେ କେତେଗୁଡ଼ିଏ ସୁନିର୍ଦ୍ଦିଷ୍ଟ ଚିହ୍ନରେ ତାହା ପରିଣତ ହେବାକୁ ଲାଗିଲା । ଏହି ଚିହ୍ନଗୁଡ଼ିକୁ ଆମ୍ଭେମାନେ ବର୍ଣ୍ଣମାଳା ବୋଲି କହୁଁ । ଚୀନ ଦେଶରେ ବର୍ତ୍ତମାନ ଯେଉଁ ଧରଣର ବର୍ଣ୍ଣମାଳା ବ୍ୟବହୃତ ହେଉଅଛି, ତାହା ଆୟତ୍ତ କରିବା ପାଇଁ ଜଣେ ଲୋକକୁ ପ୍ରାୟ ୩ବର୍ଷ ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିଥାଏ । କିନ୍ତୁ ଭାରତର ଯେକୌଣସି ବର୍ଣ୍ଣମାଳା ଶିକ୍ଷା କରିବାକୁ ହେଲେ, ୩ଦିନରୁ ବୋଧହୁଏ ବେଶି ଲାଗେ ନାହିଁ । ଚୀନଦେଶରେ ସେହି ଆଦିମ ଯୁଗର ଜଟିଳ ଚିତ୍ରାକ୍ଷର ପ୍ରଭାବ ଅଦ୍ୟାପି ପରିଲକ୍ଷିତ ହୁଏ । କିନ୍ତୁ ଭାରତବର୍ଷରେ ଆଜି ଆଉ ସେହି ଜଟିଳତା ନାହିଁ । କେବେ ମଧ୍ୟ ଯେ ସେପରି ଥିଲା, ତାହା ଅଦ୍ୟାପି ଜଣାଯାଇନାହିଁ । ଅଶୋକ ଯୁଗରେ ପ୍ରଚଳିତ ଲିପି ଭାରତବର୍ଷର ଆଦିମ ବର୍ଣ୍ଣମାଳାର ମାନଦଣ୍ଡ ରୂପେ ଆଜି ବିଦ୍ୟମାନ । ଏହି ଲିପି ଅତ୍ୟନ୍ତ ସହଜ ଓ ସରଳ ଥିଲା । ସେଥିରୁ କାଳକ୍ରମେ 'କୁଟିଳ ବ୍ରାହ୍ମୀ' ନାମକ ଅକ୍ଷର ଜାତ ହୋଇ ପ୍ରାଦେଶିକତା ଦୋଷରେ ଭିନ୍ନ ଭିନ୍ନ ଆକୃତି ଲାଭ କଲା । ଏହି ପ୍ରାଦେଶିକ ଲିପିମାନଙ୍କ ମଧ୍ୟରୁ ଉତ୍କଳୀୟ ବର୍ଣ୍ଣମାଳା ଗୋଟିଏ ପ୍ରଧାନ କହିଲେ ଚଳେ । ଅଶୋକ ଯୁଗର ସରଳ 'ବ୍ରାହ୍ମୀ' ଲିପି ଜ୍ୟାମିତିକ ଚିହ୍ନ ସଦୃଶ କେତେଗୁଡ଼ିଏ ସରଳ ଓ ବକ୍ରରେଖାରେ ପ୍ରତିପାଦିତ ହୁଏ । କ୍ରମେ ସେହି ଆଦିମ ବର୍ଣ୍ଣମାଳା ବିଭିନ୍ନ ଯୁଗରେ ଓ ବିଭିନ୍ନ ପ୍ରଦେଶରେ ଭିନ୍ନ ଭିନ୍ନ ଆକାରରେ ପ୍ରକଟିତ ହୋଇ ଆସିଅଛି । କିଏ କହିବ ଏହି ବର୍ଣ୍ଣମାଳାଗୁଡ଼ିକ ଦିନେ ପୁଣି ସେହି ମୂଳ ସ୍ଥାନକୁ ଫେରିଯିବ କି ନାହିଁ ? ଭାରତର ରାଜନୈତିକ ତଥା ସାମାଜିକ ଜୀବନର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସେହି ଆକ୍ଷରିକ ପରିବର୍ତ୍ତନ ସମ୍ଭବପର ନୁହେଁ ବୋଲି କିଏ କହିବ ? ଭାରତବର୍ଷର ଅନ୍ୟାନ୍ୟ ବର୍ଣ୍ଣମାଳା ପରି ଉତ୍କଳୀୟ ବର୍ଣ୍ଣମାଳା ମଧ୍ୟ ବିଭିନ୍ନ ଯୁଗରେ ଭିନ୍ନ ଭିନ୍ନ ରୂପରେ ପରିବର୍ତ୍ତିତ ହୋଇଥିଲା । ସେହି ପ୍ରାଚୀନ ସ୍ୱରଗୁଡ଼ିକ ଆଲୋଚନା କଲେ ସେଥିର ଗୋଟିଏ ବିଶାଳ ଇତିହାସ ଆମ୍ଭମାନଙ୍କ ଚକ୍ଷୁ ସମ୍ମୁଖରେ ଉନ୍ମୁକ୍ତ ହୋଇପଡ଼େ । ପ୍ରାୟ ୩ବର୍ଷ ପୂର୍ବେ ସେହି ଇତିହାସର ଯତ୍‌କିଞ୍ଚିତ୍ ପରିଚୟ ଦେଇ କେତେଗୁଡ଼ିଏ ପ୍ରବନ୍ଧ ଆମ୍ଭେ 'ସହକାର'ରେ ପ୍ରକାଶ କରିଥିଲୁ, ଏଠାରେ ସେହି ଦୀର୍ଘ ଇତିହାସର ପୁନରାବୃତ୍ତି କରିବାକୁ ସମୟ ନାହିଁ । ତେଣୁ ମନେରଖିବାକୁ ହେବ ଯେ, ଓଡ଼ିଶାର ବର୍ଣ୍ଣମାଳା ଗୋଟିଏ ଯୁଗରୁ ଆଉ ଗୋଟିଏ ଯୁଗକୁ ଭିନ୍ନ ଆକାର ଓ ସଂସ୍କୃତି ନେଇ ଗଢ଼ିହୋଇ ଆସିଥିଲେ ସୁଦ୍ଧା ଆଜିଯାଏ ସେ ତା'ର ମୌଳିକ ସତ୍ତା ହରାଇ ନାହିଁ । ଏବେସୁଦ୍ଧା ଓଡ଼ିଶାର 'ଏ' 'ଠ' ପ୍ରଭୃତି କେତେକ ଅକ୍ଷର ସଙ୍ଗେ ସେହି ଅଶୋକ ଲିପିର ଘନିଷ୍ଠ ସୌସାଦୃଶ୍ୟ ବିଦ୍ୟମାନ । ଏବେସୁଦ୍ଧା ସେହି ପ୍ରାଚୀନ ଲିଖନଗତ ସୌକର୍ଯ୍ୟ ଆମ୍ଭେମାନେ ବିସ୍ମୃତ ହୋଇନାହୁଁ । ସୁତରାଂ

ଆମ୍ଭମାନଙ୍କର ସେହି ଦୀର୍ଘ ଅଢ଼େଇ ହଜାର ବର୍ଷ ପୂର୍ବର ସଂସ୍କୃତି ଓ ପଦ୍ଧତିକୁ ଆମ୍ଭେମାନେ ପରିମାର୍ଜିତ କରିବାକୁ ଯାଇ ତଦୀୟ ଆକୃତିର ପ୍ରାଧାନ୍ୟ ଓ ମୌଳିକତା ଏକାବେଳେକେ ବର୍ଜନ କରିବା କେବଳ ଯେ ଧୃଷ୍ଟତା ହେବ, ତାହା ନୁହେଁ, ଆମ୍ଭମାନଙ୍କୁ ସେହି ଦୀର୍ଘ ସଂସ୍କୃତି ମଧ୍ୟ ଚିରକାଳ ପାଇଁ ହରାଇବାକୁ ପଡ଼ିବ । ସୁତରାଂ ଆମ୍ଭମାନଙ୍କ ବର୍ଣ୍ଣମାଳାର ଆକୃତି ଯଥାସାଧ୍ୟ ସେହି ମୂଳ ଆକୃତିର ଆଦର୍ଶ ସୌକର୍ଯ୍ୟ ରକ୍ଷାକରି ଗଠନ କରିବା ନିତାନ୍ତ ପ୍ରୟୋଜନୀୟ । ଇଦୃଶ ପରିବର୍ତ୍ତନ କିପରି ଓ କି ଆକାରରେ ହେବା ଉଚିତ ଏବଂ କେଉଁ କେଉଁ ଅକ୍ଷରର ପରିବର୍ତ୍ତନ ଆବଶ୍ୟକ, ସେଥି ସମ୍ବନ୍ଧରେ କ୍ରମେ ଆଲୋଚିତ ହେବ ।

କିନ୍ତୁ ତାର ପୂର୍ବରୁ ଅକ୍ଷର ଲିଖନର ନୀତି ସମ୍ବନ୍ଧରେ କେତେକ ପ୍ରାଚୀନ ଓ ଆଧୁନିକ ପଦ୍ଧତି ଉଲ୍ଲେଖ କଲେ ବୋଧହୁଏ ଆମ୍ଭର କଥାର ତାତ୍ପର୍ଯ୍ୟ ବୁଝି ହେବ । ପ୍ରାଚୀନ ଅଶୋକ ଯୁଗର ଲିପି ଭାରତର ବିଭିନ୍ନ ପ୍ରଦେଶରେ ପରିବର୍ତ୍ତିତ ହୋଇ ଅଦ୍ୟତନ ଯୁଗର ଶାରଦା ବା କାଶ୍ମିରୀ, ଟାକରୀ, ଗୁରୁମୁଖୀ ବା ପଞ୍ଜାବୀ, କୈଥୀ, ବଙ୍ଗଳା, ମୈଥିଳୀ, ଗୁଜରାଟୀ, ମୋଡି ବା ମହରାଷ୍ଟ୍ରୀ, ତୈଲଙ୍ଗ, କାନାଡ଼ି, ଗ୍ରନ୍ଥ, ଟାମିଲ୍ ପ୍ରଭୃତି ପ୍ରଧାନ ଭାଷାର ବର୍ଣ୍ଣମାଳାଗୁଡ଼ିକ ଯେପରି ସ୍ୱତନ୍ତ୍ର ଆକାରରେ ଗଠିତ ହୋଇଅଛି, ତଦ୍ରୂପ ଓଡ଼ିଆ ବର୍ଣ୍ଣମାଳା ମଧ୍ୟ ଗୋଟିଏ ସ୍ୱତନ୍ତ୍ର ପଦ୍ଧତି ନେଇ ସୃଷ୍ଟ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।ପ୍ରତି ଯୁଗରେ ବର୍ଣ୍ଣମାଳାକୁ ସରଳ, ସୁନ୍ଦର ଓ ସହଜ କରି ଗଠନ କରିବା ପାଇଁ ଲେଖକମାନେ ବରାବର ଯତ୍ନ କରିଥାନ୍ତି । ଓଡ଼ିଶାରେ ଅତି ପ୍ରାଚୀନ ଯୁଗରୁ ତାଳପତ୍ରରେ ଗ୍ରନ୍ଥମାନ ଲେଖା ଯାଉଥିଲା । ଏଣୁ ବର୍ତ୍ତମାନର ଓଡ଼ିଆ ଲିପି ସୁଗୋଲ, ବର୍ତ୍ତୁଳ ଓ କୋଣହୀନ ଭାବରେ ଗଠିତ ହୋଇଥିଲା ବୋଲି ନିର୍ଦ୍ଦେଶ କଲେ ବୋଧହୁଏ ଅସଙ୍ଗତ ହେବନାହିଁ । ତାଳପତ୍ରରେ ଲୌହ ଲେଖନୀ ସାହାଯ୍ୟରେ ଅକ୍ଷର ଲେଖିବା ପାଇଁ ବାମହସ୍ତର ବୃଦ୍ଧାଙ୍ଗୁଳି ଏବଂ ଦକ୍ଷିଣ ହସ୍ତର ସବୁ ଅଙ୍ଗୁଳିଗୁଡ଼ିକ ବ୍ୟବହାର କରିବାକୁ ପଡ଼ିଥାଏ । ବାମ ହସ୍ତର ବୃଦ୍ଧାଙ୍ଗୁଳିକୁ ସାଧାରଣତଃ ତୀକ୍ଷ୍ଣ ଲୌହ-ଲେଖନୀମୁନର ଚାଳକ ରୂପେ ବ୍ୟବହାର କରି ତାରି ସାହାଯ୍ୟରେ ଗୋଲାକାର ଅକ୍ଷର ଲେଖିବାକୁ ମୂଳରୁ ଲେଖକମାନେ ଅଭ୍ୟାସ କରିଥାନ୍ତି । ଉତ୍କଳୀୟ ଲେଖକମାନେ ତାଳପତ୍ରରେ ଗୁଡ଼ାଏ ସମଶୀର୍ଷ ଗୋଲାକାର ଚିହ୍ନ ଲେଖି ଓଡ଼ିଆ ଅକ୍ଷରର ଶୈଳୀ ଅଭ୍ୟାସ କରିବା ରୀତି ଆଜି ପର୍ଯ୍ୟନ୍ତ କେଉଁ କେଉଁ ଅଞ୍ଚଳରେ ପ୍ରବର୍ତ୍ତିତ ହୋଇଅଛି । ସ୍ଥୂଳରେ କହିବାକୁ ଗଲେ, ଓଡ଼ିଆ ଅକ୍ଷର ଆଜି ସୁଗୋଲ ଓ ସୁନ୍ଦର ହୋଇଥିବା ମୂଳରେ ସେହି

ପୋଥି-ଲେଖକମାନଙ୍କର ରୁଚି ମୁଖ୍ୟ ଭାବରେ ପ୍ରଭାବ ବିସ୍ତାର କରିଅଛି । ଯେଉଁ ସମୟରେ ତାଳପତ୍ର ପୋଥି ଲେଖିବା ନିମନ୍ତେ ବହୁ ଅର୍ଥ ଓ ସମୟ ବ୍ୟୟ କରିବାକୁ ପଡୁଥିଲା ଏବଂ ତାଳପତ୍ର ପୋଥିର ଆଦର ଓ ମୂଲ୍ୟ ଖୁବ୍‌ବେଶି ଥିଲା, ପୁଣି ଦେଶମଧ୍ୟରେ ଦଳେ ଲୋକ ବରାବର ପୋଥି ଲେଖି ଜୀବିକା ନିର୍ବାହ କରୁଥିଲେ, ତେତେବେଳେ ଶୀଘ୍ର ଓ ସରଳ ଭାବରେ ଅକ୍ଷର ଲେଖିବା ସେମାନଙ୍କର ଆଦୌ ଆବଶ୍ୟକ ନ ଥିଲା । ସେମାନେ ଅକ୍ଷରକୁ ଯଥାସାଧ୍ୟ ସୁନ୍ଦର ଓ ପାଣ୍ଡିତ୍ୟପୂର୍ଣ୍ଣ ଭାବରେ ଲେଖିବାକୁ ବେଶି ସୁଖ ପାଉଥିଲେ । ଫଳତଃ ଓଡ଼ିଆ ଅକ୍ଷର ହିନ୍ଦି, ତେଲୁଗୁ, ବଙ୍ଗଳା ବା ଅନ୍ୟାନ୍ୟ ଅକ୍ଷର ଅପେକ୍ଷା ଦେଖିବାକୁ ବେଶି ସୁନ୍ଦର ଏବଂ ଯୁକ୍ତାକ୍ଷର ବହୁଳ ହୋଇପଡ଼ିଛି । ଖ୍ରୀଷ୍ଟୀୟ ୧୫ଶ ଶତାବ୍ଦୀରେ ଲିଖିତ 'ମହାର୍ଣ୍ଣବ' ନାମକ ଗୋଟିଏ ପୋଥିରେ ଏପରି ପାଣ୍ଡିତ୍ୟପୂର୍ଣ୍ଣ ଯୁକ୍ତାକ୍ଷରମାନ ବହୁଳ ଭାବରେ ବ୍ୟବହୃତ ହୋଇଥିବାର ଆମ୍ଭେମାନେ ଦେଖିଅଛୁ । ତାଳପତ୍ର ଛିନ୍ନ ହେବା ଭୟରେ ସମ୍ଭବତଃ ଉତ୍କଳୀୟ ଲେଖକମାନେ ଓଡ଼ିଆ ବର୍ଣ୍ଣମାଳାରେ ଯଥାସାଧ୍ୟ କୋଣ ବା ରେଖାବହୁଳ ଅକ୍ଷର ଏକାବେଳକେ ବର୍ଜନ କରି ସେଗୁଡ଼ିକ ବର୍ତ୍ତୁଳ କରିବାକୁ ପ୍ରୟାସ କରିଥିଲେ । ଏହାହିଁ ମଧ୍ୟ ଯୁଗରେ ଉତ୍କଳୀୟ ବର୍ଣ୍ଣମାଳାର ପ୍ରଧାନ ସଂସ୍କାର ବୋଲି ଆମ୍ଭେମାନେ ମନେକରୁ ।

ଅଶୋକ ଲିପି ସଙ୍ଗେ ଆଧୁନିକ ପ୍ରଚଳିତ ଓଡ଼ିଆ ଲିପିକୁ ତୁଳନା କରି ପରୀକ୍ଷା କଲେ ଆମ୍ଭେମାନେ ସ୍ପଷ୍ଟ ଦେଖିପାରୁଅଛୁ ଯେ, ମୂଳ ଆକ୍ଷରିକ ସଙ୍କେତ ଯଥାସାଧ୍ୟ କ୍ଷୁଣ୍ଣ ନ କରି ବର୍ଣ୍ଣମାଳାର ପ୍ରତ୍ୟେକ ଅକ୍ଷରକୁ ପରସ୍ପରର ଆକୃତି ସଙ୍ଗେ ସାମ୍ୟରକ୍ଷା କରିବା ନିମନ୍ତେ ପ୍ରାଚୀନ ଲେଖକମାନେ ଚେଷ୍ଟା କରୁଥିଲେ । ତା' ଫଳରେ ହିନ୍ଦୀ ଓ ବଙ୍ଗଳା ବର୍ଣ୍ଣମାଳାର ଶୀର୍ଷ ଦେଶରେ ଗୋଟିଏ ସରଳ ରେଖା ଦେଖିବାକୁ ମିଳେ ଏବଂ ଓଡ଼ିଆ ବର୍ଣ୍ଣମାଳାର ଶୀର୍ଷ ଦେଶରେ ଗୋଟିଏ ବୃତ୍ତ ଦେଖାଯାଏ ।

ଆଜି ଓଡ଼ିଶାରେ ତାଳପତ୍ର ସ୍ଥଳରେ ସୁନ୍ଦର ବିଲାତି କାଗଜ ବ୍ୟବହୃତ ହେଉଅଛି; ଆଉ ଲୌହ ଲେଖନୀ ପରିବର୍ତ୍ତରେ ସୁନ୍ଦର କଲମ ଓ ଝରକଲମ ଲୋକେ ବ୍ୟବହାର କରୁଅଛନ୍ତି । ତଥାପି ସେହି ତାଳପତ୍ର ଓ ଲୌହ ଲେଖନୀରେ ବ୍ୟବହୃତ ବର୍ଣ୍ଣମାଳାର ଆକୃତି ଅପରିବର୍ତ୍ତିତ ଭାବରେ ବରାବର ସେହି ପ୍ରାଚୀନ ସଂସ୍କୃତି ନେଇ ଛାପାଖାନାମାନଙ୍କରେ ଦୃଢ଼ ଆସନ ମାଡ଼ିବସିଛି । ମସୃଣ କାଗଜ ଓ ଶୀଘ୍ର ଗତିଶୀଳ ପର କଲମରେ ଚିତ୍ର ଆଙ୍କିଲା ପରି ସୁନ୍ଦର ଗୋଲ ଗୋଲ ଅକ୍ଷର ଲେଖିବାକୁ ଯିବା ବିଡ଼ମ୍ବନା ମାତ୍ର । ଓଡ଼ିଶାରେ ଶତକଡ଼ା ନବେ ଜଣ ଲେଖକ ସେହି ବର୍ତ୍ତୁଳ ଅକ୍ଷର ମୋଡ଼ି

ଭାଙ୍ଗି କିମ୍ଭୂତକିମାକାର କରି ପକାଇ ଥିବାର ଦେଖାଯାଏ । ବାସ୍ତବରେ ପ୍ରାଚୀନ ପଦ୍ଧତି ଅନୁଯାୟୀ ମୁକ୍ତାଫଳତୁଲ୍ୟ ସୁନ୍ଦର ସୁନ୍ଦର ଅକ୍ଷର ଲେଖିବା ଗୋଟିଏ ବାହାଦୁରି ହେଲେ ସୁଦ୍ଧା ଚିତ୍ତବିନୋଦନ ବେଳେ କିମ୍ବା ଛାତ୍ରମାନେ କପି ଲେଖିଲାବେଳେ ଏପରି ବର୍ତ୍ତୁଳ ଅକ୍ଷର ଲେଖା ହୋଇଥାଏ ମାତ୍ର । ସ୍ଥୂଳରେ କହିବାକୁ ଗଲେ, ତାହା ସୌଖୀନ ବର୍ଣ୍ଣମାଳାରେ ପରିଣତ ହୋଇଅଛି ଏବଂ ବର୍ତ୍ତମାନ ଓଡ଼ିଶାରେ ପ୍ରଚଳିତ ଲିଖିତାକ୍ଷରର ସେହି ପ୍ରାଚୀନ ଶୈଳୀ ବିକୃତ ଆକାର ଧାରଣ କରିଅଛି । ଈଦୃଶ ଆକ୍ଷରିକ ପରିବର୍ତ୍ତନ ବେଳେ ସମ୍ଭବତଃ ପ୍ରାକୃତିକ ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଧରଣର ଲିପି ମଧ୍ୟ ପ୍ରବର୍ତ୍ତିତ ହୋଇଅଛି । ଓଡ଼ିଶାରେ 'କରଣୀ-ଅକ୍ଷର' ନାମକ ଯେଉଁ ଲିପି ବିଦ୍ୟମାନ, ତା'ର ମୂଳରେ ଲିଖନଗତ ଶୀଘ୍ରତା ଓ ସୌକର୍ଯ୍ୟ ପ୍ରଧାନ କାରଣ ବୋଲି ନିର୍ଣ୍ଣୀତ ହୋଇପାରେ । ପ୍ରତ୍ୟେକ ଶବ୍ଦ ଲେଖିଲାବେଳେ ଗୋଟିଏ ଅକ୍ଷର ସଙ୍ଗେ ପାର୍ଶ୍ୱସ୍ଥ ଅକ୍ଷରକୁ ମିଶାଇ ଲେଖିବା ଅପେକ୍ଷାକୃତ ସୁବିଧାଜନକ ବୋଧହୁଏ । ବାସ୍ତବରେ ପ୍ରତି ଅକ୍ଷରକୁ ପରସ୍ପରରୁ ବିଚ୍ଛିନ୍ନ କରି କାଗଜ ପୃଷ୍ଠାରୁ ବାରମ୍ବାର କଲମ ମୁନ ଉପରକୁ ଉଠାଇ ଲେଖିବା କଷ୍ଟସାଧ ଓ ସମୟର ଅଯଥା ଅପବ୍ୟୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଣୁ ଓଡ଼ିଶାରେ ଯେତେବେଳେ ଧୀରେ ଧୀରେ କାଗଜ ବ୍ୟବହୃତ ହେବାକୁ ଲାଗିଲା, ତେତେବେଳେ ଓଡ଼ିଶାର ଲେଖକ ସମ୍ପ୍ରଦାୟ ସେହି ପ୍ରାଚୀନ ଆକ୍ଷରିକ ଚିହ୍ନ ପରିବର୍ତ୍ତନ କରିବାକୁ ଲାଗିଲେ । ଏହି ପରିବର୍ତ୍ତନ ପ୍ରକ୍ରିୟା କ୍ରମେ ଲେଖକମାନଙ୍କ ପ୍ରଚେଷ୍ଟାରେ କ୍ଷିପ୍ରଭାବରେ ସଂସାଧିତ ହୋଇ ଲେଖାର ସରଳତାପାଇଁ ଗୋଟିଏ ସ୍ୱତନ୍ତ୍ର ଲିପିର ସୃଷ୍ଟି ହୋଇଥିଲା । ସେହି ଲିପିକୁ ଆଜି ଆମ୍ଭେମାନେ 'କରଣୀ ଅକ୍ଷର' ବୋଲି କହୁଁ । ଏହା ଯେ ବରାବର ସେହି ପ୍ରାଚୀନ ଉତ୍କଳୀୟ ବର୍ଣ୍ଣମାଳାର ଆକୃତିକୁ ଆଧାର କରି ଗଠିତ ହୋଇଅଛି, ଏକଥା ଆମ୍ଭେମାନେ କହି ନ ପାରୁ । କାରଣ ଏହି ଲିପିର କେତେକ ଅକ୍ଷର ସଙ୍ଗେ ଅଶୋକ ଯୁଗରୁ ପ୍ରଚଳିତ ବର୍ଣ୍ଣମାଳାର କୌଣସି ଶ୍ରେଣୀୟ ଅକ୍ଷରର ଆକୃତି ସମାନ ନୁହେଁ । ଏଣୁ କରଣୀ ଅକ୍ଷରର କେତେକ ବର୍ଣ୍ଣ ନିତାନ୍ତ କଳ୍ପନାମୂଳକ ହୋଇ ପଡ଼ିଛି । ଅତଏବ ଓଡ଼ିଆ ଭାଷାରେ ଲେଖା-ଅକ୍ଷରର ପରିବର୍ତ୍ତନ କରିବାକୁ ଗଲାବେଳେ ଯଥାସାଧ ସେହି ପ୍ରାଚୀନ ଆକ୍ଷରିକ ଚିହ୍ନକୁ ଆଦର୍ଶ କରି କେତେକ ଅକ୍ଷରର ସ୍ୱରୂପ ନିର୍ଣ୍ଣୟ କରିବା ଆବଶ୍ୟକ ।

ଏଠାରେ ପ୍ରଶ୍ନ ଉଠିପାରେ – ବର୍ତ୍ତମାନ ଲିପିସଂସ୍କାର ହେଲେ ଆମ୍ଭର କି ଉପକାର ସଂସାଧିତ ହେବ ? ଯଦି ବାସ୍ତବରେ ଆଧୁନିକ ଲିପିର ଆକୃତି ପରିବର୍ତ୍ତନ କରିବାକୁ

ହୁଏ, ତାହେଲେ ପ୍ରେସ୍‌ମାନଙ୍କରୁ ଆଧୁନିକ ପ୍ରଚଳିତ ଅକ୍ଷର ହଠାତ୍ ବଦଳାଇବାକୁ ପଡ଼ିବ କି ନାହିଁ ? ଉପର୍ଯ୍ୟୁକ୍ତ ପ୍ରଥମ ପ୍ରଶ୍ନର ଉତ୍ତର ବିଷୟରେ କେତେକ କଥା ଉପରେ ଆଲୋଚିତ ହୋଇଅଛି । ସ୍ଥୂଳରେ କହିବାକୁ ଗଲେ ବର୍ତ୍ତମାନ ପ୍ରଚଳିତ ଓଡ଼ିଆ ଲିପି ଆଧୁନିକ ଯୁଗରେ ପ୍ରବର୍ତ୍ତିତ ଲିଖନୋପାଦାନ ପାଇଁ ଆଦୌ ଉଦ୍ଦିଷ୍ଟ ନୁହେଁ । ଯୁଗକୁ ଚାହିଁ ସଂସ୍କୃତିର ଆବଶ୍ୟକତା କେହି ଅସ୍ୱୀକାର କରିପାରିବେ ନାହିଁ । ସୁତରାଂ ଓଡ଼ିଆ ବର୍ଣ୍ଣମାଳାର ଆକୃତି ଯୁଗୋପଯୋଗୀ ରୂପେ ବଦଳାଇବା ନିତାନ୍ତ ଆବଶ୍ୟକ । ପ୍ରଥମ ପ୍ରଶ୍ନର ଉତ୍ତର ଯଦି ମନୋନୀତ ହୁଏ, ତା'ହେଲେ ଦ୍ୱିତୀୟ ପ୍ରଶ୍ନଟି ନିତାନ୍ତ ଗୌଣ ବୋଲି ଉପଲବ୍ଧ ହେବ । ବର୍ତ୍ତମାନ ଛାପାଖାନାମାନଙ୍କରୁ ପ୍ରଚଳିତ ଅକ୍ଷର ଏକାବେଳକେ ଉଠାଇ ଦେବାର ଆବଶ୍ୟକତା ନାହିଁ । କିନ୍ତୁ ଧୀରେ ଧୀରେ ପ୍ରତି ଓଡ଼ିଆ ପ୍ରେସ୍‌ରେ ସେହି ନୂତନ ଅକ୍ଷର ପ୍ରଚଳିତ କରିବାକୁ ପଡ଼ିବ । ଏଥିରେ ଅବଶ୍ୟ ପାଠକମାନେ ପ୍ରଥମେ ଅନଭ୍ୟସ୍ତତା ନିବନ୍ଧନ ବିରକ୍ତି ବୋଧକରି ପାରନ୍ତି; କିନ୍ତୁ ଯେତେବେଳେ ସେହି ପରିବର୍ତ୍ତିତ ଲିପି ଓଡ଼ିଶାରେ ପରିଚିତ ହେବ, ତେତେବେଳେ ସୁବିଧା ଦେଖି ପ୍ରେସ୍‌ମାନଙ୍କରୁ ଆଧୁନିକ ପ୍ରଚଳିତ ଲିପି କ୍ରମେ ଉଠାଇ ଦିଆଯାଇପାରେ କିମ୍ବା ଏହି ଲିପି ସଙ୍ଗେ ସଙ୍ଗେ କାଳକ୍ରମେ ଏପରି ମଧ୍ୟ ହୋଇପାରେ ଯେ, ଛାପାଅକ୍ଷର ଓ ଲେଖାଅକ୍ଷର ଦିଓଟି ସ୍ୱତନ୍ତ୍ର ବର୍ଣ୍ଣମାଳାରେ ପରିଗଣିତ ହେବ । ତାହାହେଲେ ଆମର ସ୍କୁଲ ପିଲାମାନେ କିମ୍ବା ଆଉ କେହି ଓଡ଼ିଆ ଅକ୍ଷର ଶିକ୍ଷା କରିବାକୁ କଷ୍ଟବୋଧ କରିବେ ବୋଲି କଳ୍ପନା କରିବା ମଧ୍ୟ ଯୁକ୍ତିଯୁକ୍ତ ନୁହେଁ । ଇଂରାଜୀ ଭାଷାରେ ଏପରି ପଦ୍ଧତି ପ୍ରବର୍ତ୍ତିତ ହୋଇଥିଲେ ସୁଦ୍ଧା କେହି ତାକୁ ଅନାବଶ୍ୟକ ବୋଲି ପରିତ୍ୟାଗ କରି ନାହାନ୍ତି । ଇଂରାଜୀ ଭାଷା ବ୍ୟତୀତ ଭାରତବର୍ଷର କେତେକ ପ୍ରଧାନ ଭାଷାରେ ସୁଦ୍ଧା ଏପରି ଦିଓଟି ପ୍ରକାର ଲିପି ପ୍ରଚଳିତ ହେଉଥିବାର ଦେଖାଯାଏ । ଏଥିର ମୂଳରେ ଲିଖନଗତ ସୌକର୍ଯ୍ୟ ପ୍ରଧାନ କାରଣ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଅତଏବ ଓଡ଼ିଆ ବର୍ଣ୍ଣମାଳାରେ ଦିଓଟି ଲିପିର ପ୍ରଚଳନ କାହିଁକି ଦୋଷାବହ ହେବ ? ଦୈନିକ ଖବରକାଗଜମାନଙ୍କ ସାହାଯ୍ୟରେ ଏବଂ ଏଲିମେଣ୍ଟରି ସ୍କୁଲମାନଙ୍କରେ ପ୍ରବର୍ତ୍ତିତ ବର୍ଣ୍ଣମାଳାରେ ଏହି ପରିବର୍ତ୍ତିତ ଲିପି ପ୍ରଚଳିତ ହେଲେ ଅତି ଅଳ୍ପ କାଳ ମଧ୍ୟରେ ଲୋକେ ତାହା ବ୍ୟବହାର କରିବାକୁ ସୁବିଧା ବୋଧ କରିବେ ।

ଓଡ଼ିଶାରେ ପ୍ରଚଳିତ ବର୍ଣ୍ଣମାଳାକୁ କିପରି ଭାବରେ ପରିବର୍ତ୍ତିତ କରିବା ଆବଶ୍ୟକ, ତାହା ଗବେଷଣା କରିବା ଜଣେ ଦୁଇଜଣର କାର୍ଯ୍ୟ ନୁହେଁ । ସଂଘବଦ୍ଧ

ଭାବରେ କେତେଜଣ ମନସ୍ୱୀ ବ୍ୟକ୍ତି ଏହି କାର୍ଯ୍ୟରେ ଅଗ୍ରସର ହେଲେ ଓଡ଼ିଶାରେ ଲିପିସଂସ୍କାରମୂଳକ କାର୍ଯ୍ୟଟି ସୁନିୟନ୍ତ୍ରିତ ହୋଇପାରନ୍ତା । ଏଣୁ ସାହିତ୍ୟ-ସମାଜ କିମ୍ବା ଅନ୍ୟକୌଣସି ସାହିତ୍ୟିକ ଅନୁଷ୍ଠାନ ପକ୍ଷରୁ ପ୍ରଥମେ ଗୋଟିଏ ସବ୍‌କମିଟି ଗଠିତ ହୋଇ ସଂସ୍କାର ଭାର ସେହି କମିଟି ଉପରେ ନ୍ୟସ୍ତ କରାଗଲେ ସୁବିଧାରେ ଏହି ମହତ୍ କାର୍ଯ୍ୟ ସମ୍ପାଦିତ ହେବ ବୋଲି ଆଶା ହୁଏ । ଓଡ଼ିଶା ଅଚିର ଭବିଷ୍ୟତରେ ଗୋଟିଏ ନୂତନ ପ୍ରଦେଶରେ ପରିଣତ ହେବ । ଆଉ ବର୍ଷେ ଖଣ୍ଡେ ମଧ୍ୟରେ ବୋଧହୁଏ ସେ ନୂତନ କଳେବର ନେଇ ଭାରତର ସମ୍ମିଳିତ ରାଷ୍ଟ୍ରତନ୍ତ୍ରରେ ଯୋଗ ଦେଇଥିବ । ଓଡ଼ିଶା ପକ୍ଷରେ ଏହାଠାରୁ ବଳି ମାହେନ୍ଦ୍ର ଯୋଗ କେତେ ଶତାବ୍ଦୀ ଧରି ହୋଇ ନ ଥିଲା । ଏତିକିବେଳେ ଉତ୍କଳୀୟ ବର୍ଣ୍ଣମାଳାକୁ ବିଜ୍ଞାନସମ୍ମତ ଭାବରେ ତଦୀୟ ପ୍ରାଚୀନ ସଂସ୍କୃତି, ସୌକର୍ଯ୍ୟ ଓ ସୌନ୍ଦର୍ଯ୍ୟ ରକ୍ଷାକରି ଗଠିତ କରିବାର ସମୟ ଆସିଛି ବୋଲି କୁହାଯାଇ ପାରେ । ଓଡ଼ିଆ ବର୍ଣ୍ଣମାଳାର ଆକୃତିଗତ ସଂସ୍କାର ବିଷୟରେ ଗଭୀର ଭାବରେ ଗବେଷଣା କରି ଶୀଘ୍ର ଗୋଟିଏ ପଦ୍ଧତି ଓ ପ୍ରଣାଳୀ ପ୍ରକଟିତ କରିବା ଆବଶ୍ୟକ । ଉତ୍କଳ-ସାହିତ୍ୟ ସମାଜର ଆଗାମୀ ବାର୍ଷିକ ଅଧିବେଶନରେ ସେହି ସଂସ୍କୃତ ଲିପି ପ୍ରଥମେ ଗୃହୀତ ହୋଇ ଓଡ଼ିଶାରେ ସେଥିରେ ପ୍ରବର୍ତ୍ତନ ପାଇଁ ଯତ୍ନ କରିବା ଭାର ସେହି ଅନୁଷ୍ଠାନ ଉପରେ ନ୍ୟସ୍ତ ହେଲେ ବୋଧହୁଏ ଏହି ଗୁରୁତର କାର୍ଯ୍ୟଟି ସୁସମ୍ପାଦିତ ହୋଇପାରିବ ।

ଓଡ଼ିଆ ବର୍ଣ୍ଣମାଳାର ଆକୃତି କିପରି ଭାବରେ ପରିବର୍ତ୍ତନ କରିବାକୁ ହେବ, ତାହା ଅଦ୍ୟାପି ଗୋଟିଏ ଜଟିଳ ସମସ୍ୟାରୂପେ ବିଦ୍ୟମାନ; ସୁତରାଂ ଏହି କ୍ଷୁଦ୍ର ପ୍ରବନ୍ଧରେ ସେ ସମସ୍ତ ବିଚାର କରିବା ଅସମ୍ଭବ । ବର୍ଣ୍ଣମାଳାର ଇତିହାସରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଓଡ଼ିଆ ଭାଷାରେ ପ୍ରଚଳିତ ପ୍ରାୟ ପ୍ରତ୍ୟେକ ଅକ୍ଷର ତଦୀୟ ମୌଳିକ ଚିହ୍ନ ସହ କେତେକ ଉପଚିହ୍ନର ସମ୍ମିଶ୍ରଣରେ ବର୍ତ୍ତମାନ ଆକାର ଧାରଣ କରିଅଛି । ଅତଏବ ପ୍ରତ୍ୟେକ ଉତ୍କଳୀୟ ଅକ୍ଷରକୁ ଆମ୍ଭେମାନେ ଦିଓଟି ବିଶିଷ୍ଟ ଭାଗରେ ବିଭକ୍ତ କରିପାରୁ; ଯଥା- (୧) ମୁଖ୍ୟ ଓ ମୌଳିକ ଚିହ୍ନ ଏବଂ (୨) ଗୌଣ ଓ ବ୍ୟାବହାରିକ ଚିହ୍ନ । ପ୍ରଥମୋକ୍ତ ଚିହ୍ନଟି ଏକ ସମୟରେ ସମଗ୍ର ଭାରତବର୍ଷରେ ପ୍ରଚଳିତ ହେଉଥିଲା ଏବଂ ଦ୍ୱିତୀୟୋକ୍ତ ଚିହ୍ନ କ୍ରମେ ସେଥିରେ ସଂଯୁକ୍ତ ହୋଇ ପ୍ରାଦେଶିକ ଲିପିଗୁଡ଼ିକ ପରସ୍ପରଠାରୁ ପୃଥକ୍ ହେବାକୁ ଲାଗିଲା । ଉଦାହରଣ ସ୍ୱରୂପ ବର୍ଣ୍ଣମାଳାର ପ୍ରଥମ ଅକ୍ଷରଟି ଧରାଯାଉ । ଅଶୋକ ଲିପିରେ ଏହି ଅକ୍ଷରଟି ଦେଖିବାକୁ ଇଂରାଜୀ ଲିପିର ଓଲଟା ଅକ୍ଷର ପରି ଥିଲା । ତାହା କ୍ରମେ ଯୁଗର ପରିବର୍ତ୍ତନ ସଙ୍ଗେ ସଙ୍ଗେ ପ୍ରାଦେଶିକ ଲେଖକମାନଙ୍କ ହସ୍ତରେ ପଡ଼ି ଭିନ୍ନ ଭିନ୍ନ ରୂପ ଧାରଣ କରିଅଛି ।

ସୁତରାଂ ମୌଳିକ ଚିହ୍ନଟି ବରାବର ରକ୍ଷାକରି ଆମ୍ଭମାନଙ୍କର ଅକ୍ଷରଗୁଡ଼ିକ ଯେ ଗଠିତ ହୋଇଅଛି, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ବର୍ତ୍ତମାନ ମନେ କରାଯାଉ ବର୍ଣ୍ଣମାଳାର ଏହି ଆଦ୍ୟ ଅକ୍ଷରଟି ପ୍ରସ୍ତାବିତ ଲିପିସଂସ୍କାର ଅନୁଯାୟୀ ଆମ୍ଭେମାନେ ଯଦି ତାକୁ ସେହି କୁଟିଳ ଲିପିର ୩ୟ ସ୍ତରକୁ ପୁଣି ଉନ୍ନୀତ କରୁ ଏବଂ ସେଥିରେ ଯଦି ଶୀଘ୍ର ଓ ସହଜରେ ତାହା ଲେଖିବାର ସୁବିଧା ବୋଧହୁଏ, ତାହେଲେ ସେପରି ପରିବର୍ତ୍ତନକୁ ଗ୍ରହଣ କରିବା ପାଇଁ କେହି ହେଲେ ଅସ୍ୱୀକୃତ ହେବେନାହିଁ । ପ୍ରଚଳିତ ଓଡ଼ିଆ ବର୍ଣ୍ଣମାଳାର ପ୍ରତ୍ୟେକ ଅକ୍ଷର ଏପରି ଭାବରେ ବିଶ୍ଳେଷଣ କଲେ ଏହି ସଂସ୍କାର କାର୍ଯ୍ୟ ସୁଗମ ହୋଇ ପଡ଼ିବ ବୋଲି ଆଶା ହୁଏ । ଇ, କ, ଗ, ଘ ପ୍ରଭୃତି ଅକ୍ଷରର କ୍ରମିକ ବିକାଶକୁ ଆଧାର କରି ମଧ ଏହି ସଂସ୍କାର କାର୍ଯ୍ୟ ସୁନିୟନ୍ତ୍ରିତ କରାଯାଇ ପାରିବ । 'ଇ' ଅକ୍ଷରଟି ପ୍ରଥମେ ତିନୋଟି ଗୋଲ ବା ରେଖାରେ ଚିହ୍ନିତ ହେଉଥିବ । ସେହି ଗୋଲ ଓ ରେଖାମାନଙ୍କୁ ଏକତ୍ର କରି ବର୍ତ୍ତମାନ ଓଡ଼ିଆ ବର୍ଣ୍ଣମାଳାର 'ଇ' ଅକ୍ଷରଟି ସୁଗଠିତ ହୋଇଅଛି । ଉତ୍କଳୀୟ ଲିପି ଦିଓଟି ବିଶିଷ୍ଟ ଭାଗରେ ବିଭକ୍ତ ହୋଇଥିବା କଥା ପ୍ରଥମେ ଆମ୍ଭେମାନେ କହିଅଛୁ । ତାକୁ ଆମ୍ଭେମାନେ 'ମୁଖ୍ୟ' ଓ 'ଗୌଣ' ବୋଲି ମଧ ନିର୍ଦ୍ଦେଶ କରିଅଛୁ । ଉ, ଘ, ତ ପ୍ରଭୃତି ଅକ୍ଷରର ଐତିହାସିକ ସ୍ତରମାନଙ୍କରୁ ଏହା ସ୍ପଷ୍ଟ ପ୍ରତିପାଦିତ ହୁଏ । ଏହି ଅକ୍ଷରମାନଙ୍କରେ ଯେଉଁ ପୁଡ଼ା ଦିଆଯାଏ, ତାହା ସେହି ଦିଓଟି ଭାଗକୁ ନିର୍ଦ୍ଦେଶ କରୁଥିବାର ସ୍ପଷ୍ଟ ବୋଧହୁଏ । ପରବର୍ତ୍ତୀ ଯୁଗରେ 'ଉ' ଅକ୍ଷରଟି ମୌଳିକ ଚିହ୍ନ ଉପରେ ଗୋଟିଏ ଗୌଣଚିହ୍ନ ସଂଯୁକ୍ତ ହୋଇ ତାହା ବର୍ତ୍ତମାନ ଆକାରରେ ପରିଣତ ହୋଇଅଛି । ଏହିପରି 'ଘ' ଓ 'ତ' ଅକ୍ଷର ମଧ ମୁଖ୍ୟ ଓ ଗୌଣ ଚିହ୍ନ ନେଇ ଗଠିତ ।

ପ୍ରକୃତରେ ଦେଖିବାକୁ ଗଲେ ଆକ୍ଷରିକ ସୌନ୍ଦର୍ଯ୍ୟ ଓ ସାମ୍ୟ-ଶୈଳୀ ରକ୍ଷା ନିମନ୍ତେ ଯେଉଁ ଅନାବଶ୍ୟକ ବୃତ୍ତ ଓ ଲାଙ୍ଗୁଳ ବିଶିଷ୍ଟ ଚିହ୍ନ ଓଡ଼ିଆ ବର୍ଣ୍ଣମାଳାରେ ବ୍ୟବହୃତ ହୋଇଅଛି, ତାହା ବର୍ଜନ କଲେ ଆମ୍ଭମାନଙ୍କର ବର୍ଣ୍ଣମାଳାକୁ ପୁଣି ସେହି କୁଟିଳାକ୍ଷର ଯୁଗକୁ ଫେରିଯିବାକୁ ପଡ଼ିବ ଏବଂ ସଙ୍ଗେ ସଙ୍ଗେ ଆମ୍ଭମାନଙ୍କ ଭାଷାରେ ଲିଖନ-ସୌକର୍ଯ୍ୟ ବର୍ଦ୍ଧିତ ହେବ । ବର୍ତ୍ତମାନ ଆମ୍ଭେମାନେ ଯେଉଁ ଲିପି ସାହାଯ୍ୟରେ ବେଶି ପରିଶ୍ରମ ଓ ବହୁ ସମୟ ବ୍ୟୟ କରି ସୁଦ୍ଧା ତାକୁ ମୁକ୍ତାଫଳନିନ୍ଦୀ ସୁନ୍ଦର ବର୍ତ୍ତୁଳାକାରରେ ଲେଖିବାକୁ ଅପାରଗ ହେଉ, ଲିପିସଂସ୍କାର ପରେ ଆମ୍ଭେମାନେ ଅକ୍ଷରର ସୌନ୍ଦର୍ଯ୍ୟ ବୃଦ୍ଧି କରିବାକୁ ଅପାରଗ ହେଲେ ସୁଦ୍ଧା ସେଥିରେ ସୌକର୍ଯ୍ୟ ବୃଦ୍ଧି କରିପାରିବୁ

ବୋଲି ଆଶା ହୁଏ । ସୁତରାଂ ଏହି ସଂସ୍କାର କାର୍ଯ୍ୟରେ ସାହିତ୍ୟ-ସମାଜ ପ୍ରଥମେ ଅଗ୍ରସର ହେବା ବାଞ୍ଛନୀୟ ।

ପରିଶେଷରେ ଆମ୍ଭମାନଙ୍କର ବକ୍ତବ୍ୟ ଏହି ଯେ, ଆମେ ଦେଶରେ କୌଣସି ସଂସ୍କାରର ନାମ ଶୁଣିଲେ କେତେଲୋକ ମୁହଁ ମୋଡ଼ି ବସନ୍ତି, ଆଉ କେତେ ମଧ ସେଥିରେ ପତଙ୍ଗ ପରି ଡେଇଁପଡ଼ନ୍ତି । ଓଡ଼ିଆ ବର୍ଣ୍ଣ ମାଳାର ଆକୃତି ପରିବର୍ତ୍ତନ କରିବାକୁ ହେଲେ, ପ୍ରେସ୍‌ବାଲାମାନେ ସର୍ବପ୍ରଥମେ ଆପତ୍ତି ଉଠାଇବାର ଆଶଙ୍କା ହୁଏ । କିନ୍ତୁ ସମସ୍ତଙ୍କର ମନେରଖିବା ଉଚିତ ଯେ, ଆମ ବର୍ଣ୍ଣମାଳାର ସଂସ୍କାର ସଙ୍ଗେ ଯଦି ଆମ ଭାଷାର ଲିପିସୌଷ୍ଠବ ବର୍ଦ୍ଧିତ ହୁଏ, ତା ହେଲେ ସେପରି ସଂସ୍କାର ହେବା ବାଞ୍ଛନୀୟ ନୁହେଁ କି ଏବଂ ସେପରି ସଂସ୍କାର ନିମନ୍ତେ କ୍ଷୁଦ୍ର ବ୍ୟକ୍ତିଗତ ସ୍ୱାର୍ଥକୁ ବଳିଦେଇ ସେହି କାର୍ଯ୍ୟରେ ସହଯୋଗ କରିବା ପ୍ରତ୍ୟେକ ଦେଶ-ହିତୈଷୀର କର୍ତ୍ତବ୍ୟ ନୁହେଁ କି ? ସୁତରାଂ ପରିଶେଷରେ ଆମ୍ଭମାନଙ୍କର ସବିଶେଷ ନିବେଦନ ଏହି ଯେ, ଶୀଘ୍ର ଓଡ଼ିଶାର ମନସ୍ୱୀମାନେ ଏହି ବିଷୟରେ ଚିନ୍ତାକରି ଗୋଟିଏ କାର୍ଯ୍ୟକାରୀ ପନ୍ଥା ଗ୍ରହଣପୂର୍ବକ ଓଡ଼ିଶାର ଏହି ନବଲିପି ସଂସ୍କାରମୂଳକ ଆନ୍ଦୋଳନକୁ ଯଶସ୍ୱୀ କରନ୍ତୁ ।

ହସ୍ତଲିଖିତ କରଣୀ ଅକ୍ଷର



# ଭୁବନେଶ୍ୱରର ଓଡ଼ିଆ ତାମିଲ ଶିଳାଲିପି

## ପରମାନନ୍ଦ ଆଚାର୍ଯ୍ୟ

ଭୁବନେଶ୍ୱରର କେଦାରଗୌରୀ ନିକଟବର୍ତ୍ତୀ ଏକ ସ୍ଥାନ ପତିତ ଅବସ୍ଥାରେ ଥିବା ସମୟରେ କଲିକତା ନିବାସୀ ଗଣପତି ସରକାର ତାହା ପଟା ନେଇଥିଲେ ଓ ସେଠାରେ ଘର କରିବା ସମୟରେ ଖଣ୍ଡିଏ ଗଣେଶ ମୂର୍ତ୍ତି ଓ ଲିପିଯୁକ୍ତ ପଥର ପାଇଥିଲେ, ତାହାକୁ ୧୯୧୬ରେ କଲିକତାକୁ ସ୍ଥାନାନ୍ତରିତ କରିଥିଲେ । ତପ୍ପରେ ୧୯୨୪ର ଏସିଆଟିକ ସୋସାଇଟି ପତ୍ରିକାରେ ଏହି ଶିଳାଲିପିର ପାଠ ଏକ ପ୍ରବନ୍ଧରେ ଫଟୋ ସହ ଛପାଇଥିଲେ । ଗଣପତି ସରକାରଙ୍କ ମୃତ୍ୟୁ ପରେ ଏହି ଦ୍ୱିଭାଷୀ ଶିଳାଲିପିଟି କଲିକତା ବିଶ୍ୱବିଦ୍ୟାଳୟର ଆଶୁତୋଷ ମିଉଜିୟମକୁ ସ୍ଥାନାନ୍ତରିତ ହୋଇ ସେଠାରେ ସୁରକ୍ଷିତ ଅଛି । ଏହି ଲିପିର ପାଠ ପ୍ରଫେସର ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ମହାଶୟ 'ପ୍ରାଚୀନ ଗଦ୍ୟ, ପଦ୍ୟାଦର୍ଶ' ପୁସ୍ତକରେ ୧୯୩୨ରେ ଦେଇଥିଲେ । ମୁଁ ଏହି ଶିଳାଲିପିର ଛାପା ସଂଗ୍ରହ କରିଥିଲି । ଏହାର ଛାପା ପାଇବା ପାଇଁ ଆଶୁତୋଷ ମିଉଜିୟମର ଅଧକ୍ଷ ମୋର ବନ୍ଧୁ ଶ୍ରୀଯୁକ୍ତ ଦେବପ୍ରସାଦ ଘୋଷଙ୍କ ଠାରେ ଋଣୀ । ଏହି ଶିଳାଲିପିରେ ଓଡ଼ିଆ ଲିପିର ୩୪ଟି ଧାଡ଼ି ଅଛି । ତାମିଲ ଲିପିର ପାଠ କରିପାରି ନଥିବାରୁ ତାହା ଏଠାରେ ଦେଇ ପାରିଲି ନାହିଁ । ଶୁଣିଲି ଯେ ଡକ୍ଟର ଦୀନେଶଚନ୍ଦ୍ର ସରକାର ଏପିଗ୍ରାଫିଆ ଇଣ୍ଡିକା ଗ୍ରନ୍ଥମାଳାରେ ଏହି ଶିଳାଲିପିର ଉଭୟ ଲିପିର ପାଠ ଦେଇ ଏକ ପ୍ରବନ୍ଧ ଲେଖି ଅଛନ୍ତି ।

ଲିପିର ପାଠ ତଳେ ଦିଆଗଲା । ପାଠର ଶୁଦ୍ଧି ବନ୍ଧନୀରେ ଦିଆଯାଇଛି ।

୧ । ଓଁ (ଚନ୍ଦ୍ରରେ) ସ୍ୱସ୍ତି ଗୁର ବୀର ନରନାର ସୀଙ୍ଘ ଦେବ
୨ । ଣ ପ୍ରବଧମାନେ ବୀଯେ ରାଜେ ସ
୩ । ମ୍ବତ୍ ୨୨ ଶ୍ରୀ କାର୍ତ୍ତିକ କୀ ଷ୍ଣ ୭ ରବୀବା
୪ । ରେ ଶ୍ରୀ କୀର୍ତ୍ତିବାସ : କ୍ଷେତ୍ରଂ ସୀଧେ
୫ । ସର ମଠର ବଡ଼ ନରସୀଙ୍ଘ ଦେବ—
୬ । ଙ୍କର ଆଣକାମାର୍ଥେ ପୁର୍ବ୍ବକେ ॥
୭ । ବାଘମସ୍ତ ବାରବାଟୀ ଭୁମୀ ଏକାଦ୍
୮ । ଶରୁଦ୍ର ବୀପ୍ତା ଦେବା ଭୁମୀ ସମଂ

୯ । [illegible] ଉପସ୍ତଜ ମାହ୍ବା ମୂଳୀ ଦୃ ଗ୍ ଧା
୧୦ । [illegible] ଅସ୍ବପ ଙ୍କୈର ବଧା କଲ୍ଲ । ଏ
୧୧ । [illegible] ଶତ ଦେଢ଼ ୧୫୦ ଉଦ୍ଦେସ୍ୟ
୧୨ । [illegible] ଜାଏକଙ୍କର ତହୁ ଘେତଲ୍ଲ ।
୧୩ । ଏମାତ୍ର ଦସ୍ ଧାନ୍ୟ ପୈଟୀ ହିଂ—
୧୪ । [illegible] ଉପସ୍ତଜ ମାହ୍ବାମୂଳୀ ଏ ଜୁ
୧୫ । [illegible] ଧାନ୍ୟ ପୁନା ଦୁଗା ରୁଟେ ହୁଦେ ସ—
୧୬ । [illegible] ନାଏକଙ୍କେ ଦେଇ ଅଙ୍କ କଲ୍ଲ ଏ କଉଡ଼ୀ ଏ
୧୭ । ଧାନ ପୁନା ମୂଳକଲନ୍ତ୍ରର କରନ୍ତେ ମଡ଼
୧୮ । ଶତେକ ଅସୀ ୧୮୦ ଉପସ୍ତଜ ମୂଳୀ ସୀ—
୧୯ । ଖ ପ୍ରାପ୍ତେଂ ଉପଚନ୍ଦ୍ରବର୍ତ୍ତୀ ସ୍ଥାନାପର୍ତ୍ତି ହ୍ୱୋ—
୨୦ । ଇଲ୍ଲ । ଏ ଉପଚକ୍ରବର୍ତ୍ତୀଙ୍କର ଦୁଗାଭଟଆ
୨୧ ।ସ୍ବୁଯଙ୍କର ସ୍ୱସୀ । ଦୁଗାଭଟ ଆସ୍ବଯେ
୨୨ । ସୂର୍ଣୀ ଏକ ସ୍ୱସୀ ବୋଲ୍ ମୈନପକ୍ଷ ହ୍ୱୋ
୨୩ । ଇଲ୍ଲ । ଏ ବାଦମସ୍ୱ ଭୂମୀ ବାରବାଟୀ ପଂ—
୨୪ । ଲ ଷ୍ଟେଗ୍ୟ ଅସୀ ଆସତବେ କାଲ୍ଲ କୈ
୨୫ । ଉପଚକ୍ରବର୍ତ୍ତୀ କା ହ୍ୱା ଥରଇ ଦୁର୍ଗା ଭଟ
୨୬ । ଟ ଆସ୍ବଯେପାଣି ଧୀଲ୍ଲ । ଶ୍ରୀ ବୀର
୨୭ । ନରସୀଙ୍ଘ ଦେବଙ୍କର ଆଜ୍ଞାଣ କା—
୨୮ । ମାର୍ଥେ ଏକାଦଶ ରୁଦ୍ର ଖ୍ୟାସା କସ୍ୱଇ
୨୯ । ବା ଏ ଭକ୍ଷା ସ୍ବେଢ଼ ଦେଶ ପାଣ୍ଡ୍ରୀ ଦେଶ କା
୩୦ । ସ୍ବୀ ବେସ ଏ ଗଣୀ ଦେସେ ଜମୀଲ୍ଲ ହ୍ୱୋ
୩୧ । ଇ ମଢାମଢେ ଦୀକ୍ଷା କସ୍ୱ ଆସ୍ବବନ୍ତ
୩୨ । ହ୍ୱୋଇଲ୍ଲ । ତପସ୍ୱୀଙ୍କୀ ଭକ୍ଷା କେତେ କେତେ
୩୩ । କାଳ ଚନ୍ଦ୍ର ସୂର୍ଜ୍ୟ ବ୍ରତ ଏତେକ କାଳ × ଙ୍କ ବସ
୩୪ । ବ୍ରହ୍ମବାକ ୦୧୧

**ଲିପିର ସମୟ** -ଲିପିରେ ନରସିଂହ ଦେବଙ୍କ ପ୍ରବର୍ଧମାନ ବିଜୟ ରାଜ୍ୟର ୨୨ ସଂବତ୍ କୃଷ୍ଣ ସପ୍ତମୀ ରବିବାରର ଉଲ୍ଲେଖ ଅଛି । ଗଙ୍ଗବଂଶରେ ୪ ଜଣ ନରସିଂହ ରାଜତ୍ୱ କରିଥିଲେ-ଏଣୁ ଏହି ଲିପି କେଉଁ ରାଜା ନରସିଂହଦେବଙ୍କ ସମୟରେ ଉତ୍କୀର୍ଣ୍ଣ ହୋଇଥିଲା ତାହା ଠିକ୍ କରିବା ସହଜ ସାଧ୍ୟ ନୁହେଁ । ଚାରିଜଣଯାକ ନରସିଂହ କାମାଖ୍ୟ ଗଙ୍ଗନୃପତି ୨୨ ଅଙ୍କରୁ ଅଧିକ ବର୍ଷ ରାଜତ୍ୱ କରିଥିଲେ । ଓଡ଼ିଶାରେ ଅଙ୍କ ଗଣନାରେ ବିଶେଷତ୍ୱ ଅଛି । ଅଙ୍କରେ ଥିବା ସଂଖ୍ୟା ଓ ୧୦ ବ୍ୟତୀତ ଶୂନ୍ୟଯୁକ୍ତ ସଂଖ୍ୟା ଗଣିତ ହୁଏନାହିଁ, ଅର୍ଥାତ୍ ୧, ୬, ୧୬, ୨୦, ୨୬, ୩୦, ୩୬ ଇତ୍ୟାଦି ସଂଖ୍ୟା ପୂର୍ଣ୍ଣ ରାଜତ୍ୱ ଅଙ୍କରୁ ବାଦଯାଏ । ପ୍ରତ୍ୟେକ ଅଙ୍କ ସୁନିଆ ଦିନରୁ ଆରମ୍ଭ ହୁଏ । ସୁନିଆଁ ପରେ ବର୍ଷକ ମଧ୍ୟରେ ଜଣେ ରାଜାଙ୍କର ମୃତ୍ୟୁ ହେଲେ, ସେହିଦିନ ତାଙ୍କର ଅଙ୍କ ସରିଯାଏ ଓ ନୂତନ ରାଜାଙ୍କର ୨ୟ ଅଙ୍କ ଆରମ୍ଭ ହୋଇ ସୁନିଆଁ ପର୍ଯ୍ୟନ୍ତ ଚଳେ । ଏଣୁ ଏ ମୃତ ରାଜାଙ୍କର ଅଙ୍କ ଓ ନୂତନ ରାଜାଙ୍କ ଅଙ୍କ ଗୋଟିଏ ବର୍ଷ ମଧ୍ୟରେ ଚଳେ । ଏହି ହିସାବରେ ୨୨ ଅଙ୍କର ରାଜତ୍ୱ କାଳ ହେଉଛି ୧, ୬, ୧୬ ଓ ୨୦ ସଂଖ୍ୟା ହୀନ ବର୍ଷ ବା ୧୮ ବର୍ଷ । ଏହି ଗଣନା ଅନୁସାରେ -

| | | |
|---|---|---|
| ୧) ନରସିଂହ ୧ମଙ୍କ | ୨୨ ଅଙ୍କ | ଖ୍ରୀ ୧୨୫୬ - ୫୭ |
| ୨) ନରସିଂହ ୨ୟଙ୍କ | ,, | ଖ୍ରୀ ୧୨୯୭-୯୭ |
| ୩) ନରସିଂହ ୩ୟଙ୍କ | ,, | ଖ୍ରୀ ୧୩୪୫-୪୬ ଓ |
| ୪) ନରସିଂହ ୪ର୍ଥଙ୍କ | ,, | ଖ୍ରୀ ୧୩୯୫-୯୬ରେ ପଡ଼େ |

୨୨ ଅଙ୍କର କାର୍ତ୍ତିକ କୃଷ୍ଣ ସପ୍ତମୀ ରବିବାର ନରସିଂହ ୧ମ ଓ ନରସିଂହ ୨ୟଙ୍କ ୨୨ ଅଙ୍କରେ (Indian Ephimerish) ପୁସ୍ତକର ଗଣନା ଅନୁସାରେ ପଡ଼େନାହିଁ । କିନ୍ତୁ ଏହିଦିନ ନରସିଂହଙ୍କ ୩ୟଙ୍କ ୨୨ ଅଙ୍କରେ ଅକ୍ଟୋବର ତା ୮ । ୧୩୪୬ ଓ ନରସିଂହ ୪ର୍ଥଙ୍କ ୨୨ ଅଙ୍କରେ ସେପ୍ଟେମ୍ବର ତା ୯ ।୧୩୯୬ରେ ପଡୁଅଛି । ଏଣୁ ଶିଳାଲିପିର ସମୟ ଏହି ଦୁଇ ଦିନରୁ ଗୋଟିଏ ହୋଇପାରେ । ନରସିଂହ ୩ୟଙ୍କ ସମୟରେ ମିଳୁଥିବା ଲିପିରେ ଓଡ଼ିଆ ଭାଷାର ବ୍ୟବହାର ଦେଖାଯାଏ ନାହିଁ । କିନ୍ତୁ ନରସିଂହ ୪ର୍ଥଙ୍କର ୧୩୯୫ରେ ପ୍ରଦତ୍ତ ପୁରୀର ଶଙ୍କରାନନ୍ଦ ମଠରେ ଥିବା ତମ୍ବାପଟାରେ ଓଡ଼ିଆ ଭାଷା ବ୍ୟବହୃତ ହୋଇଅଛି । ଏଣୁ ମୋର ମନେହୁଏ ଯେ ଏହି ଶିଳାଲିପିର ସମୟ ସେପ୍ଟେମ୍ବର ତା ୨୯ ରିଖ ୧୩୯୬ ।

**ଲିପିର ଭାଷା** :- ଲିପିର ଭାଷାରୁ ଜଣାଯାଏ ଯେ ସେତେବେଳକୁ ଓଡ଼ିଆ ଭାଷା ପ୍ରାୟ ପୂର୍ଣ୍ଣାଙ୍ଗ ଆକାର ଧାରଣ କଲାଣି ।

**ଲିପିର ବନାନ ସମସ୍ୟା**-ଏହି ଲିପିରେ ପ୍ରକୃତ ଭାଷାର ବନାନ ସମର୍ଥନ ଦେଖାଯାଏ । ମୁଖରେ ଉଚ୍ଚାରିତ ଶବ୍ଦ ଅନୁସାରେ ବନାନ ଲିଖିତ ହୋଇଛି ।

(୧) ସଂସ୍କୃତ 'ସିଂହ' ଓଡ଼ିଆରେ 'ସିଙ୍ଘ' ଉଚ୍ଚାରିତ ହୋଇ ଏହି ଲିପିରେ ବ୍ୟବହୃତ ହୋଇଛି ।

୨) ପରବର୍ତ୍ତୀ ବର୍ଣ୍ଣର 'ରେଫ' ଫଳା ପୂର୍ବବର୍ତ୍ତୀ ବର୍ଣ୍ଣରେ 'ର'କାର ହୋଇଅଛି- ପ୍ରବ୍ରଧମାନେ। କେତେକ ସ୍ଥଳରେ 'ରେଫ' ଫଳା ବ୍ୟବହୃତ ହୋଇନାହିଁ - ଯଥା କାତୀକ'।

୩) ହ ସ୍ୱ 'ଇ' ଠାରେ ଦୀର୍ଘ 'ଈ' ବ୍ୟବହାର ପ୍ରାୟ ସର୍ବତ୍ର ହୋଇଛି ।

୪) ସେହିପରି ହ୍ରସ୍ୱ 'ଉ' ଠାରେ ଦୀର୍ଘ 'ଊ'ର ମଧ ବ୍ୟବହାର ଦେଖାଯାଏ ।

୫) ଦୀର୍ଘ 'ଅ' ଠାରେ ହ୍ରସ୍ୱ 'ଆ'ର ବ୍ୟବହାର ମଧ ଦେଖାଯାଏ ଯଥା, ମହାରାଜା - ମାହାରାଜା ।

୬) ବର୍ଗ୍ୟ 'ଜ' ସ୍ଥଳରେ ଅନ୍ତସ୍ଥ୍ୟ 'ଯ'ର ବ୍ୟବହାର ଦେଖାଯାଏ ଯଥା : ବୀଯେ ।

୭) 'ଶ' ଓ 'ସ'ର ବ୍ୟବହାରରେ କୌଣସି ନିୟମ ପ୍ରତିପାଳିତ ହେଲାପରି ମନେହୁଏ ନାହିଁ ।

୮) ୧୮୦ 'ଶତେକ ଅସୀ' ରୂପେ ଓ 'ଅସୀଆ ସତକେ' ରୂପେ ବ୍ୟବହୃତ ହୋଇଅଛି । ଓଡ଼ିଆ ପଣକିଆରେ 'ଅଣିଆ ଶତକ'ର ବ୍ୟବହାର ଥିଲା ।

(୯) 'ଉତ୍ତର ' ସ୍ଥଳରେ 'ଉତ୍ର' ବ୍ୟବହୃତ ହୋଇଅଛି ।

୧୦) ଆଜି କାଲି 'ପୌଗୀ'ର ବ୍ୟବହାର ହୁଏ । ମାତ୍ର ଲିପିରେ 'ପୈଗୀ' ବ୍ୟବହୃତ ହୋଇଛି ।

୧୧) 'ଆୟୁକ୍ଷ' ଏହି ଲିପିରେ 'ଆଶ' ବା 'ଆଉଶ' ରୂପେ ବ୍ୟବହୃତ ଅଛି ।

ଅନ୍ୟାନ୍ୟ ଆଲୋଚନା :-

କ) ଏହି ଲିପିରେ 'ତପରଜ ଓ ତପଚକ୍ରବର୍ତୀ' ବିଶେଷଣ ରୂପେ ବ୍ୟବହୃତ ହୋଇଛି । ଆମ୍ଭେମାନେ ମହନ୍ତ 'ମହାରାଜ' ବ୍ୟବହାର କରୁ । ଧର୍ମାମ୍ମାମାନଙ୍କୁ ରାଜକୀୟ ଉପାଧିରେ ଭୂଷିତ କରିବାର କାରଣ ସହଜରେ ଅନୁମିତ ହେଉନାହିଁ ।

ଖ) ଏଥିରେ 'ସ୍ଥାନାପତି'ର ବ୍ୟବହାର ଦେଖାଯାଏ । ଏହାର ପ୍ରକୃତ ଅର୍ଥ ମୁଁ ଠିକ୍ କରିପାରିନାହିଁ ।

ଗ) 'ଏକାଦଶ ରୁଦ୍ର ଭୀକ୍ଷା' :- ଏକାଦଶ ରୁଦ୍ରଙ୍କ ନାମ ଯଥା ୧। ଅଜ, ୨। ଏକପାଦ, ୩। ଅହିବ୍ରଧ୍ନ, ୪। ପିନାକୀ, ୫। ଅପରାଜିତ, ୬। ତ୍ର୍ୟମ୍ବକ, ୭। ମହେଶ୍ୱର, ୮। ବୃଷାକପି, ୯। ଶମ୍ଭୁ, ୧୦। ହର, ୧୧। ଈଶ୍ୱର । ଏକାଦଶ ରୁଦ୍ର ଭୀକ୍ଷାରୁ ଅର୍ଥ ବୋଧ ହୁଏ ଏକାଦଶ ରୁଦ୍ରଙ୍କର ସେବା ନିମିତ୍ତ ଭୀକ୍ଷା । ଏହି ଏକାଦଶ ରୁଦ୍ରଙ୍କର ପୂଜା ଓ ସେବା ବିଧାନ ବୁଝିବା ପାଇଁ ଚେଷ୍ଟା କରି ସଫଳ କାମ ହୋଇ ପାରି ନାହିଁ । ଏଥିରୁ ମନେ ହୁଏ ଯେ ଏହି ଭିକ୍ଷା ଶୈବ ସନ୍ୟାସୀ ମାନଙ୍କର କାର୍ଯ୍ୟ ପାଇଁ ଦିଆଯାଇଥିଲା । ଯେଉଁଠାରେ ଭୂମିଦାନ କରାଯାଇଥିଲା, ତାହା ଚୋଡ଼ ଦେଶ, ପାଣ୍ଡ୍ୟଦେଶ ଓ କାଞ୍ଚି ଅଞ୍ଚଳରେ ଅବସ୍ଥିତ ଥିଲା । ଏଥିପାଇଁ ଏହା ଲିପିରେ ଓଡ଼ିଆ ଲିପି ସହିତ ତାମିଲି ଲିପି ବ୍ୟବହୃତ ହୋଇଅଛି ।

ଭୁବନେଶ୍ୱର ସ୍ଥିତ ପ୍ରାଚୀନ ମନ୍ଦିର ଗୁଡ଼ିକରେ ଲକୁଳୀଶ ମୂର୍ତ୍ତିରୁ ଅନୁମିତ ହୁଏ ଯେ ସେଠାରେ ପ୍ରଥମେ ପାଶୁପତ ଓ ଶୈବଧର୍ମ ପ୍ରଚଳିତ ହୋଇଥିଲା ଓ ସେ ଶୈବଧର୍ମର ସମୟ ଦଶମ ଶତାବ୍ଦୀର ପୂର୍ବବର୍ତ୍ତୀ ବୋଲା ଯାଇପାରେ । କିନ୍ତୁ ଏହି ଲିପିରେ ମିଳୁଥିବା ଚତୁର୍ଦ୍ଦଶ ଶତାବ୍ଦୀର ଶୈବଧର୍ମ୍ମ ସ୍ୱତନ୍ତ୍ର ପରି ମନେ ହୁଏ । ଏହି ଶିବୋପାସନାର ମତ ଜାଣିବାର ସୁଯୋଗ ପାଇନାହିଁ ।

ଏହି ଲିପି ଉପରେ କେହି ଅଧିକ କିଛି ଆଲୋକପାତ କଲେ ଆମ୍ଭେମାନେ ଅନେକ କଥା ଜାଣିପାରିବୁ ଓ ଏହି ଉଦ୍ଦେଶ୍ୟରେ ଏ ଲିପି ଉପରେ ଏ ପ୍ରବନ୍ଧ ଲିଖିତ ହୋଇଛି ।

କରଣୀ ଲିପି



ସୌଜନ୍ୟ : ଇଣ୍ଟରନେଟ୍



# ଓଡ଼ିଆ ଲିପି

## ଦେବୀପ୍ରସନ୍ନ ପଟ୍ଟନାୟକ

ଓଡ଼ିଆ ଲିପିର ପ୍ରାଚୀନତା ଓ ବିକାଶଧାରା ସମ୍ବନ୍ଧରେ ଅଧ୍ୟାପକ କୁଞ୍ଜବିହାରୀ ତ୍ରିପାଠୀ ତାଙ୍କର 'ଓଡ଼ିଆ ଭାଷା ଓ ଲିପିର କ୍ରମବିକାଶ' (ଦି ଇଭୋଲିଉସନ୍ ଅଫ୍ ଓଡ଼ିଆ ଲାଙ୍ଗୁଏଜ୍ ଏଣ୍ଡ ସ୍କ୍ରିପ୍ଟ, ଉତ୍କଳ ଇଉନିଭରସିଟି ପ୍ରେସ୍, ୧୯୬୨) ଗ୍ରନ୍ଥରେ ସବିସ୍ତାର ଆଲୋଚନା କରିଛନ୍ତି। ରୋମାନ୍ ଓ ଆରବୀ ଲିପିକୁ ବାଦ୍‌ଦେଲେ ସବୁ ଭାରତୀୟ ଭାଷାମାନଙ୍କର ଲିପି ବ୍ରାହ୍ମୀରୁ ବିକଶିତ ହୋଇଥିବା ସର୍ବସମ୍ମତ। ଓଡ଼ିଆ ଲିପି ଏଥିରୁ ବାଦ୍ ନୁହେଁ। ଲିଖନର ମାଧ୍ୟମ ତାଳପତ୍ର ଓ ଲୁହା ଲେଖନ ଯେ ଓଡ଼ିଆ ଅକ୍ଷରର ଗୋଲମୁଣ୍ଡ ପାଇଁ ଦାୟୀ ଏକଥା ମଧ୍ୟ ଏକପ୍ରକାର ଗୃହୀତ। ଲୁହା ଲେଖନରେ ତାଳପତ୍ର ଉପରେ ସିଧା ଗାର ଟାଣିଲେ ପତ୍ର ଚିରିଯିବାର ସମ୍ଭାବନା ବେଶି। ଏହି ଦୃଷ୍ଟିରୁ ଅକ୍ଷରର ଗୋଲ ମୁଣ୍ଡ ଗଢ଼ିଉଠିବା ସମ୍ଭବ। ଭାରତୀୟ ଅନ୍ୟାନ୍ୟ ଭାଷା ପରି ଓଡ଼ିଆ ମଧ୍ୟ ସଂସ୍କୃତ ବର୍ଣ୍ଣମାଳାକୁ ଗ୍ରହଣ କରି ନେଇଚି। ଗତ ୧୦୦୦ ବର୍ଷର ଇତିହାସ ମଧ୍ୟରେ ଭାଷାର ଯେଉଁ ବିକାଶ ହୋଇଚି, ତାହା ଫଳରେ ଲିଖିତ ଓ କଥିତ ଭାଷା ମଧ୍ୟରେ ପାର୍ଥକ୍ୟ ସୃଷ୍ଟି ହେବାରେ ବିଚିତ୍ରତା କିଛି ନାହିଁ। ଉଚ୍ଚାରଣ ଓ ବନାନ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି ହେଲେ ତାହା ଭାଷାଶିକ୍ଷା କ୍ଷେତ୍ରରେ ବାଧକ ହେବ, ଏକଥା ବୁଝାଇ କହିବା ପ୍ରୟୋଜନ ନାହିଁ। ଅଥଚ ଲିଖିତ ଭାଷାର ପରିବର୍ତ୍ତନ କଥିତ ଭାଷା ତୁଳନାରେ ଯେ ଅଧିକ କଷ୍ଟକର ଓ ସମୟସାପେକ୍ଷ, ଏହା ଜଣାକଥା। ଉଦାହରଣ ସ୍ୱରୂପ ଓଡ଼ିଆ ଋ ୠ ଌ ୡ କଥା ବିଚାର କରାଯାଉ। ଏଗୁଡ଼ିକ ଆଧୁନିକ ବର୍ଣ୍ଣମାଳାର ଅଙ୍ଗୀଭୂତ ନୁହନ୍ତି, ଯଦିଓ ଏକ କାଳରେ ଏହା ବର୍ଣ୍ଣମାଳାର ଅଂଶ ଥିଲା। ଋ ଓ ଌ ବର୍ତ୍ତମାନ ଉଚ୍ଚାରଣ ରୁ ଓ ଲୁ ଠାରୁ ପୃଥକ୍ ନୁହେଁ। ସେହିପରି ଓଡ଼ିଆରେ ଦୁଇଟି ବ ଅକ୍ଷର କିମ୍ବା ଦୁଇଟି ଅକ୍ଷର ଜ ଓ ଯ ମଧ୍ୟରେ ଉଚ୍ଚାରଣ ଭେଦ ନାହିଁ। ଦନ୍ତ୍ୟ ସ, ତାଲବ୍ୟ ଶ, ମୂର୍ଦ୍ଧନ୍ୟ ଷ ନ କହିଲେ ଉଚ୍ଚାରଣରୁ ଏ ତିନୋଟି ଭିତରେ ପାର୍ଥକ୍ୟ ଦେଖିବା ସମ୍ଭବ ହୁଅନ୍ତା ନାହିଁ। ଆଧୁନିକ ଚଳିତ ଓଡ଼ିଆର ଲିଖିତ ରୂପ ବିଚାରକଲେ ନିମ୍ନଲିଖିତ ଅକ୍ଷରଗୁଡ଼ିକ ଦେଖିବାକୁ ମିଳିବ। ଉଚ୍ଚାରଣ ଓ ବନାନର ସାମଞ୍ଜସ୍ୟ ଦେଖାଇବାପାଇଁ ଓଡ଼ିଆ ଧ୍ୱନିଗ୍ରାମ ଓ ଅକ୍ଷର ରୂପେ ତାହାର ଲିଖିତ ରୂପାନ୍ତର ତଳେ ଦିଆଯାଇଛି।

| ଓଡିଆ ଫୋନିମ୍ ବା ଧ୍ୱନିଗ୍ରାମ | ଓଡ଼ିଆ ଅକ୍ଷର | ଓଡ଼ିଆ ଶବ୍ଦ |
|---|---|---|
| p | ପ | ପବନ |
| ph | ଫ | ଫଳ |
| b | ବ | ବହି |
| bh | ଭ | ଭାତ |
| t | ତ | ତଳ |
| th | ଥ | ଥୋଇବା |
| d | ଦ | ଦାନ୍ତ |
| dh | ଧ | ଧୋଇବା |
| ṭ | ଟ | ଟାଣ |
| ṭh | ଠ | ଠଣା |
| ḍ | ଡ | ଡର |
| ḍh | ଡ଼ | ପଡ଼ିବା |
| | ଢ | ଢାଳ |
| | ଢ଼ | ପଢ଼ିବା |
| k | କ | କର |
| kh | ଖ | ଖରା |
| g | ଗ | ଗରା |
| gh | ଘ | ଘର |
| c | ଚ | ଚକ |
| ch | ଛ | ଛକ |
| j | ଜ | ଜର |
| | ଯ | ଯାଅ |
| jh | ଝ | ଝାଳ |
| n | ନ | ନାକ |
| n | ନ | ଦାନ୍ତ |
| ṇ | ଣ | ବଣ |

| | | |
|---|---|---|
| n | ଣ | ଦାଣ୍ଡ |
| m | ମ | ମନ |
| | ଙ | ବରଂ |
| | ଙ | ବଙ୍କା |
| s | ସ | ସର |
| | ଶ | ଶର |
| | ଷ | ଷଣ୍ଢ |
| h | ହ | ହଳ |
| L | ଲ | ଲଙ୍ଗଳ |
| Ḷ | ଳ଼ | କଳ |
| | ଳ | ଅଳ୍ପ |
| r | ର | କର |
| y | ୟ | ଭୟ |
| w | ୱ | ୱାରଣ୍ଟ |

ଏଠି ବର୍ଣ୍ଣ ଓ ଅକ୍ଷର ମଧ୍ୟରେ ପାର୍ଥକ୍ୟ ଦେଖିବାର ଅଛି। ଓଡ଼ିଆରେ ସାଧାରଣତଃ ବର୍ଣ୍ଣମାଳାର ବ୍ୟଞ୍ଜନର ଉଚ୍ଚାରିତ ରୂପ ଅକ୍ଷର। ବ୍ୟଞ୍ଜନ ବର୍ଣ୍ଣରେ ଅନ୍ତର୍ନିହିତ ସ୍ୱର ଅ-ଯୁକ୍ତ ହୋଇ ଏଗୁଡ଼ିକ ଉଚ୍ଚାରିତ ହୁଅନ୍ତି। କେବଳ ବ୍ୟଞ୍ଜନ ବର୍ଣ୍ଣ ଲେଖିବା ପାଇଁ ଓଡ଼ିଆରେ ହଳନ୍ତର ପ୍ରୟୋଗ ହୋଇଥାଏ। ଉଦାହରଣ ସ୍ୱରୂପ ପ୍ କ୍ ତ୍ ଓ ପ କ ତ ମଧ୍ୟରେ ପାର୍ଥକ୍ୟ ଦେଖାଯାଇପାରେ। ଆଧୁନିକ ଚଳିତ ଓଡ଼ିଆରେ ଅନେକ ସମୟରେ ଶବ୍ଦାନ୍ତ ଅକ୍ଷରରେ ହଳନ୍ତ ବ୍ୟବହାର ନ କରି ମଧ୍ୟ ତାହାକୁ ବ୍ୟଞ୍ଜନ ରୂପେ ଉଚ୍ଚାରଣ କରାଯାଇଥାଏ। ବର୍ତ୍ତମାନ ପାଇଁ ଏହାକୁ ବ୍ୟତିକ୍ରମ ରୂପେ ଗ୍ରହଣ କରାଯାଇପାରେ।

ଓଡ଼ିଆ ବର୍ଣ୍ଣମାଳାର ସ୍ୱର ବିଚାରରେ ନିମ୍ନଲିଖିତ ଚିତ୍ର ଦେଖିବାକୁ ମିଳିବ।

| | | |
|---|---|---|
| i | ଇ | ଇଟା, ପିତା |
| | ଈ | ଈଶ୍ୱର, ଜୀବନ |
| u | ଉ | ଉପର, ଛୁରୀ |
| | ଊ | ଊଷା, କୂଳ |
| e | ଏ | ଏଗାର, କେତେ |

| | | |
|---|---|---|
| o | ଓ | ଓଠ, କୋଠା |
| a | ଆ | ଆଗ, କାମ |
| ɔ | ଅ | ଅଗ, କମ |

ଏହା ବ୍ୟତୀତ ଓଡ଼ିଆରେ ଦୁଇଟି ଦ୍ୱିସ୍ୱର ପାଇଁ ଦୁଇଟି ଅକ୍ଷର ମଧ୍ୟ ଅଛି।

| | | |
|---|---|---|
| ɔi | ଐ | ଐରାବତ, ଶୈଳ |
| ɔu | ଔ | ଔଷଧ, ପୌରାଣିକ |

ଏଥିରୁ ଦେଖାଯିବ ଯେ ଓଡ଼ିଆରେ ୩୧ଟି ବ୍ୟଞ୍ଜନ, ୬ଟି ସ୍ୱର ଓ ଦୁଇଟି ଦ୍ୱିସ୍ୱର ଚଳିତ ଭାଷାର ବର୍ଣ୍ଣନା ପାଇଁ ତାତ୍ପର୍ଯ୍ୟପୂର୍ଣ୍ଣ। ଏହାର ସମ୍ୟକ୍ ଅବବୋଧ ପାଇଁ ଧ୍ୱନି ଓ ଧ୍ୱନିଗ୍ରାମ (ଫୋନିମ୍) ମଧ୍ୟରେ ସଂପର୍କ ବୁଝିବା ଆବଶ୍ୟକ।

**ଲିପି ଓ ଧ୍ୱନିଲିପି-**

କଥିତ ଭାଷା କଥୋପକଥନର ଭାଷା। ଏହା ଏକ ସମୟରେ ସମ୍ବାଦ ପ୍ରେରଣ କରୁଥିବା ଓ ସମ୍ବାଦ ଗ୍ରହଣ କରୁଥିବା ବ୍ୟକ୍ତିଙ୍କର ଉପସ୍ଥିତିର ଅପେକ୍ଷା ରଖେ। ମଣିଷ ସଭ୍ୟତାର ବିକାଶରେ ଲିପିର ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଛି। ସମସ୍ତ ସଂଗୃହୀତ ଜ୍ଞାନକୁ ଭବିଷ୍ୟତ ବଂଶଧରଙ୍କ ପାଇଁ ସଞ୍ଚିରଖିବାକୁ ଲିପି ପ୍ରଧାନ ସାଧନରୂପେ କାମ କରିଛି। ସ୍ଥାନ ଓ ସମୟର ଦୂରତା ଜୟକରି ସଞ୍ଚାରର ଆୟତନ ବିସ୍ତାର କରିବାରେ ଲିପି କମ୍ ସାହାଯ୍ୟ କରିନାହିଁ। ଯେଉଁ ଭାଷାବିଜ୍ଞାନୀ ପ୍ରଥମେ କଥିତ ଭାଷାକୁ ଲିପିବଦ୍ଧ କରିବାକୁ ପ୍ରଥମ ପଦକ୍ଷେପ ନେଲେ ସେ ସମସ୍ତଙ୍କର ନମସ୍ୟ।

କଥିତ ଭାଷାକୁ ଲିପିବଦ୍ଧ କରିବା ସହଜ କଥା ନୁହେଁ। କଥା କହିବାର ପ୍ରବାହକୁ ବନ୍ଦକରି ତା'ର ଧ୍ୱନିତାତ୍ତ୍ୱିକ ବିଶ୍ଳେଷଣ କଲେ ଦେଖାଯିବ ଯେ ତହିଁରେ ଉଭୟ ଖଣ୍ଡ ଧ୍ୱନି ଓ ଖଣ୍ଡେତର ଧ୍ୱନି ରହିଛି। ମୁଁ ଆଁ କରିଛି ? ବାକ୍ୟଟିକୁ ବିଚାରକଲେ ଦେଖାଯିବ ଯେ ଏଥିରେ ମ୍,ଉ,ଆ,କ୍,ଅ,ର୍,ଇ,ଛ୍,ଇଁ ପରି ଖଣ୍ଡଧ୍ୱନି ଅଛି। ଅନେକେ ଅବଶ୍ୟ ଅନୁନାସିକତାକୁ ଖଣ୍ଡେତର ଧ୍ୱନିରୂପେ ବିଚାର କରିଥାନ୍ତି; କିନ୍ତୁ ତା'ର ବିଚାର ସ୍ଥଳ ଅନ୍ୟତ୍ର। ଏହି ବାକ୍ୟରେ ଦୁଇ ପ୍ରକାରର transition ଅଛି। କ, ରି,ଛି ମଧ୍ୟରେ ଯେଉଁ transition ଅଛି, ତାହା close transition ମୁଁ ଆଁ ଭିତରେ Open transition। ମୁଆଁ ଓ ମୁଁ ଆଁ (କରିଛି) ଦୁଇଟିକୁ ତୁଳନା କଲେ ଏ ଉଭୟର ପାର୍ଥକ୍ୟ ବୁଝିହେବ। Open transition ବା junctureକୁ ଖଣ୍ଡଧ୍ୱନି ରୂପେ ସାଧାରଣତଃ କୁହାଯାଇଥାଏ। କିନ୍ତୁ ଆ ଉପରେ ବଳାଘାତ ଓ ମୁଁ ଆଁ କରିଛି ବାକ୍ୟଟିକୁ ପ୍ରଶ୍ନାତ୍ମକ ସୂଚିତ କରିବାପାଇଁ ଯେଉଁ

ସ୍ୱରଲହର ବ୍ୟବହାର କରାଯାଇଛି ତାହା ସମସ୍ତ ବାକ୍ୟରେ ବ୍ୟାପି ରହିଥିବାରୁ ଏହାକୁ ଖଣ୍ଡ୍ୟେତର ଧ୍ୱନି କୁହାଯାଇଥାଏ। ଖଣ୍ଡ୍ୟେତର ଧ୍ୱନିକୁ ଲେଖିବା ଅପେକ୍ଷାକୃତ ଅଧିକ କଷ୍ଟକର; ବିଶେଷକରି ଯେଉଁ ଭାଷାରେ Tone ଦୁଇଟି ଶବ୍ଦ ମଧ୍ୟରେ ଅର୍ଥ ପାର୍ଥକ୍ୟ ସୂଚିତ କରେ, ଲେଖିବାରେ ତହିଁରେ ସମସ୍ୟା ବେଶି।

ଖଣ୍ଡ୍ୟେତର ଧ୍ୱନି ଲେଖିବା ପାଇଁ କେତେକ ସାଧାରଣ ନିୟମ ଅଛି। ଅନେକେ ବଳାଘାତର ଆପେକ୍ଷିକ ଗୁରୁତ୍ୱକୁ ସଂଖ୍ୟା ସାହାଯ୍ୟରେ ସୂଚିତ କରିଥାନ୍ତି। ମୁଁ[2] ଆଁ[3] କ[2]ରିଛି[1]↑ରୁ ଜଣାଯିବ ଯେ, ଆଁ ଶବ୍ଦ ଉପରେ ସବୁଠାରୁ ଅଧିକ ବଳାଘାତ ଅଛି। ଶେଷରେ ଥିବା ତୀର ଚିହ୍ନର ଅର୍ଥ ହେଉଛି ଯେ, ପ୍ରଶ୍ନହେତୁ ସ୍ୱରଲହର ସାମାନ୍ୟ ଉପରକୁ ଉଠିଥାଏ। ମୁଦ୍ରଣ ଅସୁବିଧା ଦୃଷ୍ଟିରୁ ଅନେକେ ଶବ୍ଦ ଉପରେ ସଂଖ୍ୟା ଦେଇ ନଲେଖି ଏକା ଧାଡ଼ିରେ ଲେଖିବା ଚେଷ୍ଟା କରିଥାନ୍ତି। ମନେକର ଗୋଟିଏ ଭାଷାରେ ɑ ଓ z ର ଉପଯୋଗିତା ନାହିଁ ଏବଂ ସେହି ଭାଷାରେ ଉଚ୍ଚ ଓ ନିମ୍ନ ଭେଦରେ ଦୁଇଟି tone ଅଛି। ଯଦି ɑକୁ ଉଚ୍ଚ ଓ Zକୁ ନିମ୍ନ tone ବୋଲି ଧରାଯାଏ ଓ ସେହି ଭାଷାରେ akura ଶବ୍ଦରେ ପ୍ରଥମ a ଉପରେ ଉଚ୍ଚ ଓ ଶେଷ a ଉପରେ ନିମ୍ନ tone ଥାଏ, ତେବେ ସେହି ଶବ୍ଦଟିକୁ aɑkuraz ରୂପେ ଲେଖାଯାଇପାରିବ। ଏ ଉଭୟ ପ୍ରକାର ଲେଖାର ସ୍ୱତନ୍ତ୍ର ସମସ୍ୟା ରହିଛି। ଅନେକେ କୌଣସି ପ୍ରକାର ଚିହ୍ନ ନ ଦେଇ ଲେଖିବା ପସନ୍ଦ କରିଥାନ୍ତି। ଏହା ଫଳରେ ସେହି ଭାଷାକୁ ମାତୃଭାଷା ରୂପେ ବ୍ୟବହାର କରୁଥିବା ଲୋକଙ୍କ ପକ୍ଷରେ ପଢ଼ିବା ସମ୍ଭବ ହେଲେ ମଧ୍ୟ ଅନ୍ୟ ଭାଷାଭାଷୀମାନଙ୍କ ପକ୍ଷରେ ପଢ଼ିବା କଠିନ ହୋଇଥାଏ।

ଖଣ୍ଡଧ୍ୱନି ଲେଖିବାର ସମସ୍ୟା କିଛି କମ୍ ନୁହେଁ। ଆନ୍ତର୍ଜାତିକ ଧ୍ୱନିଲିପି (International Phonetic Alphabet) ସୃଷ୍ଟି କଲାବେଳେ ଅନେକଙ୍କର ବିଶ୍ୱାସ ଥିଲା ଯେ ପ୍ରତ୍ୟେକ ଧ୍ୱନିକୁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଚିହ୍ନଦ୍ୱାରା ଚିହ୍ନିତ କରିବା ସମ୍ଭବ, କିନ୍ତୁ ଏ ବିଶ୍ୱାସ ବେଶି ଦିନ ତିଷ୍ଠିଲା ନାହିଁ। ପୃଥିବୀର ପ୍ରାୟ ଦୁଇ ହଜାର ଭାଷାର ଧ୍ୱନିର ବିଭିନ୍ନତାକୁ ସ୍ୱତନ୍ତ୍ର ଭାବରେ ଚିହ୍ନିତ କରିବା ସମ୍ଭବ ନୁହେଁ। ତେଣୁ ପ୍ରତ୍ୟେକ ଧ୍ୱନିକୁ ଉଚ୍ଚାରଣ ସ୍ଥାନ ଓ ଉଚ୍ଚାରଣ ପ୍ରଯତ୍ନ ଦୃଷ୍ଟିରୁ ଶ୍ରେଣୀଭୁକ୍ତ କରି ଧ୍ୱନିଲିପିର ସୃଷ୍ଟି କରାଗଲା। ଏଥିରେ ଧ୍ୱନିର ଲିଖିତ ରୂପର ସୂକ୍ଷ୍ମବିଚାର ହେତୁ ଏହାକୁ ଅପ୍ରଶସ୍ତ ଲେଖନ (Narrow Transcription) କୁହାଯାଏ। ଭାଷାର ବର୍ଣ୍ଣନାତ୍ମକ ବିଶ୍ଲେଷଣ କଲାବେଳେ ଦେଖାଗଲା ଯେ ଗୋଟିଏ ଧ୍ୱନି ବିଭିନ୍ନ ଧ୍ୱନି ପରିପ୍ରେକ୍ଷୀରେ ଭିନ୍ନ ରୂପେ ପ୍ରତୀତ ହୁଏ। ଇଂରାଜୀ pinରେ ଥିବା p ମହାପ୍ରାଣ spinରେ ଥିବା p ଅଳ୍ପପ୍ରାଣ ଓ napkinରେ ଥିବା p ଅମୁକ୍ତ।

ଓଡ଼ିଆରେ କା, କି, କୁ, କ ରେ ଥିବା କ ର ଉଚ୍ଚାରଣ ଭିନ୍ନ। ନାକରେ ଥିବା ନ ବର୍ତ୍ସ୍ୟ ହେଲାବେଳେ ଦାନ୍ତରେ ଥିବା ନ ଦନ୍ତ୍ୟ। ଏହିପରି ଭାବରେ ଧ୍ୱନିକୁ ଚିହ୍ନେଇ କୌଣସି ଭାଷା ଲେଖିବା ଏକପ୍ରକାର ଅସମ୍ଭବ; ତେଣୁ ସାଧାରଣତଃ ଧ୍ୱନିଗ୍ରାମ ଭିତ୍ତିରେ ଲିପି ସୃଷ୍ଟି କରିବା ଅଧିକ ସୁବିଧାଜନକ ବୋଲି ବିବେଚିତ ହୋଇଥାଏ। ଓଡ଼ିଆ ଓ ନାଗରୀ ଲିପି ଆଂଶିକ ଭାବରେ ଧ୍ୱନିଗ୍ରାମଭିତ୍ତିକ ଓ ଆଂଶିକ ଅକ୍ଷରଭିତ୍ତିକ। ଚୀନ ଓ ଜାପାନୀ ଭାଷାରେ ଗୋଟିଏ ଗୋଟିଏ ଲିପି ଗୋଟିଏ ଗୋଟିଏ ଶବ୍ଦ। ପ୍ରାଚୀନ କାଳର ଚିତ୍ରଲିପିରେ ଗୋଟିଏ ଗୋଟିଏ ଚିତ୍ର ବାକ୍ୟାଂଶ ବା ପୂର୍ଣ୍ଣ ବାକ୍ୟର ଦ୍ୟୋତକ। ସେ ଯାହା ହେଉନା କାହିଁକି, ଧ୍ୱନିଗ୍ରାମଭିତ୍ତିକ ଲିପି ଭାଷାର ସବୁଠାରୁ କ୍ଷୁଦ୍ର ମହତ୍ତ୍ୱପୂର୍ଣ୍ଣ ଅର୍ଥହୀନ ଏକକର ସୀମିତ ଆୟତନ ମଧ୍ୟରେ ପ୍ରସ୍ତୁତ ହେଉଥିବାରୁ ଲେଖିବାର ସଂରଚନା ଦୃଷ୍ଟିରୁ ଅଧିକ ସୁବିଧାଜନକ। ପୁଣି ଏଥିରେ ବିଭିନ୍ନ ଧ୍ୱନିକୁ ଗୋଟିଏ ଗୋଟିଏ ଏକକର ସହଧ୍ୱନି ରୂପେ ଶ୍ରେଣୀଭୁକ୍ତ କରି ଲେଖାଯାଉଥିବାରୁ ଏହାକୁ ପ୍ରଶସ୍ତ ଲେଖନ (Broad Transcription) କୁହାଯାଏ। ଧ୍ୱନିଲେଖକୁ ସାଧାରଣତ [ ] ମଧ୍ୟରେ ଓ ଧ୍ୱନିଗ୍ରାମୀୟ ଲେଖକୁ // ମଧ୍ୟରେ ଲେଖାଯାଇଥାଏ। ଉଦାହରଣ ସ୍ୱରୂପ ଓଡ଼ିଆ ନଈ, ଜନ୍ତାକୁ ଅପ୍ରଶସ୍ତ ଧ୍ୱନିଲିପିରେ ଲେଖିଲେ [ନଈ], [ଜନ୍‌ତା] ନଈ, ଜନ୍‌ତା ଓ ପ୍ରଶସ୍ତ ଧ୍ୱନିଲିପିରେ / ନଈ /, / ଜନ୍‌ତା / ହୋଇପାରେ।

କୌଣସି ଭାଷାରେ ଧ୍ୱନିଗ୍ରାମ ଓ ବର୍ଣ୍ଣମାଳା ମଧ୍ୟରେ ସାରୂପ୍ୟ ଦେଖିବାକୁ ମିଳେ ନାହିଁ। ଗୋଟିଏ ଧ୍ୱନିର ପ୍ରକାଶ ପାଇଁ ବିଭିନ୍ନ ବର୍ଣ୍ଣ ଯେପରି ବ୍ୟବହାର ହେବା ସମ୍ଭବ, ଗୋଟିଏ ବର୍ଣ୍ଣ ବିଭିନ୍ନ ଧ୍ୱନିର ପ୍ରତିନିଧିତ୍ୱ କରିବା ମଧ୍ୟ ସମ୍ଭବ। ଇଂରାଜୀ ଭାଷାରେ a ଅକ୍ଷରର ମୂଲ୍ୟ <u>a</u>nt, b<u>a</u>lm , p<u>a</u>ste, b<u>a</u>ll ଆଦି ଶବ୍ଦରେ ଭିନ୍ନ। ସେହିପରି ଚ ଧ୍ୱନିର ପ୍ରକାଶ ଇଂରାଜୀରେ c, ch, tch, tsch, ti, ts ଆଦି ଦ୍ୱାରା ହୋଇଥାଏ। ଓଡ଼ିଆରେ ଗୋଟିଏ ଧ୍ୱନିଗ୍ରାମ / ସ / କିନ୍ତୁ ପୂର୍ବରୁ କୁହାଯାଇଛି, ବର୍ଣ୍ଣମାଳାରେ ସ,ଶ,ଷ ଭେଦରେ ତିନୋଟି ସଙ୍କେତ ଚିହ୍ନ ଅଛି। ସେହିପରି ଗୋଟିଏ ଧ୍ୱନିଗ୍ରାମ /ଜ/। ଯ ଓ ଜ ଭେଦରେ ଦୁଇଟି ଅକ୍ଷର ଓଡ଼ିଆରେ ବହୁଳ ଭାବରେ ବ୍ୟବହାର ହୁଏ।

ଲିପିସଂସ୍କାର ଭାଷାର ପରିବର୍ତ୍ତନ ସହିତ ତାଳ ରକ୍ଷା କରିପାରୁନାହିଁ। ଅନେକେ ଲିପି ସଂସ୍କାର ଦୃଷ୍ଟିରୁ ଭାଷାର ବିଭିନ୍ନ ଅପ୍ରାସଙ୍ଗିକତାକୁ ବନାନରୁ ଦୂର କରିବାକୁ ଚେଷ୍ଟା କରିଥାନ୍ତି; କିନ୍ତୁ ମନେରଖିବାକୁ ହେବ ଯେ, ଏଇ ବନାନ ଫଳରେ ଅର୍ଥର ବିଭିନ୍ନ ଐତିହାସିକ ସ୍ତର ସୁରକ୍ଷିତ ହୋଇଥାଏ। ଓଡ଼ିଆରେ ସର ଓ ଶର ଉଚ୍ଚାରଣ ଦୃଷ୍ଟିରୁ ଏକା ହେଲେ ମଧ୍ୟ ଦୁଇଟି ମଧ୍ୟରେ ଯେ ଅର୍ଥଗତ ଭିନ୍ନତା ରହିଛି ଏହା ଅସ୍ୱୀକାର କରିହେବ

ନାହିଁ। ଇଂରାଜୀ ଭାଷାରେ ବନାନ ସୁଧାରିବା ପାଇଁ ବର୍ଣ୍ଣାଡ'ସ ତାଙ୍କର ସମସ୍ତ ସଞ୍ଚୟ ରଖି ଯାଇଛନ୍ତି। ଇଂରାଜୀରେ ବନାନ ଏପରି ବିଭ୍ରାଟ ଯେ ghoti ଲେଖି fish ପଢ଼ିବା ନ୍ୟାୟ ବୋଲି ଲୋକେ କହିଥାନ୍ତି। gh in rough, o in women, ti in station.। ଏହିପରି ଭାବରେ ମୂଲ୍ୟ ଗ୍ରହଣ କଲେ ghotiକୁ fishକହିବା ଅନ୍ୟାୟ ହେବନାହିଁ। ପ୍ରକୃତ ପକ୍ଷରେ କିନ୍ତୁ ଏପରି ବନାନବିଭ୍ରାଟ ମୁଖ୍ୟତଃ ଭାଷା ପରିବର୍ତ୍ତନ ହେତୁ ଘଟିଥାଏ।

ଧ୍ୱନିକୁ ଧରି ଲିପିଶିକ୍ଷା, ଶବ୍ଦ ସାହାଯ୍ୟରେ ଲିପିଶିକ୍ଷା, ଚିତ୍ର ସାହାଯ୍ୟରେ ଲିପିଶିକ୍ଷା ଓ ବାକ୍ୟ ସାହାଯ୍ୟରେ ଲିପି ଶିକ୍ଷା ଦେବାପାଇଁ ନାନା ପ୍ରକାର ପାଠ୍ୟ ପ୍ରସ୍ତୁତ କରାଯାଇଛି। କିନ୍ତୁ ବୟସ୍କ ଲୋକଙ୍କ ପାଇଁ ଅକ୍ଷରକୁ ଆକୃତି ଦୃଷ୍ଟିରୁ ଶ୍ରେଣୀବଦ୍ଧ କରି ପ୍ରତ୍ୟେକ ଶ୍ରେଣୀର ଦୁଇଟି ଅକ୍ଷର ମଧ୍ୟରେ ସାମ୍ୟ ଓ ବୈଷମ୍ୟ ବିଚାର କରି ଶିଖେଇଲେ ଶିକ୍ଷା ତ୍ୱରାନ୍ୱିତ ହେବା ଅନୁଭବସିଦ୍ଧ। ଲିପି ଆୟତ୍ତ ହେଲେ ପଠନ ଓ ଲେଖନ କୌଶଳ ଶିକ୍ଷା କରିବା ସହଜ ସାଧ୍ୟ।

ନଂ ୩

**[illegible] ଶିଳା ଲିପି**

(୧ମ ପଙ୍କ୍ତି) [illegible]

(୨ୟ ପଙ୍କ୍ତି) [illegible]

(୩ୟ ପଙ୍କ୍ତି) [illegible]

ରାଜଗୁରୁ, ଓଡ଼ିଆ ଲିପି , 'ଓଡ଼ିଆ ଲିପି ଓ ଭାଷା', ପୃ.୧୦ ରୁ ସଂଗୃହୀତ



# ଭାରତୀୟ ଲିପିମାଳା : ପଠନ ପାଇଁ ଏକ ପରିଚାଳନାଗତ କୌଶଳ

### ଦେବୀପ୍ରସନ୍ନ ପଟ୍ଟନାୟକ

ଭାରତରେ ସଂପ୍ରତି ସମସ୍ତ ଲିପି ସେହି ଏକପ୍ରକାର ଲିଖନ ପଦ୍ଧତିର ବହୁର୍ମୁଖୀ ଶୈଳୀ। ଇଂରାଜୀ ବ୍ୟତୀତ ଅନ୍ୟ ଭାରତୀୟ ଭାଷାଗୁଡ଼ିକ ସମପରିବାର ଭୁକ୍ତ ନ ହେଲେ ହେଁ ସେଥିରେ ବ୍ୟବହୃତ ସବୁ ଲିପିର ଜନନୀ ହେଉଛି ବ୍ରାହ୍ମୀଲିପି। ଆବେଗାତ୍ମକ ସଂହତି ପାଇଁ ଲିପିଗୁଡ଼ିକର ବହୁମୁଖୀନତା ମଧ୍ୟରେ ସହଜାତ ଐକ୍ୟର ବିଶେଷ କାରକ ହିଁ ଏକ ସାଧାରଣ ଭିତ୍ତିଭୂମି ପ୍ରସ୍ତୁତ କରେ, ଏକଥା ବହୁ ସମୟରେ ଲିପି ସଂସ୍କାର ଓ ଲିପି ମାନକୀକରଣ ପ୍ରତି ଆଗ୍ରହୀ ବ୍ୟକ୍ତିଙ୍କ ଦୃଷ୍ଟିରୁ ତିରୋହିତ ହୋଇଥାଏ। ଅପର ପକ୍ଷରେ ଇଂରାଜୀ ରୋମାନ ଲିଖନ ପଦ୍ଧତିକୁ ବ୍ୟବହାର କରିଥାଏ। ଏହାର ଇତିହାସ ଅନ୍ତତଃ ପକ୍ଷେ ତିନିହଜାର ବର୍ଷ ପୂର୍ବର କଥା। କିନ୍ତୁ ଏଠାରେ ସ୍ମରଣ କରିବାକୁ ହେବ ଯେ ଇତିହାସ ଦୃଷ୍ଟିରୁ ରୋମାନ ଲିପିର ଅନୁପ୍ରବେଶ ଭାରତର ଅନ୍ୟାନ୍ୟ ଲିପି ତୁଳନାରେ ଅର୍ବାଚୀନ।

ବହୁଦିନ ହେଲା ବ୍ରାହ୍ମୀର ଅନ୍ତର୍ଭୁକ୍ତୀକରଣ ବିଦ୍ୱାନମାନଙ୍କ ଦୃଷ୍ଟି ଆକର୍ଷଣ କରି ଆସିଛି। ବ୍ୟୁହ୍ଲେର ବ୍ରାହ୍ମୀର ସେମିଟିକ ଉଦ୍ଭବ ସମ୍ପର୍କରେ ଯେଉଁ ପରିକଳ୍ପନା କରିଯାଇଛନ୍ତି, ତାହା ସେଦିନଠାରୁ ଏପର୍ଯ୍ୟନ୍ତ ଏକ ତର୍କର ବିଷୟ ହୋଇରହି ଆସିଛି। ହରପ୍ପା ଓ ମହେଞ୍ଜୋଦାରୋ ଲିପିର ଆବିଷ୍କାର ପରେ କେତେକ ବିଦ୍ୱାନ କହନ୍ତି ଯେ ବ୍ରାହ୍ମୀ ଏବଂ ମହେଞ୍ଜୋଦାରୋ ଲିପିମଧ୍ୟରେ ସୁସ୍ପଷ୍ଟ ସାଦୃଶ୍ୟ ବିଦ୍ୟମାନ; କିନ୍ତୁ ଏଯାବତ୍ ମହେଞ୍ଜୋଦାର ଲିପି ପାଠ କରାଯାଇ ପାରିନାହିଁ। ଫଳରେ ଉଭୟ ଲିପିର ସମ୍ପର୍କ ସଂପୂର୍ଣ୍ଣ ରୂପେ ପ୍ରମାଣିତ ହୋଇପାରି ନାହିଁ। ବ୍ରାହ୍ମଣମାନେ ଯେ ଏହି ବ୍ରାହ୍ମୀଲିପିରେ ଧର୍ମଶାସ୍ତ୍ରମାନ ରଚନା କରୁଥିଲେ ଓ ବ୍ରାହ୍ମୀ ହିଁ ବ୍ରାହ୍ମଣମାନଙ୍କର ପବିତ୍ର ଲିପି ଥିଲା- ଏଥିରେ କୌଣସି ସନ୍ଦେହ ନାହିଁ। କିନ୍ତୁ ଏକଦା ଏହା ବ୍ୟବହାର ଓ ଉଦ୍ଦେଶ୍ୟର ସସୀମତାରୁ ମୁକ୍ତ ହେଲା। କ୍ରମେ ଏହା ବ୍ୟାପକଭାବେ ବ୍ୟବହୃତ ହେବାକୁ ଲାଗିଲା ଓ ଏଥିରେ ଆଞ୍ଚଳିକ ବିଭିନ୍ନତା ପରିଲକ୍ଷିତ ହେଲା। ଅଶୋକଙ୍କ ରାଜୁତି ବେଳକୁ ଉତ୍ତର ଦକ୍ଷିଣ ଉଭୟତ୍ର ବ୍ରାହ୍ମୀ ବ୍ୟାପକ ଭାବେ ବ୍ୟବହୃତ ହେଉଥିଲା। ତାର ନିଦର୍ଶନ ଆଜି ମଧ୍ୟ ବିଭିନ୍ନ ଶିଳାଲେଖରେ ସଂରକ୍ଷିତ ହୋଇରହିଛି।

ଭାରତୀୟ ସଭ୍ୟତାର ପରିପ୍ରସାର ସହିତ ବିଶାଳ ଭୂଖଣ୍ଡରେ ଏ ଲିପି କିପରି ପରିବ୍ୟାପ୍ତ ହେଲା, ତାହା ଅଧ୍ୟୟନ କରିବା ବେଶ ଆନନ୍ଦଦାୟକ। ଯେଉଁ ବିଶାଳ ଭୂଖଣ୍ଡରେ ଏହି ଲିପିର ପ୍ରଚଳନ ହୋଇଥିଲା, ତାହା ଇତିହାସରେ ବୃହତ୍ତର ଭାରତ ନାମରେ ପରିଚିତ। ବ୍ରାହ୍ମୀଲିପିର ରୂପରେଖ ସହିତ ତିବେତୀୟ, ମନବର୍ମୀୟ, କମ୍ବୋଡିଆନ, ସିଂହଳୀ, ଜାଭା-ବାଲୀୟ ଓ ଇଣ୍ଡୋନେସୀୟ ପରି ଲିପିର ଉଦ୍ଭବ ଓ ବିକାଶ ସାଧିତ ହୋଇଥିଲା। ପ୍ରକୃତରେ ଉପଭାଷା ଓ ଭାଷାଗୁଡ଼ିକର ବିକାଶ ସହିତ ଲିପି ବିକାଶର ସମଗ୍ର ପ୍ରକ୍ରିୟାକୁ ତୁଳନା କରାଯାଇପାରେ। ଜନଗୋଷ୍ଠୀର ଭୌଗୋଳିକ ଓ ସାମାଜିକ ବିଚ୍ଛିନ୍ନୀକରଣ ହେତୁ ଉପଭାଷାମାନଙ୍କର ବିକାଶ ହୋଇଥାଏ। ଏଥିରୁ ଯେଉଁଗୁଡ଼ିକ ସମାଜ ଦ୍ୱାରା ମାନ୍ୟତା ପ୍ରାପ୍ତ ହୁଏ ଏବଂ ଗୋଷ୍ଠୀରେ ସାଧାରଣ ଭାବେ ବ୍ୟବହୃତ ହେବାକୁ ଯୋଗ୍ୟହୁଏ, ସେଗୁଡ଼ିକ ଭାଷା ନାମରେ ପରିଚିତ ହୁଅନ୍ତି। ଥରେ ମାନ ପ୍ରତିଷ୍ଠିତ ହେଲେ ଓ ସୂତ୍ରାୟିତ ହେଲେ ଭାଷାର ପରିବର୍ତ୍ତନମୁଖୀ ଗୁଣ ହେତୁ ପୁଣି ଉପଭାଷାମାନଙ୍କର ଉଦ୍ଭବ ହୁଏ। ଲିପି ବାକ୍ ପରି ଅସ୍ଥିର ନୁହେଁ ଏବଂ ଏହା ଅପେକ୍ଷାକୃତ ସୁସ୍ଥିର। ବାସ୍ତବରେ ଲିପିର ସ୍ଥିରତା ହେତୁ ବନାନ ଓ ଉଚ୍ଚାରଣରେ ବହୁ ସମସ୍ୟା ଦେଖାଦେଉଛି। କାରଣ ନୂତନ ଧ୍ୱନି ପ୍ରତିପାଦକକୁ ସ୍ଥାନଦେବା ଫଳରେ ଲିପି ତାର ପ୍ରାଚୀନ ଧ୍ୱନିଗତ ପ୍ରତିପାଦକକୁ ହରାଇଛି। କିନ୍ତୁ ହୁଏତ ଲିଖିତ ଉପାଦାନର ବିଭିନ୍ନତା ହେତୁ ହେଉ, ବା ବ୍ୟାପକ ବ୍ୟବହାର ଫଳରେ ହେଉ ନତୁବା ଅନ୍ୟ କୌଣସି ସାମାଜିକ କାରଣରୁ ହେଉ, ଲିପିଗୁଡ଼ିକ ଆଞ୍ଚଳିକ ଧର୍ମମାନ ଗ୍ରହଣ କରନ୍ତି ଏବଂ ଧୀରେ ଧୀରେ ସେଗୁଡ଼ିକ ଭିନ୍ନ ଭିନ୍ନ ଲିପିରୂପେ ପ୍ରତିଷ୍ଠା ଲାଭ କରନ୍ତି। ଥରେ ସେସବୁ ସ୍ୱକୀୟ ସୌନ୍ଦର୍ଯ୍ୟ ମଣ୍ଡିତହୋଇ ଉତ୍ତମ ହସ୍ତଲିଖନର ସ୍ତରକୁ ଉନ୍ନୀତ ହେଲେ, କ୍ଷିପ୍ର ଲିଖନ ପାଇଁ ପ୍ରବହମାନ ରୂପମାନ ସୃଷ୍ଟିହୁଏ। ଏଣୁ ମୈଥିଳି, କୈଥି (ବିହାର ଓ ପୂର୍ବ ଉତ୍ତର ପ୍ରଦେଶରେ ବ୍ୟବହୃତ), ମହାଜନି (ପଶ୍ଚିମ ଉତ୍ତର ପ୍ରଦେଶ) ଓ ଗୁଜରାଟି ପ୍ରଭୃତି ଯଦି ନାଗରୀର ପ୍ରବହମାନ ରୂପ, ତେବେ ମୋଡି ମରାଠୀର, କରଣୀ ଓଡ଼ିଆର, କୈଥାଲି ବା ଲକ୍ଷ୍ମି ଅସମୀୟାର ପ୍ରବହମାନ ରୂପ।

ଲିପି ଅଧ୍ୟୟନର ଅନ୍ୟ ଏକ ପରିସର ହେଉଛି ଐତିହାସିକ ପରିସର ଓ ସମୟ ଅକ୍ଷରେ ସେମାନଙ୍କର ବିକାଶ ପ୍ରକ୍ରିୟାର ଅଧ୍ୟୟନ। ଦୃଷ୍ଟାନ୍ତ ସ୍ୱରୂପ ବ୍ରାହ୍ମୀର ଅଶୋକ କାଳୀନ ରୂପ (ଖ୍ରୀ:ପୂ:୩ୟ ଶତକ) ଅକ୍ଷୁଣ୍ଣ ଅବସ୍ଥାରେ ସଂରକ୍ଷିତ। ବ୍ରାହ୍ମୀର ଏହି ରୂପ ପର୍ଯ୍ୟାୟକ୍ରମେ ସୁଙ୍ଗକାଳୀନ ବ୍ରାହ୍ମୀ (ଖ୍ର:ପୂ: ୨ୟ ଶତକ) କୁଶାଣ ବ୍ରାହ୍ମୀ (ଖ୍ରୀଷ୍ଟୀୟ ପ୍ରଥମ ଶତକ), ଗୁପ୍ତ ଲିପି (ଖ୍ରୀଷ୍ଟୀୟ ୪ର୍ଥ-୬ଷ୍ଠ ଶତକ), ସିଦ୍ଧ ମାତୃକା, ସିଦ୍ଧନ ଲିପି କିମ୍ବା କୁଟିଳ ଲିପି (ଖ୍ରୀଷ୍ଟୀୟ ୬ଷ୍ଠ-୭ମ ଶତକ) ପରି ବହୁ ରୂପାନ୍ତରଣ ଦେଇଆସିଛି। ପରେ

ଏହି ବ୍ରାହ୍ମୀ ଲିପି ଭାରତୀୟ ଭାଷାମାନଙ୍କର ବିଭିନ୍ନ ଲିପି ରୂପେ ଶାଖା ପ୍ରଶାଖାରେ ବିଭକ୍ତ ହୋଇଛି। କୁଶାଣ ବ୍ରାହ୍ମୀରୁ ଏହା ପଲ୍ଲବ ଲିପି (ଖ୍ରୀଷ୍ଟୀୟ ୭ମ ଶତକ) ମଧ୍ୟଦେଇ ବିଭିନ୍ନ ଦ୍ରାବିଡୀୟ ଭାଷାର ଲିପିରେ ପରିଣିତ ହୋଇଛି। ଅପର ପକ୍ଷରେ ଜଣେ ଯେ କୌଣସି ପ୍ରଚଳିତ ଲିପିର ଅନ୍ତର୍ନିହିତ ଇତିହାସ ଅଧ୍ୟୟନ କରିପାରନ୍ତି ଏବଂ ଏହାର ବିକାଶର ବିଭିନ୍ନ ପର୍ଯ୍ୟାୟର ତୁଳନାପୂର୍ବକ ପ୍ରାଚୀନ ରେକର୍ଡ ପ୍ରଭୃତି ଅଧ୍ୟୟନ କରିପାରନ୍ତି। ଏହା ଫଳରେ ସେ ପ୍ରାଚୀନ ପାଣ୍ଡୁଲିପିମାନଙ୍କର ସମୟ ନିରୂପଣ କରିପାରିବେ କିମ୍ବା ଅନ୍ତର୍ନିହିତ ପ୍ରମାଣ ବଳରେ ଭାଷାର ପ୍ରାଚୀନ ଧ୍ୱନି ଗ୍ରାମ-ପଦ୍ଧତି-ନିରୂପଣ କରି ଭାଷାର ପୁନର୍ଗଠନ କରିପାରିବେ। ଉଦାହରଣ ସ୍ୱରୂପ- ଜଣେ ହୁଏତ ତାମିଲ ଲିପି କିପରି ବିକଶିତ ହୋଇ ବଟ୍ଟେଳୁତ୍ତୁ (ପାଣ୍ଡ୍ୟଲିପି) ଓ କୋଲଇଲୁତ୍ତୁ (ପଲ୍ଲବ-କୋଲି ଲିପି) ମୂଳତଃ ଗ୍ରନ୍ଥ ଲିପି ସହିତ ସଂପୃକ୍ତ ହେବାକଥା ଏବଂ ଚୋଳ ସମ୍ରାଟ ମହାନୁଭବ ରାଜରାଜ କୋଲଇଲୁତ୍ତୁ ଲିପି ସପକ୍ଷରେ ମତ ଦେବା ବିଷୟ ଉତ୍‌ଥାପନ କରିପାରନ୍ତି। ପୁଣି ଆଉ ଜଣେ ହୁଏତ ପ୍ରାଚୀନ ତାମିଲ୍ ଶିଳାଲେଖରେ ଦିବ୍ୟଞ୍ଜନର ଅନୁପସ୍ଥିତି ଓ ପରବର୍ତ୍ତୀ ଶିଳାଲେଖରେ ସେଗୁଡ଼ିକର ଉପସ୍ଥିତ ଦେଖି ଅନ୍ୟାନ୍ୟ ତାରିଖ ବିହୀନ ଦଲିଲଗୁଡ଼ିକୁ ଯଥାଯଥ ସ୍ଥାନରେ କାଳକ୍ରମିକ ଭାବେ ସୁବିନ୍ୟସ୍ତ କରିପାରନ୍ତି। ଅନୁରୂପ ଭାବେ ଦଲିଲର ପ୍ରମାଣାନୁସାରେ ଧ୍ୱନିଗ୍ରାମୀୟ ବିଖଣ୍ଡନର ନିରୂପଣ ଓ ବିଭିନ୍ନ ପ୍ରକାର ଧ୍ୱନିଗ୍ରାମର ସମ୍ମିଶ୍ରଣ ଦ୍ୱାରା ଭାଷା ସଂରଚନା ପ୍ରଭାବିତ ହୁଏ। ଫଳରେ ପ୍ରାଚୀନ ଓ ପରବର୍ତ୍ତୀ ପର୍ଯ୍ୟାୟର ଭାଷାରେ ପାର୍ଥକ୍ୟ ପରିଲକ୍ଷିତ ହୁଏ।

ତଥାପି ଏ ସମସ୍ତ ଲିପିର ଅନ୍ୟ ଏକ ପରିସରର ଅଧ୍ୟୟନ ହେଉଛି ତନ୍ନିହିତ ସଂଘଟନ। ଯେ କୌଣସି ଭାଷାରେ ବ୍ୟବହୃତ ଲିପିକୁ ଏକ ପଦ୍ଧତି ଭାବେ ଅଧ୍ୟୟନ କରାଯାଇପାରେ। ଏ ରୀତିକୁ ପ୍ରାବିଧିକ ଦୃଷ୍ଟିକୋଣରୁ ବର୍ଣ୍ଣବିନ୍ୟାସ ବିଜ୍ଞାନ ବୋଲି କୁହାଯାଏ। ଗୋଟିଏ ଭାଷାର ଧ୍ୱନିପଦ୍ଧତିର ସାର୍ଥକ ଏକକଗୁଡ଼ିକୁ ପ୍ରାବିଧିକ ଦିଗରୁ ଗ୍ରାଫିମ ବୋଲି କୁହାଯାଏ। ଉପଧ୍ୱନି, ଧ୍ୱନିଗ୍ରାମର ଅପ୍ରଭେଦାତ୍ମକ ବିକଳ୍ପ ସମୂହର ସମାନ୍ତରାଳ ଭାବେ ଜଣେ ହୁଏତ ଉପବର୍ଣ୍ଣ, ବର୍ଣ୍ଣଗ୍ରାମର ଅପ୍ରଭେଦାତ୍ମକ ସ୍ଥାନାଶ୍ରିତ ବିକଳ୍ପଗୁଡ଼ିକର କଥା କହିପାରନ୍ତି। ଦୃଷ୍ଟାନ୍ତ ସ୍ୱରୂପ ଏକ ବର୍ଣ୍ଣମାଳା ପଦ୍ଧତିର ପ୍ରତ୍ୟେକ ଲିଖିତ ଏକକଗୁଡ଼ିକ ହେଉଛି ବର୍ଣ୍ଣଗ୍ରାମ। ଏଣୁ ଦେବନାଗରୀ ସ୍ୱର ଓ ବ୍ୟଞ୍ଜନମାନଙ୍କର ପ୍ରତୀକଗୁଡ଼ିକୁ ବର୍ଣ୍ଣଗ୍ରାମ ରୂପେ ଗ୍ରହଣ କରାଯାଇପାରେ। ଯଦି ଦେବନାଗରୀ र ହେଲା ଏକ ବର୍ଣ୍ଣଗ୍ରାମ, ତେବେ ତାର ସ୍ଥାନାଶ୍ରିତ ବିକଳ୍ପ र(ର), र्ˆ (ରେଫ) ଓ ‍्र (ର ଫଳା) ହେଉଛି ଉପବର୍ଣ୍ଣ। ବିଶେଷତଃ ଯେଉଁ ପ୍ରାଚୀନ ଦଲିଲଗୁଡ଼ିକର ଭାଷା ଅପ୍ରଚଳିତ ସେଗୁଡ଼ିକର ପାଠୋଦ୍ଧାର ପାଇଁ ଏତାଦୃଶ ବିଶ୍ଳେଷଣ ଅପରିହାର୍ଯ୍ୟ। ଶୈକ୍ଷିକ ଦୃଷ୍ଟିକୋଣରୁ

ମଧ୍ୟ ଏହାର ଆବଶ୍ୟକତା ରହିଛି। କିନ୍ତୁ ବଡ଼ ଦୁର୍ଭାଗ୍ୟର ବିଷୟ ଯେ ଅଧିକାଂଶ ଭାରତୀୟ ଲିପି ପାଇଁ ଖୁବ୍ କ୍ୱଚିତ୍ ବର୍ଣ୍ଣଗ୍ରାମାତ୍ମକ ବିଶ୍ଳେଷଣ ଏବଂ ବର୍ଣ୍ଣଗ୍ରାମ-ଧ୍ୱନିଗ୍ରାମ ବିନିମୟଭିତ୍ତିକ କାର୍ଯ୍ୟାନୁଷ୍ଠାନ ଗୃହୀତ ହୋଇଛି।

ଭାଷାମାନଙ୍କ ପରି ଲିପିଗୁଡ଼ିକର ନାମକରଣ ଜାତି, ବୃତ୍ତି, ବ୍ୟାପ୍ତିର କେନ୍ଦ୍ରସ୍ଥଳ, ଅଞ୍ଚଳ ବା ଉପାଞ୍ଚଳ ଭିତ୍ତିରେ ହୋଇଥାଏ। ବିଶେଷତଃ ଯେତେବେଳେ ନାନା ଜନଗୋଷ୍ଠୀ ଏକ ନିର୍ଦ୍ଦିଷ୍ଟ ଲିପିକୁ ବ୍ୟବହାର କରନ୍ତି, ତା'ର ତଦନୁରୂପ ନାମକରଣ କରାଯାଇଥାଏ। ଭାରତରେ ସର୍ବତ୍ର କାୟସ୍ଥ ବା କରଣ ଜାତି ଯେଉଁମାନେ କି ଲିଖନ ଓ ପଠନକୁ ବୃତ୍ତି ରୂପେ ଗ୍ରହଣ କରିଥିଲେ। ତେଣୁ ଟୈଥି, କୈଥାଲି ଓ କରଣୀ ପ୍ରଭୃତି ଭାରତୀୟ କ୍ଷିପ୍ର ଲିଖନ ପଦ୍ଧତିର ନାମ। ଏହି ନାମଗୁଡ଼ିକ ଜାତିର ନାମାନୁସାରେ ହୋଇଅଛି। ସେହିପରି ଟଙ୍କା କଉଡ଼ି ଋଣଦେବା ବୃତ୍ତି ପାଇଁ ଆବଶ୍ୟକ ଖାତା ହିସାବ ଜ୍ଞାନ ଥିବା ଆବଶ୍ୟକ। ଋଣଦାତାମାନଙ୍କର ଜାତି ଓ ଭାଷା ଯାହା ହେଉନା କାହିଁକି ସେମାନେ ଏକପ୍ରକାର ଲିପି ବ୍ୟବହାର କରନ୍ତି। ଉକ୍ତ ଲିପିକୁ 'ମହାଜନୀ' ଲିପି କୁହାଯାଏ। ମହାଜନ ବା ଋଣଦାତାମାନେ ପ୍ରଥମେ ନିର୍ଦ୍ଦିଷ୍ଟ ଅଞ୍ଚଳରେ ବସବାସ କରୁଥିବା ଜାତିସମୂହର ଲୋକ ଥିଲେ। କିନ୍ତୁ ପରବର୍ତ୍ତୀ କାଳରେ ଭାରତର ବିଭିନ୍ନ ସ୍ଥାନରେ ପରିବ୍ୟାପ୍ତ ହେବା ଓ ଅନ୍ୟାନ୍ୟ ଲୋକେ ଉକ୍ତ ବୃତ୍ତିରେ ଯୋଗଦେବା ହେତୁ ସେମାନଙ୍କର ଲିପି ସାର୍ବଜନୀନ ହୋଇ ଉଠିଲା ଏବଂ ତାହା ଏକ ବୃତ୍ତିଗତ ଲିପି ରୂପେ ପ୍ରଚଳିତ ହେଲା। ନାଗରୀ ଭାରତରେ ବହୁଳ ଭାବେ ବ୍ୟବହୃତ ଏକଲିପି। 'ନାଗରୀ' ନାମଟି 'ନଗର' ଶବ୍ଦରୁ ଗୃହୀତ। ଡକ୍ଟର ଭି.ଏସ୍.ଅନରେୱାଲ ଯଥାର୍ଥରେ କହିଛନ୍ତି- ଏକ ନୂତନ ଆବିଷ୍କୃତ ନାଟକର ନାମ ହେଉଛି 'ପାଦତଡିତକମ' (Padataditakam)। ଏଥିରେ କୁହାଯାଇଛି ଯେ ପାଟଳୀପୁତ୍ର 'ନଗର' ରୂପେ ବିଖ୍ୟାତ ଥିଲା, ଏବଂ ତାହା ସେ ସମୟର ପ୍ରଧାନ ନଗର। ଗୁପ୍ତ ଅଭିଲେଖାବଳୀରୁ ଜଣାଯାଏ ଯେ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କର ବ୍ୟକ୍ତିଗତ ନାମ ଦେବ। ଉତ୍ତରର ନଗରଗୁଡ଼ିକ ସହିତ ସଂଶ୍ଳିଷ୍ଟ ଯେ କୌଣସି ଧାରା ବା ରୀତିକୁ ନଗର ବା ନାଗରୀ କୁହାଯାଉଥିଲା। ଏହାହିଁ ମନ୍ଦିର ସ୍ଥାପତ୍ୟର ନଗର ରୀତି। ନାଗରୀରେଖା ବା ଶିଖରର ବକ୍ରରେଖାବଳୀ ଏହି ପଦ୍ଧତିର ସ୍ମାରକ। ଅନୁରୂପ ଭାବରେ ନାଗରୀ ଲିପି ବା ଉତ୍ତର ଦେଶୀୟ ଲିପିର ଉଦ୍ଭବ। ଏହାର ତତ୍ତୁଲ୍ୟ ଧାରା ଦାକ୍ଷିଣାତ୍ୟର ପ୍ରସିଦ୍ଧ ନନ୍ଦିନଗର (ଆଧୁନିକ ନନ୍ଦେର)ରେ ଲକ୍ଷ୍ୟ କରାଯାଇପାରେ। ଏହି ନନ୍ଦିନଗର ପ୍ରଥମେ ବାକାଟକଙ୍କର ରାଜ୍ୟ ଥିଲା ଓ ପରେ ରାଷ୍ଟ୍ରକୂଟମାନଙ୍କ ଦ୍ୱାରା ଶାସିତ ହୋଇଥିଲା।" (Indian system of writing, ପବ୍ଲିକେଶସନ ଡିଭିଜନ୍, ଭାରତ ସରକାର ୧୯୬୬, ପୃ.୧୫) ନାଗରୀ (ବା ଦାକ୍ଷିଣାତ୍ୟରେ ଆଞ୍ଚଳିକ ଷ୍ଟାଣ୍ଡାର୍ଡ


ବ୍ରାହ୍ମୀ ଲିପି ବିକାଶ ପ୍ରଦର୍ଶକ ଚାର୍ଟ
ଅଶୋକ କାଳୀନ ବ୍ରାହ୍ମୀ— ଖ୍ରୀ: ପୂ: ୩ୟ ଶତକ
ଶୁଙ୍ଗ କାଳୀନ ବ୍ରାହ୍ମୀ – ଖ୍ରୀ: ପୂ: ୨ୟ ଶତକ
କୁଷାଣ କାଳୀନ ବ୍ରାହ୍ମୀ— ଖ୍ରୀ: ପ୍ରଥମ ଶତକ
ଗୁପ୍ତଲିପି
( ଉତ୍ତର ଭାରତ, ଖ୍ରୀ: ୪ର୍ଥ-୫ମ ଶତକ )
ସିଦ୍ଧ ମାତୃକା, ସିଦ୍ଧାନ ଲିପି
କମ୍ମା କୁଟିଳ ଲିପି ( ପ୍ରବହମାନ ଗୁପ୍ତଲିପି )
( ଖ୍ରୀ: ୬ଷ୍ଠ-୭ମ ଶତକ )
ପୂର୍ବ
ଓଡ଼ିଆ
ବଙ୍ଗଳା
ଆସାମିଆ
ମୈଥିଳ
ନେଓ୍ୱାରୀ
ମଧ୍ୟ
ନାଗରୀ
ନନ୍ଦନାଗରୀ
୮ମ ଶତକ
ଦେବନାଗରୀ
୧୦ମ ଶତକ
ଉତ୍ତର
କୁମ୍ପା
ଉତ୍ତର ପଶ୍ଚିମ
ଶାରଦା
ଗୁରୁମୁଖୀ
ପଶ୍ଚିମ
କଇଥି
ଗୁଜରାଟୀ
ପଲ୍ଲବ ଲିପି
( ଦାକ୍ଷିଣାତ୍ୟ, ଖ୍ରୀ: ୭ମ ଶତକ )
ତେଲୁଗୁ
କନ୍ନଡ଼
ମାଲୟାଲମ୍
ତାମିଲ
ଗ୍ରନ୍ଥ
ବଟ୍ଟେଳୁତ୍ତୁ
( ପାଣ୍ଡ୍ୟ )
କୋଲଓଳୁତ୍ତୁ
( ପଲ୍ଲବଗ୍ରନ୍ଥ )

ରୂପେ ବିବେଚିତ) ନନ୍ଦିନଗରରୁ ବ୍ୟୁତ୍ପନ୍ନ। ସମଗ୍ର ଦାକ୍ଷିଣାତ୍ୟରେ ନନ୍ଦିନଗର, ନନ୍ଦିନଗରୀ ରୂପେ ପରିଚିତ। ନାଗରୀ ଲିପିର ଏ ଦୁଇଟି ପ୍ରଧାନ ଆଞ୍ଚଳିକ ବିଭେଦକୁ ଛାଡ଼ି ଦେଲେ ସ୍ୱଳ୍ପ ରୂପାନ୍ତରଣ ସହ ବହୁପ୍ରକାରର ନାଗରୀ ପ୍ରଚଳିତ ଥିଲା। ସୁତରାଂ ଦେବନାଗରୀର ସିଲାଇଟ୍ ନାଗରୀ ରୂପ ସିଲହଟରେ ମୁସଲମାନମାନେ ବ୍ୟବହାର କରିଥାନ୍ତି। ମୈଥେଇ ବା ମଣିପୁରୀ ବ୍ରାହ୍ମୀ ଆଉ ଏକ ପ୍ରଶାଖା। ଏହା କେତେକାଳ ପର୍ଯ୍ୟନ୍ତ ବିଚ୍ଛିନ୍ନ ଭାବରେ ରହିଥିଲା। କିନ୍ତୁ ପର୍ଯ୍ୟାୟକ୍ରମେ ଧୀରେଧୀରେ ବଙ୍ଗଳା ଏହାର ସ୍ଥାନ ଗ୍ରହଣ କଲା।

ବ୍ରାହ୍ମୀଲିପି କିପରି ବିକଶିତ ହୋଇଛି, ତାର ଯଥାଯଥ ପ୍ରଦର୍ଶନ କରିବା ପାଇଁ ଏକ ଚାର୍ଟ ପ୍ରଦତ୍ତ ହୋଇଛି।

ଏଗୁଡ଼ିକର ବିକାଶ ସମ୍ପର୍କରେ କେତେକ ମନ୍ତବ୍ୟ ପ୍ରଦାନ କରାଯାଇଛି। ଏଣୁ ଏ ବିଷୟରେ ଆଉ ସବିଶେଷ ଆଲୋଚନା କରିବାର ଆବଶ୍ୟକତା ନାହିଁ। ତେବେ ଏଠାରେ ସୂଚେଇ ଦିଆଯାଇପାରେ ଯେ, ଦକ୍ଷିଣ ଭାରତରେ ସଂସ୍କୃତ ଲେଖାକୁ ଲିପିବଦ୍ଧ କରିବାପାଇଁ ଗ୍ରନ୍ଥଲିପି ବ୍ୟବହୃତ ହେଉଥିଲା ଓ ଏ ତଥ୍ୟର ନାମକରଣ ପାଇଁ ନାମ ତାଲିକା ପ୍ରସ୍ତୁତ କରାଗଲା।

## ଲିପି ଶିକ୍ଷାଦାନ

ଶିଶୁ କିମ୍ବା ପ୍ରୌଢ଼ମାନଙ୍କର ଲିପି ଶିକ୍ଷା ପ୍ରତି ଯେପରି ଧ୍ୟାନଦେବା ଦରକାର, ସେପରି ଧ୍ୟାନ ଦିଆଯାଉ ନାହିଁ। ଯଦିବା ଯାହା କିଛି କରାଯାଇଛି, ତାହା କେବଳ ପାରମ୍ପରିକ ବର୍ଣ୍ଣମାଳାଗତ ସଜ୍ଜୀକରଣର ସଂରକ୍ଷଣ ମାତ୍ର। ପ୍ରଚଳିତ ଧାରାରେ କେବଳ ମାତ୍ର ତିନୋଟି ବ୍ୟତିକ୍ରମ ହିଁ ବିଶେଷ ଉଲ୍ଲେଖନୀୟ। ଶୈକ୍ଷିକ ଉପସ୍ଥାପନା ପାଇଁ ଏହି ତିନୋଟିଯାକ ପ୍ରକ୍ରିୟାଦ୍ୱାରା ଲିପିମାନଙ୍କର ଆକାରଗତ ଧର୍ମକୁ ନିର୍ଦ୍ଧାରଣ କରାଯାଏ। ଲକ୍ଷ୍ନୌର ଲିଟନାରୀ ହାଉସଦ୍ୱାରା ପ୍ରକାଶିତ ବର୍ଣ୍ଣ ପରିଚୟରେ ପ୍ରୌଢ଼ମାନଙ୍କୁ 'ନୟାସବେରା' ଧରଣର ଦେବନାଗରୀ ଲିପିର ପ୍ରବର୍ତ୍ତନ କରିବା ନିମିତ୍ତ ଡକ୍ଟର ପି.ବି ପଣ୍ଡିତ ଚେଷ୍ଟା କରିଛନ୍ତି। ପ୍ରୌଢ଼ମାନଙ୍କ ପାଇଁ ରଚିତ 'ହାମାରା ଜୀବନ' ନାମକ ଏକ ପ୍ରାଥମିକ ପୁସ୍ତକରେ ଶ୍ରୀମତୀ ହେଲେନ ବଟ ଅନୁରୂପ ଭାବେ ଦ୍ୱିତୀୟ ଥର ପାଇଁ ପଦକ୍ଷେପ ନେଇଛନ୍ତି। ଏହି ଦୁଇ ପ୍ରକ୍ରିୟାରେ ଆକାରଗତ ଅନୁରୂପ ଅଭିଲକ୍ଷଣକୁ ବିଚାରକୁ ନିଆଯାଇଛି। କିନ୍ତୁ ଅନୁରୂପ ଅଭିଲକ୍ଷଣଗୁଡ଼ିକୁ ଏପରି ଭାବେ ରଖାଯାଇଛି ଯେ ଦୁଇଟି ଏକତ୍ର ଆସିବ ନାହିଁ। ବିଭ୍ରାନ୍ତିକୁ ଦୂର କରିବା ପାଇଁ ଏହା କରାଯାଇଥାଏ। ବାସ୍ତବରେ ଏହା ଆକାରଗତ ସାଦୃଶ୍ୟର ନେତିବାଚକ ପ୍ରୟୋଗକୁ କାର୍ଯ୍ୟକାରୀ କରିଥାଏ। ବସ୍ତୁତଃ ତା'ର ନିଟ୍‌ଫଳ ହୁଏ ସ୍ଥାନ ବିପର୍ଯ୍ୟୟ। ପାରମ୍ପରିକ ପଦ୍ଧତିରେ ଅନୁରୂପ ଅଭିଲକ୍ଷଣଗୁଡ଼ିକ ପ୍ରାୟଶଃ ଯେପରି ଲକ୍ଷିତ ନହୁଏ, ସେଥିପ୍ରତି ଦୃଷ୍ଟିଦେବାକୁ ହେବ। ଉପରେ ସୂଚିତ ହୋଇଥିବା ତୃତୀୟ ବ୍ୟତିକ୍ରମଟି ଭାରତୀୟ ବିଦ୍ୟାର

ଆମେରିକୀୟ ପ୍ରତିଷ୍ଠାନଦ୍ୱାରା ସମ୍ପାଦିତ ହୋଇଛି। ବିଦେଶୀ ପ୍ରୌଢ଼ଦଳଙ୍କୁ ହିନ୍ଦୀ ଶିକ୍ଷାଦାନରେ ମୁଁ ସଂପୂର୍ଣ୍ଣଭାବେ ଅକ୍ଷରାବଳୀର ଆକାରଗତ ସାଦୃଶ୍ୟ ବିନିଯୋଗ କରିଛି। ପ୍ରଭେଦାତ୍ମକ ଭାଷାବିଜ୍ଞାନଗତ ନିୟମାବଳୀର ପ୍ରସାରପୂର୍ବକ ଯେଉଁ ବର୍ଣ୍ଣଗୁଡ଼ିକୁ ଆକାରଗତ ସାଦୃଶ୍ୟ ହେତୁ ଏକତ୍ର ଉପସ୍ଥାପନ କରାଯାଏ, ତାହା ଛାତ୍ରମାନଙ୍କର ଦୃଷ୍ଟି ଆକର୍ଷଣ କରେ। ସାଦୃଶ୍ୟ ଓ ବୈସାଦୃଶ୍ୟ ଛାତ୍ରମାନଙ୍କୁ ପୃଥକ୍‌କରିଥାଏ। ବହୁ ଶ୍ରେଣୀ ପ୍ରକୋଷ୍ଠଗତ ପ୍ରୟାସ ପରେ ମୁଁ ଦୁଇଟି ସିଦ୍ଧାନ୍ତରେ ଉପନୀତ ହେଲି। ଲିପିଟି ଶିକ୍ଷାଦେବା ଅପେକ୍ଷାକୃତ ସହଜ। ଯଥାଯଥ ଭାବରେ ଦେବନାଗରୀ ଲିପିର ଶିକ୍ଷା ଦେବାର ବ୍ୟବସ୍ଥା ଯଦି କରାଯାଏ, ତେବେ ଛଅ ଘଣ୍ଟାରୁ ଅଧିକ ସମୟ ଲାଗିବନାହିଁ। ସେହି ଏକ ନିୟମକୁ ଅନୁସରଣ କରି 'A Programmed Introduction to the Reading and writing of Oriya' ନାମକ ଖଣ୍ଡିଏ ପୁସ୍ତକକୁ ଦୁଇଭାଗ କରି ରଚନାକରିଛି। ଏହା ଶିକ୍ଷାର୍ଥୀମାନଙ୍କ ଦ୍ୱାରା ବ୍ୟବହୃତ ହୋଇ ଉତ୍ତମ ଫଳଦେଇଛି। ଏ ସମସ୍ତ ପରୀକ୍ଷଣର ଫଳାଫଳରୁ ମୁଁ ସିଦ୍ଧାନ୍ତ ନେଇ କହିପାରେ ଯେ ଦଳରେ ଅନୁରୂପ ଅଭିଲକ୍ଷଣଗୁଡ଼ିକ ପ୍ରତିଫଳିତ ହେବା ଏକ କଳ୍ପନା ମାତ୍ର ଏବଂ ଏହା ହୁଏତ ଶିକ୍ଷକଙ୍କର ଭ୍ରମପୂର୍ଣ୍ଣ ଉପସ୍ଥାପନା ଦ୍ୱାରା ହୋଇଥାଇପାରେ। ମୋର ଛୋଟ ଛୋଟ ପିଲାଙ୍କୁ ଶିକ୍ଷାଦାନ କରିବାର ଅଭିଜ୍ଞତା ନାହିଁ, ମୁଁ କେବଳ ପରିଣତମାନଙ୍କ ବିଷୟରେ କହିପାରିବି କିନ୍ତୁ ମୁଁ ସନ୍ଦେହ କରୁଛି ଯେ ଏହା ମଧ୍ୟ ପିଲାଙ୍କ ପକ୍ଷେ ସତ୍ୟ ହେବ। ଏ ବିଷୟରେ ଆହୁରି ଅଧିକ ଆନୁଭାବିକ ପ୍ରମାଣ ଆବଶ୍ୟକ। ଯାହାଫଳରେ ଏକ୍ଷେତ୍ରରେ ଗବେଷଣା କରୁଥିବା ବିଦ୍ୱାନମାନେ ଏ ସମ୍ପର୍କରେ ଅଧିକ ତଥ୍ୟ ଜାଣି ପାରିବେ। ଲିପି ଶିକ୍ଷାଦାନର ସହାୟତା ପାଇଁ ଗବେଷଣାର ଆଉଏକ ପରିସର ଗଢ଼ି ଉଠିଛି, ବୈଜ୍ଞାନିକ ପଠନ କାର୍ଯ୍ୟକ୍ରମର ବିକାଶ ଲିପି ଜରିଆରେ ସମ୍ବାଦ ପ୍ରେରଣଦ୍ୱାରା ବାଧାପ୍ରାପ୍ତ ହେଉଛି। ଭାରତର ବହୁ ବିମୀୟ ସଂସ୍କୃତି ଭାରତର ବଭିନ୍ନ ଭାଷାର ସାହିତ୍ୟ ମଧ୍ୟରେ ଅଭିବ୍ୟକ୍ତ। ଏହା ସାଧାରଣ ଭାବେ ଲୋକଙ୍କୁ ସ୍ଥଳାଭିଷିକ୍ତ କରିଦିଏ ଏବଂ ବିଶେଷତଃ ଶିକ୍ଷିତ ଲୋକମାନଙ୍କୁ ବହୁଭାଷୀ ନକଲେ ମଧ୍ୟ ଦ୍ୱିଭାଷୀ କରିପକାଏ। ଏସବୁ ଅବସ୍ଥା ହେତୁ କ୍ଷୁଦ୍ର ଧରଣର ଏକ ଆନୁଭବିକ ଗବେଷଣା ଆରମ୍ଭ କରାଯିବା ଦରକାର। ତାହାହେଲେ ଆଖିର ଗତି କିପରି ସଂଚାଳିତ ହେବ ଏବଂ ପଠନ ବେଗ କିପରି ଲିଖନ ପଦ୍ଧତି ସହିତ ଯୋଗ କରାଯିବ ପୁନଶ୍ଚ କେତେ ପରିମାଣରେ ସଂପୃକ୍ତ ଓ ଅସଂପୃକ୍ତ ପଦ୍ଧତି ଗୋଟିକରୁ ଅନ୍ୟଟିକୁ ସଂଚାଳିତ ହୋଇ ହସ୍ତକ୍ଷେପ ଘଟଣାକୁ ପ୍ରଶ୍ରୟ ଦେବ, ତାହା ଜଣାପଡ଼ିବ।

ଏହି ସଂକଳିତ ପ୍ରବନ୍ଧଟି ନିମ୍ନଲିଖିତ ଅନୁବାଦିତ ପୁସ୍ତକରୁ ସଂଗୃହୀତ ହୋଇଛି: (Aspects of Applied Linguistics- ପ୍ରାୟୋଗିକ ଭାଷା ବିଜ୍ଞାନର ଦିଗବିଦିଗ

ମୂଳ ରଚନା- ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ

ଅନୁବାଦ- ଡକ୍ଟର ଶରତ ଚନ୍ଦ୍ର ପ୍ରଧାନ)



# ଓଡ଼ିଆ ଲିପିର ଇତିବୃତ୍ତ
## ବିଜୟ ପ୍ରସାଦ ମହାପାତ୍ର

ପ୍ରତ୍ୟେକ ଭାଷାର ଲିପି ଥିବା ଆବଶ୍ୟକୀୟ ବା ଅନିବାର୍ଯ୍ୟ ନୁହେଁ। ପୃଥିବୀରେ ତଥା ଭାରତବର୍ଷରେ ବହୁ ଭାଷା ଚଳନ୍ତି, ଯେଉଁଗୁଡ଼ିକର ଏ ପର୍ଯ୍ୟନ୍ତ ବି ନିଜସ୍ୱ ଲିପି ନାହିଁ। ଓଡ଼ିଶାରେ ବି ଜୁଆଙ୍ଗ, ଖଡ଼ିଆ, ସଉରା, ହୋ, କୁଇ, କୁଡୁଖ ପରି ଅନେକଗୁଡ଼ିଏ ଆଦିବାସୀ ଭାଷା ଚଳନ୍ତି, ଯେଉଁମାନଙ୍କୁ ଲେଖିବା ପାଇଁ ନିର୍ଦ୍ଦିଷ୍ଟ ଲିପି ବ୍ୟବହୃତ ହୁଏ ନାହିଁ। ଗୋଟିଏ ଲିପିରେ ଯେ କେବଳ ଗୋଟିଏ ଭାଷା ଲେଖାଯାଇ ପାରେ ବା ଲେଖିବା ବିଧେୟ, ସେପରି ନୁହେଁ। ଓଡ଼ିଶାରେ ଓଡ଼ିଆ ଲିପିରେ ସଂସ୍କୃତ ଓ ଓଡ଼ିଆ, ଦୁଇଟିଯାକ ଭାଷା ସ୍ୱଚ୍ଛନ୍ଦରେ ଲିଖିତ ହୋଇଥାନ୍ତି। ମରାଠୀ ଓ ହିନ୍ଦୀ ଭାଷା ଉଭୟ ଲିଖିତ ହୋଇଥାନ୍ତି ନାଗରୀ ଲିପିରେ। ସିନ୍ଧୀ, କାଶ୍ମୀରୀ, ଉର୍ଦ୍ଦୁ ଆରବିକ୍ ହରଫରେ। ସେହିପରି ବଙ୍ଗଳା ଓ ଅସମୀୟା ଭାଷା ପାଇଁ ଚଳେ ଗୋଟିଏ ଲିପି। ସମଗ୍ର ୟୁରୋପ ମହାଦେଶରେ ଇଂରାଜୀ, ଫ୍ରେଞ୍ଚ, ଜର୍ମାନ୍, ଇଟାଲିଆନ୍, ସ୍ପାନିଶ୍, ଡ୍ୟାନିଶ୍, ଡଚ୍ ଆଦି ଅନେକଗୁଡ଼ିଏ ସ୍ୱତନ୍ତ୍ର ଭାଷା ଗୋଟିଏ ରୋମାନ୍ ହରଫରେ ଲିଖିତ ହୋଇଥାନ୍ତି। ଅପରପକ୍ଷେ, ଗୋଟିଏ ଭାଷା ଏକାଧିକ ଲିପିରେ ଲିଖିତ ହେଉଥିବା ମଧ୍ୟ କିଛି ବିରଳ ନୁହେଁ। ସଂସ୍କୃତ ଭାଷା ଭାରତର ବିଭିନ୍ନ ପ୍ରାନ୍ତରେ ବିଭିନ୍ନ ଲିପିରେ ଲେଖାଯାଇଥାଏ। ପଞ୍ଜାବୀ ଭାଷାର ଏବେ ସୁଦ୍ଧା ଦୁଇଟି ଲିପି, ଯଥା- ଗୁରୁମୁଖୀ ଓ ଆରବିକ୍‌ରେ ଲିଖିତ ହେଉଛି- ଭାରତରେ ଗୁରୁମୁଖୀ ଓ ପାକିସ୍ତାନରେ ଆରବିକ୍। କୋଙ୍କଣୀ ଭାଷା ମହାରାଷ୍ଟ୍ରରେ ନାଗରୀ ଲିପି, କେରଳରେ ମଲୟାଲମ ଲିପି, କର୍ଣ୍ଣାଟକରେ କନ୍ନଡ଼ ଲିପି ଓ ଗୋଆରେ ରୋମାନ୍ ଲିପିରେ ଲିଖିତ ହୋଇଥାଏ।

ଏହା ସମ୍ଭବ ହେଉଛି, କାରଣ ଭାଷା ସହିତ ଲିପିର ସମ୍ବନ୍ଧ ହେଉଛି ବାହ୍ୟ - ଯେପରି ଦେହ ସହିତ ପୋଷାକର। ଭାଷା ଯଦି ଶରୀର ହୁଏ, ଲିପି ହେଉଛି ତା'ର ଆବରଣ। ଗୋଟିଏ ଜାମାକୁ ଯେପରି ବହୁଲୋକ ପିନ୍ଧିବାରେ କୌଣସି ବାଧା ନାହିଁ, ସେହିପରି ଗୋଟିଏ ଲୋକ ଏକାଧିକ ଜାମା ପିନ୍ଧିବା ମଧ୍ୟ ସମ୍ଭବ। ତେବେ ଜାମା ଯଦି ଦେହ ମାପରେ ସିଲାଇ କରା ହୋଇନଥାଏ, ଅର୍ଥାତ୍ ବେଶୀ ଢିଲା କି କଷ୍ଟ ହୁଏ, ଏହା

ମାଗି ଆଣିଲା ପରି ଦିଶେ ବା ଅନୁପଯୁକ୍ତ ମନେହୁଏ। ଭାଷା ପାଇଁ ଲିପିର ଏହି ଗୌଣ ଭୂମିକା ସତ୍ତ୍ୱେ, ସାଧାରଣ ଲୋକଙ୍କର ଧାରଣା ଯେ, ଯେଉଁ ଭାଷାର ଲିପି ନାହିଁ ବା ଯେଉଁ ଭାଷା ଲିଖିତ ଆକାରରେ ପ୍ରତିଷ୍ଠିତ ନୁହେଁ, ତାହା 'ଭାଷା' ପଦବାଚ୍ୟ ନୁହେଁ। ଏହା ଏକ ତୁଚ୍ଛ 'ଡାଇଲେକ୍ଟ' ବା 'ବୋଲି'। ଏହା, ଯେଉଁ ମଣିଷ ଲୁଗା ପିନ୍ଧନ୍ତି ନାହିଁ ବା ଯେଉଁମାନଙ୍କର ଲୁଗା ନାହିଁ, ସେମାନଙ୍କୁ 'ଅଣମଣିଷ' କହିବା ସଙ୍ଗେ ସମାନ। ଅବଶ୍ୟ ଆମେ ମାନବ ସଭ୍ୟତାର ଯେଉଁ ପର୍ଯ୍ୟାୟରେ ଆସି ପହଞ୍ଚିଛେ, ସେ ପର୍ଯ୍ୟାୟରେ ଦେହକୁ ଢାଙ୍କିବା ପାଇଁ ଉପଯୁକ୍ତ ପୋଷାକ ନଥିବା ଖାଲି ଦୀନତାର ପରିଚାୟକ ନୁହେଁ, ଲୋକେ ଆମକୁ ସଭ୍ୟ ସମାଜରେ ଗଣତି ମଧ୍ୟ କରିବେ ନାହିଁ। ତେଣୁ ଭାଷା ପାଇଁ ଲିପି ଏହି ସାମାଜିକ ଦୃଷ୍ଟିରୁ ଏତେ ଅନିବାର୍ଯ୍ୟ ହୋଇପଡ଼ିଛି। ତେବେ ଆମକୁ ସର୍ବାଦୌ ମନେ ରଖିବାକୁ ହେବ ଯେ, ଭାଷା ପାଇଁ ଲିପି, ଲିପି ପାଇଁ ଭାଷା ନୁହେଁ।

ଜନ୍ମରୁ କେହି ପୋଷାକ ପିନ୍ଧିନଥାଏ। ଭାଷା କ୍ଷେତ୍ରରେ ମଧ୍ୟ ସେୟା। ଭାଷା ଜନ୍ମ ହୋଇ ପ୍ରତିଷ୍ଠିତ ହେଲା ପରେ ଏହାକୁ ଲେଖିବାର ଚେଷ୍ଟା ଦେଖାଦିଏ। ଦେବ ଭାଷା ସଂସ୍କୃତ ବି ବହୁକାଳ 'ସ୍ମୃତି'ର ପର୍ଯ୍ୟାୟରେ ରହି ଶେଷକୁ ଲିପିବଦ୍ଧ ହୋଇଛି। ଭାଷା ପାଇଁ ଲିପି ମୁଖ୍ୟତଃ ଦୁଇଟି ପଥ ଦେଇ ଆସିପାରେ -- ଗୋଟିଏ ହେଉଛି ବିବର୍ତ୍ତନର ପଥ ଓ ଅନ୍ୟଟି ଉଦ୍‌ଭାବନର ପଥ। ଗୋଟିଏ ଭାଷା ଯେତେବେଳେ ପ୍ରତିଷ୍ଠିତ ହୁଏ, ସେ ପ୍ରଚଳିତ ଲିପିମାନଙ୍କ ମଧ୍ୟରୁ ଗୋଟିକୁ ବା ଏକାଧିକ ଲିପିକୁ ଆଶ୍ରୟ କରିବାକୁ ଚେଷ୍ଟା କରିଥାଏ। ଏହା ଭାଷାର ପ୍ରଚେଷ୍ଟା ସମୟ। ଶେଷକୁ ଯେଉଁ ଲିପିଟି ଉକ୍ତ ଭାଷାର ବିବର୍ତ୍ତନ ସହିତ ତାଳ ରଖି ନିଜେ ବିବର୍ତ୍ତିତ ହୋଇଥାଏ, ସେ ହୁଏ ସେଇ ଭାଷାର ଲିପି। ଭାଷା ଓ ଲିପି ପରସ୍ପର ଠାରୁ ଅଭିନ୍ନ ହୋଇପଡ଼ନ୍ତି। ଅନ୍ୟପକ୍ଷରେ, ଗୋଟିଏ ଭାଷା ପାଇଁ କୌଣସି ଏକ ଭାଷା ଅନୁଷ୍ଠାନ ବା ଭାଷାବିତ୍ ଏକ ନିର୍ଦ୍ଦିଷ୍ଟ ଲିପି ଉଦ୍‌ଭାବନ କରି, ସେ ଲିପିରେ ଉକ୍ତ ଭାଷାକୁ ଲେଖିବାର ପରମ୍ପରା ସୃଷ୍ଟି କରନ୍ତି, ଯେପରି ସାନ୍ତାଳୀ ଗୁରୁ ରଘୁନାଥ ମୁର୍ମୁ 'ଓଲିଚିକି' ନାମକ ଏକ ଲିପି ଉଦ୍ଭାବନ କରି ସେଥିରେ ସାନ୍ତାଳୀ ଭାଷାକୁ ଲେଖିବାର ପରମ୍ପରା ସୃଷ୍ଟି କଲେ। ଏହା ୧୯୫୦ରୁ ୬୦ ମସିହା ଭିତରେ ଘଟିଥିବା ଏକ ନିର୍ଦ୍ଦିଷ୍ଟ ସମୟର ଘଟଣା। ଏହି ଦଶକରେ ଜଣେ ନିର୍ଦ୍ଦିଷ୍ଟ ବ୍ୟକ୍ତି ଗୋଟିଏ ନିର୍ଦ୍ଦିଷ୍ଟ ଭାଷା ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ଲିପି ଉଦ୍ଭାବନ କରି ତା'କୁ ପ୍ରଚଳିତ କରାଇଥିଲେ। ଓଡ଼ିଆ ଲିପି କିନ୍ତୁ ଏ ସୂତ୍ରରେ ସୃଷ୍ଟି ହୋଇନାହିଁ, ଅର୍ଥାତ୍ ଏହା ଏକ ଉଦ୍ଭାବନ ନୁହେଁ। ଅଧ୍ୟାପକ କୁଞ୍ଜବିହାରୀ ତ୍ରିପାଠୀଙ୍କ 'ଓଡ଼ିଆ ଭାଷା ଓ ଲିପିର ବିବର୍ତ୍ତନ' ଗ୍ରନ୍ଥରୁ ବୁଝାଯାଏ ଯେ, ପ୍ରଚଳିତ ଓଡ଼ିଆ

ଲିପି ବା ଯେଉଁ ଲିପିରେ ବର୍ତ୍ତମାନ ଓଡ଼ିଆ ଭାଷା ଲେଖାଯାଏ, ତାହା ତତ୍‌କାଳୀନ ପ୍ରାଚୀନ ଲିପିଗୁଡ଼ିକର ସାହାଯ୍ୟରେ ଓଡ଼ିଆ ଭାଷାକୁ ଲେଖିବାର ଚେଷ୍ଟାରୁ ଆରମ୍ଭ ହୁଏ ଓ ପରିବର୍ତ୍ତନର ବିଭିନ୍ନ ସୋପାନ ଅତିକ୍ରମ କରି ଏ ଅବସ୍ଥାରେ ଆସି ପହଞ୍ଚେ। ଏହି ପ୍ରଚେଷ୍ଟା ପ୍ରାୟ ଏକାଦଶ ଶତାବ୍ଦୀରୁ ବା ଓଡ଼ିଆ ଇତିହାସର ଗଙ୍ଗବଂଶ ରାଜତ୍ୱ କାଳର ସାମାନ୍ୟ ପୂର୍ବରୁ ଆରମ୍ଭ ହୋଇଥିବାର କିଛି କିଛି ପ୍ରମାଣ ମିଳେ। ଓଡ଼ିଆ ଲିପିର ଆରମ୍ଭ ପ୍ରାୟ ନଅଶହ ବର୍ଷ ତଳେ ହୋଇଥିଲା ବୋଲି ଧରିନିଆଗଲେ, ଓଡ଼ିଆ ଭାଷାର ଆରମ୍ଭ ତା'ର ବେଶ୍ କିଛି ଶତକ ପୂର୍ବରୁ ହୋଇଥିବା ସ୍ୱାଭାବିକ୍।

ଡ. ତ୍ରିପାଠୀଙ୍କ ଶୋଧପ୍ରବନ୍ଧ ବା ସନ୍ଦର୍ଭର ଓଡ଼ିଆ ଲିପି ବିଭାଗଟିକୁ ପ୍ରଥମେ ନିଆଯାଉ। ଓଡ଼ିଆ ଲିପିର ଏହି ନ'ଶହ ବର୍ଷର ଇତିହାସର ଉପାଦାନ କ'ଣ ? ଆମେ ଜାଣୁ ଯେ, ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଯେତେବେଳେ ଓଡ଼ିଶାରେ ମୁଦ୍ରଣ ଯନ୍ତ୍ର ପ୍ରବେଶ କଲା ଓ ଓଡ଼ିଆ ଲିପି ଛାପା ଆକାରରେ ପ୍ରକାଶ ପାଇଲା, ସେ ପର୍ଯ୍ୟନ୍ତ ଓଡ଼ିଆ ଲିପି ହାତରେ ଲେଖା ହେଉଥିଲା - ସେ ଲେଖନୀ ମୁନରେ ତାଳପତ୍ର ଉପରେ ହେଉ ବା କାଳି କଲମରେ କାଗଜ ଉପରେ ହେଉ। ଓଡ଼ିଆ ଲିପିକୁ ଛାପାର ଉପଯୋଗୀ କରିବା ପାଇଁ ଓଡ଼ିଆ ଲେଖାକୁ ରାତାରାତ ନାନା ଭାବେ ବଦଳିବାକୁ ହେଲା। ଓଡ଼ିଆ ଲିପିର ବିବର୍ତ୍ତନ କ୍ଷେତ୍ରରେ ଏହା ଏକ ସନ୍ଧିକ୍ଷଣ, ଯାହାକୁ ଧରି ଓଡ଼ିଆ ଲିପିର ଦୁଇଟି କାଳ ଚିହ୍ନିତ କରାଯାଇପାରେ- ଛାପା ଯୁଗ ଓ ହାତ ଲେଖା ଯୁଗ। ଛାପା ଯୁଗରେ ଓଡ଼ିଆ ଲିପିର ବିବର୍ତ୍ତନ ଏକ ସ୍ୱତନ୍ତ୍ର ଅଧ୍ୟୟନର ବିଷୟ। ଛାପାଯୁଗରେ ଯେ ହାତ ଲେଖା ହେଉନଥିଲା ଏପରି ନୁହେଁ, କିନ୍ତୁ ହାତଲେଖା ଯୁଗ କହିଲେ ଓଡ଼ିଆ ଲିପିର ଆଦିକାଳରୁ ଓଡ଼ିଆରେ ଛାପାଯୁଗର ଆରମ୍ଭ ପର୍ଯ୍ୟନ୍ତ ଧରିବାକୁ ପଡ଼ିବ।

ହାତ ଲେଖା ଯୁଗରେ ଓଡ଼ିଆ ଲିପି ମୁଖ୍ୟତଃ ଦୁଇଟି ମାଧ୍ୟମରେ ସଂରକ୍ଷିତ ହୋଇଛି- ତାଳପତ୍ର (ଅନେକ ପରେ କାଗଜ) ଓ ପଥର ବା ଧାତୁ। ପଥର ଓ ଧାତୁ ଅପେକ୍ଷା ତାଳପତ୍ର ଯଦିଓ ଅନେକ ବେଶୀ କ୍ଷୟଶୀଳ, ତଥାପି ତାଳପତ୍ର ଲେଖାର ପ୍ରଚଳନ ଓଡ଼ିଶାରେ ଏତେ ବହୁଳ ଓ ବ୍ୟାପକ ଯେ, ଓଡ଼ିଆ ଲିପିତାତ୍ତ୍ୱିକ ଅଧ୍ୟୟନରେ ଏହାର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି। ଓଡ଼ିଆ ଠାରୁ ଶହ ଶହ ବର୍ଷରେ ପ୍ରାଚୀନ ତାମିଲ, ତେଲୁଗୁ ଇତ୍ୟାଦି ଭାଷା ଯେତେବେଳେ ଏହି ତାଳପତ୍ର ପୋଥିରୁ ସେମାନଙ୍କର ଐତିହାସିକ ଉପାଦାନ ସଂଗ୍ରହ କରିପାରୁଛନ୍ତି, ଓଡ଼ିଆ କ୍ଷେତ୍ରରେ ତାହା ସମ୍ଭବ ନହେବ କାହିଁକି ? ପାଞ୍ଚ ଛ' ଶହ ବର୍ଷ ତଳର ପ୍ରାଚୀନ ଓଡ଼ିଆ ପୋଥି ଉଦ୍ଧାର କରିବା ଆଦୌ ଅସମ୍ଭବ ନୁହେଁ। କିନ୍ତୁ

ତାଳପତ୍ର ପୋଥିର ଯଥାର୍ଥ ମୂଲ୍ୟାୟନ ହେଉନଥିବାରୁ ଓ ସେଗୁଡ଼ିକର ଯଥୋଚିତ ସଂଗ୍ରହରେ ଚେଷ୍ଟାର ଅଭାବରୁ ଏହି ଅତ୍ୟନ୍ତ ମୂଲ୍ୟବାନ ଭଣ୍ଡାରଟି ଚିରଦିନ ପାଇଁ ନଷ୍ଟ ହୋଇଯାଉଛି। ଡ. ତ୍ରିପାଠୀ କୁହନ୍ତି - ପ୍ରାଚୀନ ଓଡ଼ିଆ ପାଣ୍ଡୁଲିପିଗୁଡ଼ିକ କୀଟଦଷ୍ଟ ହେତୁ ହେଉ ବା ଆର୍ଦ୍ର ଜଳବାୟୁ ହେତୁ ହେଉ, ବେଶୀ କାଳ ପର୍ଯ୍ୟନ୍ତ ସଂରକ୍ଷିତ ହୋଇପାରି ନଥାଏ। ଦ୍ୱିତୀୟରେ ପ୍ରାଚୀନ ପୋଥିଗୁଡ଼ିକର ସଂକଳନ ଓ ସମ୍ପାଦନ ବୈଜ୍ଞାନିକ ପ୍ରଣାଳୀରେ କରାଯାଉନଥିବାରୁ, ଏଗୁଡ଼ିକରେ ମୂଳ ପୋଥିର ଭାଷାଗତ ଓ ଲେଖାଗତ ବିଶେଷତ୍ୱ କ୍ୱଚିତ୍ ରକ୍ଷିତ ହୋଇଥାଏ। ଏଗୁଡ଼ିକର ବୈଜ୍ଞାନିକ ସମ୍ପାଦନର ଘୋର ଅଭାବ ଏ ପର୍ଯ୍ୟନ୍ତ ବି ଓଡ଼ିଆ ସାହିତ୍ୟରେ ରହିଛି (ପୃ-୯)। ଏ କ୍ଷେତ୍ରରେ ଆମେ ସୂଚାଇ ଦେଇପାରୁ ଯେ, ବୋଧହୁଏ ସ୍ୱର୍ଗତ କେଦାରନାଥ ମହାପାତ୍ରଙ୍କ ଦ୍ୱାରା ସମ୍ପାଦିତ ଅର୍ଜ୍ଜୁନ ଦାସଙ୍କ ରଚିତ 'କଳ୍ପଲତା' ଏ କ୍ଷେତ୍ରରେ ଏକମାତ୍ର ବ୍ୟତିକ୍ରମ। ତେଣୁ, ଡ. ତ୍ରିପାଠୀ ମନେକରନ୍ତି ଯେ, ଓଡ଼ିଆ ଭାଷା ଓ ଲିପିର ପ୍ରକୃତ ଐତିହାସିକ ପରମ୍ପରାକୁ ଅଧ୍ୟୟନ କରିବାକୁ ହେଲେ ଓଡ଼ିଆ ଅଭିଲେଖଗୁଡ଼ିକର ଉପାଦାନଗତ ମୂଲ୍ୟକୁ (resource material) ହେଳା କରାଯାଇ ପାରିବ ନାହିଁ। ତାଙ୍କ ମତରେ ଓଡ଼ିଆରେ ମିଳୁଥିବା ଅଭିଲେଖଗୁଡ଼ିକ ଭିତରୁ କିଛି ପ୍ରାଚୀନ ଓଡ଼ିଆ କବିମାନଙ୍କର ସମସାମୟିକ ବା ବେଶ୍ ପୂର୍ବବର୍ତ୍ତୀ।

ଡ. ତ୍ରିପାଠୀଙ୍କ ବିଚାରରେ ଓଡ଼ିଆର ପ୍ରାଚୀନତମ ଅଭିଲେଖର ସମୟ ହେଉଛି ୧୦୫୧ ଖ୍ରୀଷ୍ଟାବ୍ଦ ବା ମାତ୍ର ଆଠ ନ' ଶହ ବର୍ଷ ତଳର ବିଷୟ। ତାଙ୍କ ଗ୍ରନ୍ଥର ଶେଷ ଅଭିଲେଖର ସମୟ ହେଉଛି ୧୫୬୮। ଷୋଳଶହ ଖ୍ରୀଷ୍ଟାବ୍ଦ ବେଳକୁ ଓଡ଼ିଆ ପୋଥିପତ୍ରର ଅଭାବ ନାହିଁ ଏବଂ ଏହି ସମୟର ଭାଷା ଓ ଲିପିର ଯଥେଷ୍ଟ ଉପାଦାନ ଅବଶ୍ୟ ଉପଲବ୍ଧ। ତଥାପି, ଲିପି ବା ଭାଷାର ବିବର୍ତ୍ତନ ନିର୍ଣ୍ଣୟ କରିବାରେ ସେ ପ୍ରାଚୀନ ପୋଥିଗୁଡ଼ିକର କୌଣସି ସାହଯ୍ୟ ନେଉନାହାନ୍ତି, ଏପରିକି ତୁଳନାମୂଳକ ଭାବେ ବି ନୁହେଁ। ଏହି ସନ୍ଦର୍ଭଟିର ସମସ୍ତ ଲିପିତାତ୍ତ୍ୱିକ ସିଦ୍ଧାନ୍ତ କେବଳ ଅଭିଲେଖଗୁଡ଼ିକୁ ଧରି କରାଯାଇଛି ଓ ଏହାର ସମସ୍ତ ଉପାଦାନ ଆସିଛି ଅଭିଲେଖରୁ। ଉପାଦାନର ଏହି ଆଂଶିକତା ହେତୁ ଓଡ଼ିଆ ଲିପି-ବିବର୍ତ୍ତନର ସିଦ୍ଧାନ୍ତଗୁଡ଼ିକ ଏକଦେଶଦର୍ଶୀତାରେ ଦୁଷ୍ଟ ହେବାର ଯଥେଷ୍ଟ ସମ୍ଭାବନା ରହିଛି।

ଏହାପରେ ସନ୍ଦର୍ଭଟିର ଗବେଷଣା ପଦ୍ଧତି (methodology) ଯାହାର ଅଭାବରେ କୌଣସି ସିଦ୍ଧାନ୍ତରେ ଉପନୀତ ହେବା ବୃଥା। ଡ. ତ୍ରିପାଠୀ ୧୯୫୦ ମସିହାରେ ଲଣ୍ଡନ ବିଶ୍ୱବିଦ୍ୟାଳୟର ସ୍କୁଲ ଅଫ୍ ଓରିଏଣ୍ଟାଲ ଆଣ୍ଡ ଆଫ୍ରିକାନ୍ ଷ୍ଟଡ଼ିଜ୍‌ର ଫିଲୋଲଜି ବିଭାଗରେ

ତାଙ୍କର ଗବେଷଣା ଆରମ୍ଭ କରନ୍ତି। ଏହି ବିଭାଗ ପୂର୍ବେ ଡ. ସୁନୀତି କୁମାର ଚାଟାର୍ଜୀଙ୍କ ଠାରୁ ଆରମ୍ଭ କରି ଭାରତର ବହୁ ଫିଲୋଲଜିଷ୍ଟଙ୍କର ଶିକ୍ଷା ଓ ସାଧନାର ପୀଠ ରୂପେ ଖ୍ୟାତି ଅର୍ଜନ କରିଥିଲା। କିନ୍ତୁ ୧୯୫୦ ମସିହା ବେଳକୁ ଫିଲୋଲୋଜି ପ୍ରାୟ ଏକ ଅପ୍ରଚଳିତ ବିଦ୍ୟା - ଖାଲି ଲଣ୍ଡନ୍‌ରେ ନୁହେଁ, ପୃଥିବୀରେ ସର୍ବତ୍ର। ତା' ସ୍ଥାନରେ ଆସେ ଭାଷା ବିଜ୍ଞାନ ଏବଂ ଏହା ଖାଲି ନାମରେ ପରିବର୍ତ୍ତନ ନୁହେଁ, ପରିବର୍ତ୍ତନ ଆସେ ଭାଷାକୁ ଅଧ୍ୟୟନ କରିବାର ସମସ୍ତ ପ୍ରଣାଳୀରେ। ବସ୍ତୁତଃ ଫିଲୋଲଜି ଓ ଲିଙ୍ଗୁଇଷ୍ଟିକ୍ସ ଭିତରେ ବିଷୟଗତ ପାର୍ଥକ୍ୟ ନାହିଁ- ପରିବର୍ତ୍ତନ ଆସେ ଭାଷାକୁ ଅଧ୍ୟୟନ କରିବାର ସମସ୍ତ ପ୍ରଣାଳୀ ବା theory ରେ ଏବଂ ବୈଜ୍ଞାନିକତା ଦୃଷ୍ଟିରୁ ଏହା ଏକ ବିରାଟ ପାର୍ଥକ୍ୟ। ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ। ପଞ୍ଚମ ଅଧ୍ୟାୟରେ ଡ. ତ୍ରିପାଠୀ ତତ୍ସମ- ଅର୍ଦ୍ଧ-ତତ୍ସମ-ତଦ୍ଭବର ଉଦାହରଣ ଦେଇ କହିଛନ୍ତି- 'ସାହସମଲ' ହେଉଛି ତତ୍ସମ, 'ସାସମଲ'- ଅର୍ଦ୍ଧତତ୍ସମ ଓ 'ସାମଲ' ତଦ୍ଭବ ଏବଂ ସେଥିପାଇଁ ତାଙ୍କୁ ୧୮୮୦ ଖ୍ରୀଷ୍ଟାବ୍ଦର ହର୍ନେଲି ସାହେବଙ୍କୁ ଅନୁସରଣ କରିବାକୁ ମଧ୍ୟ ପଡ଼ିଛି। ଆମେ କହୁନାହୁଁ ଯେ ଡ. ତ୍ରିପାଠୀ ଭୁଲ୍। ସେ ଠିକ୍ ହୋଇପାରନ୍ତି କିନ୍ତୁ କେହି ଯଦି ପ୍ରଶ୍ନ କରେ 'ସାସମଲ' କାହିଁକି ଅର୍ଦ୍ଧତତ୍ସମ ଓ 'ସାମଲ' କାହିଁକି ତଦ୍ଭବ, ତା'ର ଏକ ଯଥାଯଥ ଉତ୍ତର ସେ ଦେଇ ପାରିବେ କି ? ପୁଣି ଅନ୍ୟତ୍ର, ତାଙ୍କ ନିଜ ପ୍ରଦତ୍ତ ସୂତ୍ର ଅନୁସାରେ ସଂସ୍କୃତ 'ମଲ୍ଲ' ଶବ୍ଦରୁ ଓଡ଼ିଆରେ 'ମାଲ' ହେବା ଉଚିତ ଏବଂ ହୋଇଛି ମଧ୍ୟ ତେବେ ପୁଣି 'ସାମଲ'ରେ ଏହା 'ମାଲ' ନହୋଇ 'ମଲ' ହେଲା କାହିଁକି ଓ କିପରି ? ସୂକ୍ଷ୍ମରେ ପଚାରିଲେ, ସଂସ୍କୃତରୁ ଓଡ଼ିଆ ତଦ୍ଭବ ସୃଷ୍ଟି ହେବାର ଥିଓରୀ କ'ଣ ? ସେହିପରି ସମ୍ବଲପୁରୀ ଉପଭାଷାର ଗୋଟିଏ ବୈଶିଷ୍ଟ୍ୟ ଦେଖାଇବାକୁ ଯାଇ ଠାଏ ଡ. ତ୍ରିପାଠୀ କହିଛନ୍ତି ଯେ- ସମ୍ବଲପୁରୀରେ ଶବ୍ଦାନ୍ତ ସ୍ୱରବର୍ଣ୍ଣ ଲୋପ ପାଇଥାଏ, ଯଥା- ଘର ହୁଏ ଘର୍ , ବା ଜିଭ ହୁଏ ଜିଭ୍। ଏହା ଏକ ବର୍ଣ୍ଣନାତ୍ମକ ସୂତ୍ର ଏବଂ ସମ୍ବଲପୁରୀ କ୍ଷେତ୍ରରେ ଯେ ଏହି ସୂତ୍ରର ସତ୍ୟତା ଅଛି, କେହି ତାହା ଅସ୍ୱୀକାର କରିବେ ନାହିଁ। କିନ୍ତୁ ଏହା କାହିଁକି ହୁଏ, ତା'ର କାରଣ ଦେବାକୁ ଚେଷ୍ଟାକରି ଯେତେବେଳେ ସେ ଯୁକ୍ତି ବାଢ଼ନ୍ତି ଯେ- ଶବ୍ଦର ଉପାନ୍ତ ସ୍ୱରବର୍ଣ୍ଣର (Penultimate vowel) ଉଚ୍ଚାରଣରେ 'ଜୋର' (stress) ଦିଆଯାଇଥିବାରୁ ଶବ୍ଦାନ୍ତ ସ୍ୱରର ଲୋପ ହୋଇଥାଏ, ଏହା ହୁଏ ଏକ ଅବାଞ୍ଛିତ କପୋଳକଳ୍ପିତ ମନ୍ତବ୍ୟ, ଯାହାର କୌଣସି ସ୍ଥାନ ନାହିଁ ଭାଷାବିଜ୍ଞାନରେ। କାରଣ ଏପରି ଏକ ମନ୍ତବ୍ୟ କରିବା ପାଇଁ ଧ୍ୱନିବିଜ୍ଞାନରେ (Phonetics) କୌଣସି ପ୍ରମାଣ ନାହିଁ। ପ୍ରଶ୍ନଗୁଡ଼ିକ ସାମାନ୍ୟ ମନେ ହେଉଥିଲେ ମଧ୍ୟ

ଗବେଷଣାର ପଦ୍ଧତି ଦୃଷ୍ଟିରୁ ଏହାର ଯଥେଷ୍ଟ ମୂଲ୍ୟ ଅଛି। ପ୍ରଥମେ ଭାଷା-ବିଜ୍ଞାନ ଦୃଷ୍ଟିରୁ ଭାଷା ଗୋଟିଏ ବିଶୃଙ୍ଖଳ ବା ଯଥେଚ୍ଛ ସୃଷ୍ଟି ନୁହେଁ। ସେ ଭାଷାର ବିବର୍ତ୍ତନ ହେଉ, ଭାଷାର ବ୍ୟାକରଣ ହେଉ କି ଭାଷାରେ ଆଞ୍ଚଳିକତା ହେଉ। ପ୍ରତ୍ୟେକଟି ବିଷୟ ନିର୍ଦ୍ଦିଷ୍ଟ ନିୟମ ଦ୍ୱାରା ପରିଚାଳିତ ହୋଇଥାନ୍ତି। ସେହି ନିୟମଗୁଡ଼ିକ ବା ସୂତ୍ରଗୁଡ଼ିକୁ ପ୍ରକାଶ କରିବା ଭାଷା-ଅଧ୍ୟୟନର ପ୍ରଥମ ଲକ୍ଷ୍ୟ। ଏହି ମୂଳକଥାଟିକୁ ନ ବୁଝିଲେ ଭାଷା ଅଧ୍ୟୟନରେ ପ୍ରବୃତ୍ତ ହେବା ପଣ୍ଡଶ୍ରମ। ଏହି କାରଣରୁ ହିଁ ଡ. ତ୍ରିପାଠୀଙ୍କର ଏହି ଅଧ୍ୟୟନଟି ୧୯୬୨ ମିହାରୁ ପ୍ରକାଶିତ ହେଲେ ମଧ ଏବଂ ଏହା ଇଂରାଜୀ ଭାଷାରେ ରଚିତ ହୋଇଥିଲେ ମଧ, କ୍ୱଚିତ୍ ଏହା ଭାଷାତତ୍ତ୍ୱବିଦ୍ ମାନଙ୍କ ଦୃଷ୍ଟି ଆକର୍ଷଣ କରିଛି - ସେମାନଙ୍କୁ ପ୍ରଭାବିତ କରିବା ତ ଆହୁରି ଦୂରର କଥା, ଅଧ୍ୟୟନଟିର ଅନାଦର ଓଡ଼ିଆ ବିଷୟବସ୍ତୁ ଯୋଗୁ ନୁହେଁ, କିନ୍ତୁ ବିଷୟକୁ ଉପସ୍ଥାପନ କରିବାରେ ପଦ୍ଧତିଗତ ବିଶୃଙ୍ଖଳା ହେତୁ। ଏହା ହିଁ ଏହି ଅଧ୍ୟୟନଟିର ପ୍ରଥମ ଓ ପ୍ରଧାନ ଦୁର୍ବଳତା।

ସେ ଯାହାହେଉ, ବର୍ତ୍ତମାନ ଓଡ଼ିଆ ଭାଷା ଓ ଲିପିର ଇତିହାସ କ୍ଷେତ୍ରରେ ଏ ଅଧ୍ୟୟନଟିର ଅବଦାନକୁ ପରୀକ୍ଷା କରି ଦେଖାଯାଇପାରେ। ଡଃ ତ୍ରିପାଠୀଙ୍କ ମୂଳ ଉପାଦାନ (corpus) ହେଉଛି ସର୍ବମୋଟ୍ ୭୧ଟି ଓଡ଼ିଆ ଅଭିଲେଖ, ଯାହାକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ - ଶିଳାଲେଖ ଓ ତାମ୍ରପତ୍ର। ଏହି ଅଭିଲେଖଗୁଡ଼ିକର ସମୟର ଅବଧି ହେଲା ୧୦୫୧ ଖ୍ରୀଷ୍ଟାବ୍ଦରୁ ୧୫୬୮ ଖ୍ରୀଷ୍ଟାବ୍ଦ। ତ୍ରୟୋଦଶ ଶତାବ୍ଦୀର ବା ତତ୍‌ପୂର୍ବର ଓଡ଼ିଆ ଲେଖା, ବିଶେଷ କରି ପ୍ରାଚୀନ ତାଳପତ୍ର ପୋଥି ଯଦିଓ ବିରଳ ( ? ), ତା'ପରଠାରୁ ବେଶ୍ କିଛି ପୋଥିପତ୍ର ଓଡ଼ିଆରେ ମିଳେ। ସେଥିରୁ ଯେଉଁ ସମ୍ୟକ୍ ଜ୍ଞାନ ଆମକୁ ମିଳେ, ତାହାର ଭରସାରେ ଆମେ କହିପାରୁ ଯେ, ଚଉଦଶହ ଖ୍ରୀଷ୍ଟାବ୍ଦ ବେଳକୁ ଓଡ଼ିଆ ଭାଷା ଓ ଲିପି ସମ୍ପୂର୍ଣ୍ଣ ପ୍ରତିଷ୍ଠିତ (ଦ୍ରଷ୍ଟବ୍ୟ- ଲେଖକର ଦୁଇଟି ପ୍ରବନ୍ଧ - ଓଡ଼ିଆ ପ୍ରାଚୀନ ସାହିତ୍ୟର ସମ୍ପାଦନା ଓ ଓଡ଼ିଆ ପ୍ରାଚୀନ ସାହିତ୍ୟର କାଳ ନିର୍ଣ୍ଣୟ, ଓଡ଼ିଆ ଭାଷାତାତ୍ତ୍ୱିକ ପ୍ରବନ୍ଧ, ଗ୍ରନ୍ଥମନ୍ଦିର, ୧୯୮୩)। ଅଭିଲେଖଗୁଡ଼ିକ ଯଦି ସେହି ବିକାଶର ପ୍ରମାଣ ଦେଉନଥାନ୍ତି, ସେଥିପାଇଁ ଓଡ଼ିଆ ଭାଷା ଓ ଲିପିକୁ ଦାୟୀ ନକରି ଅଭିଲେଖଗୁଡ଼ିକର ତଥ୍ୟକୁ ହିଁ ସନ୍ଦେହ ଚକ୍ଷୁରେ ଦେଖିବାକୁ ପଡ଼ିବ। ଅଭିଲେଖଗୁଡ଼ିକ ବସ୍ତୁତଃ ପୋଥିଲେଖା ଠାରୁ ନାନା ଭାବେ ଦୁର୍ବଳ। ପ୍ରଥମେ ଅଭିଲେଖଗୁଡ଼ିକର ଲେଖାଗୁଡ଼ିକର ଲେଖା ଠିକ୍ 'ଲେଖା' ନୁହେଁ, ଏହା 'ଖୋଦେଇ'। ଅନେକତ୍ର ଏହା କେବଳ ଓଡ଼ିଆମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ ବା ଅନ୍ୟ ଭାଷାଭାଷୀମାନଙ୍କ ପାଇଁ ଉଦ୍ଦିଷ୍ଟ। ତେଣୁ ସ୍ଥଳବିଶେଷରେ ଏହା ଏକାଧିକ ଲିପିରେ

ଲିଖିତ; ଏପରିକି ଭିନ୍ନ ଭାଷାଭାଷୀମାନଙ୍କ ଦ୍ୱାରା ମଧ୍ୟ ଲିଖିତ ହୋଇଥିବା ସମ୍ଭବ ଓ ଭିନ୍ନ ଭାଷାଭାଷୀ ଅଞ୍ଚଳରେ ସ୍ଥାପିତ ବା ଦତ୍ତ। ବିଷୟବସ୍ତୁ ଦୃଷ୍ଟିରୁ ଅଭିଲେଖଗୁଡ଼ିକ ଖାଲି ସୀମିତ ନୁହଁନ୍ତି, ଆକାରରେ ମଧ୍ୟ କ୍ଷୁଦ୍ର। ତା' ଛଡ଼ା ଏଗୁଡ଼ିକ ମୁଖ୍ୟତଃ ଗଦ୍ୟ ଲେଖା - ଯେଉଁ ଶୈଳୀ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ବି ଓଡ଼ିଆ ଭାଷାରେ ଦୃଢ ଭାବେ ପ୍ରତିଷ୍ଠିତ ହୋଇପାରି ନ ଥିଲା। ମାଦଳା ପାଞ୍ଜିର ଭାଷା ଏହାର ପ୍ରମାଣ। ଏପରିକି ଅଷ୍ଟାଦଶ ଶତାବ୍ଦୀର ମିଶନାରୀମାନଙ୍କ ଓଡ଼ିଆ ଗଦ୍ୟ ବି ପୂର୍ଣ୍ଣତଃ ବିକଶିତ ନୁହେଁ। ଏହି ଦୁର୍ବଳତାଗୁଡ଼ିକ ସତ୍ତ୍ୱେ ଓଡ଼ିଆ ଅଭିଲେଖଗୁଡ଼ିକ ଏ ଭାଷାର ଏକ ମହାନ୍ ସମ୍ପଦ। ଡଃ ତ୍ରିପାଠୀ ସେହି ସମ୍ପଦର ବିଧିବଦ୍ଧ ମୂଲ୍ୟାୟନରେ ବ୍ରତୀ ହୋଇ ଯେଉଁ ଦ୍ୱାର ଉଦ୍‌ଘାଟନ କରିଗଲେ, ତାହା ପରବର୍ତ୍ତୀ ସମୟରେ ବହୁ ବିଦ୍ୱାନଙ୍କୁ ପ୍ରେରଣା ଯୋଗାଇବ ଏବଂ ଫଳ ସ୍ୱରୂପ ଓଡ଼ିଆ ଭାଷା ଓ ଲିପିର ଏକ ନବଦିଗନ୍ତ ଉଦ୍‌ଘାଟିତ ହେବ। ଏକ ପ୍ରାରମ୍ଭିକ ଚେଷ୍ଟା ରୂପେ ଡଃ ତ୍ରିପାଠୀଙ୍କ ଅଧ୍ୟୟନରେ ଉଭୟ ତଥ୍ୟ ଓ ତତ୍ତ୍ୱ ଦୃଷ୍ଟିରୁ ବେଶ୍ କିଛି ଭୁଲ୍-ଭ୍ରାନ୍ତି ରହିଥାଇ ପାରେ, କିନ୍ତୁ ଓଡ଼ିଆ ଅଭିଲେଖ ଅଧ୍ୟୟନର ଭିତ୍ତି-ପତନ କରିବାରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ।

ଓଡ଼ିଆ ଭୂଖଣ୍ଡରେ ଅଭିଲେଖର ପରମ୍ପରା ସୁପ୍ରାଚୀନ, ଏପରିକି ଓଡ଼ିଶା ଓଡ଼ିଶା ହେବା ପୂର୍ବରୁ ଓ ଓଡ଼ିଆ ଭାଷା ଜନ୍ମ ନେବାର ବହୁ ପୂର୍ବରୁ ଏଠି ଅଭିଲେଖ ସ୍ଥାପିତ ହୋଇ ଆସୁଛି। ସେହି ପରମ୍ପରାର ସୂଚନା ଦେଇ ଡଃ ତ୍ରିପାଠୀ କୁହନ୍ତି, ଖ୍ରୀଷ୍ଟପୂର୍ବ ତୃତୀୟ ଶତକରେ ସମ୍ରାଟ ଅଶୋକଙ୍କର ଚଉଦଟି ଶିଳାଲେଖରୁ ଏଗାରଟି ତଥା ତାଙ୍କର ପ୍ରସିଦ୍ଧ କଳିଙ୍ଗ ଶିଳାଲେଖ ଦୁଇଟି ଏହି ରାଜ୍ୟର ସୀମା ମଧ୍ୟରେ ଅବସ୍ଥାପିତ (ଭୁବନେଶ୍ୱରର ଧଉଳିଗିରି ଓ ଗଞ୍ଜାମର ଜଉଗଡ଼ରେ)। ଏହି ଶିଳାଲେଖଗୁଡ଼ିକ ବ୍ରାହ୍ମୀ ଲିପି ଓ ପ୍ରାକୃତ ଭାଷାରେ ଲିଖିତ। ଏହାପରେ ଖ୍ରୀଷ୍ଟପର ପ୍ରଥମ ଶତାବ୍ଦୀରେ ମିଳେ ଖାରବେଳଙ୍କର ପ୍ରସିଦ୍ଧ ହାତୀଗୁମ୍ଫା ଶିଳାଲେଖ ଓ ଅନ୍ୟତ୍ର କେତୋଟି ଶିଳାଲେଖ, ଯାହା ଭୁବନେଶ୍ୱରର ଖଣ୍ଡଗିରି ଓ ଉଦୟଗିରିର ଗାତ୍ରରେ ଉତ୍କୀର୍ଣ୍ଣ ହୋଇଥିଲା। ଏହି ଶିଳାଲେଖଗୁଡ଼ିକର ଲିପି ମଧ୍ୟ ବ୍ରାହ୍ମୀ ଓ ଭାଷା ପ୍ରାକୃତ। ଏହାପରେ ଆଉ ଦୁଇ ଚାରିଟି ଛୋଟ ଶିଳାଲେଖକୁ ଛାଡ଼ିଦେଲେ ଖ୍ରୀଷ୍ଟପର ସପ୍ତମ ଶତାବ୍ଦୀରେ ଗଞ୍ଜାମରୁ ମିଳେ ମହାରାଜା ମହାସାମନ୍ତ ମାଧବରାଜଙ୍କର ତାମ୍ରଲେଖ - ଯାହା ଗୁପ୍ତ ଲିପିରେ ସଂସ୍କୃତ ଭାଷାରେ ଲିଖିତ। ଡଃ ତ୍ରିପାଠୀଙ୍କ ମତରେ ଏହି ଲେଖର ବିଶେଷତ୍ୱ ହେଉଛି ଯେ, ସଂସ୍କୃତରେ ଲେଖା ହୋଇଥିବା ସତ୍ତ୍ୱେ ଏହି ଲିପିରେ ବ ଓ ୱ ମଧ୍ୟରେ ପାର୍ଥକ୍ୟ ରକ୍ଷା କରାଯାଇ ନାହିଁ, ଯାହା ଓଡ଼ିଆ ଭାଷାର ଏକ ରୀତି। ଏହି ସମୟରୁ ୧୫୬୮ ମସିହା ପର୍ଯ୍ୟନ୍ତ ବା ଓଡ଼ିଶାର ସ୍ୱାଧୀନ ରାଜଶାସନର

ସମାପ୍ତି ପର୍ଯ୍ୟନ୍ତ, ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ତଥା ଓଡ଼ିଶା ବାହାରୁ ବହୁ ଶିଳାଲେଖ ଓ ତାମ୍ରଲେଖ ମିଳେ। ୧୦୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହି ଲେଖଗୁଡ଼ିକ ସଂସ୍କୃତରେ ଲିଖିତ ହେଉଥିଲେ ମଧ ବହୁ ଜାଗାର ଓ ବ୍ୟକ୍ତିଙ୍କ ନାମରୁ ପ୍ରଚଳିତ ସ୍ଥାନୀୟ ଭାଷାର, ଅର୍ଥାତ୍ ଓଡ଼ିଆ ଭାଷାର ସୂଚନା ମିଳେ, ଯଥା- ସପ୍ତମ ଶତାବ୍ଦୀରେ ମାଧବଙ୍କ ଖୋରଧା ତାମ୍ରଲେଖରୁ 'କୁମ୍ଭାରଛେ' ଗ୍ରାମର ନାମ ମିଳେ, ଯାହା ଓଡ଼ିଆ ଶବ୍ଦ 'କୁମ୍ଭାର' ବୋଲି ବିଦ୍ୱାନ୍‌ମାନେ ମନେ କରନ୍ତି। ୯୯୧ ଖ୍ରୀଷ୍ଟାବ୍ଦର ଅନନ୍ତବର୍ମ ଦେବଙ୍କ ମଣ୍ଡାସା ତାମ୍ରଲେଖରେ ଓଡ଼ିଆ ଶବ୍ଦ 'ଭିତୁରୁ' ଓ 'ପନ୍ଦର (ପଦ୍‌ନର)' ବ୍ୟବହୃତ ହୋଇଛି ବୋଲି କେତେକ ମନେ କରନ୍ତି। କିନ୍ତୁ ଆମର ମନେହୁଏ - 'ପଦ୍‌ନର' ଓଡ଼ିଆ 'ପନ୍ଦର' ନୁହେଁ; ଏହା ତାମିଲ 'ପଦିନାଗୁ'-ଷୋହଳ ବା ତେଲୁଗୁ 'ପଦନାଲୁ'-ଚଉଦ। ଏହାପରେ, ଖ୍ରୀଷ୍ଟାବ୍ଦ ୧୦୭୬ରୁ ୧୪୩୫ ପର୍ଯ୍ୟନ୍ତ ଓଡ଼ିଶା ଗଙ୍ଗବଂଶ ଶାସନାଧୀନ ହୁଏ। ଏହି ରାଜାମାନଙ୍କର ବହୁ ସଂସ୍କୃତ ଅଭିଲେଖ ଓଡ଼ିଆ ଓ ଆନ୍ଧ୍ରର ବିଶାଖାପଟ୍ଟନମ୍ ଜିଲ୍ଲାରୁ ମିଳେ। ତା'ଛଡ଼ା ମିଳେ ଓଡ଼ିଆ ରାଜାମାନଙ୍କର ବହୁ ତେଲୁଗୁ ଓ ଓଡ଼ିଆ ଭାଷାରେ ଅଭିଲେଖ। ଓଡ଼ିଆ ଅଭିଲେଖଗୁଡ଼ିକ ସଂଖ୍ୟାରେ ଅଳ୍ପ ଓ ସେଥିରୁ ପୁଣି କେତୋଟି ତେଲୁଗୁ ଲିପିରେ ଲେଖା। ଗଙ୍ଗ ଶାସନର ପ୍ରାୟ ବାରଟିଯାଏ ଓଡ଼ିଆ ଅଭିଲେଖ ଭିତରୁ କତୋଟି ତେଲୁଗୁରେ ଦ୍ୱିଭାଷୀ। ଏହାପରେ ଓଡ଼ିଆରେ ଆରମ୍ଭ ହୁଏ ଖ୍ରୀଷ୍ଟାବ୍ଦ ୧୪୩୫ ରୁ ୧୫୪୦ ପର୍ଯ୍ୟନ୍ତ ସୂର୍ଯ୍ୟବଂଶ ଶାସନ ବା ଗଜପତି ରାଜାମାନଙ୍କର ଶାସନ। ଏମାନଙ୍କ ରାଜ୍ୟ ଓଡ଼ିଶାରୁ ବଙ୍ଗ ଓ ଦକ୍ଷିଣ ଭାରତର ବିସ୍ତୃତ ଅଞ୍ଚଳକୁ ବ୍ୟାପିଥିଲା। ଏହି ଗଜପତି ରାଜାମାନଙ୍କର ବହୁ ଅଭିଲେଖ ମିଳେ, ଖାଲି ଓଡ଼ିଆ ଭାଷାରେ ନୁହେଁ - ସଂସ୍କୃତ, ତାମିଲ ଓ ତେଲୁଗୁ ଭାଷାରେ ମଧ। ଏହି ବଂଶର ପ୍ରତିଷ୍ଠାତା ରାଜା କପିଳେଶ୍ୱର ଦେବ (ଖ୍ରୀଷ୍ଟାବ୍ଦ ୧୪୩୫-୧୪୬୭)ଙ୍କର ଅଭିଲେଖ ପୂର୍ବରେ ମିଦିନାପୁର, ଓଡ଼ିଶାର ବିଭିନ୍ନ ଅଞ୍ଚଳ, ଏପରିକି ତାମିଲନାଡୁର ତ୍ରିଚିନ୍ନପଲ୍ଲୀ ପର୍ଯ୍ୟନ୍ତ ଅଞ୍ଚଳରୁ ମିଳେ। ଆନ୍ଧ୍ରର ଓ୍ୱାରଙ୍ଗଲ୍ ଦୁର୍ଗରୁ ମଧ କପିଳେଶ୍ୱରଙ୍କର ଗୋଟିଏ ତେଲୁଗୁ ଅଭିଲେଖ ମିଳେ। ତାଙ୍କର ଓଡ଼ିଆ ଅଭିଲେଖଗୁଡ଼ିକ କେବଳ ଓଡ଼ିଶା ମଧରେ ସୀମିତ ନ ଥିଲା। ଏହି ବଂଶର ତୃତୀୟ ରାଜା ପ୍ରତାପରୁଦ୍ରଙ୍କର ଅଧେ ଓଡ଼ିଆ ଅଧେ ତେଲୁଗୁର ଗୋଟିଏ ଅଭଲେଖ ମିଳେ 'ନେଲ୍ଲୁରୁ' ଜିଲ୍ଲାରୁ। ବସ୍ତୁତଃ ଅଧିକାଂଶ ଓଡ଼ିଆ ଅଭିଲେଖ ଏହି ବଂଶର ରାଜାମାନଙ୍କ ଦ୍ୱାରା ହିଁ ଲିଖିତ ହୋଇଥିଲା। ଏହି ରାଜବଂଶର ଅବସାନ ପରେ ଏହି ବଂଶର ରାଜାଙ୍କର ଜଣେ ସେନାପତି ଗୋବିନ୍ଦଦେବ ୧୫୪୧ ରୁ ୧୫୪୯ ପର୍ଯ୍ୟନ୍ତ ଓଡ଼ିଶାର ରାଜଗାଦୀ ଦଖଲ କରିଥିଲେ ଓ କେତୋଟି

ଅଭିଲେଖ ଲେଖାଇଥିଲେ। ତାଙ୍କ ପରେ ତାଙ୍କ ମନ୍ତ୍ରୀ ମୁକୁନ୍ଦ ଦେବ ୧୫୫୯ରୁ ୧୫୬୮ ପର୍ଯ୍ୟନ୍ତ ଓଡ଼ିଶାର ରାଜା ହୋଇଥିଲେ ଓ ତାଙ୍କର କେତୋଟି ଓଡ଼ିଆ ଅଭିଲେଖ ମଧ୍ୟ ଆମକୁ ମିଳେ। ଓଡ଼ିଶାର ଏହି ସ୍ୱାଧୀନ ରାଜାମାନଙ୍କ ପରେ ବି ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆରେ ଲିଖିତ କିଛି କିଛି ଅଭିଲେଖ ମିଳେ। ମୋଟାମୋଟି ଏତିକି ହେଉଛି ଓଡ଼ିଆ ଅଭିଲେଖର ଭଣ୍ଡାର, ଯଦିଓ ଡ. ତ୍ରିପାଠୀ ମାତ୍ର ୧୫୬୮ ପର୍ଯ୍ୟନ୍ତ ଅର୍ଥାତ୍ ଓଡ଼ିଶାର ସ୍ୱାଧୀନ ରାଜଶାସନର ଅବସାନ ପର୍ଯ୍ୟନ୍ତ, ଅଭିଲେଖଗୁଡ଼ିକୁ ଉପାଦାନ ଭାବେ ବ୍ୟବହାର କରିଛନ୍ତି । ସତର, ଅଠର, ଊଣିଶ ଶତାବ୍ଦୀର ଲେଖଗୁଡ଼ିକ ଇତିହାସ ଦୃଷ୍ଟିରୁ ହୁଏତ ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହନ୍ତି, କିନ୍ତୁ ଓଡ଼ିଆ ଲିପିର ବିକାଶ ଓ ବିବର୍ତ୍ତନ ଦିଗରୁ ସେଗୁଡ଼ିକ ସମାନ ଭାବେ ମୂଲ୍ୟବାନ। ଓଡ଼ିଆରେ ଅଭିଲେଖ ରଚନା କରିବାର ଶୈଳୀ ତଥା ଓଡ଼ିଆ ଭାଷା ବିକାଶର ସ୍ରୋତକୁ ବୁଝିବାରେ ସେଗୁଡ଼ିକ ଯଥେଷ୍ଟ ଆଲୋକପାତ କରିପାରନ୍ତି। ସେଗୁଡ଼ିକ ଉପରେ ବି ବିଧିବଦ୍ଧ ଗବେଷଣା ହେବା ଉଚିତ।

ଓଡ଼ିଆ ଅଭିଲେଖଗୁଡ଼ିକ ପ୍ରଧାନତଃ ଭାଷା, ଇତିହାସ ଓ ଲିପି ଉପରେ ଆଲୋକପାତ କରିବ ବୋଲି ଡ. ତ୍ରିପାଠୀ ଉଲ୍ଲେଖ କରିଛନ୍ତି ଓ ଏହା ଯେ ଏକାନ୍ତ ସତ୍ୟ, ସେ ବିଷୟରେ ଦ୍ୱିରୁକ୍ତି ନାହିଁ। ତେବେ ଓଡ଼ିଆ ପ୍ରାଚୀନ ତାଳପତ୍ର ପୋଥିଗୁଡ଼ିକ ଯେ ଏହି ଅଧ୍ୟୟନକୁ ଆହୁରି ଶାଣିତ କରିପାରିଥାନ୍ତା ସେ ବିଷୟରେ ସେ ସନ୍ଦିହାନ, କାରଣ ଓଡ଼ିଆ ପ୍ରାଚୀନ ପୋଥିଗୁଡ଼ିକର ତଥାକଥିତ 'ଶୁଦ୍ଧ ସଂସ୍କରଣ' ସେମାନଙ୍କର ଐତିହାସିକ ମୂଲ୍ୟକୁ ଏପରି ଭାବେ ନଷ୍ଟ କରିଦେଇଥାଏ ଯେ, ସେଥିରୁ ଐତିହାସିକ ସୂଚନା ମିଳିବା ପ୍ରାୟ ଅସମ୍ଭବ। କିନ୍ତୁ ପ୍ରାଚୀନ ପୋଥିର ଅଭାବ ଓଡ଼ିଆରେ ନାହିଁ। କିଛି ବର୍ଷ ତଳେ ଅର୍ଜୁନ ଦାସଙ୍କର 'ରାମବିଭା' ଓ 'କଳ୍ପଲତା'ର (ଓଡ଼ିଶା ରାଜ୍ୟ ପୋଥି ସଂଗ୍ରହାଳୟରେ ଗଚ୍ଛିତ) ନକଲଗୁଡ଼ିକୁ ଅଧ୍ୟୟନ କରି ଆମେ ସେହି ପୋଥିଗୁଡ଼ିକର ପ୍ରାଚୀନତା ବିଷୟରେ କେତେକ ଅତି ଉପାଦେୟ ଭାଷାତାତ୍ତ୍ୱିକ ତଥ୍ୟ ଉପସ୍ଥାପିତ କରିଥିଲୁ (ଦ୍ରଷ୍ଟବ୍ୟ, ଲେଖକର- ଓଡ଼ିଆ ପ୍ରାଚୀନ ସାହିତ୍ୟର ସମ୍ପାଦନା; ଓଡ଼ିଆ ଭାଷାତାତ୍ତ୍ୱିକ ପ୍ରବନ୍ଧ, ଗ୍ରନ୍ଥମନ୍ଦିର, ୧୯୮୩, କଟକ)। ସେ ଦିଗରୁ ସ୍ୱର୍ଗତ କେଦାରନାଥ ମହାପାତ୍ରଙ୍କ ଦ୍ୱାରା ସମ୍ପାଦିତ 'କଳ୍ପଲତା' ମଧ୍ୟ ସେହି ପ୍ରାଚୀନତାକୁ ସମ୍ପୂର୍ଣ୍ଣ ଭାବେ ରକ୍ଷା କରିଛି, ଏପରିକି ଡ. ତ୍ରିପାଠୀଙ୍କ ଦ୍ୱାରା ପ୍ରଦତ୍ତ ଅଭିଲେଖର 'ପାତେକ' (ପାତକ), 'ପାଟେକ' (ପାଟକ), 'ପୃଷୋତମ' (ପୁରୁଷୋତ୍ତମ), ଇତ୍ୟାଦିର ମୂଳଭାଷାତାତ୍ତ୍ୱିକ ଧାରା ଉକ୍ତ ଦୁଇଟି ପୋଥିରେ ବିଶଦ ଭାବେ ରକ୍ଷିତ ହୋଇଛି। ସେହି ପୋଥି ଦୁଇଟିର ଭାଷାଗତ ଅଧ୍ୟୟନରୁ ଏହାର ପ୍ରାଚୀନତା ଆମେ ପ୍ରତିପାଦିତ କରିଥିଲୁ।

ତେଣୁ ପ୍ରାଚୀନ ପୋଥି ଯେ ଓଡ଼ଶାରେ ମିଳିବ ନାହିଁ, ଏପରି ଧରିନେବା ଠିକ୍ ନୁହେଁ। ଅବଶ୍ୟ ଏକଥା ନିରାଟ ସତ୍ୟ ଯେ, ଅର୍ଜ୍ଜୁନ ଦାସଙ୍କ 'ରାମବିଭା'ର ପ୍ରାଚୀ ସଂସ୍କରଣରେ ଭାଷାଗତ ପ୍ରାଚୀନତାକୁ ଅନ୍ଧ ଭାବେ ଲୋପ କରି ଦିଆଯାଇଛି। ଅନ୍ୟାନ୍ୟ 'ଶୁଦ୍ଧ ସଂସ୍କରଣ' ସାହିତ୍ୟ ପୋଥି ବିଷୟରେ ମଧ୍ୟ ସେହି ଏକ କଥା ପ୍ରଯୁଜ୍ୟ। ସାରଳା ଦାସଙ୍କୁ କପିଳେଶ୍ୱର ଦେବଙ୍କ ସମସାମୟିକ ବୋଲି ଯଦି ଧରାଯାଏ (୧୪୩୫-୧୪୬୭), ତା' ହେଲେ ଏଇ ମାତ୍ର ପାଞ୍ଚଶହ ବର୍ଷ ତଳର ପୋଥି ନ ମିଳିବା ଆଶ୍ଚର୍ଯ୍ୟକର ହେବ - ମହାଭାରତର ଲୋକପ୍ରିୟତା ଓ ଓଡ଼ିଶାରେ ପୋଥିକୁ ପୂଜା କରି ସାଇତିବାର ପରମ୍ପରାକୁ ବିଚାରକୁ ନେଇ। ଏହି ପ୍ରାଚୀନ ପାଣ୍ଡୁଲିପିଗୁଡ଼ିକ ଯଦି ଗବେଷକମାନଙ୍କର ହସ୍ତଗତ ହୁଅନ୍ତା, ଏହା ଆମ ଭାଷାକୁ ନିଃସନ୍ଦେହ ଭାବେ ବହୁ ଉପାଦେୟ ତଥ୍ୟ ଯୋଗାଇ ପାରନ୍ତା। ଅଭିଲେଖଗୁଡ଼ିକ ସାଙ୍ଗକୁ ପୋଥିଗୁଡ଼ିକ ବି ହୁଅନ୍ତା ଓଡ଼ିଆ ଭାଷା ଓ ଲିପି ପାଇଁ ଆମର ଦ୍ୱିତୀୟ ସୂତ୍ର। କିନ୍ତୁ ପାଣ୍ଡୁଲିପିଗୁଡ଼ିକର 'ଶୁଦ୍ଧ ସଂସ୍କରଣ' ସେ ଦିଗଟିକୁ ସମ୍ପୂର୍ଣ୍ଣ ଭାବେ ରୁଦ୍ଧ କରିଦେଇଛି। ସେଥିପାଇଁ ଅସଂପାଦିତ, ଅସଂଶୋଧିତ ପୋଥି ଖୋଜିବା ଛଡ଼ା ଅନ୍ୟ ଉପାୟ ନାହିଁ।

ସେ ଯାହାହେଉ, ଡ.ତ୍ରିପାଠୀ ମୁଖ୍ୟତଃ ଖ୍ରୀଷ୍ଟାବ୍ଦ ୧୦୭୭ରୁ ବା ଗଙ୍ଗବଂଶ ରାଜତ୍ୱରୁ ଆରମ୍ଭ କରି ରାଜା ମୁକୁନ୍ଦଦେବଙ୍କ ପର୍ଯ୍ୟନ୍ତ ବା ୧୫୬୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପ୍ରାୟ ପାଞ୍ଚଶହ ବର୍ଷର ଓଡ଼ିଆ ଅଭିଲେଖଗୁଡ଼ିକୁ ନେଇ ବିଚାର କରିଛନ୍ତି। ଏଗୁଡ଼ିକ ଓଡ଼ିଆ ଭାଷା ଓ ଲିପି ଉପରେ ଆଲୋକପାତ କରିବା ଛଡ଼ା ଓଡ଼ିଶାର ଇତିହାସ ଓ ସଂସ୍କୃତିକୁ ମଧ୍ୟ ଏକାଧିକ ଦିଗରୁ ଆଲୋକିତ କରୁଛନ୍ତି। ସେ ସବୁ ଦିଗରୁ ଏହି ଅଭିଲେଖଗୁଡ଼ିକ ଛଡ଼ା ମାଦଳାପାଞ୍ଜି ଥିଲା ଓଡ଼ିଶା ଇତିହାସର ଏକମାତ୍ର ସୂତ୍ର। ଅଭିଲେଖଗୁଡ଼ିକରୁ ଯେଉଁ ସୂଚନା ମିଳେ, ସେଥିରୁ ସ୍ପଷ୍ଟ ଭାବେ ପ୍ରତିପାଦିତ ହୁଏ ଯେ, ଓଡ଼ିଶାର ରାଜାମାନେ ଦୀର୍ଘ ପାଞ୍ଚଶହ ବର୍ଷ ଧରି ଭାରତର ଏକ ବିରାଟ ଅଂଶକୁ ଶାସନାଧୀନ କରି ରଖିଥିଲେ। ଗଙ୍ଗବଂଶ ଓ ଗଜପତି ରାଜାମାନଙ୍କର ବହୁ ଅଭିଲେଖ ଓଡ଼ିଆ ଛଡ଼ା ପୂର୍ବରେ ମେଦିନୀପୁର ଠାରୁ ଆରମ୍ଭ କରି ଦକ୍ଷିଣରେ ଗୋଦାବରୀ, ଏପରିକି କନ୍ୟାକୁମାରୀ ପର୍ଯ୍ୟନ୍ତ ବିରାଟ ଅଞ୍ଚଳରେ ବିକ୍ଷିପ୍ତ ହୋଇ ରହିଛି ଏବଂ ଏହି ପରାକ୍ରମର ପ୍ରମାଣ ସ୍ୱରୂପ ସେମାନେ 'ଗଉଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳବରଗେଶ୍ୱର' ଉପାଧି ମଧ୍ୟ ଗ୍ରହଣ କରିଥିଲେ। ଅର୍ଥାତ୍ ଗୌଡ଼, କର୍ଣ୍ଣାଟ ଓ କଳବର୍ଗର ଅଧୀଶ୍ୱର ଭାବେ ନିଜକୁ ପ୍ରତିଷ୍ଠିତ କରିଥିଲେ। ପ୍ରସଙ୍ଗତଃ, 'କଳବର୍ଗ'କୁ ଡ. ତ୍ରିପାଠୀ ବିହାରର ବାହମନି ରାଜବଂଶର ରାଜଧାନୀ 'ଗୁଲବର୍ଗ' ବୋଲି ଯଦିଓ

ଚିହ୍ନିତ କରିଛନ୍ତି, ଆମର ମନେହୁଏ ଯେ, 'କଳବରକେଶ୍ୱର', ଗୁଲବର୍ଗକୁ ନବୁଝାଇ ତାମିଲରାଜ୍ୟର ଦୁର୍ଦ୍ଧର୍ଷ 'କଳବର୍' ରାଜବଂଶକୁ ବୁଝାଇବା ବେଶି ସମୀଚୀନ ହେବ। ଦକ୍ଷିଣର ଚୋଳ, ଚେଳ, ପାଣ୍ଡ୍ୟ ରାଜବଂଶଗୁଡ଼ିକ ପରି 'କଳବର୍'-ମାନେ ବି ଦକ୍ଷିଣର ଥିଲେ ଏକ ପ୍ରତିଷ୍ଠିତ ରାଜବଂଶ, ଯେଉଁମାନଙ୍କ ବିଷୟରେ ଦକ୍ଷିଣର ଇତିହାସ ପ୍ରାୟ ନୀରବ। ଗଜପତି ରାଜାମାନେ ଏହି ଦୁର୍ଦ୍ଧର୍ଷ କଳବରମାନଙ୍କୁ ପରାସ୍ତ କରି 'କଳବରକେଶ୍ୱର' ଉପାଧି ଧାରଣ କରିଥିବା ବେଶି ସମ୍ଭବ, କାରଣ 'ଗୁଲବର୍ଗ' ଓଡ଼ିଆରେ 'କଲବର୍ଗ' ହେବ କିପରି ଓ କାହିଁକି ? ଦ୍ୱିତୀୟରେ ଏହି ଅଭିଲେଖଗୁଡ଼ିକରୁ ବେଶ୍ କେତୋଟି ତାମିଲ ଓ ତେଲୁଗୁ ଭାଷାରେ ମଧ୍ୟ ମିଳେ; ଯେଉଁଥିରୁ ସ୍ପଷ୍ଟ ଯେ, ଓଡ଼ିଶା ରାଜ୍ୟର ସାଂସ୍କୃତିକ ସମ୍ବନ୍ଧ ଦକ୍ଷିଣ ସହିତ ହିଁ ବିଶେଷ ଭାବେ ପ୍ରତିଷ୍ଠିତ ହୋଇଥିଲା ଯାହା ଆମ ଭାଷା ଓ ଲେଖାକୁ ବହୁ ଭାବେ ପ୍ରଭାବିତ କରିଛି। ତୃତୀୟରେ, ଓଡ଼ିଶା ରାଜ୍ୟର ରାଜଧାନୀ ଭାବେ କଟକର ପ୍ରତିଷ୍ଠା ଓ ଏହି ରାଜ୍ୟର ଇଷ୍ଟଦେବତା ଭାବେ ଜଗନ୍ନାଥଙ୍କ ନିକଟରେ ଜାତିର ସମର୍ପଣ। ଓଡ଼ିଶା ଇତିହାସର ଏହି ପର୍ଯ୍ୟାୟରେ 'ମାଦଳାପାଞ୍ଜି' ବିଷୟରେ ଗୋଟିଏ ଦୁଇଟି ମତାମତ ଦେବା ଅପ୍ରାସଙ୍ଗିକ ହେବ ନାହିଁ। ମାଦଳାପାଞ୍ଜି ନାନା କାରଣରୁ ଏକ ବିବାଦୀୟ ଗ୍ରନ୍ଥ ହୋଇ ଏବେ ସୁଦ୍ଧା ରହିଛି ଓ ଏହାର ଅଦ୍‌ଭୂତ ନାମକରଣର ଏକ ସନ୍ତୋଷଜନକ ଉତ୍ତର ଦିଆଯାଇପାରି ନାହିଁ। କେତେକଙ୍କ ମତରେ ଏହି ପାଞ୍ଜିର ଆକୃତି 'ମାଦଳ' ସଦୃଶ ହୋଇଥିବାରୁ ଏହାର ମାଦଳାପାଞ୍ଜି ନାମକରଣ ହୋଇଛି। କିନ୍ତୁ ଆମର ମନେହୁଏ ଯେ, ଏହି ପାଞ୍ଜିର ପ୍ରକୃତ ନାମ ଥିଲା 'ମୁଦଲ ପାଞ୍ଜି, ଯାହାର ଅର୍ଥ ହେଉଛି 'ପ୍ରମାଣ ପଞ୍ଜିକା'। ତାମିଲ ଭାଷାରେ 'ମୁଦଲ' ଶବ୍ଦର ଅର୍ଥ ହେଉଛି 'ପ୍ରମାଣ କରିବା', 'ସିଦ୍ଧି କରିବା' (to establish with evidence, confront with proof), ଇତ୍ୟାଦି। ତେଲୁଗୁରେ 'ମୁଦଲ'ର ଅର୍ଥ ହେଉଛି 'ପ୍ରମାଣ'। ମାଦଳା ପାଞ୍ଜି ପ୍ରକୃତରେ ଥିଲା ଏକ 'ପ୍ରମାଣ ପଞ୍ଜିକା'- ଏବଂ ଏହି ଶବ୍ଦଟିର ବ୍ୟବହାର ମାଦଳାପାଞ୍ଜିରେ ବି ହୋଇଛି। "ଥୋକାଏ ବରଷ ଗଲା ଉତ୍ତାରେ ଏକ ଦିନକର ରାତ୍ରରେ ରାଜା ପରମେଶ୍ୱରଙ୍କୁ ସ୍ୱପନରେ ଦେଖିଲାକୁ ପ୍ରମେଶ୍ୱରଙ୍କୁ ଦରଶନ କରିବାକୁ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରକୁ ବିଜେ କରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦରଶନ କରି ଛାମୁରେ ଶାଢ଼ୀ ପ୍ରସାଦ ଲାଗି ହୋଇ ଶ୍ରୀନବରେ ବିଜେ କରି ମୁଦଲ କରାଇଲେ।" ଏ ମୁଦଲର ଭାଷା- "ଶ୍ରୀ ବୀର ଶ୍ରୀ ଗଜପତି ଗଉଡ଼େଶ୍ୱର, ନବକୋଟି କର୍ଣ୍ଣାଟ କଳବରଗେଶ୍ୱର..." (୨ୟ ପ୍ରାଚୀ ସଂସ୍କରଣ, ୧୯୬୯, ପୃ.୨୭)। ନରସିଂହ ଦେବଙ୍କ ଗୋଟିଏ ସନନ୍ଦରେ ମଧ୍ୟ ଏକାଧିକବାର ଏହା ବ୍ୟବହୃତ ହୋଇଛି। (ଦ୍ରଷ୍ଟବ୍ୟ, ତ୍ରିପାଠୀ, ପୃ.୨୪୨)।

ଏହି ସବୁ ବିଚାରରୁ ଅଭିଲେଖଗୁଡ଼ିକର ଏକ ବିଶେଷ ସ୍ଥାନ ରହିଛି ଓଡ଼ିଆ ଇତିହାସରେ। ଡ. ତ୍ରିପାଠୀ ଯେପରି ଭାବେ ଏହି ଅଭିଲେଖଗୁଡ଼ିକର ସମୟ ନିରୂପଣ କରିଛନ୍ତି- ସେଥିରୁ ଓଡ଼ିଶା ଇତିହାସର ଗୌରବୋଜ୍ଜ୍ୱଳ ପାଞ୍ଚଶହ ବର୍ଷର ଇତିହାସ ଅତି ସୁନିର୍ଦ୍ଦିଷ୍ଟ ଭାବେ ଚିହ୍ନିତ ହୋଇଛି। ଓଡ଼ିଶା ଇତିହାସ ଦୃଷ୍ଟିରୁ ଏହି ସୁତଥ୍ୟତା ଅନ୍ୟ କୌଣସି ସୂତ୍ରରୁ ମିଳିବା ପ୍ରାୟ ଅସମ୍ଭବ କହିଲେ ଚଳେ।

ବର୍ତ୍ତମାନ ଦେଖିବାକୁ ହେବ, ଯେଉଁ ଧାରାରେ ଡ. ତ୍ରିପାଠୀ ଓଡ଼ିଆ ଅଭିଲେଖଗୁଡ଼ିକୁ ଧରି ଓଡ଼ିଆର ଲିପିତତ୍ତ୍ୱକୁ ବ୍ୟାଖ୍ୟା କରିଛନ୍ତି, ତାଙ୍କ ଗ୍ରନ୍ଥରୁ ଏହା ନିରୂପଣ କରିବା ଅତ୍ୟନ୍ତ କଷ୍ଟସାପେକ୍ଷ। କାରଣ ୭୧ଟି ଅଭିଲେଖରୁ ମାତ୍ର ୫ଟିର ଫଟୋ-ପ୍ଲେଟ୍ ସେ ଏ ଗ୍ରନ୍ଥରେ ସନ୍ନିହିତ କରିଛନ୍ତି। ପରେ ଯେଉଁ ପ୍ଲେଟ୍‌ଗୁଡ଼ିକରେ ପ୍ରତିଟି ଓଡ଼ିଆ ଲିପିର ବିଭିନ୍ନ ଆକୃତି ଦେଇ ସେ ସମ୍ପୂର୍ଣ୍ଣ ଲପିମାଳା ପ୍ରସ୍ତୁତ କରିଛନ୍ତି, ସେଗୁଡ଼ିକର ଫଟୋ ଏତେ ଅସ୍ପଷ୍ଟ ଯେ, ସେଗୁଡ଼ିକ ଉପରେ ମତାମତ ଦେବା ନିରାପଦ ନୁହେଁ। ପୁଣି, "ଏଗୁଡ଼ିକ ଗବେଷକର ନିଜ ଆଖି ଉପରେ ନିର୍ଭରକରି (eye-impression) ନିଜ ହାତରେ ଅଙ୍କା।" ଏହି ପନ୍ଥା ଲିପିଗୁଡ଼ିକର ବିଚାର ଦୃଷ୍ଟିରୁ ଆଦୌ ବୈଜ୍ଞାନିକ ନୁହେଁ। ବୈଜ୍ଞାନିକ ଏହି କାରଣରୁ ନୁହେଁ ଯେ, ଆମେ ଅନ୍ୟତ୍ର କହିଛୁ (ଦ୍ରଷ୍ଟବ୍ୟ-ଲେଖକର ଓଡ଼ିଆ ଅକ୍ଷର, ଝଙ୍କାର, ବିଷୁବ ସଂଖ୍ୟା, ୧୯୯୩), ଓଡ଼ିଆ ଅକ୍ଷରଗୁଡ଼ିକ ଦୁଇଟି ଭାଗରେ ଗଠିତ- ଗୋଟିଏ ଭେଦକା ଭାଗ (distinctive feature) ଓ ଅନ୍ୟଟି ଆଳଙ୍କାରିକ ଭାଗ (ornamenal feature)। ଦୁଇ ଚାରିଟି ଅକ୍ଷରକୁ ଛାଡ଼ିଦେଲେ ଏହି ଭେଦକା ଭାଗ ବଳରେ ହିଁ ଆମେ ଗୋଟିଏ ଅକ୍ଷରକୁ ଅନ୍ୟ ଅକ୍ଷରଠାରୁ ପୃଥକ୍ କରି ଦେଖିଥାଉ। ଓଡ଼ିଆ ଲିପିର ଆଦ୍ୟାବସ୍ଥାରେ, ଯାହାକୁ ଡ. ତ୍ରିପାଠୀ ପ୍ରଥମେ ପ୍ରାକ୍-ଓଡ଼ିଆ (Proto-Oriya) ଓ ପରେ ପ୍ରାକ୍ ବଙ୍ଗଳା (Proto-Bengali) ଲିପି ବୋଲି କହିଛନ୍ତି, ଆମେ ଦେଖିବାକୁ ପାଉ ଯେ, ଓଡ଼ିଆ ଲିପିର ଏହି 'ଆଳଙ୍କାରିକ ଭାଗ'ଟି ପୂର୍ଣ୍ଣ ଭାବେ ପ୍ରକାଶିତ ହୋଇନଥିଲା ବା ଭିନ୍ନ ଭାବେ ହୋଇଥିଲା। ସେଇ କଥାକୁ ସୂଚାଇ ସେ କହିଛନ୍ତି- "ପ୍ରାଚୀନ ଓଡ଼ିଆ ଲିପି ଓ ପ୍ରାକ୍-ଓଡ଼ିଆ ଲିପି ଭିତରେ ପ୍ରଧାନ ପାର୍ଥକ୍ୟ ହେଉଛି ଓଡ଼ିଆ ଅକ୍ଷରର ଗୋଲାକୃତି। ପ୍ରାକ୍-ଓଡ଼ିଆ ଅକ୍ଷରର ମୁଣ୍ଡ ଉପରର ସିଧା ଗାର ଓଡ଼ିଆରେ ଗୋଲାକାର ହୋଇଛି। ଏହା ତାଳପତ୍ର ଉପରେ ଲେଖନୀମୁନରେ ଲେଖିବା କାରଣରୁ ହୋଇଛି"(ପୃ.-୩୩)। ଏହା ଯଦି ସତ୍ୟ ହୋଇଥାଏ, ଏ ପରିବର୍ତ୍ତନ ଘଟିଛି ମୁଖ୍ୟତଃ ଅକ୍ଷରଗୁଡ଼ିକର ଆଳଙ୍କାରିକ ଭାଗରେ, ଯାହା ଉପରେ ଅକ୍ଷରକୁ ଚିହ୍ନିବା ବସ୍ତୁତଃ ନର୍ଭର କରେ ନାହିଁ। ଅକ୍ଷରଗୁଡ଼ିକୁ

ଚିହ୍ନାଯାଇଥାଏ ଭେଦକା ଭାଗକୁ ଧରି ଏବଂ ପ୍ରାକ୍ ତଥା ଆଧୁନିକ ଓଡ଼ିଆରେ ଏହି ଭାଗର ପ୍ରକାଶ (manifestation) ନାନା ଭାବେ କରାଯାଇଥାଏ। ସେଥିପାଇଁ ଲିପିଗୁଡ଼ିକର ଭେଦକା ଭାଗକୁ ଧରି ବର୍ଣ୍ଣନା କରାଯିବା ଉଚିତ। ଡ. ତ୍ରିପାଠୀଙ୍କ 'ଅ' ଅକ୍ଷରଟିକୁ ନିଆଯାଉ। ଆଳଙ୍କାରିକ ଭାଗ ଦୃଷ୍ଟିରୁ ନାଗରୀ, ପ୍ରାକ୍-ଓଡ଼ିଆ ଓ ଓଡ଼ିଆ ମଧ୍ୟରେ ପ୍ରାୟ କୌଣସି ପ୍ରାର୍ଥକ୍ୟ ନାହିଁ, କିନ୍ତୁ ଭେଦକା ଭାଗ ଦୃଷ୍ଟିରୁ ଅବଶ୍ୟ ଅଛି। ନାଗରୀ ଓ ପ୍ରାକ୍-ଓଡ଼ିଆରେ ଅ ଲିପିର ଭେଦକା ଭାଗ ପାର୍ଶ୍ୱମୁଖୀ ହୋଇଥିବା ବେଳେ ଓଡ଼ିଆରେ ଏହା ଅଧୋମୁଖୀ। ଏହି ସୂକ୍ଷ୍ମତାକୁ ନିରୂପଣ କରିବା ପାଇଁ ଯେଉଁ ପ୍ରକାର ତୁଳନାର ପ୍ରୟୋଜନ, ତାହା କରାଯାଇ ପାରିନାହିଁ ଏବଂ ମଣିଷ ଆଖିରେ ସ୍ଥୁଳ ଚିତ୍ର (holistic impression) ଯେତେ ଅଭିଜ୍ଞ ହେଉ ପଛେ, ସେ ଆଖି ନିର୍ଭରଯୋଗ୍ୟ ନୁହେଁ। ଲିପିଗୁଡ଼ିକର ଯେଉଁ ବିବର୍ତ୍ତନର ଧାରା ଡ. ତ୍ରିପାଠୀ ଖୋଜିଛନ୍ତି, ତାହା ଏହି ସ୍ଥୁଳ ଚାକ୍ଷୁଷ ଚିତ୍ର ଉପରେ ପୂର୍ଣ୍ଣତଃ ନିର୍ଭର କରି ଖୋଜିଛନ୍ତି। ଜି. ରାମଦାସଙ୍କ ପରି ଲିପିତତ୍ତ୍ୱବିଦ୍‌ମାନେ ଯେତେବେଳେ ଗୋଟିଏ ଅଭିଲେଖର ଲିପି ଉପରେ ମନ୍ତବ୍ୟ ଦେବାକୁ ଯାଇ କୁହନ୍ତି - 'ଏଥିରେ ଥିବା ୭୩ଟି ଅକ୍ଷରରୁ ୧୯୯ଟି ଦକ୍ଷିଣ-ନାଗରୀ, ୫୯ଟି ତେଲୁଗୁ, ୧୦୧ଟି ଗ୍ରନ୍ଥ, ୧୫୭ଟି ଓଡ଼ିଆ', ଇତ୍ୟାଦି (ପୃ.୨୯)। ଏହା ସେହି ସ୍ଥୁଳ ଚାକ୍ଷୁଷ ଚିତ୍ରର ତୁଳନା। ଏପରି କହିବାର ଅର୍ଥ ହେଉଛି ଯେ, ଯେଉଁ ଲିପିମାଳାଟିରେ ଗୋଟିଏ ଅଭିଲେଖ ଲେଖା ହୋଇଥିଲା, ତାହାର ନିଜର କୌଣସି ଶୃଙ୍ଖଳା ନଥିଲା; ଏଠୁ ସେଠୁ ମାଗିଆଣି ଅକ୍ଷରଗୁଡ଼ିଏ ଏକାଠି କରାଯାଇଥିଲା, ଯାହାର ବ ଟା ହିନ୍ଦୀ ତ, କ ଟା ବଙ୍ଗଳା ଓ ସ ଟା ତାମିଲ। ଏପରି ଲେଖିବା ହୁଏତ ସମ୍ଭବ, କିନ୍ତୁ ସେ ଲେଖା ଅନ୍ୟମାନଙ୍କ ଦ୍ୱାରା ପଢ଼ାଯାଉଥିଲା କେମିତି, ଯଦି ସେହି ଲେଖାଟି ଗୋଟିଏ ସମାଜରେ ସେହି ଭାବେ ଚଳୁନଥାଏ ? ଯଦି ଚଳୁଥାଏ, ଏହା ଏକ ଶୃଙ୍ଖଳା, ଯାହା ପଛରେ ସାମାଜିକ ସ୍ୱୀକୃତି ଅଛି। ତେଣୁ ଗୋଟିଏ ଲିପିମାଳାରୁ କେଉଁଟା ନାଗରୀ, କେଉଁଟା ତେଲୁଗୁ କହିବାର କି ତାତ୍ପର୍ଯ୍ୟ ରହିଲା ? ବର୍ତ୍ତମାନର ଓଡ଼ିଆ ଲିପିକୁ ନେଇ ଦେଖିଲେ ବି ଏହାର ପାଞ୍ଚ ସାତଟା ଅକ୍ଷର ହିନ୍ଦୀ ପରି, ପାଞ୍ଚ ସାତଟା ଅକ୍ଷର ବଙ୍ଗଳା ପରି, ତିନି ଚାରିଟା ଅକ୍ଷର ତାମିଲ ପରି ମିଳିଯିବ। ସେଗୁଡ଼ିକୁ କ'ଣ ତାହେଲେ ସେହି ଦୃଷ୍ଟିରୁ ଦେଖାଯିବ ? ଏହି କାରଣରୁ ଅଭିଲେଖ କିପରି ଭାବେ ଲେଖା ଯାଉଥିଲା, କିଏ ଲେଖିଥିଲା ଓ କିଏ ପଢୁଥିଲା, ସେ ବିଷୟରେ ଯଥେଷ୍ଟ ତଥ୍ୟ ସଂଗ୍ରହ କରିବାକୁ ପଡ଼ିବ, ଯାହା କ୍ୱଚିତ୍ ହୋଇଛି। ଆମେ ଏବେ ବି ଠିକ୍ ଭାବେ ଜାଣୁନାହିଁ କେଉଁ ପ୍ରଣାଳୀରେ କାହା ଦ୍ୱାରା, କି ପରିସ୍ଥିତିରେ ଗୋଟିଏ ଅଭିଲେଖ ଲେଖାଯାଉଥିଲା।

ଜର୍ମାନ୍ ଲିପିତତ୍ତ୍ୱବିଦ୍ ବୁହ୍‌ଲରଙ୍କୁ ଅନୁସରଣ କରି ଡ. ତ୍ରିପାଠୀ ଭାରତର ଲିପିଗୁଡ଼ିକୁ ଦୁଇ ଭାଗରେ ବିଭକ୍ତ କରିଛନ୍ତି - ଦକ୍ଷିଣ ଓ ଉତ୍ତର। ଦକ୍ଷିଣ ଲିପିଗୁଡ଼ିକ ହେଲେ- ତେଲୁଗୁ, କନ୍ନଡ଼, ତାମିଲ, ଗ୍ରନ୍ଥ, ମଲୟାଲମ, ତୁଳୁ, ସିହଂଳୀ। ଉତ୍ତର ଲିପିଗୁଡ଼ିକ ହେଲେ- ଓଡ଼ିଆ, ବଙ୍ଗଳା-ଅସମୀୟା, ମୈଥିଳୀ, କଇଥି, ଗୁଜରାତୀ, ମୋଡ଼ି, ନାଗରୀ, ଗୁରୁମୁଖୀ, ମହାଜନୀ, ଲଣ୍ଡା, ଟାକରି, ଶାରଦା, ଏହିସବୁ ଲିପିଗୁଡ଼ିକ ସମ୍ରାଟ ଅଶୋକଙ୍କ ଶିଳାଲେଖଗୁଡ଼ିକରେ ବ୍ୟବହୃତ ବ୍ରାହ୍ମୀ ଲିପିରୁ ଉଦ୍‌ଭୁତ। ଏହି ଭାରତୀୟ ଲିପିଗୁଡ଼ିକ ଭିତରୁ ଯେଉଁ ଲିପିଗୁଡ଼ିକ ଓଡ଼ିଆ ଅଭିଲେଖ ପାଇଁ ବ୍ୟବହୃତ ହୋଇଛି, ସେଗୁଡ଼ିକ ହେଲେ-

ତେଲୁଗୁ- ଛ'ଟି ଓଡ଼ିଆ ଅଭିଲେଖ ଓ ଦୁଇଟି ଓଡ଼ଆ-ତେଲୁଗୁ ଦ୍ୱିଭାଷୀ ଅଭିଲେଖ ଏହି ଲିପିରେ ଲିଖିତ। ଏଗୁଡ଼ିକର ସମୟ ତେରରୁ ପନ୍ଦର ଶତାବ୍ଦୀର ମଧ୍ୟ ଭାଗ ପର୍ଯ୍ୟନ୍ତ।

ଗ୍ରନ୍ଥ ଓ ତାମିଲ- ୧୩ ଶତାବ୍ଦୀର ଭୁବନେଶ୍ୱର ଓଡ଼ିଆ ଅଭିଲେଖର ତାମିଲ ରୂପଟି ଏହି ଲିପିରେ ଲିଖିତ।

ଏହା ବ୍ୟତୀତ ଅନ୍ୟ ସବୁ ଓଡ଼ିଆ ଅଭିଲେଖଗୁଡ଼ିକ ଉତ୍ତରାଞ୍ଚଳ ଲିପିରେ ଲିଖିତ, ଯାହାକୁ ଡଃ ତ୍ରିପାଠୀ ଚାରି ଭାଗରେ ବିଭକ୍ତ କରିଛନ୍ତି -

୧। ଦକ୍ଷିଣ ନାଗରୀ- ଖ୍ରୀଷ୍ଟାବ୍ଦ ୧୦୧୦ ବା ୧୦୫୧ର ଉରଜାମ୍ ଅଭିଲେଖଟି ଏହି ଲିପିରେ ଲିଖିତ। କଳିଙ୍ଗନଗରର ଗଙ୍ଗରାଜମାନଙ୍କ ଦାନପତ୍ରଗୁଡ଼ିକ ମଧ୍ୟ ଏହି ଲିପିରେ ଲିଖିତ। ଭାଷା ଦୃଷ୍ଟିରୁ ଏହି ଲିପିଟି ବିଷୟରେ ଜି. ରାମଦାସଙ୍କର ମତ ଯେ, ଏଥିରେ ଳ ଓ ଲ ଭିତରେ ପାର୍ଥକ୍ୟ ରକ୍ଷା କରାହୋଇଛି। ବ ଓ ୱ; ଯ ଓ ଜ, ଶ, ଷ ଓ ସ ରେ ଗଣ୍ଡଗୋଳ ହେତୁ ରାମଦାସ କୁହନ୍ତି ଯେ, ଏହା ଓଡ଼ିଆ ଭାଷାର ପ୍ରକୃତି ଯୋଗୁଁ ହିଁ ଘଟିଛି। ଏହି ଅକ୍ଷରଟିରେ ପ୍ରଥମ ଓଡ଼ିଆ ଅଭିଲେଖଟି ଲେଖଯାଇଥିବାରୁ ଏହାର ଏକ ବିଶେଷ ସ୍ଥାନ ରହିଛି ଓଡ଼ିଆ ଭାଷା ପାଇଁ। ଡଃ ତ୍ରିପାଠୀ ଖାଲି ଏ ଲିପିଟିର ଓଡ଼ିଆତ୍ୱକୁ ଅସ୍ୱୀକାର କରି ନାହାନ୍ତି, ଜି. ରାମଦାସ ଦାବି କରିଥିବା ଧ୍ୱନିତାତ୍ତ୍ୱିକ ଦୃଷ୍ଟିରୁ ଏହାର ଓଡ଼ିଆ ପ୍ରକୃତିକୁ ମଧ୍ୟ ଅସ୍ୱୀକାର କରିଛନ୍ତି। ଏହା ତର୍କ ସାପେକ୍ଷ।

୨। ପ୍ରାକ୍-ଓଡ଼ିଆ - ୧୧ ଶତାବ୍ଦୀରୁ ୧୪ ଶତାବ୍ଦ ପର୍ଯ୍ୟନ୍ତ ଏହି ଲିପିଟି ଆସାମ, ବଙ୍ଗ ଓ ଓଡ଼ିଶାରେ ବ୍ୟବହୃତ ହେଉଥିଲା, ଯେଉଁ ଲିପିରୁ ଓଡ଼ିଆ ଲିପି ଉଦ୍ଭବ ବୋଲି ଡଃ ତ୍ରିପାଠୀଙ୍କର ମତ। ପରେ ଏହି ଲିପିର ସିଧା ଉର୍ଦ୍ଧ୍ୱରେଖା ଓଡ଼ିଆରେ ଗୋଲାକାର

ହୋଇଛି। ଗଙ୍ଗ ରାଜାମାନଙ୍କ (୧୦୭୭-୧୪୩୪ ଖ୍ରୀଷ୍ଟାବ୍ଦ) ଅଭିଲେଖଗୁଡ଼ିକ ଏହି ଲିପିରେ ଲିଖିତ। ଭାଷା ଦୃଷ୍ଟିରୁ ଏଥିରେ ଳ ଓ ଲ ମଧ୍ୟରେ ପାର୍ଥକ୍ୟ ରକ୍ଷା କରାହୋଇଛି। ଏହି ଲିପି ପ୍ରାକ୍-ବଙ୍ଗଳା ଲିପି ଭାବେ ପରିଚିତ ଓ ପରେ ଡଃ ତ୍ରିପାଠୀ ଏହାକୁ ସେହି ନାମରେ ବ୍ୟବହାର କରିଛନ୍ତି।

୩। ଉତ୍ତର ନାଗରୀ ବା ଦେବନାଗରୀ- ଓଡ଼ିଆର ୧୪୦୩ ଖ୍ରୀଷ୍ଟାବ୍ଦର ଗୋଟିଏ ମାତ୍ର ଅଭିଲେଖ ଏହି ଲିପିରେ ମିଳେ। ଏହାର ଭାଷା ବିଶେଷତ୍ୱ ଭିତରେ, ଏହି ଲିପିରେ ବ ଓ ୱ ମଧ୍ୟରେ ପାର୍ଥକ୍ୟ ରକ୍ଷା କରାଯାଇଛି। ଖ ପାଇଁ ମୂର୍ଦ୍ଧଣ୍ୟ ଷ ବ୍ୟବହୃତ ହୋଇଛି। ଓଡ଼ିଆ ବା ତେଲୁଗୁ ସଂଖ୍ୟା ପରିବର୍ତ୍ତେ ନାଗରୀ ସଂଖ୍ୟା ବ୍ୟବହୃତ ହୋଇଛି। ଏହି ବିଶେଷତ୍ୱଗୁଡ଼ିକରୁ ଡଃ ତ୍ରିପାଠୀ ମନେ କରନ୍ତି ଯେ, ଏହି ଦତ୍ତପତ୍ରର ଦାତା ଲଚ୍ଚୌ ସୁରଧାଣ ପାଟନାର ଅଧିବାସୀ ହୋଇପାରନ୍ତି। ଜାତିରେ ଯଦିଓ ବ୍ରାହ୍ମଣ, ତଥାପି ଘୋଡ଼ା ବ୍ୟବସାୟ କରୁଥିବାରୁ ପ୍ରାୟ କଳିଙ୍ଗକୁ ଯାତାୟାତ କରୁଥିଲେ। ସେ ଉତ୍ତରାଞ୍ଚଳର ଲୋକ ଥିଲେ ଓ ଦାନପ୍ରତ୍ରରେ ନାଗରୀ ଲିପି ବ୍ୟବହାର କରିଥିଲେ।

୪। ପ୍ରାଚୀନ ଓଡ଼ିଆ- ଓଡ଼ିଆର ଅଧିକାଂଶ ଅଭିଲେଖ ଏହି ଲିପିରେ ଲିଖିତ। ଏହା ଓଡ଼ିଶାର ସମସ୍ତ ଅଞ୍ଚଳ ଛଡ଼ା ବିଶାଖାପଟ୍ଟନମ୍, କ୍ରିଷ୍ଣା ଓ ଗୁଣ୍ଟୁର ଅଞ୍ଚଳରୁ ମିଳିଥିବା ଅଭିଲେଖଗୁଡ଼ିକରେ ମଧ୍ୟ ବ୍ୟବହୃତ ହୋଇଛି। ଏହି ଲିପି ପ୍ରାକ୍ ଓଡ଼ିଆ ଲିପିରୁ ଉଦ୍ଭୁତ ଏବଂ ପରେ ଆଧୁନିକ ଓଡ଼ିଆ ଲିପିରେ ପରିଣତ ହୋଇଛି ବୋଲି ଗବେଷକଙ୍କର ମତ। ଏହାର ମୁଖ୍ୟ ବିଶେଷତ୍ୱ ହେଉଛି, ଏହି ଲିପିର ଉର୍ଦ୍ଧ୍ୱଭାଗ ଗୋଲାକାର। ଭାଷା ଦୃଷ୍ଟିରୁ ଏଥିରେ ଳ ଓ ଲ, ଯ ଓ ୟ ପାଇଁ ସ୍ୱତନ୍ତ୍ର ଲିପି ବ୍ୟବହୃତ ହୋଇଛି। ଏହି ଲିପିମାଳାରେ ଅ, ଆ, କ, ଚ, ଜ, ପ, ବ, ଭ, ର, ସ, ହ, ଳ ପାଇଁ ଏକାଧିକ ଅକ୍ଷର ବ୍ୟହୃତ ହେଉଥିବାର ଦେଖାଯାଏ।

ଅତଏବ, ଓଡ଼ିଆ ଭାଷାରେ ବିଧିବଦ୍ଧ ଭାବେ ଅଭିଲେଖ ଲିଖିତ ହେବା ଆରମ୍ଭ ଠାରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ମୁଖ୍ୟତଃ ଚାରୋଟି ପ୍ରକାରର ଲିପି ବ୍ୟବହୃତ ହେବାର ଦେଖାଯାଏ, ଯାହାକୁ ଡଃ ତ୍ରିପାଠୀ ସମୟାନୁକ୍ରମେ ଏହି ଭାବରେ ବିଭକ୍ତ କରିଛନ୍ତି -

୧. ଦକ୍ଷିଣ କଳିଙ୍ଗ ଲିପି- ୧୧ଶ ଶତାବ୍ଦୀ (ଏହାକୁ ସେ ଦକ୍ଷିଣ ନାଗରୀ ବୋଲି ନାମିତ କରିଛନ୍ତି।)

୨. ପ୍ରାକ୍-ଓଡ଼ିଆ ଲିପି- ୧୧ଶରୁ ୧୪ ଶ ଶତାବ୍ଦୀ (ପରେ ସେ ଏହାକୁ ପ୍ରାକ୍-ବଙ୍ଗଳା ଲିପି ବୋଲି କହିଛନ୍ତି।)

୩. ପ୍ରାଚୀନ ଓଡ଼ିଆ ଲିପି- ୧୪ଶରୁ ୧୬ଶ ଶତାବ୍ଦୀ

୪. ଆଧୁନିକ ଓଡ଼ିଆ ଲିପି- ୧୬ଶ ଶତାବ୍ଦୀରୁ ଏ ପର୍ଯ୍ୟନ୍ତ।

ତେବେ, ଏହି ବିଭାଗୀକରଣଟିକୁ ମାନିନେବା ପୂର୍ବରୁ ଅର୍ଥାତ୍ ଓଡ଼ିଆ ଲିପିର ବିକାଶ ପ୍ରାକ୍-ଓଡ଼ିଆ ଲିପିରୁ ହୋଇଛି ବୋଲି (ଯାହାକୁ ଅନ୍ୟ ଲିପିତତ୍ତ୍ୱବିଦ୍‌ମାନେ 'ପ୍ରାକ୍-ବଙ୍ଗଳା ଲିପି' ବୋଲି ନାମିତ କରିଛନ୍ତି, ଏପରିକି ନିଜେ ଡଃ ତ୍ରିପାଠୀ ବି ପରେ ସେୟା କରିଛନ୍ତି), ବିଶିଷ୍ଟ ଭାଷାତତ୍ତ୍ୱବିଦ୍ ଜର୍ଜ ଗ୍ରିଅରସନ୍‌ଙ୍କ ମତର ବିଚାର କରିବା ଉଚିତ। ତାଙ୍କ ମତରେ ଓଡ଼ିଆ ଲିପି ପ୍ରାକ୍-ବଙ୍ଗଳା ଲିପିରୁ ହୋଇନାହିଁ, ହୋଇଛି ନାଗରୀରୁ। ଏ 'ନାଗରୀ', 'ଦକ୍ଷିଣ-ନାଗରୀ' ବା 'କଳିଙ୍ଗ ଲିପି' ହୋଇପାରେ, କିନ୍ତୁ ଡଃ ତ୍ରିପାଠୀ ତାଙ୍କ ମତକୁ ସମ୍ପୂର୍ଣ୍ଣ ଭାବେ ଏଡ଼ାଇ ଯାଇଛନ୍ତି। ଅଥଚ, ସେ ନିଜେ ଓଡ଼ିଆ ଭାଷାର ପ୍ରାଚୀନତମ ଉରଜାମ୍ ଅଭିଲେଖର ଲିପି ବିଷୟରେ, ଯାହାକୁ ସେ 'ଦକ୍ଷିଣ ନାଗରୀ' ବୋଲି ଅନ୍ୟତ୍ର ନାମିତ କରିଛନ୍ତି, ସେ ଲିପିର ପ୍ରକୃତି ବିଷୟରେ ଆଲୋଚନା କରିବାକୁ ଯାଇ କହିଛନ୍ତି- ଶ ଓ କ୍ଷ ଅକ୍ଷର ଓଡ଼ିଆ ପରି ଦିଶୁଥିଲେ ମଧ୍ୟ ଜ, ଟ, ନ, ଭ, ସ ଦେଖିବାକୁ ପ୍ରାକ୍ ବଙ୍ଗଳା ପରି; ଅ, ଆ, ଉ, ଖ, ଗ, ଚ, ଥ ଅକ୍ଷରଗୁଡ଼ିକ ପ୍ରାକ୍ ବଙ୍ଗଳାଠାରୁ ଭିନ୍ନ ହେଲେ ମଧ୍ୟ ନାଗରୀଠାରୁ ଭିନ୍ନତର। କ, ଦ, ପ, ବ, ମ, ଲ, ହ ଅକ୍ଷରଗୁଡ଼ିକ ନାଗରୀ ଓ ପ୍ରାକ୍-ବଙ୍ଗଳାର ସମାନ। ର ଓ ସ୍ୱରବର୍ଣ୍ଣର ମାତ୍ରାଗୁଡ଼ିକ ଦେଖିବାକୁ ଆଧୁନିକ ନାଗରୀ ପରି। ଆଦ୍ୟ ଇ ଓ ତ ଗୁପ୍ତ ଲିପିର। କ ଅକ୍ଷରଟି ନା ପ୍ରାକ୍-ବଙ୍ଗଳା ନା ନାଗରୀ। କ ସହିତ ଅ, ଆ, ଉ, ଖ, ଗ, ଲିପିଗୁଡ଼ିକର କଳିଙ୍ଗ ବା ଦକ୍ଷିଣ ନାଗରୀ ଲିପି ସହିତ ସାମଞ୍ଜସ୍ୟ ଅଛି। ଡଃ ତ୍ରିପାଠୀଙ୍କର ଏ କ୍ଷେତ୍ରରେ ଅତ୍ୟନ୍ତ ସ୍ଥୂଳ ବିଚାର ଓଡ଼ିଆର ପ୍ରଥମ ଅଭିଲେଖଟିର ସମସ୍ତ ବିଶେଷତ୍ୱ ପଣ୍ଡ କରିଦେଇଛି। ଏବେ ବି ସେ ଜି. ରାମଦାସଙ୍କ ପରି ଅକ୍ଷର ଗଣୁଛନ୍ତି - କେଉଁଟା କେଉଁ ଭାଷାର ଅକ୍ଷର ପରି 'ଦିଶୁଛି', ଏବଂ ସେ ଚେଷ୍ଟାରେ ସେ ସମ୍ପୂର୍ଣ୍ଣ ଭାବେ ବିଭ୍ରାନ୍ତ ହୋଇଛନ୍ତି। ଆମେ ଆଗରୁ କହିଛୁ ଯେ, ଏହି ଇନ୍ଦ୍ରିୟୋପଲବ୍ଧ ଉପାୟ ଏକ ଅତ୍ୟନ୍ତ ପ୍ରମାଦବହୁଳ ପନ୍ଥା। ଗୋଟିଏ ଲିପି-ଶୃଙ୍ଖଳାକୁ ଅଧ୍ୟୟନ କରିବାକୁ ହେଲେ ତା'ର ପ୍ରତ୍ୟେକଟି ଲିପିକୁ ଗୋଟିଏ ସ୍ତରରେ ରଖି ବିଚାର କରିବାକୁ ପଡ଼ିବ। ସାମ୍ପ୍ରତିକ ଓଡ଼ିଆର ଓ, ତ, ଗ ଇତ୍ୟାଦି ବଙ୍ଗଳା ପରି, ଠ, ଥ, ଧ ହିନ୍ଦୀ ପରି; ଏକାର, ଓକାର ତାମିଲ ପରି। ତା ଅର୍ଥ କ'ଣ ପ୍ରତିଟି ଲିପିର ଭିନ୍ନ ଐତିହ୍ୟ ଅଛି ? ଗୋଟିଏ ଶୃଙ୍ଖଳା ଭିତରେ ନିର୍ଦ୍ଦିଷ୍ଟ ଅକ୍ଷରର ମୂଲ୍ୟ ନାହିଁ; ଏହାର ମୂଲ୍ୟ ହେଉଛି ଯାହା ଅନ୍ୟ ଅକ୍ଷରଗୁଡ଼ିକର ନାହିଁ। ସେୟା ଯଦି ହୁଏ, ଉରଜାମ୍ ଅଭିଲେଖର ଲିପିମାଳାକୁ ନାଗରୀ, ବଙ୍ଗଳା ସହିତ ତୁଳନା କରି ମୂଲ୍ୟାୟନ କରାଯିବା ଏକ ଅତ୍ୟନ୍ତ ଅବୈଜ୍ଞାନିକ ପଦ୍ଧତି।

ଉରଜାମ୍ ଅଭିଲେଖର ଲିପିମାଳାର କିଛି ଓଡ଼ିଆ, କିଛି ବଙ୍ଗଳା, କିଛି ନାଗରୀ ନୁହେଁ। ଏହା ଏକ ସମ୍ପୂର୍ଣ୍ଣ ସୃଷ୍ଟି ଏବଂ ସେହି ଦୃଷ୍ଟିରୁ ବିଚାର କରାଗଲେ, ହୁଏତ ଓଡ଼ିଆ ଲିପିର ପ୍ରକୃତ ବିବର୍ତ୍ତନର ଧାରା ସ୍ପଷ୍ଟ ହୋଇଥାନ୍ତା। କିନ୍ତୁ ପରିତାପର ବିଷୟ ଯେ, ଡଃ ତ୍ରିପାଠୀ ସେହି ଭ୍ରମର ବଶବର୍ତ୍ତୀ ହୋଇ ଶେଷ ପର୍ଯ୍ୟନ୍ତ ଯେଉଁ ଉପସଂହାରରେ ପହଞ୍ଚିଛନ୍ତି, ତାହା ହେଲା- ଓଡ଼ିଆ ଲିପି, ପ୍ରାକ୍ ବଙ୍ଗଳା ଲିପି (ପୂର୍ବାଞ୍ଚଳୀୟ), ନାଗରୀ ଲିପି (ପଶ୍ଚିମ ଓ ଉତ୍ତରାଞ୍ଚଳୀୟ) ଓ କଳିଙ୍ଗ ଲିପି (ଦକ୍ଷିଣାଞ୍ଚଳୀୟ) ଗୁଡ଼ିକର ଉପାଦାନରେ ଗଠିତ ହୋଇଛି (ପୃ-୪୫)। ଶେଷ ପର୍ଯ୍ୟନ୍ତ ସେ ଏହି ଭ୍ରମରୁ ମୁକ୍ତି ପାଇପାରି ନାହାନ୍ତି, ପୁଣି କହିବାକୁ ବାଧ ହୋଇଛନ୍ତି ଯେ - ଓଡ଼ିଆର ଗୋଲାକାର ଅକ୍ଷର ପ୍ରତିଷ୍ଠିତ ହୋଇ ସାରିବା ପରେ ବି ଅଭିଲେଖର ଅକ୍ଷର ଭାବେ ଓଡ଼ିଶାରେ ପ୍ରାକ୍-ବଙ୍ଗଳା ଲିପି ବ୍ୟବହୃତ ହେଉଥିଲା (ପୃ.-୪୬)। ତେଣୁ ସ୍ୱତଃ ପ୍ରକୃତ ପ୍ରାକ୍-ଓଡ଼ିଆ ଲପି ଭାବେ ଯେଉଁ ଗୌରବ ଉରଜାମ୍ ଅଭିଲେଖର ଲିପିକୁ ମିଳିବାର ଥିଲା ବୋଲି ଆମର ମନେହୁଏ, ସେଥିରୁ ସେ ଆମକୁ ବଞ୍ଚିତ କରିଛନ୍ତି। ଏ ବିଷୟରେ ଭବିଷ୍ୟତରେ ଓଡ଼ିଆ ଲିପିତତ୍ତ୍ୱବିଦ୍‌ମାନେ ବିଶେଷ ଧ୍ୟାନ ଦେବେ ବୋଲି ଆମର ବିଶ୍ୱାସ।

ଏହି ସମ୍ପର୍କରେ, ତତ୍ତ୍ୱ ଦୃଷ୍ଟିରୁ ଯେଉଁ ଶବ୍ଦଟି ଅନେକତ୍ର ବ୍ୟବହୃତ ହୋଇଛି ସେ ଶବ୍ଦଟି ହେଉଛି 'ପ୍ରାକ୍-' ବା ପ୍ରୋଟୋ- (Proto-)। ଡଃ ତ୍ରିପାଠୀ ଓଡ଼ିଆ, ଲିପିର ଗୋଟିଏ ପ୍ରକାରକୁ 'ପ୍ରୋଟୋ-ଓଡ଼ିଆ' କହିଛନ୍ତି ଓ ପୁଣି ସେହି ଲିପିକୁ କହିଛନ୍ତି 'ପ୍ରୋଟୋ-ବଙ୍ଗଳା'। ଏ ପ୍ରୋଟୋ ଶବ୍ଦର କୌଣସି ସଂଜ୍ଞା (definition) ସେ ଦେଇ ନାହାନ୍ତି ବା ଶବ୍ଦଟିକୁ ବ୍ୟାଖ୍ୟା କରି ନାହାନ୍ତି। କିନ୍ତୁ ଭାଷାବିଜ୍ଞାନ ଓ ଅନ୍ୟାନ୍ୟ ବିଜ୍ଞାନ କ୍ଷେତ୍ରରେ ପ୍ରୋଟୋ ଶବ୍ଦଟି ଏକ ପାରିଭାଷିକ ଶବ୍ଦ ଭାବେ ବ୍ୟବହୃତ ହୋଇଥାଏ, ଯାହାର ଅର୍ଥ ହେଉଛି ଏହା ଗୋଟିଏ construct ବା ଏକ 'ପୁନର୍ଗଠିତ ସଙ୍କେତ'। ଏହାର ସ୍ଥିତିର ପ୍ରମାଣ ମିଳୁ କି ନ ମିଳୁ, ବିବର୍ତ୍ତନର ଧାରାକୁ ବୁଝାଇ ପାଇଁ ଏହି ସଙ୍କେତଟିକୁ କଳ୍ପନା କରାଯାଇଥାଏ ବା ପୁନର୍ଗଠିତ କରାଯାଇଥାଏ। ସେ ବିଷୟରେ ବିଶଦ ଚର୍ଚ୍ଚା ଏଠାରେ ସମ୍ଭବ ନୁହେଁ। ତେବେ ଏହି ପ୍ରୋଟୋ ଶବ୍ଦଟି ଲିପିତତ୍ତ୍ୱବିଦ୍‌ମାନଙ୍କ ଦ୍ୱାରା ବହୁ କ୍ଷେତ୍ରରେ ବ୍ୟବହୃତ ହୋଇଛି, ଡଃ ତ୍ରିପାଠୀଙ୍କ ଆଲୋଚନାରେ ବି। କିନ୍ତୁ ଏ ଶବ୍ଦଟିର ସଂଜ୍ଞା ବିନା ଏହା କେଉଁ ଅର୍ଥରେ ଗ୍ରହଣ କରାଯିବ- ଠିକ୍ କରିବା ଦୁଷ୍କର। ଗୋଟିଏ ଉଦାହରଣ ନିଆଯାଉ। ଓଡ଼ିଆ ଅଭିଲେଖର 'କ' ଲିପିର ବର୍ଣ୍ଣନା ଦେଇ ଡଃ ତ୍ରିପାଠୀ କୁହନ୍ତି ଯେ, ଏହାର ତିନୋଟି ରୂପ ମିଳେ- (୧) ଗୋଟିଏ ପୁଡ଼ା ଥିବା ଲିପି, (୨) ଦୁଇଟି ପୁଡ଼ା ଥିବା ଲିପି ଓ (୩) ଦୁଇଟି ପୁଡ଼ା ଥାଇ ଉପରେ ରେଖା ନ ଥିବା ଲିପି। ପ୍ରଥମ ପ୍ରକାରଟି ହେଉଛି

ପ୍ରୋଟୋ-ବଙ୍ଗଳା, ଦ୍ୱିତୀୟଟି ପ୍ରଥମରୁ ଉଦ୍ଭୂତ ଓ ତୃତୀୟଟି ଦ୍ୱିତୀୟରୁ ଉଦ୍‌ଭୂତ ଓ ଊର୍ଦ୍ଧ୍ୱରେଖାର ଲୋପ (ପୃ-୫୬)। ଏହି ତିନୋଟି କ-ପ୍ରକାରକୁ ନେଇ ଗୋଟିଏ ଆଦିରୂପ ଯଦି ପୁନର୍ଗଠିତ (reconstructed ) କରାଯାଇଥାନ୍ତା, ତାହା ବୈଜ୍ଞାନିକ ମତରେ ହୋଇଥାନ୍ତା ପ୍ରକୃତ ଓଡ଼ିଆ 'ପ୍ରୋଟୋ-କ' ଲିପି, ଯେଉଁଥିରୁ ତିନୋଟିଯାକ କ-ପ୍ରକାରକୁ ବାହାର କରାଯାଇ ପାରିଥାନ୍ତା। କିନ୍ତୁ ଲିପିତତ୍ତ୍ୱବିଦ୍‌ମାନଙ୍କ ଦ୍ୱାରା ତାହା କରାନଯାଇ ପ୍ରୋଟୋ ଶବ୍ଦଟିକୁ ଯଥେଚ୍ଛ ବ୍ୟବହାର କରାଯାଇଛି। ତେଣୁ ପ୍ରୋଟୋବଙ୍ଗଳା ଲିପି ବା ପ୍ରୋଟୋ-ଓଡ଼ିଆ ଲିପିର କୌଣସି ଅର୍ଥ ନାହିଁ, ଏବଂ ଏହା ପାଠକକୁ ବୃଥାରେ ଭୁଆଁ ବୁଲାଇଥାଏ। ପ୍ରକୃତ ପ୍ରୋଟୋ ଓଡ଼ିଆ ଲିପିକୁ ବୈଜ୍ଞାନିକ ପ୍ରଣାଳୀରେ ପୁନର୍ଗଠିତ କରିବାକୁ ହେଲେ ତତ୍‌କାଳୀନ ଓଡ଼ିଆ ଲିପି ଗୁଡ଼ିକର ବିଭିନ୍ନ ପ୍ରକାର, ଯେଉଁ ପ୍ରକାରଗୁଡ଼ିକୁ ପ୍ଲେଟ୍‌ରେ ଡଃ ତ୍ରିପାଠୀ ସନ୍ନିହିତ କରିଛନ୍ତି, ସେଗୁଡ଼ିକୁ ଧରି ଏହା କରାଯାଇପାରିଥାନ୍ତା ଏବଂ ପ୍ରୋଟୋ ନାମକରଣର ବୈଜ୍ଞାନିକତାକୁ ରକ୍ଷା କରାଯାଇ ପାରିଥାନ୍ତା। କିନ୍ତୁ ତା'ର ଅଭାବରେ ପ୍ରୋଟୋ ଶବ୍ଦର ବ୍ୟବହାର ଏ ଆଲୋଚନାରେ ସମ୍ପୂର୍ଣ୍ଣ ନିରର୍ଥକ ଓ ଗୋଟିଏ ବୈଜ୍ଞାନିକ ପରିଭାଷାର ଅପବ୍ୟବହାର।

ଏହା ପରେ, ଅଭିଲେଖଗୁଡ଼ିକର ଭାଷା। ଏ ସମ୍ପର୍କରେ ଡ.ତ୍ରିପାଠୀ କୁହନ୍ତି ଯେ, ୭୧ଟି ଅଭିଲେଖରୁ ୩୯ଟି ବା ଅଧିକରୁ ବେଶୀ ଭାଗ ଆନ୍ଧ୍ରପ୍ରଦେଶର ସିଂହାଚଲମ୍ ଓ ଶ୍ରୀକୂର୍ମମ୍ ମନ୍ଦିରରୁ ମିଳେ। ଏହାଛଡ଼ା ଗଙ୍ଗ ଓ ଗଜପତି ରାଜାମାନଙ୍କ ଅମଳରେ ସମଗ୍ର ଓଡ଼ିଶା ତଥା ଆନ୍ଧ୍ରର ଏକ ବିରାଟ ତେଲୁଗୁଭାଷୀ ଅଞ୍ଚଳ ଏମାନଙ୍କର ଶାସନାଧୀନ ଥିଲା, ତେଣୁ ଓଡ଼ିଆ ଓ ତେଲୁଗୁ ତଥା ଅନ୍ୟାନ୍ୟ ଦ୍ରାବିଡ଼ ଭାଷା ଭିତରେ ଘନିଷ୍ଠ ଆଦାନ ପ୍ରଦାନ ଗଢ଼ି ଉଠିଥିଲା; ଯାହାର ପ୍ରଭାବ ଓଡ଼ିଆ ଭାଷା ଓ ଅଭିଲେଖଗୁଡ଼ିକ ଉପରେ ଦେଖିବାକୁ ମିଳେ। ତେବେ ଓଡ଼ିଆ ଅଭିଲେଖଗୁଡ଼ିକର ସୀମିତ ବିଷୟବସ୍ତୁ ହେତୁ (ଦ୍ରଷ୍ଟବ୍ୟ-ପୃ-୨୨୫ରୁ ୩୨୧), ମାତ୍ର କେତେକ ନିର୍ଦ୍ଦିଷ୍ଟ ବିଷୟକ ଶବ୍ଦ ଯଥା- ମାପ, ଓଜନ ଇତ୍ୟାଦି ବା ମନ୍ଦିରରେ ପ୍ରଚଳିତ ଥିବା ଭୋଗ ବା ସେବା ସମ୍ବନ୍ଧୀୟ ଶବ୍ଦ ଦକ୍ଷିଣର ଭାଷାଗୁଡ଼ିକରୁ ଆସି ଓଡ଼ିଆରେ ପ୍ରବେଶ କରିଥିଲା। ଡ. ତ୍ରିପାଠୀ ଏହାର ଯଥେଷ୍ଟ ବିବରଣୀ ଦେଇଛନ୍ତି। ଅଧ୍ୟାୟ ଛ'ରୁ ଅଧ୍ୟାୟ ଚଉଦ ପର୍ଯ୍ୟନ୍ତ ଓଡ଼ିଆ ଅଭିଲେଖଗୁଡ଼ିକର ଭାଷା ଉପରେ ଚର୍ଚ୍ଚା ସ୍ଥାନ ପାଇଛି, ଯଦିଓ ପରବର୍ତ୍ତୀ ଅଧ୍ୟାୟଗୁଡ଼ିକରେ ଓଡ଼ିଆ ଭାଷାଗତ ଆଲୋଚନା ସହିତ ଅଭିଲେଖ ଭାଷାର ସମ୍ବନ୍ଧ ସାମାନ୍ୟ। ସେ ଅଧ୍ୟାୟଗୁଡ଼ିକ ଏ ଗ୍ରନ୍ଥର ବୃଥା କଳେବର ବୃଦ୍ଧି କରୁଛନ୍ତି। ଯଦିଓ ଓଡ଼ିଆ ଭାଷାର ବିବର୍ତ୍ତନ ଦୃଷ୍ଟିରୁ, ବିଶେଷତଃ ଗଦ୍ୟ ଶୈଳୀର ବିକାଶ ଦୃଷ୍ଟିରୁ ଏହି ଅଭିଲେଖଗୁଡ଼ିକର ଭାଷାର ଯଥେଷ୍ଟ ମୂଲ୍ୟ ଅଛି। ଭାଷା ବିଷୟରେ ଏ

ଗ୍ରନ୍ଥରେ ଯେଉଁ ଦୀର୍ଘ ଆଲୋଚନା ସ୍ଥାନ ପାଇଛି, ସେଥିରେ ବିଶେଷ କିଛି ମୌଳିକତା ନାହିଁ। ପ୍ରାଚୀନ ଫିଲୋଲଜିର ଧାରାରେ ଏହା କରାଯାଇଛି। କିନ୍ତୁ, ଯେତିକି ଭାଷା ବିଷୟକ ତଥ୍ୟ ସେ ବହୁ ଆୟାସ ସହକାରେ ସଂକଳିତ କରିଛନ୍ତି, ତାହା ଓଡ଼ିଆ ଭାଷା ଓ ଇତିହାସକୁ ଯେ ଏକ ବିରାଟ ଅବଦାନ, ସେ ବିଷୟରେ ଆମର କୌଣସି ସନ୍ଦେହ ନାହିଁ। ଅଭିଲେଖଗୁଡ଼ିକର ଯେଉଁ ଅଧ୍ୟୟନ ପାରମ୍ପରିକ ରୀତିରେ ଓଡ଼ିଶାରେ ବହୁ ଦିନରୁ ଚଳି ଆସୁଥିଲା, ତା' ତୁଳନାରେ ଡ. ତ୍ରିପାଠୀଙ୍କ ବିଧିବଦ୍ଧ ଗବେଷଣା ନୂତନ ସମ୍ଭାବନାର ପଥ ପ୍ରଦର୍ଶନ କରିଛି। ଦୁଃଖର ବିଷୟ, ନା ଦେଶରେ ନା ବାହାରେ ତାଙ୍କ ଗବେଷଣା ଓ ତଥ୍ୟ ବିଶେଷ ପ୍ରଭାବ ପକାଇପାରିଛି। ଏପରିକି ଓଡ଼ିଆ ସାହିତ୍ୟର ତାଙ୍କ ନିଜର ଛାତ୍ରମାନେ ବା ଓଡ଼ିଆ ଭାଷା ବିଜ୍ଞାନର ଛାତ୍ରମାନେ ତାଙ୍କ ଗବେଷଣା ଦ୍ୱାରା ବିଶେଷ ଭାବେ ପ୍ରଣୋଦିତ ହୋଇଛନ୍ତି। ଭାରତର ଅଳ୍ପ କେତୋଟି ଭାଷାକୁ ଛାଡ଼ିଦେଲେ, କ୍ୱଚିତ୍ ଗୋଟିଏ ଆଧୁନିକ ଆଞ୍ଚଳିକ ଭାଷାରେ ଏତେ ପରିମାଣରେ ଅଭିଲେଖ ମିଳିଥାଏ। ଓଡ଼ିଆ ଭାଷାର ଅଧ୍ୟୟନ କ୍ଷେତ୍ରରେ ଏହି ଅଭିଲେଖଗୁଡ଼ିକର ଭୂମିକା ଅତ୍ୟନ୍ତ ସ୍ପଷ୍ଟ ଭାବେ ଡ. ତ୍ରିପାଠୀ ଉପସ୍ଥାପିତ କରିଯାଇଛନ୍ତି। ଏହାର ଉତ୍ତରୋତ୍ତର ଚର୍ଚ୍ଚା ହେବା ଏକାନ୍ତ ଆବଶ୍ୟକ। ଓଡ଼ିଶାର ପ୍ରତ୍ନାଗାରଗୁଡ଼ିକ ଅଭିଲେଖଗୁଡ଼ିକୁ ସଂଗ୍ରହ କରି ଛାତ୍ରମାନଙ୍କ ପାଇଁ ଅନୁକୂଳ ଅବସ୍ଥା ସୃଷ୍ଟି କରିବା ଏକାନ୍ତ ପ୍ରୟୋଜନୀୟ। ଡ. ତ୍ରିପାଠୀ ଦୀର୍ଘ ଚାଳିଶ ବର୍ଷ ତଳେ ଯେଉଁ କଷ୍ଟ ସ୍ୱୀକାର କରି ଏହି ଅମୂଲ୍ୟ ଉପାଦାନଗୁଡ଼ିକୁ ଏକତ୍ର କରିଥିଲେ, ସେ ଅବସ୍ଥାର ବିଶେଷ ପରିବର୍ତ୍ତନ ହୋଇଛି ବୋଲି ଆମର ମନେହୁଏ ନାହିଁ। ଏବେ ବି ଯଦି କେହି ଓଡ଼ିଆ ଅଭିଲେଖର ଚର୍ଚ୍ଚାରେ ନିବିଷ୍ଟ ହେବାପାଇଁ ଇଚ୍ଛୁକ ହେବ, ତା'କୁ ବି ପୁଣି ସେହି ମୂଳରୁ ଆରମ୍ଭ କରିବାକୁ ପଡ଼ିବ। ଏହା ଖାଲି କ୍ଷୋଭର ବିଷୟ ନୁହେଁ, ଲଜ୍ଜାର ବିଷୟ ମଧ୍ୟ। ଯେଉଁ ଜାତି ତା'ର ଇତିହାସକୁ ଉଦ୍ଧାର କରିବାକୁ ଶିଖିନାହିଁ, ସେ ଜାତିର ଇତିହାସ ବୋଲି କିଛି ନାହିଁ। ନାନା କାରଣରୁ ଓଡ଼ିଆ ଜାତିର ସଭ୍ୟତା, ସଂସ୍କୃତି, ଭାଷା, ସାହିତ୍ୟ, ଇତିହାସ ବୋଲି କିଛି ନାହିଁ। ନାନା କାରଣରୁ ଓଡ଼ିଆ ଜାତିର ସଭ୍ୟତା, ସଂସ୍କୃତି, ଭାଷା, ସାହିତ୍ୟ, ଇତିହାସ ଅନ୍ୟମାନଙ୍କ କଲମ ଜୋର୍‌ରେ ବିକୃତ ବିକଳାଙ୍ଗ ରୂପ ନେଇଛି ଓ ଓଡ଼ିଆ ଛାତ୍ରମାନେ ସେ ବିକଳତାକୁ ବିନା ପ୍ରତିବାଦରେ ଗ୍ରହଣ କରୁଛନ୍ତି। ଆମର ତିଳେ ହେଲେ କୁଣ୍ଠା ନାହିଁ କହିବାକୁ ଯେ, ଡ. କୁଞ୍ଜବିହାରୀ ତ୍ରିପାଠୀ ମୁଷ୍ଟିମେୟ ଓଡ଼ିଆ ବିଦ୍ୱାନମାନଙ୍କ ମଧ୍ୟରୁ ଅନ୍ୟତମ, ଯେ ବିଧିବଦ୍ଧ ଭାବେ ଚେଷ୍ଟା କରି ଓଡ଼ିଆ ଲିପିତତ୍ତ୍ୱର ଦ୍ୱାର ଉନ୍ମୋଚନ କରିଯାଇଛନ୍ତି। ସେଥିପାଇଁ ଏ ଜାତି ତାଙ୍କ ଠାରେ ଚିରଋଣୀ ରହିବ।



# ଓଡ଼ିଆ ଅକ୍ଷର

## ବିଜୟ ପ୍ରସାଦ ମହାପାତ୍ର

ଓଡ଼ିଆ ଅକ୍ଷର ପ୍ରାଚୀନ ବ୍ରାହ୍ମୀ ଲିପିରୁ ଉଦ୍‌ଭୂତ ବୋଲି ଧରାଯାଇଥାଏ ଏବଂ ଏହି ଅକ୍ଷର ବ୍ରାହ୍ମୀର ଅନ୍ୟାନ୍ୟ ଧାରା, ଯଥା, ବଙ୍ଗଳା-ଅସମୀୟା-ମୈଥିଳୀ ବା ଦେବନାଗରୀ ଅକ୍ଷରଠାରୁ ଭିନ୍ନ। ଓଡ଼ିଆ ଅକ୍ଷରଗୁଡ଼ିକର ବର୍ତ୍ତୁଳାକାର ଆକୃତି ହେତୁ ଏହା ପ୍ରଥମ ଦୃଷ୍ଟିରେ ଦକ୍ଷିଣ ଭାରତୀୟ ଧାରାର ବୋଲି ମନେ ହୋଇପାରେ, କିନ୍ତୁ ଏହା ଠିକ୍ ନୁହେଁ। ଓଡ଼ିଆ ଅକ୍ଷରଗୁଡ଼ିକୁ ବିଶ୍ଲେଷଣ କଲେ ଦେଖାଯାଏ ଯେ, ଓଡ଼ିଆର ଅକ୍ଷରଗୁଡ଼ିକ ଦୁଇଟି ଭାଗକୁ ନେଇ ଗଠିତ - ଗୋଟିଏ 'ଭେଦକା ଭାଗ' ବା distinctive feature ଓ ଅନ୍ୟଟି ଆଳଙ୍କାରିକ ଭାଗ ବା ornamental feature । ଉଦାହରଣ ସ୍ୱରୂପ ଦ ଆଉ ବ ବା ତ ଆଉ ଡ ଭିତରେ ଥିବା ପାର୍ଥକ୍ୟ ଭେଦକା ଭାଗର ପାର୍ଥକ୍ୟ ଯୋଗୁ ଘଟିଥାଏ, କାରଣ ଅଳଙ୍କରଣ ଅର୍ଦ୍ଧବୃତ୍ତାକାର। ସେହିପରି ଉ, ଭ, ର, ଲ ଆଦି 'ଅର୍ଦ୍ଧବୃତ୍ତ ଆଉ ଲାଞ୍ଜ' ଅଳଙ୍କରଣର ଅନ୍ତର୍ଗତ। ଅଳଙ୍କରଣ ଦୃଷ୍ଟିରୁ ଏହି ଚାରୋଟି ଅକ୍ଷର ସମାନ ହେଲେ ମଧ୍ୟ ଏଗୁଡ଼ିକର ଭେଦକା ଭାଗରେ ପାର୍ଥକ୍ୟ ହେତୁ ସେମାନଙ୍କର ଭିନ୍ନତ୍ୱ ପ୍ରକାଶ ପାଇଥାଏ। ଅପର ପକ୍ଷେ, ଚ ଓ ର ବା ଳ ଓ ଲ ଭିତରେ ଥିବା ପାର୍ଥକ୍ୟ କେବଳ ଅଳଙ୍କରଣର ପାର୍ଥକ୍ୟ ଯୋଗୁ ଘଟିଥାଏ। ଚ ଓ ର ବା ଳ ଓ ଲ ର ଭେଦକା ଅଂଶଗୁଡ଼ିକ ସମାନ, କିନ୍ତୁ ଚ, ଳ ଦୁଇଟି ଅର୍ଦ୍ଧବୃତ୍ତାକାର ଅଳଙ୍କରଣର ଅନ୍ତର୍ଗତ ଓ ସେହିପରି ର, ଲ ଦୁଇଟି ଅର୍ଦ୍ଧ ବୃତ୍ତାକାର - ଲାଞ୍ଜ ଅଳଙ୍କରଣର ଅନ୍ତର୍ଗତ। ଭେଦକା ଭାଗ ଦୃଷ୍ଟିରୁ ଳ ଓ ଲ ଭିତରେ କୌଣସି ପାର୍ଥକ୍ୟ ନାହିଁ। କିନ୍ତୁ ଅଳଙ୍କରଣଗତ ପାର୍ଥକ୍ୟରୁ ହିଁ ଆମେ ଏ ଦୁଇଟି ଅକ୍ଷର ଭିତରେ ଥିବା ପାର୍ଥକ୍ୟକୁ ଦେଖିଥାଉ, ଯଥା- ଳ ହେଉଛି ଏକ ଅର୍ଦ୍ଧବୃତ୍ତାକାର ଅକ୍ଷର ଓ ଲ ଏକ ଅର୍ଦ୍ଧ ବୃତ୍ତାକାର-ଲାଞ୍ଜ ଥିବା ଅକ୍ଷର।

ଭାଷାକୁ ନେଇ ଲିପିର ସୃଷ୍ଟି। ଓଡ଼ିଆ ଭାଷା ବୋଧହୁଏ ସୃଷ୍ଟି ହେବାର ବହୁ ପୂର୍ବରୁ ଭାରତରେ ବିଭିନ୍ନ ଲିପିର ପ୍ରଚଳନ ଥିଲା, ଯାହାର ଏକ ଧାରା ଓଡ଼ିଆ ଲିପିରେ ପରିଣତ ହୋଇଛି। ଏହି ଲିପି ବ୍ରାହ୍ମୀ-ମୂଳକ ଓ ଏହାର ବଙ୍ଗଳା-ଅସମୀୟା-ମୈଥିଳୀ

ଲିପି ଓ ଦେବନାଗରୀ ସହିତ ସମ୍ବନ୍ଧ ଅଛି। ତେବେ ଓଡ଼ିଆ ଲିପି ସହିତ ଦ୍ରାବିଡ଼ୀୟ ଲିପିର ସମ୍ବନ୍ଧ କ୍ୱଚିତ୍ ପଣ୍ଡିତମାନଙ୍କର ଦୃଷ୍ଟି ଆକର୍ଷଣ କରିଛି। ଯେ କୌଣସି କାରଣରୁ ହେଉ, ବ୍ରାହ୍ମୀ ଲିପିର ଏହି ପୂର୍ବାଞ୍ଚଳୀୟ ଶାଖାଟି ଏକଦା ବହୁଳ ଭାବେ ପ୍ରଚାରିତ ହୋଇ ଏକ ଦିଗରେ ତିବ୍ବତ ଓ ଅନ୍ୟ ଦିଗରେ ଦ୍ରାବିଡ଼ ଅଞ୍ଚଳକୁ ମଧ୍ୟ ଯାଇଥିଲା। ଅନ୍ୟାନ୍ୟ ଦିଗଗୁଡ଼ିକୁ ଛାଡ଼ିଦେଲେ ମଧ୍ୟ ଏହି ପୂର୍ବାଞ୍ଚଳୀୟ ଲିପିର, ବିଶେଷ କରି ଓଡ଼ିଆର ଓ ବଙ୍ଗଳାର ଯେଉଁ ବୈଶିଷ୍ଟ୍ୟ ହଠାତ୍ ଆଖିରେ ପଡ଼େ, ସେ ହେଉଛି ଓଡ଼ିଆ ଓ ବଙ୍ଗଳାର ଏ-କାର ଓ ଓ-କାର ମାତ୍ରା ଚିହ୍ନ। ଓଡ଼ିଆ ଓ ବଙ୍ଗଳାର ଏହି ମାତ୍ରାଚିହ୍ନ ଦୁଇଟିର ସମ୍ବନ୍ଧ ଦେବନାଗରୀ ସହିତ ନହୋଇ ହୋଇଛି ତାମିଲ୍ ଲିପି ସାଙ୍ଗରେ।

ଆଗରୁ କୁହାଯାଇଛି- ଓଡ଼ିଆ ଲିପିର ବୈଶିଷ୍ଟ୍ୟ ହେଉଛି ଯେ, ଗଠନ ଦୃଷ୍ଟିରୁ ଓଡ଼ିଆ ଲପି ଦୁଇ ଭାଗରେ ବିଭକ୍ତ। ଗୋଟିଏ ଭେଦକା ଭାଗ ଓ ଅନ୍ୟଟି ଆଲଙ୍କାରିକ ଭାଗ। ତେଣୁ ଓଡ଼ିଆ ଅକ୍ଷରକୁ ଚିହ୍ନିବାକୁ ହେଲେ ଆମକୁ ଅକ୍ଷରର ଦୁଇଟି ଭାଗ ପ୍ରତି ଦୃଷ୍ଟି ଦେବାକୁ ପଡ଼ିଥାଏ - ଏହାର ଭେଦକା ଭାଗକୁ ଓ ଏହାର ଆଲଙ୍କାରିକ ଭାଗକୁ। ଯଦି ଏହି ଦୁଇଟିଯାକ ଭାଗ ପ୍ରତି ସମ୍ୟକ୍ ଧ୍ୟାନ ନ ଦିଆଯାଏ, ଅ/ଥ ଭିତରେ, ଲ/ର ଭିତରେ, ଚ/ଗ ଭିତରେ, ସ/ମ ଭିତରେ ବା ଡ/ଉ ଭିତରେ ପାର୍ଥକ୍ୟ ଦେଖିବା ଅସମ୍ଭବ ହୋଇ ପଡ଼ିବ। ମାତ୍ରାଚିହ୍ନ ଓ ଯୁକ୍ତାକ୍ଷରଗୁଡ଼ିକୁ ବାଦ୍‌ଦେଲେ, ଏହି ଗଠନ ଦୃଷ୍ଟିରୁ ଓଡ଼ିଆ ଲିପିମାନଙ୍କର ଆଲଙ୍କାରିକ ପ୍ରକାର ହେଉଛି ଚାରୋଟି, ଯାହା ସହିତ ଭେଦକା ଅଂଶଗୁଡ଼ିକୁ ଯୋଡ଼ି ସମ୍ପୂର୍ଣ୍ଣ ଅକ୍ଷର ସୃଷ୍ଟି କରାଯାଇଥାଏ,

୧. ଉର୍ଦ୍ଧ୍ୱ ଅର୍ଦ୍ଧବୃତ୍ତାକାର- କ, ଙ, ଚ, ଛ, ଜ, ଡ, ଢ, ତ, ଦ, ନ, ବ, ଳ, ହ
୨. ଉର୍ଦ୍ଧ୍ୱ ଅର୍ଦ୍ଧବୃତ୍ତାକାର ଓ ଲାଞ୍ଜ- ଇ, ଈ, ଉ, ଊ, ର, ଭ, ଋ, ଲ
୩. ଉର୍ଦ୍ଧ୍ୱ ଅର୍ଦ୍ଧବୃତ୍ତାକାର ଓ ବାଡ଼ି- ଖ, ଗ, ଘ, ଣ, ପ, ଫ, ମ, ଯ, ୟ, ଶ, ଷ, ସ
୪. ନିମ୍ନ ଅର୍ଦ୍ଧବୃତ୍ତାକାର ଓ ବାଡ଼ି- ଅ, ଆ, ଥ, ଧ
୫. ଅନ୍ୟ କେତୋଟି ଅକ୍ଷର- ଏ, ଐ, ଓ, ଔ, ଞ, ଟ, ଠ, ଣ୍ଡ।

ଏହି ଆଲଙ୍କାରିକ ଭାଗକୁ ନେଇ ବିଭିନ୍ନ ଅକ୍ଷରର ସୃଷ୍ଟି ଏବଂ ଓଡ଼ିଆ ଲିପିଗୁଡ଼ିକୁ ଏହି ଆଲଙ୍କାରିକ ଅବଗୁଣ୍ଠନରୁ ମୁକ୍ତ କଲେ ଅନ୍ୟାନ୍ୟ ବ୍ରାହ୍ମୀମୂଳକ ଅକ୍ଷର ସହିତ ଏହାର ଘନିଷ୍ଠ ସମ୍ବନ୍ଧ ତତ୍‌କ୍ଷଣାତ୍ ସ୍ପଷ୍ଟ ହୋଇଥାଏ। ଏହାହିଁ ହେଉଛି ଓଡ଼ିଆ ଅକ୍ଷରର ବୈଶିଷ୍ଟ୍ୟ।

ବର୍ତ୍ତମାନ ଏହି ଅକ୍ଷରଗୁଡ଼ିକୁ ସେମାନଙ୍କ ଉଚ୍ଚାରଣ ବା ଧ୍ୱନି-ମୂଲ୍ୟ ଦୃଷ୍ଟିରୁ ବିଚାର କଲେ ଦେଖାଯାଏ ଯେ, ଓଡ଼ିଆରେ ବେଶ୍ କିଛି ଅକ୍ଷର ଚଳନ୍ତି, ଯେଉଁଗୁଡ଼ିକର ଧ୍ୱନିଗତ

ସ୍ୱାତନ୍ତ୍ର୍ୟ ନାହିଁ। ସେ ଦୃଷ୍ଟିରୁ ପ୍ରୟୋଜନୀୟତା ଅପେକ୍ଷା ଆମ ବର୍ଣ୍ଣମାଳାରେ ବେଶ୍ କେତୋଟ ବେଶୀ ଅକ୍ଷର ଚଳନ୍ତି, ଯେପରି ସ-ଧ୍ୱନି ପାଇଁ ଆମ ଭାଷାରେ ତିନୋଟି ଅକ୍ଷର ଶ, ଷ, ସ ବ୍ୟବହୃତ ହୋଇଥାନ୍ତି। ତେବେ ଏହି ଅକ୍ଷରଗୁଡ଼ିକର ଧ୍ୱନିଗତ ସ୍ୱାତନ୍ତ୍ର୍ୟ ନ ଥିଲେ ମଧ, ଏମାନେ ଲିଖିତ ଭାଷାରେ ବନାନ୍‌ଗତ ପାର୍ଥକ୍ୟ ରକ୍ଷା କରିବାରେ ସାହାଯ୍ୟ କରିଥାନ୍ତି - ଯେପରି ଗାଇ ଓ ଗାଈ। ଉଚ୍ଚାରଣ ଦୃଷ୍ଟିରୁ ଏ ଶବ୍ଦ ଦୁଇଟିରେ କୌଣସି ପାର୍ଥକ୍ୟ ନ ଥିଲେ ମଧ ବନାନ୍‌ରେ ପାର୍ଥକ୍ୟ ଦେଖାଇ ସେମାନେ ଭିନ୍ନ ଶବ୍ଦର ସୂଚନା ଦେଇଥାନ୍ତି।

ଓଡ଼ିଆ ବର୍ଣ୍ଣମାଳାର ଏହି ଅଧିକା ଅକ୍ଷରଗୁଡ଼ିକ ମୁଖ୍ୟତଃ ତତ୍ସମ ଓ ତଦ୍‌ଭବ ଶବ୍ଦଗୁଡ଼ିକର ବନାନ ରକ୍ଷା କରିବାରେ ବ୍ୟବହୃତ ହୋଇଥାନ୍ତି। ବର୍ଣ୍ଣମାଳାର ଏହି ଅଧିକା ଅକ୍ଷରଗୁଡ଼ିକ ହେଲେ -

ଈ - ଦୀର୍ଘ ଈ = ହ୍ରସ୍ୱ ଇ

ଊ - ଦୀର୍ଘ ଊ = ହ୍ରସ୍ୱ ଉ

ଋ - ସ୍ୱର ଋ = ରୁ

ଙ- କଣ୍ଠନାସିକ୍ୟ = ଓଁ। ଅବଶ୍ୟ ଯୁକ୍ତାକ୍ଷରରେ ଏହା କଣ୍ଠ୍ୟନାସିକ୍ୟ ଉଚ୍ଚାରଣ ରକ୍ଷା କରିଥାଏ। ଯଥା- ଙ୍କ, ଙ୍ଖ, ଙ୍ଗ, ଙ୍ଘ।

ଞ- ତାଲବ୍ୟ ନାସିକ୍ୟ = ନ୍ୟ। ଯୁକ୍ତାକ୍ଷରରେ ଏହା ତାଲବ୍ୟ ନାସିକ୍ୟ ଉଚ୍ଚାରଣ ରକ୍ଷା କରିଥାଏ, ଯଥା- ଞ୍ଚ, ଞ୍ଛ, ଞ୍ଜ, ଞ୍ଝ।

ଯ- ଅନ୍ତ୍ୟସ୍ଥ ଯ = ଜ୍ୟ। ସ୍ୱରବର୍ଣ୍ଣ ଯୋଗ ହେଲେ ଯ ଅକ୍ଷର ଜ ହୋଇ ଉଚ୍ଚାରିତ ହୋଇଥାଏ।

ଶ- ତାଲବ୍ୟ ଶ = ଦନ୍ତ୍ୟ ସ

ଷ- ମୂର୍ଦ୍ଧଣ୍ୟ ଷ = ଦନ୍ତ୍ୟ ସ

କ୍ଷ- କ୍+ଷ= ଖ୍ୟ। ଇ- ସ୍ୱର ଯୋଗ ହେଲେ ଏହା ଖ ହୋଇ ଉଚ୍ଚାରିତ ହୋଇଥାଏ।

ବର୍ଣ୍ଣମାଳାର ଏହି ଅକ୍ଷରଗୁଡ଼ିକୁ ବାଦ୍ ଦେଲେ ଅନ୍ୟ ସବୁ ଅକ୍ଷରର ସ୍ୱତନ୍ତ୍ର ଉଚ୍ଚାରଣ ଅଛି। ଏହି ଅକ୍ଷରଗୁଡ଼ିକ ଛଡ଼ା ଓ ଓଡ଼ିଆରେ ତିନୋଟି ଅଯୋଗବାହ ଚିହ୍ନ ମଧ ଚଳନ୍ତି, ଯଥା-

ଅନୁସ୍ୱାର- କଣ୍ଠ୍ୟ ନାସିକ୍ୟ। ଓଡ଼ିଆ ବନାନ୍‌ରେ ଅନୁସ୍ୱାର ଏବେ ଯୁକ୍ତାକ୍ଷର ଜାଗାରେ ବହୁଳ ଭାବେ ବ୍ୟବହୃତ ହେଉଛି, ଯଥା- ଅଂକ, ପଂଖା, ଡଂଗା, ଜଂଘ ଇତ୍ୟାଦି।

ବିସର୍ଗ- ଜିହ୍ୱାମୂଳୀୟ। ଏହା ହ ବର୍ଣ୍ଣର ଏକ ପ୍ରକାର ଓ ଅଳ୍ପ କେତୋଟି ତତ୍ସମ ଶବ୍ଦରେ ବ୍ୟବହୃତ ହୋଇଥାଏ, ଯଥା- ଦୁଃଖ, ମୂଳତଃ ଇତ୍ୟାଦି

ଚନ୍ଦ୍ରବିନ୍ଦୁ- ଅନୁନାସିକ। ଏହା ସ୍ୱରବର୍ଣ୍ଣର ଅନୁସାସିକତାକୁ ଚିହ୍ନିତ କରିଥାଏ, ଯଥା- କଇଁ, ଭଅଁର ଇତ୍ୟାଦି।

ଓଡ଼ିଆରେ ଲେଖନ ପ୍ରଣାଳୀ ଏକ ଆକ୍ଷରିକ (Syllable) ପ୍ରଣାଳୀ, ଅର୍ଥାତ୍ ପ୍ରତିଟି ଲିପି ଗୋଟିଏ ପୂର୍ଣ୍ଣ ଅକ୍ଷର (Syllable) ଭାବେ ଉଚ୍ଚାରିତ ହୋଇଥାଏ। ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକ ଯେଉଁ ସ୍ୱରବର୍ଣ୍ଣ ସାହାଯ୍ୟରେ ପୂର୍ଣ୍ଣ ଅକ୍ଷର ଭାବେ ଉଚ୍ଚାରିତ ହୋଇଥାଆନ୍ତି, ସେହି ସ୍ୱରବର୍ଣ୍ଣଟି ହେଲା, ଅ, ଅର୍ଥାତ୍ ପ୍ରତିଟି ବ୍ୟଞ୍ଜନବର୍ଣ୍ଣ ଅ ଯୁକ୍ତ ହୋଇ ଉଚ୍ଚାରିତ ହୋଇଥାନ୍ତି। ଯେତେବେଳେ ଏହି ସ୍ୱରବର୍ଣ୍ଣଟିକୁ ଲୁପ୍ତ କରିବାକୁ ପଡ଼େ, ସେତେବେଳେ ହଳନ୍ତ ଲଗାଇବାକୁ ପଡ଼େ, ଯାହା ଦ୍ୱାରା ଅକ୍ଷରଟି ଶୁଦ୍ଧ ବ୍ୟଞ୍ଜନ ବର୍ଣ୍ଣ ଭାବେ ଉଚ୍ଚାରିତ ହୋଇଥାଏ, ଯଥା- 'ଆସ' ଶବ୍ଦରେ ସ ତଳେ ଯଦି ହଳନ୍ତ ଲଗାହୁଏ, ଏହା 'ଆସ୍' ହୁଏ ଓ 'ସ୍' ହୁଏ ଏକ ଶୁଦ୍ଧ ବ୍ୟଞ୍ଜନବର୍ଣ୍ଣ। ହଳନ୍ତ ପରି ଆଉ ଏକ ଉପାୟ, ଯାହା ଏବେ ଓଡ଼ିଆ ଲେଖାରେ ବହୁଳ ଭାବେ ପ୍ରଚାରିତ ହେଉଛି, ସେଇଟି ଉର୍ଦ୍ଧ୍ୱ - କମା ବା ଆପୋସଟ୍ରଫି (apostrophe)। ଉପରେ ଦିଆଯାଉଥିବା ଏହି କମାଟି ସାହାଯ୍ୟରେ ଅକ୍ଷରର (syllable) ଦୀର୍ଘତା ସୂଚିତ କରାଯାଇଥାଏ। ଆମେ ଯଦି 'ମାର' ଶବ୍ଦଟିକୁ 'ମାରିବା' ନ ବୁଝାଇ 'ମାଆର' ବୁଝାଇବାକୁ ଚାହୁଁ, ତା' ହେଲେ 'ମା' ଉପରେ ଗୋଟିଏ କମା ଲଗାଇବାକୁ ପଡ଼େ, ଯଥା- 'ମା'ର'। ସେହିପରି କଣ, କ'ଣ ? ଇତ୍ୟାଦି। ଏହି ପ୍ରଣାଳୀରେ ଓଡ଼ିଆ ବାଁ'ରୁ ଡାହାଣକୁ କ୍ରମାନ୍ୱୟ ଭାବେ ବା ଧାଡ଼ିମୂଳିଆ ହୋଇ ଲେଖା ହୋଇଥାଏ।

ବର୍ତ୍ତମାନ ଓଡ଼ିଆ ଅକ୍ଷରଗୁଡ଼ିକର ଉଚ୍ଚାରଣଗତ ବୈଶିଷ୍ଟ୍ୟକୁ ଦେଖାଯାଉ -

| ଅକ୍ଷର | ଉଚ୍ଚାରଣ | ଉଦାହରଣ |
|---|---|---|
| ଅ | ଅ | ଅ-ଟା |
| ଆ | ଆ | ଆ-ସ |
| ଇ | ଇ | ଇ-ଟା |
| ଈ | ଇ | ଈ-ଶ୍ୱର |
| ଉ | ଉ | ଉ-ଠ |
| ଊ | ଉ | ଊ-ଷା |

| | | |
|---|---|---|
| ଋ | ରୁ | ଋ-ତୁ |
| ଏ | ଏ | ଏ-କ |
| ଐ | ଅଇ | ଐ-ରାବତ |
| ଓ | ଓ | ଓ-ଠ |
| ଔ | ଅଉ | ଔ-ଷଧ |
| କ | କ | କ-ଳ |
| ଖ | ଖ | ଖ-ଜା |
| ଗ | ଗ | ଗ-ଜା |
| ଘ | ଘ | ଘ-ର |
| ଙ | ଊଁ (ଙ) | ବା-ଙ୍-ମୟ |
| ଚ | ଚ | ଚ-ଷା |
| ଛ | ଛ | ଛ-ବି |
| ଜ | ଜ | ଜ-ର |
| ଝ | ଝ | ଝ-ର |
| ଞ | ନ୍ଁୟ (ଞ) | କ-ଞା |
| ଟ | ଟ | ଟ-ଗର |
| ଠ | ଠ | ଠ-କ |
| ଡ | ଡ | ଡ-ର |
| ଡ଼ | ଡ଼ | ବ-ଡ଼ |
| ଢ | ଢ | ଢ-ଗ |
| ଢ଼ | ଢ଼ | ବ-ଢ଼-ନ୍ତା |
| ଣ | ଣ | ଗ-ଣ-କ |
| ତ | ତ | ତ-ଳ |
| ଥ | ଥ | ଥ-ୟ |
| ଦ | ଦ | ଦ-ୟା |
| ଧ | ଧ | ଧ-ଳା |
| ନ | ନ | ନ-ଖ |

| | | |
|---|---|---|
| ପ | ପ | ପ-ର |
| ଫ | ଫ | ଫ-ଳ |
| ବ | ବ | ବ-ଲ୍ଲ |
| ଭ | ଭ | ଭ-ଲ |
| ମ | ମ | ମ-ତ |
| ଯ | ଜ | ଯ-ମ |
| ୟ | ୟ | ବିଷ-ୟ |
| ର | ର | ର-ଜା |
| ଳ | ଳ | ତର-ଳ |
| ଲ | ଲ | ଲ-ତା |
| ୱ | ୱ | ହା-ୱା |
| ଶ | ସ | ଶ-ର |
| ଷ | ସ | ବି-ଷ |
| ସ | ସ | ସ-ତ |
| ହ | ହ | ହ-ଳ |

ଏହି ପୂର୍ଣ୍ଣ ଅକ୍ଷରଗୁଡ଼ିକର ମାତ୍ରା ଓ ଫଳା ରୂପେ ବିକଳ୍ପ ବ୍ୟବହାର (allograph) ମଧ୍ୟ ଓଡ଼ିଆ ଲେଖନପ୍ରଣାଳୀର ଏକ ଅଙ୍ଗ। ସ୍ୱରବର୍ଣ୍ଣଗୁଡ଼ିକର ବିକଳ୍ପ ରୂପକୁ 'ମାତ୍ରା' କୁହାଯାଇଥାଏ ଓ ବ୍ୟଞ୍ଜନବର୍ଣ୍ଣର ବିକଳ୍ପ ରୂପଗୁଡ଼ିକୁ 'ଫଳା'। ସ୍ୱର-ବର୍ଣ୍ଣର ମାତ୍ରାଗୁଡ଼ିକ ଅକ୍ଷରର ତଳେ, ଉପରେ, ଏକ ପାର୍ଶ୍ୱରେ ବା ଦୁଇପାର୍ଶ୍ୱରେ ଯୋଗ କରାଯାଇଥାଏ। ଏହି ମାତ୍ରାଗୁଡ଼ିକ ହେଲେ -

ଆ : ଆ' କାର-କା। ଦ୍ୱିତୀୟ ଆଲଙ୍କାରିକ ଶ୍ରେଣୀର ଅକ୍ଷରମାନଙ୍କ କ୍ଷେତ୍ରରେ ଆ'କାର ଅକ୍ଷର ସହିତ ଯୁକ୍ତ ହୋଇଥାଏ, ଯଥା-ଲ୍ଲ ।

ଇ : ଇ' କାର-ଈ। ପ୍ରଥମ ଓ ଦ୍ୱିତୀୟ ଆଲଙ୍କାରିକ ଶ୍ରେଣୀର ଅକ୍ଷରମାନଙ୍କ କ୍ଷେତ୍ରରେ ଇ'କାର ସହିତ ଯୁକ୍ତ ହୋଇଥାଏ, ଯଥା- ଈ, ଲ୍ଲ। ଚତୁର୍ଥ ଆଲଙ୍କାରିକ ଶ୍ରେଣୀର ଅକ୍ଷରମାନଙ୍କ ସହିତ ଇ'କାର ତଳେ ଲାଗିଥାଏ, ଥି।

ଇ : ଇ' କାର- କ୍ଷି। ଦ୍ୱିତୀୟ ଆଲଙ୍କାରିକ ଶ୍ରେଣୀର ଅକ୍ଷରମାନଙ୍କ କ୍ଷେତ୍ରରେ ଇ'କାର ଅକ୍ଷର ସହିତ ଯୁକ୍ତ ହୋଇଥାଏ, ଯଥା- ଲି ।

ଉ : ଉ' କାର-କ୍ଷୁ । ପ୍ରଥମ ଓ ଦ୍ୱିତୀୟ ଆଲଙ୍କାରିକ ଶ୍ରେଣୀର ଅକ୍ଷରମାନଙ୍କ କ୍ଷେତ୍ରରେ ଉ'କାର ସହିତ ଯୁକ୍ତ ହୋଇଥାଏ, ଯଥା- ଲୁ, ଲୁ ।

ଊ : ଊ' କାର - କୂ।

ଋ : ଋ' କାର-କୃ। ପ୍ରଥମ ଆଲଙ୍କାରିକ ଶ୍ରେଣୀର ଅକ୍ଷରମାନଙ୍କ କ୍ଷେତ୍ରରେ ଋ'କାର ସହିତ ଯୁକ୍ତ ହୋଇଥାଏ, ଯଥା- କୃ।

ଏ : ଏ' କାର-କେ।

ଐ : ଐ' କାର-କୈ।

ଓ : ଓ' କାର-କୋ।

ଔ : ଔ' କାର-କୌ।

ଓଡ଼ିଆ ଭାଷାରେ ପ୍ରଚଳିତ ଯୁକ୍ତ ବ୍ୟଞ୍ଜନ ବର୍ଣ୍ଣଗୁଡ଼ିକ କ୍ଷେତ୍ରରେ ବ୍ୟଞ୍ଜନ ବର୍ଣ୍ଣ ପାଇଁ ଫଳା ବ୍ୟବହୃତ ହୋଇଥାଏ। ଏହି ଫଳାଗୁଡ଼ିକ ବ୍ୟଞ୍ଜନ ବର୍ଣ୍ଣର ବିକଳ୍ପ ରୂପ। ଏହି ଫଳାଗୁଡ଼ିକ ବିଭିନ୍ନ ପ୍ରକାରର। କେଉଁଠି ଏହା ଏକ ସ୍ୱତନ୍ତ୍ର ଚିହ୍ନ ଦ୍ୱାରା କରାଯାଇଥାଏ ତ, ଯଥା- ସ୍ତ ରେ ତ-ଫଳା, ଅନ୍ୟ କେତେକ କ୍ଷେତ୍ରରେ ଏହା ଅକ୍ଷରର ଭେଦକା ଭାଗଟି ଦ୍ୱାରା ନିଷ୍ପନ୍ନ ହୋଇଥାଏ, ଯଥା- ଜ୍ଜ ରେ ଜ-ଫଳା। ଅନ୍ୟ କେତେକ କ୍ଷେତ୍ରରେ ଦୁଇଟି ବ୍ୟଞ୍ଜନ ବର୍ଣ୍ଣକୁ ଏକ ସ୍ୱତନ୍ତ୍ର ଯୁକ୍ତାକ୍ଷରରେ ପ୍ରକାଶ କରାଯାଇଥାଏ, ଯଥା- ଦ୍+ଧ=ଦ୍ଧ। ଅନ୍ୟ କେତେକ କ୍ଷେତ୍ରରେ ଦୁଇଟିଯାକ ଅକ୍ଷରକୁ ବଡ଼ ସାନ କରି ଯୋଡ଼ାଯାଇଥାଏ, ଯଥା-ଣ୍ଣ, ସ୍ୱ।

ଓଡ଼ିଆ ଭାଷାରେ ପ୍ରଚଳିତ ସବୁ ଯୁକ୍ତବର୍ଣ୍ଣ (Consonant Cluster) ପାଇଁ ଏହି ଯକ୍ତାକ୍ଷରଗୁଡ଼ିକ ପର୍ଯ୍ୟାପ୍ତ। ତେବେ ଯେଉଁଠି ଏକ ନୂଆ ବା ଅନ୍ୟ ଭାଷାର ଯୁକ୍ତବର୍ଣ୍ଣକୁ ଲେଖିବାକୁ ପଡ଼ିଥାଏ, ସେତେବେଳେ ହଳନ୍ତ ସାହାଯ୍ୟରେ ଏହା କରାଯାଇଥାଏ, ଯଥା- ଇଂରାଜୀର Chance ଶବ୍ଦଟିକୁ ଓଡ଼ିଆରେ ଲେଖିବାକୁ ଗଲାବେଳେ ଏହି ନୂଆ ଯୁକ୍ତବର୍ଣ୍ଣକୁ ନ ତଳେ ହଳନ୍ତ ଦେଇ ଲେଖାଯାଇଥାଏ। ଯେପରି 'ଚାନ୍‌ସ'। ଏହି ଉପାୟ ମଧ୍ୟ ଓଡ଼ିଆର ନିଜସ୍ୱ କେତେକ ଯୁକ୍ତବର୍ଣ୍ଣ କ୍ଷେତ୍ରରେ ପ୍ରଚଳିତ। ଅତଏବ, ଓଡ଼ିଆର ସବୁ ଯୁକ୍ତବର୍ଣ୍ଣଗୁଡ଼ିକୁ ଲେଖିବା ପାଇଁ ଚାରୋଟି ଉପାୟର ଅବଲମ୍ବନ କରାଯାଇଥାଏ-

୧. ସ୍ୱତନ୍ତ୍ର ଅକ୍ଷର, ଯଥା- ଦ୍ଧ, ଉ

୨. ସ୍ୱତନ୍ତ୍ର ଫଳା, ଯଥା- ର୍କ, ପ୍ର

୩. ଦୁଇଟିଯାକ ଅକ୍ଷରକୁ ତଳ ଉପର କରି, ଯଥା- ସ୍ବ, ଣ୍ଠ

୪. ଯୁକ୍ତ ବର୍ଣ୍ଣର ପ୍ରଥମ ବର୍ଣ୍ଣରେ ହଳନ୍ତ ଦେଇ, ଯଥା- ଲ୍ ଭ, ଡ୍‌ଗ।

ଏହି ସମ୍ପର୍କରେ ପୁଣି ଲକ୍ଷ୍ୟ କରାଯାଇପାରେ ଯେ, ସଂସ୍କୃତ ବନାନରେ ଓଡ଼ିଆ ତତ୍ସମ ଶବ୍ଦଗୁଡ଼ିକ ଲେଖା ହେଉଥିଲେ ମଧ୍ୟ ଓଡ଼ିଆରେ ଅନେକତ୍ର ସଂସ୍କୃତ ଉଚ୍ଚାରଣ ରକ୍ଷା କରାଯାଇ ନଥାଏ। ଉଦାହରଣ ସ୍ୱରୂପ ସଂସ୍କୃତ ତ୍ସ ବା ତ୍‌ସ (ଉତ୍ସବ) ଓଡ଼ିଆରେ 'ସ୍‌ଛ' ହୋଇ ଉଚ୍ଚାରିତ ହୋଇଥାଏ। ଏହି ପ୍ରକାରର ଯୁକ୍ତାକ୍ଷରଗୁଡ଼ିକ ହେଲେ -

| ସଂସ୍କୃତ | ଓଡ଼ିଆ |
|---|---|
| ତ୍‌ସ-ତ୍ସ (ଉତ୍ସବ) | ସ୍‌ଛ (ଉସ୍‌ଛବ) |
| କ୍‌ଷ-କ୍ଷ (ବକ୍ଷ) | ଖ୍ୟ (ବଖ୍ୟ) |
| ଦ୍‌ମ-ଦ୍ମ (ପଦ୍ମ) | ଦ୍ୱଁ (ପଦ୍ୱଁ) |
| ଣ୍‌ୱ-ଣ୍ୱ (କଣ୍ୱ) | ନ୍ୱ (କନ୍ୱ) |
| ର୍‌ଣ-ର୍ଣ (ବର୍ଣ୍ଣ) | ର୍‌ନ (ବର୍ନ) |
| ଷ୍‌ଣ-ଷ୍ଣ (କୃଷ୍ଣ) | ସ୍‌ନ (କୃସ୍ନ) |
| ଷ୍‌ପ-ଷ୍ପ (ପୁଷ୍ପ) | ସ୍‌ପ (ପୁସ୍ପ) |
| ର୍‌ଷ-ର୍ଷ (ବର୍ଷ) | ର୍‌ସ (ବର୍ସ |
| ଙ୍‌ଗ-ଙ୍ଗ (ଅଙ୍ଗ) | ଗ୍ୟଁ (ଅଗ୍ୟଁ) |

ଏଥିରୁ ସ୍ପଷ୍ଟ ଯେ, ଓଡ଼ିଆ ବନାନ୍ ଧାରା ଯଦିଓ ସଂସ୍କୃତକୁ ଅନୁସରଣ କରିଥାଏ, କେତେକ କ୍ଷେତ୍ରରେ ଓଡ଼ିଆରେ ଏହା ରକ୍ଷିତ ହୋଇ ନଥାଏ। ସେହିପରି ରେଫ୍ ଯୁକ୍ତ ହେଲେ ସଂସ୍କୃତରେ ବ୍ୟଞ୍ଜନବର୍ଣ୍ଣ ଦ୍ୱିତ୍ୱ ହୋଇଥାଏ ଓ ଓଡ଼ିଆରେ ଏହି ବନାନ ଅନୁସୃତ ହୋଇଆସୁଥିଲେ ମଧ୍ୟ ପ୍ରକୃତ ଓଡ଼ିଆ ଉଚ୍ଚାରଣରେ ଏହି ଦ୍ୱିତ୍ୱ ଘଟି ନଥାଏ। ତେଣୁ, ଏବେ ବହୁ ଲେଖକ ଏହି ଦ୍ୱନ୍ଦ୍ୱକୁ ଓଡ଼ିଆ ବନାନ୍‌ରୁ ବାଦ ଦେବାପାଇଁ ସଚେଷ୍ଟ । ପ୍ରତ୍ୟେକ ଲେଖକ ପ୍ରଣାଳୀ ଭାଷାର ପ୍ରକୃତ ଉଚ୍ଚାରଣ ପରମ୍ପରାକୁ ଧରି ଚାଲିବା ଉଚିତ। ନା' ନ ହେଲେ ଏପରି ଏକ ଅବସ୍ଥା ଆସିବ, ଯେତେବେଳେ ଲେଖନ ପ୍ରଣାଳୀ ଗଠନ ବା କଥନ ପ୍ରଣାଳୀଠାରୁ ସମ୍ପୂର୍ଣ୍ଣ ଭିନ୍ନ ହୋଇପଡ଼ିବ ଓ ଏହି ଅବସ୍ଥା ଯେ କୌଣସି ଭାଷା କ୍ଷେତ୍ରରେ ଏକାନ୍ତ ଭାବେ ଅଭାବନୀୟ। ତେବେ ସୁଖର ବିଷୟ ଯେ, ଅଳ୍ପ କେତୋଟି କ୍ଷେତ୍ରକୁ ବାଦ୍ ଦେଲେ ଓଡ଼ିଆର ଲେଖନ ଓ କଥନ ପ୍ରଣାଳୀ ଭିତରେ ସେପରି କୌଣସି ଗୁରୁତର ପ୍ରଭେଦ ନାହିଁ, ଯାହା ନିଶ୍ଚିତ ଭାବେ ଓଡ଼ିଆ ଭାଷାର ଲେଖନ ପ୍ରଣାଳୀକୁ

ଆୟତ୍ତ କରିବା ଦିଗରେ ସାହାଯ୍ୟ କରିଥାଏ, କାରଣ ଭାଷା କହିବା ଲେଖି ଶିଖିବାର ବହୁପୂର୍ବରୁ ବ୍ୟକ୍ତିର ଆୟତ୍ତ ହୋଇଥାଏ। ତେଣୁ ସେ ଯେତେବେଳେ ପରେ ଭାଷାକୁ ଲେଖି ଶିଖିବାକୁ ବସେ, ଲେଖନ ପ୍ରଣାଳୀ ଯେପରି ତା'ର କଥନ ପ୍ରଣାଳୀର ଏକ ପରିପନ୍ଥୀ ହୋଇ ଠିଆ ନ ହୁଏ।

ବର୍ତ୍ତମାନ ଯୁକ୍ତାକ୍ଷରର ପ୍ରଦତ୍ତ ଚାରୋଟିଯାକ ଉପାୟକୁ ଉପସ୍ଥାପିତ କରାଯାଇପାରେ-

**୧. ସ୍ୱତନ୍ତ୍ର ଅକ୍ଷର :**

(ବ୍‌ଦ) ଦ୍ଦ, (ବ୍‌ଧ) ଦ୍ଧ, (ଦ୍‌ଭ) ଦ୍ଭ, (ତ୍‌ତ) ତ୍ତ, (ଦ୍‌ଦ) ଦ୍ଦ, (ଟ୍‌ଟ) ଟ୍ଟ, (ଚ୍‌ଚ) ଚ୍ଚ, (ଚ୍‌ଛ) ଚ୍ଛ, (ମ୍‌ପ) ମ୍ପ, (ମ୍‌ଫ) ମ୍ଫ, (ନ୍‌ଦ) ନ୍ଦ, (ନ୍‌ଧ) ନ୍ଧ, (ଞ୍‌ଚ) ଞ୍ଚ, (ଞ୍‌ଛ) ଞ୍ଛ, (ଞ୍‌ଜ) ଞ୍ଜ, (ଞ୍‌ଝ) ଞ୍ଝ, (ଙ୍‌କ) ଙ୍କ, (ଙ୍‌ଖ) ଙ୍ଖ, (ଙ୍‌ଗ) ଙ୍ଗ, (ଙ୍‌ଘ) ଙ୍ଘ, (ଜ୍‌ଞ) ଜ୍ଞ, (କ୍‌ଷ) କ୍ଷ, (ଧ୍‌ୟ) ଧ୍ୟ।

**୨. ସ୍ୱତନ୍ତ୍ର ଫଳା :**

ତ୍‌-, ଯୁକ୍ତବର୍ଣ୍ଣର ତ୍‌- ଯଦି ପ୍ରଥମ ବର୍ଣ୍ଣ ହୋଇଥାଏ- (ତ୍‌ପ) ତ୍ପ, (ତ୍‌କ) ତ୍କ, (ତ୍‌ମ) ତ୍ମ, (ବିକଳ୍ପରେ ତ୍ମ), (ତ୍‌ନ) ତ୍ନ, (ବିକଳ୍ପରେ ତ୍ନ ), (ତ୍‌ସ) ତ୍ସ (ଉଚ୍ଚାରଣରେ ସ୍ଛ)। ଏହି ଫଳାଟି ସାମାନ୍ୟ ପରିବର୍ତ୍ତିତ ହୋଇ ଣ ସହିତ ଯୁକ୍ତ ହେଲେ ତ୍‌- ନହୋଇ ଢ୍‌-ହୋଇଥାଏ- ଣ୍ଢ।

- ତ, ଯୁକ୍ତବର୍ଣ୍ଣ - ତ୍‌ ଯଦି ଦ୍ୱିତୀୟ ବର୍ଣ୍ଣ ହୋଇଥାଏ - (ପ୍‌ତ) ପ୍ତ, (କ୍‌ତ) କ୍ତ, (ନ୍‌ତ) ନ୍ତ, (ସ୍‌ତ) ସ୍ତ। ଏହି ଫଳାଟି ଣ ସହିତ ଯୋଗ ହେଲେ- ତ୍‌ ନ ହୋଇ- ଡ୍‌ ହୋଇଥାଏ-ଣ୍ଡ।

- ଥ, ଯୁକ୍ତବର୍ଣ୍ଣର - ଥ୍‌ ଯଦି ଦ୍ୱିତୀୟ ବର୍ଣ୍ଣ ହୋଇଥାଏ - (ନ୍‌ଥ) ନ୍ଥ, (ସ୍‌ଥ) ସ୍ଥ।

- ନ, ଯୁକ୍ତବର୍ଣ୍ଣର - ନ ଯଦି ଦ୍ୱିତୀୟ ବର୍ଣ୍ଣ ହୋଇଥାଏ - (ପ୍‌ନ) ପ୍ନ, (ତ୍‌ନ) ତ୍ନ (ବିକଳ୍ପରେ ତ୍ନ) (ଛ୍‌ନ) ଛ୍ନ, (ଗ୍‌ନ) ଗ୍ନ, (ଘ୍‌ନ) ଘ୍ନ, (ମ୍‌ନ) ମ୍ନ, (ନ୍‌ନ) ନ୍ନ, (ସ୍‌ନ) ସ୍ନ, ଶ୍ନ, (ହ୍‌ନ) ହ୍ନ।

- ମ, ଯୁକ୍ତବର୍ଣ୍ଣର - ମ ଯଦି ଦ୍ୱିତୀୟ ବର୍ଣ୍ଣ ହୋଇଥାଏ - (ତ୍‌ମ) ତ୍ମ (ବିକଳ୍ପରେ ତ୍ମ), (ଜ୍‌ମ) ଜ୍ମ, (ଦ୍‌ମ) ଦ୍ମ, (କ୍‌ମ)କ୍ମ, ( କ୍ଷ୍‌ମ)କ୍ଷ୍ମ , (ଗ୍‌ମ)ଗ୍ମ, (ନ୍‌ମ)ନ୍ମ, (ଣ୍‌ମ)ଣ୍ମ,(ସ୍‌ମ)ସ୍ମ,ଷ୍ମ।

-ର, ଯୁକ୍ତବର୍ଣ୍ଣର- ର ଯଦି ଦ୍ୱିତୀୟ ବର୍ଣ୍ଣ ହୋଇଥାଏ- (ପ୍‌ର) ପ୍ର, (ଫ୍‌ର) ଫ୍ର, (ଦ୍‌ର)ଦ୍ର, (ଭ୍‌ର) ଭ୍ର, (ତ୍‌ର) ତ୍ର, ବିକଳ୍ପରେ ତ୍ର। ଏହି ଅକ୍ଷରଟି ତିନିବର୍ଣ୍ଣ ବିଶିଷ୍ଟ

ଯୁକ୍ତାକ୍ଷରରେ ଫଳା ଭାବେ ମଧ୍ୟ ବ୍ୟବହୃତ ହୋଇଥାଏ, ଯଥା- (ନ୍‌ତ୍‌ର) ନ୍ତ୍ର, (ସ୍‌ତ୍‌ର) ସ୍ତ୍ର, (ଦ୍‌ର) ଦ୍ର, (ଧ୍‌ର) ଧ୍ର, (ଟ୍‌ର) ଟ୍ର, (ଡ୍‌ର) ଡ୍ର, (ଙ୍‌ର) ଙ୍କ୍ର, (କ୍‌ର) କ୍ର, (ବିକଳ୍ପରେ କ୍ର), (ଖର) ଖ୍ର, (ଗ୍‌ର) ଗ୍ର, (ଘ୍‌ର) ଘ୍ର, (ମ୍‌ର) ମ୍ର, (ନ୍‌ର) ନ୍ର, (ସ୍‌ର) ସ୍ର, ଶ୍ର, (ହ୍‌ର) ହ୍ର।

- ର୍‌,- ଯୁକ୍ତବର୍ଣ୍ଣର ର୍ ଯଦି ପ୍ରଥମ ବର୍ଣ୍ଣ ହୋଇଥାଏ ତା'ହେଲେ ର୍ 'ରେଫ୍' ହୋଇ ବର୍ଣ୍ଣର ଉପରେ ଲାଗେ, ଯଥା- (ର୍‌ପ) ର୍ପ, (ର୍‌ବ) ର୍ବ, (ର୍‌ଭ) ର୍ଭ, (ର୍‌ତ) ର୍ତ, (ର୍‌ଥ) ର୍ଥ, (ର୍‌ଦ) ର୍ଦ, (ର୍‌ଧ) ର୍ଧ, (ର୍‌ଚ) ର୍ଚ, (ର୍‌ଛ) ର୍ଛ, (ର୍‌ଜ)ର୍ଜ, (ର୍‌କ) ର୍କ, (ର୍‌ଖ) ର୍ଖ, (ରଗ) ର୍ଗ, (ର୍‌ଘ) ର୍ଘ, (ର୍‌ମ) ର୍ମ, (ର୍‌ନ) ର୍ଣ, (ର୍‌ସ) ର୍ସ, ର୍ଶ, ର୍ଷ, (ର୍‌ହ) ର୍ହ। ତେବେ ଓଡ଼ିଆ ବନାନର ପରମ୍ପରା ଅନୁଯାୟୀ ଗୋଟିଏ ବ୍ୟଞ୍ଜନ ବର୍ଣ୍ଣ ଯେତେବେଳେ ରେଫ୍ ଯୁକ୍ତ ହୁଏ, ବ୍ୟଞ୍ଜନଟିର ଦ୍ୱିତ୍ୱ ହୋଇଥାଏ, ଯଥା- (ର୍‌ତ) ର୍ତ୍ତ, (ର୍‌ମ) ର୍ମ୍ମ ଇତ୍ୟାଦି। କିନ୍ତୁ ଓଡ଼ିଆ ଉଚ୍ଚାରଣ ପଦ୍ଧତିକୁ ଦେଖିଲେ ଏହି ଦ୍ୱିତ୍ୱର କୌଣସି ପ୍ରୟୋଜନୀୟତା ନାହିଁ ଏବଂ ବହୁ ଓଡ଼ିଆ ଲେଖକ ଏହି ଦ୍ୱିତ୍ୱକୁ ବନାନରୁ ଉଠାଇ ଦେବାର ପକ୍ଷପାତୀ।

- ଲ୍‌, ଯୁକ୍ତବର୍ଣ୍ଣର ଲ୍ ଯଦି ଦ୍ୱିତୀୟ ବର୍ଣ୍ଣ ହୋଇଥାଏ - (ପ୍‌ଲ) ପ୍ଲ, (କ୍‌ଲ) କ୍ଲ, (ଗ୍‌ଲ) ଗ୍ଲ, (ମ୍‌ଲ) ମ୍ଲ, (ସ୍‌ଲ) ସ୍ଲ, ଶ୍ଲ।

- ଳ୍‌, ଯୁକ୍ତବର୍ଣ୍ଣର ଳ୍ ଯଦି ଦ୍ୱିତୀୟ ବର୍ଣ୍ଣ ହୋଇଥାଏ - (ପ୍‌ଳ) ପ୍ଳ, (ବ୍‌ଳ) ବ୍ଳ, (କ୍‌ଳ) କ୍ଳ, (ଗ୍‌ଳ) ଗ୍ଳ, (ଲ୍‌ଳ) ଲ୍ଳ, (ସ୍‌ଳ) ସ୍ଳ, (ହ୍‌ଳ) ହ୍ଳ।

- ଣ୍‌, ଯୁକ୍ତବର୍ଣ୍ଣର ଣ୍ ଯଦି ଦ୍ୱିତୀୟ ବର୍ଣ୍ଣ ହୋଇଥାଏ - (ଣ୍‌ଣ) ଣ୍ଣ, (ଉଚ୍ଚାରଣରେ ନ), (ସ୍‌ଣ) ଷ୍ଣ, (ଉଚ୍ଚାରଣରେ ସ୍ନ)।

- ୱ୍‌, ଯୁକ୍ତବର୍ଣ୍ଣର ୱ ଯଦି ଦ୍ୱିତୀୟ ବର୍ଣ୍ଣ ହୋଇଥାଏ - (ତ୍‌ୱ) ତ୍ୱ, (ଦ୍‌ୱ) ଦ୍ୱ, (ଧ୍‌ୱ) ଧ୍ୱ, (କ୍‌ୱ) କ୍ୱ, (ନ୍‌ୱ) ନ୍ୱ, ଣ୍ୱ, (ସ୍‌ୱ) ସ୍ୱ, ଶ୍ୱ (ହ୍‌ୱ) ହ୍ୱ। ଏହି ୱ-ଫଳାଟି ମ୍ ସହିତ ଯୁକ୍ତ ହୋଇଥିଲେ ବ ଉଚ୍ଚାରିତ ହୋଇଥାଏ, ଯଥା- ଆମ୍ବ। ମ୍ ଯୁକ୍ତ ଭ ପାଇଁ ମଧ୍ୟ ଗୋଟିଏ ନୂତନ ଫଳା ବ୍ୟବହୃତ ହୋଇଥାଏ, ଯଥା- ମ୍ଭ।

- ୟ, ଯୁକ୍ତବର୍ଣ୍ଣର ୟ ଯଦି ଦ୍ୱିତୀୟ ବର୍ଣ୍ଣ ହୋଇଥାଏ- (ପ୍‌ୟ) ପ୍ୟ, (ବ୍‌ୟ) ବ୍ୟ, (ଭ୍‌ୟ) ଭ୍ୟ, (ତ୍‌ୟ) ତ୍ୟ, (ଜ୍‌ୟ) ଜ୍ୟ, ଯ୍ୟ, (କ୍‌ୟ) କ୍ୟ, (ଖ୍‌ୟ) ଖ୍ୟ, କ୍ଷ୍ୟ, (ଗ୍‌ୟ) ଗ୍ୟ, (ଘ୍‌ୟ) ଘ୍ୟ, (ମ୍‌ୟ) ମ୍ୟ, (ନ୍‌ୟ) ନ୍ୟ, ଣ୍ୟ, (ଲ୍‌ୟ) ଲ୍ୟ, (ସ୍‌ୟ) ସ୍ୟ, ଶ୍ୟ, ଷ୍ୟ, (ହ୍‌ୟ) ହ୍ୟ।

ବାକି (୩) ଓ (୪) ଶ୍ରେଣୀର ଅକ୍ଷରଗୁଡ଼ିକ କ୍ଷେତ୍ରରେ ଦୁଇଟିଯାକ ଅକ୍ଷର ସମ୍ପୂର୍ଣ୍ଣ ଭାବେ ଦିଆଯାଇଥା'ନ୍ତି ତଳ ଉପର କରି। ଅନେକ କ୍ଷେତ୍ରରେ ତଳ ଅକ୍ଷରଟି ଉପର

ଅକ୍ଷରଠାରୁ ଛୋଟ, ଅର୍ଥାତ୍ ଛୋଟ ଟାଇପ୍‌ରେ, ଯଥା- ଣ୍ଟ, ସ୍କ ଇତ୍ୟାଦି। ଚତୁର୍ଥ ବର୍ଗର ଅକ୍ଷରଗୁଡ଼ିକ ତଳ ଉପର ନ ହୋଇ ହଳନ୍ତ ସାହାଯ୍ୟରେ ପରପର ହୋଇ ଲେଖା ହୋଇଥାନ୍ତି, ଯଥା- ଡ୍‌ଗ, ଦ୍‌ଗ, ଇତ୍ୟାଦି। ଏହାଛଡ଼ା, ଏକ ବିକଳ୍ପ ପ୍ରଣାଳୀ ଭାବେ ସବର୍ଣ୍ଣ ଯୁକ୍ତାକ୍ଷରଗୁଡ଼ିକ (homorganic clusters) ସ୍ୱତନ୍ତ୍ର ଯୁକ୍ତାକ୍ଷରର ବ୍ୟବସ୍ଥା ଥିବା ସତ୍ତ୍ୱେ ସେଗୁଡ଼ିକୁ ଅନୁସ୍ୱାର ଦ୍ୱାରା ପ୍ରକାଶ କରିବା ଏବେ ବହୁଳ ଭାବେ ବ୍ୟବହୃତ ହେଉଛି, ଯଥା- ଞ୍ଚ (ଅନୁସ୍ୱାର ଚ), ଙ୍ଗ (ଅନୁସ୍ୱାର ଗ), ଣ୍ଟ (ଅନୁସ୍ୱାର ଟ), ନ୍ଧ (ଅନୁସ୍ୱାର ଧ), ମ୍ଫ (ଅନୁସ୍ୱାର ଫ) ଇତ୍ୟାଦି। ଏତିକି ହେଲା ଓଡ଼ିଆ ଯୁକ୍ତାକ୍ଷରଗୁଡ଼ିକର ବିଶେଷତ୍ୱ।

ବର୍ତ୍ତମାନ ଓଡ଼ିଆର ଛାପା ଓ ଲେଖାରେ 'ପାଙ୍କ୍ଚୁଏସନ' (Punctuation) ପଦ୍ଧତିଟିକୁ ଦେଖାଯାଇପାରେ। 'ପୂର୍ଣ୍ଣଚ୍ଛେଦ'ଟି ଛଡ଼ା- ଯାହା ଓଡ଼ିଆରେ ବାକ୍ୟ ଶେଷରେ ଏକ 'ବାଡ଼ି' ଭାବେ ଦିଆଯାଇଥାଏ, ଅନ୍ୟ ସବୁ ପାଙ୍କ୍ଚୁଏସନ ଚିହ୍ନଗୁଡ଼ିକ ଇଂରାଜୀରୁ ଅଣା ହୋଇଛନ୍ତି। ଓଡ଼ିଆରେ ବ୍ୟବହୃତ ଚିହ୍ନଗୁଡ଼ିକ ହେଲେ- '।' (ପୂର୍ଣ୍ଣଚ୍ଛେଦ), ',' (କମା), ';' (ଅର୍ଦ୍ଧ-ବିରାମ), '?' (ପ୍ରଶ୍ନବାଚୀ), '!' (ଆଶ୍ଚର୍ଯ୍ୟବାଚୀ) ଓ "" (ଉଦ୍ଧୃତ ଚିହ୍ନ) ଇତ୍ୟାଦି।

ମୋଟାମୋଟି ଭାବେ ଏତିକି ହେଉଛି ପ୍ରଚଳିତ ଓଡ଼ିଆ ଲେଖନ ପ୍ରଣାଳୀର ଏକ ବର୍ଣ୍ଣନା। ତେବେ ଯାହା ଲକ୍ଷ୍ୟ କରିବାର କଥା, ଏହି ସମୟଟି ହେଉଛି ଓଡ଼ିଆ ଅକ୍ଷର ପାଇଁ ଏକ ସନ୍ଧିକ୍ଷଣର ସମୟ, କାରଣ ବର୍ତ୍ତମାନ ଓଡ଼ିଆରେ ଦୁଇପ୍ରକାରର ଛାପା ଦେଖିବାକୁ ମିଳେ, ଗୋଟିଏ ହେଉଛି ପୁରୁଣା ଅକ୍ଷରମାଳା ଓ ଅନ୍ୟଟି ନୂତନ, ଯାହା ଓଡ଼ିଆର ଆଧୁନିକ ଅଫ-ସେଟ୍ ଛାପା ଓ ଟାଇପ୍-ରାଇଟର ଛାପାରେ ଦେଖିବାକୁ ମିଳେ। ପୁରୁଣା ଛାପା ଅକ୍ଷର ଯଦିଓ ବର୍ତ୍ତମାନ ବି ବହୁଳ ଭାବେ ପ୍ରଚଳିତ, ତେବେ ନୂତନ ଛାପା ଅକ୍ଷର ବେଶ୍ କେତୋଟି କ୍ଷେତ୍ରରେ, ବିଶେଷକରି ସମ୍ବାଦପତ୍ରଗୁଡ଼ିକରେ ସ୍ଥାନ ପାଇସାରିଲାଣି। ଏହି ଦୁଇ ପ୍ରଣାଳୀ ଭିତରେ ଅକ୍ଷରର ଆକାରଗତ ପାର୍ଥକ୍ୟ ଥିବା ନଥିବା ବଡ଼ କଥା ନୁହେଁ, କିନ୍ତୁ ନୂଆ ଅକ୍ଷର (ଅକ୍ଷରର ନୂତନତ୍ୱ ନୁହେଁ) ପ୍ରଣାଳୀଗତ ବା ବନାନଗତ ନୂତନତ୍ୱ ଆଣିବା ଦିଗରେ ବଦ୍ଧପରିକର ହେବା ଉଚିତ। କାରଣ ପ୍ରାଚୀନ ଲେଖନ ପ୍ରଣାଳୀରେ ଅକ୍ଷର ସଂଖ୍ୟା ଏତେ ବେଶୀ ଯେ, ତାକୁ ସମ୍ପୂର୍ଣ୍ଣ ଭାବେ ଛାପିବା ଯେ ଖାଲି ବ୍ୟୟସାପେକ୍ଷ ସେତିକି ନୁହେଁ, ତାକୁ ଆୟତ୍ତ କରିବା ଶିକ୍ଷାର୍ଥୀମାନଙ୍କ ପକ୍ଷରେ ଆହୁରି ସମୟ-ସାପେକ୍ଷ। ବର୍ତ୍ତମାନର ଆଶୁ ସାକ୍ଷରତା ପାଇଁ ଏହା ଏକ ବିରାଟ ପ୍ରତିବନ୍ଧକ। ତେବେ ନୂତନ ଅକ୍ଷର ବର୍ତ୍ତମାନ ଦୁଇଟି ଦିଗରୁ କିଛିଟା ଉନ୍ନତି କରିଛି ବୋଲି ମନେହୁଏ। ପ୍ରଥମ ଓଡ଼ିଆର ଯୁଗ୍ମ

ଅକ୍ଷରଗୁଡ଼ିକୁ କମାଇବାକୁ ପଡ଼ିବ। ଏହି ଯୁଗ୍ମ ଅକ୍ଷର ଦୁଇ ପ୍ରକାରର। ପ୍ରାଚୀନ ଛାପାରେ ସ୍ୱରବର୍ଣ୍ଣଗୁଡ଼ିକ ସାଧାରଣତଃ ଅକ୍ଷର ସହିତ ଯୁକ୍ତ ହୋଇଥାନ୍ତି, ଯଥା- ବି, ବୁ ଇତ୍ୟାଦି। ନୂତନ ଛାପାରେ ଏହି ଯୁଗ୍ମ ଅକ୍ଷରଗୁଡ଼ିକ ଆଉ କ୍ୱଚିତ୍ ଦେଖିବାକୁ ମିଳନ୍ତି ଅର୍ଥାତ୍ ସେମାନେ ବି ଓ ବୁ ଭାବେ ଛପା ହୋଇଥାନ୍ତି, ଯାହା ଫଳରେ ଟାଇପର ସଂଖ୍ୟା କମେ ଓ ପଢ଼ିବାରେ ସୁବିଧା ହୁଏ। ଟାଇପ୍ ରାଇଟରରେ ମଧ୍ୟ ସେହି ଏକ ପ୍ରଣାଳୀ ଅନୁସୃତ ହୋଇଥାଏ। ସ୍ୱରବର୍ଣ୍ଣଗୁଡ଼ିକୁ ବ୍ୟଞ୍ଜନବର୍ଣ୍ଣ ସହିତ ଯୋଡ଼ି ଯୁଗ୍ମ ଅକ୍ଷରକୁ ପ୍ରଶ୍ରୟ ଦେବା ଅର୍ଥ ଓ ସମୟ ଦୃଷ୍ଟିରୁ ଅପଚୟମୂଳକ। ତା'ପରେ ତଥାକଥିତ ଯୁକ୍ତାକ୍ଷର ଯେଉଁ ବିଷୟରେ ଆମେ ଆଲୋଚନା କରିସାରିଛୁ। ଏହି ଯୁକ୍ତାକ୍ଷରଗୁଡ଼ିକ ବର୍ତ୍ତମାନ ନୂତନ ଛାପାରେ ବିକଳ୍ପ ପ୍ରଣାଳୀକୁ ଅନୁସରଣ କରିବା ଦ୍ୱାରା ବେଶ୍ ହ୍ରାସ ପାଇଛନ୍ତି। ବିଶେଷ କରି ହଳନ୍ତ ଓ ଅନୁସ୍ୱାରର ପ୍ରୟୋଗ ଦ୍ୱାରା ଏହି ଯୁକ୍ତାକ୍ଷରଗୁଡ଼ିକୁ କ୍ରମଶଃ ଭଙ୍ଗାଯାଉଛି। ଯଥା- ଦ୍ଧ ହେଉଛି ଦ୍‌ଧ ଓ ନ୍ଧ ହେଉଛି ଅନୁସ୍ୱାର-ଧ। ଖାଲି ଛାପାର ଉନ୍ନତି ପାଇଁ ନୁହେଁ, ଅକ୍ଷରଶିକ୍ଷା ପାଇଁ ଏହା ଅବଶ୍ୟ କରଣୀୟ। ଓଡ଼ିଆ ଅକ୍ଷରରେ ଯେତେବେଳେ ଛାପା କାର୍ଯ୍ୟ ଆରମ୍ଭ ହୋଇଥିଲା, ସେତେବେଳେ ଲକ୍ଷ୍ୟ ଥିଲା ଭିନ୍ନ। କନ୍ତୁ ବର୍ତ୍ତମାନ, ଯେତେବେଳେ ଆମର ସାକ୍ଷରଙ୍କ ସଂଖ୍ୟା ଅଭାବନୀୟ ଓ ଶତପ୍ରତିଶତ ସାକ୍ଷରତା ଆଣିବା ଆମର ଲକ୍ଷ୍ୟ, ସେତେବେଳେ ଲେଖନ ପ୍ରଣାଳୀକୁ ସେହି ଦୃଷ୍ଟିରୁ ବିଚାର କରିବାକୁ ପଡ଼ିବ। ନିରକ୍ଷରଙ୍କୁ କଳାପଟା ଯୋଗାଇଦେଲେ ନିରକ୍ଷରତା ଦୂର ହୋଇଯିବ ନାହିଁ, ଯଦି ତା' ସାଙ୍ଗେ ସାଙ୍ଗେ ଆମର ଲେଖନ ପ୍ରଣାଳୀକୁ ସହଜ ଓ ସରଳ ନ କରାଯାଏ। ବର୍ତ୍ତମାନର ନୂତନ ସାକ୍ଷରମାନଙ୍କ ପାଇଁ ପ୍ରସ୍ତୁତ ଛପା ବହିଗୁଡ଼ିକ ନୂତନ ଅକ୍ଷର ବ୍ୟବହାର କରୁଥିବାର ଦେଖାଯାଉଥିଲେ ମଧ୍ୟ ଏହା ଅନ୍ଧାଧୁନିଆ ଭାବେ କରାଯାଉଛି। ବର୍ଣ୍ଣମାଳାକୁ ଘୋଷି ସାରିଲା ପରେ ବି ନୂତନ ସାକ୍ଷରମାାନେ ଓଡ଼ିଆ ଛାପା କାଗଜ ପଢ଼ିପାରିବେ ନାହିଁ, କାରଣ ଅଧିକାଂଶ ଛାପା ବର୍ତ୍ତମାନ ବି ପ୍ରାଚୀନ ଅକ୍ଷରରେ ହେଉଛି ଓ ସେ ଦିଗରେ କୌଣସି ନିର୍ଦ୍ଦିଷ୍ଟ ପ୍ରଣାଳୀ ଅନୁସୃତ ହେଉନାହିଁ। ସାକ୍ଷରତା ପାଇଁ ଉଦ୍ଦିଷ୍ଟ ଛାପାଗୁଡ଼ିକ ଦେଖିଲେ ମନେହୁଏ ଯେ, ବର୍ତ୍ତମାନ ବି ଲେଖନ ପ୍ରଣାଳୀର ସ୍ୱରୂପ କ'ଣ ହେବ, ସେ ବିଷୟରେ ଶିକ୍ଷାବିତ୍‌ମାନଙ୍କର ଏକ ବିଧିବଦ୍ଧ ଧାରଣା ନାହିଁ, ଯାହା ଫଳରେ ବର୍ତ୍ତମାନ ନବସାକ୍ଷରମାନଙ୍କ ପାଇଁ ଛାପା ବହିରେ ନାନା ଦ୍ୱନ୍ଦ୍ୱକୁ ପ୍ରଶ୍ରୟ ଦିଆଯାଉଛି। ଯୁକ୍ତାକ୍ଷରଗୁଡ଼ିକ ସରଳ କରାଯିବ ନା ନାହିଁ, କେଉଁ କେଉଁ ସ୍ଥଳରେ କରାଯିବ ଓ କିପରି ଭାବେ କରାଯିବ, ସେ ବିଷୟରେ ଏକ ସ୍ପଷ୍ଟ ନୀତି ପ୍ରଣୟନ ହେବା ଉଚିତ ଏବଂ ସେ ନୀତି ଦୃଢ଼ ଭାବେ

ଛାପାରେ ଅନୁସୃତ ହେବା ଉଚିତ। ଅନ୍ତତଃ ନୂତନ ସାକ୍ଷରମାନଙ୍କ ପାଇଁ ଉଦ୍ଦିଷ୍ଟ ସବୁ ଛାପା ସେହି ପ୍ରଣାଳୀରେ ହୋଇଛି କି ନାହିଁ, ପ୍ରଥମେ ତା'କୁ ଯାଞ୍ଚ କରିବା ଉଚିତ। କିନ୍ତୁ ଯେହେତୁ ଓଡ଼ିଆ ବନାନ ଉପରେ ଆମର କୌଣସି ନୀତି ନାହିଁ ଏବଂ ଏକ ଯଥାଯଥ ଓଡ଼ିଆ ବନାନ ପ୍ରଣାଳୀ ସୃଷ୍ଟି କରିବାର ଲୋକ ନାହାନ୍ତି, ତେଣୁ ସେ ନୀତି ପ୍ରଣୟନ ହୋଇପାରୁ ନାହିଁ। ଫଳରେ ବର୍ତ୍ତମାନର ଛାପା ଏକ ଅଭାବନୀୟ ଅବସ୍ଥାରେ ପହଞ୍ଚିଛି। ଅକ୍ଷରଗୁଡ଼ିକ ଆହୁରି ଗୋଲ କରି ଆହୁରି ସୁନ୍ଦର କରି ବା ରଙ୍ଗବେରଙ୍ଗୀ କରି ଛାପିଲେ ନିରକ୍ଷର ଯେ ତାକୁ ସହଜରେ ପଢ଼ିପାରିବ, ଏପରି ଭାବିବା ଏକାନ୍ତ ହାସ୍ୟକର। ସେଥିପାଇଁ ଲେଖନ ପ୍ରଣାଳୀକୁ ହିଁ ବଦଳାଇବାକୁ ପଡ଼ିବ, ଯାହା ଫଳରେ ବନାନ ସହଜ ଓ ସରଳ ହେବ। ବର୍ଣ୍ଣମାଳା ଶିକ୍ଷା ଦୃଷ୍ଟିରୁ କେଉଁ ଉପାୟଗୁଡ଼ିକୁ ବଳବତ୍ତର କରାଯିବ ଓ କେଉଁ ଉପାୟଗୁଡ଼ିକୁ କ୍ରମଶଃ ଆମ ଲେଖନ ପ୍ରଣାଳୀରୁ ହଟାଇବାକୁ ପଡ଼ିବ, ସେ ବିଷୟରେ ଦୃଢ଼ ପଦକ୍ଷେପ ନେବାକୁ ପଡ଼ିବ। ତା' ନୋହିଲେ ସାକ୍ଷରତା ନାମରେ ଚତୁର୍ଦ୍ଦିଗରେ ବର୍ତ୍ତମାନ ଏଇ ଯେଉଁ ହଟ୍ଟଗୋଳ ଲାଗିଛି, ତାହା କେବଳ ଅରଣ୍ୟରୋଦନ ହୋଇ ରହିଯିବ। ସୂକ୍ଷ୍ମରେ କହିବାକୁ ଗଲେ ସାକ୍ଷରତାର ସଫଳତା ଖାଲି ସିଲଟ ଖଡ଼ି ବା hard-ware ଉପରେ ନିର୍ଭର କରେ ନାହିଁ, ଏହା ଲେଖନ ପ୍ରଣାଳୀ ବା soft-ware ଉପରେ ମଧ୍ୟ ନିର୍ଭର କରେ। ଏହି ପ୍ରଣାଳୀଟି ଠିକ୍ ହୋଇ ନ ପାରିବା ଫଳରେ 'ସ୍ତ୍ରୀ' ବା 'ସ୍ତ୍ରୀ' କେମିତି ଛପା ହେବ, ଅର୍ଥାତ୍ କେଉଁ ବନାନରେ ଛପା ହେବ, ତାହା ଠିକ୍ ହୋଇପାରୁ ନାହିଁ ଏବଂ ଛାପାରେ ଦେଖିବାକୁ ମିଳେ ନାନା ଉଦ୍ଭଟ ବନାନ। ଆମର ମନେହୁଏ ଯେ, ବର୍ତ୍ତମାନ ଓଡ଼ିଆ ଲେଖନ ପ୍ରଣାଳୀକୁ ପରୀକ୍ଷା କରି ଏକ ନୂତନ ପରମ୍ପରା ସୃଷ୍ଟି କରିବାର ସମୟ ଆସିଛି, ଯାହା ନୂତନ ଛାପା ଓ ସାକ୍ଷରତାକୁ ସରଳ କରିବ।

ତାଳପତ୍ର ପୋଥି



ସୌଜନ୍ୟ : ଇଣ୍ଟରନେଟ୍



# ଓଡ଼ିଆ ବନାନ ପରମ୍ପରା

## ବିଜୟ ପ୍ରସାଦ ମହାପାତ୍ର

ଏଇ ମାତ୍ର କେଇ ବର୍ଷ ତଳେ ଚନ୍ଦ୍ରର ଆରପାଖ ଦେଖିଥିବା ଲୋକଙ୍କଠାରୁ ଓଡ଼ିଆ ଟାଇପ୍-ରାଇଟର୍ ଦେଖିଥିବା ଲୋକଙ୍କ ସଂଖ୍ୟା ଥିଲା କମ୍- ବ୍ୟବହାର କରିଥିବା ତ ଆହୁରି ଦୂରର କଥା। କିନ୍ତୁ ଏ ପରିସ୍ଥିତିର ଏବେ ଅନେକ ଉନ୍ନତି ହୋଇଛି। ସମୟ ଥିଲା, ସେତେବେଳେ ମାତ୍ର ଗୋଟିଏ ବୋଲି ଓଡ଼ିଆ ଟାଇପ୍-ରାଇଟର୍ ଥିଲା ପୁରୀ ଏମାର ମଠରେ। କେତେକ ଅବାଞ୍ଛନୀୟ ଦୁର୍ଘଟଣା ଫଳରେ ଏଇଟି ଆଉ ଏମାର ମଠରେ ଦେଖିବାକୁ ମିଳି ନ ପାରେ, ମାତ୍ର ଏହା ଉକ୍ତ ମଠାଧୀଶଙ୍କର ବ୍ୟକ୍ତିଗତ ସମ୍ପତ୍ତି ଓ ଅନେକ ଦିନ ପର୍ଯ୍ୟନ୍ତ ସେଠାରେ ଥିଲା। ଭାରତ ସ୍ୱାଧୀନ ହେବା ପୂର୍ବରୁ ଏ ଯନ୍ତ୍ରଟି ନିର୍ମିତ ହୋଇଥିଲା ଓ ଉକ୍ତ ମଠର ବିଭବର ପରିଚାୟକ ରୂପେ ମହନ୍ତ ମହାରାଜ ଯେପରି ବଡ଼ କୋଠାଘର, ବଡ଼ ବଳଦ ଇତ୍ୟାଦି ରଖିଥିଲେ, ସେହିପରି ଓଡ଼ିଆ ଟାଇପ୍-ରାଇଟରଟିକୁ ମଧ୍ୟ ରଖିଥିଲେ। ଇଂରାଜୀ ଯୁଗରେ ଓଡ଼ିଆ ଟାଇପ୍-ରାଇଟର୍‌ର ମୂଲ୍ୟ ବା କଣ, ଗ୍ରାମୋଫୋନ୍ ଓ ମଟରଗାଡି ପରି ଏହା ଥିଲା ଅନ୍ୟ ଏକ ସଉକିନିଆ ଯନ୍ତ୍ର, ଯାହାର ନୂତନତ୍ୱ ଓ ଦୁର୍ଲ୍ଲଭତା ହିଁ ଥିଲା ତାହାର ପ୍ରଧାନ ଆକର୍ଷଣ, ତେଣୁ ବର୍ତ୍ତମାନ ଯୁଗରେ ଯନ୍ତ୍ରର ଶୈଳ୍ପିକ ନିପୁଣତାକୁ ତୁଳି ବସିବା ଅଯୌକ୍ତିକ।

ଭାରତ ସ୍ୱାଧୀନ ହେବା ପରେ ଓ ବିଶେଷ କରି ଭାଷା ଭେଦରେ ପ୍ରଦେଶଗୁଡ଼ିକ ପୁନର୍ଗଠିତ ହେବା ଫଳରେ ଯେଉଁ ଆଞ୍ଚଳିକ ଭାଷାଗୁଡ଼ିକର ଗୁରୁତ୍ୱ ବୃଦ୍ଧି ପାଇଲା, ତା' ଭିତରୁ ଓଡ଼ିଶା ପ୍ରଦେଶର ମୂଖ୍ୟ ଭାଷା ଓଡ଼ିଆ ଅନ୍ୟତମ। ଏହି ପ୍ରଦେଶର ସମସ୍ତ ପ୍ରକାରର ସରକାରୀ ତଥା ବେସରକାରୀ ଶାସନ ଓ ଶିକ୍ଷାର ମାଧ୍ୟମ ରୂପେ ଓଡ଼ିଆ ଭାଷାକୁ ବ୍ୟବହାର କରିବା ପାଇଁ ଗତ କିଛି କାଳ ଧରି ଚେଷ୍ଟା କରାହେଉଛି। ଏହି ଚେଷ୍ଟାକୁ ସଫଳ କରିବା ପାଇଁ ପ୍ରଥମେ ଭାଷାକୁ ସମୟୋପଯୋଗୀ କରିବା ଉଚିତ ଏବଂ ଏହା ଦୁଇଟି ଦିଗରୁ କରାଯାଇପାରେ। ପ୍ରଥମେ ମନେ ରଖିବା ଉଚିତ ଯେ ଓଡ଼ିଆ ଭାଷା ଏକଦା ଇଂରାଜୀ, ଫ୍ରେଞ୍ଚ, ରସିଆନ୍ ବା ବଙ୍ଗଳା ପରି ଏକ ଗ୍ରାମ୍ୟ ଓ ଅଶିକ୍ଷିତ ମାନଙ୍କର ଭାଷା ଥିଲା। ଯେତେବେଳେ ଏହି ଭାଷାଗୁଡ଼ିକ ଜନ୍ମ ଗ୍ରହଣ କରନ୍ତି ତତ୍‌କାଳୀନ ଶିକ୍ଷିତ ଓ ଚିନ୍ତାଶୀଳ

ଲୋକମାନଙ୍କର ଭାଷା ଥିଲା ଲାଟିନ୍ ବା ସଂସ୍କୃତ। କିନ୍ତୁ କାଳକ୍ରମେ ସାରଳାଦାସ, ଜଗନ୍ନାଥ ଦାସ, ଉପେନ୍ଦ୍ର ଭଞ୍ଜଙ୍କ ପରି ପ୍ରତିଭାବାନ ବ୍ୟକ୍ତିଙ୍କ ସାଧନା ଫଳରେ ଏ ଭାଷାରେ ସାହିତ୍ୟ ସୃଷ୍ଟି ହେଲା। ତେବେ ବି ମାତ୍ର ପଚାଶ ବର୍ଷ ତଳର ଓଡ଼ିଆ ଭାଷାକୁ ନେଇ ଦେଖିଲେ ବୁଝିହେବ ଯେ ଏ ଭାଷା ଘରୋଇ କଥାବାର୍ତ୍ତା ଓ ଧର୍ମ ପ୍ରଚାରମୂଳକ ବା ପ୍ରେମମୂଳକ ସାହିତ୍ୟ ମଧ୍ୟରେ ସୀମାବଦ୍ଧ। ଏପରିକି କୋଣାର୍କ, ବଡ଼ଦେଉଳ ବା ବାରବାଟୀ ତିଆରି କରିବାବେଳେ ଶିଳ୍ପ, ଭାସ୍କର୍ଯ୍ୟ ସମ୍ବନ୍ଧୀୟ ଯେଉଁ ଅଜସ୍ର, ବୈଷୟିକ ଓଡ଼ିଆ ଶବ୍ଦ ସେତେବେଳେ ପ୍ରଚଳିତ ଥିବ ବର୍ତ୍ତମାନ ଲୋକଙ୍କ ମୁହଁରୁ ତାକୁ ଖୋଜିପାଇବା କଠିନ। ତେଣୁ ଆଜି ସ୍କୁଲ ପିଲାଙ୍କ ପାଇଁ ଜ୍ୟାମିତି, ବା ନିର୍ମାଣ ବିଜ୍ଞାନ ଉପରେ ପଢ଼ା ବହି ଖଣ୍ଡିଏ ଲେଖିବାକୁ ଗଲେ ସମ୍ପୂର୍ଣ୍ଣ ନୂତନ ପାରିଭାଷିକ ଶବ୍ଦ ସଂଗ୍ରହ କରିବାକୁ ପଡୁଛି।

ଆଧୁନିକ କୃଷ୍ଟିର ଅଗାଧ ବୈଚିତ୍ର୍ୟକୁ ପ୍ରକାଶ କରିବା ପାଇଁ ଓଡ଼ିଆ ଭାଷାର ପରମ୍ପରା ନାହିଁ। ଏ ହେଉଛି ଭାଷାର ଦୈହିକ ଦୁର୍ବଳତା। ଦ୍ୱିତୀୟରେ ଏ ପାଞ୍ଜି ଓ ପ୍ରଚାର ଯୁଗରେ ସଞ୍ଜବେଳେ ବିଡେ ତାଳପତ୍ର ଓ ଲେଖନୀଟିଏ ଧରି ବର୍ଷକରେ ପୋଥି ଖଣ୍ଡିଏ ନକଲ କଲେ ଏ ଯୁଗର ଚାହିଦା ମେଣ୍ଟାଇ ହେବନାହିଁ। ଏ ଦେଶର ହଜାର ହଜାର ସରକାରୀ ଓ ବେସରକାରୀ ଦଫ୍ତର, ସ୍କୁଲ, କଲେଜ ଓ ଅଗଣିତ ଅନୁଷ୍ଠାନରେ ଇଂରାଜୀ ପରିବର୍ତ୍ତେ ଯଦି ଓଡ଼ିଆରେ କାମ କରାହୁଏ ତାହାଲେ ଏ ଶଗଡ଼ ଶଗଡ଼ ନଥିପତ୍ର ପାଇଁ ଯନ୍ତ୍ରର ଆବଶ୍ୟକତା ନିଶ୍ଚୟ ଉପଲବ୍ଧି ହେବ। ଭାବନାର ସଂଚରଣରେ ଶ୍ରୀଘ୍ରତା ପ୍ରକାଶ ନ ପାଇଲେ ଏ ଯୁଗର ସବୁ କିଛି ଅଚଳ ହୋଇପଡିବାର ସମ୍ଭାବନା ଯଥେଷ୍ଟ ବେଶୀ। ତେଣୁ ଛପାଖାନା, ଟାଇପ୍-ରାଇଟର୍ ଇତ୍ୟାଦି ଦ୍ୱାରା ଲେଖା ପରିଷ୍କାର ଓ ସୁନ୍ଦର ହୁଏ ବୋଲି ସେଗୁଡ଼ିକ ବ୍ୟବହୃତ ହେଉଛନ୍ତି, ତା ନୁହେଁ, ତାହେଲେ କଳକାରମାନଙ୍କୁ ସେଥିପାଇଁ ନିୟୋଜିତ କଲେ ଲକ୍ଷ୍ୟ ସାଧିତ ହୁଅନ୍ତା।

ବାସ୍ତବରେ ଯନ୍ତ୍ର ଯୁଗରେ ପ୍ରତ୍ୟେକ ଯନ୍ତ୍ରର ସାର୍ଥକତା ତାର ନିର୍ଭୁଲ ଓ ଖର ଉତ୍ପାଦିକା ଶକ୍ତି ଉପରେ ହିଁ ନିର୍ଭର କରେ। ତେଣୁ ଓଡ଼ିଆ ଟାଇପ୍-ରାଇଟର୍‌ର ନିର୍ମାତାମାନେ ଯଦି ଏହାକୁ ଏକ ଯନ୍ତ୍ର ବିଶେଷ ବୋଲି ବିଚାରୁଥାଆନ୍ତି, ତାହାହେଲେ ଏହାର ପରୀକ୍ଷା କେବଳ ଏହାର କାର୍ଯ୍ୟଦକ୍ଷତାକୁ ହିଁ କେନ୍ଦ୍ରକରି ହେବା ଉଚିତ। ଓଡ଼ିଆର ସବୁଯାକ ଜଣା ଅଜଣା ଅକ୍ଷର ଟାଇପ୍-ରାଇଟର୍‌ରେ ସ୍ଥାନ ପାଇଲେ କି ନାହିଁ ଗୁରୁତ୍ୱପୂର୍ଣ୍ଣ ନୁହେଁ, କିନ୍ତୁ କେତେଗୁଡ଼ିଏ ଅଦରକାରୀ ଅକ୍ଷରକୁ ବାଦ୍ ଦେଇ ଟାଇପ୍‌ର ବେଗ ବା ଦକ୍ଷତା ବଢ଼ାଇ ହେଉଛି କି ନାହିଁ ଦେଖିବା ଆବଶ୍ୟକ। ଯଦି ଲେଖାର ପରିଚ୍ଛନ୍ନତା ଓ ସୌନ୍ଦର୍ଯ୍ୟ ଏକମାତ୍ର

ଲକ୍ଷ୍ୟ, ଟାଇପ୍-ରାଇଟର୍‌ଟିରେ ଏବେ ଅର୍ଥ ବ୍ୟୟ ନ କରି କିରାନୀକାଗଜ ଖଣ୍ଡିକ ଉପରେ ମୋହର ବାଡ଼େଇଲା ପରି ଗୋଟି ଗୋଟି କରି ଅକ୍ଷରଗୁଡ଼ିକ ବାଡ଼େଇ ପାରିଲେ କୌଣସି ବିଶେଷ କ୍ଷତି ହୁଅନ୍ତା ନାହିଁ, ଖାଲି ପୁଳାଏ ମୋହର ଦେଇ ଦେଇ ସରକାର ବୃଥା ଅର୍ଥ ଶ୍ରାଦ୍ଧରୁ ତ୍ରାହି ପାଇଯାଆନ୍ତେ।

ସେ ଯାହାହେଉ, ଏଇ ଅଳ୍ପ କେତେ ବର୍ଷ ଭିତରେ ଓଡ଼ିଆ ଟାଇପ୍-ରାଇଟର୍‌ର ଯଥେଷ୍ଟ ଅଗ୍ରଗତି ଘଟିଛି ଏବଂ ସରକାରଙ୍କ ବାଣିଜ୍ୟ ବିଭାଗ ସାଧାରଣଙ୍କ ଅବଗତି ପାଇଁ ଓଡ଼ିଆ ଟାଇପ୍-ରାଇଟର୍‌ର କି-ବୋର୍ଡ ଉପରେ ତାଙ୍କର ଚୂଡ଼ାନ୍ତ ଇସ୍ତାହାର ପ୍ରକାଶ କରିଛନ୍ତି।

ସଂସ୍କୃତରେ ପାଣ୍ଡିତ୍ୟ ଥିବା ଓଡ଼ିଆ କେବଳ ରାଧାନାଥ ରାୟଙ୍କ ପରଠୁ ଓଡ଼ିଶାରେ ଜନ୍ମ ଗ୍ରହଣ କରି ନାହାନ୍ତି ତା'ର ବହୁ ପୂର୍ବରୁ ଓଡ଼ିଶାରେ ସଂସ୍କୃତ ଶିକ୍ଷାର ପରମ୍ପରା ଥିଲା, ମାତ୍ର ଓଡ଼ିଆ ଭାଷା ଉପରେ ସଂସ୍କୃତ ପଣ୍ଡିତମାନଙ୍କର ଦୌରାତ୍ମ୍ୟ ଏଇ ପଚାଶ ବର୍ଷ ତଳର ଘଟଣା। ଏହି ପଣ୍ଡିତମାନଙ୍କ ଆବିର୍ଭାବ ପୂର୍ବରୁ ଅନ୍ତତଃ ଶିକ୍ଷିତ ଓଡ଼ିଆମାନେ ଓଡ଼ିଆ ଓ ସଂସ୍କୃତକୁ ଦୁଇଟି ପୃଥକ୍ ଭାଷା ରୂପେ ଦେଖୁଥିଲେ, କିନ୍ତୁ ଏବେ ଓଡ଼ିଆ ସଂସ୍କୃତର ଏକ ଅଧସ୍ତନ ଭାଷା। ଏହି ଅନ୍ଧବିଶ୍ୱାସ ଯୋଗୁ ଆମର ପାଞ୍ଚଶହ ବା ତଦୂର୍ଦ୍ଧ୍ୱ ସମୟର ପରମ୍ପରା ଭାଙ୍ଗି ସେ ସମୟର ବଡ଼ପଣ୍ଡାମାନେ ଓଡ଼ିଆ ଶବ୍ଦକୁ ସଂସ୍କୃତ ବନାନ୍‌ରେ ଲେଖିବାକୁ ଆରମ୍ଭ କଲେ ଓ ଏ ଅଯଥାର୍ଥ ବନାନ୍ ମନେ ରଖିବାକୁ ଏବେ ପ୍ରତ୍ୟେକ ଓଡ଼ିଆ ଛାତ୍ରକୁ ଯେଉଁ ପରିଶ୍ରମ କରିବାକୁ ପଡୁଛି, ତାହା ହେଉଛି ଏହି ପ୍ରପଞ୍ଚତାର କରୁଣ ପରିଣତି।

ଓଡ଼ିଆ ବନାନ୍‌ର ପରମ୍ପରା ତାହାହେଲେ କ'ଣ ? ଯେ କୌଣସି ତାଳପତ୍ର ପୋଥି ଫିଟାଇଲେ ଓଡ଼ିଆ ବନାନ୍ କ'ଣ ସହଜରେ ବୁଝିହୁଏ। ଅତି କମ୍‌ରେ ପାଞ୍ଚଶହ ବର୍ଷ ଧରି ଓଡ଼ିଶାରେ ତାଳପତ୍ର ପୋଥି ଲେଖା ହୋଇଛି ଓ କିବା ଶିକ୍ଷିତ କିବା ଅଶିକ୍ଷିତ ସମସ୍ତେ ପଢ଼ି କିମ୍ବା ଶୁଣି ତାକୁ ବୁଝୁଛନ୍ତି। ତା'ସତ୍ତ୍ୱେ 'ବିଷୟ' ଓ 'ଋଷି' ପରି ଶବ୍ଦଗୁଡ଼ିକୁ ମୂର୍ଦ୍ଧଣ୍ୟ ଷ ଓ ସ୍ୱର-ଋ ଦେଇ ଲେଖିବାର କି ଯୌକ୍ତିକତା ରହିଛି। ଦ୍ୱିତୀୟରେ, ପଣ୍ଡିତମାନଙ୍କ ମତରେ ଓଡ଼ିଆରେ ତିନି ପ୍ରକାରର ଶବ୍ଦ ଚଳେ- ଦେଶଜ, ତଦ୍‌ଭବ ଓ ତତ୍ସମ। ସାମାନ୍ୟ ଲକ୍ଷ୍ୟ କରି ଦେଖିଲେ ବୁଝିହେବ ଯେ, ଏହି ତତ୍ସମ ଶବ୍ଦଗୁଡ଼ିକ ବନାନ୍ ଦୃଷ୍ଟିରୁ ସବୁଠାରୁ କ୍ଲିଷ୍ଟ ଓ ଲେଖିବା ଦୃଷ୍ଟିରୁ ଅଣଓଡ଼ିଆତ୍ୱ ସର୍ବାଧିକ। ତେବେ ଗୋଟିଏ କଥା ଏଠାରେ ଉଲ୍ଲେଖ ଯୋଗ୍ୟ। ତତ୍ସମ ଶବ୍ଦଗୁଡ଼ିକ ଯେପରି ସିଧାସଳଖ ସଂସ୍କୃତରୁ କରଜ କରାହୋଇ ଆସିଛନ୍ତି, ସେହିପରି ଇଂରାଜୀ, ତାମିଲ, ତେଲଗୁ, ପାର୍ସୀ, ଆରବିକ, କନ୍ଧ ଓ ସବରା

ଭାଷାରୁ ବହୁ ଶବ୍ଦ ଆସି ଓଡ଼ିଆ ଭାଷାକୁ ପୁଷ୍ଟ କରିଛନ୍ତି। ତେଣୁ ଏସବୁ ବାଦ୍ ଦେଇ ଖାଲି ସଂସ୍କୃତ ଶବ୍ଦଗୁଡ଼ିକୁ ତତ୍ସମ କହିବାର ତାତ୍ପର୍ଯ୍ୟ କେଉଁଠି ? ଅଥଚ ସଂସ୍କୃତ ଓ ଅନ୍ୟାନ୍ୟ ଯାବନିକ ବା ଦ୍ରାବିଡୀୟ ଶବ୍ଦଗୁଡ଼ିକ ଆଉ ତତ୍ସମ ଅର୍ଥାତ୍ ମୂଳ ଭାଷାର ଉଚ୍ଚାରଣ ଅନୁରୂପ ଓଡ଼ିଆରେ ଉଚ୍ଚାରିତ ହେଉ ନାହାନ୍ତି, ସମସ୍ତେ ଓଡ଼ିଆ ଭାଷାର ଉଚ୍ଚାରଣ ପଦ୍ଧତିର ପରମ୍ପରାରେ ଉଚ୍ଚାରିତ ହେଉଛନ୍ତି।

ଗତ ପଚାଶ ବର୍ଷ ଧରି ଏହି ବନାନ ଶୁଦ୍ଧି ନାମକ ପ୍ରାମାଦିକତାକୁ ଆମେ ପ୍ରଶ୍ରୟ ଦେଇ ଆସୁଛୁ। ଯଦି ଏହାର ଆଶୁ ପ୍ରତିବିଧାନ କରା ନ ଯାଏ କଥିତ ଓ ଲିଖିତ ଭାଷା ଭିତରେ ଦୂରତ୍ୱ ବଢ଼ିବାରେ ଲାଗିବ। ବନାନରେ ବିପ୍ଳବ ବା ନୂତନତ୍ୱ ସୃଷ୍ଟି କରିବାର ଇଚ୍ଛା ଏଠାରେ ପ୍ରକାଶ କରାଯାଉନାହିଁ, ବରଂ ଏହି ପଚାଶ ବର୍ଷର ଅର୍ବାଚୀନ ବନାନ ଶୁଦ୍ଧିକୁ ଛାଡି ଆମ ପାଞ୍ଚଶହ ବର୍ଷର ପ୍ରତିଷ୍ଠିତ ତାଳପତ୍ର ପୋଥିର ଓଡ଼ିଆ ଲେଖନ ପରମ୍ପରାକୁ ଫେରିଯିବା ଉଚିତ। ଓଡ଼ିଆ ଭାଷା ଦୃଷ୍ଟିରୁ ବର୍ତ୍ତମାନ ଯେ କୌଣସି ଛାପାଠାରୁ ସେ କାଳର ଫାଳେ ତାଳପତ୍ର ପୋଥି ବେଶୀ ଶୁଦ୍ଧ, ବେଶୀ ବୈଜ୍ଞାନିକ ଓ ବେଶୀ ପ୍ରାଞ୍ଜଳ। ଯଦି ଆମେ ଆମର ପ୍ରକୃତ ପରମ୍ପରାକୁ ଫେରିଯାଉ, ତାହାହେଲେ ଆଜିର କୃତ୍ରିମ ଲେଖାକୁ ପଢ଼ିବାକୁ ଓ ପଢି ଶିଖିବାକୁ ବା ଲେଖିବାକୁ ବା ଲେଖି ଶିଖିବାକୁ ଯେତେ ସମୟ ଲାଗୁଛି ତାହାଠାରୁ ଅନେକ କମ୍ ସମୟରେ ଆମର ପୁରାତନ ପ୍ରଣାଳୀ ଆୟତ୍ତ ହେବ।

ଓଡ଼ିଆ ଭାଷାକୁ କେବଳ କଥାବାର୍ତ୍ତା ଓ ଅବସର ବିନୋଦ ସାହିତ୍ୟ ନିମିତ୍ତ ନିୟୋଜିତ କରିବାର ସମୟ ଯାଇଛି। ପ୍ରଥମ କଥା ଓଡ଼ିଆ ଭାଷା ଲୋପ ପାଇ ନ ଯାଇ ଯଦି ପ୍ରତିଷ୍ଠିତ ହୁଏ, ତାହାହେଲେ ଆମ ସଭ୍ୟତା ଓ ବୁଦ୍ଧିର ମାନ ଏହି ଭାଷା ଉପରେ ବିଶେଷ ଭାବେ ନିର୍ଭର କରିବ। ଓଡ଼ିଶା ଦେଶର ଭବିଷ୍ୟତ ଦୃଷ୍ଟିରୁ ଭାବପ୍ରବଣତା ଛାଡି କେଉଁ ଦୃଷ୍ଟିରୁ ଅଗ୍ରସର ହେଲେ ସମସ୍ତ ଜାତି ଉପକୃତ ହେବ, ବିଚାର କରି ଦେଖିବା ଉଚିତ।

ପ୍ରଥମେ ସାଧାରଣ ଶିକ୍ଷିତ ଓଡ଼ିଆ ଜଣେ ଓଡ଼ିଆ କହିବା ପାଇଁ ଯେତେ ଗୁଡ଼ିଏ ସାର୍ଥକ ଧ୍ୱନି ବା ବର୍ଣ୍ଣର ବ୍ୟବହାର କରନ୍ତି ବା ଓଡ଼ିଆ ଭାଷାରେ କଥା କହିବା ପାଇଁ ଯେଉଁ ବର୍ଣ୍ଣଗୁଡ଼ିକର ପ୍ରୟୋଜନୀୟତା ରହିଛି, ସେଗୁଡ଼ିକ ହେଲା- ଅ, ଆ, ଇ, ଉ, ଏ , ଓ, କ, ଖ ଗ, ଘ, ଚ , ଛ, ଜ, ଝ, ଟ, ଠ, ଡ, ଢ, ଣ, ତ , ଥ, ଦ, ଧ, ନ, ପ, ଫ, ବ, ଭ, ମ, ର, ଳ, ଲ , ସ, ହ ଓ ଚନ୍ଦ୍ରବିନ୍ଦୁ। ଏ ପଇଁତ୍ରିଶଟି ବର୍ଣ୍ଣରୁ ଗୋଟିଏ ଊଣା ହେଲେ ବି ଓଡ଼ିଆ ବୁଝିବାରେ ନାନା ଗଣ୍ଡଗୋଳ ଦେଖାଦେବାର ଆଶଙ୍କା ରହିଛି।

ସେହିପରି ଅଧିକା ବର୍ଣ୍ଣ ବ୍ୟବହାର କରିବା ଖାଲି ବୃଥା ଅନୁବର୍ତ୍ତନ ହେବ। ଏହି ବର୍ଣ୍ଣଗୁଡ଼ିକୁ ନାନା ଭାବେ ଖଞ୍ଜି ଶବ୍ଦ ସବୁ ତିଆରି କରାଯାଇଥାଏ ଓ ସାଧାରଣତଃ ଗୋଟିଏ ବ୍ୟଞ୍ଜନବର୍ଣ୍ଣ ପରେ ଗୋଟିଏ ସ୍ୱରବର୍ଣ୍ଣ କ୍ରମରେ ଅଧିକାଂଶ ଓଡ଼ିଆ ଶବ୍ଦ ତିଆରି ହୋଇଛନ୍ତି। ତେବେ ବି ଅନେକ ଓଡ଼ିଆ ଶବ୍ଦ ଅଛନ୍ତି ଯେଉଁଥିରେ ବର୍ଣ୍ଣସଜ୍ଜା ପ୍ରଣାଳୀ ଏତେ ସରଳ ନୁହେଁ। ପରପର ହୋଇ ଦୁଇଟି ବା ତତୋଽଧିକ ସ୍ୱର ବା ବ୍ୟଞ୍ଜନବର୍ଣ୍ଣ ଯୁକ୍ତବର୍ଣ୍ଣ ରୂପେ ଆସିବା ବିରଳ ନୁହେଁ। ଏହି ଯୁକ୍ତବର୍ଣ୍ଣ ଗୁଡ଼ିକର ସଂଖ୍ୟା ବ୍ୟଞ୍ଜନ ଓ ସ୍ୱର କ୍ରମରେ ଏଠାରେ ପ୍ରଦତ୍ତ ହେଲା।

**ବ୍ୟଞ୍ଜନ ବର୍ଣ୍ଣ କ୍ରମରେ-**

**ଦ୍ୱୟ-ରାଶିକ ସବର୍ଣ୍ଣ ଯୋଗ** - ଙ+କ। ଖ। ଗ। ଘ; ଞ+ଚ। ଛ। ଜ। ଝ; ଣ+ଟ। ଠ। ଡ, ଢ; ନ+ତ। ଥ। ଦ। ଧ; ମ+ପ। ଫ। ବ। ଭ, ଯଥା- ଅଙ୍କରେ ଙ୍କ, ମଞ୍ଚରେ ଞ୍ଚ, କଣ୍ଠରେ ଣ୍ଠ ଇତ୍ୟାଦି।

**ଦ୍ୱୟ-ରାଶିକ ର-ପୂର୍ବ ଯୋଗ**- ର+କ। ଖ। ଗ। ଘ। ଚ। ଛ। ଜ। ତ। ଥ। ଦ। ଧ। ପ। ଫ। ବ। ଭ। ମ। ସ। ହ, ଯଥା- ଅର୍କରେ ର୍କ, ମୂର୍ଖରେ ର୍ଖ ଇତ୍ୟାଦି।

**ଦ୍ୱୟ-ରାଶିକ ର-ପର ଯୋଗ**- କ। ଖ। ଗ। ଘ। ଜ। ଟ। ଡ। ଢ। ଦ। ଧ। ପ। ଫ। ବ। ଭ। ନ। ମ। ସ। ହ+ର, ଯଥା- ଚକ୍ରରେ କ୍ର, ଖ୍ରୀଷ୍ଟରେ ଖ୍ର ଇତ୍ୟାଦି।

**ଦ୍ୱୟ- ରାଶିକ ନ-ପର ଯୋଗ**- ଗ। ଘ। ଛ। ତ। ପ। ମ। ସ। ହ+ନ, ଯଥା - ଅଗ୍ନିରେ ଗ୍ନ, ବିଘ୍ନରେ ଘ୍ନ ଇତ୍ୟାଦି।

**ଦ୍ୱୟ-ରାଶିକ ମ-ପର ଯୋଗ**- କ। ଖ। ଗ। ଜ। ଣ। ତ। ଦ। ନ। ଳ। ସ। ହ+ମ, ଯଥା- ରୁକ୍ମିଣୀରେ କ୍ମ, ସୂକ୍ଷ୍ମରେ କ୍ଷମ କ୍ଷ୍ମ ଇତ୍ୟାଦି।

**ଦ୍ୱୟ-ରାଶିକ ଣ-ପର ଯୋଗ**- ଖ। ଗ + ଣ, ଯଥା-ତୀକ୍ଷ୍ଣରେ କ୍ଷ୍ଣ ଇତ୍ୟାଦି।

**ଦ୍ୱୟ-ରାଶିକ-ଲ-ପୂର୍ବ ଯୋଗ**- ଲ+କ। ଗ, ଯଥା-ସିଲ୍କରେ ଲ୍କ ଇତ୍ୟାଦି।

**ଦ୍ୱୟ-ରାଶିକ ଲ-ପର ଯୋଗ**- କ। ଗ। ହ+ଲ, ଯଥା- କ୍ଲାସ୍‌ରେ କ୍ଲ ଇତ୍ୟାଦି।

**ଦ୍ୱୟ-ରାଶିକ ଳ-ପୂର୍ବ ଯୋଗ**- ଳ+କ। ଫ। ଭ। ପ, ଯଥା-ଶୁଳ୍କରେ ଳ୍କ ଇତ୍ୟାଦି।

**ଦ୍ୱୟ-ରାଶିକ- ଳ-ପର ଯୋଗ**- କ। ଗ। ମ+ଳ, ଯଥା- ଶୁକ୍ଳରେ କ୍ଳ ଇତ୍ୟାଦି।

**ଦ୍ୱୟ-ରାଶିକ ଯ-ପର ଯୋଗ-** କ । ଖ । ଗ । ଘ । ଚ । ଜ । ତ । ଥ । ଦ । ଧ । ପ । ବ । ଭ । ଟ । ଠ । ଡ । ନ । ମ । ସ । ଲ । ହ+ଯ, ଯଥା - ବାକ୍ୟରେ କ୍ୟ ଇତ୍ୟାଦି ।

**ଦ୍ୱୟ-ରାଶିକ ୱ-ପର ଯୋଗ-** କ । ଖ । ତ । ଥ । ଦ । ଧ । ନ । ସ । ଲ । ହ+ୱ-ଯଥା - ପକ୍ୱରେ କ୍ୱ ଇତ୍ୟାଦି ।

**ଦ୍ୱୟ-ରାଶିକ ସ-ପୂର୍ବ ଯୋଗ -** ସ+କ । ଖ । ଚ । ଛ । ଟ । ଠ । ତ । ଥ । ପ । ଫ । ଲ, ଯଥା- ପୁରସ୍କାରରେ ସ୍କ ଇତ୍ୟାଦି ।

**ଦ୍ୱୟ-ରାଶିକ ସ-ପର ଯୋଗ-** କ । ପ + ସ, ଯଥା- ବାକ୍‌ସରେ କ୍‌ସ ଇତ୍ୟାଦି ।

**ଦ୍ୱୟ-ରାଶିକ ଅନ୍ତର୍ବର୍ଗୀୟ ଯୋଗ-** କ+ଚ । ଟ । ତ, ଗ+ଦ । ଧ, ଚ+ଛ, ଜ+ଞ, ଡ+ଗ । ଦ, ତ+କ । ଖ । ଥ । ପ, ଦ+ଗ । ଘ । ଧ । ବ । ଭ, ପ+ଚ । ଟ । ତ, ବ+ଜ । ଝ । ଦ । ଧ, ଯଥା-ଡେକ୍‌ଚିରେ କ୍‌ଚ, ଦୁଗ୍‌ଧରେ ଗ୍‌ଧ ଇତ୍ୟାଦି ।

**ଦ୍ୱିତ୍ୱ-**କ,ଚ,ଜ,ଟ,ଡ,ତ,ଦ,ପ,ନ,ମ,ଲ । ଓଡ଼ିଆରେ ଦ୍ୱିତ୍ୱ ବା ଦୀର୍ଘବର୍ଣ୍ଣଗୁଡ଼ିକର ଉଚ୍ଚାରଣ ଯଦିଚ ବହୁକ୍ଷେତ୍ରରେ ସାର୍ଥକ ନୁହେଁ, ତେବେ ବି ସମ୍ପୂର୍ଣ୍ଣ ଭାବେ ନିରର୍ଥକ କହିବା ବି ସମ୍ଭବ ନୁହେଁ । କେତେବେଳେ ଆମେ କହୁଛେ 'ପକ୍‌କା ରାସ୍ତା' ବା 'ପକାରାସ୍ତା', ଏବଂ 'କ'ର ଦୀର୍ଘତ୍ୱ ବା ହ୍ରସ୍ୱତ୍ୱର ବିଶେଷ ତାତ୍ପର୍ଯ୍ୟ ଏଠାରେ ନାହିଁ କହିଲେ ଚଳେ । ମାତ୍ର 'ଭିତ୍ତି' ବା 'ଭୀତି', ବା 'ସମ୍ମାନ' ଓ 'ସମାନ' ପରି କେତେକ କ୍ଷେତ୍ରର ଯଥାକ୍ରମେ 'ତ'ର ବା 'ମ'ର ଦୀର୍ଘତ୍ୱ ବା ହ୍ରସ୍ୱତ୍ୱ ଶବ୍ଦ ଦୁଇଟିକୁ ବାରିବା ପାଇଁ ଆମେ ସମର୍ଥ ହୋଇଥାଉ । ସ୍ୱରବର୍ଣ୍ଣ କ୍ଷେତ୍ରରେ ବି ସେଇ ଏକା କଥା । 'ତାଆର' (ତାହାର) ଓ 'ତାର' (ବିଜୁଳି ତାର), ବା 'ମୋ'ଟା ଓ 'ମୋଟା', 'ତୋ'ଟା' ଓ 'ତୋଟା' ଶବ୍ଦଗୁଡ଼ିକରେ ଥିବା ପାର୍ଥକ୍ୟ ସ୍ୱରବର୍ଣ୍ଣର ଦୀର୍ଘତ୍ୱ ବା ହ୍ରସ୍ୱତ୍ୱ ଉପରେ ନିର୍ଭର କରେ । ଏହାଛଡ଼ା ଶିକ୍ଷିତମାନଙ୍କ ଭାଷାରେ ଦୀର୍ଘ ବ୍ୟଞ୍ଜନବର୍ଣ୍ଣଗୁଡ଼ିକ ବେଶ୍ ସୁସ୍ପଷ୍ଟ ଭାବେ ଶୁଣିବାକୁ ମିଳିଲାଣି । ଏଣୁ ଦୀର୍ଘବର୍ଣ୍ଣଗୁଡ଼ିକୁ ଓଡ଼ିଆ ଉଚ୍ଚାରଣ ପଦ୍ଧତିରେ ଗ୍ରହଣ କରିବାର ଆମେ ପକ୍ଷପାତୀ ।

**ତ୍ରୟୋରାଶିକ ର- ପୂର୍ବଯୋଗ-**ର+(ଦ+ର) (ଜ+ଯ) । (ସ+ୱ) । (ତ+ଯ) । (ଧ+ୱ) (ତ+ର) । (ଘ+ଯ), ଯଥା-ଆର୍ଦ୍ରରେ ର୍‌ଦ୍‌ର୍ ଇତ୍ୟାଦି ।

**ତ୍ରୟୋରାଶିକ ର-ପର ଯୋଗ-** (କ+ତ) । (ଗ+ଡ) । (ନ+ତ) । (ନ+ଦ)(ନ+ଧ) । (ମ+ପ) । (ମ+ଭ) । (ର+ଦ) । (ର+ତ) ।

(ସ+କ)। (ସ+ଟ)। (ସ+ପ)। (ସ+ମ)+ର, ଯଥା- ବସ୍କ୍ରରେ କ୍‌ତ୍‌ର୍‌ ମନ୍ତ୍ରରେ ନ୍‌ତ୍‌ର୍‌ ଇତ୍ୟାଦି।

**ତ୍ରୟୋରାଶିକ ୟ-ପର ଯୋଗ-** (ତ+ମ)। (ସ+ଛ) । ନ+ତ)। (ନ+ଧ) । (ସ+ଥ) +ୟ, ଯଥା-ଦୌରାତ୍ମ୍ୟରେ ତ୍‌ମ୍‌ୟ, ମତ୍ସ୍ୟରେ ସ୍ଛ୍‌ୟ ଆଦି।

**ତ୍ରୟୋରାଶିକ ୱ- ପର ଯୋଗ** - (ନ+ତ)। (ନ+ଦ) । (ର+ସ)। (ର+ଧ)+ୱ, ଯଥା-ସାନ୍ତ୍ୱନାରେ ନ୍‌ତ୍‌ୱ ଇତ୍ୟାଦି।

**ଚତୁରାଶିକ ୟ ପର ଯୋଗ-** (ନ+ତ+ର)+ୟ, ଯଥା- ସ୍ୱାତନ୍ତ୍ର୍ୟରେ ନ୍‌ତ୍‌ର୍‌ୟ ଆଦି

**ସ୍ୱରବର୍ଣ୍ଣ କ୍ଷେତ୍ରରେ-**

**ଦ୍ୱୟରାଶିକ ଅ-ସ୍ୱର ଯୋଗ-**ଅ+ଇ । ଯଥା-ଖଇ ରେ ଅଇ।

**ଦ୍ୱୟରାଶିକ ଆ-ସ୍ୱର ଯୋଗ-** ଆ+ଅ । ଇ । ଉ । ଏ, ଯଥା- ଯାଅ ରେ ଆଅ।

**ଦ୍ୱୟରାଶିକ ଇ-ସ୍ୱର ଯୋଗ-** ଇ+ଅ । ଆ । ଉ । ଏ । ଓ, ଯଥା- ଘିଅ ରେ ଇଅ।

**ଦ୍ୱୟରାଶିକ ଉ-ସ୍ୱର ଯୋଗ-** ଉ + ଅ । ଆ । ଇ। ଏ, ଯଥା-ପୁଅ ରେ ଉଅ।

**ଦ୍ୱୟରାଶିକ ଏ-ସ୍ୱର ଯୋଗ-** ଏ+ଇ । ଉ, ଯଥା କକେଇ ରେ ଏଇ।

**ଦ୍ୱୟରାଶିକ ଓ-ସ୍ୱର ଯୋଗ-** ଓ+ଇ । ଉ, ଯଥା ପୋଇରେ ଓଇ।

**ଦୀର୍ଘସ୍ୱର-**ଅ,ଆ,ଇ,ଉ,ଏ ଓ।

ଲେଖନ ପଦ୍ଧତି କଥିତ ଭାଷା ଉପରେ ନିର୍ଭର କରି ପ୍ରତିଷ୍ଠିତ ହୋଇଥିବାରୁ ଏହା ଏକ ପରୋକ୍ଷ ପ୍ରଣାଳୀ ଏବଂ ଯେଉଁ ଲେଖନ ଶୈଳୀ ମୌଖିକ ଭାଷାର ତାତ୍ପର୍ଯ୍ୟଗୁଡ଼ିକୁ ପ୍ରକାଶ କରିବା ପାଇଁ ଅସମର୍ଥ ସେ ଲିପି ଉଦ୍ଦିଷ୍ଟ କାର୍ଯ୍ୟ ସାଧନ କରିବା ପାଇଁ ଅକ୍ଷମ। ମନୁଷ୍ୟର ଦେହ ବଢୁଥିବା ସଙ୍ଗେ ସଙ୍ଗେ ତା'କୁ ଯେପରି ନିଜ ପୋଷାକପତ୍ର ବଦଳାଇବାକୁ ପଡ଼େ, କଥିତ ଭାଷାର ଦେହ ମଧ୍ୟ ସେହିପରି ପରିବର୍ତ୍ତନଶୀଳ। ଏଣୁ ସମୟାନୁକ୍ରମେ ଲେଖନ ପଦ୍ଧତି ମଧ୍ୟ ସଂଶୋଧିତ ହେଉଥିବା ଉଚିତ। ଉପରେ ବର୍ଣ୍ଣଗୁଡ଼ିକ ଯୋଗ ହେବାର ଯେଉଁ ବିବରଣୀଗୁଡ଼ିକ ଦିଆଯାଇଛି, ତାହା ସମସାମୟିକ ବା ପ୍ରଚଳିତ କଥିତ ଓଡ଼ିଆ ଭାଷାର ଆକୃତି। ପ୍ରଚଳିତ ଲେଖନ ପଦ୍ଧତି ଏହି ଭାଷାକୁ ପରିସ୍ଫୁଟ କରିବାରେ କେତେଦୂର ଆସ୍ଥାଭାଜନ ବର୍ତ୍ତମାନ ପରୀକ୍ଷା କରି ଦେଖିବାର କଥା। ଓଡ଼ିଆର ଲେଖନ ପ୍ରଣାଳୀ ଆକ୍ଷରିକ (syllabic), ଏଣୁ ପ୍ରତିଟି ଅକ୍ଷର ମଧ୍ୟରେ କେତୋଟି ବର୍ଣ୍ଣ ସମାଗମ କରିପାରନ୍ତି, ସେତିକି ଲକ୍ଷ୍ୟକଲେ ଆବଶ୍ୟକୀୟ ସମସ୍ତ ବିବରଣୀ ସଂଗୃହୀତ ହୋଇପାରିବ। ପ୍ରଥମେ, ଓଡ଼ିଆ ଲେଖନ ପ୍ରଣାଳୀରେ ଚାରି ପ୍ରକାରର ଲିପି ଚଳେ- (୧) **ସରଳ ଅକ୍ଷର**, (୨)**କୁଟିଳ**

**ଅକ୍ଷର, (୩) ଯୁକ୍ତାକ୍ଷର (୪) ମାତ୍ରା ଓ ଫଳା ।**

**୧-ସରଳ ଅକ୍ଷର-** ବ୍ୟଞ୍ଜନ ବର୍ଣ୍ଣରେ ଥିବା 'ଅ'ଟିକୁ ବିରାମ ବୋଲି ଧରିଲେ ଏ ଅକ୍ଷର ଗୁଡ଼ିକରେ ଏକାଧିକ ବର୍ଣ୍ଣ ନଥାଏ ଓ ଏଗୁଡ଼ିକର କୌଣସି ଅଂଶ ପୃଥକ୍‌ଭାବେ ଲେଖାଯାଇ ପାରେ ନାହିଁ, ଯଥା-ଅ, ଇ, ଈ, ଉ, ଊ,ଋ, ଏ, ଓ, କ, ଖ, ଗ, ଘ, ଙ, ଚ, ଜ, ଝ, ଞ, ଟ, ଠ, ଡ, ଢ, ଣ, ତ, ଥ, ଦ, ଧ, ନ, ପ, ଫ, ବ, ଭ, ମ , ଯ, ର, ଳ, ଲ, ୟ,ଶ, ଷ, ସ, ହ ।

**୨- କୁଟିଳ ଅକ୍ଷର** - ବ୍ୟଞ୍ଜନ ବର୍ଣ୍ଣର 'ଅ' ଟିକୁ ବିରାମ ରୂପେ ଧରିଲେ ଏ ଅକ୍ଷରଗୁଡ଼ିକରେ ଏକାଧିକ ବର୍ଣ୍ଣ ଥାଏ ଓ ଏଗୁଡ଼ିକର କୌଣସି ଅଂଶ ପୃଥକ୍‌ଭାବେ ଲେଖାଯାଇ ପାରେ ନାହିଁ; ଯଥା- ଙ୍କ, ଙ୍ଖ, ଙ୍ଗ, ଙ୍ଘ, ଞ୍ଚ, ଞ୍ଜ, ନ୍ଦ, ନ୍ଧ, ମ୍ପ, ମ୍ଫ, ମ୍ବ, ମ୍ଭ, କ୍ଷ, ଷ୍ଠ, ଦ୍ଦ, ଦ୍ଭ, ଦ୍ଧ, ଦ୍ଧ, ଚ୍ଛ, ଟ୍ଟ, ତ୍ତ, ଣ୍ଡ, ଜ୍ଞ ।

**୩- ଯୁକ୍ତାକ୍ଷର-** ଏ ଅକ୍ଷରଗୁଡ଼ିକରେ ଏକାଧିକ ବର୍ଣ୍ଣ ଥାଏ ଓ ଏଗୁଡ଼ିକର ଅଂଶବିଶେଷ ଏକାଧିକ ଉପାୟରେ ପୃଥକ୍ ଭାବେ ଲେଖାଯାଇପାରେ । କ୍ଷ୍ଣ, ଗ୍ଣ, ସ୍କ, ଷ୍କ, ଷ୍ଟ, ଷ୍ପ, ସ୍ଥ, ଷ୍ପ, ସ୍ତ, ଷ୍ଟ, କ୍‌ସ, କ୍‌ଚ, କ୍‌ଟ, ଗ୍‌ଦ, ଗ୍‌ଧ, ତ୍‌କ୍ଷ, ତ୍‌ଥ, ତ୍‌ଫ, ଦ୍‌ଗ, ଦ୍‌ଘ, ଦ୍‌ବ, ତ୍‌ଗ, ବ୍‌ଝ, ତ୍‌ତ, ପ୍‌ପ, ମ୍ମ, ପ୍‌ସ ।

**୪-ମାତ୍ରା ଓ ଫଳା-** ହଳନ୍ତ, ଆକାର, ଇକାର, ଈକାର, ଉକାର, ଊକାର, ଋକାର, ଏକାର, ଐ ଓ ଔକାରର ଅର୍ଦ୍ଧମାତ୍ରା, ଅନୁସ୍ୱାର, ବିସର୍ଗ, ଚନ୍ଦ୍ରବିନ୍ଦୁ, କ ଫଳା, ଛ ଓ ଥ ଫଳା, ଜ ଫଳା ତ-ପର ଓ ଡ-ପର ଫଳା, ତ-ପୂର୍ବ, ଓ ତ-ପର ଫଳା, ନ ଫଳା, ମ ଫଳା, ଯ ଫଳା, ୱ ଫଳା, ରେଫ୍, ର ଫଳା, ଳ ଫଳା, ଲ ଫଳା, ତ୍ର ଫଳା ।

ଏହି ଲିପି ଗୁଡ଼ିକର ପ୍ରକୃତ ମୂଲ୍ୟ ଖୋଜି ବସିଲେ ଅତି ସହଜରେ ବୁଝିହେବ ଯେ ବହୁ ଲିପି ଅନାବଶ୍ୟକ ଭାବେ ବା ଉଦ୍ଦିଷ୍ଟ ଅର୍ଥଠାରୁ ଭିନ୍ନ ଅର୍ଥରେ ବ୍ୟବହୃତ ହେଉଛନ୍ତି । ଗୋଟିଏ ଅର୍ଥରେ ଦୁଇଟି ଲିପିର ବ୍ୟବହାର ଅଯଥାର୍ଥ । ଯେଉଁ ସ୍ଥଳରେ ଏହି ଅନାବଶ୍ୟକ ଲିପିଗୁଡ଼ିକ ବ୍ୟବହୃତ ହେଉଛି ସେମାନଙ୍କର ପ୍ରକୃତ ଉଚ୍ଚାରଣ ରୂପ ସହିତ ନିମ୍ନରେ ପ୍ରଦତ୍ତ ହେଲା-

ଙ-ପ୍ରତ୍ୟୟ ବର୍ଣ୍ଣ ବ୍ୟତୀତ ଏହାର ଉଚ୍ଚାରଣ ଙ୍ଗ ବା ଙ୍ଁ ।

ଞ- ପ୍ରତ୍ୟୟ ବର୍ଣ୍ଣ ବ୍ୟତୀତ ଏହାର ଉଚ୍ଚାରଣ ନ୍ୟ ।

ଯ- ଏହାର ନାମ ଜ୍ୟ ମାତ୍ର ଉଚ୍ଚାରଣରେ ଜ ଓ ଫଳା ଆକାରରେ ଯୋଗ ହେଲେ ୟ ।

ଶ,ଷ-ସର୍ବତ୍ର ସ ।

ଷ୍ଠ-ସର୍ବତ୍ର ସ୍ଥ।
ଜ୍ଞ- ପର ଅକ୍ଷର 'ନ' ଥିଲେ ଗ୍ୟ, ଯଥା- ଜ୍ଞାନ, ଅନ୍ୟତ୍ର ଗ୍ୟଁ, ଯଥା-ବିଜ୍ଞ।
କ୍ଷ-ଇ ବା ଅନ୍ୟ ବ୍ୟଞ୍ଜନ ବର୍ଣ୍ଣ ଯୋଗ ହେଲେ ଖ, ଅନ୍ୟତ୍ର ଖ୍ୟ।
ସ୍ନ- 'ନ' ଯୋଗ ହେଲେ ଛ, ଯଥା-ଜ୍ୟୋତ୍ସ୍ନା, ଅନ୍ୟତ୍ର ସ୍ବଚ୍ଛ।
ଦ୍ୱିତ୍ୱବର୍ଣ୍ଣ ବା ଅଳ୍ପପ୍ରାଣ-ମହାପ୍ରାଣ ଯୁକ୍ତବର୍ଣ୍ଣ ଯଦି ତ୍ରୟୋରାଶିକରେ ପରିଣତ ହୁଏ ପ୍ରଥମ ଯୋଗର ଦ୍ୱିରାଶିକତ୍ୱ ଲୋପ ପାଇ, ଏହା ଏକ ରାଶିବତ୍ ଉଚ୍ଚାରିତ ହୁଏ, ଯଥା- ଅର୍ଚ୍ଚନା (ଅର୍ଚନା), ବର୍ଚ୍ଛା (ବର୍ଛା), ପର୍ଣ୍ଣ (ପର୍ନ), କୀର୍ତ୍ତି (କିର୍ତି), ଗର୍ଦ୍ଦଭ (ଗର୍ଦଭ), ଅର୍ଦ୍ଧ (ଅର୍ଧ), ଧର୍ମ୍ମ (ଧର୍ମ) ଇତ୍ୟାଦି।

ଆଗରୁ ଓଡ଼ିଆରେ ଦୀର୍ଘ ସ୍ୱରବର୍ଣ୍ଣକୁ ସାର୍ଥକ ରୂପେ ଗ୍ରହଣ କରାଯାଇଛି। ମାତ୍ର ସ୍ୱରବର୍ଣ୍ଣର ଏହି ଦୀର୍ଘତ୍ୱ ଲେଖନ ପ୍ରଣାଳୀରେ ଚଳୁଥିବା ଦୀର୍ଘ ବା ହ୍ରସ୍ୱସ୍ୱର ସହିତ କୌଣସି ସମ୍ବନ୍ଧ ନାହିଁ। ଉଦାହରଣ ସ୍ୱରୂପ 'ପିଇଲା' ଓ 'ପିଲା' ଶବ୍ଦ ଦୁଇଟିକୁ ନେଇ ଦେଖିଲେ 'ଇ'ର ଦୀର୍ଘତ୍ୱ ଓ ହ୍ରସ୍ୱତ୍ୱ ବେଶ୍ ବୁଝାଯାଏ, କିନ୍ତୁ ପ୍ରଚଳିତ ବନାନରେ ପ୍ରଥମ ଶବ୍ଦରେ ଇ-ର ଦୀର୍ଘତ୍ୱ ଦୀର୍ଘ-ଇକାର ଦେଇ ଲେଖାହୁଏ ନାହିଁ। ଅଥଚ, ଗାଈ ଓ ଗାଇ (ଗାନ କରିବା) ପରି ଦୁଇଟି ଶବ୍ଦରେ 'ଇ'ର ଦୀର୍ଘତ୍ୱକୁ ସୂଚିତ କରାଯାଉଥିଲେ ମଧ୍ୟ ବାସ୍ତବରେ ସେମାନଙ୍କ ଭିତରେ କୌଣସି ଉଚ୍ଚାରଣ ଗତ ପାର୍ଥକ୍ୟ ନାହିଁ। ଏପରି ଲିପିଗୁଡ଼ିଏ କେବଳ ବନାନ ଦୃଷ୍ଟିରୁ ଆମର ଲେଖନ ପ୍ରଣାଳୀରେ ବ୍ୟବହୃତ ହେଉଛନ୍ତି। ଏହି କାରଣରୁ ସେଗୁଡ଼ିକୁ ଅନାବଶ୍ୟକ କହିବା ଯଥାର୍ଥ।
ଈ ଓ ଊ -ସର୍ବତ୍ର ଯଥା କ୍ରମେ ଇ ଓ ଉ।
ଋ-ସର୍ବତ୍ର ରୁ
ଅତଏବ, ଏହି ଧ୍ୱନିଗୁଡ଼ିକୁ ଲିଖିତ ଆକାରରେ ପ୍ରକାଶ କରିବାର ସହଜ ଉପାୟ ଥାଉ ଥାଉ ଅନାବଶ୍ୟକ ଅକ୍ଷରଗୁଡ଼ିକୁ ପ୍ରଶ୍ରୟ ଦେବାର କାରଣ ନାହିଁ। ବର୍ତ୍ତମାନର ପିଲାମାନେ ଓଡ଼ିଆ ବନାନ ଶିଖିବାରେ ଯେତେ ସମୟ ନଷ୍ଟ କରୁଛନ୍ତି, ତାହା ନ କରି ଖାଲି ସେମାନେ ଯାହା କହୁଛନ୍ତି ତାକୁ ଶୁଣି ଠିକ୍ ରୂପେ ପ୍ରକାଶ କରିପାରିଲେ ଶୁଦ୍ଧ ଲେଖା ହୁଅନ୍ତା। ଓଡ଼ିଆ ଉଚ୍ଚାରଣ ପଦ୍ଧତିକୁ ଅନୁସରଣ କରି ଅକ୍ଷରରେ ପ୍ରକାଶ କରିବା ପାଇଁ ଯେଉଁ ଲିପିଗୁଡ଼ିକର ପ୍ରୟୋଜନୀୟତା ପଡ଼ିବ ତାହା ତଳେ ପ୍ରଦତ୍ତ ହୋଇଛି, ଯଥା- ଅ, ଆ, ଇ, ଉ, ଏ, ଓ, କ, ଖ , ଗ , ଘ, ଚ, ଛ, ଜ , ଝ, ଟ, ଠ, ଡ, ଢ, ଣ, ତ, ଥ, ଦ, ଧ, ନ, ପ , ଫ, ବ, ଭ, ମ , ର, ଳ, ଲ, ସ, ଯ, ୱ, ହ, ଅନୁସ୍ୱାର, ଚନ୍ଦ୍ରବିନ୍ଦୁ, ରେଫ୍, ର ଫଳା, ରୁ ଫଳା, ନ ଫଳା, ମ ଫଳା, ଳ ଫଳା, ଲ ଫଳା, ଯ ଫଳା, ୱ ଫଳା, ହଳନ୍ତ, ଆକାର, ଇକାର, ଉକାର, ଏକାର, ଐକାର, ଓକାର, ଔକାର। ଏହି ଚିହ୍ନଗୁଡ଼ିକ ସାହାଯ୍ୟରେ

ଓଡ଼ିଆ ଭାଷାକୁ ପ୍ରକାଶ କରିବାବେଳେ ଅଳ୍ପ କେତୋଟି ବିଷୟ ପ୍ରତି ଲକ୍ଷ୍ୟ ରଖିବା ଉଚିତ।

**୧. ଅନୁସ୍ୱାରର ବ୍ୟବହାର-** ଓଡ଼ିଆରେ ଯେଉଁ କୋଡିଏଟି ସବର୍ଣ୍ଣ ଯୋଗ ଅଛି ସେଗୁଡ଼ିକୁ ପ୍ରକାଶ କରିବା ପାଇଁ ପୂର୍ବ ବର୍ଣ୍ଣରେ ଅନୁସ୍ୱାର ଯୋଗକରି ପରେ ଆନୁଷଙ୍ଗିକ କ ବର୍ଗ, ଚ ବର୍ଗ ଇତ୍ୟାଦି ଅକ୍ଷରଗୁଡ଼ିକୁ ଲେଖିଲେ ସବର୍ଣ୍ଣ ଯୋଗଗୁଡ଼ିକ ଯଥାଯଥ ଭାବେ ପ୍ରକାଶିତ ହୋଇପାରିବେ। ଏହି ପ୍ରଣାଳୀଟି ଅବଶ୍ୟ ଓଡ଼ିଆରେ ବେଶ୍ କିଛିଦିନ ହେଲା ଚଳୁଛି, ଯଥା:- ଅଙ୍କ ପରିବର୍ତ୍ତେ ଅଂକ, କଞ୍ଚା ପରିବର୍ତ୍ତେ କଂଚା, କଣ୍ଟା ପରିବର୍ତ୍ତେ କଂଟା ଇତ୍ୟାଦି।

**୨. ର ର ବ୍ୟବହାର-** ଯୁକ୍ତାକ୍ଷର ମଧ୍ୟରେ ର ଯଦି ଗୋଟିଏ ରାଶି ହୋଇଥାଏ ଏହି ବର୍ଣ୍ଣଟିକୁ ତିନୋଟି ଉପାୟରେ ଲେଖାଯାଇଥାଏ, ରେଫ୍, ର-ଫଳା ଓ ର କାର। ର ସହିତ ବ୍ୟଞ୍ଜନ ବର୍ଣ୍ଣ ଯୋଗ ହେଲେ ଅକ୍ଷରର ଉପରେ ର ରେଫ ହୋଇ ଆସେ, ଯଥା:- ଅର୍ଥ, ସର୍ପ, ବର୍ଷ ଇତ୍ୟାଦି। ଯଦି ବ୍ୟଞ୍ଜନବର୍ଣ୍ଣ ସହିତ ର ଯୋଗ ହୁଏ ଉକ୍ତ ଅକ୍ଷରର ତଳେ ର ର-ଫଳା ବା ର-କାର ହୋଇ ଆସେ, ଯଥା:- ବ୍ରତ, ପ୍ରାଣ, ମୃତ ଇତ୍ୟାଦି। ଚଳନ୍ତି ଓଡ଼ିଆରେ ସଂସ୍କୃତ ବନାନକୁ ଅନୁସରଣ କରି ର ଓ ର ଫଳା ଭିନ୍ନ ଭିନ୍ନ ଭାବେ ବ୍ୟବହୃତ ହେଉଛି। କିନ୍ତୁ ଓଡ଼ିଆରେ ର ଓ ର ଫଳା ଭିତରେ ର-ଗତ କୌଣସି ପାର୍ଥକ୍ୟ ନାହିଁ। କେବଳ ପ୍ରଥମଟି ଅ-ସ୍ୱରବର୍ଣ୍ଣ ଓ ଦ୍ୱିତୀୟଟି ଉ-ସ୍ୱରବର୍ଣ୍ଣ ଯୁକ୍ତ ହୋଇ ଉଚ୍ଚାରିତ ହୋଇଥାଆନ୍ତି। ତେଣୁ ର ଫଳାରେ ଉ-କାର ଯୋଗ=ର ଫଳା ବା ରୁ=ର। ଏହି ଦୃଷ୍ଟିରୁ ବୃଷ, କୃଷ ଇତ୍ୟାଦି ଶବ୍ଦକୁ ର ଫଳା ଦେଇ ଲେଖିବା ସଙ୍ଗେ ସଙ୍ଗେ ଦ୍ରୁତ, ଅକ୍ରୁର ପରି ଶବ୍ଦ ମଧ୍ୟ ର ଫଳା ଦ୍ୱାରା ଲେଖାଯାଇପାରେ। କାର୍ଯ୍ୟତଃ ଏହାର ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଅଛି। ଓଡ଼ିଆ ଅକ୍ଷରର ଚତୁପାର୍ଶ୍ୱରେ ମାତ୍ରା ଓ ଫଳା ଯୋଗ କରିବାର ଉପାୟମାନ ଚଳେ। ଆଡ଼ବାଗରେ ଏହି ମାତ୍ରାଟି ଯୋଗ କରିବାରେ କୌଣସି ଅସୁବିଧା ନାହିଁ।

**୩. ଫଳାର ବ୍ୟବହାର-** ନ, ମ, ଲ, ଳ, ଯ, ୱ ଫଳାଗୁଡ଼ିକ ଓଡ଼ିଆରେ ବର୍ତ୍ତମାନ ଯେପରି ବ୍ୟବହୃତ ହେଉଛନ୍ତି, ସେହିପରି ହେବେ।

**୪. ହଳନ୍ତର ବ୍ୟବହାର-** ଳ-ପୂର୍ବ, ଲ-ପୂର୍ବ, ଣ। ସ-ଯୋଗ, ଅନ୍ତର୍ବର୍ଗୀୟ ଯୋଗ ଓ ଦ୍ୱିତ୍ୱ ପାଇଁ ଅଳ୍ପ କେତୋଟି ପାରମ୍ପରିକ କୁଟିଳ ଅକ୍ଷରକୁ ଛାଡିଦେଲା ପରେ ସାଧାରଣତଃ ହଳନ୍ତ ସାହାଯ୍ୟରେ ଏ ପ୍ରକାରର ଯୁକ୍ତବର୍ଣ୍ଣଗୁଡ଼ିକ ଲେଖାଯାଇଥାଆନ୍ତି। ରୁଗ୍‌ଣ, ବାକ୍‌ସ ଇତ୍ୟାଦି ଶବ୍ଦ ବା ଉତ୍କଳ, ଉଚ୍ଚ ଇତ୍ୟାଦି ଶବ୍ଦଗୁଡ଼ିକୁ 'ଶବ୍‌ଦ, ଉତ୍‌କଳ, ଉଚ୍‌ଚ' ପରି ଲେଖିଲେ ବି ପଢ଼ିବାରେ ଆମର କୌଣସି ଅସୁବିଧା ହୁଏନାହିଁ, ଏବଂ ଏଇ ଦୁଇଟିଯାକ ଉପାୟ ଚଳନ୍ତି ଲେଖାରେ ସମାନ ଭାବେ ବଳବତ୍ତର ହୋଇ ରହିଛନ୍ତି। ତେଣୁ ସ୍ତ, ସ୍ତ,

ସ୍ଥ, କ୍ତ, ଭ, ଷ୍ଣ, ଉ, ଟ୍ଟ ଇତ୍ୟାଦି ପରି ଅଳ୍ପ କେତୋଟି କୁଟିଳ ଅକ୍ଷରଙ୍କୁ ବାଦ୍ ଦେଇ ସର୍ବତ୍ର ହଳନ୍ତ ବ୍ୟବହାର କଲେ ଲେଖାର ସରଳତା ଓ ସହଜତା ବୃଦ୍ଧି ପାଆନ୍ତା।

**୫. ତ୍ରୟୋରାଶିକ ବା ତତୋଽଧିକ ଯୋଗର ବ୍ୟବହାର-** ଏ ପ୍ରକାର ଯୋଗର ସଂଖ୍ୟା ଓଡ଼ିଆରେ ଅଳ୍ପ। ର,ୟ,ୱ ବ୍ୟତୀତ ଅନ୍ୟ କୌଣସି ବ୍ୟଞ୍ଜନବର୍ଣ୍ଣ ଦ୍ୱିରାଶି ବିଶିଷ୍ଟ ଯୁକ୍ତବର୍ଣ୍ଣ ଉପରେ ଆରୋପିତ ହୁଅନ୍ତି ନାହିଁ। ଏହାଛଡ଼ା ପ୍ରକୃତ ଓଡ଼ିଆ ଉଚ୍ଚାରଣକୁ ନେଇ ପରୀକ୍ଷା କଲେ ଦେଖାଯାଏ ଯେ ଲେଖାର ତ୍ରୟୋରାଶିକ ଯୁକ୍ତାକ୍ଷର ଏକପ୍ରକାର କୃତ୍ରିମ, କାରଣ ସ୍ୱଭାବତଃ ଏ ପ୍ରକାର ଯୋଗକୁ ଭାଙ୍ଗି ଆମେ ଦୁଇଟି ଅକ୍ଷର (syllable) ରେ ପରିଣତ କରିଥାଉ, ଯଥା-ମତ୍ସ୍ୟ, ଉଚ୍ଚାରଣରେ ହୁଏ ମସ୍-ଛ୍ୟ, ସ୍ୱାସ୍ଥ୍ୟ ହୁଏ ସ୍ୱାସ୍-ଥ୍ୟ, ଆର୍ଦ୍ର ହୁଏ ଆର୍-ଦ୍ର ଇତ୍ୟାଦି। ତା'ପରେ ଦତ୍ତ ସୂତ୍ର ଅନୁସାରେ "ଦ୍ୱିତ୍ୱବର୍ଣ୍ଣ ବା ଅଳ୍ପପ୍ରାଣ-ମହାପ୍ରାଣ ଯୁକ୍ତବର୍ଣ୍ଣ ଯଦି ତ୍ରୟୋରାଶିକରେ ପରିଣତ ହୁଏ ପ୍ରଥମ ଯୋଗର ଦ୍ୱୟରାଶିକତ୍ୱ ଲୋପ ପାଇ ଏକ ରାଶିବତ୍ ଉଚ୍ଚାରିତ ହୁଏ।" 'ଉର୍ଦ୍ଧ୍ୱ' ହୁଏ 'ଉର୍ଧ୍ୱ' ବା ଉର୍-ଧ୍ୱ। ତ୍ରୟୋରାଶିକ ଅକ୍ଷରର ପ୍ରଥମ ରାଶିଟି ସବୁବେଳେ ପୂର୍ବ ଅକ୍ଷର ବା ସିଲାବଲ୍‌ର ଅଧୀନ। ତା'ଛଡ଼ା ଶବ୍ଦ ଆରମ୍ଭରେ ଓଡ଼ିଆରେ ତ୍ରୟୋରାଶିକ ଯୋଗ ଆସେ ନାହିଁ। ଅତଏବ, ର-ମୂଳକ ନ ହୋଇଥିଲେ ଅକ୍ଷରଗୁଡ଼ିକୁ ଭାଙ୍ଗି ପ୍ରଥମ ରାଶିଟିକୁ ହଳନ୍ତ ସାହାଯ୍ୟରେ ପ୍ରକାଶ କଲେ ସତ୍ୟର କୌଣସି ଅପଳାପ ହେବ ନାହିଁ ଓ ପ୍ରୟୋଜନ ଠାରୁ ଅଧିକ ଚିହ୍ନ ବ୍ୟବହାର କରିବାକୁ ପଡିବ ନାହିଁ।

**୬. ସ୍ୱରବର୍ଣ୍ଣର ବ୍ୟବହାର-** ସ୍ୱରବର୍ଣ୍ଣଗୁଡ଼ିକୁ ସେମାନଙ୍କ ପ୍ରକୃତ ଉଚ୍ଚାରଣ ଅନୁସାରେ ବ୍ୟବହାର କରିବା ବ୍ୟତୀତ ଆଉ ଅଧିକା କିଛି କହିବାର ନାହିଁ। ତେବେ ଇକାର ଚିହ୍ନଟି ପରିବର୍ତ୍ତେ ଈକାର ଚିହ୍ନଟି ସମସ୍ତ ଇ-ମୂଳକ ମାତ୍ରାରୂପେ ବ୍ୟବହୃତ ହେବା ଯୁକ୍ତିସମ୍ମତ, କାରଣ ଏହା ଦ୍ୱାରା ଅକ୍ଷରର ଉପରିଭାଗରୁ ଭାର ଲାଘବ କରି ମାତ୍ରାଟିକୁ ପାର୍ଶ୍ୱସ୍ଥ କରିହେବ। ସ୍ୱରଯୋଗ ଉପରେ ଯେଉଁ ପ୍ରଣାଳୀ ଆମେ ଅନୁସରଣ କରୁଛେ ତହିଁରେ କୌଣସି ତ୍ରୁଟି ନାହିଁ। କିନ୍ତୁ ଓଡ଼ିଆର ଦୀର୍ଘସ୍ୱରଗୁଡ଼ିକ କ୍ରମଶଃ ଲେଖାରେ ପ୍ରକାଶ ପାଇବା ଉଚିତ, ଯେପରି ତାଆର, ମାଆର, ମୋଅଟା, ତୋଅଟା ଇତ୍ୟାଦି ତୋ'ର, ମୋ'ର ମା'ର, ତା'ର ଇତ୍ୟାଦି ହୋଇ ଲେଖା ହେଲେ ଦୀର୍ଘ ଉଚ୍ଚାରଣର ସଙ୍କେତ ଉପଯୁକ୍ତ ଭାବେ ରହନ୍ତା।

---

[ବିଶେଷ ସୂଚନା : ସଂକଳନ ଅନ୍ତର୍ଗତ ପ୍ରବନ୍ଧ "ଓଡ଼ିଆ ବନାନ ପରମ୍ପରା" ଡ.ବିଜୟ ପ୍ରସାଦ ମହାପାତ୍ରଙ୍କର ଲିଖିତ ମୂଳ ପ୍ରବନ୍ଧ 'ଓଡ଼ିଆ ଟାଇପ୍-ରାଇଟରେ'ର ଉଦ୍ଧୃତାଂଶ। ସଂକଳନର ଆବଶ୍ୟକତା ଅନୁଯାୟୀ ମୂଳ ପ୍ରବନ୍ଧର ଉଦ୍ଧୃତାଂଶକୁ 'ଓଡ଼ିଆ ବନାନ ପରମ୍ପରା' ନାମକରଣ କରାଯାଇଛି। କାଳକ୍ରମେ ଟାଇପ୍ ରାଇଟର ଅପ୍ରଚଳିତ ହୋଇପଡ଼ିବା କାରଣରୁ ଟାଇପ୍ ରାଇଟର ସମ୍ବନ୍ଧୀୟ ବର୍ଣ୍ଣନା ଅଂଶଟି ପ୍ରବନ୍ଧରୁ ବାଦ୍ ଦିଆଯାଇଛି। ମୂଳ ପ୍ରବନ୍ଧର ଏପରି ଅନିବାର୍ଯ୍ୟ ସଂକ୍ଷିପ୍ତିକରଣ ନିମନ୍ତେ ସଂକଳିକା କ୍ଷମା ପ୍ରାର୍ଥୀ।]



# ଓଡ଼ିଆ ଲିପି ଓ ବନାନ ରୀତି

## ଖଗେଶ୍ୱର ମହାପାତ୍ର

ସମ୍ପ୍ରତି ପ୍ରଚଳିତ ଓଡ଼ିଆ ଲିପି ଓ ବନାନ ରୀତିରେ କେତେକ ସମସ୍ୟା ପରିଲକ୍ଷିତ ହୁଏ। ଚଳିତ ଶତକର ପ୍ରାରମ୍ଭରୁ ଆମଦେଶର କେତେକ ଚିନ୍ତାଶୀଳ ବ୍ୟକ୍ତି ଏହି ସମସ୍ୟାଗୁଡ଼ିକର ଉପସ୍ଥାପନ କରି ତାହାର ସମାଧାନ ଦିଗରେ ନାନା ପ୍ରସ୍ତାବ ପ୍ରଦାନ କରି ଆସୁଛନ୍ତି। କେହି ଟାଇପ୍‌ରାଇଟର ନିର୍ମାଣ ଉପଲକ୍ଷ୍ୟରେ, କେହି ଲେଖାକୁ ଉଚ୍ଚାରଣାନୁସାରେ କରିବା ଉଦ୍ଦେଶ୍ୟରେ, କେହି ବା ଲିଖନ ରୀତିକୁ ସରଳତର କରିବା କୌତୂହଳରେ ଆମ ଲିପିରେ ସଂସ୍କାର କରିବାକୁ ପ୍ରୟାସ କରିଛନ୍ତି। ଏଥିପାଇଁ ମଧ୍ୟ ୧୯୩୯ ବେଳକୁ ଏକ ସରକାରୀ କମିଟି ଗଠିତ ହୋଇଥିବାର ଜଣାଯାଏ। କିନ୍ତୁ ଏହି ସମସ୍ତ ସଂସ୍କାର ପ୍ରସ୍ତାବ କେବଳ ବ୍ୟକ୍ତିଗତ ବା ଗୋଷ୍ଠୀଗତ ଭାବରେ ଅନୁସୃତ ହେଉଛି ସିନା, ସାର୍ବଜନୀନ ଭାବରେ ପରିଗୃହୀତ ହୋଇପାରୁ ନାହିଁ। ତେଣୁ ବର୍ତ୍ତମାନ ଯେ କୌଣସି ଓଡ଼ିଆ ଛାପାବହି ଦେଖିଲେ ଓଡ଼ିଆ ଲିପି ଓ ବନାନ ରୀତିର ଏକ ସାଧାରଣ ରୂପ ମିଳୁନାହିଁ। ଏକ ଏକ ନିର୍ଦ୍ଦିଷ୍ଟ ସଂଯୁକ୍ତ ଧ୍ୱନି ବହୁବିଧ ରୂପରେ ଲିପିବଦ୍ଧ ହୋଇ ରୀତିମତ ବିଶୃଙ୍ଖଳା ସୃଷ୍ଟି କରୁଛି। ଅଳ୍ପଦିନ ମଧ୍ୟରେ ଓଡ଼ିଆ ସରକାରୀ ଭାଷା ରୂପେ ସବୁକ୍ଷେତ୍ରରେ ଚଳିବ। ଅପରାପର ଭାଷାଭାଷୀ ସରକାରୀ ଓ ବେସରକାରୀ ବହୁ ବ୍ୟକ୍ତିଙ୍କୁ ଏହି ଭାଷା ଶିକ୍ଷା କରିବାକୁ ପଡ଼ିବ। ଏହି ଅବସ୍ଥାରେ ଆମ ଭାଷା ଓ ଲିଖନ ରୀତିରେ ସମସ୍ତ ବିଶୃଙ୍ଖଳା ଦୂରୀଭୂତ ନକଲେ ସରକାରୀ ଭାଷା ରୂପେ ଓଡ଼ିଆ ଭାଷାର ଅଯୋଗ୍ୟତା ପ୍ରମାଣ କରିବାକୁ ଏ ଦେଶରେ ଲୋକଙ୍କର ଅଭାବ ଘଟିବ ନାହିଁ।

ମୌଖିକ ଧ୍ୱନିର ରୈଖିକ ରୂପ - ଲିପି। ଲିପି ଧ୍ୱନିକୁ ସ୍ଥାୟିତ୍ୱ ପ୍ରଦାନ କରେ ଏବଂ ଅବ୍ୟକ୍ତ ଚିନ୍ତାଧାରାକୁ ପ୍ରକାଶିତ କରେ। ପ୍ରତ୍ୟେକ ଲିପିର ସୃଷ୍ଟି ମୂଳରେ ତିନୋଟି ଉଦ୍ଦେଶ୍ୟ କାର୍ଯ୍ୟ କରେ- ଧ୍ୱନିର ଯଥାର୍ଥ ରୂପାୟନ, ଦ୍ରୁତ ଲିଖନ ଓ ମିତ ସଂସ୍ଥାନ। ଅବଶ୍ୟ କେତେକ କ୍ଷେତ୍ରରେ ଲିଖନର ଉପକରଣ ଅନ୍ୟତମ କାରଣ ରୂପେ ଗ୍ରହଣୀୟ। ଏହି ଉଦ୍ଦେଶ୍ୟଗୁଡ଼ିକ ମଧ୍ୟ ସମୟାନୁକ୍ରମେ ଯେ କୌଣସି ଲିପିର ସଂସ୍କାର ମୂଳରେ ନିହିତ ଥାଏ। ପ୍ରାଚୀନ

ଅଭିଲେଖ, ପୋଥିପତ୍ର ଓ ବିଗତ ଶତକର ହାତଲେଖା କାଗଜପତ୍ର ଅନୁଶୀଳନ କଲେ ଓଡ଼ିଆଲିପି ଯେ ଅବସ୍ଥାନୁକ୍ରମେ ପରିବର୍ତ୍ତିତ ହୋଇ ଆସିଛି ତାହା ଉପଲବ୍ଧ ହୁଏ। ଛାପାଖାନା ପ୍ରତିଷ୍ଠା ହେବା ପରେ ଆମର ଲିପି ଏକ ସ୍ଥାୟୀ ଓ ସାର୍ବଜନୀନ ରୂପ ପରିଗ୍ରହ କରିଥିଲା ଏବଂ ତାହାହିଁ ବର୍ତ୍ତମାନର ଆଦର୍ଶ ଲିପି। ମାତ୍ର ଏବେ ଏହି ଲିପିରେ କେତେକ ଦୋଷ ଅନୁଭୂତ ହେଉଛି ଏବଂ ତାହାର ସଂସ୍କାର ନିମନ୍ତେ ବିଭିନ୍ନ ପ୍ରସ୍ତାବ ଉପସ୍ଥାପିତ କରାଯାଉଛି। ଏହି ପ୍ରବନ୍ଧରେ (କ) ଲିପିର ବର୍ତ୍ତମାନ ଅବସ୍ଥାର ବର୍ଣ୍ଣନ ଓ (ଖ) ଅପରାପର ଆନୀତ ସଂସ୍କାର ପ୍ରସ୍ତାବ ଗୁଡ଼ିକର ଅନୁବୃତ୍ତି ଓ ଆଲୋଚନା କରିବା ସଙ୍ଗେ ସଙ୍ଗେ (ଗ) କେତୋଟି ନୂତନ ପ୍ରସ୍ତାବ ଉପସ୍ଥାପନା କରାଯାଇଛି।

**ଅକ୍ଷର ଓ ମାତ୍ରା :**

| | ଅକ୍ଷର | ମାତ୍ରା[୧] | ଦୃଷ୍ଟାନ୍ତ | ମନ୍ତବ୍ୟ |
|---|---|---|---|---|
| ୧ | ଅ | / / | କ | ପ୍ରତ୍ୟେକ ବ୍ୟଞ୍ଜନ ସ୍ୱଭାବତଃ ଅକାରାନ୍ତ; ସୁତରାଂ /ଅ/ ସୂଚକ ମାତ୍ରା ନାହିଁ। |
| ୨ | ଆ | /ା/ | କା | କେତେକ ନିର୍ଦ୍ଦିଷ୍ଟ ବର୍ଣ୍ଣରେ /ଆ/ ମାତ୍ରା ଯୋଗରେ ସ୍ୱତନ୍ତ୍ର ଲିପି ସୃଷ୍ଟି ହୁଏ /ଘା, ଙ୍କା, ଗ୍ୱା, ଲ୍ମା/ |
| ୩ | ଇ | /ି/ | କି | ବାଡ଼ିନଥିବା ମୁଣ୍ଡଳିଯୁକ୍ତ ବର୍ଣ୍ଣମାନଙ୍କରେ ଏହା ଏକ ପୁଡ଼ା ଭାବେ ସଂଯୁକ୍ତ ହୁଏ /ଝି, ଲି, ଓି/ |
| | | /ି/ | ଥି | କେବଳ ତିନୋଟି ବର୍ଣ୍ଣରେ ଏହା ସଂଯୁକ୍ତ ହୁଏ ଖି /ଥି / ଧି/ |
| ୪ | ଈ | /ୀ/ | କୀ | |
| ୫ | ଉ | /ୁ/ | କୁ, କୁ | |
| ୬ | ଊ | /ୂ/ | କୂ | |

[୧]ମାତ୍ରା : ଓଡ଼ିଆ ମାତ୍ରାଗୁଡ଼ିକ ଦୁଇଟି ସ୍ୱତନ୍ତ୍ର ନାମରେ ପରିଚିତ। ଯଥା- ସ୍ୱରବର୍ଣ୍ଣ ଜାତ ମାତ୍ରା- 'କାର', ବ୍ୟଞ୍ଜନବର୍ଣ୍ଣ ଜାତ ମାତ୍ରା- 'ଫଳା'। ଏହାଛଡ଼ା ଆଉ କେତେକ ମାତ୍ରାର ସ୍ୱତନ୍ତ୍ର ନାମ ଅଛି। ଯଥା-ରେଫ୍, ହଳନ୍ତ, ଅନୁସ୍ୱାର ଇତ୍ୟାଦି।

ଓଡ଼ିଆ ମାତ୍ରା ସଂଯୋଗ କରିବା ପଦ୍ଧତି : (୧) ପୂର୍ବନ୍ୟାସ - କେ (୨) ପରନ୍ୟାସ -କା (୩) ନିମ୍ନ ନ୍ୟାସ - କୁ (୪) ଉର୍ଦ୍ଧନ୍ୟାସ-ର୍କ (୫) ପୂର୍ବାପରନ୍ୟାସ - କୋ।

| | | | | |
|---|---|---|---|---|
| ୭ | ଋ | / ୃ / | କୃ | ତତ୍ସମ ଓ ତଦ୍ଭବ ଶବ୍ଦରେ ଏହି ମାତ୍ରା ବ୍ୟବହୃତ ହେଲେ ହେଁ ବସ୍ତୁତଃ /କୃ/ ଓ /କ୍ରୁ/ ମଧ୍ୟରେ ଉଚ୍ଚାରଣଗତ ବିଭେଦ ନାହିଁ। |
| ୮ | ଏ | / େ / | କେ | |
| ୯ | ଐ | / ୈ / | କୈ | |
| ୧୦ | ଓ | /ୋ/ | କୋ | |
| ୧୧ | ଔ | /ୌ/ | କୌ | |
| ୧୨ | କ | / ୍କ / | କ୍କ, ଙ୍କ | |
| ୧୩ | ଖ | / / | ଙ୍ଖ | |
| ୧୪ | ଗ | / / | ଙ୍ଗ | |
| ୧୫ | ଘ | / / | ଙ୍ଘ | |
| ୧୬ | ଙ | [ ଂ ] | | ବର୍ଣ୍ଣର ଏକକ ପ୍ରୟୋଗ ଦେଖାଯାଏନା (ଦୃ-ଅବାଙ୍ ମାନସଗୋଚର)। ମାତ୍ରା ଭାବେ ସ୍ୱବର୍ଗୀୟ ବର୍ଣ୍ଣମାନଙ୍କ ସହ ସଂଯୁକ୍ତ ହୁଏ ଏବଂ ଏହି ସ୍ୱତନ୍ତ୍ର ଲିପି ଚତୁଷ୍ଟୟ ସୃଷ୍ଟି ହୁଏ /ଙ୍କ, ଙ୍ଖ, ଙ୍ଗ, ଙ୍ଘ/ |
| ୧୭ | ଚ | / / | ଞ୍ଚ | ବର୍ଣ୍ଣର ଦ୍ୱିତ୍ୱ ହେଲେ ସ୍ୱତନ୍ତ୍ର ଲିପି ହୁଏ /ଚ୍ଚ/ |
| ୧୮ | ଛ | [ ୍ଛ ] | ଞ୍ଛ, ଚ୍ଛ | ବର୍ଣ୍ଣର ଦ୍ୱିତ୍ୱ ହେଲେ ସ୍ୱତନ୍ତ୍ର ଲିପି ହୁଏ /ଛ୍ଛ/ |
| ୧୯ | ଜ | / ୍ଜ / | ଜ୍ଜ, ଞ୍ଜ | |
| ୨୦ | ଝ | / / | ଞ୍ଝ | |
| ୨୧ | ଞ | / ୍ଞ / | ଞ | ବର୍ଣ୍ଣର ଏକକ ପ୍ରୟୋଗ ନାହିଁ କହିଲେ ଚଳେ। (ଦୃ- ଯାଚଞା) ମାତ୍ରା ଭାବେ ସ୍ୱବର୍ଗୀୟ ବର୍ଣ୍ଣମାନଙ୍କରେ ଯୁକ୍ତ ହୁଏ ଏବଂ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଲିପି ଚତୁଷ୍ଟୟ ସୃଷ୍ଟି କରେ- /ଞ୍ଚ, ଞ୍ଛ, ଞ୍ଜ, ଞ୍ଝ, ଏହା ବ୍ୟତୀତ ଜ+ଞ ଯୁକ୍ତ ହେଲେ ଆଉ ଏକ ସ୍ୱତନ୍ତ୍ର ଲିପି ହୁଏ- /ଜ୍ଞ/ ଯାହା ବସ୍ତୁତଃ ଉଚ୍ଚାରଣରେ /ଗ୍ୟଁ/ |
| ୨୨ | ଟ | / / | ଣ୍ଟ | ଦ୍ୱିତ୍ୱ ହେଲେ ସ୍ୱତନ୍ତ୍ର ଲିପି ହୁଏ /ଟ୍ଟ/ |

| | | | | |
|---|---|---|---|---|
| ୨୩ | ଠ | / / | ଣ୍ଠ | |
| ୨୪ | ଡ | [ ୍ଡ ] | ଣ୍ଡ | କେବଳ /ଣ/ ସହିତ ସଂଯୁକ୍ତ ହେଲେ ଏହି ମାତ୍ରା ଲାଗେ। |
| ୨୫ | ଡ଼ | / / | | ଆଦୌ ସଂଯୁକ୍ତ ହୁଏ ନାହିଁ। ପଦାଦ୍ୟରେ ରହେ ନାହିଁ। |
| ୨୬ | ଢ | [ ୍ଢ ] | ଣ୍ଢ | କେବଳ /ଣ/ ସହିତ ସଂଯୋଗ ହେଲେ ଏହି ମାତ୍ରା ଲାଗେ। |
| ୨୭ | ଢ଼ | / / | | ଆଦୌ ସଂଯୁକ୍ତ ହୁଏ ନାହିଁ। ପଦାଦ୍ୟରେ ରହେ ନାହିଁ। |
| ୨୮ | ଣ | [ ୍ଣ ] | ଷ୍ଣ, ଣ୍ଣ | ଅନ୍ୟତ୍ର ମାତ୍ରା ନ ହୋଇ ମୂଳବର୍ଣ୍ଣ ଯୋଗ ହୁଏ /ଣ୍ଟ/ ପଦାଦ୍ୟରେ ରହେ ନାହିଁ। |
| ୨୯ | ତ | / ୍ତ / | କ୍ତ, ପ୍ତ | ସଂଯୁକ୍ତ ବର୍ଣ୍ଣର ପ୍ରଥମ ବର୍ଣ୍ଣ ହେଲେ ଏହି ମାତ୍ରା ଲାଗେ। ଏଠାରେ ନିମ୍ନନ୍ୟାସ ସୂତ୍ର ବିରୁଦ୍ଧ (ସୂତ୍ର : ୨ୟ ବର୍ଣ୍ଣ ୧ମ ବର୍ଣ୍ଣର ନିମ୍ନ ସ୍ଥିତ ହୁଏ) |
| | | / ୍ତ / | କ୍ତ | ସଂଯୁକ୍ତ ବର୍ଣ୍ଣର ଉତ୍ତର ବର୍ଣ୍ଣ ହେଲେ ଏହି ମାତ୍ରା ଲାଗେ। ଦ୍ୱିତ୍ୱ ହେଲେ ସ୍ୱତନ୍ତ୍ର ଲିପି ହୁଏ /ତ୍ତ/ |
| ୩୦ | ଥ | / ୍ଥ / | ନ୍ଥ ସ୍ଥ | କେବଳ /ନ, ସ/ ସହିତ ଯୁକ୍ତ ହେଲେ ଏହି ମାତ୍ରା ଲାଗେ। |
| ୩୧ | ଦ | / ୍ଦ / | ଵ୍ଦ ଦ୍ଦ | ମାତ୍ରା ସ୍ୱାତନ୍ତ୍ର୍ୟ ହରାଇ ଅନ୍ୟବର୍ଣ୍ଣର ଶରୀରଭୂତ ହୁଏ। କେତେକ ସ୍ୱତନ୍ତ୍ର ଲିପି ଏହିପରି ସୃଷ୍ଟି ହୁଏ। ଦ୍ୱିତ୍ୱ ହେଲେ /ଦ୍ଦ/, ବ+ଦ /ବ୍ଦ/, ଦ+ଭ /ଦ୍ଭ/, ନ+ଦ /ନ୍ଦ/ |
| ୩୨ | ଧ | / ୍ଧ / | ଦ୍ଧ,ନ୍ଧ,ବ୍ଧ | ଅନ୍ୟତ୍ର ମୂଳ ଅକ୍ଷର ଲାଗେ। |
| ୩୩ | ନ | / ୍ନ / | ଦ୍ନ | ଦ ଧ ସହିତ ଯୁକ୍ତ ହେଲେ ସ୍ୱତନ୍ତ୍ର ରୂପ ଲାଭ କରେ। /ନ୍ଦ, ନ୍ଧ/; ପ୍ରଥମ ବର୍ଣ୍ଣ ରୂପେ /ହ/ ସହିତ ସଂଯୁକ୍ତ ହେଲେ ବି ନିମ୍ନରେ ସ୍ଥାନ ପାଏ- /ହ୍ନ/ |
| ୩୪ | ପ | / ୍ପ / | ମ୍ପ,ଷ୍ପ | କେବଳ /ମ/ ସହିତ ଯୁକ୍ତ ହେଲେ ଏହି ମାତ୍ରା ଲାଗି ସ୍ୱତନ୍ତ୍ର ଲିପି /ମ୍ପ/ ସୃଷ୍ଟି ହୁଏ। |
| ୩୫ | ଫ | / ୍ଫ / | ମ୍ଫ | କେବଳ /ମ/ ସହିତ ଯୁକ୍ତ ହେଲେ ଏହି ମାତ୍ରା ଲାଗି ସ୍ୱତନ୍ତ୍ର ଲିପି /ମ୍ଫ/ ସୃଷ୍ଟି ହୁଏ। |

| | | | | |
|---|---|---|---|---|
| ୩୬ | ବ | / ୍ୱ / | ମ୍ବ, କ୍ୱ | ଏହି ମାତ୍ରା ଉଭୟ ବର୍ଗ୍ୟ ଓ ଅବର୍ଗ୍ୟ /ବ/ର ପ୍ରତିନିଧିତ୍ୱ କରେ- /ମ୍ବ/ରେ ବର୍ଗ୍ୟ କିନ୍ତୁ /କ୍ୱ /ରେ ଅବର୍ଗ୍ୟ। |
| ୩୭ | ଭ | / ୍ଭ / | ମ୍ଭ | ଅନ୍ୟତ୍ର /ଭ/ର ସଂଯୋଗ ଦେଖାଯାଏ ନାହିଁ। |
| ୩୮ | ମ | / ୍ମ / | ଦ୍ମ | ପ୍ରଥମ ବର୍ଣ୍ଣ ରୂପେ ସଂଯୁକ୍ତ ହେଲେ ବି /ହ୍ମ/ରେ ନିମ୍ନ ସ୍ଥିତ ହୁଏ। |
| ୩୯ | ଯ | / / | | ଉଚ୍ଚାରଣରେ କୌଣସି ସ୍ୱାତନ୍ତ୍ର୍ୟ ନାହିଁ। |
| ୪୦ | ୟ | / ୍ୟ / | କ୍ୟ | ପାର୍ଶ୍ୱନ୍ୟାସ ହେବା ଏହି ମାତ୍ରାର ବୈଶିଷ୍ଟ୍ୟ। /ଧ/ ସହିତ ସଂଯୁକ୍ତ ହେଲେ ଏକ ସ୍ୱତନ୍ତ୍ର ଲିପି ହୁଏ /ଧ୍ୟ/ । |
| ୪୧ | ର | / ୍ର / | କ୍ର | ସଂଯୁକ୍ତ ବର୍ଣ୍ଣର ଉତ୍ତର ବର୍ଣ୍ଣ ହେଲେ ଏହି ମାତ୍ରା ଲାଗେ। ଏହା ନିମ୍ନନ୍ୟାସ ହୁଏ। |
| | | / ର୍ / | ର୍କ | ସଂଯୁକ୍ତ ବର୍ଣ୍ଣର ପ୍ରଥମ ବର୍ଣ୍ଣ ହେଲେ ଏହି ମାତ୍ରା ଲାଗେ। ଉର୍ଦ୍ଧ୍ୱନ୍ୟାସ ହେବା ଏହାର ବୈଶିଷ୍ଟ୍ୟ। /କ,ତ/ ସହିତ ସଂଯୁକ୍ତ ହେଲେ ଦୁଇଟି ସ୍ୱତନ୍ତ୍ର ଲିପି ହୁଏ /କ୍ର/, /ତ୍ର/ |
| | | / ୍ତ୍ର / | ନ୍ତ୍ର | /ତ୍ର/ ଯେବେ /ନ/ ସହିତ ସଂଯୁକ୍ତ ହୁଏ ଏହି ମାତ୍ରା ଲାଗେ। 'ତ' ଫଳା ଓ 'ର'ଫଳାର ସଂଯୋଗ ଜନିତ ଏହା ଏକ ବିଶେଷ ମାତ୍ରା। |
| ୪୨ | ଳ | / ୍ଳ / | କ୍ଳ | ପଦାଦ୍ୟରେ ରହେ ନାହିଁ। |
| ୪୩ | ଲ | / ୍ଲ / | କ୍ଲ,ଲ୍ଲ | ପ୍ରଥମ ବର୍ଣ୍ଣ ହେଲେ ବି /ହ୍ଲ/ରେ ନିମ୍ନସ୍ଥିତ ହୋଇଥାଏ। |
| ୪୪ | ଶ | / / | | ସଂଯୋଗ ଦୁର୍ଲ୍ଲଭ୍ୟ। |
| ୪୫ | ଷ | / / | | /କ/ ସହିତ ସଂଯୁକ୍ତ ହେଲେ ଏକ ସ୍ୱତନ୍ତ୍ର ଲିପି ହୁଏ /କ୍ଷ। ଉଚ୍ଚାରଣରେ କିନ୍ତୁ ଏହା /ଖ୍ୟ/ |
| ୪୬ | ସ | / ୍ସ / | କ୍ସ | |
| ୪୭ | ହ | / ୍ହ / | ମ୍ହ | /ଣ,ନ,ମ,ଲ/ ସହିତ ସଂଯୁକ୍ତ ହେଲେ ଏହା ୨ୟ ବର୍ଣ୍ଣ ହେଲେ ବି ପ୍ରଥମ ସ୍ଥାନ ଗ୍ରହଣ କରେ /ହ୍ଣ, ହ୍ନ, ହ୍ମ, ହ୍ଲ |

କେତୋଟି ସ୍ୱତନ୍ତ୍ର ମାତ୍ରା :

/ଂ/ ଅନୁସ୍ୱାର କଂ - ପଦ ମଧ୍ୟରେ ଅବର୍ଗୀୟ ବ୍ୟଞ୍ଜନ ବର୍ଣ୍ଣର

ପୂର୍ବ ସ୍ଥିତ ଅନୁନାସିକ ବ୍ୟଞ୍ଜନ ଧ୍ୱନିର ପ୍ରତୀକ ଏବଂ ପଦାନ୍ତରେ /ଙ,ମ/ର ପ୍ରତୀକ। ଧ୍ୱନି ମୂଲ୍ୟ ବିଚାରରେ ଏହା /ଙ/ର ମାତ୍ରା ରୂପେ ଗ୍ରହଣୀୟ।

/ ँ/ ଚନ୍ଦ୍ରବିନ୍ଦୁ କଁ -ସ୍ୱର ଧ୍ୱନିର ଅନୁନାସିକତାର ସୂଚକ। ଧ୍ୱନି ମୂଲ୍ୟ ବିଚାରରେ ଏହା /ଞ/ର ମାତ୍ରା ରୂପେ ଗ୍ରହଣୀୟ।

/ ଃ / ବିସର୍ଗ କଃ -ଶ୍ୱାସାଘାତପୂର୍ବକ ସ୍ୱରର ଦୀର୍ଘତା ବିଚ୍ଛେଦକ। ଧ୍ୱନି ମୂଲ୍ୟ ବିଚାରରେ ଏହା /ହ/ ସହିତ ତୁଳନୀୟ।

/ ୍/ ହଳନ୍ତ କ୍ -ବ୍ୟଞ୍ଜନାନ୍ତକ ପରିଚାୟକ।

ଏହା ବ୍ୟତୀତ କେତେକ ତ୍ରିବର୍ଣ୍ଣ ଯୁକ୍ତ /ର୍ଘ୍ୟ, ନ୍ତ୍ୱ/ କେତେକ ଚର୍ତୁବର୍ଣ୍ଣ ଯୁକ୍ତ /ର୍ଦ୍ଧ୍ୱ, ନ୍ତ୍ର୍ୟ/ ଲିପି ପରିଦୃଷ୍ଟ ହୁଏ।

ଉପରୋକ୍ତ ବିବରଣୀରୁ ପ୍ରତପନ୍ନ ହୁଏ ଯେ ଉପସ୍ଥିତ ଅବସ୍ଥାରେ ଓଡ଼ିଆ ଭାଷା ଶିକ୍ଷା ପାଇଁ ୪୭ଟି ଅକ୍ଷର, ୪୧ଟି ମାତ୍ରା ଓ ପ୍ରାୟ ୩୨ଟି ସ୍ୱତନ୍ତ୍ର ସଂଯୁକ୍ତାକ୍ଷର ଶିଖିବାକୁ ହୁଏ।

**ଅକ୍ଷର ଆକୃତି ଓ ଲିଖନ ରୀତି :**

ଆକୃତି ଓ ଲିଖନ ରୀତି ଭିତ୍ତିରେ ଏ ସମସ୍ତ ଅକ୍ଷର ଓ ମାତ୍ରା ଆଦି ନିମ୍ନଲିଖିତ ଭାବେ କେତେକ ଉପବିଭାଗରେ ସଜ୍ଜିତ କରାଯାଇପାରେ।

**ଅକ୍ଷର** (କ) ଊର୍ଦ୍ଧ୍ୱ-ମୂଳକ : ଅ ଆ ଥ ଧ

ଏଗୁଡ଼ିକ ରଚନା ପାଇଁ ପ୍ରଧାନ ଉପାଦାନ : /ᅳ , ° ` , ᒧ , ।/

ଖ) ନିମ୍ନ-ମୂଳକ :

୧. ପୁଚ୍ଛ ଯୁକ୍ତ : /ଋଋ/ଇଈ/ଲ/ଉଊ/ଭ/

୨. ମୁଣ୍ଡଳି ଯୁକ୍ତ : /ଦହବକଜ/ନଳ / ଚଛ/ଡଡ଼ଙଟ/ଢଢ଼

୩. ଯଷ୍ଟି ଯୁକ୍ତ : / ଗ ଶ ଖ /ଣ / ପ ଫ ଷ ଯ ୟ ଘ / ମ ସ/

୪. ମୁକ୍ତ ଶୀର୍ଷ : /ଏ ଐ ଓ ଔ ଓ /

୫. ଶିଖା ଶୀର୍ଷ : /ଝ ଟ/

୬. ଶୂନ୍ୟ : /୦/

ଏଗୁଡ଼ିକ ରଚନା ପାଇଁ ପ୍ରଧାନ ଉପାଦାନ :

ଊର୍ଦ୍ଧାଂଶ — /⌒, ◡/
ଯତି — / \/
ନିମ୍ନାଂଶ — ଶୂନ୍ୟ: /୦/ [ ଚ ଟ ଗଣ ଶ ମ ଟ ଲ ର ଋ ]
ବାମସ୍ଫୂର୍ତ୍ତି: /୦୦/ [ ଇ ]
/ ୳ / [ ଦ ହ ବ କ ]
/ ୬ / [ ଜ ]
/ ୱ / [ ଘ ]
/ ∪ / [ ଧ ଫ ଖ ]
/ [illegible] / [ ଯ ଯ୍ଯ ]
[ ଥ ]
/ ⸝ / [ ମ ମ୍ମ ]
ଦକ୍ଷିଣ ସ୍ଫୂର୍ତ୍ତି: /୰/ [ ତ ]
/୰/ [ ଓ ଔ ଉ ]
/୰/ [ ଭ ]
ନିମ୍ନ ସ୍ଫୂର୍ତ୍ତି: /∩/ [ ନ ]
/∩∩/ [ ଳ ଲ ]
ମଧ୍ୟ-ଦକ୍ଷିଣ ସ୍ଫୂର୍ତ୍ତି: /୯/ [ ଶ ]
/[illegible]/ [ ଡ ଢ ]
/[illegible]/ [ ଉ ଊ ଔ ]

ଲିଖନ ଭଙ୍ଗୀ ଅନୁସାରେ ଏହି ଅକ୍ଷରମାଳାକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ-

(୧) ଏକରେଖୀ : /ଚ ଟ ଝ ର ଋ ଇ ତ ଡ ଙ ଉ ଭ ଏ ଓ ଔ / ୦
/ଅ ଆ ଥ ଧ ଗ ଣ ଶ ଖ ମ ଣ/

(୨) ଦ୍ୱିରେଖୀ : /ଦ ହ ବ କ ଜ ନ ଳ ଲ ଢ ପ ଫ ଷ ଯ ୟ / ଘ

ଏହି ଉଭୟ ଗୋଷ୍ଠୀ ମଧ୍ୟରୁ କେତେକ ବିଶିଷ୍ଟ ଆଭୂଷଣ ଯୁକ୍ତ, ତେଣୁ ସ୍ୱତନ୍ତ୍ର। ସେଗୁଡ଼ିକ ହେଲେ- /ଆ ଐ ଔ ଞ ହ ଡ଼ ଢ଼ ଛ ଝ ଫ ୟ ଷ ସ । ଏହି ଆଭୂଷକ ମାତ୍ରାଗୁଡ଼ିକୁ ବିଭେଦକ କୁହାଯାଇପାରେ। କାରଣ ଏଗୁଡ଼ିକ ଯଥାକ୍ରମେ /ଅ ଏ ଓ ଦ ଡ ଢ ଚ ଟ ପ ମ/ ଠାରୁ ପାର୍ଥକ୍ୟ ପ୍ରକାଶ କରନ୍ତି।

ବନାନ :

(୧) ପୂର୍ବନ୍ୟାସ / େ/ ଏକାର

(୨) ପରନ୍ୟାସ /ା, ୀ, ୗ, ୍ୟ, ଂ . ଃ, / ଆ କାର, ଦୀର୍ଘ ଈକାର, ଔ କାର, ଯ ଫଳା, ଅନୁସ୍ୱାର, ବିସର୍ଗ

(୩) ଊର୍ଦ୍ଧ୍ୱନ୍ୟାସ / ି , ୖ , ୍ର , ଁ ,/ ହ୍ରସ୍ୱ ଇ କାର, ଐକାର, ରେଫ୍, ଚନ୍ଦ୍ରବିନ୍ଦୁ

(୪) ନିମ୍ନନ୍ୟାସ / ୁ ୂ ୃ ୍ / ହ୍ରସ୍ୱଇକାର, ହ୍ରସ୍ୱଉକାର, ଦୀର୍ଘ ଉକାର, ଋଫଳା, ହଳନ୍ତ

/ ... / ଏସବୁ ମାତ୍ରା ଯଥାକ୍ରମେ ନିମ୍ନଲିଖିତ ବ୍ୟଞ୍ଜନମାନଙ୍କର ପ୍ରତୀକ - /ଡ, ଢ, ଣ, ତ, ଥ, ବ, ଭ, ମ, ର/

/ ... / ଏସବୁ ମାତ୍ରା ନିମ୍ନଲିଖିତ ବ୍ୟଞ୍ଜନମାନଙ୍କର ଅଂଶବିଶେଷ ଓ ପ୍ରତୀକ-/କ ଙ ନ ଲ ଳ/

/ ... / ଏ ଦୁଇଟି ସଂଯୁକ୍ତ ମାତ୍ରା ଯଥାକ୍ରମେ ତ ଫଳା + ଉ କାର ଏବଂ ତ ଫଳା + ର ଫଳା ସୂଚିତ କରେ। (ହସ୍ତଲେଖାରେ ଏହାର ପ୍ରୟୋଗ ପ୍ରାୟ ନାହିଁ)

(୫) ପୂର୍ବପର ନ୍ୟାସ- / େ+ା େ+ୗ େ+ୖ / ଓକାର ଔକାର ଐକାର ବନାନରେ ଦୁଇଟି ମାତ୍ରା ପୂର୍ବରେ ଓ ପରେ ସଂଯୁକ୍ତ ହୁଏ।

ଏଠାରେ ଲକ୍ଷଣୀୟ ଯେ କେତେକ ମାତ୍ରା ଭିନ୍ନ ଭିନ୍ନ କ୍ଷେତ୍ରରେ ସ୍ୱତନ୍ତ୍ର ଭାବରେ ନିଯୁକ୍ତ ହୋଇଥାଆନ୍ତି। ଯଥା-

/ ... / ଝ ୟ ମ୍ଭ- ପ୍ରଥମରେ ଆକାର ବିଭେଦକ, ଦ୍ୱିତୀୟରେ ଯ ବିଭେଦକ, ଶେଷରେ ଭ ମାତ୍ରା

/ ... / ଛଞ୍ଛନ୍ଥ - ପ୍ରଥମରେ ଛ ବିଭେଦକ, ଦ୍ୱିତୀୟ ଛ ମାତ୍ରା, ତୃତୀୟ ଥ ମାତ୍ରା।

/ ି / ହ ଖ୍ରି ଥ୍ରି ଧ୍ରି - ପ୍ରଥମରେ ହ ବିଭେଦକ ପରେ ଇକାର।

/ ... / ଣ୍ଡ - ପ୍ରଥମରେ ଡ ମାତ୍ରା ପରେ ତ ମାତ୍ରା।

/ ୍ୟ / ମ୍ୱ - ପ୍ରଥମରେ ବ ମାତ୍ରା ପରେ ଉଅ ମାତ୍ରା।

/ ୍ / ଝକ୍ - ପ୍ରଥମରେ ଝ ଆଭୂଷଣ ପରେ ହଳନ୍ତ୍।

/ ଂ / ଫକଂ - ପ୍ରଥମରେ ଫ ବିଭେଦକ ପରେ ଅନୁସ୍ୱାର।

ଓଡ଼ିଆ ବନାନ-ବିଧିରେ ଏକ ସାଧାରଣ ଲକ୍ଷଣ ବନାନ ପ୍ରୟୋଗ କ୍ଷେତ୍ରରେ ଏବଂ ସଂଯୁକ୍ତ ବର୍ଣ୍ଣ ନିରୂପଣ ସମୟରେ ଏକାନ୍ତ ସ୍ମରଣୀୟ। ତାହା ହେଉଛି - ଏକାଧିକ ବ୍ୟଞ୍ଜନ ଧ୍ୱନି ଏକ ଅନୁକ୍ରମରେ ରହିଲେ, ସେମାନେ ପରସ୍ପର ସହିତ ସଂଯୁକ୍ତ

ହୁଅନ୍ତି। ଏଥିରେ ପ୍ରଥମବର୍ଣ୍ଣ ପ୍ରଧାନ ରୂପ ଗ୍ରହଣ କରେ ଏବଂ ଉତ୍ତର ବର୍ଣ୍ଣ ମାତ୍ରା ରୂପେ ନିମ୍ନରେ ସଂଯୋଜିତ ହୁଏ। [ମଗନ > ମଗ୍ନ]

**ବ୍ୟତିକ୍ରମ :** /ର/ ପ୍ରଥମବର୍ଣ୍ଣ ହେଲେ ରେଫ୍ ଭାବେ ଉତ୍ତରବର୍ଣ୍ଣର ଶୀର୍ଷରେ ସଂଯୁକ୍ତ ହୁଏ (ଅରକ > ଅର୍କ, ଚକର > ଚର୍କ)

/ତ/ ପ୍ରଥମ ବର୍ଣ୍ଣ ହେଲେ ଉତ୍ତରବର୍ଣ୍ଣର ନିମ୍ନରେ ମାତ୍ରା ଭାବେ ସଂଯୁକ୍ତ ହୁଏ

(ବତସ>ବତ୍ସ, ମସତ>ମସ୍ତ)

/ହ/ ଦ୍ୱିତୀୟ ବର୍ଣ୍ଣ ଭାବେ /ଣ, ନ, ଲ, ମ/ ପରେ ରହିଲେ ବି ପ୍ରଧାନ ରୂପ ଗ୍ରହଣ କରେ ଏବଂ ପ୍ରଥମ ବର୍ଣ୍ଣଗୁଡ଼ିକ ମାତ୍ରା ଭାବେ ତା'ର ନିମ୍ନରେ ସଂଯୁକ୍ତ ହୁଅନ୍ତି। (ପୂର୍ବାହ୍ନ, ଜହ୍ନ, ପ୍ରହ୍ଲାଦ, ବ୍ରାହ୍ମଣ)

**ଯୁକ୍ତାକ୍ଷର :**

ଓଡ଼ିଆ ବର୍ଣ୍ଣମାଳାରେ ମୂଳ ଅକ୍ଷରଗୁଡ଼ିକ ବ୍ୟତୀତ କେତେକ ସ୍ୱତନ୍ତ୍ର ଅକ୍ଷର ଅଛି। ସେଗୁଡ଼ିକ ଯୁକ୍ତାକ୍ଷର ଅର୍ଥାତ୍ ଦୁଇ ବା ଅଧିକ ଅକ୍ଷର ସମ୍ମିଶ୍ରିତ ଏକ ଏକ ସଂଶ୍ଳିଷ୍ଟ ଅକ୍ଷର। ଅଧିକାଂଶ କ୍ଷେତ୍ରରେ ସଂଯୋଗକାରୀ ବର୍ଣ୍ଣଗୁଡ଼ିକ ସମବର୍ଗୀୟ, ତେଣୁ ସେଗୁଡ଼ିକର ସଂଶ୍ଳେଷଣରେ ଏକପ୍ରକାର ସ୍ୱାଭାବିକ ସମୀଭୂତ ଧ୍ୱନି ପ୍ରକାଶିତ ହୁଏ। ଏହି ଧ୍ୱନିଗୁଡ଼ିକୁ ରୂପଦାନ କରିବା ପାଇଁ ସେହିପରି ସମୀଭୂତ ଲିପି ମଧ୍ୟ ସୃଷ୍ଟି ହୋଇଛି। ଏହି ଲିପିରେ କେତେକ ସ୍ଥଳରେ ସଂଯୋଜିତ ପ୍ରତ୍ୟେକ ମୂଳବର୍ଣ୍ଣର ଆଭାସ ମିଳେ [ଞ୍ଛ], କେତେକ ସ୍ଥଳରେ ଗୋଟିଏ ପ୍ରାଧାନ୍ୟ ନିଏ [ମ୍ପ] ଏବଂ କେତେକ ସ୍ଥଳରେ କାହାର ଚିହ୍ନ ନଥାଇ ଭିନ୍ନ ରୂପ ପ୍ରକାଶ ପାଏ [କ୍ଷ]।

ଦ୍ରୁତଲିଖନ ଓ ମିତ ସଂସ୍ଥାନ- ଏହି ଦୁଇଟି ଲକ୍ଷ୍ୟରେ ଓଡ଼ିଆରେ ଯୁକ୍ତାକ୍ଷର ଭାବରେ କେତେକ ସ୍ୱତନ୍ତ୍ର ଲିପି ସୃଷ୍ଟି ହୋଇଛି। ସେଗୁଡ଼ିକ ବିଶ୍ଳେଷଣ କଲେ ନିମ୍ନଲିଖିତ ତଥ୍ୟମାନ ପରିସ୍ଫୁଟ ହୁଏ।

ସୂତ୍ର:

୧) ଯଷ୍ଟିହୀନ ସମସ୍ତ ବ୍ୟଞ୍ଜନବର୍ଣ୍ଣ ସହିତ 'ଆକାର' ସଂଶ୍ଳିଷ୍ଟ ହୋଇପାରେ। ମାତ୍ର /ଚ/ ସହିତ ସଂଶ୍ଳେଷ ହେଲେ /ଗ/ ସହିତ ଭ୍ରାନ୍ତି ହେବ ବୋଲି ଗୋଟିଏ ସ୍ୱତନ୍ତ୍ର ଅକ୍ଷର [ଚା] ଏବଂ ପୁଚ୍ଛଯୁକ୍ତ /ଭରଲ/ ସହିତ ସଂଶ୍ଳେଷ ହେଲେ ତିନୋଟି ସ୍ୱତନ୍ତ୍ର ଅକ୍ଷର ସୃଷ୍ଟି ହୁଏ। [ଭା ରା ଲା ]

୨) ଯଷ୍ଟିହୀନ ସମସ୍ତବ୍ୟଞ୍ଜନ ବର୍ଣ୍ଣରେ 'ଇ-କାର' ଏକ ପୁଡ଼ା ରୂପେ ସଂଶ୍ଳିଷ୍ଟ ହୁଏ। [ଲି·ଲି]

୩) ଯଷ୍ଟିଯୁକ୍ତ ବ୍ୟଞ୍ଜନମାନଙ୍କ ମଧ୍ୟରେ କେବଳ ଊର୍ଦ୍ଧ୍ୱମୂଳକ ତିନୋଟି ବର୍ଣ୍ଣ / ଖ ଥ ଧ ରେ 'ଇ-କାର' ନିମ୍ନସ୍ଥିତ ହୁଏ [ଖି ଥି ଧି ] ।

୪) ବର୍ଣ୍ଣର ଦ୍ୱିତ୍ୱ ହେଲେ କେବଳ ଏହି କେତେକ ଅକ୍ଷରର ନିମ୍ନାଂଶରେ ପୁଡ଼ା ଲାଗେ /ଚ ଛ ଝ ଟ ଦ ବ/ [ଚ୍ଚ]।କେବଳ ତ ପୁଡ଼ା ସହିତ ପୁଚ୍ଛ ଯୁକ୍ତ ହୋଇ ବିଶେଷ ରୂପ ପରିଗ୍ରହ କରେ [ତ୍ତ] ।

୫) /ବ ଭ/ ସହିତ /ଦ/ ସଂଶ୍ଳିଷ୍ଟ ହେଲେ ସେ ଦୁଇଟିରେ ଦ-ସୂଚକ ଏକ ଚିହ୍ନ ଲାଗେ [ଦ୍ବ ଦ୍ଭ] ।

୬) କେବଳ /ଧ/ ଯ-ଫଳା ଯୁକ୍ତ ହେଲେ ସେଥିରେ ଏକପୁଡ଼ା ଲାଗେ [ଧ୍ୟ] (ସୂତ୍ର-୪ ସହିତ ତୁଳନା କଲେ ଏହା ବିଭ୍ରାନ୍ତିକର ଜଣାଯାଏ) ।

୭) /କ/ ଓ /ଷ/ ସଂଯୋଗରେ ଷ-ର ନିମ୍ନାଂଶ ଆରମ୍ଭରେ /ଯ/ ପରି ଏକ କ୍ଷୁଦ୍ର ରେଖାଯୁକ୍ତ ହୋଇ ସ୍ୱତନ୍ତ୍ର ଲିପି ହୁଏ [କ୍ଷ] ।

୮) /କ, ତ/ ସହିତ /ର/ ସଂଯୁକ୍ତ ହେଲେ ଦୁଇଟି ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଲିପି ସୃଷ୍ଟି ହୁଏ ଯେଉଁଥିରେ ଅଂଶୀଦାର ବର୍ଣ୍ଣମାନଙ୍କର ମୂଳ ରୂପର ଆଭାସ ମିଳେନାହିଁ।[କ୍ର ,ତ୍ର] (ଏହି ଲିପି ଦୁଇଟି ସୃଷ୍ଟିର ଉଦ୍ଦେଶ୍ୟ ସବୁ ଦିଗରୁ ବ୍ୟର୍ଥ ମନେହୁଏ)।

୯) ସ୍ୱବର୍ଗୀୟ ବର୍ଣ୍ଣମାନଙ୍କ ସହ ଅନୁନାସିକ ବର୍ଣ୍ଣର ସଂଯୋଗ: ଧ୍ୱନିମାନଙ୍କର ସଂଶ୍ଳେଷଣ ଏଠାରେ ଯେପରି ଆଶ୍ଚର୍ଯ୍ୟଜନକ ଭାବେ ଏକୀଭୂତ, ଲିପିଗୁଡ଼ିକ ସେହିପରି ସୁଗଠିତ କି ନୁହେଁ ତାହା ବିଚାର୍ଯ୍ୟ।

**ଙ+କ ଖ ଗ ଘ :** ବ୍ୟଞ୍ଜନ ବର୍ଣ୍ଣମାନଙ୍କର ନିମ୍ନାଂଶରେ ଗୋଟିଏ ପୁଡ଼ା ହୁଏ ଏବଂ ଅନୁସ୍ୱାର ଲାଗେ। /ଘ/ ପୁଡ଼ାଯୁକ୍ତ ଥିବାରୁ ସେଥିରେ ପୁଡ଼ା ଲାଗେ ନାହିଁ । ମନେହୁଏ ଅନୁସ୍ୱାର /ଙ/ର ସୂଚକ ଏବଂ ପୁଡ଼ା କେବଳ ଅନୁସ୍ୱାର ଯୁକ୍ତ ଧ୍ୱନିଠାରୁ ସ୍ୱାତନ୍ତ୍ର୍ୟ ସୂଚକ। [ଙ୍କ ଙ୍ଖ ଙ୍ଗ ଙ୍ଘ] ।

**ଞ+ଚଛଜଝ :** ଏହି ସଂଯୁକ୍ତାକ୍ଷର ଗୁଡ଼ିକର ଆକୃତି ବିଚିତ୍ର ଓ ବିସମ। /ଞ/ ର ଆଭୂଷଣଟି ସର୍ବତ୍ର ଲାଗେ। ମାତ୍ର ମୂଳ ଅକ୍ଷର ଚ ଛ ଝ ପରିବର୍ତ୍ତେ /ଥ/ର ଆବିର୍ଭାବ ବିସ୍ମୟ କର। [ଞ୍ଚ, ଞ୍ଛ, ଞ୍ଜ, ଞ୍ଝ]

ଜ+ଞ : ଏହି ସଂଯୁକ୍ତାକ୍ଷରଟି ମଧ୍ୟ ବିଚିତ୍ର। ଏଥିରେ /ଜ/ ପରିବର୍ତ୍ତେ /କ/ର

ଆଭାସ ମିଳେ [ଙ୍କ]।

**ଣ+ଟଠଡଢ :** ଅନୁନାସିକ ସଂଯୁକ୍ତ ବର୍ଣ୍ଣ ଶ୍ରେଣୀରେ ଏହି ଚତୁଷ୍ଟୟ ସର୍ବାପେକ୍ଷା ସହଜ ସୁସମ ଓ ସୁଗଠିତ। /ଣ/ ନିମ୍ନରେ /ଟଠ/ ବର୍ଣ୍ଣ ଏବଂ /ଡଢ/ ସୂଚକ ମାତ୍ରା ଲାଗେ [ଣ୍ଟ ଣ୍ଠ ଣ୍ଡ ଣ୍ଢ]।

**ନ+ତଥଦଧ :** ଏହି ଚାରୋଟି ଯୁକ୍ତାକ୍ଷର ଦୁଇଟି ଯୁଗ୍ମକ। /ତଥ/ର ମାତ୍ରା /ନ/ ନିମ୍ନରେ ଲାଗେ, କିନ୍ତୁ /ଦଧ/ ସହିତ /ନ/ ସଂଶ୍ଳିଷ୍ଟ ହୋଇ ଦ-ର ନିମ୍ନାଂଶ ଆରମ୍ଭରେ ଏକ କ୍ଷୁଦ୍ର ରେଖା ଲାଗି ଗୋଟିଏ ସ୍ୱତନ୍ତ୍ର ଲିପି ସୃଷ୍ଟି ହୁଏ। ସେଥିରେ ଗୋଟିକର ଗର୍ଭରେ ଧ-ସୂଚକ ଏକ ତୀର୍ଯକ ରେଖା ଦିଆଯାଏ [ନ୍ତ ନ୍ଥ ନ୍ଦ ନ୍ଧ]।

**ମ+ପଫବଭ :** ଏହି ଚାରୋଟି ଯୁକ୍ତାକ୍ଷର ମଧ୍ୟ ଦୁଇଟି ଯୁଗ୍ମକ। /ବଭ/ର ମାତ୍ରା /ମ/ ନିମ୍ନରେ ଲାଗେ, କିନ୍ତୁ /ପଫ/ ସହିତ ସଂଶ୍ଳିଷ୍ଟ ହୋଇ ମ-ର ମୁଣ୍ଡରେ /ଖ/ ପରି ଖାଲ ହୋଇ ଏବଂ ତାହା ଉପରେ ଏକ ତୀର୍ଯ୍ୟକ ରେଖା ଦେଇ ଗୋଟିଏ ସ୍ୱତନ୍ତ୍ର ଲିପି ସୃଷ୍ଟି ହୁଏ। ସେଥିରେ ଗୋଟିକର ପାର୍ଶ୍ୱରେ ଫ-ସୂଚକ ଅନୁସ୍ୱାର ପ୍ରାୟ ବିନ୍ଦୁ ଯୋଗ ହୁଏ। [ମ୍ପ ମ୍ଫ ମ୍ବ ମ୍ଭ]

ଉପରୋକ୍ତ ବିଶ୍ଳେଷଣରୁ ପ୍ରତିପନ୍ନ ହୁଏ ଯେ ଉପସ୍ଥିତ ଅବସ୍ଥାରେ ଓଡ଼ିଆ ଭାଷା ଶିକ୍ଷା ପାଇଁ ବସ୍ତୁତଃ ୩୩ଟି ଅକ୍ଷର ୩୧ଟି ମାତ୍ରା ଓ ୧୫ଟି ସଂଯୁକ୍ତାକ୍ଷର ଶିଖିବାକୁ ହେବ।

୧. ଅକ୍ଷର : /ଧ ଥ ଅ ଚ ଟ ଗ ଶ ଖ ଝ ର ଋ ଇ ଦ ବ କ ଜ ଢ ପ ଯ ତ ଡ ଙ ଉ ଭ ନ ଳ ଲ ମ ସ ଣ ଏ ଓ ଠ/

୨. ମାତ୍ରା : / । / ଆ-କାର

ପୁଡ଼ା- /ଇ-ଉ/ର ଦୀର୍ଘତା ସୂଚକ, ମୁଣ୍ଡଳିଯୁକ୍ତ ବର୍ଣ୍ଣରେ ଇ କାର ସୂଚକ, ନିମ୍ନାଂଶରେ ଦ୍ୱିତ୍ୱ ସୂଚକ।

/ େ / ଏ-କାର

/ ୈ / ଐ-କାର

/ ୗ / ଔ-କାର, ଏ-ଐ ଓ-ଔ ବିଭେଦକ

/ ‿ / ଚ-ଛ ବିଭେଦକ, ଛ-ମାତ୍ରା ଥ-ମାତ୍ରା

/ . / ବିନ୍ଦୁ, ଡ-ଡ଼, ଢ-ଢ଼ ବିଭେଦକ

/ ଂ/ ଅନୁସ୍ୱାର; ପ-ଫ ବିଭେଦକ, ଅନୁସ୍ୱାର

/ ୨ / ଚା-ଘ ବିଭେଦକ, ଯ-ୟ ବିଭେଦକ, ଉ-ମାତ୍ରା

/ ୍ / ହଳନ୍ତ

/ ି / ଦ-ହ ବିଭେଦକ, ଥ-ଧ -ଖରେ ଇ-କାର

/ ୀ / ଦୀର୍ଘ ଈ-କାର

/ ୁ / ଉ-କାର

/ ୂ / ଊ-କାର

/ ଁ / ଚନ୍ଦ୍ରବିନ୍ଦୁ

/ ଃ / ବିସର୍ଗ

/ ୃ / ଋ-ଫଳା

/ ଓ / ଞ-ଫଳା, ଓ-ଞ ବିଭେଦକ

/ ୨ / ଡ-ଫଳା, ତ-ଫଳା

/ ୧ / ଢ-ଫଳା

/ ୍ / ତ-ଫଳା

/ ୱ / ନିମ୍ନରେ ବ-ଫଳା, ପାର୍ଶ୍ୱରେ ୟ-ଫଳା

/ ୍ମ / ମ-ଫଳା

/ ୍ର / ର-ଫଳା

/ ର୍ / ରେଫ

/ \ / ଗର୍ଭରେ ଏହା ପ-ଷ ଓ ଯ-କ୍ଷ, ବିଭେଦକ ନ-ହ୍ନ ବିଭେଦକ

/ ୍କ /, / ୍ଙ /, / ୍ନ /, / ୍ଳ /, / ୍ଲ / - କ, ଙ, ନ, ଳ, ଲ - ଫଳା

୩. ସଂଯୁକ୍ତାକ୍ଷର : /ଉ, ଭ, ଧ, ନ୍ତ୍ର, ଦ୍ଧ, ଙ୍କ, ଙ୍ଖ, ଙ୍ଗ, ଞ୍ଚ, ଞ୍ଛ, ଞ୍ଜ, ଞ୍ଝ, ନ୍ଦ, ମ୍ପ, ଞ୍ଝ/

**ବନାନ ସଂସ୍କାର :**

ଓଡ଼ିଆ ଲିପି ଓ ବନାନ ରୀତିରେ ସଂସ୍କାର ଆଣିବା ପାଇଁ ଅଦ୍ୟାବଧି ନିମ୍ନଲିଖିତ ପ୍ରସ୍ତାବମାନ ଆସିଅଛି ।

୧. ଓଡ଼ିଆ ଲିପିର ଯେଉଁ କେତୋଟି ଅକ୍ଷରରେ କୌଣସି ଧ୍ୱନିଗତ ସ୍ୱାତନ୍ତ୍ୟ ନାହିଁ ତାହା ପରିହାର୍ଯ୍ୟ, ଯଥା- /ଈ ଊ ଋ ଙ ଞ ଯ ଶ ଷ/; /କ୍ଷ, ଜ୍ଞ/ ।

ଓଡ଼ିଆ ଉଚ୍ଚାରଣରେ ଯେଉଁ ଅକ୍ଷରର ମୂଲ୍ୟ ନାହିଁ ତା'ର ମାତ୍ରା ଅନାବଶ୍ୟକ ।

/ୀ, ୂ, ୃ / (ଈ-କାର, ଊ-କାର, ଋ-ଫଳା)

୨. ସମସ୍ତ ସଂଯୁକ୍ତାକ୍ଷର ପରିତ୍ୟଜ୍ୟ। ତତ୍‌ପରିବର୍ତ୍ତେ ଅନୁସନାସିକ ସଂଯୁକ୍ତାକ୍ଷର ଅନୁସ୍ୱାର ରୂପେ ଏବଂ ଅନ୍ୟାନ୍ୟଗୁଡ଼ିକ ଅନୁକ୍ରମାନୁସାରେ ଗୋଟି ଗୋଟି ଲେଖା ହେବା ଉଚିତ। ଯଥା-

ବଂକା, ଛୁଂଚି ମୁଂଡ, ପଂଥା, ଆଂବ,

(ବଙ୍କା) (ଛୁଞ୍ଚି) (ମୁଣ୍ଡ) (ପନ୍ଥା) (ଆମ୍ବ)

ସୁସ୍‌ପଷ୍‌ଟ, ସ୍‌ଥାନ, ପର୍‌ଦର୍‌ଶନୀ, ଉଦ୍‌ଭିନ୍‌ନ

(ସୁସ୍ପଷ୍ଟ) (ସ୍ଥାନ) (ପ୍ରଦର୍ଶନୀ) (ଉଦ୍ଭିନ୍ନ)

୩. ଅନୁନାସିକ ସଂଯୁକ୍ତ ବର୍ଣ୍ଣମାନଙ୍କ ପାଇଁ ସ୍ୱରବିଜ୍ଞାନ ଅନୁଯାୟୀ ଙ୍‌ଞ୍‌ଣ୍‌ନ୍‌ମ୍ ଆଦି ଯଥାସ୍ଥାନରେ ବ୍ୟବହାର କଲେ ଲିପି ଅନେକ ସରଳ ହୋଇପାରେ। ଯଥା- ବଙ୍‌କା, ଛୁଞ୍‌ଚି, ମୁଣ୍‌ଡ଼, ପନ୍‌ଥା, ଆମ୍‌ବ

୪. ରେଫ୍ ପରେ ବର୍ଣ୍ଣର ଦ୍ୱିତ୍ୱ ହେବା ଅନାବଶ୍ୟକ, ଯେହେତୁ ବ୍ୟାକରଣରେ ଏପରି ବିକଳ୍ପ ବିଧାନ ରହିଛି। ଯଥା- କର୍ମ୍ମ > କର୍ମ, କାର୍ତ୍ତିକ > କାର୍ତିକ, କାର୍ଯ୍ୟ > କାର୍ଯ

ପ୍ରଥମ ପ୍ରସ୍ତାବରେ ଉଦାହୃତ ଅକ୍ଷରମାନ ଓଡ଼ିଆ ଭାଷାରେ କେବଳ ଆଖିରେ ଦେଖାଯାଏ, କାନରେ ଶୁଣାଯାଏ ନାହିଁ। ଓଡ଼ିଆ କାନରେ ଯୋଗୀ-ଜୋଗି, ଶତ-ସତ, ଋଷି-ରୁସି ମଧ୍ୟରେ ତଫାତ୍ ଶୁଣାଯାଏନା, ଏକକ ଭାବେ ଙ ବା ଞ ଦେଖାଯାଏନା, ଦୁଇଟି ସ୍ୱତନ୍ତ୍ର ସଂଯୁକ୍ତାକ୍ଷର ଶିଖିବାକୁ ପଡୁଥିଲେ ମଧ୍ୟ କ୍ଷ-ଖ୍ୟ ଠାରୁ ଏବଂ ଜ୍ଞ-ଗ୍ୟଁ ଠାରୁ ଭିନ୍ନ ନୁହେଁ। ତେଣୁ ପ୍ରଶ୍ନ ହେବା ଖୁବ୍ ସ୍ୱାଭାବିକ୍- ଓଡ଼ିଆ ବର୍ଣ୍ଣମାଳାରେ ଏମାନଙ୍କ ସ୍ଥାନ ରହିବ କାହିଁକି ? ମାତ୍ର ତାହାର ସଂକ୍ଷିପ୍ତ ଉତ୍ତର ହେଉଛି ଯେ, ତା'ହେଲେ ଶବ୍ଦ ସଂକଟ ସୃଷ୍ଟି ହେବ, ଶବ୍ଦର ଅର୍ଥ ପରିବେଶାନୁସାରେ ବିଭିନ୍ନ ହେବ ଏବଂ ଶବ୍ଦର ବ୍ୟୁତ୍ପତ୍ତି ଓ ଇତିହାସ ନିର୍ଣ୍ଣୟ ଦୁଃସାଧ୍ୟ ହୋଇପଡ଼ିବ। ଉତ୍ତରାଧିକାରୀ ସୂତ୍ରେ ଏହାର ସମ୍ପତ୍ତି ଭୋଗ କଲେ କିଛି ଶ୍ରାଦ୍ଧ କରିବାକୁ ପଡ଼େ। ସଂସ୍କୃତର ଦାନ ଗ୍ରହଣ କରିବାକୁ ହେଲେ ଏତିକି ଅକ୍ଷର ଓଡ଼ିଆମାନଙ୍କୁ ମୁଣ୍ଡାଇବାକୁ ପଡ଼ିବ। ପୁଣି ଏହି ଭାର ଦୁର୍ବହ ନୁହେଁ। ଆମକୁ ଏହି ଅକ୍ଷରଗୁଡ଼ିକ ଆଦୌ ଶିଖିବାକୁ ପଡ଼େ ନାହିଁ। କେବଳ କେତୋଟି ଆଭୂଷଣ ମଣ୍ଡନ କଲେ ଆମର ମୌଳିକ ଅକ୍ଷର /ଇ ଉ ର ଙ ଞ ଖ ଗ/ ଏହି ବର୍ଣ୍ଣମାନଙ୍କରେ ରୂପାନ୍ତରିତ ହୁଏ। ଏଥିରୁ କେବଳ /ଜ୍ଞ/ ଲିପିଟି ଦୁଃସାଧ୍ୟ ଓ ଦୁର୍ବହ ମନେହୁଏ। ଲିପିଟି ମଧ୍ୟ ସେପରି ବିଶେଷ ଲାଭଜନକ ନୁହେଁ। ତେଣୁ କେବଳ ଏହାରି ବିଲୋପ କାମନା କରାଯାଇପାରେ।

ଦ୍ୱିତୀୟ ଓ ଚତୁର୍ଥ ପ୍ରସ୍ତାବ ଦୁଇଟିକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ- (୧) ସାଧାରଣ ସଂଯୁକ୍ତାକ୍ଷର ବର୍ଜନ ଓ ତାହାର ବିକଳ୍ପ ରଚନାବିଧି, (୨) ନାସିକ୍ୟ

ସଂଯୁକ୍ତାକ୍ଷର ବର୍ଜନ ଓ ତାହାର ବିକଳ୍ପ ରଚନା ବିଧି : (କ) ଅନୁସ୍ୱାର ଦ୍ୱାରା (ଖ) ବର୍ଗୀୟ ପଞ୍ଚମ ବର୍ଣ୍ଣ ଦ୍ୱାରା।

(୧) ସାଧାରଣ ସଂଯୁକ୍ତାକ୍ଷର ବର୍ଜନର ବିକଳ୍ପ ବ୍ୟବସ୍ଥା ହେଉଛି ପ୍ରଥମ ବର୍ଣ୍ଣରେ ହଳନ୍ତ ପ୍ରଦାନ (ଯଥା- ପ୍ରାଣ-ପ୍‌ରାଣ)। ଏହି ବ୍ୟବସ୍ଥାର ପ୍ରଧାନ ଦୋଷ ହେଉଛି ଲିପିର ମୌଳିକ ଆଦର୍ଶ (ଧ୍ୱନିର ଯଥାର୍ଥ ରୂପାୟନ, ଦ୍ରୁତ ଲିଖନ, ମିତ ସଂସ୍ଥାନ) ଏହାଦ୍ୱାରା ଖଣ୍ଡିତ ହୁଏ। ଏହା ରୋମାନ୍ ଆଦର୍ଶ ଏବଂ ଇଂରାଜୀରେ ଅନୁସୃତ ବୋଲି ଆମର ଅନୁକରଣୀୟ ହୋଇନପାରେ। ଭାରତୀୟ ବର୍ଣ୍ଣମାଳା ଓ ଧ୍ୱନିତତ୍ତ୍ୱ ଇଂରାଜୀ ଠାରୁ ଭିନ୍ନ। ମୂଳରୁ ସ୍ମରଣୀୟ ଯେ ଓଡ଼ିଆ ଅକ୍ଷର ସିଲାବିକ୍। ପ୍ରତ୍ୟେକଟି ବ୍ୟଞ୍ଜନ ବର୍ଣ୍ଣ ସ୍ୱରାନ୍ତ। ଓଡ଼ିଆ ଲେଖାରେ ଅକ୍ଷର ଓ ସିଲେବ୍‌ଲ୍ ମଧ୍ୟରେ ପାର୍ଥକ୍ୟ ନାହିଁ। ଓଡ଼ିଆ ଉଚ୍ଚାରଣରେ ପଦ ଅନ୍ତର୍ଗତ ବ୍ୟଞ୍ଜନ ବର୍ଣ୍ଣର ଅନୁକ୍ରମ ଲକ୍ଷ୍ୟ କଲେ ଜଣାଯାଏ ଯେ ପ୍ରଥମ ବର୍ଣ୍ଣଟି ପୂର୍ଣ୍ଣ ଉନ୍ମୋଚିତ ହୁଏ ନାହିଁ, ତାହା ବାସ୍ତବରେ ଅର୍ଦ୍ଧୋଚ୍ଚାରିତ ହୁଏ କିମ୍ବା ଦ୍ରୁତତର ଭାବେ ବ୍ୟକ୍ତ ହୋଇ ପରବର୍ତ୍ତୀ ବ୍ୟଞ୍ଜନ ବର୍ଣ୍ଣ ମଧ୍ୟରେ ବିଲୀନ ହୋଇଯାଏ (ଯଥା- ରକ୍+ତ ନୁହେଁ, ର+କ୍‌ତ; ତନ୍ତ-ତନ୍‌ତ୍+ର ନୁହେଁ, ତ+ନ୍ତ୍‌ର)। ଏଠାରେ ପୂର୍ଣ୍ଣ ଉନ୍ମୋଚନ ଅର୍ଥ ସ୍ୱାଭାବିକ ସ୍ୱରାନ୍ତ ଉଚ୍ଚାରଣ ଏବଂ ଅର୍ଦ୍ଧଉନ୍ମୋଚନ ଅର୍ଥ ସ୍ୱରହୀନ ହଳନ୍ତଯୁକ୍ତ ବ୍ୟଞ୍ଜନ। ତେଣୁ ସଂଯୁକ୍ତାକ୍ଷର ଗୁଡ଼ିକ ଆମ ଧ୍ୱନିର ଯଥାର୍ଥ ରୂପାୟନ କରେ, ରୋମାନ୍ ପଦ୍ଧତିରେ କୃତ୍ରିମତା ପ୍ରକାଶ ପାଏ। ଏହାଦ୍ୱାରା ଦ୍ରୁତ ଲିଖନ ଓ ମିତ ସଂସ୍ଥାନ ଲକ୍ଷ୍ୟ ବ୍ୟାହତ ହୁଏ। ହଳନ୍ତ ଦେବାକୁ ହେଲେ ଗୋଟିଏ ପୂର୍ଣ୍ଣ ଅକ୍ଷର ଲେଖିବାକୁ ପଡ଼ିବ ଏବଂ ହଳନ୍ତ ଅଙ୍ଗୀଭୂତ ଆଭୂଷଣ ନହୋଇଥିବାରୁ ଲେଖା ମଧ୍ୟରେ ବାରମ୍ବାର ଲେଖନୀର ଅଖଣ୍ଡ ପ୍ରବହମାନତା ବ୍ୟାହତ ହେବ।

ଅନ୍ୟପକ୍ଷରେ କ-ଯୁକ୍ତାକ୍ଷର ଓ କ-ସଂଯୁକ୍ତାକ୍ଷର ପର୍ଯ୍ୟାୟର ଆଲୋଚନା ଭିତ୍ତିରେ ବିଚାର କଲେ ଆମକୁ ମାତ୍ର ଛଅଟି ସଂଯୁକ୍ତାକ୍ଷର ଆୟତ୍ତ କରିବାକୁ ପଡୁଛି। ଏହି ଛଅଟିକୁ ବର୍ଜନ କଲେ ରୋମାନ ପଦ୍ଧତି ଅନୁସରଣ କରିବାର ଆବଶ୍ୟକତା ପଡୁନାହିଁ। ଅନ୍ୟ ସଂଯୁକ୍ତାକ୍ଷର ଗୁଡ଼ିକ କେବଳ ମାତ୍ରାଯୁକ୍ତ ବର୍ଣ୍ଣ। ଏହି ମାତ୍ରା ମଧ୍ୟରୁ ମାତ୍ର ଚାରୋଟି ଅଧିକ ଶିଖିବାକୁ ପଡ଼େ ।୍ (ତ) ୍ର (ର) ର୍ (ରେଫ) ୍ମ (ମ)। ବାକି ଗୁଡ଼ିକ ରୋମାନ୍ ପଦ୍ଧତି ଚଳିଲେ ବି ଅନ୍ୟ ପ୍ରସଙ୍ଗରେ ଶିଖିବାକୁ ପଡ଼ିବ ହିଁ ପଡ଼ିବ। ରେଫ ପରେ ବର୍ଣ୍ଣର ଦ୍ୱିତ୍ୱ ବିଧାନ ଆଉ ଅନୁସୃତ ନହେଉଥିବାରୁ ଦ୍ୱିତ୍ୱ ବିହିତ ସଂଯୁକ୍ତାକ୍ଷରର ବ୍ୟବହାର ମଧ୍ୟ କମିଯାଇଛି। ବର୍ତ୍ତମାନ ପ୍ରଶ୍ନ- ସହଜରେ ପରିତ୍ୟାଜ୍ୟ ଛଅଟି ସଂଯୁକ୍ତାକ୍ଷର ଓ ମାତ୍ର ଚାରୋଟି

ମାତ୍ରା ନିମନ୍ତେ ଓଡ଼ିଆ ଲିପିକୁ ତିନୋଟି ମୂଳ ଲକ୍ଷ୍ୟରୁ ବିଚ୍ୟୁତ କରି ସଂଯୁକ୍ତାକ୍ଷର ବର୍ଜନ କରିବା ଉଚିତ ହେବ କି ?

(୨) ନାସିକ୍ୟ ସଂଯୁକ୍ତାକ୍ଷର ବର୍ଜନର ଗୋଟିଏ ବିକଳ୍ପ ବ୍ୟବସ୍ଥା ହେଉଛି ନାସିକ୍ୟ ବ୍ୟଞ୍ଜନ ସ୍ଥଳେ ଅନୁସ୍ୱାର ପ୍ରୟୋଗ (ଯଥା- ମଞ୍ଜା-ମଂଜା)। ଏହି ବ୍ୟବସ୍ଥାର ପ୍ରଧାନ ଦୋଷ ହେଉଛି ଏହାଦ୍ୱାରା ଧ୍ୱନିର ଯଥାର୍ଥ ରୂପାୟନ ହୁଏ ନାହିଁ। ଅନୁସ୍ୱାର କୌଣସି ନାସିକ୍ୟ ବ୍ୟଞ୍ଜନର ପ୍ରତିନିଧି ବା ମାତ୍ରା ନୁହେଁ, ଆମ ଲିପି ଓ ଧ୍ୱନି ଜଗତରେ ଏହାର ଏକ ନିଜସ୍ୱ ସ୍ଥାନ ଓ ଅଧିକାର ଅଛି। ଆମର ସମସ୍ତ ଅନୁନାସିକ ଧ୍ୱନି ତିନି ରୂପରେ ପ୍ରକାଶିତ- ନାସିକ୍ୟ ବ୍ୟଞ୍ଜନ ପଞ୍ଚକ, ଚନ୍ଦ୍ରବିନ୍ଦୁ ଓ ଅନୁସ୍ୱାର। ଏହି ଅନୁସ୍ୱାରର ଧ୍ୱନି ମୂଲ୍ୟ ଓ ସ୍ୱାଧିକାର ନେଇ ବ୍ୟାକରଣକାରମାନଙ୍କ ମଧ୍ୟରେ ବହୁ ବିତର୍କ ଦେଖାଯାଇଛି। କିଏ ସ୍ୱର, କିଏ ବ୍ୟଞ୍ଜନ କିଏ ବା ଏକ ମଧ୍ୟବର୍ତ୍ତୀ ଧ୍ୱନି ଭାବରେ ଏହାକୁ ନିରୂପିତ କରିଛନ୍ତି। ତୈତ୍ତରୀୟ ପ୍ରାତିଶାଖ୍ୟ ମତରେ "ଅନୁସ୍ୱାରୋ ବ୍ୟଞ୍ଜନଂ ବା ସ୍ୱରୋ ବେତି ପରମତଂ ତନ୍ନିରାସାର୍ଥମ୍ ଇଦଂ ଉଚ୍ୟତେ। ଅନୁସ୍ୱାରୋଽପି ଉତ୍ତମବଦ୍ ବ୍ୟଞ୍ଜନମ୍ ଏବାସ୍ମଚ୍ଛାଖାୟମ୍ ଅର୍ଧପକାରରୂପତ୍ୱାତ୍" (Phornetic observations of Indian Grammarians, S. Varma 1961)। ପଦ ମଧ୍ୟରେ ଏହାର ପ୍ରୟୋଗ ମଧ୍ୟ ନାନା ଭାବରେ ନିୟନ୍ତ୍ରିତ - ସ୍ୱରଧ୍ୱନି, ବିରାମ (Pause), ସ୍ପର୍ଶ ବ୍ୟଞ୍ଜନ ପୂର୍ବରେ ଏହା ପ୍ରୟୋଗ ହୋଇପାରିବ ନାହିଁ। ଏଥିରୁ ଜଣାଯାଏ ଅବର୍ଗୀୟ ବ୍ୟଞ୍ଜନ ପୂର୍ବରେ ଅନୁସ୍ୱାରର ସ୍ୱାଧିକାର ଥିଲା। ପ୍ରଥମେ ପାଣିନି ଏହାର ଅଧିକାର ଭୂମି ବିସ୍ତାରିତ କରି ପଦାନ୍ତରେ ସ୍ପର୍ଶବ୍ୟଞ୍ଜନ ପରେ ସଂଯୋଜିତ ହେବାର ଯୋଗ୍ୟତା ପ୍ରଦାନ କଲେ। ପାଣିନି ସୂତ୍ର ଅନୁସାରେ ଯଦି ପଦାନ୍ତସ୍ଥିତ ମ୍ ପରେ ବର୍ଗୀୟ ବର୍ଣ୍ଣ ଥିବ ତେବେ ସେଠାରେ ମ୍ ପରିବର୍ତ୍ତେ ଅନୁସ୍ୱାର ଅଥବା ସ୍ୱବର୍ଗୀୟ ପଞ୍ଚମ ବର୍ଣ୍ଣ ହେବ (୮/୪/୫୯) ଯଥା- ଅହମ୍+କାର-ଅହଂକାର କିମ୍ବା ଅହଙ୍କାର ହୋଇପାରେ। ବର୍ତ୍ତମାନ ପାଣିନିଙ୍କର ସୂତ୍ରକୁ ସ୍ୱାର୍ଥରେ ବିନିଯୋଗ କରି ଅନେକ ଅନୁସ୍ୱାରର ପ୍ରୟୋଗକୁ ସିଦ୍ଧ ମନେ କରନ୍ତି। ତେଣୁ ଅହମ୍+କାର ଅହଂକାର ହୋଇପାରୁଥିବାରୁ ଚନ୍ଦନ-ଚଂଦନ, ମଣ୍ଡନ-ମଂଡନ, କଳଙ୍କ-କଳଂକ ହେବାରେ ଅସିଦ୍ଧତା ଦେଖାଯାଉ ନାହିଁ। ପାଣିନିଙ୍କର 'ପଦାନ୍ତ' ସ୍ଥାନ ନିର୍ଦ୍ଦେଶ କଥାଟି ସମସ୍ତେ ବିସ୍ମୃତ ହୋଇଯାଇଛନ୍ତି। ଅହମ୍ ଗୋଟିଏ ପଦ, କିନ୍ତୁ ଚମ୍, ମନ୍, କଲମ୍ ଗୋଟିଏ ଗୋଟିଏ ପଦ ନୁହନ୍ତି। ତେଣୁ ଏସବୁ କ୍ଷେତ୍ରରେ ଅନୁସ୍ୱାର ଯୋଗକରି ପାଣିନିଙ୍କୁ ସାକ୍ଷ୍ୟ ଦେବା ଅନୁଚିତ। ପଦ ହେଉଛି ଅର୍ଥବାନ୍ ଉଚ୍ଚାରଣ ବା morpheme। ଏରୂପ ପଦର ପ୍ରାନ୍ତରେ

/ମ/ ବା /ନ / ଥିଲେ ବିକଳ୍ପରେ ଅନୁସ୍ୱାର ପ୍ରଯୋଜ୍ୟ- ଏହାହିଁ ସୂତ୍ର। ପୁଣି ଏହି ପ୍ରସଙ୍ଗରେ ଭୁଲିଗଲେ ଚଳିବ ନାହିଁ ଯେ ପାଣିନି ଅନୁସ୍ୱାରର ଏତିକି କ୍ଷେତ୍ର ବିସ୍ତାର କରି ନିନ୍ଦାଗୁଣ ଭାବେ ସମାଲୋଚିତ ହୋଇଛନ୍ତି। ତା'ର ପ୍ରତିଧ୍ୱନି Whitney ଙ୍କ କଣ୍ଠରେ କିପରି ପ୍ରକାଶ ପାଇଛି ଦେଖନ୍ତୁ- To write the anusvara sign in the interior of a word for a nasal mute which is equally radical or thematic witth the succeding non-noasal... seems an indefensible practice, and one wholly to be disapproved and rejected (J.A.D.S. IX, 69)

ଏହି ପ୍ରସ୍ତାବର ଅନ୍ୟଏକ ଅବଲମ୍ବନ କଲିକତା ବିଶ୍ୱବିଦ୍ୟାଳୟର ବନାନ୍ ନିୟମ। ସେଥିରେ ପାଣିନିଙ୍କ ପଦାନ୍ତ ବିଷୟକ ସ୍ଥାନ ନିୟନ୍ତ୍ରଣ ନିର୍ଦ୍ଦିଷ୍ଟ ହୋଇଛି ଏବଂ କ ବର୍ଗ ବ୍ୟତୀତ ଅନ୍ୟତ୍ର ପ୍ରୟୋଗ କ୍ଷେତ୍ରରେ ଦ୍ୱିଧା ପ୍ରକାଶ ପାଇଛି। ଏହା ସତ୍ତ୍ୱେ ମଧ "ଅଂଗ ବଂଗ କଂଥା ଛୁଂଚି ଡାଂଫଣ ଅଂଡା" ସେହି ନିୟମାନୁବର୍ତ୍ତିତାରେ ଲେଖା ଚାଲିଛି। ପୁଣି ବଙ୍ଗଳା ଲିପି ଓଡ଼ିଆର ଅନୁକରଣୀୟ ନୁହେଁ, ଯେହେତୁ ତାଙ୍କ ଅନୁସ୍ୱାର ଖାଲି ଗୋଟିଏ ଫୁଣ୍ଡା ନୁହେଁ ଏବଂ /ଙ/ ପରି ଫୁଣ୍ଡାଯୁକ୍ତ ଲିପି ମଧ ସେଥିରେ ନାହିଁ।

ଓଡ଼ିଆ ବଙ୍ଗଳା ଉଚ୍ଚାରଣରେ ଅନୁସ୍ୱାରର ଏକ ପରମ୍ପରାଗତ ସ୍ୱତନ୍ତ୍ର ଧ୍ୱନିମୂଲ୍ୟ ଅଛି। ତାହା ଙ-ଧ୍ୱନି ସହ ପ୍ରାୟ ସମାନ ଏବଂ 'ଅର୍ଦ୍ଧପକାର ରୂପ'। 'ବରଂ, ସ୍ୱୟଂ, ମାଂସ, ହଂସ, ସିଂହ' ଇତ୍ୟାଦି ଶବ୍ଦରେ ତାହାର ସ୍ୱରୂପ ସୁସ୍ପଷ୍ଟ। ତେଣୁ ଙ ବ୍ୟତୀତ ଅନ୍ୟ ନାସିକ୍ୟ ଧ୍ୱନି ଚତୁଷ୍ଟୟ ପାଇଁ ଅନୁସ୍ୱାର ପ୍ରୟୋଗ କଲେ ଉଚ୍ଚାରଣଗତ ସ୍ୱଭାବସିଦ୍ଧତା ପରିହାର କରି କୃତ୍ରିମ ଉଚ୍ଚାରଣ କରିବାକୁ ପଡ଼ିବ। ଆମର କଥିତ ଭାଷାରେ ନାସିକ୍ୟ ସଂଯୁକ୍ତାକ୍ଷର ସ୍ଥଳେ କେବଳ ଚନ୍ଦ୍ରବିନ୍ଦୁର ଆବିର୍ଭାବ ଘଟିଥାଏ। ଏହାଦ୍ୱାରା ନାସିକ୍ୟ ବ୍ୟଞ୍ଜନ ପରିବର୍ତ୍ତେ ପୂର୍ବବର୍ତ୍ତୀ ବ୍ୟଞ୍ଜନ ନିହିତ ସ୍ୱର ଦୀର୍ଘ ଓ ଅନୁନାସିକ ହୋଇଥାଏ (ଯଥା- ଚାନ୍ଦ, ଚାଁଦ, ଛୁଞ୍ଚି-ଛୁଁଚି)। ଧ୍ୱନିତତ୍ତ୍ୱବିତ୍ ସମସ୍ତେ ସ୍ୱୀକାର କରିବେ ଯେ ଗୋଟିଏ ସ୍ୱରଧ୍ୱନିକୁ ଅନୁନ୍ୟାସିକ କରିବା ଏବଂ ଗୋଟିଏ କଣ୍ଠ୍ୟ ବ୍ୟଞ୍ଜନ (ଅନୁସ୍ୱାର)କୁ ତାଲବ୍ୟ, ମୂର୍ଦ୍ଧନ୍ୟ, ଦନ୍ତ୍ୟ ଏବଂ ଓଷ୍ଠ୍ୟ ଧ୍ୱନିରେ ପରିଣତ କରିବା ମଧରେ ପ୍ରଥମଟି ସ୍ୱାଭାବିକ ଏବଂ ସହଜସାଧ। ନାସିକ୍ୟ ସଂଯୁକ୍ତାକ୍ଷର ବିରୋଧୀମାନେ ଧ୍ୱନିର ଯଥାର୍ଥ ରୂପାୟନ ନିମନ୍ତେ ସର୍ବତ୍ର ଚନ୍ଦ୍ରବିନ୍ଦୁ କିମ୍ବା /ଙ/ ସ୍ଥଳେ ଅନୁସ୍ୱାର ଓ ଞ,ଣ,ନ/ ସ୍ଥଳେ ଚନ୍ଦ୍ରବିନ୍ଦୁ ବା /ନ/ ଏବଂ /ମ/ ସ୍ଥଳେ ସେହି /ମ/ ଓ ପଦାନ୍ତରେ ଅନୁସ୍ୱାର ଗ୍ରହଣ କଲେ ହୁଏତ ସେତେ ବାଧିବ ନାହିଁ।

ଅନ୍ୟପକ୍ଷରେ କ-ଯୁକ୍ତାକ୍ଷର ଓ କ-ସଂଯୁକ୍ତାକ୍ଷର ପର୍ଯ୍ୟାୟ ଆଲୋଚନା ଭିତ୍ତିରେ ବିଚାର କଲେ ଆମକୁ ମାତ୍ର ୯ଟି ନାସିକ୍ୟ ସଂଯୁକ୍ତାକ୍ଷର ଆୟତ୍ତ କରିବାକୁ ପଡୁଛି। ସେଥିରୁ /ଙ୍କ/ର ନିଜସ୍ୱ ଧ୍ୱନିମୂଲ୍ୟ ନ ଥିବାରୁ ତାହା ପରିତ୍ୟଜ୍ୟ,/ଙ୍କ ଙ୍ଖ ଙ୍ଗ/ ମଧ୍ୟରେ ଗଠନଗତ ସମତା ଏବଂ ସଂଯୋଗଶୀଳ ଉଭୟ ବର୍ଣ୍ଣର ସ୍ୱଷ୍ଟତା ଥିବାରୁ ସେଗୁଡ଼ିକ ଅନାୟାସସାଧ୍ୟ। ତେଣୁ /ନ୍ଦ, ମ୍ପ/ ଗଠନକୁ ପର୍ଯ୍ୟାୟଭୁକ୍ତ କଲେ ଏବଂ ଚ-ବର୍ଗ ପାଇଁ ଏକ ସରଳ ସଂଯୋଜକ ରୀତି ପ୍ରବର୍ତ୍ତନ କଲେ ସମସ୍ତ ବିକଳ୍ପ ବ୍ୟବସ୍ଥାର ବିଡ଼ମ୍ବନା ଭୋଗ କରିବାକୁ ପଡ଼ିବ ନାହିଁ। ଓଡ଼ିଆ ଭାଷାରେ ନାସିକ୍ୟ ସଂଯୁକ୍ତାକ୍ଷରଗୁଡ଼ିକ ସ୍ୱୟଂସମ୍ପୂର୍ଣ୍ଣ ଏବଂ ଏଗୁଡ଼ିକୁ ସଂଯୁକ୍ତ ଧ୍ୱନି ନ କହି ଏକ ସଂଶ୍ଳିଷ୍ଟ ଧ୍ୱନି କୁହାଯାଇପାରେ। ଏହି ସଂଯୁକ୍ତାକ୍ଷର ଗୁଡ଼ିକର ମହତ୍ତ୍ୱ ସମ୍ପର୍କରେ W.S. Allen ଙ୍କର ମନ୍ତବ୍ୟ ସ୍ମରଣୀୟ- "The homorganic nasals form a single phonological unit, and a phonological transcription will recognize this fact. This is particularly the case in those modern Indo-Aryan languages where the only purpose of certain nasal symbols taken over from Sanskrit (velar, palatal, retroflex) is to represent homorganic nasality before consonants of the appropriate series. (Phonetics in Ancient India-1961)

ନାସିକ୍ୟ ସଂଯୁକ୍ତବର୍ଣ୍ଣ ପ୍ରତିବଦଳରେ ସମବର୍ଗୀୟ ନାସିକ୍ୟ ବ୍ୟଞ୍ଜନଟି ହଳନ୍ତ ସହିତ ଉଲ୍ଲେଖ କରିବା ପ୍ରସ୍ତାବ (ଯଥା- ଅଙ୍କ-ଅଙ୍‌କ) ବିପକ୍ଷରେ ଏକମାତ୍ର ଯୁକ୍ତି ହେଉଛି ଏହାଦ୍ୱାରା ଲିପିର ଦ୍ରୁତ ଲିଖନ ଓ ମିତ ସଂସ୍ଥାନ ଲକ୍ଷ୍ୟ ବ୍ୟାହତ ହେବ। ଆମ ଭାଷାରେ ରୋମାନ୍ ପଦ୍ଧତି ପ୍ରଚଳନର ଅସୁବିଧା ପୂର୍ବରୁ ସୂଚିତ ହୋଇଛି।

ରେଫ୍ ପରେ ବର୍ଣ୍ଣର ଦ୍ୱିତ୍ୱ ହେବା ନିୟମଟିରେ ଯେଉଁ ବିକଳ୍ପ ବ୍ୟବସ୍ଥା ରହିଛି ତାହା ଶ୍ରେୟ। ଏହିପରି ଦ୍ୱିତ୍ୱ ହେଉଥିବା ବ୍ୟଞ୍ଜନ ବର୍ଣ୍ଣମାନଙ୍କ ମଧ୍ୟରେ ପ୍ରଧାନ ହେଉଛନ୍ତି- /ଚ ଛ ଜ ତ ଦ ଧ କ ମ/। ଏହି ନିୟମ ପାଳନ କଲେ ଓଡ଼ିଆ ଲିପିରେ ଏକ ବିଶେଷ ଲାଭ ହେବ ଏହି ଯେ କେତେକ ସ୍ୱତନ୍ତ୍ର ସଂଯୁକ୍ତାକ୍ଷର ସହଜରେ ବର୍ଜନ କରାଯାଇପାରିବ।

ଏହି ପ୍ରସଙ୍ଗରେ କେବଳ ଗୋଟିଏ କ୍ଷେତ୍ରରେ ପୁର୍ନବିଚାର ଆବଶ୍ୟକ। /ଯ/ରେ ରେଫ ଦେଲେ ୟ-ଫଳା ଦିଆଯିବ କି ନାହିଁ ? ଉଚ୍ଚାରଣ ବିଚାରରେ ଦେବାର କଥା, ଯେହେତୁ ଓଡ଼ିଆରେ /ଯ/ ଓ /ୟ/ ସମାନ ନୁହନ୍ତି। ସଂସ୍କୃତ-ସୂର୍ଯ-ଓଡ଼ିଆରେ ସୂର୍ୟ-କିମ୍ବା-ସୂର୍ଯ୍ୟ- ପ୍ରତିଲିପିରେ ପ୍ରକାଶିତ ହେବ, ଅନ୍ୟଥା ତାହା ହେବ-ସୂର୍ଜ। ତେଣୁ ଓଡ଼ିଆରେ /ର୍ଯ/ ନ ଚଳାଇ /ର୍ୟ/ ବା /ର୍ଯ୍ୟ/ ଚଳାଇବାକୁ ପଡ଼ିବ। ଓଡ଼ିଆ ଧ୍ୱନି ତତ୍ତ୍ୱାନୁସାରେ /ର୍ଯ୍ୟ/ ପ୍ରୟୋଗରେ ନିୟମ ଲଂଘନ ହେଉନାହିଁ। କାରଣ ଏଠି ଯ-ର ଦ୍ୱିତ୍ୱ ହେଉନାହିଁ, ତହିଁରେ ୟ-ଫଳା ସଂଯୁକ୍ତ ହେଉଛି।

**ସଂଯୁକ୍ତାକ୍ଷର ସଂସ୍କାର ପ୍ରସ୍ତାବ :**

ପୂର୍ବବର୍ତ୍ତୀ ଆଲୋଚନା ପ୍ରସଙ୍ଗରେ ଦର୍ଶାଇ ଦିଆଯାଇଛି ଯେ ପାରମ୍ପରିକ ଓଡ଼ିଆ ଲିପିର କୌଣସି ମୂଳ ଅକ୍ଷର ଓ ମାତ୍ରା ବର୍ଜନୀୟ ନୁହେଁ। କାରଣ ସଂଯୁକ୍ତାକ୍ଷର ପ୍ରଚଳନ ଶାସ୍ତ୍ର ସମ୍ମତ। କିନ୍ତୁ କେତେକ ସଂଯୁକ୍ତାକ୍ଷର ଗଠନର ଜଟିଳତା ମୋଚନ କଲେ ଲିପିର ଜଟିଳତା ଅତିକ୍ରମ କରାଯାଇପାରିବ। ସେହି ଦୃଷ୍ଟିରୁ ଏହି ସଂସ୍କାର ପ୍ରସ୍ତାବମାନ ଉପସ୍ଥାପିତ କରାଯାଉଛି।

(୧) ଆ-କାର, ଇ-କାର ସଂଶ୍ଲେଷଣ ଏବଂ ଥ, ଧ ନିମ୍ନରେ ଇ-କାର ସଂଯୋଗ ରୀତି ବାଧ୍ୟତା ମୂଳକ ନୁହେଁ, ଐଚ୍ଛିକ।

(୨) /ଦ୍ୱ, ଭ୍ୱ/ ବର୍ଜନୀୟ (ବ,ଦ - ବହୁ ବର୍ଣ୍ଣରେ ସଂଯୁକ୍ତ ହେଲେ ମଧ୍ୟ ସଂଶ୍ଳିଷ୍ଟ ହୁଅନ୍ତି ନାହିଁ)

(୩) /ଝ୍ୟ/ ବର୍ଜନୀୟ (ଯ-ଫଳା ଅନ୍ୟତ୍ର ସଂଶ୍ଳିଷ୍ଟ ହୁଏ ନାହିଁ ଏବଂ ଏହି ଅକ୍ଷର ଦ୍ୱିତ୍ୱ ବିଧାନ ପ୍ରସଙ୍ଗରେ ବିଭ୍ରାନ୍ତିକର)।

(୪) ନ୍ଧ୍ର, ଙ୍କ୍ଷ ବର୍ଜନୀୟ (ଲିପି ଦୁଇଟି ଜଟିଳ ଏବଂ ସଂଯୁକ୍ତାକ୍ଷର ଗଠନ ବିଧି ବହିର୍ଭୂତ)

(୫) /ତ୍ତ୍ୱ/ ବର୍ଜନୀୟ (ଦ୍ୱିତ୍ୱ ବିଧାନର ସାଧାରଣ ସୂତ୍ର ବହିର୍ଭୂତ)

(୬) ଅନୁନାସିକ ସଂଯୁକ୍ତାକ୍ଷର ମଧ୍ୟରୁ /ଞ୍ଚ ଞ୍ଜ ଞ୍ଛ ନ୍ଦ ମ୍ପ/ର ପରିବର୍ତ୍ତନ ବାଞ୍ଛନୀୟ।

ଆମେ ଅନ୍ୟ ଅନୁନାସିକ ସଂଯୁକ୍ତାକ୍ଷର ଗୁଡ଼ିକ ଗଠନରେ ଏକ ପ୍ରକାରର ଅନ୍ତର୍ନିହିତ ସମରୂପତା ଦେଖିବାକୁ ପାଉ। ଯଥା- ଙ୍କ-ଇତ୍ୟାଦିରେ ବର୍ଗୀୟ ଓ ନାସିକ୍ୟ ବ୍ୟଞ୍ଜନର ରୂପ ପ୍ରଚ୍ଛନ୍ନ। ବର୍ଗୀୟ ବର୍ଣ୍ଣରେ ପୁଡ଼ା ଓ ଅନୁସ୍ୱାର ବିଶିଷ୍ଟ ଲକ୍ଷଣ। ଣ୍ଟ-ଇତ୍ୟାଦିରେ ନାସିକ୍ୟ ବ୍ୟଞ୍ଜନ ନିମ୍ନରେ ବର୍ଗୀୟବର୍ଣ୍ଣ ବା ତାର ମାତ୍ରା ପ୍ରଦତ୍ତ। ଏହି ରୀତି ମଧ୍ୟ /ନ୍ତ ନ୍ଥ ନ୍ଧ ମ୍ଭ/ରେ ଅନୁସୃତ। ତେଣୁ ସମରୂପତା ପ୍ରଦାନ କରିବା ପାଇଁ ନ, ମ- ନିମ୍ନରେ ଦ, ଧ, ପ, ଫ ଅକ୍ଷର ବା ମାତ୍ରା ସଂଯୋଜିତ ହେବା ବାଞ୍ଛନୀୟ। 'ପୃଷ୍ଠ ନିଷ୍ଫଳ ଦୁଗ୍ଧ' ଇତ୍ୟାଦି ଶବ୍ଦରେ - ପ ଫ ଧ - ଯେପରି ପ୍ରଯୁକ୍ତ ସେପରି ମଧ୍ୟ ଏ କ୍ଷେତ୍ରରେ ପ୍ରୟୋଗ କରାଯାଇପାରେ। /ଦ/ ର ଏ ରୂପ ସଂଯୋଜନ ନାହିଁ, ତେବେ ପ୍ରଚଳନ କରାଗଲେ କ୍ଷତି ହେବ ନାହିଁ। ତାହେଲେ ତିନୋଟି ବର୍ଗର ଅନୁନାସିକ ସଂଯୁକ୍ତ ବ୍ୟଞ୍ଜନ ଅକ୍ଷର ସମାନ ପଦ୍ଧତିରେ ଗଠିତ ହୋଇପାରିବ।

ଞ୍ଚ-ଇତ୍ୟାଦିର ପ୍ରଧାନ ଅସୁବିଧା ଏଥିରେ /ଚ/ ପରିବର୍ତ୍ତେ /ଥ/ର ଆବିର୍ଭାବ। ଏଥିରୁ /ଥ/ କୁ ବିଦାୟ ଦେଇ /ଚ/ ଗ୍ରହଣ କରିବାକୁ ହେବ ଏବଂ ଙ୍କ - ଇତ୍ୟାଦି ଗଠନ ପଦ୍ଧତି ଅନୁସରଣରେ ନାସିକ୍ୟ ବ୍ୟଞ୍ଜନ /ଞ/ର ଅଂଶବିଶେଷ ବର୍ଗୀୟ ବର୍ଣ୍ଣ କିମ୍ବା ତା'ର ଅଂଶବିଶେଷ ଉର୍ଦ୍ଧ୍ୱରେ ସଂଯୋଜିତ କରିବାକୁ ହେବ। ତାହେଲେ ଏହି ଅକ୍ଷରଗୁଡ଼ିକର ଆକୃତି ଏହିପରି ହେବ - [illegible]।

/ଞ୍ଛ/ର ଧ୍ୱନିମୂଲ୍ୟ ନଥିବାରୁ ଏହାର ବିଲୋପ ଘଟିଲେ କ୍ଷତି ହେବ ନାହିଁ। ରଖିବାକୁ ଚାହିଁଲେ ଞ୍ଚ ଗୋଷ୍ଠୀରେ ଏହା ସମରୂପୀ ଭାବେ ସ୍ଥାନଲାଭ କରିପାରେ।

(୭) ସଂଯୁକ୍ତ ମାତ୍ରା /ଓ, ଏ/ ବର୍ଜନୀୟ।

(୮) ଓଡ଼ିଆ ବନାନ-ବିଧିରେ ମାତ୍ରା ସଂଯୋଗ ରୀତି ସମାନ କରିବାକୁ ଚାହିଁଲେ /୍ / ତ-ମାତ୍ରା ରେଫ ପରି ଉର୍ଦ୍ଧ୍ୱରେ ଦେବାକୁ ହେବ କିମ୍ବା- ତ- କୁ ପ୍ରାଧାନ୍ୟ ଦେଇ ତା'ର ନିମ୍ନରେ ଅନ୍ୟବର୍ଣ୍ଣ ସଂଯୁକ୍ତ କରିବା ହେବ ([illegible])। ସେପରି /ହ୍ଣ ହ୍ମ ହ୍ଲ ହ୍ନ/ ପରିବର୍ତ୍ତେ /ଣ୍ହ ମ୍ହ ଲ୍ହ ନ୍ହ/ ଲେଖିବାକୁ ହେବ।

(୯) /କ୍ଷ/ - /ଖ୍ୟ/ ମଧ୍ୟରେ କୌଣସି ଅବସ୍ଥାରେ ବିରୋଧ ପରିଦୃଷ୍ଟ ହେଉ ନ ଥିବାରୁ /କ୍ଷ/ ପରିତ୍ୟକ୍ତ ହେଲେ କ୍ଷତି ହୋଇନପାରେ।

(୧୦) /ୱ/ ଫଳା ମ- ବ୍ୟତୀତ ଅନ୍ୟତ୍ର ଅବର୍ଗୀୟ ବ-ର ମାତ୍ରା ରୂପେ ବ୍ୟବହୃତ ହୁଏ। ଏଥିପାଇଁ /ମ/ ସହିତ /ବ/ ସଂଯୁକ୍ତ କରାଯାଇପାରେ। ତେବେ ଏକ ଏକ ମାତ୍ରା ଭିନ୍ନ ଅବସ୍ଥାରେ ଭିନ୍ନ ଧ୍ୱନି ପ୍ରକାଶ କରିବା ଦୃଷ୍ଟାନ୍ତ ବିରଳ ନୁହେଁ।

(୧୧) ୯ ର ଆଭୂଷଣ ଲୋପ ହେବା ଉଚିତ।



# ଭାଷା ଓ ଲିପି

## ଗୋକୁଳାନନ୍ଦ ଦାସ

**ସମସ୍ୟା :**

ଭାଷାକୁ କେନ୍ଦ୍ରକରି ପୃଥିବୀରେ ଅନେକ ସାମାଜିକ ସମସ୍ୟା ସୃଷ୍ଟି ହୋଇଛି। ଅନେକ ଅସ୍ଥିରତା ଦେଖାଦେଇଛି। ଭାଷାକୁ ନେଇ ଅନେକ ଜାତି, ଅନେକ ଦେଶ ପରିଚିତ ହୋଇଛନ୍ତି।

ଭାରତ ଏକ ବହୁଭାଷୀ ରାଷ୍ଟ୍ର। ଅର୍ଥନୈତିକ ପ୍ରଗତିକୁ ଦୃଷ୍ଟିରେ ରଖି ପ୍ରଦେଶମାନ ଗଠନ ହୋଇନାହିଁ। ପ୍ରଦେଶ ଗଠନ ହୋଇଛି ଭାଷାକୁ କେନ୍ଦ୍ର କରି। ସେଥିପାଇଁ ଭାଷା ଆନ୍ଦୋଳନ ହୋଇଛି, ରକ୍ତପାତ ହୋଇଛି। ହିନ୍ଦୀକୁ ରାଷ୍ଟ୍ରଭାଷା ଘୋଷଣା କରିବାରେ ଉତ୍ତର ଭାରତର ଆଧିପତ୍ୟ ଦକ୍ଷିଣ ଭାରତ ଉପରେ ଲଦି ଦିଆଯାଇଛି ବୋଲି ଆକ୍ଷେପ କରାଯାଇଛି।

ଓଡ଼ିଆଭାଷୀ ଅଞ୍ଚଳକୁ ନେଇ ଓଡ଼ିଆ ପ୍ରଦେଶ ଗଠିତ। ଓଡ଼ିଆ ଭାଷୀ ଅଞ୍ଚଳ ଷଢ଼େଇକଳା, ଖରସୁଆଁ, ମେଦିନିପୁର ଅନ୍ୟ ପ୍ରଦେଶରେ ମିଶିଛି ବୋଲି ଅନେକଙ୍କର କ୍ଷୋଭ। ଓଡ଼ିଶାରେ ଅନେକ ଉପଭାଷା ରହିଛି, ଯାହା ଓଡ଼ିଆ ଲିପିରେ ଲେଖାହେଲେ ମଧ୍ଯ ଏହାର ବ୍ୟାକରଣ ଭିନ୍ନ। ସମ୍ବଲପୁରୀ ଭାଷାର ବାକ୍ୟ ବିନ୍ୟାସରେ ସ୍ୱତନ୍ତତା ରହିଛି। ଏହାର ସଙ୍ଗୀତରେ ରହିଛି କମନୀୟ ଦୃଷ୍ଟିଭଙ୍ଗୀ ଓ ଭାବପ୍ରବଣତା। ଭାରତରେ ଯେପରି ଭାଷାକୁ ଭିତ୍ତିକରି ଉତ୍ତେଜନା ରହିଛି, ଓଡ଼ିଶାରେ ମଧ୍ୟ ରହିଛି। ଗୋଟିଏ ଭାଷାର ମୌଳିକତା ଓ ସୌନ୍ଦର୍ଯ୍ୟ ଅନ୍ୟାନ୍ୟ ଭାଷା ପାଇଁ ଏକ ଅନୁକୂଳ ଓ ପରିପୂରକ ଭୂମିକା ଗ୍ରହଣ କରିବା ପରିବର୍ତ୍ତେ ଏକ ବିରୋଧାଭାଷ ସୃଷ୍ଟି କରୁଛି ଓ ଏହାଦ୍ୱାରା ଭାଷାର ପ୍ରଗତି, ଭାରତର ପ୍ରଗତି ବାଧାପ୍ରାପ୍ତ ହେଉଛି। ଦୁଇ ଭାଷାର ବିରୋଧାଭାଷ ସୃଷ୍ଟି ହୁଏ ଯଦି ଜଣଙ୍କ ପକ୍ଷରେ ଅନ୍ୟ ଭାଷା ବୋଧଗମ୍ୟ ହୁଏ ନାହିଁ। ବୋଧଗମ୍ୟ ନହେବାର ପ୍ରଥମ କାରଣ- ଭିନ୍ନ ଏକ ଲିପି, ଭିନ୍ନ ଏକ ବାକ୍ୟ ବିନ୍ୟାସ।

**ଏହାର ସମାଧାନ କ'ଣ ?**

ମୋର ମତରେ ସମାଧାନ ଯେତେ ଭାବପ୍ରବଣତାରେ ନାହିଁ, ଅଛି ବହୁ ଅଧିକ ଭାବରେ ବୈଜ୍ଞାନିକ ଦୃଷ୍ଟିକୋଣକୁ ଗ୍ରହଣ କରିବାରେ।

ମା' କୋଳରୁ ଆରମ୍ଭ କରି ଯେଉଁ ଭାଷା ଆମର ଭାବନାକୁ ବିନିମୟ କରିବାରେ, ଲିପିବଦ୍ଧ କରିବାରେ ସମୃଦ୍ଧ ହୋଇଛି, ଯେଉଁ ଭାଷାରେ କବିତା ସଂଗଠିତ ହୋଇ ମନୋରଞ୍ଜନ କରୁଛି, ସେ ଭାଷାକୁ ଜଳାଞ୍ଜଳି ଦେବା ପାଇଁ କେହି ପସନ୍ଦ କରିବେ ନାହିଁ। ମାତୃଭାଷା ପାଇଁ ସମସ୍ତେ ବଳିଷ୍ଠ ଭାବରେ ସ୍ୱାଭିମାନୀ। ଏହି ସ୍ୱାଭିମାନକୁ ଜଳାଞ୍ଜଳି ନ ଦେଇ ଅନ୍ୟ ଏକ ଭାଷାର ସୌନ୍ଦର୍ଯ୍ୟ ଓ ସମୃଦ୍ଧିକୁ କ'ଣ ଗ୍ରହଣ କରିହେବ ନାହିଁ ? ଉଦାହରଣ ସ୍ୱରୂପ ନିମ୍ନରେ ଏକ ବଙ୍ଗଳା ବାକ୍ୟ ଓଡ଼ିଆ ଲିପିରେ ଲିଖିତ -

"ଆମି ତୋମାକେ ଭାଲୋବାସି"

ଜଣେ ଓଡ଼ିଆ ଉପରୋକ୍ତ ବାକ୍ୟକୁ ବଙ୍ଗଳା ଲିପିରେ ନପଢ଼ି ଓଡ଼ିଆ ଲିପିରେ ପଢ଼ିଲେ ନିଷ୍ଚୟ ମୋଟାମୋଟି ଭାବରେ ବୁଝିପାରିବ ଯେ ଏହି ବାକ୍ୟର ଅର୍ଥଟି -

"ମୁଁ ତୁମକୁ ଭଲପାଏ"

ସେହିପରି ଜଣେ ବଙ୍ଗାଳି ଉପରୋକ୍ତ ଓଡ଼ିଆ ବାକ୍ୟକୁ ବଙ୍ଗଳା ଲିପିରେ ପଢ଼ିଲେ ମୋଟାମୋଟି ଭାବରେ ବୁଝିପାରିବ ଯେ 'ଆମି ତୋମାକେ ଭାଲୋବାସି' ବୋଲି କୁହାଯାଇଛି। ଯଦି ସମସ୍ତ ବଙ୍ଗଳା ଉପନ୍ୟାସ ଓ କାବ୍ୟ କବିତା ପୁସ୍ତକକୁ ଏହିପରି ଭାବରେ ଓଡ଼ିଆ ଲିପିରେ ଲେଖାଯାଇ ପାରନ୍ତା ଓ ଓଡ଼ିଆ ପୁସ୍ତକକୁ ବଙ୍ଗଳା ଲିପିରେ ଲେଖାଯାଇ ପାରନ୍ତା ତେବେ ପ୍ରତ୍ୟେକ ଓଡ଼ିଆ ଓ ବଙ୍ଗାଳି ପାଖରେ ଦୁଇ ସମୃଦ୍ଧ ଭାଷାକୁ ଅନୁଭବ କରିବାର ସୁଯୋଗ ସୃଷ୍ଟି ହୁଅନ୍ତା। ଏଥିରେ ଜାତିର ବା ଭାଷାର ସ୍ୱାଭିମାନ ସୁରକ୍ଷିତ ରହିବା ସଙ୍ଗେ ସଙ୍ଗେ ଦୁଇ ଜାତିର ଭାବ ବିନିମୟ ହୁଅନ୍ତା ଓ ଉଭୟ ସାହିତ୍ୟ ମଧ୍ୟ ସମୃଦ୍ଧ ହୁଅନ୍ତା।

ଆହୁରି ଭଲ ହୁଅନ୍ତା ଯଦି ଉଭୟ ଓଡ଼ିଆ ଓ ବଙ୍ଗଳା ଭାଷା ଲେଖିବା ପାଇଁ କେବଳ ଗୋଟିଏ ପ୍ରକାର ଲିପି ଥାଆନ୍ତା।

ଓଡ଼ିଆ ଓ ବଙ୍ଗଳା ଲିପିମାନଙ୍କ ସେଟ୍‌ରୁ ଗୋଟିଏ ପ୍ରକାର ଲିପି ସେଟ୍ କିପରି କରାଯାଇପାରେ ?

ଯେଉଁ ଲିପି ଦେଖିବାକୁ ସୁନ୍ଦର, ଲେଖିବାକୁ ସହଜ ଓ ସରଳ ସେହି ସେହି ଲିପିମାନଙ୍କୁ ଓଡ଼ିଆ ଓ ବଙ୍ଗଳା ଲିପି ସେଟ୍‌ରୁ ଚୟନ କରାଯାଇପାରେ। କିମ୍ବା ହୁଏତ ଦୁଇଟି ଲିପି ସେଟ୍‌କୁ ପରିହାର କରି ଏକ ସ୍ୱତନ୍ତ୍ର ଭିନ୍ନ ଧରଣର ଲପି ସେଟ୍ ପ୍ରସ୍ତୁତ କରାଯାଇପାରେ। ଏହା ମଧ୍ୟ ସମ୍ଭବ ଯେ ଗୋଟିଏ ଲିପି ବ୍ୟବହାର କରି ବିଭିନ୍ନ ଭାଷା

ସୃଷ୍ଟି ହୋଇପାରେ । ଯଥା- ରୋମାନ୍ ଲିପିକୁ ବ୍ୟବହାର କରି ସ୍ପାନିସ୍, ପର୍ତ୍ତୁଗୀଜ୍, ଇଟାଲି, ଫ୍ରେଞ୍ଚ, ଜର୍ମାନ, ଇଂରାଜୀ ଓ ନରୱେଜିଆନ୍ ଭାଷା ସୃଷ୍ଟି ହୋଇପାରିଛି ।

ସେହିପରି ଦେବନାଗରୀ ଲପିରେ (ଯାହା ପୁରାତନ ବ୍ରାହ୍ମୀ ଲିପିର ଏକ ରୂପାନ୍ତର ମାତ୍ର) ସଂସ୍କୃତ, ହିନ୍ଦୀ, ମରାଠୀ, ନେପାଳି, କୋଙ୍କଣୀ, ସିନ୍ଧୀ, ଭାଷା ଲେଖାଯାଉଛି । ଏହାଛଡ଼ା ଗୁଜୁରାଟୀ, ରାଜସ୍ଥାନୀ, ପଞ୍ଜାବୀ, ବଙ୍ଗଳା, ଓଡ଼ିଆ, ଅସମୀୟା ଭାଷାଗୁଡ଼ିକର ଲିପି ବ୍ରାହ୍ମୀ ଲିପିର ରୂପାନ୍ତର ହୋଇଥିବାରୁ ଏହା ପ୍ରାୟ ନାଗରୀ ଲିପି ସହ ଘନିଷ୍ଠ ଭାବରେ ସଂଯୁକ୍ତ ।

ଏହି ପରିପ୍ରେକ୍ଷୀରେ ବିଭିନ୍ନ ଜନନାୟକମାନଙ୍କର ମନ୍ତବ୍ୟକୁ ବିଶ୍ଳେଷଣ କରାଯାଇପାରେ ।

**ମହତ୍ମାଗାନ୍ଧୀ :** "ଭାରତବର୍ଷରେ ସର୍ବମାନ୍ୟ ହୋଇପାରିବା ଭଳି ଲିପି ହେଉଛି ଦେବନାଗରୀ ଲିପି । ଦେବନାଗରୀ ଲିପି ଦ୍ୱାରା ଦ୍ରାବିଡ଼ ଭାଷାଗୁଡ଼ିକ ମଧ୍ୟ ସହଜରେ ଶିଖି ହେବ ବୋଲି ମୋର ବିଶ୍ୱାସ ।"

"...ଲକ୍ଷ ଲକ୍ଷ ହିନ୍ଦୁ ଏବଂ ଏପରିକି ମୁସଲମାନଙ୍କ ପକ୍ଷରେ ଦେବନାଗରୀ ଶିକ୍ଷା କରିବା ଅଧିକ ସହଜ ।..." (ହରିଜନ ତା.୧୧.୨.୧୯୩୯)

**ଜନ କ୍ରାଏଷ୍ଟ :** "ମାନବ ମସ୍ତିଷ୍କରୁ ବାହାରି ଥିବା ବର୍ଣ୍ଣମାଳାଗୁଡ଼ିକ ମଧ୍ୟରେ ଦେବନାଗରୀ ସବୁଠାରୁ ଅଧିକ ପୂର୍ଣ୍ଣ ବର୍ଣ୍ଣମାଳା ଅଟେ ।"

**କୃଷ୍ଣସ୍ୱାମୀ ଆୟାର :** "ଭାଷା ଅଲଗା ଅଲଗା ଥାଇ ଯଦି ଭାଷାଗୁଡ଼ିକର ଲିପି ଗୋଟିଏ ହେବ, ତେବେ ଲୋକଙ୍କ ପକ୍ଷରେ ଶବ୍ଦ ବାକ୍ୟ ଅଭିବ୍ୟକ୍ତିରେ ଶୈଳୀର ସମାନତା ହେତୁ ନିଜ ଭାଷା ଛଡ଼ା ଅନ୍ୟ ଭାଷା ବୁଝିବା ସରଳ ହେବ ।"

**ଗୋଲୋକ ବିହାରୀ ଧଳ :** "ଭାରତୀୟ ଭାଷାମାନେ ଯଦି ଦେବନାଗରୀ ଲିପି ଗ୍ରହଣ କରନ୍ତି, ତାହେଲେ ଭାରତୀୟ ଭାଷାମାନଙ୍କ ମଧ୍ୟରେ ସହଯୋଗୀତା ଅନେକ ବେଶୀ ବଢ଼ିଯିବ ।"

**ଆଚାର୍ଯ୍ୟ ବିନୋବା ଭାବେ :** "ନାଗରୀ ଲିପିଠାରୁ ଅଧିକ ବୈଜ୍ଞାନିକ ଲିପି ମୁଁ ପୃଥିବୀରେ ପାଇ ନାହିଁ ।"

"...ମୁଁ ଏ ନାଗରୀ ଲିପି ଉପରେ ଗୁରୁତ୍ୱ ଦେଉଛି ତାହା ମୋର ଦେଶାଭିମାନ ନୁହେଁ । ମୋର ଧାରଣା ନାଗରୀ ଲିପି ଗୋଟିଏ ସ୍ୱୟଂସମ୍ପୂର୍ଣ୍ଣ ଲିପି । ଅବଶ୍ୟ ଏଥିରେ ସଂଶୋଧନର ଆବଶ୍ୟକତା ନାହିଁ, ତାହା ମୁଁ କହୁନାହିଁ ।..."

"ଏବେ ରୋମାନ ଲିପି ବିଷୟରେ କହିବି। ଏହି ଲିପି ଇଂରେଜୀ ଭାଷା ପାଇଁ ମଧ୍ୟ ଭଲ ନୁହେଁ, ସେ ଲିପିରେ ଏପରି ଅରାଜକତା ଚାଲିଛି ଯେ ଜର୍ଜ ବର୍ଣ୍ଣାଡ଼ଶ ତାଙ୍କ ଇଚ୍ଛାପତ୍ରରେ ରୋମାନ ଲିପି ସୁଧାରିବା ପାଇଁ ଅନେକ ଚେଷ୍ଟା କଲେ। ସେମାନେ ଯେଉଁ ଲିପି ତିଆରି କଲେ, ତାହାର ଚିଠା 'ଲଣ୍ଡନ ଟାଇମ୍ସ' ମୋ' ପାଖକୁ ପଠାଇଥିଲେ। ମୋର ବକ୍ତବ୍ୟ ହେଲା ବର୍ଣ୍ଣାଡ଼ଶଙ୍କ ପରି ବିଦ୍ୱାନ ମଧ୍ୟ ରୋମାନ୍ ଲିପିକୁ ଅଶୁଦ୍ଧ ମଣୁଥିଲେ।..."

"...ଆଉ ଗୋଟିଏ କଥା। ଇଂରେଜୀ ଭାଷାକୁ ମଧ୍ୟ ନାଗରୀ ଲିପିରେ ଶିଖି ହେବ। ଆଗ ନାଗରୀ ଲିପିରେ ଇଂରେଜୀ ଭାଷାଟା ଶିଖିସାରି ପରେ ରୋମାନ୍ ଲିପି ମଧ୍ୟ ଶିଖି ହେବ। ଶିକ୍ଷା ଦୃଷ୍ଟିରୁ ମଧ୍ୟ ଏହା ଠିକ୍ ହେବ। ମୁଁ ଏହିପରି ଭାବରେ ତେଲୁଗୁ, ଉର୍ଦ୍ଦୁ ଆଦି ଭାଷା ଶିଖି ପରେ ସେ ଲିପି ଶିଖିଲି।..."

**ମହାବୀର ପ୍ରସାଦ ଦ୍ୱିବେଦୀ :** "ଦେବନାଗରୀ ଲିପିର ବୈଜ୍ଞାନିକତା ସ୍ୱୟଂସିଦ୍ଧ ଅଟେ।"

**ରାମ ମନୋହର ଲୋହିଆ :** "...ମୋ' ମତରେ ଏ ପ୍ରକାର ବିଷମତା ରାଷ୍ଟ୍ରୀୟ ଏକତାକୁ ଦୁର୍ବଳ କରିବା ସଙ୍ଗେ ସଙ୍ଗେ ରାଷ୍ଟ୍ରର ସମୟ ମଧ୍ୟ ବରବାଦ କରୁଛି। ପୁଣି ଦେଶରେ ଅନେକ ପ୍ରକାର ଅକ୍ଷର ରହିବା ଦ୍ୱାରା ଭାରତବର୍ଷର ପିଲାମାନେ ସବୁଠାରୁ ବେଶୀ ହଇରାଣ ହେଉଛନ୍ତି। ସେମାନଙ୍କର ଉପରେ ଏ ଅକ୍ଷର ବୋଝ ଏତେ ବେଶୀ ହୋଇଯାଉଛି ଯେ ଅନ୍ୟ ଉପଯୋଗୀ ବିଷୟ ପାଇଁ ସମୟ, ଶକ୍ତି ଓ ବୁଦ୍ଧି ଖଟେଇବାକୁ ସେମାନଙ୍କର ଆଉ ସାମର୍ଥ୍ୟ ରହୁ ନାହିଁ। ସେମାନେ ଏତେ ପ୍ରକାର ବର୍ଣ୍ଣମାଳା କାହିଁକି ଶିଖିବେ ? ଏହି ରୂପେ ଦେଶର ସବୁ କ୍ଷେତ୍ରରେ ଏହି ବର୍ଣ୍ଣମାଳା ପାଇଁ ସମୟ, ଶକ୍ତି ଓ ବୁଦ୍ଧିର ଅପବ୍ୟୟ ହେଉଛି।..."

"...ବର୍ତ୍ତମାନ ଯେତେ ଲିପି ଚଳୁଛି, ତନ୍ମଧ୍ୟରେ ଦେବନାଗରୀ ଲିପି ସବୁଠାରୁ ବେଶୀ ବିଜ୍ଞାନସମ୍ମତ ଲିପି...।"

"...ମୁଁ କେବଳ ଏମିତି ଦର୍ଶାଇବାକୁ ଚାହେଁ ଯେ ଅନେକଗୁଡ଼ିଏ ଲିପି ଚଳିବା ଫଳରେ ଦେଶର ଦୁର୍ଗତି ଘଟିବା ସଙ୍ଗେ ସଙ୍ଗେ ଅଯଥାରେ ସମୟ, ବୁଦ୍ଧି ଓ ଶକ୍ତି କ୍ଷୟ ହେଉଛି।..." (ଧର୍ମଯୁଗ ସୌଜନ୍ୟରୁ)

**ଡ. ମଲ୍ଲିକ ମହମ୍ମଦ :** "... ପ୍ରାଚୀନ କାଳରେ ନାଗରୀ ଲିପି ଉପରେ ଯେ ବହୁତ ଗବେଷଣା ହୋଇଛି ଇତିହାସ ହେଉଛି ତା'ର ସାକ୍ଷୀ। ଇତିହାସରେ ଧୂମିଳ ଅନ୍ଧକାର

ଯୁଗରେ ଯେତେବେଳେ ଆଞ୍ଚଳିକ ଲିପିଗୁଡ଼ିକ ବିକଶିତ ହେବା ଆରମ୍ଭ କରିଥିଲେ ସେତେବେଳେ ସୁଦ୍ଧା ଦେଶର ପ୍ରାୟ ସବୁ ଅଞ୍ଚଳର ଅତିରିକ୍ତ ଲିପି ରୂପେ ନାଗରୀ ଲପିର ପ୍ରଚାର ଥିଲା।..."

"...ବାସ୍ତବରେ ଦେବନାଗରୀର ବିରୋଧ ଇଂରେଜଙ୍କ ଅମଳରେ ଆରମ୍ଭ ହେଲା। 'ନାଗରୀ' ପ୍ରଚାର ଦ୍ୱାରା ଭାରତୀୟମାନେ ଉଦ୍‌ବୁଦ୍ଧ ହେବା ସ୍ୱାଭାବିକ ଥିଲା। ଇଂରେଜ ଏହା ପସନ୍ଦ କରୁନଥିଲେ। ସେଥିପାଇଁ ସେମାନେ ନାଗରୀ ପ୍ରଚାରରେ ବାଧା ଦେଲେ। କିନ୍ତୁ ଭାରତୀୟଙ୍କ ମଧ୍ୟରେ ଦେଖା ଦେଇଥିବା ଜାଗରଣକୁ ଦବେଇ ପାରିଲେ ନାହିଁ। ଦେଶଭକ୍ତ ନାଗରିକମାନେ ଯେତେବେଳେ ନାଗରୀ ଓ ନାଗରିକ ମଧ୍ୟରେ ଥିବା ସମ୍ପର୍କକୁ କଳି ପାରିଲେ ସେତେବେଳେ ନାଗରୀ ପ୍ରଚାର ଆନ୍ଦୋଳନ ଆରମ୍ଭ ହେଲା।..."

"...ଦେଶର ରାଷ୍ଟ୍ରୀୟ ସଂହତି ପାଇଁ ଭାରତର ନାନାବିଧ ଭାଷା ମଧ୍ୟରେ ଗୋଟିଏ ଯୋଗସୂତ୍ର ରକ୍ଷାକାରୀ ସମ୍ପର୍କ ଲିପି ବା ସହଲିପି ରୂପେ ଦେବନାଗରୀ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିବ। ଯେଉଁ ଭାଷାଗୁଡ଼ିକର ସ୍ୱତନ୍ତ୍ର ଲପି ଅଛି ସେହି ଭାଷା ପାଇଁ ଦେବନାଗରୀକୁ ଏକ ଅତିରିକ୍ତ ଲିପି ବା ସଂଯୁକ୍ତ ଲିପି ରୂପେ ଗ୍ରହଣ କରାଗଲେ ବିଭିନ୍ନ ଭାଷା ମଧ୍ୟରେ ନିକଟ ସମ୍ପର୍କ ସୃଷ୍ଟି ହୋଇପାରିବ। ଅଥଚ ସେହି ଭାଷାର ଲିପିଗୁଡ଼ିକର କୌଣସି କ୍ଷତି ହେବନାହିଁ।..."

"ଅନେକଙ୍କର ଏ ଭ୍ରମ ଧାରଣା ରହିଛି ଯେ, ନାଗରୀ ହେଉଛି ହିନ୍ଦୀ ଭାଷାର ଲିପି ଏବଂ ନାଗରୀ ମାଧ୍ୟମରେ ହିନ୍ଦୀ ଭାଷାକୁ ଲଦି ଦେବାର ଉଦ୍ୟମ ହେଉଛି। ମାତ୍ର ଏପ୍ରକାର ଧାରଣାର କୌଣସି ଭିତ୍ତି ନାହିଁ। ଗୋଟିଏ ଯୋଗସୂତ୍ର ରକ୍ଷାକାରୀ ସହଲିପି ବା ସମ୍ପର୍କ ଲିପି ଭାବରେ ନାଗରୀ ଲିପିର ଭୂମିକାକୁ ଉପଲବ୍ଧି କରିବା ଆବଶ୍ୟକ।..."

"...ନାଗରୀ ଲିପିରେ ପ୍ରକାଶ ପାଇଥିବା ଉର୍ଦ୍ଦୁ ସାହିତ୍ୟ କେତେ ଲୋକପ୍ରିୟ ହୋଇପାରିଛି ତାହା ସମସ୍ତେ ଜାଣନ୍ତି। ଉର୍ଦ୍ଦୁର ପାଠକ ସଂଖ୍ୟା ବୃଦ୍ଧି ଲାଭ କଲା। ଉର୍ଦ୍ଦୁ ଲିପିରେ ଛପା ହେଉଥିବା ଉର୍ଦ୍ଦୁ ସାହିତ୍ୟଠାରୁ ନାଗରୀ ଲିପିରେ ଛାପା ହେଉଥିବା ସାହିତ୍ୟର କାଟ୍‌ତି ବହୁତ ବଢୁଥିବାର ଦେଖାଯାଉଛି।..."

"...ଦେବନାଗରୀ ଭାରତର ବିଭିନ୍ନ ଭାଷା ମାଧ୍ୟମରେ ଏକ ଅତିରିକ୍ତ ଯୋଗସୂତ୍ର ରକ୍ଷାକାରୀ ଲିପି ଭାବରେ ଅତ୍ୟନ୍ତ ଉପଯୋଗୀ ପ୍ରମାଣିତ ହୋଇଛି। ନାଗରୀର ପ୍ରସାର ଓ ପ୍ରଚାର କ୍ଷେତ୍ରରେ ଯେଉଁ ବାଧା ଓ ସନ୍ଦେହ ରହିଛି ତାହା ଦୂର କରି ରାଷ୍ଟ୍ରୀୟ ଏକତାର ମହତ୍ତ୍ୱକୁ ଲୋକଙ୍କ ଆଗରେ ଉପସ୍ଥାପିତ କରିବାର ଆବଶ୍ୟକତା ରହିଥିବାରୁ ଏ ଦିଗରେ ଦେବନାଗରୀ ଲିପି ପରିଷଦ ବିଶେଷ କାର୍ଯ୍ୟ କରୁଛନ୍ତି। ବିବିଧ ଭାଷା କ୍ଷେତ୍ରରେ ନାଗରୀର

ଉପଯୋଗୀତାକୁ ଉପଲବ୍ଧି କରାଇବା ପାଇଁ ମଧ୍ୟ ପରିଷଦ ଉଦ୍ୟମ କରୁଛନ୍ତି। କୌଣସି ପ୍ରକାର ରାଜନୈତିକ ବା ଧାର୍ମିକ ଉଦ୍ଦେଶ୍ୟ ଏ କାର୍ଯ୍ୟ ପଛରେ ନାହିଁ।...”

**ଡ. କୁଞ୍ଜବିହାରୀ ତ୍ରିପାଠୀ :** “...ଏହି ନାଗରୀ ଲିପି ଆରବିକ ଲିପି ଏବଂ ରୋମାନ୍ ଲିପି ଅପେକ୍ଷା ଅଧିକ ଭାଷାବିଜ୍ଞାନ ସମ୍ମତ।...”

**ଉତ୍କଳମଣି ଗୋପବନ୍ଧୁ ଦାସ :** “...ଭାରତରେ ଗୋଟିଏ ଲିପି ଚଳାଇବା ଲାଗି କେତେ ଲୋକଙ୍କର ଉଦ୍ୟମ ହେଉଛି। ହେଲେ ଅବଶ୍ୟ ଦେବନାଗରୀ ହେବ। ଦେବନାଗରୀ ଲିପି ଲେଖିପାରିବା କିଛି ଅସାଧ୍ୟ ନୁହେଁ, ଏଥିରେ ଅନ୍ୟ କୌଣସି ପ୍ରାଦେଶିକ ଭାଷା ବା ଅକ୍ଷରର ଅବମାନନାର ହେଉ ନାହିଁ କିମ୍ବା କାହାରି ଜାତୀୟତାରେ ହାନି ଘଟିବାର କଥା ନୁହେଁ।” (ସମାଜ, ତା.୩୧.୧.୧୯୨୦)

ଏହି ପରିପ୍ରେକ୍ଷୀରେ ୧୯୬୧ ମସିହା ଅଗଷ୍ଟ ୧୦-୧୨ ତାରିଖରେ ଦିଲ୍ଲୀରେ ହୋଇଥିବା ମୁଖ୍ୟମନ୍ତ୍ରୀମାନଙ୍କର ସମ୍ମିଳନୀରେ ଗୃହୀତ ନିମ୍ନ ପ୍ରସ୍ତାବକୁ ବିଚାର କରାଯାଇପାରେ -

**“ଭାରତର ଭାଷାଗୁଡ଼ିକ ନିମନ୍ତେ ଗୋଟିଏ ଲିପି ରହିବା ବାଞ୍ଛନୀୟ। ବିଭିନ୍ନ ଭାଷା ସହିତ ନିକଟ ସମ୍ପର୍କରେ ଆସିବା ପାଇଁ ଏହା ଏକ ବଳିଷ୍ଠ ଯୋଗସୂତ୍ର ହୋଇପାରିବ। ଦେଶର ଏକାତ୍ମତାକୁ ଟାଣ କରିବାରେ ଏହା ସହାୟକ ହେବ, ଭାରତର ଆଜିର ଭାଷା ସମ୍ବନ୍ଧୀୟ ବାୟୁମଣ୍ଡଳରେ ଏକମାତ୍ର ନାଗରୀ ଲିପି ହିଁ ଏହି ସ୍ଥାନ ଗ୍ରହଣ କରିପାରିବ।”**

ନାଗରୀ ଲିପିକୁ ଭାରତୀୟ ଭାଷାଗୁଡ଼ିକ ନିମନ୍ତେ ସହଲିପି ଭାବେ ପ୍ରଚଳନ କରିବାକୁ ଆଚାର୍ଯ୍ୟ ବିନୋବା ଭାବେଙ୍କ ଆଗ୍ରହ କ୍ରମେ ଅଖିଳ ଭାରତୀୟ ସ୍ତରରେ ୧୯୭୪ ମସିହାରେ ‘ନାଗରୀ ଲିପି ପରିଷଦ’ ଗଠିତ ହୋଇଛି। ଓଡ଼ିଶାରେ ଅଧିକ ଭାରତୀୟ ନାଗରୀ ଲିପି ପରିଷଦର ଶାଖା ରୂପେ ୧୯୭୬ ମସିହାରେ ଉତ୍କଳ ନାଗରୀ ଲିପି ପରିଷଦ ଗଠିତ ହୋଇଛି; ‘ଓଡ଼ିଆ ବିଶ୍ୱ ନାଗରୀ’ ନାମକ ଏକମାତ୍ର ମାସିକ ପତ୍ରିକା ପ୍ରକାଶ ପାଉଛି। ଏହାବ୍ୟତୀତ ଉତ୍କଳର ବିଶିଷ୍ଟ କବିମାନଙ୍କର ଲୋକପ୍ରିୟ କବିତାର ଏକ ସଂକଳନ ଓଡ଼ିଆ ଭାଷା ଓ ନାଗରୀ ଲିପିରେ ‘ଉତ୍କଳୀୟ କବି ବିଭୂତି’ ନାମରେ ପ୍ରକାଶିତ ହୋଇଛି।

**ଦୁଇଟି ଭାଷା ଭିନ୍ନ କିପରି ହୁଏ :**

ପୂର୍ବ ପୃଷ୍ଠାମାନଙ୍କରେ ଭାଷାକୁ ଗାଣିତିକ ଦୃଷ୍ଟିକୋଣରୁ ପର୍ଯ୍ୟାଲୋଚନା କରାଯାଇଛି। ତେଣୁ ଭାଷାର ଲିପିଜନିତ ସମସ୍ୟାକୁ ମଧ୍ୟ ଏହି ପରିପ୍ରେକ୍ଷୀରେ ବିଶ୍ଳେଷଣ କରାଯାଇପାରେ।

ପ୍ରଥମେ ଓଡ଼ିଆ ଭାଷାକୁ ଅନୁଶୀଳନ କରାଯାଉ। ଏ କ୍ଷେତ୍ରରେ ଓଡ଼ିଆ ଲିପି ସେଟ୍ ହେଲା -

$\sum_0 :=$ {ଅ, ଆ, ଇ, ଈ...}

ଯଦି ଓଡ଼ିଆ ବ୍ୟାକରଣ ଗ୍ରହଣ କରାଯାଏ, ତେବେ ଏହା ଓଡ଼ିଆ ଭାଷା $L_0$ ସୃଷ୍ଟି କରିବ; ଅର୍ଥାତ୍

$L_0 = \{x \in \sum_0 : G_0(x)\}$

ରୋମାନ୍ ଲିପି ସେଟ୍

$\sum_R = \{a, b, c, d, ....\}$

ବ୍ୟବହାର କରି ଯଦି ଓଡ଼ିଆ ବ୍ୟାକରଣ ପ୍ରୟୋଗ କରାଯାଏ, ତେବେ ଯେଉଁ ଭାଷା ସୃଷ୍ଟି ହେବ ତାହା ହେଲା-

$L = \{x \in \sum_R : G_0(x)\}$

ଓ ଗଠିତ ଭାଷାର ଏକ ନମୁନା ହେଉଛି -

"Tume gharaku jauchha"

ଅର୍ଥାତ୍ ଓଡ଼ିଆ ବାକ୍ୟ 'ତୁମେ ଘରକୁ ଯାଉଛ'କୁ କେବଳ ରୋମାନ୍ ଲିପିରେ ପ୍ରକାଶ କରାଯାଇଛି। ଏ କ୍ଷେତ୍ରରେ ଭାଷା ହେଉଛି ଓଡ଼ିଆ କିନ୍ତୁ ଭିନ୍ନ ଏକ ଲିପି (ରୋମାନ)। ଏହା ଏହିପରି ଏକ ଘଟଣା- ଭାଷା ହେଉଛି ଫ୍ରେଞ୍ଚ ବା ଜର୍ମାନ୍ କିନ୍ତୁ ଲିପି ହେଉଛି ରୋମାନ୍। ଏଥିରୁ ସ୍ପଷ୍ଟ ଯେ,

ଲିପି ଯାହା ଗ୍ରହଣ କରାଯାଉ ପଛେ ଭାଷା ନିର୍ଭର କରୁଛି ଏହାର ବ୍ୟାକରଣ ଉପରେ। ତେଣୁ ଭାଷା ସହିତ ଯେଉଁ ସ୍ୱାଭିମାନ ଜଡ଼ିତ ତାହା ହେଉଛି ଏହାର ବ୍ୟାକରଣ ଓ ବାକ୍ୟର ଶୈଳୀ ଉପରେ; ଲିପି ଉପରେ ନୁହେଁ।

**ଭାରତ ପାଇଁ ଏକ ଲିପି :**

ତେଣୁ ଭାରତ ପାଇଁ ଏକ ଲିପି ଗ୍ରହଣ କରି ବିଭିନ୍ନ ଭାରତୀୟ ଭାଷାର ସ୍ୱାତନ୍ତ୍ର୍ୟ, ବିଭିନ୍ନତା ଓ ସ୍ୱାଭିମାନକୁ ରକ୍ଷା କରାଯାଇପାରିବ। ସେହି ଲିପିଟି ନାଗରୀ ଲିପି ବା ଏହାର ପରିମାର୍ଜିତ ବା ପରିବର୍ଦ୍ଧିତ ସଂସ୍କରଣ ହେବ ତାହା ଭିନ୍ନ ଏକ ପ୍ରଶ୍ନ ଯାହାର ସମାଧାନ କେବଳ ବୈଜ୍ଞାନିକ ଦୃଷ୍ଟିକୋଣରୁ କରାଯାଇପାରେ।

ଯେଉଁ ଲିପି ବା ଅକ୍ଷର କମ୍ ସମୟ ମଧ୍ୟରେ ସରଳ ଭାବରେ କ୍ଷିପ୍ର ଗତିରେ ଲେଖାଯାଇ ପାରିବ ତାହା ଗ୍ରହଣୀୟ। ଏହାକୁ ଧ୍ୟାନ ରଖି ପ୍ରଚଳିତ ଲିପିରେ ସଂସ୍କାର

କରାଯାଇପାରେ। ଏହା ମଧ୍ୟ ହୋଇପାରେ, ସମସ୍ତ ଭାରତୀୟ ଲିପିମାନଙ୍କ ମଧ୍ୟରୁ ଯାହା ବୈଜ୍ଞାନିକ ଦୃଷ୍ଟିକୋଣରୁ ପସନ୍ଦଯୋଗ୍ୟ ତାହା ଗ୍ରହଣ କରାଯାଇପାରେ। ହୋଇପାରେ ଏହି ପସନ୍ଦ ସେଟ୍‌ରେ ଓଡ଼ିଆର 'ଏ', ବଙ୍ଗଳାର 'ବ' ନାଗରୀର 'ଷ' ସ୍ଥାନ ପାଇପାରେ।

ଭାଷା ଓ ଭାଷାମାନଙ୍କର ଲିପିକୁ ନେଇ ନିମ୍ନଲିଖିତ ଚାରିପ୍ରକାର ସାମାଜିକ ପରିସ୍ଥିତି ସୃଷ୍ଟି ହୋଇପାରେ।

- ବହୁଭାଷା ଓ ବହୁଲିପି
- ବହୁଭାଷା ଓ ଏକ ଲିପି
- ଏକ ଭାଷା ଓ ବହୁଲିପି
- ଏକ ଭାଷା ଓ ଏକ ଲିପି

ପାଠକମାନେ କିଛି ସମୟ ଚିନ୍ତା କରି କହିବେ କି ଉପରୋକ୍ତ ଚାରି ପରସ୍ଥିତି ମଧ୍ୟରୁ କେଉଁଟା ବେଶୀ ଗ୍ରହଣଯୋଗ୍ୟ ଓ କାହିଁକି ?

'ବହୁ ଭାଷା ଓ ବହୁ ଲିପି' ଭାରତ ପାଇଁ ସମସ୍ୟା ସୃଷ୍ଟି କରୁଛି ବୋଲି ଅନୁଭବ କରି ୧୯୬୧ ମସିହାରେ ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀମାନେ ଯେଉଁ ପ୍ରସ୍ତାବ ଗ୍ରହଣ କରିଥିଲେ, ତାହା ଥିଲା -

'ବହୁ ଭାଷା, ଏକ ଲିପି।'

ଏକ ଭାଷା ପାଇଁ ବହୁ ଲିପି ବ୍ୟବହାର କରିବା ପସନ୍ଦଯୋଗ୍ୟ ନୁହେଁ। କାରଣ ଏଥିରେ କେବଳ ଲିପିମାନଙ୍କ ସହିତ ପରିଚୟ ଅନାବଶ୍ୟକ ଭାବେ ଜଟିଳ ସମସ୍ୟା ସୃଷ୍ଟି କରିବ। ଭାରତ ପାଇଁ ଏକ ଭାଷା ଓ ଏକ ଲିପି ହୁଏତ ସବୁଠାରୁ ଭଲ ହୋଇଥାଆନ୍ତା; କିନ୍ତୁ ତାହା ବର୍ତ୍ତମାନ ପରିସ୍ଥିତିରେ ସମ୍ଭବ ନୁହେଁ। କାରଣ ଭାରତର ଅନେକ ଭାଷା ଉନ୍ନତ। ତେଣୁ କୌଣସି ଭାଷା ସପକ୍ଷରେ ଅନ୍ୟ ଭାଷାକୁ ଜଳାଞ୍ଜଳି ଦେବା ଠିକ୍ ନୁହେଁ। ବରଂ ଗୋଟିଏ ଭାଷାର ସମୃଦ୍ଧି ଅନ୍ୟ ଭାଷାର ଅଧିକ ସମୃଦ୍ଧି ସୃଷ୍ଟି କରିବା ପାଇଁ ପ୍ରୋତ୍ସାହନ ଦେବା ଆବଶ୍ୟକ।

ଏହି ପରିପ୍ରେକ୍ଷୀରେ 'ବହୁ ଭାଷା ଓ ଏକ ଲିପି' ସମସ୍ୟାଟି ଆଲୋଚନା କରିବା। ସ୍ମରଣ କରାଯାଇପାରେ ଯେ ୧୯୬୧ ମସିହାରେ ମୁଖମନ୍ତ୍ରୀମାନଙ୍କର ପ୍ରସ୍ତାବ ଥିଲା କେବଳ ଦେବନାଗରୀ ଲିପିରେ ସମସ୍ତ ଭାରତୀୟ ଭାଷାକୁ ପ୍ରକାଶ କରବା ପାଇଁ। ଆଲୋଚନାକୁ ଶାଣିତ କରିବା ପାଇଁ କେବଳ ଦୁଇଟି ଭାଷା ପରିସରଭୁକ୍ତ କରିବା। ତାହା ହେଲା -

ଇଂରାଜୀ ଭାଷାର ଏକ ବାକ୍ୟ :

'Come tomorrow'

ଏହାକୁ ଓଡ଼ିଆ ଲିପିରେ ଲେଖାଯାଇପାରେ

'କମ୍ ଟୁମରୋ'

ଲକ୍ଷ୍ୟକର ଯେ ଇଂରେଜୀ ଭାଷାର ଗୋଟିଏ ଉଚ୍ଚାରଣ ପାଇଁ ଗୋଟିଏ ବର୍ଣ୍ଣ ନଥାଏ ବା ଗୋଟିଏ ବର୍ଣ୍ଣ ପାଇଁ ଗୋଟିଏ ଉଚ୍ଚାରଣ ହୁଏ ନାହିଁ। ଉଦାହରଣ ସ୍ୱରୂପ 'g'ର ଗୋଟିଏ ଉଚ୍ଚାରଣ ହେଉଛି 'ଗ' ଯଥା 'going', ଆଉ ଏକ ଉଚ୍ଚାରଣ 'ଯ' ଯଥା Germany, ଆଉ ଏକ ଉଦାହରଣ 'ଜି' geography।

ସେହିପରି 'daughter' ଶବ୍ଦକୁ 'ଡାଉଟର' ବା 'ଡଟର' ଉଚ୍ଚାରଣ କରିବା ସମ୍ଭାବନା ଇଂରାଜୀ ଲିପିରେ ବେଶୀ କିନ୍ତୁ ଓଡ଼ିଆ ଲିପିରେ ଆଦୌ ନାହିଁ।

କିନ୍ତୁ ଇଂରାଜୀ ଭାଷାକୁ ଓଡ଼ିଆ ଲିପିରେ ଲେଖିଲେ ଅନ୍ୟ ଏକ ସମସ୍ୟା ସୃଷ୍ଟି କରିପାରେ। ସେ ସମସ୍ୟାଟି ହେଉଛି ଏହିପରି -

ମନେକର ସୁନ୍ଦରଗଡ଼ ଗାଁ ଅଞ୍ଚଳରେ ଜଣେ ଚତୁର୍ଥ ଶ୍ରେଣୀ ଛାତ୍ରୀ ମନୋରମା ସନ୍ଧ୍ୟା ବେଳେ ଘର ଅଗଣାରେ ବସି ଇଂରାଜୀ ଭାଷାକୁ ଅଭ୍ୟାସ କରି ବାରମ୍ବାର ଉଚ୍ଚ ସ୍ୱରରେ ଆବୃତ୍ତି କରୁଛି -

"I go"

ତା'ର ଆଈ ଏହି କଥାକୁ ବାରମ୍ବାର ଶୁଣି ଚିତ୍କାର କରି କହୁଛି -

"କାହିଁକି ରଡୁଛୁ ?"

କାରଣ "I go" ବାକ୍ୟଟିକୁ ଓଡ଼ିଆ ଲିପିରେ ଲେଖିଲେ ହେବ 'ଆଇ ଗୋ' ଏବଂ ମନୋରମାର ଆଈ "I go" ର ଓଡ଼ିଆ ଲିପିରେ ଲେଖା 'ଆଇ ଗୋ'ର ଓଡ଼ିଆ ଭାଷାକୁ ଗ୍ରହଣ କରୁଛି।

ସେହିପରି ଇଂରାଜୀ ବାକ୍ୟ "They will go"ର ଓଡ଼ିଆ ଲିପିରେ ଲେଖିହେବ 'ଦେ ୱିଲ୍ ଗୋ' ଓ ଏହାର ଓଡ଼ିଆ ଭାଷାର ଅର୍ଥ ହେଉଛି-

'ମୋତେ ୱିଲ୍ (= ପିଆଜ) ଦେ'

ଅର୍ଥାତ୍ "I go, They will go"

ଏହାକୁ ଓଡ଼ିଆ ଲିପିରେ ଲେଖିଲେ ଅର୍ଥ ହେବ- 'ହେ ଆଈ, ପିଆଜ ଦେ।'

ତେଣୁ ଇଂରାଜୀ ଭାଷାକୁ ଯଦି କେବଳ ଓଡ଼ିଆ ଲିପିରେ ଲେଖାଯାଏ ତାହାହେଲେ ଯେଉଁପ୍ରକାର ଦ୍ୱିଅର୍ଥବୋଧକ ଭାଷା ସୃଷ୍ଟି ହେବ (ଯେପରି ଉପରୋକ୍ତ ଉଦାହରଣ) ସେଥିପ୍ରତି ସତର୍କତା ଅବଲମ୍ବନ କରିବା ଦରକାର।

ଆଉ ଏକ ସମ୍ଭାବନା -

ଭାଷା- ଓଡ଼ିଆ ଓ ଇଂରାଜୀ ମାଧ୍ୟମ - ଇଂରାଜୀ ଲିପି

ମୋ' ପାଖକୁ ଅନେକ ଇଣ୍ଟରନେଟ୍‌ରେ ଚିଠି ଆସୁଛି। ଯାହା ଓଡ଼ିଆ ଭାଷା, ଲିପି ଇଂରାଜୀ ଏବଂ ଏହାକୁ ପଢ଼ି ବୁଝିବାରେ ମୋର କୌଣସି ଅସୁବିଧା ନାହିଁ। ଯଥା-

"dukhita mu jai paribi nahi"

ଓଡ଼ିଆ ଭାଷାରେ ଏହାର ଅର୍ଥ 'ସେ ଆସିପାରିବ ନାହିଁ ବୋଲି ଦୁଃଖିତ।'

ଆଉ ଗୋଟିଏ ଉଦାହରଣ- "Fool day" ଏହାଦ୍ୱାରା ଇଂରାଜୀ ଲିପିରେ ଜଣେ ଆଉ ଜଣକୁ 'ଫୁଲ ଦେ' ବୋଲି କହୁଛି। କିନ୍ତୁ ଇଂରାଜୀ ଭାଷାର ଏହାର ଅର୍ଥ ଭିନ୍ନ ବାକ୍ୟ ସୃଷ୍ଟି ହୋଇପାରେ। ଭାରତର ଅନେକ ଭାଷାକୁ ଯଦି ଦେବନାଗରୀରେ ଲେଖାଯାଏ ତେବେ ବହୁପ୍ରକାରର ଜଟିଳତା ସୃଷ୍ଟି ହେବାର ସମ୍ଭାବନା ରହିଅଛି। ଏ ସମସ୍ୟାର ସମାଧାନ ହୁଏତ ହୋଇପାରେ ଯଦି ଭିନ୍ନ ଏକ ନୂଆ ଲିପି ପଦ୍ଧତିରେ ସମସ୍ତ ଭାରତୀୟ ଭାଷାକୁ ପ୍ରକାଶ କରାଯାଏ।

ଲକ୍ଷ୍ୟକର ଯେ ଏହାଦ୍ୱାରା କୌଣସି ଭାଷାର ବ୍ୟାକରଣ ବା ସ୍ୱାଭିମାନ ପ୍ରତି ଆଘାତ ନାହିଁ।

ସୁଦୃଶ୍ୟ ପୋଥିଚିତ୍ର



ସୌଜନ୍ୟ : ଇଣ୍ଟରନେଟ୍



# ଓଡ଼ିଆ ଲିପି

## ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ

ସମ୍ବଲପୁର ଜିଲ୍ଲାର ବିକ୍ରମଖୋଲ ନାମକ ପାହାଡ଼ ଉପରେ ଏକ ପ୍ରକାର ଚିହ୍ନ ଖୋଦିତ ହୋଇଅଛି। ମନେହୁଏ, ଏହା କେବେହେଁ ସ୍ୱତଃ ନିର୍ମିତ ହୋଇ ନାହିଁ, ଅର୍ଥାତ୍ ପ୍ରାକୃତିକ ନୁହେଁ। ବିଶେଷଜ୍ଞଙ୍କ ମତରେ, ଏସବୁ ପ୍ରାଚୀନ ଲିପିର ନିଦର୍ଶନ। ଏହାକୁ ଯଦି ଲିପି ଆକାରରେ ଗ୍ରହଣ କରାଯାଏ, ତେବେ ବିକ୍ରମଖୋଲର ଲିପି ହିଁ ଓଡ଼ିଶାର ପ୍ରାଚୀନତମ ଲିପି।

ଏପର୍ଯ୍ୟନ୍ତ ଆବିଷ୍କୃତ ଓ ପଠିତ ଲିପିଗୁଡ଼ିକ ମଧ୍ୟରେ ପୁରୀ ଜିଲ୍ଲାର ଧଉଳି ଓ ଗଞ୍ଜାମ ଜିଲ୍ଲାର ଜଉଗଡ଼ରେ ଦୁଇଟି ଶିଳାଲିପି ସମ୍ରାଟ ଅଶୋକଙ୍କ ରାଜତ୍ୱ କାଳରେ ଖୋଦିତ ହୋଇଅଛି। ଏ ଦୁଇଟି ଲେଖ ଓଡ଼ିଶାର ସର୍ବପ୍ରାଚୀନ ଲିପିର ନିଦର୍ଶନ। ମୌର୍ଯ୍ୟସମ୍ରାଟ ଅଶୋକଙ୍କ ଆଦେଶରେ ଖ୍ରୀଷ୍ଟପୂର୍ବ ୨୫୭ରେ ଏ ଦୁଇଟି ଗିରି-ଅନୁଶାସନ ଖୋଦିତ ହୋଇଥିଲା। (ଭାରତର ବିଭିନ୍ନ ସ୍ଥାନରେ ମିଳୁଥିବା) ଅଶୋକଙ୍କ ଅନ୍ୟାନ୍ୟ ଗିରି ଓ ସ୍ତମ୍ଭ ଅନୁଶାସନ ଏହି ଲିପିରେ ହିଁ ଲିଖିତ। ଏହି ଲିପିର ନାମ ବ୍ରାହ୍ମୀ ଓ ଏହା ମୌର୍ଯ୍ୟଯୁଗରେ ସମଗ୍ର ଭାରତରେ ଏକମାତ୍ର ବ୍ୟବହୃତ ଲିପି।

ଓଡ଼ିଶାରେ ବ୍ରାହ୍ମୀ ଲିପିର ଦ୍ୱିତୀୟ ନିଦର୍ଶନ, ଭୁବନେଶ୍ୱର ନିକଟରେ ଅବସ୍ଥିତ ଉଦୟଗିରି ଗହ୍ୱରରେ ହାତୀଗୁମ୍ଫାର ଗିରିଲିପି। ଏହା ପ୍ରକୃତରେ ଏକ ଐତିହାସିକ ଲିପି। ଏଥିରେ ସମ୍ରାଟ ଖାରବେଳଙ୍କ ତେର ବର୍ଷର କାର୍ଯ୍ୟକଳାପ ବର୍ଣ୍ଣିତ ହୋଇଅଛି। ଏହାର ଲିଖନକାଳ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ବୋଲି ନିର୍ଣ୍ଣିତ ହୋଇଅଛି।

ଓଡ଼ିଆ ଲିପି ବାସ୍ତବରେ ଅନ୍ୟ ସହୋଦରା ଲିପିଗୁଡ଼ିକ ପରି ପ୍ରାଚୀନ ଭାରତର ଉକ୍ତ ବ୍ରାହ୍ମୀ ଲିପିରୁ ବିବର୍ତ୍ତିତ ହୋଇ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀଠାରୁ ଖ୍ରୀଷ୍ଟୀୟ ୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ ବିକାଶର ସ୍ତର ମଧ୍ୟ ଦେଇ ଆଧୁନିକ ପ୍ରଚଳିତ ଲିପିରେ ପରିଣତ ହୋଇଅଛି। ୧୪ଶ ଶତାବ୍ଦୀରେ ହିଁ ଏହା ସମ୍ପୂର୍ଣ୍ଣ ଗୋଲାକାର ଓଡ଼ିଆ ଲିପିରେ ପରିଣତ ହୋଇଅଛି। ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ମିଳୁଥିବା ବହୁ ଶିଳାଲେଖରୁ ଆଧୁନିକ ଓଡ଼ିଆ ଲିପିର କ୍ରମବିକାଶର କେତେକ ସ୍ତର ସମ୍ପର୍କରେ ସ୍ପଷ୍ଟ ସୂଚନା ମିଳୁଅଛି। ଅତଏବ ଏହି

ଶିଳାଲେଖଗୁଡ଼ିକର ଲିପିକୁ କେତେକ ଶ୍ରେଣୀରେ ବିଭକ୍ତ କରି ନିମ୍ନଲିଖିତ ଐତିହାସିକ କାଳାନୁକ୍ରମରେ ଓଡ଼ିଆ ଲିପିର ସ୍ପଷ୍ଟ ବିକାଶ ଲକ୍ଷ୍ୟ କରାଯାଇପାରେ ।

(୧) ବ୍ରାହ୍ମୀ ଲିପି- ଖ୍ରୀଷ୍ଟପୂର୍ବ ତୃତୀୟ ଠାରୁ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରଚଳିତ। ଅଶୋକଙ୍କ ଧଉଳି ଓ ଜଉଗଡ଼ ଅନୁଶାସନ ଏବଂ ଖାରବେଳଙ୍କ ହାତୀଗୁମ୍ଫା ଗିରିଲିପି ଏହି ବ୍ରାହ୍ମୀଲିପିରେ ହିଁ ଖୋଦିତ ହୋଇଅଛି। ତେଣୁ ବ୍ରାହ୍ମୀଲପି ହିଁ ଓଡ଼ିଶାର ଆଦ୍ୟ ଲିପି ଭାବରେ ବିବେଚିତ ହୋଇଥାଏ।

(୨) ଗୁପ୍ତ ଲିପି- ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀଠାରୁ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରଚଳିତ। ଗୁପ୍ତଯୁଗର ସାଂସ୍କୃତିକ ପ୍ରଭାବରେ ବ୍ରାହ୍ମୀ ଲିପିର ଆକୃତିଗତ ପରିବର୍ତ୍ତନରୁ ଗୁପ୍ତ ଲିପିର ସୂତ୍ରପାତ ହୋଇଥିଲା। କଳାହାଣ୍ଡିରୁ ପ୍ରାପ୍ତ ତୁଷ୍ଟିକରଙ୍କ ତାମ୍ରପତ୍ର (୪ର୍ଥ ଶତାବ୍ଦୀ), ଗଞ୍ଜାମ ଜିଲ୍ଲାର ଜଉଗଡ଼ ନିକଟସ୍ଥ ସୁମଣ୍ଡଳ ଗ୍ରାମରୁ ପ୍ରାପ୍ତ ଧର୍ମରାଜଙ୍କ ତାମ୍ର ପତ୍ର (୬ଷ୍ଠ ଶତାବ୍ଦୀ), ବାଲେଶ୍ୱର ଜିଲ୍ଲାର ସୋରଠାରୁ ପ୍ରାପ୍ତ ରାଜା ଶମ୍ଭୁଯଶଙ୍କ ତାମ୍ର ପତ୍ର (୬ଷ୍ଠ ଶତାବ୍ଦୀ) ଓ ପୁରୀ ଜିଲ୍ଲାର କଣାସଠାରୁ ପ୍ରାପ୍ତ ଲୋକବିଗ୍ରହଙ୍କ 'କଣାସ ତାମ୍ରପତ୍ର'ରୁ ଓଡ଼ିଶାରେ ଗୁପ୍ତ ଲିପି ଏକଦା ପ୍ରଚଳିତ ଥିବାର ସନ୍ଧାନ ମିଳିଥାଏ। ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଏହାହିଁ ଓଡ଼ିଶାରେ ବ୍ୟବହୃତ ଲିପି ଥିଲା।

(୩) କଳିଙ୍ଗ ଲିପି- କଣ୍ଠ ଶୀର୍ଷକ ଓ କୀଳକ ଶୀର୍ଷକ ଲିପି ସହିତ ସୂକ୍ଷ୍ମକୋଣୀ ଲିପି ଏହାର ପ୍ରଧାନ ପ୍ରକୃତି। ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀଠାରୁ ୧୧ଶ ଶତାବ୍ଦୀ ପର୍ଯ୍ୟନ୍ତ ଏହା ପ୍ରଚଳିତ ଥିଲା। ଏହି ଲିପି ଦ୍ରାବିଡ଼ୀୟ ଦକ୍ଷିଣୀ ବର୍ଣ୍ଣମାଳା ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ଥିଲା।

(୪) ପ୍ରତ୍ନବଙ୍ଗୀୟ ଲିପି- ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀ ଠାରୁ ୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ ଏହି ଲିପି ପ୍ରଚଳିତ ଥିଲା। ସୋମବଂଶୀ ଓ ଗଙ୍ଗବଂଶୀ ରାଜତ୍ୱ କାଳରେ ବହୁ ଅଭିଲେଖରେ ଯେଉଁ ରୈଖିକ ଓ କୋଣବିଶିଷ୍ଟ ଲିପି ବ୍ୟବହୃତ ହୋଇଅଛି, ତାହା ଉକ୍ତ ନାମରେ ଲିପିତତ୍ତ୍ୱବିଦ୍‌ଙ୍କ ଦ୍ୱାରା ନାମିତ ହୋଇଅଛି। ଏହି ପ୍ରତ୍ନବଂଗୀୟ ଲିପି ଭାରତର ପୂର୍ବାଞ୍ଚଳରେ ପ୍ରଚଳିତ ମାଗଧୀ ପ୍ରାକୃତର ଲିପି ଥିଲା ବୋଲି ବୋଧହୁଏ। କାରଣ କେବଳ ଅସମୀୟା ବା ବଙ୍ଗଳା ନୁହେଁ; ଓଡ଼ିଆ ଭାଷା ମଧ୍ୟ ଏକଦା ଏହି ଲିପିରେ ଲିଖିତ ହେଉଥିଲା। ଭୁବନେଶ୍ୱରରୁ ପ୍ରାପ୍ତ ନରସିଂହ ଦେବଙ୍କ ତାମିଲ-ଓଡ଼ିଆ ଶିଳାଲେଖରେ ଏହି ଲିପି ବ୍ୟବହୃତ ହୋଇଥିବା ଦେଖାଯାଏ। ପୁଣି ସୋନପୁରରୁ ପ୍ରାପ୍ତ ଭାନୁଦେବଙ୍କ ଶିଳାଲେଖରେ ମଧ୍ୟ ଏହି ଲିପି ବ୍ୟବହୃତ ହୋଇଅଛି। 'ପ୍ରତ୍ନବଙ୍ଗୀୟ'-ଏହି ନାମଟି ଏକ ପାରିଭାଷିକ ଶବ୍ଦରୂପେ

ଭାରତୀୟ ଲିପି-ତତ୍ତ୍ୱର ସ୍ଥାପକ ବିହୁଲର ସାହେବଙ୍କ ଦ୍ୱାରା ବ୍ୟବହୃତ ହେବା ପରେ ଭାରତର ପ୍ରାୟ ସମସ୍ତ ଲିପିତତ୍ତ୍ୱବିଦ୍ ଏ ନାମକୁ ନିଃସଙ୍କୋଚରେ ଗ୍ରହଣ କରିଅଛନ୍ତି। କିନ୍ତୁ ବିସ୍ମୟର କଥା, କେତେକ ବଙ୍ଗୀୟ ପଣ୍ଡିତ 'ପ୍ରତ୍ନବଙ୍ଗୀୟ' ନାମର ପାରିଭାଷିକତ୍ୱ ପରିହାର କରି ନିତାନ୍ତ ଅବିଚାରିତ ଭାବରେ ଓଡ଼ିଆ ଲିପି ବଙ୍ଗୀୟ ଲିପିରୁ ଉଦ୍‌ଭୂତ ବୋଲି ଏକ ଭ୍ରାନ୍ତ ମତ ପୋଷଣ କରିଅଛନ୍ତି। ଏହି କାରଣରୁ ଏହାକୁ 'ପ୍ରତ୍ନବଙ୍ଗୀୟ' ନ କହି ବରଂ 'ପ୍ରତ୍ନ-ପୂର୍ବ-ଭାରତୀୟ' ଲିପିରୂପେ ଅଭିହିତ କରିବା ଯଥାର୍ଥ ଓ ସମିଚୀନ ମନେହୁଏ। ଏହା ହେଲେ ଅଯଥା ଜାତ୍ୟଭିମାନ-ପ୍ରଚୋଦିତ ଅଳୀକ ମିଥ୍ୟା ଆଲୋଚନା କ୍ଷେତ୍ରକୁ କଳୁଷିତ କରିବା ସମ୍ଭବ ହେବନାହିଁ। ବସ୍ତୁତଃ ଓଡ଼ିଆ ଲିପି ଯେ ଏହାର 'ପ୍ରତ୍ନ-ପୂର୍ବଭାରତୀୟ' ପ୍ରକୃତି ଠାରୁ ଅଧିକ ପ୍ରାଚୀନ; ଏ ବିଷୟ ଏବର ପଣ୍ଡିତମାନଙ୍କ ଆଲୋଚନାରେ କ୍ରମେ ବଦ୍ଧମୂଳ ହେଉଅଛି।

(୫) ପ୍ରାଚୀନ ଓଡ଼ିଆ ଲିପି- ଖ୍ରୀଷ୍ଟୀୟ ୧୪ଶ ଶତାବ୍ଦୀଠାରୁ ୧୬ଶ ଶତାବ୍ଦୀ ପର୍ଯ୍ୟନ୍ତ ବ୍ୟବହୃତ ହେଉଥିଲା।

(୬) ଆଧୁନିକ ଓଡ଼ିଆ ଲିପି-୧୬ଶ ଶତାବ୍ଦୀଠାରୁ।

ପ୍ରତ୍ନ-ପୂର୍ବଭାରତୀୟ ଲିପିର ପରବର୍ତ୍ତୀ ବିକାଶ ହେଉଛି 'ପ୍ରାଚୀନ ଓଡ଼ିଆ ଲିପି'। ଅକ୍ଷରର ଉପରଭାଗର ଅନୁପ୍ରସ୍ଥ ରେଖା ହିଁ ଏହାର ଏକ ବିଶିଷ୍ଟ ଲକ୍ଷଣ। ୧୪ଶ ଠାରୁ ୧୬ଶ ଶତାବ୍ଦୀ ମଧ୍ୟରେ ଲିଖିତ ଅନେକ ଓଡ଼ିଆ ଅଭିଲେଖରେ ଏହି ଲିପି ବ୍ୟବହୃତ ହୋଇଅଛି। ଯଥା- ଯାଜପୁର ନିକଟସ୍ଥ ସିଦ୍ଧେଶ୍ୱର ନାମକ ଗ୍ରାମରେ ଚତୁର୍ଥ ନରସିଂହ ଦେବଙ୍କ ଖୋଦିତ ଲିପି। ଏହାକୁ 'ସିଦ୍ଧେଶ୍ୱର ଶିଳାଲେଖ' କୁହାଯାଏ। ଏହାର ସମୟ ୧୩୯୪ ଖ୍ରୀଷ୍ଟାବ୍ଦ। ଗୁଣ୍ଟୁର ଜିଲ୍ଲାରେ କପିଳେଶ୍ୱର ଦେବଙ୍କ ତ୍ରୈଭାଷିକ ତାମ୍ରପତ୍ର; ପୁରୁଷୋତ୍ତମ ଦେବଙ୍କ ପରଶୁ ଶୀର୍ଷକ ତାମ୍ର ପତ୍ର; କୃଷ୍ଣା ଜିଲ୍ଲାରେ କୋଣ୍ଡାପଲି ପର୍ବତରେ ପ୍ରତାପ ରୁଦ୍ର ଦେବଙ୍କ ଖୋଦିତ ଲିପି; ପୁରୀ ଜଗନ୍ନାଥ ମନ୍ଦିରର 'ଜୟ ବିଜୟ ଦ୍ୱାରରେ ଖୋଦିତ ୧୨ଗୋଟି ଶିଳାଲେଖ, ବିଶାଖାପାଟଣା ଜିଲ୍ଲାର ସିଂହାଚଳମ୍‌ରେ ଲକ୍ଷ୍ମୀନାରାୟଣ ମନ୍ଦିରରେ ଖୋଦିତ ଲେଖ (୧୫୫୯-୧୫୬୮) ପ୍ରଭୃତିରେ ପ୍ରାଚୀନ ଓଡ଼ିଆ ଲିପି ବ୍ୟବହୃତ ହୋଇଅଛି।

ରାୟବାହାଦୂର ପଣ୍ଡିତ ଗୌରୀଶଙ୍କର ହୀରାଚାନ୍ଦ ଓଝା ତାଙ୍କର 'ପ୍ରାଚୀନ ଲିପିମାଳା' ନାମକ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ଯେ ଓଡ଼ିଆ ଲିପିର ଉତ୍ପତ୍ତି ପ୍ରତ୍ନବଂଶୀୟ ଲିପିରୁ ସାଧିତ ହୋଇଅଛି। ଐତିହାସିକ ରାଖାଲ ଦାସ ବାନାର୍ଜି ମଧ୍ୟ ତାଙ୍କ 'ବଙ୍ଗୀୟ ଲିପିର ଉତ୍ପତ୍ତି'

ନାମକ ଗ୍ରନ୍ଥରେ କେତେକ ଓଡ଼ିଆ ଅଭିଲେଖର ପ୍ରମାଣ ବଳରେ କହିଛନ୍ତି ଯେ ଆଧୁନିକ ଓଡ଼ିଆ ଲିପି ୧୪ଶ ଶତାବ୍ଦୀ ପରେ ବଙ୍ଗୀୟ ଲିପିରୁ ଉତ୍ପନ୍ନ ହୋଇଅଛି । କିନ୍ତୁ ଏ ଦୁଇ ଜଣ ବିଶିଷ୍ଟ ଐତିହାସିକଙ୍କର ମତ ପୁଷ୍କଳ ଆଲୋଚନା ଓ ଉଦାହରଣମୂଳକ ଫଳକ ଦ୍ୱାରା ପରିପୁଷ୍ଟ ନୁହେଁ । ସାର୍ ଜର୍ଜ ଗ୍ରିୟରସନ୍ ମଧ୍ୟ ବଙ୍ଗଭାଷା ସହିତ ଓଡ଼ିଆକୁ ପ୍ରାଚ୍ୟ-ଆର୍ଯ୍ୟ ଭାରତୀୟ ଗୋଷ୍ଠୀର ଅନ୍ତର୍ଭୁକ୍ତ କରିଥିବା ସତ୍ତ୍ୱେ ୧୯୩୨ ଖ୍ରୀଷ୍ଟାବ୍ଦରେ ପୁଣି 'ଇଣ୍ଡିଆନ୍ ଏଣ୍ଟିକ୍ୱେରୀ' ପତ୍ରିକାରେ ଲେଖିଛନ୍ତି ଯେ ଓଡ଼ିଆ ଲିପି 'ପ୍ରତ୍ନବଙ୍ଗୀୟ' ଲିପିରୁ ଉତ୍ପନ୍ନ ହୋଇନାହିଁ; ଏହା ନାଗରୀ ଲିପିରୁ ଉଦ୍‌ଭୂତ । ପ୍ରାଚୀନ ଓଡ଼ିଆରେ ଖୋଦିତ କେତେକ ଲେଖରେ ନାଗରୀ ଲିପିର ପ୍ରଭାବ ଦେଖାଯାଏ । ପୁରୀର ତ୍ରିମାଳୀ ଓ ଶଙ୍କରାନନ୍ଦ ମଠରୁ ପ୍ରାପ୍ତ ସଂସ୍କୃତ-ଓଡ଼ିଆ ତାମ୍ରପତ୍ର ପ୍ରଭୃତିରେ ପ୍ରତ୍ନବଂଶୀୟ ଶୈଳୀରେ ଅକ୍ଷର ଖୋଦିତ ହୋଇଥିଲେ ମଧ୍ୟ ନାଗରୀ ଲିପିର ଅନେକ ଅକ୍ଷର ସହିତ ଏଗୁଡ଼ିକର ମେଳ ଅଛି । ବଲାଙ୍ଗୀର ଜିଲ୍ଲାର ନୃସିଂହନାଥ ପର୍ବତରେ ରାଜା ବୈଜଲ ଦେବଙ୍କ ଖୋଦିତ ଅଭିଲେଖରେ ଯେଉଁ ସଂପୁଟ-ଶିକ୍ଷା-ଲିପି (Box-Headed-letter) ପରଦୃଷ୍ଟ ହୁଏ; ତାହା ନାଗରୀ ଲିପିରୁ କ୍ରମଶଃ ପ୍ରାଚୀନ ଓଡ଼ିଆ ଲିପିର ବିକାଶ ଘଟିଥିବା ବିଷୟକୁ ସଂକେତ କରୁଅଛି । ବସ୍ତୁତ କ, ନ, ସ, ମ, ଟ, ଗ, ଲ, ଡ଼, ଣ, ଭ, ୟ, ଷ, ପ, ଘ, ଥ, ନ ଓ ଜ ପ୍ରଭୃତି ଆଧୁନିକ ଓଡ଼ିଆ ଅକ୍ଷରଗୁଡ଼ିକର ନାଗରୀ ହିନ୍ଦୀ ଲିପି ସହିତ ଘନିଷ୍ଠ ସାମଞ୍ଜସ୍ୟ ରହିଅଛି । ଏବର ଓଡ଼ିଆ ଲିପିର ଉପରଭାଗକୁ ଗୋଲାକାର ନ କରି କେବଳ ଗୋଟିଏ ଗାର ଟାଣିଦେଲେ ଅଧିକାଂଶ ଓଡ଼ଆ ଅକ୍ଷର ନାଗରୀ ଲିପିରେ ପରିଣତ ହୋଇଯିବ ।

ଆନୁମାନିକ ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ପ୍ରାଚୀନ ଓଡ଼ିଆ ଧୀରେ ଧୀରେ ଆଧୁନିକ ଓଡ଼ିଆ ଲିପିରେ ପରିଣତ ହୋଇଅଛି । ଏଥିରେ ପୁଣି ଅକ୍ଷର ଉପରଭାଗର ବକ୍ରରେଖା କ୍ରମେ ବର୍ତ୍ତୁଳ ରୂପ ଧାରଣ କରିଅଛି । ଅକ୍ଷର ଗୁଡ଼ିକର ଅନୁପ୍ରସ୍ଥ ଉର୍ଦ୍ଧ୍ୱ ରେଖା ଉର୍ଦ୍ଧ୍ୱ ବୃତାଂଶରେ ପରିଣତ ହେବା ଯୋଗେ ଓଡ଼ିଆ ଅକ୍ଷରର ଉପର ଅଂଶ ଗୋଲାକାର ରୂପେ ବିକଶିତ ହୋଇଅଛି । ଏହାର କ୍ଷତି ପୂର୍ଣ୍ଣ ଲାଗି ପୁଣି ଅକ୍ଷରର ତଳ ଅଂଶକୁ ଆପାତତଃ ଛୋଟ କରିବାକୁ ପଡ଼ିଛି । କେବଳ ମାତ୍ର ଓଡ଼ିଶାରେ ତାଳପତ୍ର ଉପରେ ଲୌହଲେଖନୀ ସାହାଯ୍ୟରେ ଅକ୍ଷରବିନ୍ୟାସ କରି ରାଶି ରାଶି ଗ୍ରନ୍ଥ ଲେଖା ହେଉଥିବା ହେତୁ ଓଡ଼ିଆ ଲିପି ବର୍ତ୍ତୁଳାକାର ଧାରଣ କରିଅଛି । ଏହାହିଁ ଆଜିର ଲିଖିତ ଓ ମୁଦ୍ରିତ ଓଡ଼ିଆ ଲିପି ।



# ଓଡ଼ିଆ ଭାଷାର ବୈଶିଷ୍ଟ୍ୟ

## କୈଳାସଚନ୍ଦ୍ର ଟିକାୟତରାୟ

ବୈଶିଷ୍ଟ୍ୟ କାହିଁକି ? ଭାଷା ପରିବର୍ତ୍ତନଶୀଳ। ପ୍ରାୟ ତିନି ହଜାର ବର୍ଷ ପୂର୍ବେ ସାମ୍ପ୍ରତିକ ଭାରତର ଉତ୍ତର-ପଶ୍ଚିମ ଭାଗରେ ସିନ୍ଧୁ-ସଭ୍ୟତା ଗଢ଼ି ଉଠିଥିଲା। ଇତିହାସ କହେ, ପରବର୍ତ୍ତୀ କାଳରେ 'ସିନ୍ଧୁ' ଶବ୍ଦରୁ 'ହିନ୍ଦୁ'ର ଉତ୍ପତ୍ତି। ତେଣୁ ଏହି ସମୟକୁ ବେଦ ରଚନାର ସମୟ ବୋଲି ଗ୍ରହଣ କରାଗଲେ, ସେହି ସମୟ ଭାରତୀୟ ଆର୍ଯ୍ୟଭାଷାର ଆରମ୍ଭ କୁହାଯାଇପାରେ। ଭିନ୍ନ ଭିନ୍ନ ଜାତି ଓ ଧର୍ମବିଶେଷରେ ଧର୍ମଗ୍ରନ୍ଥରେ ବ୍ୟବହୃତ ପ୍ରାଚୀନ ଭାଷାକୁ ଦେବତାର ଭାଷା ବା ପୃଥିବୀର ଆଦିଭାଷା ବୋଲି ବିବେଚନା କରାଯାଇଥିଲେ ମଧ୍ୟ ବିଶ୍ୱର ଆଦିଭାଷା ରୂପେ ପ୍ରମାଣିତ ହୋଇ କୌଣସି ଭାଷା ଏପର୍ଯ୍ୟନ୍ତ ସ୍ୱୀକୃତି ପାଇପାରି ନାହାନ୍ତି। କାଳକ୍ରମେ ବେଦ, ଉପନିଷଦ ରଚନା ସମୟର ଭାଷା ଲୋକମୁଖରେ ପରିବର୍ତ୍ତିତ ହୋଇ ନୂତନ ରୂପ ନେବାକୁ ଆରମ୍ଭ କଲା। ବିଶ୍ୱ-ଭାଷାତତ୍ତ୍ୱବିତ୍‌ମାନଙ୍କ ନମସ୍ୟ ପାଣିନି ପ୍ରାୟ ଖ୍ରୀ.ପୂ. ପଞ୍ଚମ ଶତକରେ ଏହି ଲୋକ-ବ୍ୟବହୃତ ଭାଷାର ଧ୍ୱନିତତ୍ତ୍ୱ ବିଚାର କରି ବ୍ୟାକରଣ ପ୍ରଣୟନ କଲେ। ଏହି ବିଚାର ଲୋକଭାଷାର ସଂସ୍କାର ଏବଂ ଏହି ନିୟମିତ ଭାଷା ସଂସ୍କୃତ ରୂପେ ପରିଚିତ ହୋଇଛି। ବୈଦିକ ଓ ସଂସ୍କୃତ ଭାଷା ଭାରତୀୟ ଆର୍ଯ୍ୟଭାଷାର ପ୍ରାଚୀନ ପର୍ଯ୍ୟାୟଭାବେ ଗୃହୀତ।

ପୃଥିବୀରେ କୌଣସି ଭାଷା ଏକ ଶୃଙ୍ଖଳାରେ ଆବଦ୍ଧ ହୋଇ ଚିରକାଳ ରହେ ନାହିଁ। ଲୋକମୁଖରେ ଏହାର ପରିବର୍ତ୍ତନ ଏକ ସ୍ୱାଭାବିକ ପଦ୍ଧତି। ଭାଷାତତ୍ତ୍ୱବିତ୍ ପାଣିନିଙ୍କ ସମୟରେ ବ୍ୟବହୃତ ଭାଷା ଲୋକମୁଖରେ ପରିବର୍ତ୍ତିତ ହୋଇ କିଛି କାଳପରେ ମୂଳ ଭାଷାଠାରୁ ସ୍ୱାତନ୍ତ୍ର୍ୟ ପ୍ରକାଶ କରିବାକୁ ଲାଗିଲା। ପ୍ରାୟ ଖ୍ରୀ.ପୂ. ପଞ୍ଚମ ଶତକରୁ ଖ୍ରୀ.ଅ. ଦଶମ ଶତକ ମଧ୍ୟରେ ଭାରତୀୟ ଆର୍ଯ୍ୟଭାଷାର ଯେଉଁ ରୂପ ମିଳେ, ତାହାକୁ 'ପ୍ରାକୃତ' ନାମରେ ପରିଚିତ କରାଯାଇଛି। ପାଲି, ମହାରାଷ୍ଟ୍ରୀ, ଶୌରସେନୀ, ମାଗଧୀ, ଅର୍ଦ୍ଧମାଗଧୀ ପ୍ରଭୃତି ବିଭିନ୍ନ ବା ପ୍ରଜାସାଧାରଣଙ୍କ ବ୍ୟବହୃତ ଭାଷା 'ପ୍ରାକୃତ' ହେଲେ ମଧ୍ୟ ଆଲୋଚନା ପାଇଁ କେବଳ ମଧ୍ୟ-ଭାରତୀୟ ଆର୍ଯ୍ୟ ଭାଷାକୁ 'ପ୍ରାକୃତ' ନାମରେ ପରିଚିତ କରାଯାଏ।

ପଞ୍ଚମ ଶତକର ପ୍ରାକୃତ ଦଶମ ଶତକର ପ୍ରାକୃତ ମଧ୍ୟରେ ଭିନ୍ନତା ପରିଲକ୍ଷିତ ହୁଏ। ତେଣୁ ମଧ୍ୟକାଳର ଶେଷ ପର୍ଯ୍ୟାୟର ଭାଷାକୁ ଅପଭ୍ରଂଶ ଭାବେ ପରିଚିତ କରାଯାଏ।

ପ୍ରାୟ ଖ୍ରୀ.ଅ. ଦଶମ ଶତକ ଆଧୁନିକ ଭାରତୀୟ ଆର୍ଯ୍ୟଭାଷାମାନଙ୍କର ଜନ୍ମକାଳ ଭାବେ ଗୃହୀତ। ଭାରତର ଉତ୍ତର-ପୂର୍ବାଞ୍ଚଳରେ ବ୍ୟବହୃତ ତତ୍‌କାଳୀନ ଅର୍ଦ୍ଧମାଗଧୀ ପ୍ରାକୃତ ଭାଷାରୁ ଓଡ଼ିଆ ଭାଷାର ଜନ୍ମ।[୯]

ଉପର ଆଲୋଚାନରୁ ଏହା ସ୍ପଷ୍ଟ ଯେ, କୌଣସି ଏକ ଭାଷା ତା'ର ମୂଳ ଭାଷାଠାରୁ ସ୍ୱତନ୍ତ୍ର। କହିବାର ତାତ୍ପର୍ଯ୍ୟ ଏହି ଯେ, ଭାଷା ସମ୍ପର୍କରେ ରକ୍ଷଣଶୀଳ ବ୍ୟକ୍ତିମାନେ ମତ ଦିଅନ୍ତି, ଓଡ଼ିଆ ଭାଷାର ଧମନୀରେ ସଂସ୍କୃତର ରକ୍ତ ପ୍ରବାହିତ; ତେଣୁ ଓଡ଼ିଆ ଭାଷାର ନିୟମ ବା ବ୍ୟାକରଣ ସଂସ୍କୃତ ସହ ସମାନ ହେବାକୁ ବାଧ୍ୟ। କିନ୍ତୁ ଏକଥା ବିଚାରକୁ ନେବାକୁ ହେବ ଯେ, ଓଡ଼ିଆ ସଂସ୍କୃତ ନୁହେଁ ବା ସଂସ୍କୃତ ଓଡ଼ିଆ ନୁହେଁ। ଯେପରି ଗୋଟିଏ ପିତାଙ୍କ ଔରସରୁ ଗୋଟିଏ ମା' ଗର୍ଭରୁ ଜାତ ଏକାଧିକ ସନ୍ତାନ ସମଗୁଣ ବା ସମରୂପ ବିଶିଷ୍ଟ ହୁଅନ୍ତିନି; ଏପରିକି ପିତାମାତାଙ୍କର ରୂପ ଓ ଗୁଣକୁ ସର୍ବତୋଭାବେ ପ୍ରକାଶ କରନ୍ତିନି, ସେହିପରି ନୂତନ ଭାଷା ନିଜର ବୈଶିଷ୍ଟ୍ୟ ନେଇ ରୂପ ଗ୍ରହଣ କରେ। କୌଣସି ବିଶିଷ୍ଟ ପାର୍ଥକ୍ୟ ବା ସ୍ୱାତନ୍ତ୍ର୍ୟ ନ ଥିଲେ ଏକ ଆଞ୍ଚଳିକ ଭାଷାକୁ ମୂଳ ଭାଷାର ଉପଭାଷା କୁହାଯାଇପାରେ। ଆଞ୍ଚଳିକ ଭେଦରେ 'ଖାଇତେ', 'ଯାଇତେ'ର ବ୍ୟବହାର ଓଡ଼ିଶାର ଉତ୍ତରାଞ୍ଚଳରେ ପରିଦୃଷ୍ଟ ହୁଏ। ଦକ୍ଷିଣାଞ୍ଚଳରେ ଖାଇବାର, ଯିବାର ବା ପଶ୍ଚିମାଞ୍ଚଳର ଖାଇମା, ଯିମା ପ୍ରଭୃତି ଓଡ଼ିଆ ଭାଷାର ଉପଭାଷାର ଉଦାହରଣ। କିନ୍ତୁ ଗଚ୍ଛତି, ଗଚ୍ଛନ୍ତି ଏବଂ ଯାଏ, ଯାଆନ୍ତି ମଧ୍ୟରେ ଥିବା ସ୍ୱାତନ୍ତ୍ର୍ୟକୁ ସ୍ୱୀକାର କରି ଓଡ଼ିଆକୁ ଏକ ସ୍ୱତନ୍ତ୍ର ଭାଷା ବୋଲି ଗ୍ରହଣ କରିବାକୁ ପଡ଼ିବ।

ଓଡ଼ିଶାର ଇତିହାସ ପର୍ଯ୍ୟାଲେଚନା କଲେ ଜଣାଯାଏ ଯେ ବହୁ ପୂରାକାଳରେ ଏ ଅଞ୍ଚଳ ଶବର-ଆଦିବାସୀ-ଅଧ୍ୟୁଷିତ ଥିଲା। ଆଦିବାସୀମାନେ ଅଷ୍ଟ୍ରିକ୍ ପରିବାରର ଭାଷା ବ୍ୟବହାର କରନ୍ତି। ତେଣୁ ଯେତେବେଳେ ଆର୍ଯ୍ୟଭାଷା ଏ ଅଞ୍ଚଳକୁ ପ୍ରବେଶ କରିଥିବ, ଅଷ୍ଟ୍ରିକ୍ ପରିବାରର ଭାଷାର ସଂସ୍ପର୍ଶରେ ଆସି ମୂଳଭାଷାରେ ସ୍ୱାତନ୍ତ୍ର୍ୟ ସ୍ୱତଃ ପରିବର୍ତ୍ତିତ ହୋଇଥିବ।

ଆଧୁନିକ ଓଡ଼ିଶାର ଭୌଗୋଳିକ ସ୍ଥିତି ଓଡ଼ିଆ ଭାଷାର ବୈଶିଷ୍ଟ୍ୟ ପାଇଁ ବହୁ ପରିମାଣରେ ଦାୟୀ। ଓଡ଼ିଆ ଭାଷାଭାଷୀ ଦକ୍ଷିଣାଞ୍ଚଳ ଦ୍ରାବିଡ଼ ଭାଷାଗୋଷ୍ଠୀର ଅତି ନିକଟବର୍ତ୍ତୀ। ବହୁକାଳ ଧରି ଦାକ୍ଷିଣାତ୍ୟର ଗଙ୍ଗବଂଶ ରାଜାମାନଙ୍କର ଓଡ଼ିଶା ସିଂହାସନରେ ଅଧିଷ୍ଠିତ ହେବା ଏବଂ ଓଡ଼ିଶାର ଗଜପତି ରାଜାମାନଙ୍କର ଦକ୍ଷିଣାତ୍ୟରେ ରାଜ୍ୟ ବିସ୍ତାର ଫଳରେ ସେ ଅଞ୍ଚଳର ସଂସ୍କୃତି, ସଭ୍ୟତା ସହ ଭାଷାର ଆଦାନ-ପ୍ରଦାନ ହୋଇଥିବା

ସ୍ୱାଭାବିକ। ଇଂରେଜ ଶାସନ ସମୟରେ ମାନ୍ଦ୍ରାଜ ଶାସନାଧୀନ ରହି ଓଡ଼ିଆ ଭାଷା ଯେ ପୁଣି ଦ୍ରାବିଡ଼ ଭାଷାଗୋଷ୍ଠୀଦ୍ୱାରା ପ୍ରଭାବିତ ହୋଇଛି, ଏହା ନିଶ୍ଚିତ। ଏଥି ସଙ୍ଗେ ସଙ୍ଗେ ଇଂରାଜୀ ଶିକ୍ଷା ଓଡ଼ିଆ ଭାଷାକୁ ପଠାଣ ଶାସନ ସମୟ ଭଳି ପ୍ରଭାବିତ ମଧ୍ୟ କରିଛି।

ଉପରୋକ୍ତ କାରଣମାନଙ୍କରୁ "ଓଡ଼ିଆ ଭାଷା ସଂସ୍କୃତ ଭାଷାଠାରୁ ସ୍ୱତନ୍ତ୍ର"²- ଏହା ନିର୍ଦ୍ୱନ୍ଦ୍ୱରେ କୁହାଯାଇପାରେ। ମୂଳ ସଂସ୍କୃତର କେତେକ ଗୁଣ ରକ୍ଷା କରିଥିଲେ ମଧ୍ୟ ଅନେକ କ୍ଷେତ୍ରରେ ସଂପ୍ରତି ନିଜସ୍ୱ ବୈଶିଷ୍ଟ୍ୟ ନେଇ ଭାଷାରାଜ୍ୟରେ ଓଡ଼ିଆ ଏକ ସ୍ୱତନ୍ତ୍ର ଆସନ ଦାବି କରେ।

**ଧ୍ୱନି :** ମୂଳ ସଂସ୍କୃତ ଭାଷାରେ ନଅଗୋଟି ସ୍ୱରଧ୍ୱନି ମିଳେ; ଯଥା- ଅ, ଇ, ଉ, ର, ୠ, ଏ, ଐ, ଓ, ଔ। ଚାରିଗୋଟି ସ୍ୱର ଆ, ଈ, ଊ, ର, ଏହି ଧ୍ୱନିଗୁଡ଼ିକ ହ୍ରସ୍ୱ ଅ, ଇ, ଉ, ର ଧ୍ୱନିମାନଙ୍କର ଦୀର୍ଘ ଉଚ୍ଚାରଣ ଭାବେ ଗୃହୀତ ହୋଇଛି। ଓଡ଼ିଆ ଭାଷାରେ ଏହି ଚାରିଗୋଟି ଧ୍ୱନିର ବ୍ୟବହାର ପ୍ରାଚୀନ କାଳରୁ ପ୍ରଚଳିତ। ସାମ୍ପ୍ରତିକ ଓଡ଼ିଆ ଭାଷାରେ ଅ, ଆ, ଇ, ଉ, ଏ, ଓ - ଛଅଗୋଟି ମାତ୍ର ଶୁଦ୍ଧ ସ୍ୱରଧ୍ୱନିର ବ୍ୟବହାର ମିଳେ।

ହ୍ରସ୍ୱ ଓ ଦୀର୍ଘ ଇ ଏବଂ ଉ ମଧ୍ୟରେ କୌଣସି ଉଚ୍ଚାରଣଗତ ପାର୍ଥକ୍ୟ ଉପଲବ୍ଧ ହୁଏ ନାହିଁ। "ବୁଢ଼ା ହାତୀଟି ନଇ କୂଳେ କୂଳେ ଯାଉଛି" କହିଲେ ଅର୍ଥ ପ୍ରକାଶରେ କୌଣସି ବାଧା ସୃଷ୍ଟି ହୁଏ ନାହିଁ ବା ବକ୍ତାର ଉଚ୍ଚାରଣରେ କୌଣସି ପରିବର୍ତ୍ତନ ହୁଏ ନାହିଁ।

ଉଚ୍ଚାରଣ ଦୃଷ୍ଟିରୁ ଓଡ଼ିଆ ଭାଷାରେ 'ର' ଧ୍ୱନିର ସ୍ୱରଗୁଣ ଲୋପ ହୋଇଛି। ବଙ୍ଗଳା ବା ହିନ୍ଦୀ ଭଳି 'ରି'ର ନିକଟବର୍ତ୍ତୀ ଭାବେ 'ଇରି' ବା 'ଇର' ରୂପେ କେତେ ଶବ୍‌ଦରେ ବ୍ୟବହୃତ ହୁଏ ଯଥା- 'ମିରିଗ', 'ତିରଣ'। ରୁ ଭାବେ ଏହାର ବ୍ୟବହାର ବହୁଳ; ଯଥା- ରକ୍ମିଣୀ (ରୁକ୍ମିଣି), ରଷି (ରୁଷି), ରତୁ (ରୁତୁ), ମୃତ୍ୟୁ (ମୃତ୍ୟୁ), ହୃଦୟ (ହୃଦୟ)।

' ୠ ' ପ୍ରାଚୀନ ସାହିତ୍ୟ-ସୃଷ୍ଟିମାନଙ୍କର 'ଲୁ' (ବୋଇଛ) ରୂପେ ବ୍ୟବହୃତ ହୋଇଥିବାର ଦୃଷ୍ଟାନ୍ତ ମିଳେ। କିନ୍ତୁ ସଂପ୍ରତି ଓଡ଼ିଆ ଭାଷାରେ ଏହାର ବ୍ୟବହାର ଆଦୌ ନାହିଁ।

ଐ' ଧ୍ୱନି ସଂସ୍କୃତ, ହିନ୍ଦୀ ପ୍ରଭୃତି ଭାଷାରେ (ଏ ⟶ ଇ) ରୂପେ ଉଚ୍ଚାରିତ ହୁଏ। ଯଥା- ମେଘେ (ମେଘେ ⟶ ଇ), ଐସା (ଏ ⟶ ଇସା)। କିନ୍ତୁ ଓଡ଼ିଆ ଭାଷାରେ ଏହି ଧ୍ୱନିଟି (ଅଇ) ଦ୍ୱିଅକ୍ଷର ରୂପେ ବ୍ୟବହୃତ ହୁଏ, ଯଥା- ବୈଶାଖ (ବଇସାଖ), ଐରାବତ (ଅଇରାବତ)।

'ଔ' ଧ୍ୱନିର (ଓ ଇ) ଏବଂ (ଅ ଉ) ଦୁଇ ପ୍ରକାରର ଉଚ୍ଚାରଣ ମିଳେ। କ୍ରମଶଃ (ଅଉ)ର ବ୍ୟବହାର ଅଧିକ ଉପଲବ୍ଧ ହେଉଛି। ଅଉଷଧ, ଗଉରବ, କଉଶଲ୍ୟା ଇତ୍ୟାଦିର ବ୍ୟବହାର ସାହିତ୍ୟିକମାନଙ୍କ ଦ୍ୱାରା ବ୍ୟବହୃତ ହୋଇଥିବାର ଦୃଷ୍ଟାନ୍ତ ମଧ୍ୟ ମିଳିଥାଏ।

ସ୍ପର୍ଶ ବ୍ୟଞ୍ଜନମାନଙ୍କ ମଧ୍ୟରୁ ମୂର୍ଦ୍ଧଣ୍ୟ ବର୍ଗ ଧ୍ୱନିମାନଙ୍କର ବହୁଳ ବ୍ୟବହାର ଦ୍ରାବିଡ଼ ଭାଷାର ପ୍ରଭାବ ବୋଲି ଭାଷାତତ୍ତ୍ୱବିତ୍‌ମାନେ ମତ ଦାନ କରନ୍ତି। ଉକ୍ତ ବର୍ଗର ସଘୋଷ ନିରନୁନାସିକ /ଡ/ଏବଂ/ଢ/ଧ୍ୱନି ଶବ୍ଦର ଆଦ୍ୟରେ ଏବଂ ମଧ୍ୟରେ ଭିନ୍ନ ଭାବେ ଉଚ୍ଚାରିତ ହୁଅନ୍ତି ଡବା, ବାଡ଼; ଡର, ରଡ଼; ଢଗ, ଗଢ଼; ଢମ, ମଢ଼। ଶବ୍ଦର ମଧ୍ୟରେ ଅନୁନାସିକ ଧ୍ୱନି ସହ ଯୁକ୍ତ ହେଲେ ଏମାନେ ଆଦ୍ୟରେ ଉଚ୍ଚାରିତ ହେବାପରି ରୂପ ନିଅନ୍ତି, ଯଥା,- ମଣ୍ଡ, ପଣ୍ଡା, ଷଣ୍ଢ, କଣ୍ଢେଇ। ମୂର୍ଦ୍ଧଣ୍ୟ ଅନୁନାସିକ/ଣ/ଯୁକ୍ତ ବ୍ୟଞ୍ଜନକୁ ଛାଡ଼ି ହିନ୍ଦୀ ବା ବଙ୍ଗଳାରେ ପ୍ରାୟ /ନ/ ଭଳି ଉଚ୍ଚାରିତ ହୁଏ, ଯଥା- ବ୍ରହ୍ମଣ [ବ୍ରହ୍ମନ୍]। ଦ୍ରାବିଡ଼ ଭାଷାଗୋଷ୍ଠୀର ଭୌଗୋଳିକ ନିକଟବର୍ତ୍ତୀ ଭାଷା ଗୁଜୁରାଟୀ ପ୍ରଭୃତିରେ ସ୍ୱତନ୍ତ୍ର 'ଣ' ଧ୍ୱନିର ବ୍ୟବହାର ପରିଦୃଷ୍ଟ ହୁଏ। ଓଡ଼ିଆ ଭାଷାରେ ମଧ୍ୟ ଦ୍ରାବିଡ଼ ଭାଷା ପ୍ରଭାବରେ ଏହାର ସ୍ୱାତନ୍ତ୍ର୍ୟ ଉପଲବ୍ଧ। ଶବ୍ଦର ଆଦ୍ୟରେ ଏହାର ବ୍ୟବହାର ମିଳେ ନାହିଁ। ମଧ୍ୟ ଏବଂ ଶେଷ ସ୍ଥାନରେ ଏହା ପରିଦୃଷ୍ଟ ଯଥା- କ'ଣ, ଟଣା, ମୁଣି, ରୁଣ୍‌ଝୁଣ୍, ଟଣ୍ ଟଣ୍। 'ଯ' ଏବଂ 'ୱ' ଅର୍ଦ୍ଧସ୍ୱର ଯୋଗରେ ଓଡ଼ିଆ ଭାଷାରେ 'ଣ' ଧ୍ୱନି ପ୍ରାୟ 'ନ' ପରି ଉଚ୍ଚାରିତ ହୁଏ। - କଣ୍ୱ (କନ୍ୱ), କାରୁଣ୍ୟ (କାରୁନ୍ୟ)।

କୋମଳ ତାଳୁରେ ଉଚ୍ଚାରିତ କଣ୍ଠ୍ୟ ବର୍ଗ ଭାବରେ ଅଭିହିତ ଅନୁନାସିକ ଧ୍ୱନି 'ଙ'ର ସ୍ୱତନ୍ତ୍ର ବ୍ୟବହାର ମିଳେ ନାହିଁ। ଯୁକ୍ତ ବ୍ୟଞ୍ଜନମାନଙ୍କରେ ଏହାର ବ୍ୟବହାର ଉପଲବ୍ଧ ହୁଏ, ଯଥା- ଟଙ୍କା, ପଙ୍ଖା, ଡଙ୍ଗା, ସଙ୍ଘ ପରାଙ୍‌ମୁଖ, ବାଙ୍‌ମୟ।

ତାଳବ୍ୟ ସ୍ପର୍ଶ ସଂଘର୍ଷୀ ଅନୁନାସିକ ଧ୍ୱନି 'ଞ' (ନ୍ୟ) ରୂପେ ଉଚ୍ଚାରିତ ହୁଏ। ଏହାର ସ୍ୱତନ୍ତ୍ର ବ୍ୟବହାର ଓଡ଼ିଆ ଭାଷାରେ ନାହିଁ। ଏହି ବର୍ଗର ଚ, ଛ, ଜ, ଝ ର ଅନୁନାସିକତା ପାଇଁ ଏହି ଧ୍ୱନିଟି ଯୁକ୍ତ ହେବାର ଉଦାହରଣ ମିଳେ। ଯଥା- ପାଞ୍ଚ, ବାଞ୍ଛା, ସଞ୍ଜ, ବାଞ୍ଝ।

ଧ୍ୱନି ଦୃଷ୍ଟିରୁ ଓଡ଼ିଆ ଲିପିମାଳାର 'ଯ'ର ବ୍ୟବହାର ମିଳେ ନାହିଁ। ଏହି ବର୍ଣ୍ଣଟିର ବ୍ୟବହାର ଅନ୍ୟ ଆର୍ଯ୍ୟ ଭାଷାମାନଙ୍କଠାରୁ ସ୍ୱତନ୍ତ୍ର। ସଂସ୍କୃତର ୟ' ଅର୍ଦ୍ଧସ୍ୱର ଓଡ଼ିଆ ଲିପିମାଳାରେ ଥିଲେ ମଧ୍ୟ ଯ' ଏକ ସ୍ୱତନ୍ତ୍ର ଲିପି ଭାବେ ବ୍ୟବହୃତ ହୁଏ। ଏହାର ଉଚ୍ଚାରଣ ସମ୍ପୂର୍ଣ୍ଣ ତାଳବ୍ୟ ସ୍ପର୍ଶ ସଂଘର୍ଷୀ ସଘୋଷ 'ଜ' ଭଳି ହୋଇଥାଏ। ଯାତ୍ରା (ଜାତ୍ରା),

ଯିବା (ଜିବା); ଯୁଗ୍ମ (ଜୁଗ୍ମ), ସୂର୍ଯ୍ୟ (ସୂର୍ଜ୍ୟ)। ଯ' ଧ୍ୱନି ପାଇଁ ବ୍ୟବହୃତ ଅତିରିକ୍ତ ଚିହ୍ନ 'ୟ' (ଜ୍ୟ ଫଳା) ବାସ୍ତବରେ ୟ' ଧ୍ୱନିର ଚିହ୍ନ ରୂପେ ବ୍ୟବହୃତ। ଯଥା- ସତ୍ୟ, ଭାଗ୍ୟ, କାମ୍ୟ, ଶୂନ୍ୟ। ସ୍ଥଳ ବିଶେଷରେ ଯ' ଏବଂ ୟ' ସମାନ ଅର୍ଥରେ ବ୍ୟବହୃତ ହୋଇଥାନ୍ତି। ଯଥା- ବିଯୋଗ (ବିଜୋଗ, ବିୟୋଗ) ତତ୍‌ସମ ଶବ୍ଦମାନଙ୍କରେ ସଂସ୍କୃତର ୟ'ସ୍ଥାନରେ ଓଡ଼ିଆ ଭାଷାରେ ଏହି ଧ୍ୱନିଟିର ବ୍ୟବହାର ମୁଖ୍ୟତଃ ପରିଦୃଷ୍ଟ।

ପାର୍ଶ୍ୱିକ 'ଳ୍' ଧ୍ୱନି ଓଡ଼ିଆ ଭାଷାର ଏକ ବୈଶିଷ୍ଟ୍ୟ। ପ୍ରାଚୀନ ଭାରତୀୟ ଆର୍ଯ୍ୟଭାଷାରେ ଏହି ଧ୍ୱନିର ବ୍ୟବହାର ଦ୍ରାବିଡ଼ ଭାଷାରୁ ଆନୀତ ବୋଲି ଅନେକ ମତ ଦିଅନ୍ତି। ଅନ୍ୟାନ୍ୟ ସମଗୋତ୍ରୀୟ ଭାଷାରେ କେବଳ 'ଲ'ର ବ୍ୟବହାର ଥିବାବେଳେ ଓଡ଼ିଆ ଭାଷାରେ 'ଳ' ଧ୍ୱନିର ବ୍ୟବହାର ବହୁଳ। କୌଣସି ଶବ୍‌ଦର ଆରମ୍ଭରେ ବା ଶେଷରେ ଏହା ମିଳେ ନାହିଁ। ମଧ୍ୟସ୍ଥିତିରେ ଏହା ବ୍ୟବହୃତ। ଯଥା- କାଳ, କଳା, କାଳି।

ଓଡ଼ିଆ ଭାଷାରେ ବ୍ୟବହୃତ ପ୍ରାୟ ସମସ୍ତ 'ସ୍' ଧ୍ୱନି ଦନ୍ତ୍ୟ ସଂଘର୍ଷୀ ରୂପେ ଉଚ୍ଚାରିତ ହୁଅନ୍ତି। ସ୍ପର୍ଶ (ସ୍ପର୍ସ) ବର୍ଷ (ବର୍ସ), ଅର୍ଶ (ଅର୍ସ୍) ପ୍ରଭୃତି ସମସ୍ତ 'ସ' ଧ୍ୱନି ସମାନ ଭାବେ ଉଚ୍ଚାରିତ ହୁଅନ୍ତି। ପ୍ରାଚୀନ ସାହିତ୍ୟରେ ତିନୋଟି 'ସ୍' ଲିପିର ଯାଦୃଚ୍ଛା ବ୍ୟବହାର ପରିଦୃଷ୍ଟ ହୁଏ। ଇ, ଈ, ଉ, ଊ, ଜ, ଯ, ଭଳି ସାଧାରଣଙ୍କ ଲେଖାରେ 'ସ୍' ମାନଙ୍କର ଯାଦୃଚ୍ଛା ପ୍ରୟୋଗ ମିଳିଥାଏ। ଅପ୍ରାସଙ୍ଗିକ ନ ହେଲେ ଏହି ଲିପି ଭିନ୍ନତା ଅର୍ଥ ପ୍ରକାଶରେ ବାଧାସୃଷ୍ଟି କରନ୍ତି ନାହିଁ[୩]। ଧ୍ୱନିର ପୃଥକ୍ ବ୍ୟବହାର ନଥିବାରୁ ଏଭଳି ସନ୍ଦେହ ସୃଷ୍ଟି ହୋଇଥାଏ। ବକ୍ତା-"ରାମଙ୍କ ସରରେ ରାବଣ ନିହତ ହେଲା" କହିବା ବେଳେ ତାଲବ୍ୟ 'ଶ'ର ବ୍ୟବହାର କରେ ନାହିଁ। ପ୍ରାସଙ୍ଗିକ ଭାବେ ଅର୍ଥ ପ୍ରକାଶିତ ହୋଇଥାଏ। ଗଞ୍ଜାମ ଅଞ୍ଚଳର କେତେକ ବ୍ରାହ୍ମଣ ଶାସନରେ 'ସ୍ୟାଗ', 'ସ୍ୟାନ୍ତି'ର ଉଚ୍ଚାରଣରେ ତାଲବ୍ୟ 'ଶ'ର ବ୍ୟବହାର ମିଳେ।

ଅର୍ଦ୍ଧସ୍ୱର 'ୟ'ର ବ୍ୟବହାର ଓଡ଼ିଆ ଭାଷାରେ ବହୁଳଭାବେ ସ୍ୱତନ୍ତ୍ର ସ୍ଥିତିରେ ମିଳିଥାଏ। କିନ୍ତୁ ଅନ୍ୟ ଅର୍ଦ୍ଧସ୍ୱର ୱ (ଅର୍ବର୍ଗ୍ୟ ବ)ର ସ୍ୱତନ୍ତ୍ର ବ୍ୟବହାର କେବଳ କେତେକ ବୈଦେଶିକ ଶବ୍‌ଦରେ ମିଳେ, ଯଥା- ରେଳ ୱାଗନ, ୱାରଣ୍ଟ। ଯୁକ୍ତ ବ୍ୟଞ୍ଜନରେ ଏହା ବହୁକାଳରୁ ବ୍ୟବହୃତ, ଯଥା- ପକ୍ୱ ସତ୍ୱ, ବିହ୍ୱଳ।

'କ୍ଷ' ଧ୍ୱନିର ମୂଳ ଗୁଣ ଲୋପପାଇ ଏହା ଭିନ୍ନ ଭିନ୍ନ ପରିବେଶରେ (ଖ) ବା (ଖ୍ୟ) ରୂପେ ଉଚ୍ଚାରିତ ହୁଏ। (ଇ) ଯୁକ୍ତ ହେଲେ ଏହା (ଖ) ଭାବେ ଉଚ୍ଚାରିତ ହୁଏ,

ଯଥା- କ୍ଷିତି (ଖିତି), ପକ୍ଷୀ (ପଖି), ଆକ୍ଷି (ଆଖି)। ଅନ୍ୟସ୍ୱର ଧ୍ୱନିମାନଙ୍କ ଯୋଗରେ ଏହି ଧ୍ୱନିଟି (ଖ୍ୟ)ରେ ପରିଣତ ହୁଏ। କ୍ଷତି (ଖ୍ୟତି), ରକ୍ଷା (ରଖ୍ୟା), ଚକ୍ଷୁ (ଚଖ୍ୟୁ), ଲକ୍ଷେ (ଲଖ୍ୟେ), କ୍ଷୋଭ (ଖ୍ୟୋଭ)। 'ଯ' ଅର୍ଦ୍ଧସ୍ୱର ଯୋଗରେ ଏହି ଧ୍ୱନି 'ଅ'ସ୍ୱର ଯୋଗ ଉଚ୍ଚାରଣ ସହ ସମାନ - ଯକ୍ଷ, ସାକ୍ଷ୍ୟ, ଲକ୍ଷ, ଲକ୍ଷ୍ୟ। ଅନ୍ୟ ବ୍ୟଞ୍ଜନ ଯୋଗ ହେଲେ 'କ୍ଷ' 'ଖ'ରେ ପରିଣତ ହୁଏ, ଯଥା- ଲକ୍ଷ୍ମୀ (ଲଖ୍ମି)। ଏହି ଧ୍ୱନି ଓଡ଼ିଆ ଭାଷାରେ 'ଛ'ରେ ପରିଣତ ହୋଇଥିବାର ଦୃଷ୍ଟାନ୍ତ ମିଳେ। ଯଥା- ମକ୍ଷି>ମାଛି। ପ୍ରାଚୀନ ପୋଥିମାନଙ୍କରେ 'କ୍ଷ' ଏବଂ 'ଛ' ଉଭୟର ବ୍ୟବହାର ସମାନ ପରିବେଶରେ ହୋଇଥିବାର ଦୃଷ୍ଟାନ୍ତ ବହୁଳ। କ୍ଷୁଦ୍ରତମ, ଛିଦ୍ରମତି; ଛାର, କ୍ଷାର; ଛାମୁ, କ୍ଷାମୁ; ଛୁଇଂ, କ୍ଷୁଇଂ।

ଅନୁନାସିକ ଚିହ୍ନ /ଂ/ (ଅନୁସ୍ୱାର) କେତେକ ସ୍ଥାନରେ ସ୍ପର୍ଶବ୍ୟଞ୍ଜନ ଭଳି ଉଚ୍ଚାରିତ ହୁଏ। ଯଥା- ବଂଶୀ (ବଙ୍‌ଶି), ସିଂହ (ସିଙ୍ଘ), ଇଂରାଜୀ (ଇଙ୍ଗ୍ରାଜି)।

'ଜ୍ଞ' ଯୁକ୍ତବ୍ୟଞ୍ଜନଟି ଜ୍ ଏବଂ ଞ୍‌ର ମିଶ୍ରଣରେ ଉତ୍ପନ୍ନ ବୋଲି ପଣ୍ଡିତମାନେ ବିଶ୍ୱାସ କରୁଥିଲେ ମଧ୍ୟ ଓଡ଼ିଆ ଭାଷାରେ ଏହା (ଗ୍ୟଁ) ରୂପେ ବ୍ୟବହୃତ। ପ୍ରାଚୀନ ପୋଥୀମାନଙ୍କରେ ଗ୍ୟାନ, ଆଗ୍ୟାଁ ପ୍ରଭୃତି ଶବ୍‌ଦର ବହୁଳ ବ୍ୟବହାର ପରିଦୃଷ୍ଟ ହୁଏ।

'ଷ୍ଣ' (ଷ୍‌ଣ)ର ଉଚ୍ଚାରଣ ସାଧାରଣ ଭାବରେ (ସ୍‌ଟଁ)ରେ ପରିଣତ ହୋଇଛି। କେତେକ ଏହି ଧ୍ୱନିଟିକୁ (ସ୍ନ) ରୂପେ ମଧ୍ୟ ଉଚ୍ଚାରଣ କରନ୍ତି। ଯଥା- କୃଷ୍ଣ (କ୍ରୁସ୍‌ଟଁ) ବା (କ୍ରୁସ୍ନ), ବିଷ୍ଣୁ (ବିସ୍‌ଟୁଁ) ବା (ବିସ୍ନୁ)।

ତ୍ସ (ତ୍‌ସ) ଧ୍ୱନି ଓଡ଼ିଆରେ (ଛ) ବା (ସ୍ଛ) ରୂପେ ବ୍ୟବହୃତ, ଉତ୍ସବ- (ଉଛବ) ବା (ଉସ୍ଛବ), ବତ୍ସା- (ବଛା) ବା (ବସ୍ଛା)।

**ଲିପି :** ଓଡ଼ିଆ ବର୍ଣ୍ଣମାଳାର ବିଭିନ୍ନ ଲିପି ଭିନ୍ନ ଭିନ୍ନ ସମୟରେ ପ୍ରଚଳିତ ବିଭିନ୍ନ ପ୍ରଦେଶର ଲିପିରୁ ସୃଷ୍ଟି ହୋଇଥିଲା[୪]। ଦାକ୍ଷିଣାତ୍ୟର ପ୍ରଭାବ ଏବଂ ତାଳପତ୍ର ଲେଖନୀଦ୍ୱାରା ଲେଖିବା ସମୟରେ ପ୍ରାଚୀନ ନାଗରୀ ଲିପିର ଉପରିଭାଗର ସରଳରେଖାଟିକୁ ପରିତ୍ୟାଗ କରାଯାଇଥିବାର ପଣ୍ଡିତମାନେ ମତ ଦିଅନ୍ତି। ବ୍ରାହ୍ମୀ ଲିପିର ଏହି ଗୋଲାକୃତ ରୂପ ସମସ୍ତ ଆର୍ଯ୍ୟଭାଷାମାନଙ୍କର ଲିପିମାନଙ୍କ ମଧ୍ୟରେ ଏକ ବୈଶିଷ୍ଟ୍ୟ। ଓଡ଼ିଆ ଲିପିମାନଙ୍କ ମଧ୍ୟରୁ ଙ, ଉ, ର, ଲ, ହ[୫] ପ୍ରଭୃତି ଲିପିମାନଙ୍କ ତଳେ ପୁଚ୍ଛ ପରି ଏକ ଚିହ୍ନ ଯୁକ୍ତ କରାଯାଏ।

ଧ୍ୱନାତ୍ମକ ଭାବରେ ଅକ୍ଷର (Syllable) ଅନୁସାରେ ଲିପିମାନ ସୃଷ୍ଟି ହେବାପରେ ସଂଯୁକ୍ତ ବ୍ୟଞ୍ଜନ ଲିପିମାନ ସୃଷ୍ଟି ହୋଇଛନ୍ତି। ଯୁକ୍ତ ବ୍ୟଞ୍ଜନ ପାଇଁ ସମଗୋତ୍ରୀ ଅନ୍ୟାନ୍ୟ

ଭାଷା ଅପେକ୍ଷା ବହୁ ଅତିରିକ୍ତ ଚିହ୍ନ ବା ଫଳାର ବ୍ୟବହାର ଓଡ଼ିଆ ଭାଷାରେ ପରିଦୃଷ୍ଟ ହୁଏ। ଏମାନଙ୍କ ମଧ୍ୟରୁ ସୀମିତ ପରିସର ମଧ୍ୟରେ କେତୋଟି ବୈଶିଷ୍ଟ୍ୟକୁ ଆଲୋଚନା କରାଯାଉଛି।

(ର୍) ଧ୍ୱନି ଅନ୍ୟ କୌଣସି ବ୍ୟଞ୍ଜନର ପୂର୍ବରେ ଯୋଗ ହେଲେ ଏହି ଲିପିର ପ୍ରାୟ ଉପରିଭାଗ ଏବଂ ପରେ ଯୋଗ ହେଲେ ପ୍ରାୟ ନିମ୍ନ ଭାଗ ପରବର୍ତ୍ତୀ ଲିପିର ନିମ୍ନରେ ଯୋଗ କରାଯାଏ- କ୍ର, ପ୍ର, ତ୍ର, କ୍ତ, ପ୍ତ, ନ୍ତ। (ର୍) ଧ୍ୱନି ଯୁକ୍ତ ବ୍ୟଞ୍ଜନରେ ପୂର୍ବ ଓ ପର ସ୍ଥାନରେ ଭିନ୍ନ ଅତିରିକ୍ତ ରୂପ ନିଏ- ନର୍କ, ନକ୍ର।

(ହ୍) ଧ୍ୱନି ପୂର୍ବରୁ ନ୍, ମ୍, ଲ୍ ରହିଲେ, ଲିପିରେ ଏହାପରେ ସୂଚିତ କରାଯାଏ, ଯଥା- (ନ୍‌ହ) = ହ୍ନ, (ମ୍‌ହ) + ହ୍ମ, (ଲ୍‌ହ) = ହ୍ଲ

ଲିପିମାଳାରେ ଓଷ୍ଠ୍ୟ ସ୍ପର୍ଶ 'ବ' ଏବଂ ଅର୍ଦ୍ଧସ୍ୱର 'ୱ' ନିମିତ୍ତ ସ୍ୱତନ୍ତ୍ର ଲିପି ନାହିଁ ଏବଂ ଉଭୟ ଧ୍ୱନିର ଅତିରିକ୍ତ ଚିହ୍ନ ମଧ୍ୟ ସମାନ। ଯଥା- ଆମ୍ବ, ପକ୍ୱ। ଏହି ଅର୍ଦ୍ଧ ସ୍ୱରଟି ପାଇଁ ଭାଷାତତ୍ତ୍ୱବିତ୍‌ମାନେ 'ବ' ଲିପିର ମଧ୍ୟରେ ଏକ ବିନ୍ଦୁ ଦେଇ ଲେଖିବାର ପ୍ରୟାସ କରିଛନ୍ତି[୬]।

'ଡ' ଏବଂ 'ଢ' ଶବ୍ଦର ମଧ୍ୟ ସ୍ଥିତିରେ ସ୍ୱତନ୍ତ୍ର ଭାବେ ରୂପ ନେଲେ ସ୍ୱତଃ ପରିବର୍ତ୍ତିତ ଭାବେ ଉଚ୍ଚାରିତ ହେଉଥିଲେ ମଧ୍ୟ ସେଥିପାଇଁ ଲିପିର ତଳେ ବିନ୍ଦୁ ଦେଇ ଡ଼, ଢ଼ ର ବ୍ୟବହାର ଦେଖାଯାଏ। 'ଚ' ଲିପିରେ ଏହିପରି ଏକ ବିନ୍ଦୁର ବ୍ୟବହାର ମଧ୍ୟ ମିଳିଥାଏ।

ଗୋଟିଏ (ସ୍) ଧ୍ୱନିର ବ୍ୟବହାର ଉଚ୍ଚାରଣରେ ଥିବାବେଳେ ପାରମ୍ପରିକ ରୀତିରେ ତିନିଗୋଟି ଶ, ଷ, ସ ଲିପି ଓ ଗୋଟିଏ (ଜ୍) ଧ୍ୱନି ପାଇଁ ଜ ଏବଂ ଯ ଲିପି ହ୍ରସ୍ୱସ୍ୱର (ଇ) ଏବଂ (ଉ) ଧ୍ୱନିପାଇଁ ଈ, ଊ ର ଅଧିକ ବ୍ୟବହାର ଲିପିମାଳାରେ ପରିଦୃଷ୍ଟ ହୁଏ।

ଭାରତୀୟ ଆର୍ଯ୍ୟଭାଷାର ଲିପିମାନେ ଧ୍ୱନ୍ୟାତ୍ମକ। ତେଣୁ କାଳକ୍ରମେ ଏହି ଲିପିମାଳାରେ ଯେ ଅନେକ ପରିବର୍ତ୍ତନ ଘଟିବ ଏଥିରେ ସନ୍ଦେହ ନାହିଁ। କାରଣ ଲୋକମୁଖରୁ ଯେଉଁ ଧ୍ୱନିମାନ କ୍ରମଶଃ ଲୋପ ପାଉଛନ୍ତି ଏବଂ ନୂତନ ଧ୍ୱନିମାନଙ୍କର ଆଗମ ହେଉଛି; ଫଳତଃ ଲିପି ପରିବର୍ତ୍ତନ ହେବା ସ୍ୱାଭାବିକ। ତିନୋଟି ଶ, ଷ, ସ, ଲିପି ସମ୍ପର୍କରେ ଶିକ୍ଷିତ ଏବଂ ବନାନ ସଚେତନ ଲୋକଙ୍କ ମନରେ ଯେତେ କୌତୂହଳ ସୃଷ୍ଟି

ହେଉନା କାହିଁକି, ସାଧାରଣଙ୍କ ବ୍ୟବହାରରେ ଏହାର ଯାଦୁଛା ବ୍ୟବହାର ଉଲ୍ଲେଖନୀୟ ଅଟେ ।

---

୧. ଓଡ଼ିଆ ଲିପିର କ୍ରମବିକାଶ - ଶ୍ରୀ ସତ୍ୟନାରାୟଣ ରାଜଗୁରୁ, ପୃ.୭୧
୨. ଓଡ଼ିଆ ଭାଷାର ଇତିହାସ - ପଣ୍ଡିତ ବିନାୟକ ମିଶ୍ର, ପୃ.୧୧୯
୩. 'ଏକ ସହ ହାଇସ୍କୁଲ ଛାତ୍ର' - ଦୈନିକ ସମାଜ- ୫୦ ଭାଗ ୩୩୧ ସଂଖ୍ୟା-୨୧।୧୨।୭୯
୪. ଓଡ଼ିଆ ଲିପିର କ୍ରମ ବିକାଶ - ଶ୍ରୀ ସତ୍ୟନାରାୟଣ ରାଜଗୁରୁ, ପୃ. ୨୪
୫. ଓଡ଼ିଆ ଲିପିର କ୍ରମ ବିକାଶ - ଶ୍ରୀ ସତ୍ୟନାରାୟଣ ରାଜଗୁରୁ, ପୃ. ୨୦
୬. ପ୍ରାକୃତ ଭାଷା ଏକ ଅଧ୍ୟୟନ - ଡଃ ଅପନ୍ନା ପ୍ରଧାନ

ପୋଥି ସଂରକ୍ଷଣ



ସୌଜନ୍ୟ : ଇଣ୍ଟରନେଟ୍



# ଓଡ଼ିଆ ଲିପିର ଉତ୍ପତ୍ତି ଓ ବିକାଶଧାରା

## ଯନ୍ତଣା ପରୀକ୍ଷିତ

ଓଡ଼ିଆ ଲିପିର ଉତ୍ପତ୍ତି ଓ ବିକାଶର ଧାରା ଆଲୋଚନା ପାଇଁ ଆମର ଯାହା ସରଞ୍ଜାମ ମିଳେ, ତାହାକୁ ଉପଜୀବ୍ୟ କରି ବିଚାର ଆଲୋଚନା ପରେ ଏହାର ଜନ୍ମ-ଜାତକ ଓ ବିକାଶର କ୍ରମ ସ୍ଥିର ହୋଇଥାଏ। ଏଥିପାଇଁ ପ୍ରାୟ ଦୁଇ ହଜାର ବର୍ଷ ତଳେ ଏ ଦେଶରେ ଯେଉଁସବୁ ଲିପି ପ୍ରଚଳିତ ଥିଲା ତାହାର ସ୍ଥିତି ଓ ଆକୃତି ବିଚାର କରି ଆଜିର ଲିପିର ମାନ ସ୍ଥିର କରିବାକୁ ହେଉଛି। ଖ୍ରୀ.ପୂ. ତୃତୀୟ ଶତାବ୍ଦୀରେ ଅଶୋକ ମୌର୍ଯ୍ୟ କଳିଙ୍ଗ ଜୟ କରି ଧଉଳି ଓ ଜଉଗଡ଼ରେ ଯେଉଁ ଧର୍ମାନୁଶାସନମାନ ଶିଳାଗାତ୍ରରେ ଯେଉଁ ଲିପିରେ ଖୋଦନ କରାଇଥିଲେ ତାହା ହେଉଛି ଦେଶର ସର୍ବପ୍ରଥମ ଲିପି। ଏହାକୁ ପ୍ରତ୍ନତତ୍ତ୍ୱବିତ୍‌ମାନେ ପ୍ରଥମ ଓ ପ୍ରାଚୀନ ବ୍ରାହ୍ମୀ ଲିପି ବୋଲି କହିଥାନ୍ତି। କେହି କେହି ପଣ୍ଡିତ କହନ୍ତି ଯେ ମିଶର ତଥା ମଧ୍ୟଏସିଆର ପ୍ରଚଳିତ ଲିପିର ଅନୁକରଣରେ ଏ ଶିଳାଲିପି ଖୋଦନ କରାଯାଇଥିଲା। କିନ୍ତୁ ଆର୍ଯ୍ୟମାନେ ଭାରତକୁ ଆସିବାର ବହୁ ପୂର୍ବରୁ ଏ ଦେଶର ସିନ୍ଧୁ ଉପତ୍ୟକାରେ ଏକ ଶିକ୍ଷିତ ସଭ୍ୟ ଜାତି ବାସ କରୁଥିଲେ ଏବଂ ତାଙ୍କର ଏକ ପ୍ରକାର ଲିପି ଥିଲା ବୋଲି ଐତିହାସିକ ତଥା ପୁରାତତ୍ତ୍ୱବିତ୍‌ମାନେ ମତ ଦିଅନ୍ତି। ଏହି ଲିପି ବା ସଂକେତର ପୁଣି ମିଶର ଓ ବାବିଲୋନ୍‌ଆ ପ୍ରଭୃତି ଦେଶରେ ଅତି ପ୍ରାଚୀନ କାଳରେ ଚଳୁଥିବା ଭାବ ପ୍ରକାଶକ ଚିତ୍ରଲିପି ସହିତ ସାଦୃଶ୍ୟ ରହିଛି। କିନ୍ତୁ ଏହି ସଂକେତରୁ ପରେ ଦୁର୍ବୋଧ ସରଳରେଖା ଦ୍ୱାରା ଅକ୍ଷର ବା ଲିପି ସୃଷ୍ଟି ହୋଇ ଲିପିବଦ୍ଧ କରାଯାଉଥିଲା। ଏହାକୁ ବ୍ରାହ୍ମୀ ଲିପି କୁହାଯାଏ। ଏହି ବ୍ରାହ୍ମୀଲିପି ବା ଚିତ୍ରଲିପିର ଦୂରତ୍ୱ ବୋଧେ ଦୁଇହଜାର ବର୍ଷ।

**ପ୍ରାଚୀନ ବ୍ରାହ୍ମୀଲିପି :**

ଆଗରୁ ସୂଚାଇ ଦିଆଯାଇଛି ଯେ, ଏହା ଭାରତୀୟ ଲିପିମାନଙ୍କ ମଧ୍ୟରେ ପ୍ରାଚୀନତମ ଲିପି। ଖରୋଷ୍ଠୀ (ଖର+ଓଷ୍ଠ) ଲିପି ମଧ୍ୟ ପଞ୍ଜାବରେ ପ୍ରଚଳିତ ଥିଲା। ଏହି ଖରୋଷ୍ଠୀ ଲିପି ହେଉଛି ବ୍ରାହ୍ମୀଲିପିର ସମସାମୟିକ। କିନ୍ତୁ ପଣ୍ଡିତମାନେ (ଯାସ୍କୋ, ପତଞ୍ଜଳି, ପାଣିନି ୫ମରୁ ୨ୟ ଶତାବ୍ଦୀ ଖ୍ରୀ.ପୂ.) ଏହି ବ୍ରାହ୍ମୀଲିପିରେ କାମ କରିଥିଲେ। ଏଥିରୁ ସ୍ପଷ୍ଟ

ଅନୁମିତ ହୁଏ ଯେ, ଖ୍ରୀ.ପୂ. ୫ମ ଶତାବ୍ଦୀର କିଛି କାଳ ପୂର୍ବରୁ ବ୍ରାହ୍ମୀଲିପିର ଉଦ୍‌ଭବ ହୋଇ ସାହିତ୍ୟିକ ସମ୍ମାନ ଲାଭ କରିଥିବ। ଉତ୍ତର ଭାରତରେ ବର୍ତ୍ତମାନ ଯେଉଁ ଲିପି ପ୍ରଚଳିତ ଅଛି, ସେମାନଙ୍କର ମୂଳାଧାର ହେଉଛି ବ୍ରାହ୍ମୀଲିପି। ଓଡ଼ିଆ, ବଙ୍ଗଳା, ଆସାମୀ ଓ ଦେବନାଗରୀ ଇତ୍ୟାଦି ଲିପିର ଜନକ ହେଉଛି ଏହି ବ୍ରାହ୍ମୀଲିପି। ପୁଣି ମଧ୍ୟ ପଣ୍ଡିତମାନେ ମତ ଦିଅନ୍ତି ଯେ, ଏହି ବ୍ରାହ୍ମୀଲିପି ଖ୍ରୀ.ପୂ. ପ୍ରାୟ ୫ମ ଶତାବ୍ଦୀରେ ସେମାଟିକ୍ ଲିପିରୁ ଉଦ୍‌ଭବ ଏବଂ ସେମାଟିକ୍ ଲିପି ଖ୍ରୀ.ପୂ. ଅଷ୍ଟମ ଶତାବ୍ଦୀରେ ଏ ଦେଶକୁ ଆସିଥିବାର ଐତିହାସିକ କାରଣମାନ ରହିଛି।

ପ୍ରାଚୀନ ବ୍ରାହ୍ମୀଲିପିରୁ ଲିପିକାର ବା ଲେଖନକାର ନିଜର ଅଭିରୁଚି ଯୋଗୁଁ ଯେଉଁ ବିଭିନ୍ନ ଶୈଳୀର ପ୍ରଶ୍ରୟ ନେଇଛନ୍ତି ଫଳରେ ଅକ୍ଷରଗୁଡ଼ିକ ବିଭିନ୍ନ ସମୟରେ ବିଭିନ୍ନ ଆକାର ଧାରଣ କଲା। ବର୍ତ୍ତମାନ ଯୁଗରେ ଯେପରି କାହାରି ଅକ୍ଷର ଅନ୍ୟ କୌଣସି ବ୍ୟକ୍ତିର ଅକ୍ଷର ସହିତ ମିଶୁନାହିଁ। ପୁଣି ବର୍ତ୍ତମାନ ମଧ୍ୟ ବିଭିନ୍ନ ଲେଖନକାର ବିଭିନ୍ନ ତାମ୍ର ବା ଧାତୁ ଫଳକରେ ଲେଖିଲାବେଳେ ଅକ୍ଷରର ଇଚ୍ଛାକୃତ ସୌନ୍ଦର୍ଯ୍ୟ ଅଭିବୃଦ୍ଧି କରିଥାନ୍ତି। ଫଳରେ ଲିଖନ ପ୍ରଣାଳୀର ସ୍ଥାୟିତ୍ୱ ଦୃଷ୍ଟିରୁ ଲିପିର ଅଙ୍କବାଙ୍କା ରେଖାବଳୀ କ୍ରମେ କ୍ରମେ ଗୋଲାକୃତି ଧାରଣ କଲା। ପୁଣି ତାଳପତ୍ର ବା ଭୁର୍ଜପତ୍ର ସେ ଲୁହା ବା ଧାତୁ ନିର୍ମିତ ଲେଖନୀ ଲିପିର ଗୋଲାକୃତି ପାଇଁ ବହୁ ଅଂଶରେ ଦାୟୀ।

**ପରବର୍ତ୍ତୀ ବ୍ରାହ୍ମୀଲିପି** (ଖ୍ରୀ.ପୂ. ୧ମ ଶତାବ୍ଦୀରୁ ଖ୍ରୀ.ଅ. ୪ର୍ଥ ଶତାବ୍ଦୀ) :

ଲିପିକାରଙ୍କ ଦ୍ୱାରା ଲିପିର ବହୁ କ୍ରମିକ ପରିବର୍ତ୍ତନ ଘଟିଲା। ଖାରବେଳଙ୍କ ଉଦୟଗିରିର ଶିଳାଲେଖ ଏବଂ ଖଣ୍ଡଗିରି ହାତୀଗୁମ୍ଫା ଶିଳାଲେଖ ପରବର୍ତ୍ତୀ ବ୍ରାହ୍ମୀଲିପିର ପର୍ଯ୍ୟାୟଭୁକ୍ତ। କଳିଙ୍ଗ ରାଜା ଖାରବେଳ ପାଲି ଭାଷାରେ ଏହି ଲିପି ଖୋଦନ କରାଇଛନ୍ତି ବୋଲି ଲିପିତତ୍ତ୍ୱବିତ୍‌ମାନେ ମତ ଦିଅନ୍ତି। କାରଣ ଅଶୋକଙ୍କ ଲିପିବଦ୍ଧ ଅନୁଶାସନର ଭାଷା ଥିଲା ପାଲି। କିନ୍ତୁ ସୁରେନ୍ଦ୍ର ମହାନ୍ତି ତାଙ୍କର ଓଡ଼ିଆ ସାହିତ୍ୟର ଆଦିପର୍ବ ପୁସ୍ତକର ୩୯ ପୃଷ୍ଠାରେ କହନ୍ତି ଯେ ଅଶୋକ ଓ ଖାରବେଳଙ୍କ ସମୟର ଲିପିରେ ଯେଉଁ ପାର୍ଥକ୍ୟ ଦେଖାଯାଏ ତାହା ହେଉଛି ଲିପିର କ୍ରମିକ ବିକାଶ ମାତ୍ର। ଅଶୋକଙ୍କ ସମୟର ଲିପି ବା ଅକ୍ଷରର ଶୀର୍ଷରେ ବିନ୍ଦୁ ବା ଚୂଳ ନଥିଲା, କିନ୍ତୁ ଖାରବେଳଙ୍କ ସମୟରେ ଏହି ଚୂଳ ଦେଖିବାକୁ ମିଳିଥାଏ। ଏପରି ହେବାର କାରଣ ହେଉଛି ଯେ, ଲିପିକାର ଅକ୍ଷରର ଇଚ୍ଛାକୃତର ସୌନ୍ଦର୍ଯ୍ୟ ବର୍ଦ୍ଧନ ପାଇଁ ଏପରି କରିଥାଇପାରେ। ତଥାପି ପ୍ରତ୍ନତତ୍ତ୍ୱବିତ୍‌ମାନେ ଏହାର କାରଣ ଅନୁସନ୍ଧାନ ପାଇଁ ସମୟର ବୌଦ୍ଧିକ ବିନିଯୋଗ କରି ଦର୍ଶାଇଲେ ଯେ,

ଅକ୍ଷରର ସ୍ପଷ୍ଟତା, ସରଳ ପଠନ, ସୌନ୍ଦର୍ଯ୍ୟ ଓ ସହଜ ଲିଖନ ଏବଂ ତାଳପତ୍ର ତଥା ଭୁର୍ଜପତ୍ରରେ ଲିପିର ସ୍ଥାୟିତ୍ୱ ପାଇଁ ଏପରି ହୋଇଛି।

ବିଭିନ୍ନ ଯୁଗରେ, ବିଭିନ୍ନ ସମୟରେ ବର୍ତ୍ତମାନ ପ୍ରଚଳିତ ଓଡ଼ିଆ ଲିପିର ଆକୃତିର ବିକାଶ ଘଟିଛି। ଯେଉଁ ଅକ୍ଷର ଯେତେ ଗୋଲାକୃତି ତାହାର ବୟସ ସେତେ ବେଶି ବୋଲି ଧରିନେବାକୁ ହେବ। କାରଣ ପ୍ରତ୍ନତତ୍ତ୍ୱବିତ୍‌ମାନେ କହନ୍ତି ଯେ ଆମ 'ଠ'ର ଆକୃତି ପୂର୍ଣ୍ଣ ଗୋଲାକୃତି ହୋଇଥିବାରୁ ଏହାର ଆଉ କିଛି ପରିବର୍ତ୍ତନ ନହୋଇ ଖ୍ରୀ.ପୂ. ତୃତୀୟ ଶତାବ୍ଦୀରୁ ଏ ପର୍ଯ୍ୟନ୍ତ ଅପରିବର୍ତ୍ତିତ ରହିଛି।

**ଖ୍ରୀ.ଅ. ଚତୁର୍ଥଠାରୁ ସପ୍ତମ ଶତାବ୍ଦୀ ମଧ୍ୟରେ ଓଡ଼ିଆ ଲିପିର ସ୍ୱରୂପ :**

ପ୍ରଥମ ଶତବ୍ଦୀରୁ ଚତୁର୍ଥ ଶତାବ୍ଦୀ (କେହି କେହି ପଞ୍ଚମ ଶତାବ୍ଦୀ କହିଥାନ୍ତି) ଓଡ଼ିଆ ଲିପି ଇତିହାସରେ ଅନ୍ଧକାର ଯୁଗ। କିନ୍ତୁ ଗୁପ୍ତ ରାଜାମାନେ ତୃତୀୟ ଶତାବ୍ଦୀର ଶେଷ ଦଶକ ଆଡ଼କୁ ଉତ୍କଳରେ ରାଜତ୍ୱ କଲେ। ଏହାଙ୍କ ସମୟରେ ଅର୍ଥାତ୍ ଚତୁର୍ଥ ଶତାବ୍ଦୀ ବେଳକୁ ପ୍ରଚଳିତ ଲିପିକୁ 'ଗୁପ୍ତ ଲିପି' କୁହାଯାଏ। ଏହି ଯୁଗରେ ସାଂସ୍କୃତିକ ଅଭ୍ୟୁତ୍‌ଥାନର ପ୍ରଭାବ ଯୋଗୁଁ ବ୍ରାହ୍ମୀଲିପି ଏକ ନୂତନ ବିକଶିତ ରୂପ ଧାରଣ କଲା। ଏହି ଲିପିରେ ବହୁ ଅଭିଲେଖ (ତାମ୍ରଫଳକ) ଆମର ଦୃଷ୍ଟିରେ ପଡୁଅଛି। ଏହି ଅଭିଲେଖଗୁଡ଼ିକର ସମୟ ଚତୁର୍ଥ ଶତାବ୍ଦୀର ଶେଷାର୍ଦ୍ଧରୁ ସପ୍ତମ ଶତାବ୍ଦୀ ଭିତରେ ସୀମାବଦ୍ଧ। କଳାହାଣ୍ଡି ଜିଲ୍ଲାର ତୁଷ୍ଟକରଙ୍କ ତାମ୍ରପତ୍ର ଚତୁର୍ଥ ଶତାବ୍ଦୀରେ, ଗଞ୍ଜାମସ୍ଥିତ ଜଉଗଡ଼ ଅନ୍ତର୍ଗତ ସୁମଙ୍ଗଳ ଗ୍ରାମର ଧର୍ମରାଜଙ୍କ ତାମ୍ରପତ୍ର ଷଷ୍ଠ ଶତାବ୍ଦୀ ଏବଂ ବାଲେଶ୍ୱର ସୋରୋଠାରୁ ଶମ୍ଭୁନାଥଙ୍କ ତାମ୍ରପତ୍ର ଓ ପୁରୀ କଣାଶରୁ ଲୋକବିଗ୍ରହଙ୍କ ତାମ୍ରଫଳକ ଏହି ଗୁପ୍ତଲିପିର ନମୁନା ବହନ କରିଛି। ଏହି ଯୁଗରେ ଓଡ଼ିଆ ବର୍ଣ୍ଣମାଳାର ଖ, ଗ, ଣ, ଥ, ଦ ଏବଂ ଶ ଏହି ଛଅଟି ଅକ୍ଷରର ଆଧୁନିକ ବିକାଶ ଘଟିଛି ବୋଲି ଲିପିତତ୍ତ୍ୱବିତ୍‌ମାନେ ମତ ଦିଅନ୍ତି। ତେଣୁ ଏହି ଅକ୍ଷରଗୁଡ଼ିକର ପରମାୟୁ ବୋଧହୁଏ ୧୫୦୦ ବର୍ଷ ହେବ।

**ମଧ୍ୟଯୁଗୀୟ କଳିଙ୍ଗ ଲିପି :**

ସପ୍ତମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ଭିତର ଲିପିକୁ ମଧ୍ୟଯୁଗୀୟ କଳିଙ୍ଗ ଲିପି କୁହାଯାଏ। କିନ୍ତୁ ଏହି ଲିପିର ଅବ୍ୟବହିତ ପୂର୍ବରୁ ପଞ୍ଚମରୁ ଅଷ୍ଟମ ଶତାବ୍ଦୀ ଭିତରେ ଆଉ ଗୋଟିଏ ଲିପି ପ୍ରଚଳିତ ଥିଲା। ସେହି ଲିପିର ବିଶେଷତ୍ୱ ହେଉଛି ଯେ, ପ୍ରତ୍ୟେକ ଅକ୍ଷର ଉପରେ ଏକ ଚାରିକୋଣିଆ ବର୍ଗାକାର ଶୀର୍ଷାଂଶ ଥିଲା, ଯାହାର ସାଦୃଶ୍ୟ ଗୋଟିଏ ଗୋଟିଏ ପେଡ଼ି (Box) ପରି ଥିଲା। ଏହି ଲିପିକୁ ପେଟିକା ଲିପି କୁହାଯାଏ। ଏ ଲିପିର

ବିସ୍ତୃତ ନମୁନା ମିଳୁନାହିଁ। ଅନୁମାନ କରାଯାଏ ଯେ ସେହି ସମୟରେ ଗୋଟିଏ ଲିପିକାର ଗୋଷ୍ଠୀ ବୋଧହୁଏ ଏପରି ଲେଖିବାକୁ ପସନ୍ଦ କରୁଥିଲେ। କିନ୍ତୁ ପୃଷ୍ଠପୋଷକତାର ଅଭାବରୁ ଏ ଲିପି ରହିପାରିଲା ନାହିଁ।

ଏହି ପେଟିକା ଲିପିର ଠିକ୍ ପରବର୍ତ୍ତୀ ଲିପି ହେଉଛି କଳିଙ୍ଗ ଲିପି। ଏହା ଅଷ୍ଟମ-ନବମ ଶତାବ୍ଦୀରୁ ଆରମ୍ଭ ବୋଲି ଜଣାଯାଏ। ଏହାକୁ କଳିଙ୍ଗ ଲିପି କହିବାର ତାତ୍ପର୍ଯ୍ୟ ହେଉଛି ଯେ ଏହି ଲିପିର ବହୁ ଅକ୍ଷର ଗୋଲାକାର ଥିଲା ଓ ଅନ୍ୟଗୁଡ଼ିକର କ୍ରମିକ ଅଭିବୃଦ୍ଧି ଘଟୁଥିଲା। ଏହି ଲିପି ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ ପ୍ରଚଳିତ ଥିଲା। ଗଙ୍ଗବଂଶ ଓ ସୋମବଂଶ ରାଜାମାନେ ଏହି ଲିପି ବ୍ୟବହାର କରୁଥିଲେ। କେହି କେହି ମତ ଦିଅନ୍ତି ଯେ, ଏହି କଳିଙ୍ଗ ଲିପି ବଙ୍ଗଳା ଲିପି ଦ୍ୱାରା ପ୍ରଭାବିତ। ମାତ୍ର ଏହାକୁ ସୁରେନ୍ଦ୍ର ମହାନ୍ତି ଓ ଡ.ଦେବୀ ପଟ୍ଟନାୟକ ଏକ ହାସ୍ୟାସ୍ପଦ ଆଲୋଚନା ବୋଲି ମତ ଦିଅନ୍ତି। କାରଣ ଯେତେବେଳେ ଆମ ଲିପିର କ୍ରମିକ ଅଭିବୃଦ୍ଧି ଖ୍ରୀ.ପୂ.ରୁ ସୂଚନା ମିଳେ ସେତେବେଳେ କେଉଁ କାରଣରୁ ଏହି ସମୟରେ ଏହି ଲିପି ବଙ୍ଗଳା ଲିପି ଦ୍ୱାରା ପ୍ରଭାବିତ ହେବ ? ବଙ୍ଗଳା-ଓଡ଼ିଆ ଦ୍ୱିଭାଷିକ ଅଭିଲେଖ ଏ ପର୍ଯ୍ୟନ୍ତ ଆମର ଦୃଷ୍ଟି ପଥାରୂଢ଼ ହୋଇନାହିଁ। ବରଂ ତାମିଲ-ଓଡ଼ିଆ ଦ୍ୱିଭାଷିକ ଶିଳାଲେଖ ଭୁବନେଶ୍ୱରଠାରେ ମିଳିଛି। ଏଥିରୁ ଜଣାଯାଏ ଯେ, ଆମର ସାଂସ୍କୃତିକ, ସାମାଜିକ, ସାହିତ୍ୟିକ ସମ୍ପର୍କ ବେଶୀ ଦକ୍ଷିଣ ସହିତ ଥିଲା; ଉତ୍ତର ସହିତ ନୁହେଁ। ବରଂ ଆମ ଲିପି ଦ୍ରାବିଡ଼ୀୟ ଦକ୍ଷିଣୀ ଲିପି ଦ୍ୱାରା କାଁ ଭାଁ ପ୍ରଭାବିତ ହୋଇଥିବାର ସମୀଚୀନତା ରହିଛି।

ପୁଣି ଲିପିତତ୍ତ୍ୱବିତ୍ ବ୍ୟୁହଲର କହନ୍ତି ଯେ ଆମର କଳିଙ୍ଗ ଲିପି ହେଉଛି ପ୍ରୋଟୋ ବେଙ୍ଗଲୀ ଲିପି। ସେ ଏହାର କାରଣ ଦର୍ଶାଇଛନ୍ତି ଯେ, ମାଗଧୀ ପ୍ରାକୃତର ଲିପି ଥିଲା ଏହି ପ୍ରୋଟୋ ବେଙ୍ଗଲୀ ଯେହେତୁ ଆସାମୀ, ବଙ୍ଗଳା ଓ ଓଡ଼ିଆ ଭାଷା ଏହି ମାଗଧୀ ପ୍ରାକୃତରୁ ଉତ୍ପନ୍ନ ଓଡ଼ିଆ ଲିପିର ଆଦ୍ୟ ସୂଚନା ସେହି ପ୍ରୋଟୋ ବେଙ୍ଗଲୀ, ଆଧୁନିକ ବଙ୍ଗଳା ନୁହେଁ। ବିଦେଶୀ ଆଲୋଚକ ବ୍ୟୁହଲରଙ୍କ ଏହି ସହାନୁଭୂତିଶୀଳ ଆଲୋଚନାକୁ ଆମ ଓଡ଼ିଶାର ସାହିତ୍ୟ-ଐତିହାସିକ ସୁରେନ୍ଦ୍ର ମହାନ୍ତି ସମାଲୋଚନା କରି ସେହି ଲିପିକୁ ପ୍ରତ୍ନ-ପୂର୍ବ ଭାରତୀୟ ଲିପି କହିବା ଅଧିକ ସମୀଚୀନ ବୋଲି ଦୃଢ଼ ମତ ପୋଷଣ କରନ୍ତି।

**ପ୍ରତ୍ନ ଓଡ଼ିଆ ଲିପି :**

ନବମ ଶତାବ୍ଦୀର ଶେଷ ଭାଗରେ ଆଧୁନିକ ଓଡ଼ିଆ ବର୍ଣ୍ଣମାଳାର ବ୍ୟଞ୍ଜନବର୍ଣ୍ଣ କ, ଖ, ଗ, ଥ, ଧ, ମ, ଯ, ଳ, ଶ, ଷ, ହ ଏବଂ ସ୍ୱରବର୍ଣ୍ଣ ଭିତରେ ଆ, ଇ, ଏ, ଐ,

ଓ, ଔ, ଂ (ଅନୁସ୍ୱାର)ର ଆଧୁନିକ ସ୍ୱରୂପ ଜଣାପଡ଼ିଥିଲା। ଓଡ଼ିଆ ଲିପିର ଏକ ବିଶିଷ୍ଟ ବୈଶିଷ୍ଟ୍ୟ ଯେ ଏହାର ବହୁ ଅକ୍ଷର ତଳେ ଏକ ଲାଞ୍ଜ ଥାଏ, ଯାହା କି ଉତ୍ତର ଭାରତୀୟ ବା ଦକ୍ଷିଣ ଭାରତୀୟ ଲିପିରେ ଦେଖିବାକୁ ମିଳେ ନାହିଁ। ଓଡ଼ିଆ ଜାତିଥିଲା କଳାପ୍ରିୟ ଓ ସୌନ୍ଦର୍ଯ୍ୟପିପାସୁ। ତେଣୁ ବୋଧହୁଏ ଲିପିର ସୌନ୍ଦର୍ଯ୍ୟବର୍ଦ୍ଧନ ପାଇଁ ଏହି ସ୍ୱାତନ୍ତ୍ର୍ୟ ଗ୍ରହଣ କରିଥିଲେ। ଏହି ଅକ୍ଷରଗୁଡ଼ିକ ହେଲେ ଇ, ୯, ର, ଲ, ହ ଇତ୍ୟାଦି । ସୋମବଂଶୀ ରାଜାମାନେ ଏହି ପଦ୍ଧତି ଗ୍ରହଣ କରିଥିଲେ। ଏହାକୁ ପ୍ରତ୍ନ ଓଡ଼ିଆ ଲିପି କୁହାଯାଏ। ସମଗ୍ର ଅପଭ୍ରଂଶ ସାହିତ୍ୟ ଏହି ଲିପିରେ ଲେଖାଯାଇଛି। କାରଣ ବୌଦ୍ଧଗାନ ଓ ଦୋହାର ସିଦ୍ଧାଚାର୍ଯ୍ୟଗଣ ଓଡ଼ିଶାର ଲୋକ ଅଟନ୍ତି ଏବଂ ଗଙ୍ଗବଂଶର ଶେଷ ଆଡ଼କୁ (ନାଥ ସାହିତ୍ୟ ଯୁଗରେ) ପ୍ରତ୍ନ ଓଡ଼ିଆ ଲିପିଗୁଡ଼ିକର ଆଧୁନିକ ସ୍ୱରୂପ ପ୍ରାୟତଃ ଜଣାପଡ଼ିଥିଲା।

ଭାରତର ଲିପି ଇତିହାସରେ ଏକାଦଶ ଓ ତ୍ରୟୋଦଶ ଶତାବ୍ଦୀ ହେଉଛି ଏକ ଉଲ୍ଲେଯୋଗ୍ୟ ଅଧ୍ୟାୟ। ଭାରତର ବହୁ ଆଧୁନିକ ଭାଷାର ଲିପି ପ୍ରାୟ ଏହି ସମୟରେ ସ୍ୱାତନ୍ତ୍ର୍ୟ ଦର୍ଶାଇ ପାରିଥିଲା। ଗୁଜରାଟୀ, ପଞ୍ଜାବୀ ଓ ହିନ୍ଦୀ ଏକାଦଶ ଶତାବ୍ଦୀ ବେଳକୁ ଏବଂ ଓଡ଼ିଆ ଭାଷା ତ୍ରୟୋଦଶ ଶତାବ୍ଦୀ ବେଳକୁ ପ୍ରାକୃତ ଓ ଅପଭ୍ରଂଶର ଦୁର୍ବାର ପ୍ରଭାବରୁ ମୁକ୍ତିଲାଭ କରିପାରିଥିଲା ବୋଲି ଭାଷାବିତ୍ ଜନ୍ ବୀମ୍‌ସ ତାଙ୍କ ପ୍ରସିଦ୍ଧ ପୁସ୍ତକ "Comparative Grammar of Indo-aryan Language" ରେ ମତ ଦେଇଛନ୍ତି। କାରଣ ଓଡ଼ିଆ, ବଙ୍ଗଳା, ଆସାମୀ, ମୈଥିଳୀ ସାହିତ୍ୟର ତୁଳନାତ୍ମକ ବିଚାର କଲେ ଆମେ ଦେଖିବା ଯେ ଏହି ଚାରିଟି ଭାଷାରେ ସାହିତ୍ୟ ମାତ୍ର ଅର୍ଦ୍ଧ ଶତାବ୍ଦୀ ବା ଆଉ କିଛି ବାଟର ଦୂରତ୍ୱ ମଧ୍ୟରେ ସୃଷ୍ଟି ହୋଇଛି। କିନ୍ତୁ ଆମ ଓଡ଼ିଆ ଭାଷା ଓ ଲିପିର ଇତିହାସରେ ଏହାଙ୍କ ସମକାଳୀନ ବିକାଶ ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ।

ଗଙ୍ଗବଂଶ ପରେ ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ର ଦେବଙ୍କ ବେଳକୁ ଓଡ଼ିଆ ଲିପି ପୂର୍ଣ୍ଣରୂପେ ବର୍ତ୍ତୁଳାକାର ଧାରଣ କରିସାରିଥିଲା, ଏହାର ପ୍ରମାଣ ପୁରୀ ମନ୍ଦିରର ଜୟ ବିଜୟ ଶିଳାଲିପି ଓ ସାରଳାଙ୍କ ସାହିତ୍ୟ ସମ୍ଭାର। କାରଣ ଲିପିର ପୂର୍ଣ୍ଣ ବିକଶିତ ଅବସ୍ଥା ଆସିନଥିଲେ ଆମେ ସେ ଯୁଗରେ ଯୁକ୍ତ ବ୍ୟଞ୍ଜନର ପ୍ରୟୋଗ ଦେଖିବାକୁ ପାଇନଥାନ୍ତେ। ସାରଳା ତାଙ୍କ ସାହିତ୍ୟରେ ଏବଂ ରାଜାମାନେ ଦାନପତ୍ର ଓ ଅଭିଲେଖରେ ମହାର୍ଙ୍ଘା, ତାଂକ୍ର , ଗଜପ୍ତୀ, ଣ୍ରାଣ ଇତ୍ୟାଦି ଯୁକ୍ତ ବ୍ୟଞ୍ଜନ ପ୍ରୟୋଗର ସୂଚନା ମିଳିଥାଏ। ଏତଦ୍‌ଭିନ୍ନ ଏହି ଷୋଡ଼ଶ ଶତାବ୍ଦୀ ଭିତରେ ଆମ ଓଡ଼ିଆ ଭାଷାର ବହୁ କାବ୍ୟ କବିତା ଲେଖାହୋଇଛି ଏବଂ ସପ୍ତଦଶ ଶତାବ୍ଦୀ ବେଳକୁ ଏକ ସ୍ୱତନ୍ତ୍ର ଉପଓଡ଼ିଆ 'କରଣୀ' ଲିପି କଟକ, ପୁରୀ,

ବାଲେଶ୍ୱର ଜିଲ୍ଲାରେ ବ୍ୟବହାର ହେଉଥିଲା । ଏହି ଲିପିର ସୃଷ୍ଟି ବୋଧହୁଏ ପର୍ସିୟାନ ଲିପିରୁ ହୋଇଛି । କାରଣ ସେତେବେଳକୁ ଓଡ଼ିଶାରେ ମୁସଲମାନ ରାଜତ୍ୱ ଆରମ୍ଭ ହୋଇସାରିଥିଲା ଏବଂ ପର୍ସିୟାନ ଲିପି (ଉର୍ଦ୍ଦୁ ଲିପି) କେତେକ ଓଡ଼ିଆ କରଣଙ୍କ ଦ୍ୱାରା ସେହି ଲିପିର ଅନୁକରଣରେ ସୃଷ୍ଟି ହୋଇଥିବାର ବହୁ ଯୁକ୍ତି ମିଳେ । ଏ ଲିପିକୁ ସାଧାରଣ ଲୋକେ ପଢ଼ି ପାରନ୍ତି ନାହିଁ । ଏହା କେବଳ ଅମଲାମାନଙ୍କ ଦ୍ୱାରା କୋର୍ଟ କଚେରିର ଲିପି ଥିଲା ।

କେତେକ ପଣ୍ଡିତ ମତ ଦିଅନ୍ତି ଯେ ଆମ ଓଡ଼ିଆ 'ଅ' ଏବଂ 'ଆ' ପୂର୍ବଭାରତୀୟ କୌଣସି ଲିପିରୁ ନଆସି ଦକ୍ଷିଣ-ଭାରତୀୟ ଦ୍ରାବିଡ଼ ଗୋଷ୍ଠୀ ଅନ୍ତର୍ଭୁକ୍ତ 'ବଟ୍ଟେଲୁଲ' ନାମକ ଏକ ବର୍ଣ୍ଣମାଳାରୁ ଆସିଛି । ଏହା ଏବେ ମଧ୍ୟ ପ୍ରଶ୍ନବାଚୀ ହୋଇ ରହିଛି । କାରଣ ଆମ ଓଡ଼ିଆ ଲିପି ଭାରତୀୟ ଲିପିମାନଙ୍କ ଭିତରେ ଏକ ସ୍ୱତନ୍ତ୍ର ଲିପି । ଏହି ଲିପି ଉପରେ ଗାର ନଥିବା ଏବଂ ତଳେ ଲାଞ୍ଜ ଥିବା ହିଁ ପ୍ରମାଣ । ଏପରି ସ୍ଥଳେ ଅନ୍ୟ କୌଣସି ଲିପି ସହିତ ଆମ ଲିପିର ସାମାନ୍ୟ ସାଦୃଶ୍ୟ ଦର୍ଶାଇ ସେହି ଲିପିର ପ୍ରଭାବରେ ଆମ ଲିପି ସୃଷ୍ଟି ହୋଇଛି ବୋଲି କହିବା କେତେଦୂର ସମୀଚୀନ ? ଇଂରେଜୀ ଲିପିର 'O' (ଓ) ସହିତ ଓଡ଼ିଆ ଲିପିର 'O' ପୂର୍ଣ୍ଣ ଭାବରେ ମିଶି ଯାଉଛି । ତେବେ କ'ଣ ଆମେ କହିବା ଯେ ଇଂରେଜୀ ଲିପି 'O'ର ପ୍ରଭାବରେ ଓଡ଼ିଆ 'O'ର ସୃଷ୍ଟି ହୋଇଛି ବୋଲି ? ଓଡ଼ିଆ ଜାତି କଳାପ୍ରିୟ, କଠିନ ପଥରରେ ଓଡ଼ିଆ ଶିଳ୍ପୀ ଫୁଟାଇଛି କଳାର ଅପରୂପ ସୌନ୍ଦର୍ଯ୍ୟ । ଓଡ଼ିଆ ଲିପି ଏହି ଶିଳ୍ପୀର ଏକ ଆଧାର କହିଲେ ଅତ୍ୟୁକ୍ତି ହେବନାହିଁ । ଆମ ଓଡ଼ିଆ ଲିପିର ଏତେ ବିଶୁଦ୍ଧ ସ୍ୱାତନ୍ତ୍ର୍ୟ ଥିବା ବେଳେ ଲିପିର ସୃଷ୍ଟି ମୌଳିକ ବୋଲି ମନେହୁଏ ।

ତଥାପି ଓଡ଼ିଆ ଲିପି ଆର୍ଯ୍ୟ ଓ ଦ୍ରାବିଡ଼ ସଂସ୍କୃତି ମଧ୍ୟରେ ଏକ ସମନ୍ୱୟ ସ୍ଥାପନ କରିଛି । ଓଡ଼ିଶାର ଭୌଗୋଳିକ ଅବସ୍ଥିତି ମଧ୍ୟ ଦକ୍ଷିଣ ଓ ଉତ୍ତରର ମଧ୍ୟ ସ୍ଥଳରେ । ତେଣୁ ଏହାର ସାହିତ୍ୟ, ସଂସ୍କୃତି ଓ ସାମାଜିକ ଚେତନା ଏବଂ ଏହାର ଲିପି ଦକ୍ଷିଣ ଭାରତ ଓ ଉତ୍ତର ଭାରତର ପ୍ରଭାବରେ ପ୍ରଭାବିତ ହୋଇ ମଧ୍ୟ ସ୍ୱାତନ୍ତ୍ର୍ୟ କ୍ଷମତା ରକ୍ଷା କରିପାରିଛି । ଏହାହିଁ ଏହାର ବୈଶିଷ୍ଟ୍ୟ ।

ବିଂଶ ଶତାବ୍ଦୀରୁ ନୁହେଁ ଊନବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଓଡ଼ିଆ ଲିପିର ମାନ (Standrard) ଛାପାଖାନାରେ ଆବଦ୍ଧ ହୋଇ ସ୍ଥିରୀକୃତ ହୋଇଅଛି । ତଥାପି ଛାପା ଅକ୍ଷରର ମଧ୍ୟ ପରିବର୍ତ୍ତନ ଘଟୁଛି । ମନୋଟାଇପ୍ ଓ ଲିନୋଟାଇପ୍ ଆଦି ବୈଜ୍ଞାନିକ ଯନ୍ତ୍ରପାତିର ଉଦ୍‌ଭାବନ ଦ୍ୱାରା ଲିପିର ଆକୃତିରେ ମଧ୍ୟ ପରିବର୍ତ୍ତନ ଘଟୁଛି । ଦୀର୍ଘ ପଚାଶ ବର୍ଷ ବା

ଶହେ ବର୍ଷ ଅନ୍ତରରେ ମୁଦ୍ରିତ ହୋଇଥିବା ଦୁଇଗୋଟି ପୁସ୍ତକର ଅକ୍ଷରକୁ ପରୀକ୍ଷା କଲେ ଏ ଧାରଣା ପ୍ରାଞ୍ଜଳ ହୋଇଯିବ। ଏପରିକି ୧୯୬୦ ମସିହାର ସମାଜ ଖବରକାଗଜ ଏବଂ ୧୯୭୨ ମସିହାର ସମାଜ ଖବରକାଗଜର ମୁଦ୍ରଣ ଅକ୍ଷରରେ ବହୁ ତଫାତ୍ ଦେଖିବାକୁ ମିଳିଥାଏ। ତଥାପି ଏହି ଆକ୍ଷରିକ ଛାଞ୍ଚ ସାମାନ୍ୟ ପରିବର୍ତ୍ତନଶୀଳ ବେଳେ ହସ୍ତଲେଖାଗୁଡ଼ିକ ପୂର୍ଣ୍ଣ ପରିବର୍ତ୍ତନଶୀଳ। ଓଡ଼ିଆ ଲିପିର ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ବହୁ ଶତାବ୍ଦୀରୁ ଜଣାପଡ଼ିଥିଲେ ସୁଦ୍ଧା ଏବେ ଓଡ଼ିଆ ଲିପିରେ ଯେଉଁସବୁ ନାମଫଳକ (Name Plate) ଲେଖାଉଛନ୍ତି ତାହା କିଂଭୂତ ଦେଖାଯାଉଛି। କେଉଁ ଅକ୍ଷରର ଲାଞ୍ଜ ନାହିଁ ତ କେଉଁ ଅକ୍ଷର ଅଧା ଲେଖାହେଉଛି। ଏହାର ବହୁ ନମୁନା ସମ୍ବଲପୁର ଓ ରାଉରକେଲା ଏବଂ ଅନ୍ୟାନ୍ୟ ସହରରେ ରହିଛି। ସେହି ଅଣଓଡ଼ିଆ ଜାତି ଓଡ଼ିଶାରେ ବ୍ୟବସାୟ କରି ଓଡ଼ିଆ ଲିପିର ଆକୃତିକୁ ବିକୃତ କରିବା ଦ୍ୱାରା ସେହି ସହରର ବହୁ ଓଡ଼ିଆଙ୍କ ମନରେ ଓଡ଼ିଆ ଲିପିର ସ୍ୱାତନ୍ତ୍ର୍ୟ ନେଇ ବହୁ ମାନସିକ ପ୍ରଶ୍ନ ମଧ୍ୟ ଉଠୁଛି। କାରଣ ପ୍ରତ୍ୟେକ ଓଡ଼ିଆ ଜାଣେ ତା'ର ଲିପି ଓ ତା'ର ସଂସ୍କୃତି ହିଁ ତା'ର ଏବଂ ତା' ଜାତିର ବୈଶିଷ୍ଟ୍ୟ।

ପୋଥି ସଂରକ୍ଷଣ



ସୌଜନ୍ୟ : ଇଣ୍ଟରନେଟ୍



# ଓଡ଼ିଆ ଲିପି ସଂସ୍କାରର ଔଚିତ୍ୟ

## ନୀଳାଦ୍ରିଭୂଷଣ ହରିଚନ୍ଦନ

ଓଡ଼ିଆ ଲିପି ସଂସ୍କାରର ଆବଶ୍ୟକତା ସମ୍ପର୍କରେ ବିଭିନ୍ନ ସମୟରେ ଅନୁକୂଳ ମତମାନ ପ୍ରକାଶ ପାଇଆସୁଛି । ସପକ୍ଷବାଦୀ ମତ ଭିତରୁ ଗୋଟିଏ ହେଉଛି, ବହୁ ସଂଖ୍ୟାରେ ଯୁକ୍ତାକ୍ଷର ଶିକ୍ଷା କରିବାକୁ ପଡୁଥିବାରୁ କୋମଳମତି ଶିଶୁମାନେ ଅଯଥା ଭାରାକ୍ରାନ୍ତ ହେଉଛନ୍ତି । ଏଥିରୁ ସେମାନଙ୍କୁ ମୁକ୍ତି ଦେବା ଲାଗି ସହଜ ଯୁକ୍ତାକ୍ଷର ଲିଖନ ପ୍ରଣାଳୀ ଶିକ୍ଷା ଦିଆଯିବା ଉଚିତ । ଅନ୍ୟ ମତଟି ହେଉଛି, ଓଡ଼ିଆ ଲିପିର କଂପ୍ୟୁଟରୀକରଣକୁ ସରଳ କରିବା ପାଇଁ ବିକଳ୍ପ ଯୁକ୍ତାକ୍ଷର ଲିଖନ ପ୍ରଣାଳୀକୁ ଗ୍ରହଣ କରାଯିବା ଉଚିତ ।

ବର୍ତ୍ତମାନ ଦେଖାଯାଉଛି ଯେ ଅନେକ ଉଭୟ ପାରଂପରିକ ରୀତି ଓ ସଂସ୍କାରିତ ସରଳ ରୀତିରେ ଯୁକ୍ତାକ୍ଷର ଲେଖୁଛନ୍ତି । ଏପରିକି ଗୋଟିଏ ବାକ୍ୟରେ ଯୁକ୍ତବ୍ୟଞ୍ଜନ ଲେଖିବାକୁ ଯାଇ ଉଭୟ ଏକକାକ୍ଷର ଓ ଯୁକ୍ତାକ୍ଷରର ପ୍ରୟୋଗ କରୁଛନ୍ତି । ଏଥିରୁ ସ୍ପଷ୍ଟ ହେଉଛି ଯେ ସ୍ୱାଭାବିକ ଭାବେ ଲିପି ସଂସ୍କାର କ୍ରମଶଃ ଗ୍ରହଣୀୟ ହୋଇଚାଲିଛି ।

ପରଂପରା ବହୁ ସମୟରେ ପ୍ରଗତିର ବାଧକ ହୁଏ । ପରଂପରାକୁ ଜାବୁଡ଼ି ଧରି ସମୟୋପଯୋଗୀ ପରିବର୍ତ୍ତନକୁ ବିରୋଧ କରାଯିବା ଉଚିତ ନୁହେଁ । ଲିପିକୁ ସରଳ, ସହଜ ଓ ବୈଜ୍ଞାନିକ କରିବା ପାଇଁ ସଂସ୍କାର ଆବଶ୍ୟକ । ଅନେକଙ୍କର ଏକ ଭ୍ରାନ୍ତଧାରଣା ରହିଆସିଛି ଯେ ଓଡ଼ିଆ ଲିପିର ସଂସ୍କାର ବୈଜ୍ଞାନିକ ହୋଇପାରେ, କିନ୍ତୁ ବ୍ୟାକରଣସମ୍ମତ ନୁହେଁ । କିନ୍ତୁ ବର୍ତ୍ତମାନ ଯେଉଁ ଲିପିଗତ ପରିବର୍ତ୍ତନ କ୍ଷେତ୍ର ବିଶେଷରେ ଘଟିଛି ବା ଘଟୁଛି, ତାହା ଉଭୟ ଧ୍ୱନିବିଜ୍ଞାନସମ୍ମତ ଏବଂ ପାଣିନିବ୍ୟାକରଣସମ୍ମତ । ଓଡ଼ିଆରେ କଷ୍ଟଲିଖିତ ବର୍ଣ୍ଣର ସଂଖ୍ୟା ଅନେକ । ଅବଶ୍ୟ ଅଳ୍ପ କେତୋଟି ଲିପି ଅବ୍ୟବହୃତ ନହୋଇ ଲୋପ ପାଇଗଲାଣି ।

ଓଡ଼ିଆ ଏକ ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷା । ପ୍ରାଚୀନ ଭାରତୀୟ ଆର୍ଯ୍ୟ ଭାଷା ସଂସ୍କୃତରୁ ଉଦ୍ଭୂତ ହିନ୍ଦୀ, ମରାଠୀ, ଓଡ଼ିଆ, ଗୁଜୁରାଟୀ, ବଂଗଳା ପରି ଆଧୁନିକ ଭାରତୀୟ ଭାଷା ସମୂହ ଲିଖନ ପଦ୍ଧତିର ସାମ୍ୟ ଓ ସୌନ୍ଦର୍ଯ୍ୟ ରକ୍ଷା ପାଇଁ ସଂସ୍କୃତ ଭାଷାର

ଲିଖନ ପଦ୍ଧତିକୁ ଗ୍ରହଣ କରିଛି । ଓଡ଼ିଆ ବନାନ ରୀତି ସଂସ୍କୃତ ବନାନ ରୀତିକୁ ଅନୁସରଣ କରେ ।

କେତେକ ସ୍ଥଳରେ ସଂସ୍କୃତ ବ୍ୟାକରଣ ନିୟମର ବିକଳ୍ପ ମାର୍ଗଟି ଅନୁସରଣ କରାଯାଇଥିବାରୁ ଓଡ଼ିଆ ଲିପି ଅଯଥା ଭାରାକ୍ରାନ୍ତ ହୋଇପଡ଼ିଛି । ପାଣିନିଙ୍କ ବ୍ୟାକରଣ, ଅଷ୍ଟାଧ୍ୟାୟୀର ଏକ ସୂତ୍ର ହେଉଛି - ଅଚୋ ରହାଭ୍ୟାଂ ଦ୍ୱେ (ବିକଳ୍ପେ ଦ୍ୱିତ୍ୱ ବା), ଅର୍ଥାତ୍ ରେଫଯୁକ୍ତ ବ୍ୟଞ୍ଜନ ବର୍ଣ୍ଣକୁ ବିକଳ୍ପରେ ଦ୍ୱିତ୍ୱ କରାଯାଇପାରେ । ଦେବନାଗରୀ ଲିପିରେ ଲିଖିତ ସଂସ୍କୃତ ଶାସ୍ତ୍ରସମୂହରେ ପ୍ରାୟତଃ ବିକଳ୍ପ ମାର୍ଗଟି ଲକ୍ଷିତ ହୁଏନାହିଁ । ଦେବନାଗରୀ ଲିପି ଅନୁସରଣରେ ହିନ୍ଦୀ, ବଙ୍ଗଳା, ଅସମୀୟା ପ୍ରଭୃତି ଭାଷାର ଲିପିରେ ବିକଳ୍ପ ମାର୍ଗ ନାହିଁ । ବହୁ ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷା ଲିପିରେ ଦ୍ୱିତ୍ୱୀକରଣ ନାହିଁ । ଓଡ଼ିଆ ଲିପିରେ କିନ୍ତୁ ଏହି ବିକଳ୍ପ ଦ୍ୱିତ୍ୱୀକରଣ ମାର୍ଗଟି ଅନୁସୃତ ହୋଇଆସିଛି । ଆମ ଲିପିରେ କାହିଁକି କଷ୍ଟ ମାର୍ଗ ବା ସହଜ, ସ୍ୱାଭାବିକ ମାର୍ଗକୁ ଛାଡ଼ି ଅଯୌକ୍ତିକ ଭାବେ ବିକଳ୍ପ ମାର୍ଗକୁ ଗ୍ରହଣ କରାଯାଇଛି, ବୁଝିହୁଏ ନାହିଁ । ଦେବନାଗରୀ ଲିପିରେ ସଂସ୍କୃତ ଭାଷାର ବର୍ଣ, ପୁର୍ଣ, ସ୍ୱର୍ଣ, ସୂର୍ଯ, କାର୍ଯ, ଆଚାର୍ଯ, ଅର୍ଚନା, ଚର୍ଚିତ, ମୂର୍ଛନା, ମୂର୍ଛା, କର୍ଦମ, ଦୁର୍ଦଶା, ଦୁର୍ଦାନ୍ତ, ବର୍ତମାନ, ମୁହୂର୍ତ, କର୍ତବ୍ୟ, ଅନ୍ତର୍ଧାନ, ନିର୍ଧାରଣ, ଅର୍ଧ ପ୍ରଭୃତି ରେଫଯୁକ୍ତ ଶବ୍ଦଗୁଡ଼ିକୁ ବହୁ ସ୍ଥାନରେ ବିକଳ୍ପରେ ଦ୍ୱିତ୍ୱ କରାଯାଏ ନାହିଁ । ଓଡ଼ିଆ ଲିପିରେ କିନ୍ତୁ ଏହି ଶବ୍ଦଗୁଡ଼ିକ ବିକଳ୍ପ ନିୟମରେ ଲେଖାଯାଏ । ଯଥା - ବର୍ଣ୍ଣ, ପୂର୍ଣ୍ଣ, ସ୍ୱର୍ଣ୍ଣ, ସୂର୍ଯ୍ୟ, କାର୍ଯ୍ୟ, ଆଚାର୍ଯ୍ୟ, ଅର୍ଚ୍ଚନା, ଚର୍ଚ୍ଚିତ, ମୂର୍ଚ୍ଛନା, ମୂର୍ଚ୍ଛା, କର୍ଦ୍ଦମ, ଦୁର୍ଦ୍ଦଶା, ଦୁର୍ଦ୍ଦାନ୍ତ, ବର୍ତ୍ତମାନ, ମୁହୂର୍ତ୍ତ, କର୍ତ୍ତବ୍ୟ, ଅନ୍ତର୍ଦ୍ଧାନ, ନିର୍ଦ୍ଧାରଣ, ଅର୍ଦ୍ଧ ପ୍ରଭୃତି । ରେଫଯୁକ୍ତ ବ୍ୟଂଜନ ବର୍ଣ ଲେଖିବାବେଳେ ଦ୍ୱିତ୍ୱ ବର୍ଜନ କରିଦେଲେ ଆମ ଲେଖା ବଡ଼ ସହଜ ହୋଇଯିବ ।

ଅବଶ୍ୟ କେତେକ ଓଡ଼ିଆ ଲେଖକଙ୍କ ଲେଖାରେ ମୂଳ ଦ୍ୱିତ୍ୱବିହୀନ ପଦ୍ଧତିଟି ଅନୁସୃତ ହୋଇଥିବାର ଲକ୍ଷିତ ହୁଏ । କୌଣସି କୌଣସି ଓଡ଼ିଆ ଖବରକାଗଜ ସ୍ଥଳବିଶେଷରେ ରେଫଯୁକ୍ତ ବ୍ୟଂଜନକୁ ବିନା ଦ୍ୱିତ୍ୱରେ ଲେଖନ୍ତି । ଦ୍ୱିତ୍ୱ ବର୍ଜନ କ୍ରମେ ଗ୍ରହଣୀୟ ହୋଇ ଆସୁଥିବାର ଲକ୍ଷ୍ୟ କରାଯାଏ ।

ଅନୁସ୍ୱାର ସାହାଯ୍ୟରେ ଯୁକ୍ତାକ୍ଷରକୁ ସହଜ ଭାବେ ଲେଖିବା ପ୍ରଣାଳୀ ସର୍ବତ୍ର ଗୃହୀତ ନହେଲେ ମଧ୍ୟ ହିନ୍ଦୀ, ବଂଗଳା, ଓଡ଼ିଆ ପରି କେତେକ ଭାଷାରେ ଆଂଶିକ ଭାବେ ପ୍ରଚଳିତ । କେତେକ ଓଡ଼ିଆ ଲେଖକଂକ ଲେଖାରେ ଏହି ପଦ୍ଧତି ଲକ୍ଷଣୀୟ । ଭାରତୀୟ ଭାଷାରେ ପ୍ରଥମ ଧ୍ୱନିବିଜ୍ଞାନ ପୁସ୍ତକ (ହିନ୍ଦୀ)ର ରଚୟିତା ପ୍ରଫେସର ଗୋଲୋକ

ବିହାରୀ ଧଳ 'ମଣିଷର ଭାଷା'ର ଏକ ଅଧ୍ୟାୟରେ ବର୍ଗୀୟ ଯୁକ୍ତବ୍ୟଂଜନଗୁଡ଼ିକୁ ଅନୁସ୍ୱାର ସାହାଯ୍ୟରେ ଲେଖିବାକୁ ପରାମର୍ଶ ଦେଇଥିଲେ । ତାଂକର ମତ- ବର୍ଗୀୟ ଯୁକ୍ତବ୍ୟଂଜନ ଅର୍ଥାତ୍ ଙ୍କ, ଙ୍ଖ, ଙ୍ଗ, ଙ୍ଘ, ଞ୍ଚ, ଞ୍ଛ, ଞ୍ଜ, ଞ୍ଝ, ଣ୍ଟ, ଣ୍ଠ, ଣ୍ଡ, ଣ୍ଢ, ନ୍ତ, ନ୍ଥ, ନ୍ଦ, ନ୍ଧ, ମ୍ପ, ମ୍ଫ, ମ୍ବ, ମ୍ଭ କୁ ଂକ, ଂଖ, ଂଗ, ଂଘ, ଂଚ, ଂଛ, ଂଜ, ଂଝ, ଂଟ, ଂଠ, ଂଡ଼, ଂଢ଼, ଂତ, ଂଥ, ଂଦ, ଂଧ, ଂପ, ଂଫ, ଂବ, ଂଭ ରୂପେ ସଂପୃକ୍ତ ଯୁକ୍ତବ୍ୟଂଜନର ଅନୁନାସିକ ବର୍ଣ ସ୍ଥାନରେ ଅନୁସ୍ୱାର ଦେଇ ଲେଖିଦେଲେ ବହୁ ଯୁକ୍ତାକ୍ଷର ଶିଖିବା ଶ୍ରମରୁ ମୁକ୍ତି ମିଳିପାରିବ ।

ବର୍ଗୀୟ ବ୍ୟଂଜନର ପୂର୍ବରେ ପ୍ରଯୁକ୍ତ ଅନୁସ୍ୱାରଗୁଡ଼ିକ ପ୍ରତୀକାତ୍ମକ । ଏଗୁଡ଼ିକ ବଂଶୀ, ହଂସ, ସଂହାର, ସଂଶୟ, ଏବଂ ସ୍ୱାଗତଂ, ଶଂସିତ, ସ୍ୱୟଂ ପ୍ରଭୃତି ଶବ୍ଦର ପରବର୍ତୀ ଅନୁସ୍ୱାରଠାରୁ ଭିନ୍ନ । ପାଞ୍ଚଟି ବର୍ଗର ଅନୁନାସିକ ବା ନାସିକ୍ୟ ବର୍ଣ (ଙ, ଞ, ଣ, ନ, ମ) ସ୍ଥାନରେ ପ୍ରତୀକ ଭାବରେ ଏହି ଅନୁସ୍ୱାର ବ୍ୟବହାର କରାଯାଇପାରିବ । କ ବର୍ଗ (କଣ୍ଠ୍ୟ ବ୍ୟଂଜନ)ର କ, ଖ, ଗ, ଘ, ସେହି ବର୍ଗର ପଞ୍ଚମ ବର୍ଣ ଅର୍ଥାତ୍ ନାସିକ୍ୟ ବ୍ୟଂଜନ 'ଙ' ସହିତ ମିଳିତ ହେଲେ ଯଥାକ୍ରମେ ଙ୍+କ=ଙ୍କ, ଙ+ଖ=ଙ୍ଖ, ଙ୍+ଗ=ଙ୍ଗ, ଙ୍+ଘ=ଙ୍ଘ ହୁଏ । ଏଠାରେ ଙ ବଦଳରେ ଅନୁସ୍ୱାର ପ୍ରୟୋଗ କରି ଏହି ଚାରୋଟି ଯୁକ୍ତାକ୍ଷରକୁ ସରଳ ଭାବେ ଲେଖାଯାଇପାରେ, ଯଥା- ଂକ (ଶଂକା, ରଂକ), ଂଖ (ଶଂଖ, ପୁଂଖାନୁପୁଂଖ), ଂଗ (ରଂଗ, ବ୍ୟଂଗ), ଂଘ (ଉଲ୍ଲଂଘନ, ସଂଘ) ଇତ୍ୟାଦି । ଏହି ସ୍ଥଳରେ ବ୍ୟବହୃତ ଅନୁସ୍ୱାର କେବଳ 'ଙ'। ଚ ବର୍ଗ (ତାଳବ୍ୟ ବ୍ୟଂଜନ)ର ଚ, ଛ, ଜ, ଝ ସେହି ବର୍ଗର ପଞ୍ଚମ ବର୍ଣ ଅର୍ଥାତ୍ ଅନୁନାସିକ ବ୍ୟଂଜନ ଞ ସହିତ ମିଳିତ ହେଲେ ଯଥାକ୍ରମେ ଞ୍+ଚ=ଞ୍ଚ, ଞ୍+ଛ=ଞ୍ଛ, ଞ୍+ଜ=ଞ୍ଜ, ଞ୍+ଝ=ଞ୍ଝ ହୁଏ । ଏଠାରେ ଞ ପରିବର୍ତେ ଅନୁସ୍ୱାର ପ୍ରୟୋଗ କରି ଏହି ଚାରୋଟି ଯୁକ୍ତାକ୍ଷରକୁ ସହଜ ଭାବେ ଲେଖାଯାଇପାରେ, ଯଥା - ଂଚ (ମଂଚ, ଚଂଚଳ), ଂଛ (ବାଂଛା, ଲାଂଛନା), ଂଜ (ଅଂଜନ, ମଂଜୁଳ), ଂଝ (ପଂଝା, ବାଂଝ) । ଏଠାରେ ପ୍ରଯୁକ୍ତ ଅନୁସ୍ୱାର ହେଉଛି କେବଳ 'ଞ' । ସେହିପରି ଟ ବର୍ଗ (ମୂର୍ଦ୍ଧନ୍ୟ ବ୍ୟଂଜନ)ର ଟ, ଠ, ଡ, ଢ ସେହି ବର୍ଗର ପଞ୍ଚମ ବର୍ଣ ନାସିକ୍ୟ 'ଣ' ସହିତ ମିଳିତ ହେଲେ ଯଥାକ୍ରମେ ଣ୍+ଟ=ଣ୍ଟ, ଣ୍+ଠ=ଣ୍ଠ, ଣ୍+ଡ=ଣ୍ଡ, ଣ୍+ଢ=ଣ୍ଢ ହୁଏ । 'ଣ' ପରିବର୍ତେ ଅନୁସ୍ୱାର ପ୍ରୟୋଗ କରି ଏହି ଚାରୋଟି ଯୁକ୍ତାକ୍ଷରକୁ ସହଜ ଭାବେ ଲେଖାଯାଇପାରେ, ଯଥା - ଂଟ (କଂଟକ, ବଂଟନ), ଂଠ (କଂଠ, କୁଂଠା), ଂଡ (ଖଂଡ, ଲଂଡା), ଂଢ (ଷଂଢ, ମେଂଢା) । ଏଠାରେ ପ୍ରଯୁକ୍ତ ଅନୁସ୍ୱାରଟି କେବଳ 'ଣ' । ତ ବର୍ଗ (ଦନ୍ତ୍ୟ ବ୍ୟଂଜନ)ର ତ, ଥ, ଦ, ଧ ପଞ୍ଚମ ବର୍ଣ ନାସିକ୍ୟ 'ନ' ସହିତ ମିଳିତ

ହେଲେ ଯଥାକ୍ରମେ, ନ୍+ତ= ନ୍ତ, ନ୍+ଥ=ନ୍ଥ, ନ୍+ଦ=ନ୍ଦ, ନ୍+ଧ=ନ୍ଧ ହୁଏ । 'ନ' ପରିବର୍ତ୍ତେ ଅନୁସ୍ୱାର ପ୍ରୟୋଗ କରି ଏହି ଯୁକ୍ତାକ୍ଷରଗୁଡ଼ିକୁ ସହଜ ଭାବେ ଲେଖାଯାଇପାରେ, ଯଥା - ଂତ (ଶାଂତି, କାଂତ), ଂଥ (ପଂଥା, ମଂଥନ), ଂଦ (ମଂଦ, କ୍ରଂଦନ), ଂଧ (ରଂଧନ, ରଂଧ୍ର), ଏଠାରେ ପ୍ରଯୁକ୍ତ ଅନୁସ୍ୱାରଟି କେବଳ 'ନ' । ପ ବର୍ଗ (ଓଷ୍ଠ୍ୟ ବ୍ୟଂଜନ)ର ପ, ଫ, ବ, ଭ ବର୍ଗୀୟ ପଞ୍ଚମ ବର୍ଣ୍ଣ ନାସିକ୍ୟ 'ମ' ସହିତ ମିଳିତ ହେଲେ ଯଥାକ୍ରମେ ମ୍+ପ= ମ୍ପ, ମ୍+ଫ=ମ୍ଫ, ମ୍+ବ=ମ୍ବ, ମ୍+ଭ=ମ୍ଭ ହୁଏ । 'ମ' ପରିବର୍ତ୍ତେ ଅନୁସ୍ୱାର ପ୍ରୟୋଗ କରି ଯୁକ୍ତାକ୍ଷରଗୁଡ଼ିକୁ ସହଜରେ ଲେଖାଯାଇପାରେ, ଯଥା - ଂପ (ଚଂପା, ଅନୁକଂପା), ଂଫ (ଲଂଫ, ଗୁଂଫା), ଂବ (ଡଂବରୁ, ବିଂବ), ଂଭ (କୁଂଭ, ଦଂଭ) ଏଠାରେ ପ୍ରଯୁକ୍ତ ଅନୁସ୍ୱାରଟି ହେଉଛି କେବଳ 'ମ' ।

ଅନୁସ୍ୱାର ଯୋଗେ ଯୁକ୍ତବ୍ୟଂଜନ ଲିଖନ ପଦ୍ଧତିର ସମର୍ଥନରେ ତିନୋଟି ପାଣିନି ବ୍ୟାକରଣ ସୂତ୍ର ଉଲ୍ଲେଖନୀୟ । (୧) '**ମୋନୁସ୍ୱାରଃ**' ସୂତ୍ର ଅନୁସାରେ 'ମ' ପରିବର୍ତ୍ତେ ଅନୁସ୍ୱାର ବ୍ୟବହାର କରାଯାଇପାରେ, ଯଥା- ଶଂପା, କଂପନ, ଲଂଫ, କଦଂବ, ବଂଧୁ, ରଂଭା, ଦଂଭ ଇତ୍ୟାଦି । (୨) ଅନ୍ୟ ଏକ ସୂତ୍ର '**ନଶ୍ଚାପଦାନ୍ତସ୍ୟ ଝଲି**' ଅନୁସାରେ 'ନ' ପରିବର୍ତ୍ତେ ଅନୁସ୍ୱାର ବ୍ୟବହାର କରାଯାଇପାରେ, ଯଥା - ଦଂତ, ଶାଂତ, ଗ୍ରଂଥ, ମଂଥନ, ବିଂଦୁ, ବଂଦିତ, ବଂଧୁ, ରଂଧନ ଇତ୍ୟାଦି । (୩) ଏ ସମ୍ପର୍କିତ ଶେଷ ସୂତ୍ରଟି ହେଉଛି - '**ଞମଙଂଗନନାଂ ନାସିକ୍ୟାଚ**' । ଏହି ସୂତ୍ର ଅନୁସାରେ ଙ, ଞ, ଣ, ନ, ମ ଆଦି ନାସିକ୍ୟ ବର୍ଣ୍ଣ ପରିବର୍ତ୍ତେ ଅନୁସ୍ୱାର ପ୍ରଯୁକ୍ତ ହୋଇପାରିବ । ଏହି ଦୃଷ୍ଟିରୁ ବ୍ୟଂଜନ ପୂର୍ବବର୍ତୀ ଅନୁସ୍ୱାର ଯୋଗରେ ବର୍ଗୀୟ କୋଡ଼ିଏଟି ଯୁକ୍ତବ୍ୟଂଜନ ଲେଖିବା ବ୍ୟାକରଣସମ୍ମତ । କିନ୍ତୁ ଯଜ୍ଞ, ପ୍ରତିଜ୍ଞା, ଆଜ୍ଞା, ସଂଜ୍ଞା, ଜ୍ଞାନ ପ୍ରଭୃତି ଶବ୍ଦରେ ବ୍ୟବହୃତ 'ଜ୍ଞ'ର କୌଣସି ବିକଳ୍ପ ଲିଖନ ପଦ୍ଧତି ନାହିଁ । 'ଜ୍ଞ' (ଜ୍+ଞ) ବର୍ଣ୍ଣରେ 'ଜ୍ ପରେ ଞ' ରହୁଥିବାରୁ 'ଞ' ସ୍ଥାନରେ ଅନୁସ୍ୱାର ପ୍ରୟୋଗ କରିହେବ ନାହିଁ ।

ଆମେ ହଳନ୍ତ ସାହାଯ୍ୟରେ ବହୁ ଯୁକ୍ତାକ୍ଷରକୁ ସହଜ ଭାବେ ଲେଖିପାରୁ । ଫଳରେ କେତେକ ଦୃଷ୍ଟିକଟୁ, କଷ୍ଟଲେଖ୍ୟ ଯୁକ୍ତବ୍ୟଂଜନ ସହଜଲେଖ୍ୟ ହୋଇପାରେ । ହଳନ୍ତ ପ୍ରୟୋଗ ବ୍ୟାକରଣସମ୍ମତ । ହଳନ୍ତ ଦେଇ କ୍ଷୁଣ୍ଣ୍ୱେ, ବିଷଣ୍ଣ୍ୱେ, ଅପରାହ୍‌ଣ, ଆକାଙ୍‌କ୍ଷା, ଉତ୍‌କଳ, ଉତ୍‌ସବ, ଉତ୍‌ସାରିତ, ଉତ୍‌ପୀଡ଼ନ, ଉଡ୍‌ଡୀୟମାନ, ଅଭୀପ୍‌ସା, ବୃକ୍‌କ, ନିକ୍ଷ୍‌ପେଷିତ, ଉଦ୍‌ଘାଟନ, ଉଦ୍‌ଯୋଗ, ଉଦ୍‌ଜ୍ଞାନ, ଉନ୍‌ମାଦନା, ଉନ୍‌ମୋଚନ, ଉନ୍‌ମତ୍ତ, ଉଲ୍‌କା, ଉଦ୍‌ଘୋଷଣ, ଉନ୍‌ମୁକ୍ତ, ମୁଦ୍‌ଗର, ତିରସ୍‌କାର, ତତ୍‌ପର, ତତ୍‌କାଳ, ତତ୍‌ସମ,

ମୁଗ୍‌ଧ, ଲବ୍‌ଧ, ଲିପ୍‌ସା, ଉପଲବ୍‌ଧି, ଚିତ୍‌କାର, ତଦ୍‌ବିଦ୍‌, ବଲ୍‌କଲ, ଶବ୍‌ଦ, ଶତାବ୍‌ଦୀ, ସ୍ତବ୍‌ଧ, ପଶ୍ଚାଦ୍‌ପଦ, ପଶ୍ଚାତ୍‌ତାପ, ବିଦ୍‌ବତ୍ତା, ବିଷ୍ଫୋରଣ(ସ), ବିଷ୍ଫାରିତ (ସ), ବିସ୍‌ଫୋଟକ (ଷ), ପାରସ୍‌ପରିକ ପ୍ରଭୃତି ବହୁ ଶବ୍ଦ ଲେଖାଯାଇପାରେ । କିନ୍ତୁ ହଳନ୍ତ ଯୋଗେ ଲେଖନୀୟ ସବୁ ଯୁକ୍ତାକ୍ଷରକୁ ଲେଖିବା ସହଜ ନୁହେଁ, ସୁନ୍ଦର ମଧ୍ୟ ନୁହେଁ । ନ ଫଳା, ମ ଫଳା, ର ଫଳା, ରେଫ୍ ଯୋଗେ ଅନେକ ଯୁକ୍ତବ୍ୟଂଜନ ସହଜରେ ଲେଖାଯାଇପାରେ । କ୍ତ (ଉକ୍ତ), ସ୍କ (ସ୍କନ୍ଧ, ସ୍କୁଲ), ସ୍ଖ (ସ୍ଖଳନ), ସ୍ତ (ଅସ୍ତ), ସ୍ଥ (ସ୍ଥାନ) ପ୍ରଭୃତି ଯୁକ୍ତାକ୍ଷରକୁ ହଳନ୍ତ ଦେଇ ଲେଖିବା ସୁବିଧାଜନକ ନୁହେଁ । ସେହିପରି ଚ୍ଚ (ଉଚ୍ଚ), ଚ୍ଛ (ସ୍ୱଚ୍ଛ), ତ୍ତ (ଉତ୍ତମ), ଟ୍ଟ (ପଟ୍ଟ), ଦ୍ଦ (ଉଦ୍ଦାମ), ଦ୍ଧ (ଯୁଦ୍ଧ), ଜ୍ଜ (ଲଜ୍ଜା) ଆଦି ଯୁଗ୍ମବ୍ୟଂଜନଗୁଡ଼ିକୁ ମଧ୍ୟ ଅକ୍ଷୁଣ୍ଣ ରଖିବାକୁ ହେବ ।

ଧ୍ୱନିତତ୍ତ୍ୱ ଓ ବ୍ୟାକରଣ ସୂତ୍ର ଅନୁସାରେ ବିକଳ୍ପ ଲିଖନ ପଦ୍ଧତିର ଯଥାର୍ଥତା ରହିଛି । କିନ୍ତୁ ଯେଉଁ ଯୁକ୍ତାକ୍ଷରଗୁଡ଼ିକ ସହଜଲେଖ୍ୟ ଓ ସହଜଦୃଷ୍ଟିଗ୍ରାହ୍ୟ ସେଗୁଡ଼ିକର ବିକଳ୍ପ ଅନାବଶ୍ୟକ । ଲିପି ସଂସ୍କାର ଯୋଗୁଁ ପ୍ରକୃତପକ୍ଷେ ପରଂପରା 'କ୍ଷୁଣ୍ଣ' ହେଉନାହିଁ । ସମୟର ଅନୁରୋଧରେ ପରିବର୍ତ୍ତନ ସର୍ବଥା ଗ୍ରହଣୀୟ । ଓଡ଼ିଆ ଲିପିର ସରଳୀକରଣ ପାଇଁ ସଂସ୍କାର ଏକ ଅପରିହାର୍ଯ୍ୟ ଆବଶ୍ୟକତା । ଏ ଆବଶ୍ୟକତା ପୂର୍ବରୁ ପଣ୍ଡିତ ନୀଳକଣ୍ଠ ଦାସ, କବି ସଚ୍ଚିଦାନନ୍ଦ ରାଉତରାୟ ଓ ଭାଷାବିତ୍ ଗୋଲୋକ ବିହାରୀ ଧଳ ଅନୁଭବ କରିଥିଲେ । ଆମ ଲିପିର ଯେଉଁ ଆଂଶିକ ପରିବର୍ତ୍ତନ ଏପର୍ଯ୍ୟନ୍ତ ଘଟିଛି, ତାହା ସେହି ମନୀଷୀମାନଙ୍କ ଅବଦାନ ।

ଆସ୍ଥାନାସୀନ ପୋଥି



ସୌଜନ୍ୟ : ଇଣ୍ଟରନେଟ୍



# ଓଡ଼ିଆ ବର୍ଣ୍ଣମାଳାର ଶେଷ ବର୍ଣ୍ଣ

## ହିମାଂଶୁ କୁମାର ହୋତା

ଇଂରାଜୀ ଭାଷାର ବର୍ଣ୍ଣମାଳାର କ୍ରମାଙ୍କରେ ବିବାଦ ନ ଥିବା ବେଳେ ଓଡ଼ିଆରେ କାହିଁକି ? ସେଦିନର କଥା, ଯେଉଁଦିନ ମୋର ଅଧିକାରୀ ଏକ ସମସ୍ୟାରେ ପଡ଼ିଥିଲେ ଓ ମୋତେ ପ୍ରଶ୍ନଟିଏ ପଚାରିବାକୁ ଡକାଇଥିଲେ। ସେହି ପ୍ରଶ୍ନଟି ହେଉଛି, ଓଡ଼ିଆ ଭାଷାର ଶେଷ ଅକ୍ଷରଟି କ'ଣ ? ମୁଁ ସଙ୍ଗେ ସଙ୍ଗେ କହି ଦେଇଥିଲି 'କ୍ଷ' ବୋଲି। ସେ କିନ୍ତୁ ମୋ' ଉତ୍ତରରେ ସନ୍ତୁଷ୍ଟ ହୋଇ ନ ଥିଲେ ଓ କହିଲେ ତୁମେ କେମିତି ଜାଣିଲ ଶେଷ ଅକ୍ଷର 'କ୍ଷ' ବୋଲି। ମୋ ପାଖରେ ଉତ୍ତର ନ ଥିଲା ହଠାତ୍ କିଛି ସନ୍ତୋଷଜନକ ପ୍ରମାଣ ଦେବାକୁ। ମୁଁ ମନେ ମନେ ଭାବିଲି, ସତରେ ଏହି 'କ୍ଷ' ଅକ୍ଷରଟି ଶେଷ ଅକ୍ଷର ବୋଲି ମୋ ମନରେ ଦୃଢ଼ତା ଜମାଇ ରଖିଛି କିପରି ? ଚିନ୍ତା କଲି, ଆମେ ସ୍କୁଲ୍‌ରେ ପଢୁଥିବାବେଳେ ନିଶ୍ଚିତ ଭାବେ ଅ, ଆ, ଇ, ଈ ଇତ୍ୟାଦି ସ୍ୱରବର୍ଣ୍ଣ ପରେ ବ୍ୟଞ୍ଜନ ବର୍ଣ୍ଣ କ, ଖ, ଗ, ଘ ଇତ୍ୟାଦି ପାଞ୍ଚଟି ବର୍ଗ କଚଟତପ ପରେ ଯ, ର, ଳ, ଶ, ଷ, ସ, ହ, କ୍ଷ ପଢ଼ିଛେ। ଏହା ମୋର ବଦ୍ଧମୂଳ ହୋଇ ରହିଛି ମନରେ, ଯେପରି ଇଂରାଜୀ ଅକ୍ଷର A ରୁ Z ପର୍ଯ୍ୟନ୍ତ ନିର୍ଭୁଲ ଭାବେ ରହିଛି କ୍ରମାନ୍ୱୟରେ। ଏତିକିବେଳକୁ ମୋର ମନେ ପଡ଼ିଲା ଓଡ଼ିଆ ଭାଷା ସୃଷ୍ଟିର ଇତିହାସ। କାହିଁ ଖ୍ରୀଷ୍ଟପୂର୍ବ ପନ୍ଦରଶହ ଶତାବ୍ଦୀରୁ ବିଭିନ୍ନ ମୋଡ଼ ଦେଇ 'ସାନ୍ଧ୍ୟ ଭାଷା' ଆଦି ଆଦ୍ୟ ଭାଷା ପର୍ଯ୍ୟାୟରୁ ସଂସ୍କୃତରୁ ପ୍ରାକୃତ, ପାଳି, ମାଗଧି ଦେଇ ଅପଭ୍ରଂଶ ହୋଇ ସୃଷ୍ଟି ହୋଇଛି ଆଧୁନିକ ଓଡ଼ିଆ ଭାଷା। ଏହାର ବର୍ଣ୍ଣ, ଅର୍ଥାତ୍ ଧ୍ୱନିରୂପକୁ ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣ ଦୁଇଟି ଭାଗରେ ବିଭକ୍ତ କରାଯାଇଛି। ସ୍ୱରବର୍ଣ୍ଣ 'ଅ'ରୁ ଆରମ୍ଭ ହୋଇ 'ଔ'ରେ ସମାପ୍ତ ହୋଇଛି। ବ୍ୟଞ୍ଜନକୁ ପୁଣି ଆମ ପାଟିର ଉଚ୍ଚାରଣର ଉତ୍ପତ୍ତି ସ୍ଥଳର ନାମ ଅନୁସାରେ ପାଞ୍ଚଟି ବର୍ଗରେ ଭାଗ କରାଯାଇଛି, ଯାହାକି 'କ'ରୁ ଆରମ୍ଭ ହୋଇ 'ମ'ରେ ସମାପ୍ତ ହୋଇଛି। ଏହା ବ୍ୟତୀତ ତା ପଛକୁ ରହିଛି ଯରଳବ (ୱ) ଶଷସହକ୍ଷ। ଏହା ହେଉଛି ମୋ ଜାଣିବାରେ ଆଧୁନିକ ଓଡ଼ିଆ ବର୍ଣ୍ଣର ଅକ୍ଷରକ୍ରମ। ଏହାକୁ ମଧୁସୂଦନ ରାଓ ଊନବିଂଶ ଶତାବ୍ଦୀର ଶେଷଆଡ଼କୁ ଓଡ଼ିଆ ଭାଷାର ସଂକଟ ସମୟରେ ସମ୍ପାଦିତ କରି 'ଓଡ଼ିଆ ବର୍ଣ୍ଣବୋଧ' ନାମକ ଏକ ପୁସ୍ତକ ପ୍ରଣୟନ କରିଥିଲେ

ଓ ଏହା ସ୍କୁଲମାନଙ୍କରେ ପାଠ୍ୟକ୍ରମରେ ପ୍ରଚଳିତ ଥିଲା। ମୁଁ ଏତେ କଥା ଭାବିବା ବେଳକୁ ମୋ' ଆଡ଼କୁ ତୀକ୍ଷ୍ଣ ଦୃଷ୍ଟିଦେଇ ମୋ ଅଧିକାରୀ ପଚାରିଲେ, କହୁନାହାନ୍ତି କେମିତି ଜାଣିଲେ ? ଓଡ଼ିଆ ଭାଷା ପ୍ରତି ମୋର ଦୁର୍ବଳତା ରହିଛି ଓ ଓଡ଼ିଆ ଭାଷାରେ ମୋର ଅନ୍ୟ ସହକର୍ମୀମାନଙ୍କ ଅପେକ୍ଷା ଅଧିକ ପ୍ରବେଶ ରହିଛି ବୋଲି ଅଧିକାରୀ ଜାଣନ୍ତି। ହୁଏତ ସେ ମୋଠାରୁ ସନ୍ତୋଷଜନକ ଉତ୍ତର ପାଇ ତାଙ୍କର ସମସ୍ୟାର ସମାଧାନ କରିପାରିବେ, ଏହି ଆଶା ଥିଲା ତାଙ୍କ ମନରେ। ମୁଁ କୌଣସି କଥା ନ କହି କହିଲି, ଛୋଟ ବେଳୁ ଆମେ ବର୍ଣ୍ଣବୋଧ ପଢୁଥିଲେ, ସେତେବେଳୁ ଏମିତି ଧାରଣା ରହିଛି ଯେ 'କ୍ଷ' ହେଉଛି ଶେଷ ଅକ୍ଷର। ମୋ କଥା ଶୁଣି ସଙ୍ଗେସଙ୍ଗେ ସେ ମୋ ଆଡ଼କୁ ବଢ଼େଇ ଦେଲେ ତିନିଖଣ୍ଡ ବର୍ଣ୍ଣବୋଧ ପୁସ୍ତକ। ବଜାରରୁ ସେ ସଂଗ୍ରହ କରିଥିଲେ ଏହି ତିନୋଟି।

ପ୍ରଥମଟି ହେଉଛି ନଟରାଜ ସିରିଜ୍ ବ୍ରହ୍ମପୁର ଦ୍ୱାରା ପ୍ରକାଶିତ 'ସଚିତ୍ର ମଧୁ ବର୍ଣ୍ଣବୋଧ'। ଦ୍ୱିତୀୟଟି ହେଉଛି ଟିବିଡବ୍ଲ୍ୟୁ ପ୍ରକାଶନ ସଂସ୍ଥା ଦ୍ୱାରା 'ଦ ବୁକ୍ ଅଫ ଓ୍ୱାର୍ଲଡ଼, କଟକ' ମାଧ୍ୟମରେ ପ୍ରକାଶିତ ଓ କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀଙ୍କ ଦ୍ୱାରା ସଂକଳିତ 'ନୂଆ ବର୍ଣ୍ଣବୋଧ'। ତୃତୀୟଟି ହେଉଛି 'ଡାଇରେକ୍ଟ ଆପ୍ରୋଚ୍ ସିରିଜ୍' ନାମିତ ଅନ୍ନଦା କୁମାରୀ ରାଉତଙ୍କ ଦ୍ୱାରା ସଂକଳିତ ଦେବବ୍ରତ କର, ଓଡ଼ିଶା ବୁକ୍ ଏମ୍ପୋରିଅମ୍, କଟକ-୨ଙ୍କ ଦ୍ୱାରା ପ୍ରକାଶିତ 'ଛବିଳ ମଧୁ ବର୍ଣ୍ଣବୋଧ'। ମୁଁ ଦେଖିଲି ଏହି ପୁସ୍ତକତ୍ରୟର ପ୍ରାରମ୍ଭରେ ଓଡ଼ିଆ ବର୍ଣ୍ଣମାଳା ଦେଇଛି। ପ୍ରଥମୋକ୍ତ ଓ ତୃତୀୟୋକ୍ତ ପୁସ୍ତକରେ 'ଅତିରିକ୍ତ ବର୍ଣ୍ଣ' ନାମରେ ବିଭାଗ କରି ଏଥିରେ କ୍ଷ, ଡ଼, ଢ଼, ୟ. ଳ ସନ୍ନିବେଶିତ କରିଛି। ଦ୍ୱିତୀୟୋକ୍ତ ପୁସ୍ତକରେ ସେମିତି କିଛି ବିଭାଗ ସୃଷ୍ଟି ନ କରି ପଞ୍ଚବର୍ଗ ପରେ ଯରଲଓ୍ୱଶଷସହକ୍ଷୟଳଡ଼ଢ଼ ଅକ୍ଷର କ୍ରମ ଦେଇଛି। ଏହି ତିନୋଟି ପୁସ୍ତକକୁ ଦେଖିବା ପରେ ମୁଁ କହିପାରିଲି ନାହିଁ ଯେ ପ୍ରକୃତରେ 'କ୍ଷ' ହେଉଛି ଶେଷ ଅକ୍ଷର, ଇଂରାଜୀ ଭାଷାର 'Z' ପରି। ମୁଁ ବି ମନେମନେ ନିଜକୁ ପ୍ରଶ୍ନ କଲି, ମୁଁ ଛୋଟବେଳେ ପଢ଼ିଥିବା ମଧୁ ବର୍ଣ୍ଣବୋଧରେ ପ୍ରକୃତରେ ଶେଷ ଅକ୍ଷରଟି କଣ 'କ୍ଷ' ଥିଲା ତ ? ମୋ ଆଡ଼କୁ ଅନାଇ ମୋ ଅଧିକାରୀ ପୁଣି କହିଲେ, ଜାଣିଛନ୍ତି ନା ମୋ ଘରେ 'ପୂର୍ଣ୍ଣଚନ୍ଦ୍ର ଶବ୍ଦକୋଷ' ଅଛି, ଫୋନ୍ କରି ପଚାରିଲି ଯେ ସେହି ପୁସ୍ତକରେ 'କ' ଅକ୍ଷର ପରେ 'କ୍ଷ' ଅକ୍ଷର ରହିଛି। ମୁଁ ଏହି ଜଟିଳ ସମସ୍ୟାରୁ କିପରି ମୁକୁଳିବି ଭାବି ପାରିଲିନି ଏବଂ ଏହିପରି ଏକ ବିବାଦୀୟ ଜଟିଳ ସମସ୍ୟା ଯେ ଓଡ଼ିଆ ବର୍ଣ୍ଣମାଳାରେ ରହିଛି ଜାଣି ନ ଥିଲି। ଏହା ଉପରେ କେହି ଆଲୋକପାତ କରି ଥିବା କଥା ବି ମୋ ଦୃଷ୍ଟିଗୋଚର ହୋଇନାହିଁ। ମୁଁ କହିଲି, ସାର୍, ମୁଁ ଓଡ଼ିଆ ଅଧ୍ୟାପକଙ୍କୁ

ଯୋଗାଯୋଗ କରି ସମାଧାନ କହିବି। ସେ କହିଲେ, ଆଜି, ଏବେ ତୁରନ୍ତ ଏହାର ନିର୍ଣ୍ଣୟ ପରା ଆବଶ୍ୟକ। ତାଙ୍କଠୁ ପଚାରି ଜାଣିଲି ଯେ ଆଗକୁ ଅଛି ପୌର ନିର୍ବାଚନ। ପ୍ରାର୍ଥୀ/ପ୍ରାର୍ଥିନୀମାନଙ୍କ ନାମ ବର୍ଣ୍ଣମାଳାର କ୍ରମିକତା ଅନୁସାରେ ସଜ୍ଜୀକରଣ ହୋଇ ପ୍ରେରଣ ହେବ ସରକାରୀ ଛାପାଖାନାରେ ବାଲାଟ ପ୍ରେପର ମୁଦ୍ରଣ ପାଇଁ। ଜଣେ ପ୍ରାର୍ଥୀଙ୍କ ନାମର ପ୍ରଥମ ଅକ୍ଷର ରହିଛି 'ହ' ଅକ୍ଷରରେ, ଆଉ ଜଣଙ୍କ 'କ୍ଷ'ରେ ଓ ଅନ୍ୟ ଜଣଙ୍କର 'ଳ'ରେ। ତେବେ କିଏ ରହିବ ପ୍ରଥମରେ ଓ କିଏ ରହିବ ଶେଷରେ ? କ୍ଷ ନାମଧାରୀ ବ୍ୟକ୍ତିର ନାମ ଯଦି ଶେଷରେ ରଖିବେ ପୂର୍ଣ୍ଣଚନ୍ଦ୍ର ଭାଷାକୋଷ କ'ଣ ଭୁଲ୍ ? ଏହାଛଡ଼ା 'କ୍ଷ' ଅକ୍ଷର ତ ଉପରୋକ୍ତ କୌଣସି ବର୍ଣ୍ଣବୋଧରେ ଶେଷରେ ନାହିଁ, ଯଦି ବି ମୋ ଦୃଢ଼ ଧାରଣା ରହିଆସିଛି ଯେ ଏହା ହେଉଛି ଓଡ଼ିଆ ଭାଷାର ଶେଷ ଅକ୍ଷର। 'ହ'କୁ ହୁଏତ ଶେଷ ଅକ୍ଷର ବୋଲି ଧରାଯିବ ଯଦି 'ଅତିରିକ୍ତ ବର୍ଣ୍ଣ'କୁ ଶେଷ ଅକ୍ଷର ନିର୍ଣ୍ଣୟରେ ବାଦ ଦିଆଯିବ। ତେବେ, ଏହି ବାଦ ଦେବା ନ ଦେବା କ'ଣ ଆମର ମନ ମୁତାବକ ? ଏହା କ'ଣ ପଣ୍ଡିତ, ଭାଷାବିତ୍, ସରକାରଙ୍କ ଦ୍ୱାରା ଗୃହୀତ ହେବ ? ଏପରି ଅନେକ କଥା ଚିନ୍ତା କରିବା ପରେ ମୁଁ ମୋ ଅଧିକାରୀଙ୍କୁ ପ୍ରସ୍ତାବ ଦେଲି, ଆପଣଙ୍କ ମନମୁତାବକ ଅକ୍ଷରକ୍ରମରେ ସଜାଇ ଦିଅନ୍ତୁ। ଆପଣଙ୍କ ବିରୋଧରେ କିଛି ଯଦି ଅଭିଯୋଗ ଆସେ ଆପଣ କୈଫିୟତ ଦେବାରେ ଅସୁବିଧା ନାହିଁ। ଏହି ବର୍ଣ୍ଣବୋଧ ପୁସ୍ତକଗୁଡ଼ିକୁ ସାକ୍ଷୀ କରିବେ। ମୋ ଅଧିକାରୀ ଭାବୁଥିଲେ ଅନ୍ୟ ଭାଷାମାନଙ୍କରେ, ଇଂରାଜୀ ଭାଷାରେ ପ୍ରଥମ ଓ ଶେଷ ଅକ୍ଷରର କ୍ରମିକତାରେ କୌଣସି ଦ୍ୱନ୍ଦ୍ୱ ନ ଥିବାବେଳେ ଆମ ଓଡ଼ିଆ ଭାଷାରେ କାହିଁକି ? ଏଥିରେ ବର୍ଣ୍ଣବୋଧ ପୁସ୍ତକ ପ୍ରକାଶକ, ଭାଷାବିତ୍ ତଥା ଓଡ଼ିଆ ଭାଷାର ସ୍ୱାଭିମାନୀ ବ୍ୟକ୍ତିଗଣ କାହିଁକି ଏକ ନିଷ୍ପତ୍ତି ନେବାକୁ ଅଗ୍ରସର ନ ହେବେ, ଓଡ଼ିଆ ଭାଷାର ଶେଷ ଅକ୍ଷର ତଥା ସଠିକ୍ ଅକ୍ଷରକ୍ରମ ସ୍ପଷ୍ଟ ଓ ନିର୍ଦ୍ୱନ୍ଦ୍ୱ ଭାବେ ନିର୍ଣ୍ଣୟ କରିବାରେ ?



# ଓଡ଼ିଆ ବର୍ଣ୍ଣମାଳାର ଶେଷ ବର୍ଣ୍ଣ : ଏକ ଉତ୍ତର

## ସଦାନନ୍ଦ ନାୟକ

ଏଥିରେ ବର୍ଣ୍ଣବୋଧ ପୁସ୍ତକ ପ୍ରକାଶକ, ଭାଷାବିତ୍ ତଥା ଓଡ଼ିଆ ଭାଷାର ସ୍ୱାଭିମାନୀ ବ୍ୟକ୍ତିଗଣ କାହିଁକି ଏକ ନିଷ୍ପତ୍ତି ନେବାକୁ ଅଗ୍ରସର ନହେବେ, ଓଡ଼ିଆ ଭାଷାର ଶେଷ ଅକ୍ଷର ତଥା ସଠିକ୍ ଅକ୍ଷରକ୍ରମ ସ୍ପଷ୍ଟ ଓ ନିର୍ଦ୍ୱନ୍ଦ୍ୱ ଭାବେ ନିର୍ଣ୍ଣୟ କରିବାରେ ? ('ସମାଜ', ୪ ଡିସେମ୍ବର, ୨୦୧୩)- ଏପରି ଏକ ଆହ୍ୱାନ ନିମନ୍ତେ ହିମାଂଶୁ ଶେଖର ହୋତାଙ୍କ ନିକଟରେ ଆନ୍ତରିକ କୃତଜ୍ଞତା ଜଣାଉଛି। ଏହି ଦ୍ୱନ୍ଦ୍ୱକୁ ଆହୁରି ଜଟିଳ କରିବା ପାଇଁ କହିବି- ସାଧାରଣ ଭାବରେ ଦେଖିଲେ ଓଡ଼ିଆ ବର୍ଣ୍ଣମାଳାର କୌଣସି ଶେଷ ବର୍ଣ୍ଣ ନାହିଁ; ଓଡ଼ିଆ ବର୍ଣ୍ଣମାଳାର ବର୍ଣ୍ଣସଂଖ୍ୟା କେତେ ? ଏପରି ଏକ ସରଳ ପ୍ରଶ୍ନର ମଧ୍ୟ କୌଣସି ସନ୍ତୋଷଜନକ ଉତ୍ତର କେହି ବି ଦେଇପାରିବେ ନାହିଁ। ଓଡ଼ିଆ ବର୍ଣ୍ଣସଂଖ୍ୟା ୨୦୦ରୁ ଅଧିକ ହେବ, ଏବେବି ଆବଶ୍ୟକତାକୁ ପୂରଣ କରିବାପାଇଁ ନୂଆ ନୂଆ ବର୍ଣ୍ଣ ସୃଷ୍ଟି ହୋଇଚାଲିଛି। ଯେପରି ବେଲ୍ଟର 'ଲ୍ଟ' ଡ୍ରାଫ୍ଟର 'ଫ୍ଟ', ବାକ୍ସର 'କ୍ସ', ଡକ୍ଟରର 'କ୍ଟ', ଫ୍ରାନ୍ସର 'ନ୍ସ', ସେପ୍ଟେମ୍ବର 'ପ୍ଟ' ଇତ୍ୟାଦି।

ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇଲାଣି କିନ୍ତୁ ଏହାର ବର୍ଣ୍ଣ ସଂଖ୍ୟା କେତେ ? ତାହା ନିର୍ଣ୍ଣୀତ ହୋଇ ନଥିବା ସାଧାରଣରେ ବିସ୍ମୟ ସୃଷ୍ଟି କରୁଥିଲେ ହେଁ ଏହା ସତ୍ୟ। ମଧୁସୂଦନ ରାଓଙ୍କ (୧୯୦୧) 'ବର୍ଣ୍ଣବୋଧ'ରେ ଏହି ସଂଖ୍ୟା ୧୬୧, ନନ୍ଦୀୟାଚାନ୍ଦ ଦେଙ୍କ (୧୮୯୬) 'ବର୍ଣ୍ଣମଞ୍ଜରୀ'ରେ ୧୫୪, ନାରାୟଣ ମହାପାତ୍ର ଓ ଶ୍ରୀଧର ଦାସଙ୍କ (ପୁନଃମୁଦ୍ରଣ ୨୦୦୫) 'ସର୍ବସାର ବ୍ୟାକରଣ'ରେ ୧୦୫, ମାଧ୍ୟମିକ ଶିକ୍ଷା ପରିଷଦ ଓଡ଼ିଶାଙ୍କ ପ୍ରକାଶିତ (୨୦୦୩) ଓଡ଼ିଆ ବ୍ୟାକରଣରେ ୧୦୦, ମାଧ୍ୟମିକ ଶିକ୍ଷା ପରିଷଦ ପ୍ରକାଶିତ ଅନ୍ୟ ଏକ ବ୍ୟାକରଣ (୧୯୯୫)ରେ ୫୦, ରାଧାନାଥ ରାୟଙ୍କ (୧୮୯୮) 'ବ୍ୟାକରଣ ପରିଚୟ'ରେ ୪୯ (୧୩ ସ୍ୱର + ୩୬ ବ୍ୟଞ୍ଜନ), ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କ (୧୯୯୦) 'ପଢ଼ ଲେଖ ଓ ଶିଖ'ରେ ୭୦, ଧନେଶ୍ୱର ମହାପାତ୍ରଙ୍କ (୧୯୯୫) 'ଧ୍ୱନିତତ୍ତ୍ୱ ଓ ଶବ୍ଦ ସଂଭାର'ରେ ୪୯ (୧୧ସ୍ୱର + ୩୮ ବ୍ୟଞ୍ଜନ), ବିଜୟ ପ୍ରସାଦ ମହାପାତ୍ରଙ୍କ (୨୦୦୭) ପ୍ରଚଳିତ ଓଡ଼ିଆ ଭାଷାର ଏକ ବ୍ୟାକରଣରେ ୪୬

(୧୧ସ୍ୱର+୩୫ବ୍ୟଞ୍ଜନ) ବୋଲି ଉଲ୍ଲେଖ କରାଯାଇଛି। ଏହି ସମସ୍ୟାର ସମାଧାନ କରିବାର ପ୍ରୟାସ କରି 'ଓଡ଼ିଆ ଲିପିରେ ମାତ୍ରା ଓ ଫଳା : ଏକ ନିର୍ଣୟନ' ('ଝଙ୍କାର' ମାର୍ଚ୍ଚ, ୨୦୧୦) ଓ ଓଡ଼ିଆ ବର୍ଣ୍ଣସଂଖ୍ୟା : ଏକ ନିର୍ଦ୍ଧାରଣ (ଝଙ୍କାର : ଅକ୍ଟୋବର ୨୦୧୦) ଶୀର୍ଷକ ଦୁଇଟି ପ୍ରବନ୍ଧ ଲେଖିଥିଲି। ଏହି ପ୍ରବନ୍ଧଦ୍ୱୟରେ ମତ ଦେଇଥିଲି ଯେ ଓଡ଼ିଆ ବର୍ଣ୍ଣମାଳାରେ ୯ଗୋଟି ମାତ୍ରା, ୧୭ଗୋଟି ଫଳା ଓ ସମୁଦାୟ ୫୪ଗୋଟି ବର୍ଣ (ସ୍ୱର+ବ୍ୟଞ୍ଜନ+ଯୁକ୍ତାକ୍ଷର) ରହିଲେ କେବଳ ଓଡ଼ିଆ ନୁହେଁ, ପୃଥିବୀର ଯେକୌଣସି ଭାଷାକୁ ଅବିକଳ ନହେଲେ ବି ପାଖାପାଖି ଲେଖିବାରେ ଅସୁବିଧା ରହିବ ନାହିଁ। ଏଥିରେ ସଂଯୁକ୍ତ ବ୍ୟଞ୍ଜନ ବର୍ଣ (ଯୁକ୍ତାକ୍ଷର) ଉପରେ କେତେକ ନିୟମର ଅବତାରଣା କରାଯାଇଥିଲା। ଏବେ ସ୍ତମ୍ଭକାରଙ୍କ ପ୍ରଶ୍ନର ସମାଧାନକୁ ଆସିବା। ଶ୍ରୀ ହୋତାଙ୍କ ମୂଳ ବା ପ୍ରଥମ ପ୍ରଶ୍ନ ହେଉଛି- ଓଡ଼ିଆ ବର୍ଣ୍ଣମାଳାର ଶେଷବର୍ଣ କେଉଁଟି, 'ହ' ନା 'କ୍ଷ' ? ଏହି ପ୍ରଶ୍ନଟିକୁ ଏପରି କରାଗଲେ- 'ଓଡ଼ିଆ ବର୍ଣମାଳାର ଶେଷ ମୌଳିକ ବର୍ଣ କେଉଁଠି ? ତେବେ ଯାଇ ସମାଧାନ ସମ୍ଭବ, କାରଣ ଓଡ଼ିଆରେ ପ୍ରଚଳିତ ଅନ୍ୟାନ୍ୟ ସଂଯୁକ୍ତ ବର୍ଣ ବା ଯୁକ୍ତାକ୍ଷର ପରି 'କ୍ଷ' ମଧ୍ୟ ଏକ ଯୁକ୍ତାକ୍ଷର। ଏଠାରେ ପ୍ରଶ୍ନଉଠେ ଓଡ଼ିଆ ବର୍ଣଶିକ୍ଷା ପୁସ୍ତକଗୁଡ଼ିକରେ 'ହ' ପରେ 'କ୍ଷ' ରହିଲା କେମିତି ଓ କାହିଁକି ? ବର୍ଣମଞ୍ଜରୀ (୧୮୯୬)ଠାରୁ ଆରମ୍ଭ କରି ବର୍ତ୍ତମାନର 'ହସଖେଳ' ଦ୍ୱିତୀୟ ଭାଗ, ପ୍ରଥମ ଶ୍ରେଣୀ ନିମନ୍ତେ ପ୍ରସ୍ତୁତ ପୁସ୍ତକ (ପ୍ରକାଶକ : ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ, ଓଡ଼ିଶା ସରକାର, ୨୦୧୧) ଏବଂ ଷୋଡ଼ଶ ଶତାବ୍ଦୀର 'କଳସା ଚଉତିଶା' ଠାରୁ ଆରମ୍ଭ କରି 'କେଶବ କୋଇଲୀ' ଓ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ପର୍ଯ୍ୟନ୍ତ ଏହି କ୍ରମ ଅନୁସୃତ, କିନ୍ତୁ ବର୍ଣ୍ଣବୋଧ (୧୯୦୧)ରେ ଏହି କ୍ରମ ନାହିଁ। ଏହାର ଉତ୍ତର ହେଉଛି ଏକଦା ଓଡ଼ିଆର ଏକମାତ୍ର ରୂପାନ୍ତରିତ ବା ଗୋଟିକିଆ ଯୁକ୍ତାକ୍ଷର 'କ୍ଷ' ହିଁ ରହିଥିଲା। ଓଡ଼ିଆ ଯୁକ୍ତାକ୍ଷରର ଗଠନ କଳାକୁ ଲକ୍ଷ୍ୟ ଏହା ସ୍ପଷ୍ଟ ହୋଇଥାଏ।

ଓଡ଼ିଆ ସଂଯୁକ୍ତ ବର୍ଣ ବା ଯୁକ୍ତାକ୍ଷର ଗଠନ ଦୃଷ୍ଟିରୁ ତ୍ରିବିଧ, ଯଥା- ଫଳାଯୁକ୍ତ ସଂଯୁକ୍ତ ବ୍ୟଞ୍ଜନ ବର୍ଣ (ସ୍ତ, ସ୍କ, ଷ୍ଣ, ନ୍ଥ ଇତ୍ୟାଦି), ଦ୍ୱିତଳ-ସଂଯୁକ୍ତ ବ୍ୟଞ୍ଜନ ବର୍ଣ (ଷ୍ଟ, ଣ୍ଡ, ଷ୍ପ, ଷ୍ମ, ଞ୍ଚ ଇତ୍ୟାଦି) ଓ ସ୍ୱତନ୍ତ୍ର ସଂଯୁକ୍ତ ବ୍ୟଞ୍ଜନ ବର୍ଣ। ଏହି ସ୍ୱତନ୍ତ୍ର ସଂଯୁକ୍ତ ବ୍ୟଞ୍ଜନ ବର୍ଣ ଦ୍ୱିବିଧ, ଯଥା ଦ୍ୱିତ୍ୱ ସଂଯୁକ୍ତ ବ୍ୟଞ୍ଜନ ବର୍ଣ (ଟ୍ଟ, ତ୍ତ, ଚ୍ଚ, ଇତ୍ୟାଦି) ଓ ରୂପାନ୍ତରିତ ଗୋଟିକିଆ ସଂଯୁକ୍ତ ବ୍ୟଞ୍ଜନ ବର୍ଣ। ଓଡ଼ିଆ ବର୍ଣମାଳାରେ ପ୍ରଚଳିତ ୨ଗୋଟି ଯୁକ୍ତାକ୍ଷରକୁ ଏହି ଶେଷବର୍ଣରେ ଅନ୍ତର୍ଭୁକ୍ତ କରାଯାଇପାରିବ, ଯଥା- 'କ୍ଷ' ଓ 'ଜ୍ଞ' (ଦ୍ରଷ୍ଟବ୍ୟ :

'ଝଙ୍କାର' : ଅକ୍ଟୋବର ୨୦୧୦, ପୃଷ୍ଠା ୯୦୭-୯୧୬)। 'ଜ୍ଞ' ବର୍ଣଟି 'ଜ' + 'ଞ' ଧ୍ୱନି ବା ବର୍ଣ୍ଣକୁ ନେଇ ଗଠିତ, ଏହି ବର୍ଣ୍ଣର ଉପର ଅଂଶଟି 'ଞ'ର ଉପର ଭାଗ, କିନ୍ତୁ ତଳଅଂଶଟି 'ଜ'ର ନିମ୍ନଭାଗ ନ ହୋଇ ସାମାନ୍ୟ ପରିବର୍ତ୍ତିତ ହୋଇଛି। ଏତଦ୍ ବ୍ୟତୀତ 'ଜ୍ଞ' ବର୍ଣଟି କରଣି ତଥା ପୋଥି ଲିପିରେ 'ଗ୍ୟଂ'ପରି ଲେଖାଯାଏ। ଏହା ସହିତ ନାସିକ୍ୟ ସଂଯୁକ୍ତ ବ୍ୟଞ୍ଜନ ବର୍ଣଗୁଡ଼ିକ ଅନୁସ୍ୱାର ସହାୟତାରେ ଲେଖାଯାଉଥିଲା, ତେଣୁ ଓଡ଼ିଆ ବର୍ଣମାଳାର ଏକମାତ୍ର ଗୋଟିକିଆ ତଥା ରୂପାନ୍ତରିତ ସଂଯୁକ୍ତ ବ୍ୟଞ୍ଜନବର୍ଣ ଥିଲା 'କ୍ଷ', ଯାହାକି ଓଡ଼ିଆ ବର୍ଣମାଳାରେ ସ୍ୱତନ୍ତ୍ର ସ୍ଥାନ ପାଉଥିଲା। କୁହାଯାଇପାରେ 'କ୍ଷ' ମଝିରେ ଦିଆଯାଉଥିବା ଗାରଟି 'ଷ'ର ସଂକେତ ହୋଇପାରେ। କିନ୍ତୁ ଏହା 'ଅ'ର ସଂକେତ ଭାବରେ ମଧ୍ୟ ବ୍ୟବହୃତ ହୁଏ। ଏତଦ୍ ଭିନ୍ନ 'କ୍ଷ'ର 'ଯ' 'କ'ର ସଂକେତ ନୁହେଁ, ତେଣୁ ଏହା ସ୍ୱତନ୍ତ୍ର ମାନ୍ୟତା ପାଇ ଆସିଛି। ଏହା କହିବା ବାହୁଲ୍ୟ ଯେ- ଦେବନାଗରୀରେ ଏହା ମଧ୍ୟ ଘଟିଥାଏ, ଅର୍ଥାତ୍ 'କ୍ଷ'ର ସ୍ଥାନ ସ୍ୱତନ୍ତ୍ର। ଦେବନାଗରୀ ଓ ଓଡ଼ିଆ ସଂଯୁକ୍ତ ବ୍ୟଞ୍ଜନ ବର୍ଣ ମଧ୍ୟରେ ବଡ଼ ତଫାତ୍ ଏହି ଯେ, ଓଡ଼ିଆରେ ଫଳା ବ୍ୟବହୃତ, ଓଡ଼ିଆ ବର୍ଣଗୁଡ଼ିକୁ ଉପରତଳ ଭାବରେ ଯୋଡ଼ାଯାଏ। ଦେବନାଗରୀରେ ବର୍ଣଗୁଡ଼ିକୁ ଆଗ-ପଛ କରି ଯୋଡ଼ା ଯାଇଥାଏ।

ଓଡ଼ିଆରେ 'କ୍ଷ' ବର୍ଣଟି ସିଧାସଳଖ ଭାବରେ 'ଖ୍ୟ' ଉଚ୍ଚାରିତ ହୁଏ, ବଙ୍ଗଳାରେ ଏହା 'ଖ' ଓ ହିନ୍ଦୀରେ 'କ+ଷ'। ସମ୍ପ୍ରତି ଓଡ଼ିଶାର ଯୁବପିଢ଼ି ତଥା କିଶୋର କିଶୋରୀ 'ଅକ୍ଷୟ', 'ପରୀକ୍ଷା' ଓ 'ଶିକ୍ଷା' ପରି ଶବ୍ଦଗୁଡ଼ିକୁ ଯଥାକ୍ରମେ ଅକ୍‌ଷୟ, ପରୀକ୍‌ଷା ଓ ଶିକ୍‌ଷା ବୋଲି କହୁଥିବାର ଦୃଷ୍ଟିଗୋଚର ହୁଏ- ଯାହାକି 'କ୍ଷ'ର ଧ୍ୱନିମୂଲ୍ୟ ରକ୍ଷା କରିଥାଏ। ତେଣୁ ଓଡ଼ିଆ ବର୍ଣମାଳାର ଶେଷ ମୌଳିକ ବର୍ଣ 'ହ' ଏବଂ 'କ୍ଷ' ବର୍ଣ ଅନ୍ତର୍ଗତ ଶବ୍ଦ 'କ' ପରେ ରହିବା ବିଧେୟ।

ଶ୍ରୀ ହୋତାଙ୍କର ଅନ୍ୟଏକ ପ୍ରଶ୍ନ ତଥା ଦ୍ୱନ୍ଦ୍ୱ ହେଉଛି- ସେ ଦେଖିଥିବା ପୁସ୍ତକ (ଛବିଳ ମଧୁ ବର୍ଣ୍ଣବୋଧ, ଓଡ଼ିଆ ବର୍ଣ୍ଣବୋଧ, ଓଡ଼ିଆ ମଧୁ ବର୍ଣ୍ଣବୋଧ) ଗୁଡ଼ିକରେ ଅବର୍ଗ୍ୟ ବ୍ୟଞ୍ଜନ ବର୍ଣଗୁଡ଼ିକ ମଧ୍ୟରେ କୌଣସି ତାଳମେଳ ନାହିଁ ବା ନିର୍ଦ୍ଦିଷ୍ଟ କ୍ରମ ନାହିଁ। ଏହା ଅବଶ୍ୟ ଏକ ତ୍ରୁଟି। ପ୍ରତ୍ୟେକ ବ୍ୟଞ୍ଜନ ବର୍ଣ (ଧ୍ୱନି)ର ନିର୍ଦ୍ଦିଷ୍ଟ ଉଚ୍ଚାରଣ ସ୍ଥାନ ଓ ଉଚ୍ଚାରଣ ବିଧି ରହିଛି ଯାହାକୁ ଆଧାରକରି ବ୍ୟଞ୍ଜନର ବିଭାଗୀକରଣ ବା ବର୍ଗୀକରଣ କରଯାଇଛି। 'କ' ବର୍ଗର ବର୍ଣ ବା ଧ୍ୱନି କଣ୍ଠରେ, 'ଚ' ବର୍ଗର ବର୍ଣ ବା ଧ୍ୱନି ତାଳୁରେ, 'ଟ' ବର୍ଗର ବର୍ଣ ବା ଧ୍ୱନି ମୂର୍ଦ୍ଧାରେ, 'ତ' ବର୍ଗର ବର୍ଣ ବା ଧ୍ୱନି ଦାନ୍ତରେ, 'ପ' ବର୍ଗର

ବର୍ଣ୍ଣ ବା ଧ୍ୱନି ଓଷ୍ଠରେ ଉଚ୍ଚାରିତ ହୁଅନ୍ତି। ସେହିପରି ୟ, ର, ଲ, ୱ, ଶ, ଷ, ସ, ର ନିର୍ଦ୍ଦିଷ୍ଟ ସ୍ଥାନ ରହିଛି। ଉପରୋକ୍ତ ସମସ୍ତ ବର୍ଣ୍ଣ ବା ଧ୍ୱନି ମୁଖଗହ୍ୱର ଭିତରେ ଉଚ୍ଚାରିତ ହେଉଥିବା ବେଳେ କେବଳ 'ହ' ଗଳାରେ, ଗଳଗହ୍ୱର ବା କାକଳରେ ଉଚ୍ଚାରିତ ହୁଏ, ତେଣୁ ତାହାର ସ୍ଥାନ ସର୍ବଶେଷରେ ହେବା ଉଚିତ; ଏଠାରେ ମନେ ରଖିବାକୁ ହେବ ଯେ, 'ଂ, ଃ, ँ' ଗୋଟିଏ ଗୋଟିଏ ବର୍ଣ୍ଣ ନୁହନ୍ତି। ଏଗୁଡ଼ିକ ଗୋଟିଏ ଗୋଟିଏ ଚିହ୍ନ, ସଂକେତ ବା ଫଳା ଅଟନ୍ତି।

ଏହା ପାଠକମାନଙ୍କୁ ଭଲ ନ ଲାଗିପାରେ, କିନ୍ତୁ ଏହା ସତ୍ୟ ଯେ ଓଡ଼ିଆ ବର୍ଣ୍ଣମାଳାରେ ଅନେକ ତ୍ରୁଟି ରହିଅଛି, ଅନେକ ସ୍ଥଳରେ ଏହା ବିଜ୍ଞାନ ସମ୍ମତ ନୁହଁ। ଏହା ସଂସ୍କାରର ଅପେକ୍ଷା ରଖେ। ଓଡ଼ିଆ ବର୍ଣ୍ଣମାଳାର ଶେଷବର୍ଣ୍ଣ କ'ଣ ତାହା ଉପରେ ଅଧିକ ବିତର୍କ ଲୋଡ଼ା।

ଲୌହ ଲେଖନୀ



ସୌଜନ୍ୟ : ଇଣ୍ଟରନେଟ୍



# ଓଡ଼ିଆ ବର୍ଣ୍ଣସଂଖ୍ୟା : ଏକ ନିର୍ଦ୍ଧାରଣ

## ସଦାନନ୍ଦ ନାୟକ

ଓଡ଼ିଆ ଭାଷାରେ ବର୍ଣ୍ଣ ସଂଖ୍ୟା କେତେ ? ଏପରି ଏକ ସରଳ ପ୍ରଶ୍ନର ନିର୍ଦ୍ଦିଷ୍ଟ ତଥା ସନ୍ତୋଷଜନକ ଉତ୍ତର ଆମ ପାଖରେ ନାହିଁ। ଓଡ଼ିଆ ଭାଷାର କେତୋଟି ଉଚ୍ଚକୋଟୀର ତଥା ପ୍ରାମାଣିକ ଗ୍ରନ୍ଥକୁ ଅନୁଧ୍ୟାନ କଲେ ଏହି ସତ୍ୟ ଆମ ପାଖରେ ସ୍ପଷ୍ଟ ହୋଇଥାଏ। ମଧୁସୂଦନ ରାଓଙ୍କ ବର୍ଣ୍ଣବୋଧରେ ଏହି ସଂଖ୍ୟା ୧୬୧, ନଦୀୟାଚାନ୍ଦ ଦେଙ୍କ ବର୍ଣ୍ଣମଞ୍ଜରୀରେ ୧୫୪, ନାରାୟଣ ମହାପାତ୍ର ଓ ଶ୍ରୀଧର ଦାସଙ୍କ ସର୍ବସାର ବ୍ୟାକରଣରେ ୧୦୫, ମାଧ୍ୟମିକ ଶିକ୍ଷା ପରିଷଦ, ଓଡ଼ିଶାଙ୍କ ପ୍ରକାଶିତ (୨୦୦୩) ଓଡ଼ିଆ ବ୍ୟାକରଣରେ ୧୦୦, ମାଧ୍ୟମିକ ଶିକ୍ଷା ପରିଷଦ ଓଡ଼ିଶାଙ୍କ ଅନ୍ୟ ଏକ ବ୍ୟାକରଣ (୧୯୯୫)ରେ ୫୦ ବୋଲି ଉଲ୍ଲେଖଅଛି। ଏତଦ୍‌ବ୍ୟତୀତ ସଂପ୍ରତି ଓଡ଼ିଆ ଭାଷାକୁ ପ୍ରବେଶ କରିଥିବା କେତେକ ବୈଦେଶିକ ଶବ୍ଦକୁ ରୂପଦେବା ନିମନ୍ତେ ବ୍ୟବହାର କରାଯାଉଥିବା ଓଡ଼ିଆ ମୌଳିକ ବର୍ଣ୍ଣ ଓ ସଂଯୁକ୍ତ ବର୍ଣ୍ଣକୁ ବିଚାରକୁ ନେଲେ ଏହି ସଂଖ୍ୟା ଆହୁରି ବଢ଼ିଯିବ ଏବଂ ଏହାର କୌଣସି ନିର୍ଦ୍ଦିଷ୍ଟ ସୀମା ନିର୍ଣ୍ଣୟ କରିବା ସମ୍ଭବ ହେବନାହିଁ। ବର୍ତ୍ତମାନ ଓଡ଼ିଆ ଲିଖନ ପଦ୍ଧତିରେ ଯେ ୨୦୦ରୁ ଅଧିକ ବର୍ଣ୍ଣ ବ୍ୟବହାର କରାଯାଉଛି, ଏଥିରେ କୌଣସି ସନ୍ଦେହ ନାହିଁ। ବର୍ଣ୍ଣାଧିକ୍ୟ ତଥା ଅନିର୍ଦ୍ଦିଷ୍ଟ ସଂଖ୍ୟା ବିଶିଷ୍ଟ ବର୍ଣ୍ଣମାଳା କୌଣସି ଭାଷାର ଗୁଣ ନୁହେଁ, ଦୋଷ ନିଶ୍ଚୟ। କେବଳ ସେତିକି ନୁହେଁ, ସୂକ୍ଷ୍ମଭାବରେ ବିଚାର କଲେ ଓଡ଼ିଆ ଭାଷାରେ ପ୍ରଚଳିତ ଅନେକ ବର୍ଣ୍ଣ ତ୍ରୁଟିଶୂନ୍ୟ ନୁହନ୍ତି। ଏହି ବର୍ଣ୍ଣମାଳାର ଅନେକ ସ୍ଥଳରେ ନିର୍ଦ୍ଦିଷ୍ଟ ବିଜ୍ଞାନସମ୍ମତ ବିଧି ବା ଏକରୂପଣ ଅନୁସୃତ ହୁଏନାହିଁ। ତେଣୁ ଏଥିରେ ସଂସ୍କାର ଆଣିବା ନିମନ୍ତେ ନୀଳକଣ୍ଠ ଦାସ, ଗୋବିନ୍ଦ ତ୍ରିପାଠୀ, ଚକ୍ରଧର ମହାପାତ୍ର, ଗୋଲୋକ ବିହାରୀ ଧଳ, ମନମୋହନ ଚୌଧୁରୀ, ବିଜୟ ପ୍ରସାଦ ମହାପାତ୍ର, ଫୁଟୁରାନନ୍ଦ, ଗଗନେନ୍ଦ୍ରନାଥ ଦାଶ, ପ୍ରଫୁଲ୍ଲ କୁମାର ତ୍ରିପାଠୀ, ଶୁଭେନ୍ଦ୍ର ମୋହନ ଶ୍ରୀଚନ୍ଦସିଂହ ଓ ପଞ୍ଚାନନ ମହାନ୍ତିଙ୍କ ପରି ବିଦ୍ୱାନମାନେ ସ୍ୱମତ ଉପସ୍ଥାପନପୂର୍ବକ ପ୍ରୟାସ କରିଛନ୍ତି।

ଅନ୍ୟ ଏକ ଦୃଷ୍ଟିକୋଣରୁ ବିଚାର କଲେ, ଅନେକ ପରୀକ୍ଷାନିରୀକ୍ଷାର ପଥ ଦେଇ ଓଡ଼ିଆ ବର୍ଣ୍ଣମାଳାର ବିକାଶ ଘଟିଛି। ଅଗଣିତ ଧୀଶକ୍ତିସମ୍ପନ୍ନ ବ୍ୟକ୍ତିଙ୍କର ପ୍ରଚେଷ୍ଟା ଓ

ପ୍ରୟୋଗର ଫଳ ଏହି ବର୍ଣ୍ଣମାଳା; ତେଣୁ ପ୍ରତ୍ୟେକଟି ବର୍ଣ୍ଣ ଆମର ଅମୂଲ୍ୟ ସମ୍ପଦ, ଅନନ୍ୟ କୀର୍ତ୍ତି। ଏଗୁଡ଼ିକ ସହିତ ଓଡ଼ିଆ ଜାତିର ଐତିହାସିକ, ସାଂସ୍କୃତିକ ତଥା ଭାବଗତ ସମ୍ପର୍କ ଅତି ନିବିଡ଼। କିନ୍ତୁ ଇତିହାସ ପ୍ରତି ଅଧିକ ମୋହଗ୍ରସ୍ତ ହୋଇ, ଭାବପ୍ରବଣତାରେ ଭାସିଯାଇ, ସତ୍ୟ ଓ ଦୁର୍ବଳତାକୁ ସ୍ୱୀକାର ନ କରିବା ହେଉଛି, ପ୍ରଗତିର ପରିପନ୍ଥୀ। ତେଣୁ ପରମ୍ପରା, ସହଜ ଲିଖନ-ପଠନ-ଶିକ୍ଷାଦାନ ବ୍ୟବସ୍ଥା, ବୈଜ୍ଞାନିକ ଏକରୂପତା, ନର୍ଦ୍ଦିଷ୍ଟ ନିୟମାନୁବର୍ତ୍ତିତା ଏବଂ ସମୟର ଆବଶ୍ୟକତାକୁ ଆଖିଆଗରେ ରଖି ଓଡ଼ିଆ ବର୍ଣ୍ଣମାଳାର ଏପରି ଏକ ସର୍ବନିମ୍ନ ସଂଖ୍ୟା ନିର୍ଦ୍ଧାରଣ କରବାକୁ ହେବ, ଯାହାଦ୍ୱାରା କେବଳ ଓଡ଼ିଆ ନୁହେଁ, ପୃଥିବୀର ଯେକୌଣସି ଭାଷାକୁ (ଅବିକଳ ନହେଲେ ବି ପାଖାପାଖି) ଏହି ବର୍ଣ୍ଣମାଳାରେ ଲେଖାଯାଇପାରିବ। ଏହା ଏହି ପ୍ରବନ୍ଧର ଲକ୍ଷ୍ୟ।

ଓଡ଼ିଆ ବର୍ଣ୍ଣମାଳାରେ ପ୍ରଚଳିତ ସମସ୍ତ ବର୍ଣ୍ଣକୁ ମୁଖ୍ୟତଃ ୩ ଭାଗରେ ବିଭକ୍ତ କରାଯାଇପାରିବ। ଯଥା-

ସ୍ୱର ବର୍ଣ୍ଣ
ବ୍ୟଞ୍ଜନ ବର୍ଣ୍ଣ (ମୌଳିକ)
ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ।

ପୁନଶ୍ଚ ଏହି ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ ତ୍ରିବିଧ। ଯଥା -

ଫଳାଯୁକ୍ତ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ।
ଦ୍ୱିତଳ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ।
ସ୍ୱରବର୍ଣ୍ଣ।

ଓଡ଼ିଆରେ କେତୋଟି ସ୍ୱରବର୍ଣ୍ଣ ପ୍ରଚଳିତ, ତାହା ଆଜି ପର୍ଯ୍ୟନ୍ତ ସ୍ଥିର ହୋଇ ନ ଥିବା ମନେହୁଏ। କାରଣ, ଓଡ଼ିଆ ଭାଷାର କେତୋଟି ଭାଷାବିଜ୍ଞାନ, ବ୍ୟାକରଣ ଓ ବର୍ଣ୍ଣଶିକ୍ଷା ଗ୍ରନ୍ଥକୁ ଅନୁଧ୍ୟାନ କଲେ ଏହି ସଂଖ୍ୟାରେ ଭିନ୍ନତା ପରିଲକ୍ଷିତ ହୁଏ। କେତେବେଳେ ଏହି ସଂଖ୍ୟା ୧୨,୧୧ ଅଥବା ୭। ନିମ୍ନ ସାରଣୀରୁ ଏହି ଭିନ୍ନତା ଲକ୍ଷ୍ୟ କରାଯାଇପାରେ।

| କ୍ର.ସଂ ଲେଖକ / ପ୍ରକାଶନ | ପୁସ୍ତକ ଓ ପୃଷ୍ଠା | ବର୍ଣ୍ଣ | ବ.ସଂ |
|---|---|---|---|
| ୧. ନନ୍ଦୀୟଚାନ୍ଦ ଦେ | ବର୍ଣ୍ଣମଞ୍ଜରୀ | ଅ,ଆ,ଇ,ଈ,ଉ,ଊ | ୧୨ |
| ଦ୍ୱି.ସଂ ୧୮୯୬ | ପୃଷ୍ଠା-୧ | ଋ,ୠ,ଏ,ଐ,ଓ,ଔ | |
| ୨. ନାରାୟଣ ମହାପାତ୍ର | ସର୍ବସାର ବ୍ୟାକରଣ | ଅ,ଆ,ଇ,ଈ,ଉ,ଊ | ୧୨ |
| ଶ୍ରୀଧର ଦାସ ୧୯୪୩ | ପୃଷ୍ଠା-୭ | ଋ,ୠ,ଏ,ଐ,ଓ,ଔ | |

| | | | |
|---|---|---|---|
| ୩. ମଧୁସୂଦନ ରାଓ ୧୮୯୫ | ବର୍ଣ୍ଣବୋଧ ପୃ.-୧ | ଅ,ଆ,ଇ,ଈ,ଉ,ଊର,ର,ଏ,ଐ,ଓ,ଔ | ୧୨ |
| ୪. ପ୍ରକାଶକ : | | | |
| ମାଧ୍ୟମିକ ଶିକ୍ଷାପରିଷଦ ଓଡ଼ିଶା ୨୦୦୭ | ଓଡ଼ିଆ ବ୍ୟାକରଣ ପୃ.୧୫ | ଅ,ଆ,ଇ,ଈ,ଉ,ଊ,ର,ଏ,ଐ,ଓ,ଔ | ୧୧ |
| ୫. ବିଜୟ ପ୍ରସାଦ ମହାପାତ୍ର ୨୦୦୭ | ପ୍ରଚଳିତ ଭାଷାର ଏକ ବ୍ୟାକରଣ , ପୃ.୨୪ | ଅ,ଆ,ଇ,ଈ,ଉ,ଊ,ର,ଏ,ଐ,ଓ,ଔ | ୧୧ |
| ୬. ପ୍ରଫୁଲ୍ଲ କୁମାର ତ୍ରିପାଠୀ ୧୯୯୪ | ପଢ଼, ଲେଖ, ଶିଖ ପୃ.୨ | ଅ,ଆ,ଇ,ଈ,ଉ,ଊ,ର,ଏ,ଐ,ଓ,ଔ | ୧୧ |
| ୭. ଗୋପୀନାଥ ନନ୍ଦଶର୍ମା ୧୯୬୮ | ଓଡ଼ିଆ ଭାଷାତତ୍ତ୍ୱ ପୃ.୨ | ଅ,ଆ,ଇ,ଈ,ଉ,ଏ,ଓ | ୦୭ |

ଏପରି ବିବିଧତାର ଅନେକ କାରଣ ରହିଛି । ସଂସ୍କୃତଭାଷାକୁ ଓଡ଼ିଆ ଭାଷାର ଜନନୀ ବୋଲି ବିଚାର କରି ଓ ଓଡ଼ିଆ ଉଚ୍ଚାରଣ ପ୍ରତି ଗୁରୁତ୍ୱ ନ ଦେଇ ସଂସ୍କୃତ ଧ୍ୱନି ବା ବର୍ଣ୍ଣକୁ ଓଡ଼ିଆ ଭାଷା ଉପରେ ଲଦିଦେବା ହେଉଛି ଏହାର ମୁଖ୍ୟକାରଣ । ଓଡ଼ିଆ ଭାଷାର ଏହା ଏକ ସମସ୍ୟା ନିଶ୍ଚୟ; ତେବେ ପ୍ରାଚ୍ୟ ବ୍ୟାକରଣ, ପାଶ୍ଚାତ୍ୟ ଭାଷାବିଜ୍ଞାନ ଓ ଓଡ଼ିଆ ଉଚ୍ଚାରଣକୁ ଭିତ୍ତିକରି ନିମ୍ନରେ ଏହି ସମସ୍ୟାର ସାମାଧାନ ନିମନ୍ତେ ପ୍ରୟାସ କରାଯିବ । ସଂସ୍କୃତରେ କୁହାଯାଇଛି -

"ସ୍ୱୟଂ ରାଜନ୍ତ ଇତି ସ୍ୱରାଃ ଅନ୍ୱଗ ଭବତି ବ୍ୟଞ୍ଜନମ୍ ।" (ମହାଭାଷ୍ୟ ୧.୨.୨୯ ଉଦୟନାରାର୍ଯ୍ୟଙ୍କ ସମ୍ପାଦିତ (୨୦୦୮) ପାଣିନିଙ୍କ ଶିକ୍ଷାଶାସ୍ତ୍ର, ପୃଷ୍ଠା-୧୯ରୁ ସଂଗୃହୀତ) ପୁନଶ୍ଚ କୁହାଯାଇଛି -

ସ୍ୱୟଂ ରାଜତନ୍ତ ଶୋଭନ୍ତେ ଇତି ସ୍ୱରାଃ

ଏକାକିନୋଽପି ପ୍ରାୟୋଽର୍ଥ ପ୍ରତିପାଦନେ ସମର୍ଥା ଇତ୍ୟର୍ଥଃ । (ଓଡ଼ିଆ ଭାଷାତତ୍ତ୍ୱ, ଦ୍ୱି.ସଂ. ୧୯୬୮, ଗୋପୀନାଥ ନନ୍ଦ ଶର୍ମା । ପୃଷ୍ଠା-୨ରୁ ସଂଗୃହୀତ)

ଭାଷା ବିଜ୍ଞାନରେ ସ୍ୱରର ସଂଜ୍ଞା ହେଉଛି - A vowel is a sound for whose production the oral passage is unobstructed. So that the air current can flow from the lungs to the lips and beyond without being stopped, without having to squeeze through a narrow constriction, without being diflected from the median line of its channel and without causing any of

the supragottal organs to vibrate (B. Bloch and B.L. Trager, 1972, Outlines of Linguistic Analysis. Page.18.)

ପୁନଶ୍ଚ A vowel (in normal speech) is defined as a voiced sound in forming which the air issues in a continuous stream through the pharynx and mouth, there being no obstruction and no narrowing. Such as would cause audible friction. (Daniel Jones 1918. An outline of English Phonetics. Page.23)

ଉପରୋକ୍ତ ସମସ୍ତ ସଂଜ୍ଞା ଅନୁସାରେ ସ୍ୱର ହେଉଛି- ଯେଉଁ ଧ୍ୱନି ନିଜେ ନିଜେ ଉଚ୍ଚାରିତ ହୁଏ, ଅର୍ଥାତ୍ ଯାହାର ଉଚ୍ଚାରଣ ସମୟରେ ଫୁସ୍‌ଫୁସ୍‌ରୁ ନିର୍ଗତ ବାୟୁପ୍ରବାହ ବିନା ବାଧାରେ ବାହାରକୁ ନିର୍ଗତ ହୋଇଥାଏ; ଅନ୍ୟ ଭାଷାରେ କହିଲେ, ଯେଉଁ ଧ୍ୱନିର ଉଚ୍ଚାରଣ ସମୟରେ ବାକ୍‌ଯନ୍ତ୍ରରେ ସ୍ପର୍ଶ, ସଂଘର୍ଷ, ଲୋଡ଼ିତ ଆଦି ପ୍ରକ୍ରିୟା ସଂଘଟିତ ହୁଏ ନାହିଁ, ତାହା ହେଉଛି ସ୍ୱରଧ୍ୱନି। ତେଣୁ ପ୍ରାଚ୍ୟ ବ୍ୟାକରଣ ଓ ପାଶ୍ଚାତ୍ୟ ଭାଷାବିଜ୍ଞାନ ଉଭୟ ଦୃଷ୍ଟିକୋଣରୁ ସ୍ୱରର ସଂଜ୍ଞା ପ୍ରାୟତଃ ସମାନ।

ଉପରୋକ୍ତ ସଂଜ୍ଞାଗୁଡ଼ିକୁ ଆଧାର କରି ବିଚାର କଲେ ଓଡ଼ିଆରେ ସମୁଦାୟ ୬ ଗୋଟି ମୌଳିକ ସ୍ୱରଧ୍ୱନି ଓ ଅନେକ ସଂଯୁକ୍ତ ସ୍ୱରଧ୍ୱନି ରହିଥିବାର ଜଣାଯାଏ। ମୌଳିକ ସ୍ୱରଧ୍ୱନିଗୁଡ଼ିକ ହେଉଛି- ଅ,ଆ,ଇ,ଉ,ଏ ଏବଂ ଓ; ସଂଯୁକ୍ତ ସ୍ୱରଧ୍ୱନିଗୁଡ଼ିକ ମଧ୍ୟରେ ଐ, ଔ ସମେତ ଓ + ଉ (ଓଉଷଧ), ଏ + ଇ (ଥେଇ), ଆ + ଇ (ଆଇସ୍‌କ୍ରିମ୍), ଆ+ଉ (କାଉକାଉ) ଇତ୍ୟାଦିକୁ ଅନ୍ତର୍ଭୁକ୍ତ କରାଯାଇପାରେ। ଏହି ସମ୍ପର୍କରେ ଅନୁରୂପ ମତ ପ୍ରଦାନ କରି କୁଞ୍ଜବିହାରୀ ତ୍ରିପାଠୀ କହନ୍ତି- ଐ, ଔ ବ୍ୟତୀତ କଥିତ ଓଡ଼ିଆରେ ଆଇ, ଆଉ, ଇଆ, ଇଏ, ଉଆ, ଉଇ, ଓଉ ପ୍ରଭୃତି ଦ୍ରୁତ ଉଚ୍ଚାରଣରେ ଅଳ୍ପକେତୋଟି ସନ୍ଧ୍ୟକ୍ଷରର ବ୍ୟବହାର ଅଛି, କିନ୍ତୁ ଏଗୁଡ଼ିକର ସ୍ୱତନ୍ତ୍ର ଲିପି ନାହିଁ। (ଓଡ଼ିଆ ଭାଷାତତ୍ତ୍ୱ ଓ ଲିପିର ବିକାଶ, ୧୯୯୭, ପୃଷ୍ଠା.୫)

ଉପରୋକ୍ତ ସ୍ୱରଗୁଡ଼ିକ ନିମନ୍ତେ ଓଡ଼ିଆରେ ସର୍ବାଧିକ ୧୪ଗୋଟି ବର୍ଣ ପ୍ରଚଳିତ। ଏଗୁଡ଼ିକ ମଧ୍ୟରୁ u ଏବଂ w କେବେଠୁ ବାଦ୍ ପଡ଼ିଲେଣି; 'ଋ' କେବଳ ଅଭିଧାନର ପୃଷ୍ଠା ମଣ୍ଡନ କରିବା ଛଡ଼ା ଏହାର କୌଣସି ବ୍ୟାବହାରିକ ମୂଲ୍ୟ ଆଉ ନାହିଁ। ଓଡ଼ିଆ ଉଚ୍ଚାରଣରେ 'ଋ' ଏକ ସ୍ୱର ନୁହେଁ ବ୍ୟଞ୍ଜନ। ଏତଦ୍‌ବ୍ୟତୀତ 'ଇ' ଏବଂ 'ଉ'ର ଦୀର୍ଘ ଉଚ୍ଚାରଣ ରହିଥିବା ହେତୁ ଏହି ଧ୍ୱନି ଦୁଇଟି ନିମନ୍ତେ ଦୁଇଟି ବର୍ଣ ରହିବା ଉଚିତ।

ଓଡ଼ିଆ ଭାଷା ଉପରେ ଗବେଷଣା କରିଥିବା ଅନେକ ଭାଷାବିଜ୍ଞାନୀ କହନ୍ତି ଓଡ଼ିଆରେ 'ଇ' ଏବଂ 'ଉ'ର ଦୀର୍ଘ ଉଚ୍ଚାରଣ ନାହିଁ। ଏହି ମତ ସହିତ ମୁଁ ଏକମତ

ନୁହେଁ, ମୋର ଆଶଙ୍କା ସେମାନେ ତଥାକଥିତ ବନାନକୁ ଆଧାର କରି ଏପରି ମତ ପ୍ରଦାନ କରିଛନ୍ତି। ଓଡ଼ିଆ ଉଚ୍ଚାରଣରେ କେବଳ ଦୀର୍ଘ 'ଇ' ବା ଦୀର୍ଘ ଉ ନୁହେଁ, ସମସ୍ତ ମୌଳିକ ସ୍ୱର ଧ୍ୱନିର ମଧ୍ୟ ଦୀର୍ଘ ଉଚ୍ଚାରଣ ରହିଅଛି। କେବଳ ସେତିକି ନୁହେଁ, ଏହି ଦୀର୍ଘତା ପାଇଁ ଶବ୍ଦର ଅର୍ଥରେ ମଧ୍ୟ ପରିବର୍ତ୍ତନ ଘଟିଥାଏ। ନିମ୍ନରେ ଏହାର କେତୋଟି ଦୃଷ୍ଟାନ୍ତ ପ୍ରଦାନ କରାଗଲା -

ଅ- ଧ୍ୱନି, ଦୀର୍ଘ ଉଚ୍ଚାରଣ : ଅଁଳା (ଫଳବିଶେଷ)

ଝ'ଟ (ଶୀଘ୍ର)

ସ'ଳ (ଶୀଘ୍ର)

ଅର୍ଥ ପରିବର୍ତ୍ତନ : କଣ (କୋଣ) : କ'ଣ (କିସ)

କମ (କାରୁକାର୍ଯ୍ୟ) : କ'ମ (ଉଣା)

ରଡ଼ (ଜଳନ୍ତା ଅଙ୍ଗାର) : ର'ଡ଼୍ (ଲୁହା ଛଡ଼)

ଚକ (ଚକ୍ର) : ଚ'କ୍ (chalk)

ଆ- ଧ୍ୱନି, ଦୀର୍ଘ ଉଚ୍ଚାରଣ : ଆ'ସେ (ଆସିବା କ୍ରିୟାର ଏକ ରୂପ)

ମା'ଲ୍ (ଜିନିଷପତ୍ର)

ନାଁ (ନାମ)

ଗାଁ (ଗ୍ରାମ)

ମା' (ମାତା)

ଅର୍ଥ ପରିବର୍ତ୍ତନ : ବାସ (ଘର) : ବା'ସ୍ (ଅବ୍ୟୟ ବିଶେଷ)

ମାର (କନ୍ଦର୍ପ) : ମା'ର (ମା'ଙ୍କର)

ଚାର (ଦୂତ) : ଚା'ର (ଚାହାର)

ତାର (ଧାତୁସୂତ୍ର) : ତା'ର (ତାହାର)

ସାଲ (ବର୍ଷ) : ସା'ଲ (ବସ୍ତ୍ରବିଶେଷ)

ଇ - ଧ୍ୱନି : ଦୀର୍ଘ ଉଚ୍ଚାରଣ : ସିଂ'ଚି (ସିଞ୍ଚିବା କ୍ରିୟାର ଏକ ରୂପ)

ପି'ସୀ (ବାପାଙ୍କ ଭଉଣୀ)

ବିଂଚି (ଚର୍ମରୋଗ ବିଶେଷ)

ପି'ସା (ବାପାଙ୍କ ଭିଣୋଇ)

ଅର୍ଥ ପରିବର୍ତ୍ତନ : ନୀ (ନି) ତି (ନିୟମ) : ନି'ତି (ପ୍ରତ୍ୟହ)

ବିଶି (ଆଙ୍ଗୁଠିବିଶେଷ) : ବି'ଶି (ଯାଏଆସେ)
ପିଲା (ଛୁଆ) : ପି'ଲା (ପି'ଦେଲା)
ପିନ (ଖିଲ) : ପି'ନ (ପି' ନାହିଁ ?)
କିସ (କ'ଣ) : କି'ସ (କେଉଁ ସ)
ଉ- ଧ୍ୱନି, ଦୀର୍ଘ ଉଚ୍ଚାରଣ : ଶୁଣୁ (ଶୁଣିବା କ୍ରିୟାର ଏକ ରୂପ)
ତୁ'ଣ (ତରକାରି)
ଖୁ'ବ୍ (ଯଥେଷ୍ଟ)
ଅର୍ଥ ପରିବର୍ତ୍ତନ : ସୁନାରୀ (ବଣିଆ) : ସୁ'ନାରୀ (ଉତ୍ତମ ନାରୀ)
ସୁକି (ଶୁଖିଯିବା) : ସୁ'କି (ପଚିଶି ପଇସା)
ତୁଟା (ଭଙ୍ଗା) : ତୁ'ଟା (ତୁ ଗୋଟାଏ)
ସୁନା (ସୁବର୍ଣ୍ଣ) : ସୁ'ନା (ଉତ୍ତମ ନାମ)
ଏ - ଧ୍ୱନି : ଦୀର୍ଘ ଉଚ୍ଚାରଣ : ଟେ'ର (ଠିକଣା)
ଢେ'ର (ଯଥେଷ୍ଟ)
ବେ'ଶ୍ (ଆଚ୍ଛା)
ଅର୍ଥ ପରବର୍ତ୍ତନ : ଫେରେ (କ୍ରିୟାବିଶେଷ) : ଫେ'ର ପୁନର୍ବାର
ଫେଣି (ମିଠାବିଶେଷ) : ଫେ'ଣି (ପୁନର୍ବାର)
ନେତ (ପତାକା) : ନେ'ତ (ନେବା ଅର୍ଥରେ)
ଓ - ଧ୍ୱନି : ଦୀର୍ଘ ଉଚ୍ଚାରଣ : ଭୋ'ର (ପ୍ରତ୍ୟୁଷ)
ମୋ'ସ (ଚେତାଶୂନ୍ୟ)
ଖୋ'ଦ (ସ୍ୱୟଂ)
ଅର୍ଥ ପରିବର୍ତ୍ତନ : ଖୋଲ (ଗୁମ୍ଫା) : ଖୋ'ଲ (ଖୋଲିବା କ୍ରିୟାର ଏକରୂପ)
ଗୋପ (ଗୋପପୁର) : ଗୋ'ପ (ଅଳଙ୍କାର ବିଶେଷ)
ଖୋଳ (ମର୍ଦ୍ଦଳ) : ଖୋ'ଳ (ଖୋଳିବା କ୍ରିୟାର ରୂପ)
ତୋଟା (ଉପବନ) : ତୋ'ଟା (ତୋ'ର)
ମୋଟା (ପୃଥୁଳ) : ମୋ'ଟା (ମୋର)
ଜୋର (ନାଳ) ଜୋ'ର (ଶକ୍ତି)

ଏହିପରି ଅନେକ ଉଦାହରଣ ଦିଆଯାଇପାରେ। କେତେକ କ୍ଷେତ୍ରରେ ଦେଖାଯାଏ, ଦୁଇ ଅକ୍ଷର (Syllable) ବିଶିଷ୍ଟ ଶବ୍ଦରେ ପ୍ରଥମ ଅକ୍ଷରଟି ଦୀର୍ଘସ୍ୱରଯୁକ୍ତ ହେଲେ, ଦ୍ୱିତୀୟଟି ହଲନ୍ତ୍‌ଯୁକ୍ତ ବା ବ୍ୟଞ୍ଜନ ହୋଇଥାଏ। ଯଥା- ଚେ'ତ୍, ଥା'ଟ୍, ଧୁ'ମ୍ ଇତ୍ୟାଦି। ଏପରି କିନ୍ତୁ ସର୍ବତ୍ର ହୁଏନାହିଁ, ଏହା ବକ୍ତାର ବକ୍ତବ୍ୟ ଉପରେ ପ୍ରାୟତଃ ନିର୍ଭର କରେ। ନିମ୍ନଲିଖିତ ବାକ୍ୟଗୁଡ଼ିକୁ ଲକ୍ଷ୍ୟ କରାଯାଉ –

(କ) ଚଢ଼େଇଟି ଫଡ୍‌କିନା ଉଡ଼ିଗଲା।

(ଖ) ସେ ଅଦାଲତରେ ଠୋସ୍ ପ୍ରମାଣ ଦେଲେ ନାହିଁ।

(ଗ) ଚୁପ୍ ହୋଇ ବସିଲେ ସମସ୍ୟାର ସମାଧାନ ହୁଏନି।

ଉପରୋକ୍ତ ବାକ୍ୟଗୁଡ଼ିକରେ ଫଡ୍, ଠୋସ୍ ଓ ଚୁପ୍ ଶବ୍ଦରେ ଯଥାକ୍ରମେ ଥିବା ଫ, ଠୋ, ଓ ଚୁ କୁ ହ୍ରସ୍ୱ ଉଚ୍ଚାରଣ କରାଯାଇପାରେ। ଏପରି କ୍ଷେତ୍ରରେ ହ୍ରସ୍ୱଦୀର୍ଘ ଭେଦରେ ଶବ୍ଦର ଅର୍ଥରେ ପରିବର୍ତ୍ତନ ଘଟିବାର ଭୟ ନ ଥାଏ।

ଉପରୋକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ହୋଇଥାଏ ଯେ, ଓଡ଼ିଆ ମୌଳିକ ସ୍ୱରଧ୍ୱନିଗୁଡ଼ିକର ଦୀର୍ଘ ଉଚ୍ଚାରଣ ରହିଛି। 'ଈ', 'ଊ' ବ୍ୟତୀତ ଅନ୍ୟ ସମସ୍ତ ସ୍ୱରଧ୍ୱନିର ଦୀର୍ଘ 'ଶ' ନିମନ୍ତେ (ଦୀର୍ଘତା ଚିହ୍ନ) '' ଚିହ୍ନଟିକୁ ବ୍ୟବହାର କରାଯାଇ ପାରିବ ଏବଂ ଐ ଔ ବ୍ୟତୀତ ଅନ୍ୟ ସମସ୍ତ ସଂଯୁକ୍ତ ସ୍ୱରଧ୍ୱନିଗୁଡ଼ିକୁ ଅପୂର୍ଣ୍ଣ ଫଳା ବା ହଳନ୍ତ୍ ମାଧ୍ୟମରେ ଲେଖିହେବ। (ଦ୍ରଷ୍ଟବ୍ୟ : ଓଡ଼ିଆ ଲିପିରେ ମାତ୍ରା ଓ ଫଳା : ଏକ ନିର୍ଣ୍ଣୟନ, ଝଙ୍କାର, ମାର୍ଚ୍ଚ, ୨୦୧୦)। ତେଣୁ ଓଡ଼ିଆ ବର୍ଣ୍ଣମାଳାରେ ନିମ୍ନଲିଖିତ ସ୍ୱରବର୍ଣ୍ଣଗୁଡ଼ିକ ରହିବା ଉଚିତ।

ମୌଳିକ ସ୍ୱର : ଅ, ଆ, ଇ, ଈ, ଉ, ଊ, ଏ ଏବଂ ଓ

ସଂଯୁକ୍ତ ସ୍ୱର : ଐ ଏବଂ ଔ

**ବ୍ୟଞ୍ଜନ ବର୍ଣ୍ଣ (ମୌଳିକ)**

ବ୍ୟଞ୍ଜନ ଧ୍ୱନିକୁ ରୂପ ଦେଉଥିବା ବର୍ଣ୍ଣଗୁଡ଼ିକ ହେଉଛି ବ୍ୟଞ୍ଜନ ବର୍ଣ୍ଣ। ସଂସ୍କୃତ ବ୍ୟାକରଣ ବା ପ୍ରାଚ୍ୟ ସଂଜ୍ଞା ଅନୁସାରେ ଯେଉଁ ଧ୍ୱନି ଅନ୍ୟ ଧ୍ୱନି (ସ୍ୱର) ସାହାଯ୍ୟରେ ଉଚ୍ଚାରିତ ହୁଏ, ତାହା ହେଉଛି ବ୍ୟଞ୍ଜନ ଧ୍ୱନି। ଭାଷାବିଜ୍ଞାନ ଅନୁସାରେ ଯେଉଁ ଧ୍ୱନିର ଉଚ୍ଚାରଣ ସମୟର ବାକ୍‌ଯନ୍ତ୍ରରେ ସ୍ପର୍ଶ, ସଂଘର୍ଷ, ଲୋଡ଼ନ ଆଦି ପ୍ରକ୍ରିୟା ସଂଘଟିତ ହୁଏ, ତାହା ହେଉଛି ବ୍ୟଞ୍ଜନ। ଓଡ଼ିଆ ବ୍ୟଞ୍ଜନଧ୍ୱନିଗୁଡ଼ିକ ସମୁଦାୟ ୮ ଗୋଟି ପ୍ରକ୍ରିୟା ମାଧ୍ୟମରେ ଉଚ୍ଚାରିତ ହୁଅନ୍ତି। ଯଥା –

| କ୍ର.ସଂ. | ଉଚ୍ଚାରଣ ବିଧି | ଓଡ଼ିଆ ଧ୍ୱନି / ବର୍ଣ୍ଣ | ବର୍ଣ୍ଣସଂଖ୍ୟା |
|---|---|---|---|
| ୧. | ସ୍ପର୍ଶ | କ, ଖ, ଗ, ଘ | ୪ |
| | | ଟ, ଠ, ଡ, ଢ | ୪ |
| | | ତ, ଥ, ଦ, ଧ | ୪ |
| | | ପ, ଫ, ବ, ଭ | ୪ |
| ୨. | ସଂଘର୍ଷ | ହ, ଶ, ଷ, ସ | ୪ |
| ୩. | ସ୍ପର୍ଶ-ସଂଘର୍ଷ | ଚ, ଛ, ଜ, ଝ | ୪ |
| ୪. | ନାସିକ୍ୟ | ଙ, ଣ, ନ, ମ, ଞ | ୫ |
| ୫. | ପାର୍ଶ୍ୱିକ | ଳ, ଲ | ୨ |
| ୬. | ଲୋଡ଼ିତ | ର, ର | ୨ |
| ୭. | ତାଡିତ | ଡ଼, ଢ଼ | - |
| ୮. | ଅର୍ଦ୍ଧ ବ୍ୟଂଜନ | ୱ, ୟ | ୨ |
| | | ମୋଟ୍ ବ୍ୟଂଜନ ବର୍ଣ୍ଣ ସଂଖ୍ୟା | ୩୫ |

ପାରମ୍ପରିକ ଓଡ଼ିଆ ବ୍ୟଞ୍ଜନ ବର୍ଣ୍ଣ ତାଲିକାଠାରୁ ଏହି ତାଳିକା ସାମାନ୍ୟ ଭିନ୍ନ। ଏପରି ବର୍ଣ୍ଣ ତାଲିକାର ଯଥାର୍ଥ୍ୟ ଓ ବିଶେଷତ୍ୱ ନିମ୍ନରେ ପ୍ରଦାନ କରାଗଲା।

କେତେକ ଭାଷାବିଜ୍ଞାନୀ ମତ ପ୍ରଦାନ କରନ୍ତି ଯେ ଓଡ଼ିଆରେ 'ଶ' ଓ 'ଷ' ଯଥାସ୍ଥାନରେ ଉଚ୍ଚାରିତ ହୁଅନ୍ତି ନାହିଁ, ଅର୍ଥାତ୍ 'ଶ' ଓ 'ଷ' ଓଡ଼ିଆ ବର୍ଣ୍ଣମାଳାରେ ଅନାବଶ୍ୟକ ବର୍ଣ୍ଣ ଅଟନ୍ତି। ଏହି ମତକୁ ବିରୋଧ କରି କେତେକେ ଦାବି କରନ୍ତି ଯେ, ଶ, ଷ, ସ କୁ ଯଥାକ୍ରମେ ତାଲବ୍ୟ, ମୁର୍ଦ୍ଧନ୍ୟ, ଓ ଦନ୍ତ୍ୟ ଭାବରେ ଉଚ୍ଚାରଣ କରାଯାଇପାରେ। ଏ ସମ୍ପର୍କରେ ମୋର ସବିନୟ ମତ ହେଉଛି ଯେ ସାଧାରଣ ଲୋକଙ୍କ କଥିତ ଓଡ଼ିଆରେ ଯେଉଁ 'ସ' (ମୌଳିକ ଭାବରେ) ଉଚ୍ଚାରିତ ହୁଏ, ତାହା ହେଉଛି ବର୍ତ୍ସ୍ୟ। କାରଣ ତ, ଥ, ଦ, ଧ କହିଲାବେଳେ ଜିହ୍ୱାଗ୍ର ଯେପରି ଦାନ୍ତକୁ ସ୍ପର୍ଶ କରେ, 'ସ' କହିଲା ବେଳେ ସେପରି ହୁଏ ନାହିଁ। ଏହା ଏକ ସଂଘର୍ଷଧ୍ୱନି ହୋଇଥିବା ହେତୁ ଜିହ୍ୱା ବର୍ତ୍ସ୍ୟର ନିକଟବର୍ତ୍ତୀ ହୋଇ ଏହି ଧ୍ୱନିଟି ସୃଷ୍ଟି ହୁଏ।

ଲିଖିତ ଓଡ଼ିଆରେ ଶ, ଷ, ସ ର ସ୍ଥିତିକୁ ନେଇ ବନାନଗତ ତ୍ରୁଟିକୁ ବେଶ୍ କଡ଼ାକଡ଼ି ଭାବରେ ଦେଖାଯାଏ। ଏହା କେବଳ ଏକ ମୋହଛଡ଼ା ଅନ୍ୟ କିଛି ନୁହେଁ। ଏହା ପଛରେ କୌଣସି ସନ୍ତୋଷଜନକ ଯୁକ୍ତି ବା କାରଣ ଥିବା ପରି ମନେହୁଏ ନାହିଁ।

କଥିତ ଓଡ଼ିଆରେ ବର୍ତସ୍ୟ 'ସ' କହି ଭାବ ବା ଅର୍ଥ ପ୍ରକାଶରେ ଯଦି କୌଣସି ବାଧା ଉପୁଜି ଥିବାର ଦୃଷ୍ଟିଗୋଚର ହୁଏନାହିଁ, ଲିଖିତ ଓଡ଼ିଆରେ ବା କାହିଁକି ହେବ ? ସମୋଚ୍ଚାରିତ ଶବ୍ଦରେ ଏଗୁଡ଼ିକୁ ଲେଖାଯାଇପାରେ। ଏପରି ଯୋଡ଼ା ଶବ୍‌ଦର ସଂଖ୍ୟା ଓଡ଼ିଆରେ ଅବଶ୍ୟ ଅତିମାତ୍ରାରେ ସୀମିତ।

ଓଡ଼ିଆରେ ମୌଳିକ ଭାବରେ ଶ, ଷ, ସ ଯଥାକ୍ରମେ ତାଲବ୍ୟ, ମୁର୍ଧନ୍ୟ ଓ ଦନ୍ତ୍ୟ ଉଚ୍ଚାରିତ ହେଉ ନ ଥିଲେ ମଧ୍ୟ ଅନ୍ୟ ବର୍ଣ ବା ଧ୍ୱନି ସହିତ ମିଳିତ ହୋଇ ଯଥାର୍ଥ ଉଚ୍ଚାରିତ ହୁଅନ୍ତି। ଯଥା- ଶ୍ଚ, ଶ୍ଛ (ତାଲବ୍ୟ) ଷ୍ଟ, ଷ୍ଠ (ମୁର୍ଧନ୍ୟ) ସ୍ତ, ସ୍ଥ (ଦନ୍ତ୍ୟ) ଇତ୍ୟାଦି। ଏହିସବୁ କାରଣରୁ କୌଣସି 'ସ'କୁ ବାଦ୍‌ଦେବା ଉଚିତ ମନେ କରାଯାଏନାହିଁ।

କେତେକଙ୍କ ମତରେ 'ଙ' ଏବଂ 'ଞ' ମୌଳିକ ବ୍ୟଞ୍ଜନ ଧ୍ୱନି ଭାବରେ ଉଚ୍ଚାରିତ ହୁଅନ୍ତି ନାହିଁ। ଏପରି ମତ ଅବଶ୍ୟ ଯଥାର୍ଥ; କାରଣ 'ଙ' ଏବଂ 'ଞ'କୁ ଆମେ ଯଥାକ୍ରମେ ଉଅଁ ଓ ନ୍ୟଁ ଭାବରେ ଉଚ୍ଚାରଣ କରୁ। ଏହାସତ୍ତ୍ୱେ ଓଡ଼ିଆ ବ୍ୟଞ୍ଜନ ବର୍ଣ ତାଲିକାରୁ ଏହି ଦୁଇଟି ବର୍ଣକୁ ବାଦ୍ ଦିଆଯାଇପାରିବ ନାହିଁ। କାରଣ ଏହି ଦୁଇଟି ବର୍ଣ (ଙ ଞ) ଯଥାକ୍ରମେ କଣ୍ଠସ୍ପର୍ଶୀ ଓ ତାଲବ୍ୟ ସ୍ପର୍ଶ-ସଂଘର୍ଷ ବର୍ଣଗୁଡ଼ିକର ନାସିକ୍ୟ ବର୍ଣ। ଅନ୍ୟାନ୍ୟ ବର୍ଗ୍ୟ ନାସିକ୍ୟ ବର୍ଣ 'ଣ', 'ନ' 'ମ'ପରି ଏହି ଦୁଇଟିର ମଧ୍ୟ ଏକ ବର୍ଣ-ମୂଲ୍ୟ ରହିଛି।

ଓଡ଼ିଆରେ ବର୍ଗ୍ୟ ନାସିକ୍ୟ ବର୍ଣଗୁଡ଼ିକ ସ୍ୱବର୍ଗୀୟ ନିରନୁନାସିକ ବର୍ଣ ସହିତ ସଂଯୁକ୍ତ ହୋଇ ସଂଯୁକ୍ତ ବ୍ୟଞ୍ଜନ ବର୍ଣ ସୃଷ୍ଟି କରନ୍ତି। ଏ କ୍ଷେତ୍ରରେ 'ଙ', 'ଞ' ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରି ୮ଗୋଟି ସଂଯୁକ୍ତ ବ୍ୟଞ୍ଜନ ସୃଷ୍ଟି କରିଥା'ନ୍ତି। ଯଥା- ବାଂକ, ଶଂଖ, ଗଂଗା, ସଂଘ, ମଞ୍ଚ, ପିଂଛ, ସଂଜ, ବାଂଝ ଇତ୍ୟାଦି।

ଓଡ଼ିଆ ଲିଖନ ପଦ୍ଧତିର ଏକ ଦିଗ ହେଉଛି ବର୍ଣମାଳାତ୍ମକ ଲିଖନ ପଦ୍‌ଧତି। ଏହି ପଦ୍ଧତି ଅନୁସାରେ ଅନେକ ସଂଯୁକ୍ତ ଧ୍ୱନି ବା ବର୍ଣକୁ ଅପୂର୍ଣ୍ଣ ଫଳା ବା ହଳନ୍ତ ମାଧ୍ୟମରେ ଲେଖାଯାଇ ପାରିବ। ଏହି ପଦ୍ଧତିରେ 'ଙ', 'ଞ' ବର୍ଣଗୁଡ଼ିକୁ ବ୍ୟବହାର କରାଯାଇପାରିବ। ଯଥା- ଆକାଙ୍‌କ୍ଷା, ବାଙ୍‌ମୟ, ବାଞ୍ଛସ୍ ଇତ୍ୟାଦି।

ତେଣୁ ଙ ଏବଂ ଞ ଓଡ଼ିଆ ବର୍ଣମାଳା ମଧ୍ୟରେ ରହିବା ଉଚିତ।

ଓଡ଼ିଆରେ ଦୁଇଟି ତାଡ଼ିତ ଧ୍ୱନି 'ଡ଼' ଓ 'ଢ଼'ର ପ୍ରଚଳନ ରହିଅଛି। ଏହି ତାଲିକାରେ ଏଥିନିମନ୍ତେ କିନ୍ତୁ ଦୁଇଟି ସ୍ୱତନ୍ତ୍ର ବର୍ଗର ବ୍ୟବସ୍ଥା ନାହିଁ, ଏହାର କାରଣ ଏହି ଯେ ସ୍ପର୍ଶ ଡ଼ ଓ ଢ଼ ତଳେ ଦୁଇଟି ବିନ୍ଦୁ ସଂଯୋଗ କରାଯାଇ ଏହି ଧ୍ୱନିକୁ ରୂପ ଦିଆଯାଇପାରିବ। ଯଥା- ବାଡ଼ି, ଘଡ଼ି, ପଢ଼ା, ପିଢ଼ା ଇତ୍ୟାଦି।

କେତେକ ମତବ୍ୟକ୍ତ କରନ୍ତି ଯେ, ଦୁଇଟି ସ୍ୱରଧ୍ୱନି ମଧ୍ୟରେ ସ୍ୱର୍ଶ 'ଡ଼', 'ଢ଼' ରହିଲେ ତାହା ଆପେ ଆପେ ତାଡ଼ିତ ଡ଼, ଢ଼ରେ ପରିଣତ ହୋଇଥାନ୍ତି। ଏହା କିନ୍ତୁ ସମ୍ପୂର୍ଣ୍ଣ ଗ୍ରହଣଯୋଗ୍ୟ ମତ ନୁହେଁ, କାରଣ ଏପରି ସର୍ବତ୍ର ଘଟେନାହିଁ। ନିମ୍ନଲିଖିତ ଦୃଷ୍ଟାନ୍ତ ଗୁଡ଼ିକୁ ଲକ୍ଷ୍ୟ କରାଯାଉ।

(କ) ରଡ ନିଆଁ।

(କ) ଏ ହେଉଛନ୍ତି ପ୍ରଫେସର ରେଡ୍ଡି।

(ଗ) ଆଜି ବଡ଼ ବଡ଼ ମାଛ ଆସିଛି।

(ଘ) ମୁଂଡ।

(ଙ) ଷଂଢ।

କ, ଖ, ଗ, ଘ- ଦୃଷ୍ଟାନ୍ତରେ ସ୍ୱର୍ଶ 'ଡ' ଉଚ୍ଚାରିତ ହେଉଥିବା ସ୍ଥଳେ, 'ଙ' ଦୃଷ୍ଟାନ୍ତରେ ସ୍ୱର୍ଶ 'ଢ଼'ର ସ୍ପଷ୍ଟ ଉଚ୍ଚାରଣ ରହିଅଛି। ତେଣୁ ଓଡ଼ିଆରେ ଡ଼, ଢ଼ (ତାଡ଼ିତ) ବର୍ଣ୍ଣ ଯେ ଅନାବଶ୍ୟକ ସେପରି ନୁହେଁ, ଡ, ଢ (ସ୍ୱର୍ଶ) ଠାରୁ ଏହା ସମ୍ପୂର୍ଣ୍ଣ ଭିନ୍ନ ଉଚ୍ଚାରଣରେ ଓ ନିମ୍ନସ୍ଥିତ ଦୁଇଟି ବିନ୍ଦୁ ଦ୍ୱାରା ଭିନ୍ନ ଆକୃତିରେ।

ପୁରୁଣା ଓଡ଼ିଆ ପୁସ୍ତକମାନଙ୍କରେ ଦୁଇଗୋଟି 'ବ' ଦେଖିବାକୁ ମିଳେ। ଗୋଟିଏ ହେଉଛି ଓଷ୍ଠ୍ୟ ସ୍ୱର୍ଶ ଓ ଅନ୍ୟଟି ହେଉଛି ଅବର୍ଗ୍ୟ 'ବ'। ଏହି ତାଲିକାରେ ଅବର୍ଗ୍ୟ 'ବ' ପରବର୍ତ୍ତେ 'ୱ'କୁ ଗ୍ରହଣ କରାଯାଇଛି। କେତେକ କହନ୍ତି ଏହା ଓ ତଳେ ବ ଫଳା, ଏହା କିନ୍ତୁ ଠିକ୍ ନୁହେଁ। ଏହା ଏକ ସ୍ୱତନ୍ତ୍ର ବର୍ଣ୍ଣ। ଏହାର ସାଙ୍କେତିକ ଚିହ୍ନଟି ୱ ଫଳା ନାମରେ ନାମିତ।

ଏହି ବର୍ଣ୍ଣ ତାଲିକାରେ 'ଯ'କୁ ଗ୍ରହଣ କରାଯାଇନାହିଁ। କାରଣ ଓଡ଼ିଆରେ 'ଯ' 'ଜ' ମଧ୍ୟରେ କୌଣସି ଉଚ୍ଚାରଣଗତ ପାର୍ଥକ୍ୟ ପରିଦୃଷ୍ଟ ହୁଏନାହିଁ। ଗୋଟିଏ ଧ୍ୱନି ପାଇଁ ଦୁଇଗୋଟି ବର୍ଣ୍ଣର ପ୍ରଚଳନ ଯଥାର୍ଥ ନୁହେଁ। କେତେକ 'ଯ'କୁ 'ଜ୍ୟ' ଭାବରେ ଉଚ୍ଚାରଣ କରନ୍ତି ଓ କାର୍ଯ୍ୟ, ସୂର୍ଯ୍ୟ ଲେଖି ତାହାକୁ କାର୍ଜ୍ୟ ଓ ସୂର୍ଜ୍ୟ ଭାବରେ ପଢ଼ନ୍ତି। ଏହା ଅଯଥାର୍ଥ, କାରଣ କେହି ବି 'ଯମ'କୁ ଜ୍ୟମ ବା 'ଯତି'କୁ ଜ୍ୟତି ଭାବରେ ପଢ଼ନ୍ତି ନାହିଁ।

ଓଡ଼ିଆ ମୌଳିକ ଶବ୍ଦର ମଧ୍ୟସ୍ଥିତ ଓ ଅନ୍ତ୍ୟସ୍ଥିତିରେ 'ୟ' ରହିଥିବାର ଦେଖାଯାଏ। ଯଥା- ଗୟଳ, ଶୟନ, ବାୟକ, କାୟ, ଜୟ, ବ୍ୟୟ ଇତ୍ୟାଦି। କିନ୍ତୁ ଆଦିସ୍ଥିତିରେ 'ୟ' ରହିଥିବାର ଦେଖାଯାଏ ନାହିଁ, ଯାହାକି ସଂସ୍କୃତ ତଥା ଅନ୍ୟ କେତେକ ପ୍ରାନ୍ତୀୟ ଭାଷାରେ ପରିଦୃଷ୍ଟ। ସମ୍ପ୍ରତି ଓଡ଼ିଆ ଶବ୍ଦର ଆଦିସ୍ଥିତିରେ 'ୟ' ବ୍ୟବହୃତ ହେଉଥିବାର ଦେଖାଯାଉଛି।

ଯଥା- ୟଦା (ଯଦା), ୟୋଗ (ଯୋଗ), ୟୁବରାଜ (ଯୁବରାଜ), ୟୋଜନା (ଯୋଜନା), ୟୁନାଇଟେଡ, ୟାକ୍ ଇତ୍ୟାଦି। ଏହାକୁ ଅନ୍ୟ ଭାଷାର ପ୍ରଭାବ ବୋଲି କୁହାଯାଇପାରେ; କିନ୍ତୁ ସମ୍ପ୍ରତି ଯୋଗାଯୋଗର ଏତେ ସୁବିଧା ହୋଇଯାଇଛି ଯେ, କୌଣସି ବ୍ୟକ୍ତି ଅନ୍ୟଭାଷାର ପ୍ରଭାବରୁ ଆଉ ଏବେ ମୁକ୍ତ ନୁହେଁ। କୌଣସି ଭାଷା ଏବେ ନିର୍ଦ୍ଦିଷ୍ଟ ଗୋଷ୍ଠୀ ତଥା ଭୌଗୋଳିକ ସୀମା ମଧ୍ୟରେ ଆବଦ୍ଧ ହୋଇ ରହିନାହିଁ। ଘରେ ବସି ଯେକୌଣସି ଭାଷା ସଂସ୍ପର୍ଶରେ ଆସିବା ଆଜି ଅତି ସହଜ ହୋଇଯାଇଛି। ଜାଣତରେ ହେଉ ଅଥବା ଅଜାଣତରେ ହେଉ ଆଜି ପ୍ରତ୍ୟେକ ବ୍ୟକ୍ତି ପ୍ରତ୍ୟହ ଅନ୍ୟ ଭାଷାର ସଂସ୍ପର୍ଶରେ ଆସୁଛି ଓ ପ୍ରଭାବିତ ହେଉଛି। ଏତଦ୍‌ବ୍ୟତୀତ ଆହରଣ ପ୍ରତ୍ୟେକ ବ୍ୟକ୍ତିର ଏକ ଅନ୍ତର୍ନିହିତ କଳା, ପୁନଶ୍ଚ ନିଜର ବକ୍ତବ୍ୟକୁ ସାମାନ୍ୟ ଭିନ୍ନ ଢଙ୍ଗରେ ପ୍ରକାଶ କରିବା ନିମନ୍ତେ ସମସ୍ତଙ୍କ ମନରେ ଥାଏ ଏକ ଅହେତୁକ ଆଗ୍ରହ। ତେଣୁ ସଚେତନ ଭାବରେ କେତେକ ଲୋକ ଓଡ଼ିଆ ଶବ୍‌ଦର ଆଦି ସ୍ଥିତିରେ ରହିଥିବା 'ଯ' ସ୍ଥାନରେ 'ୟ' ବ୍ୟବହାର କରୁଥିବାର ଦେଖାଯାଉଛି। ଏହି ପ୍ରବନ୍ଧର କେତେକ ସ୍ଥାନରେ 'ଯ' ଜାଗାରେ 'ୟ'ର ବ୍ୟବହାର କରାଯାଇଛି। କେହି ଏହି ସ୍ଥାନରେ 'ଜ' ମଧ୍ୟ ବ୍ୟବହାର କରିପାରନ୍ତି। ଓଡ଼ିଆ ଶବ୍‌ଦର 'ଯ' ସ୍ଥାନରେ 'ଜ' ବା 'ୟ' ବ୍ୟବହାର କରିବା ଉଚ୍ଚାରଣ ଆଧାରିତ ହେବା ଉଚିତ ହେଲେ ମଧ୍ୟ ବ୍ୟକ୍ତିଗତ ରୁଚିକୁ ଅସ୍ୱୀକାର କରାଯାଇ ନ ପାରେ। ଏପରି ବିଚାର ତଥା ବ୍ୟବହାରକୁ ଏକ ପ୍ରସ୍ତାବ ବା ପରୀକ୍ଷା ଭାବରେ ଗ୍ରହଣ କରାଯାଇପାରେ, ଓଡ଼ିଆ ବର୍ଣ୍ଣ ସଂସ୍କାରର ଏହା ମଧ୍ୟ ଏକ ପ୍ରମୁଖ ଦିଗ।

ଏହି ବ୍ୟଞ୍ଜନ ବର୍ଣ୍ଣ ତାଲିକାରେ 'ଋ'କୁ ସ୍ଥାନ ଦିଆଯାଇଛି, ଯାହାକି ପାରମ୍ପରିକ ବିଚାରଠାରୁ ସମ୍ପୂର୍ଣ୍ଣ ଭିନ୍ନ। କାରଣ ପରମ୍ପରାକ୍ରମେ 'ଋ' ଏକ ସ୍ୱରବର୍ଣ୍ଣ ଭାବରେ ବିବେଚିତ ହୋଇଆସୁଛି। ସଂସ୍କୃତରେ ଏହା ସ୍ୱର ଭାବରେ ଉଚ୍ଚାରିତ ହେଇଥାଇପାରେ; କିନ୍ତୁ ଓଡ଼ିଆରେ ଏହା 'ର + ଉ' ଭାବରେ ଉଚ୍ଚାରିତ ହୁଏ। ଓଡ଼ିଆ ବର୍ଣ୍ଣମାଳାରେ 'ର' ଏକ ବ୍ୟଞ୍ଜନ ହୋଇଥିବା ବେଳେ 'ର + ଉ' ସ୍ୱର ହେବ ବା କାହିଁକି ? ଏଇ ପ୍ରବନ୍ଧରେ ଦିଆଯାଇଥିବା ବ୍ୟାକରଣ ଓ ଭାଷାବିଜ୍ଞାନର ବିଖ୍ୟାତ ସ୍ୱର ସଂଜ୍ଞାଗୁଡ଼ିକୁ ଆଧାର କରି ବିଚାର କଲେ ଓଡ଼ିଆ 'ଋ'କୁ ସ୍ୱର ଭାବେ ଗ୍ରହଣ କରାଯାଇ ନ ପାରେ। ଏଇ ବର୍ଣ୍ଣଟିକୁ ମଧ୍ୟ ଓଡ଼ିଆ ବର୍ଣ୍ଣମାଳାରୁ ବାଦ୍ ଦିଆଯାଇପାରିବ ନାହିଁ, କାରଣ ଏହାର ସାଂକେତିକ ଚିହ୍ନଟି ଓଡ଼ିଆ ଲିଖନ ପଦ୍ଧତିରେ ଫଳା ରୂପରେ ବ୍ୟବହୃତ ହୋଇ ବିଶେଷ ଭୂମିକା ସାଧନ କରେ। ସ୍ମୃତି, ସ୍ପୃହା, ସ୍ପୃଶ୍ୟ, ସ୍କୃ ଇତ୍ୟାଦି ଶବ୍‌ଦ ଲେଖିଥିଲା ବେଳେ ଋ -

ଫଳାର ବ୍ୟବହାର ଅନିବାର୍ଯ୍ୟ ହୋଇପଡ଼େ, ନଚେତ୍ ପ୍ରତ୍ୟେକ ଧାଡ଼ି ମଧ୍ୟରେ ଥିବା ବ୍ୟବଧାନ ସମାନ ରହିବ ନାହିଁ।

**ସଂଯୁକ୍ତ ବ୍ୟଞ୍ଜନ ବର୍ଣ**

ଏକାଧିକ ବ୍ୟଞ୍ଜନ ବର୍ଣର ସଂଯୋଗରେ ଯେଉଁ ବର୍ଣଟି ଗଠିତ ହୁଏ, ତାହାକୁ ସଂଯୁକ୍ତ ବ୍ୟଞ୍ଜନ ବର୍ଣ କୁହାଯାଏ। ଓଡ଼ିଆରେ ସମୁଦାୟ କେତେଗୋଟି ସଂଯୁକ୍ତ ବ୍ୟଞ୍ଜନ ବର୍ଣ ପ୍ରଚଳିତ, ତାହା ଏ ପର୍ଯ୍ୟନ୍ତ ନିର୍ଣିତ ହୋଇନାହିଁ। ଓଡ଼ିଆର କେତେକ ବର୍ଣ ଶିକ୍ଷା, ବ୍ୟାକରଣ ତଥା ଭାଷାବିଜ୍ଞାନ ଗ୍ରନ୍ଥକୁ ଅନୁଧାନ କଲେ ଜଣାଯାଏ ଏହି ସଂଖ୍ୟା ଅନିର୍ଦ୍ଦିଷ୍ଟ ଓ ଅସ୍ପଷ୍ଟ। ନଦୀୟା ଚାନ୍ଦ ଦେଂକ ବର୍ଣ୍ଣମଞ୍ଜରୀ (୧୮୯୬), ମଧୁସୂଦନ ରାଓଙ୍କ ବର୍ଣବୋଧ (୧୮୯୫) ଓ ମାଧ୍ୟମିକ ଶିକ୍ଷା ପରିଷଦ, ଓଡ଼ିଶାର, ଓଡ଼ିଆ ବ୍ୟାକରଣ (୨୦୦୮)ରେ ଏହି ସଂଖ୍ୟା ଯଥାକ୍ରମେ- ୭୦, ୭୨ ଓ ୫୦। ଏତଦ୍‌ବ୍ୟତୀତ ସଂପ୍ରତି ଓଡ଼ିଆ ବର୍ଣମାଳାରେ ଅନେକ ନୂତନ ସଂଯୁକ୍ତ ବ୍ୟଞ୍ଜନ ବର୍ଣର ପ୍ରଚଳନ ଦେଖିବାକୁ ମିଳୁଛି, ଯଥା- କ୍ଟ (ଡକ୍ଟର), ପ୍ଟ (ସେପ୍ଟେମ୍ବର), ଫ୍ଟ (ଡ୍ରାଫ୍ଟ), କ୍ସ (ନକ୍ସଲ), ନ୍ସ (ଆଡ଼ଭାନ୍ସ), ଲ୍ଟ (ବେଲ୍ଟ) ଇତ୍ୟାଦି। ଅର୍ଥାତ୍ ସଂଯୁକ୍ତ ବ୍ୟଞ୍ଜନବର୍ଣର ସଂଖ୍ୟା ଦିନକୁ ଦିନ ବଢ଼ିବାରେ ଲାଗିଛି। ଏହାର କାରଣ ଏହି ଯେ, ପ୍ରତ୍ୟହ ବିଭିନ୍ନ ଭାଷା ଓଡ଼ିଆ ଭାଷାକୁ ପ୍ରଭାବିତ କରୁଛି ଓ ଅନେକ ନୂତନ ଶବ୍ଦ ଓଡ଼ିଆ ଶବ୍ଦଭଣ୍ଡାର ମଧ୍ୟକୁ ପ୍ରବେଶ କରୁଛି। ବର୍ଣମଞ୍ଜରୀ ଓ ବର୍ଣ୍ଣବୋଧରେ ତତ୍କାଳୀନ ଆବଶ୍ୟକତା ଅନୁସାରେ ସଂଯୁକ୍ତ ବ୍ୟଞ୍ଜନ ବର୍ଣଗୁଡ଼ିକ ସ୍ଥିର କରାଯାଉଥିଲା, ବର୍ତ୍ତମାନ ଆବଶ୍ୟକତା ଅନୁସାରେ କେତେକ ନୂତନ ବର୍ଣ ସୃଷ୍ଟି ହେବା ଅତ୍ୟନ୍ତ ସ୍ୱାଭାବିକ। ସଂପ୍ରତି ଓଡ଼ିଆରେ ଯେ, ଶତାଧିକ ସଂଯୁକ୍ତ ବ୍ୟଞ୍ଜନ ବର୍ଣ ପ୍ରଚଳିତ, ଏଥିରେ କୌଣସି ସନ୍ଦେହ ନାହିଁ। ତେବେ ବର୍ତ୍ତମାନ ଓଡ଼ିଆରେ ଏହି ସଂଯୁକ୍ତ ବ୍ୟଞ୍ଜନ ବର୍ଣଗୁଡ଼ିକର ସଂଖ୍ୟା କେତେ ? ତାହା ନିର୍ଣ୍ଣୟ କରିବା ଅପେକ୍ଷା ଏଗୁଡ଼ିକର ଗଠନ ବିଧି ସ୍ଥିର କରାଯାଇ ବର୍ଗୀକରଣ କରିବା ଅଧିକ ସମୀଚୀନ ହେବ। ଓଡ଼ିଆ ସଂଯୁକ୍ତ ବ୍ୟଞ୍ଜନ ବର୍ଣଗୁଡ଼ିକ ୩ ଗୋଟି ବିଧି ଅନୁସାରେ ଗଠିତ। ତେଣୁ ଏହା ତ୍ରିବିଧ। ଯଥା-

୧ : ଫଳାଯୁକ୍ତ ସଂଯୁକ୍ତ ବ୍ୟଞ୍ଜନ ବର୍ଣ।

୨ : ସ୍ୱତନ୍ତ୍ର ସଂଯୁକ୍ତ ବ୍ୟଞ୍ଜନ ବର୍ଣ।

୩ : ଦ୍ୱିତଳ ସଂଯୁକ୍ତ ବ୍ୟଞ୍ଜନ ବର୍ଣ।

**(୧) ଫଳାଯୁକ୍ତ ସଂଯୁକ୍ତ ବ୍ୟଞ୍ଜନ ବର୍ଣ :**

କୌଣସି ବ୍ୟଞ୍ଜନ ବର୍ଣ ସହିତ ଯଦି ଏକ ବା ଏକାଧିକ ବ୍ୟଞ୍ଜନ ବର୍ଣର ସାଂକେତିକ ଚିହ୍ନ (ଫଳା) ସଂଯୁକ୍ତ ହୋଇ ଗୋଟିଏ ବର୍ଣରେ ପରିଣତ ହେବା ସହିତ ଗୋଟିଏ

ସିଲେବ୍ଲ ଭାବରେ ଉଚ୍ଚାରିତ ହୁଏ, ତେବେ ତାହାକୁ ଫଳାଯୁକ୍ତ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ କୁହାଯାଏ। ପୂର୍ବରୁ ଯୁକ୍ତାକ୍ଷର ନାମରେ ପ୍ରଚଳିତ ଅନେକ ବର୍ଣ୍ଣକୁ ଏହି ବିଧିରେ ବିଚାର କରାଯାଇପାରିବ। ଓଡ଼ିଆରେ ସମୁଦାୟ ୧୭ ଗୋଟି ଫଳା ରହିଅଛି। ତତ୍‌ମଧ୍ୟରୁ ୧୬ ଗୋଟି ଫଳାର ସଂଯୋଗରେ ସଂଯୁକ୍ତ ବ୍ୟଞ୍ଜନବର୍ଣ୍ଣ ସୃଷ୍ଟି ହୋଇଥାଏ। ଯଥା -

| କ୍ର.ସଂ | ଫଳା | ସଂଯୁକ୍ତ ବର୍ଣ୍ଣ | ଦୃଷ୍ଟାନ୍ତ |
|---|---|---|---|
| ୧. | କ-ଫଳା | କ୍କ, ଙ୍କ, ସ୍କ | ଚିକ୍କଣ, ଶୁଳ୍କ, ପୁରସ୍କାର |
| ୨. | ଜ-ଫଳା | ଜ୍ଜ, ବ୍ଜ | କଜ୍ଜଳ, କୁବ୍ଜା |
| ୩. | ଣ-ଫଳା | ଷ୍ଣ | କୃଷ୍ଣ |
| ୪. | ତ-ଫଳା | କ୍ତ, ନ୍ତ, ପ୍ତ, ସ୍ତ | ରକ୍ତ,ଦାନ୍ତ,ରପ୍ତାନି,ବସ୍ତା |
| ୫. | ଥ-ଫଳା | ନ୍ଥ, ସ୍ଥ | କାନ୍ଥ, ସୁସ୍ଥ, ସ୍ଥାନ |
| ୬. | ନ-ଫଳା | ଗ୍ନ,ଘ୍ନ,ତ୍ନ,ପ୍ନ,ଶ୍ନ,ହ୍ନ | ମଗ୍ନ,ବିଘ୍ନ,ରତ୍ନ,ଅନ୍ନ,ସ୍ୱପ୍ନ<br>ନିମ୍ନ,ପ୍ରଶ୍ନ,ବାସ୍ନା,ଚିହ୍ନ |
| ୭. | ମ-ଫଳା | ଗ୍ମ,ତ୍ମ,ଦ୍ମ,ନ୍ମ,ମ୍ମ,ଶ୍ମ,ସ୍ମ | ବାଗ୍ମୀ,ଆତ୍ମା,ପଦ୍ମ,ଜନ୍ମ,<br>ସମ୍ମତ,ରଶ୍ମି,ସ୍ମରଣ |
| ୮. | ଯ-ଫଳା | କ୍ୟ,ଚ୍ୟ ବ୍ୟ,ଠ୍ୟ,ତ୍ୟ,ଥ୍ୟ,<br>ଦ୍ୟ,ଧ୍ୟ,ନ୍ୟ,ପ୍ୟ,ବ୍ୟ,ଭ୍ୟ,<br>ମ୍ୟ,ସ୍ୟ,ହ୍ୟ | ବାକ୍ୟ,ବାଚ୍ୟ,ଜ୍ୟୋତି,<br>ପାଠ୍ୟ,ସତ୍ୟ,ତଥ୍ୟ,ବିଦ୍ୟା,<br>ଧ୍ୟାନ,ଅନ୍ୟ,ପ୍ରାପ୍ୟ,<br>ଦିବ୍ୟ,ସଭ୍ୟ,ରମ୍ୟ,ରହସ୍ୟ, ସହ୍ୟ |
| ୯. | ର-ଫଳା | କ୍ର,ଗ୍ର,ଘ୍ର | ଚକ୍ର,ବ୍ୟଗ୍ର,ଶୀଘ୍ର |
| | (ରେଫ) | ର୍କ,ର୍ଖ,ର୍ଗ | ତର୍କ,ମୂର୍ଖ,ବର୍ଗ |
| ୧୦. | ଋ-ଫଳା | କୃ,ଗୃ,ଘୃ | କୃଷକ,ଗୃହ,ଘୃତ |
| ୧୧. | ଳ-ଫଳା | କ୍ଳ,ଗ୍ଳ,ପ୍ଳ | ଶୁକ୍ଳ,ଗ୍ଳାନି,ପ୍ଳାବନ |
| ୧୨. | ଲ-ଫଳା | କ୍ଲ,ଗ୍ଲ,ପ୍ଲ,ଲ୍ଲ,ହ୍ଲ | କ୍ଲାସ,ଗ୍ଲାସ,ପ୍ଲାନ,ଉଲ୍ଲାସ,ପ୍ରହ୍ଲାଦ |
| ୧୩. | ଵ-ଫଳା | କ୍ୱ,ଜ୍ୱ,ଦ୍ୱ,ସ୍ୱ | ପକ୍ୱ,ଜ୍ୱର,ସଦ୍ୱ,ସ୍ୱତଃ |
| ୧୪. | ହ-ଫଳା(ବିସର୍ଗ) | ତଃ,ନଃ | ସ୍ୱତଃ,ନିଃଶେଷ |
| ୧୫. | ନାସିକ୍ୟଫଳା | ଂକ,ଂଖ,ଂଗ,ଂଘ,ଂଚ,ଂଛ,<br>ଂଜ,ଂଝ,ଂଟ,ଂଠ | ବାଂକ,ଶଂଖ,ଗଂଗା,ସଂଘ,କଂଚା<br>ବାଂଛା,ସଂଜ,ବାଂଝ,କଂଟା,କଂଠ |
| | (ଅନୁସ୍ୱାର) | ଂଡ,ଂଢ,ଂତ,ଂଥ,ଂଦ,ଂଧ<br>ଂପ,ଂଫ,ଂବ,ଭଂ,ଂଶ | ଗୁଂଡ,ଷଂଢ,ଦାଂତ,କାଂଥ,ମଂଦ<br>ଗଂଧ,ଲଂଫଂ,ବାଂଫଂ,<br>ଆଂବ,ଦଂଭ,ଅଂଶ |

୧୬. ଅନୁନାସିକାଫଳା କଁ,ଖଁ,ଗଁ,ଘଁ (ଚନ୍ଦ୍ରବିନ୍ଦୁ) — କଁକଁ,ଖଁଖଁ,ଗଁଗଁ,ଘଁଘଁ, ସାଁକୁଚ, କାଁଚନ,ଗଇଁଠା,ସୁଁଦର,ପାଁପଡ଼

୧୭. ଅପୂର୍ଣ୍ଣ ଫଳା କ୍, ଖ୍

[ଅପୂର୍ଣ୍ଣ ଫଳା ବା ହଳନ୍ତ ମାଧ୍ୟମରେ ଦୁଇଟି ବ୍ୟଞ୍ଜନବର୍ଣ୍ଣ (ଧ୍ୱନି)ର ସଂଯୋଗ ଘଟିପାରେ, ଅର୍ଥାତ୍ ଗୋଟିଏ ସିଲବ୍ଲ ଭାବରେ ଉଚ୍ଚାରିତ ହୋଇପାରେ; କିନ୍ତୁ ଗୋଟିଏ ବର୍ଣ୍ଣରେ ପରିଣତ ହୁଏ ନାହିଁ। ଯଥା- ଉତ୍‌ଥାନ, ଉତ୍‌କୋଚ, ବିଦଗ୍‌ଧ, ଆକାଙ୍‌କ୍ଷା, ଶବ୍‌ଦ, ଉଦ୍‌ଯାପନ ଇତ୍ୟାଦି। ଏହି ପ୍ରକାର ଲେଖା ବର୍ଣ୍ଣମାଳାତ୍ମକ ଲିଖନ ପଦ୍‌ଧତି ନାମରେ ପରିଚିତ।]

**(୨) ସ୍ୱତନ୍ତ୍ର ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ :**

ଦୁଇଗୋଟି ବ୍ୟଞ୍ଜନ ବର୍ଣ୍ଣ ମିଶି ଯଦି ଗୋଟିଏ ସ୍ୱତନ୍ତ୍ର ବର୍ଣ୍ଣ (ଗୋଟିକିଆ ବର୍ଣ୍ଣ)ରେ ପରିଣତ ହୁଏ, ତେବେ ତାହାକୁ ସ୍ୱତନ୍ତ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ କୁହାଯାଏ। ଏହା ଦ୍ୱିବିଧ। ଯଥା -

ଦ୍ୱିତ୍ୱ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ।

ରୂପାନ୍ତରିତ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ।

ଦ୍ୱିତ୍ୱ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ :

ଦ୍ୱିତ୍ୱସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣରେ ଦୁଇଟି ସମବର୍ଣ୍ଣ ବା ଅନୁପ୍ରାସ ମହାପ୍ରାଣ ଭେଦ ବିଶିଷ୍ଟ ବର୍ଣ୍ଣଦୁଇଟି ମଧ୍ୟରେ ସଂଯୋଗ ଘଟିଥାଏ। ଏଥିରେ ବର୍ଣ୍ଣ ଦୁଇଟିର ସତ୍ତା ସ୍ପଷ୍ଟ ବାରି ହୋଇପଡ଼େ। ଓଡ଼ିଆରେ ସମୁଦାୟ ୭ ଗୋଟି ଦ୍ୱିତ୍ୱ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ ରହିଅଛି। ସେଗୁଡ଼ିକ ହେଲା- ଚ୍ଚ, ଚ୍ଛ, ଟ୍ଟ, ତ୍ତ, ଦ୍ଦ, ଦ୍ଧ ଏବଂ ବ୍ବ । ଏଗୁଡ଼ିକର ଗଠନ ନିମ୍ନରେ ପ୍ରଦାନ କରାଗଲା।

| କ୍ର.ସଂ | ସଂଯୁକ୍ତ ବର୍ଣ୍ଣ | ସଂଯୋଜିତ ବର୍ଣ୍ଣ | ଦୃଷ୍ଟାନ୍ତ |
|---|---|---|---|
| ୧. | ଚ୍ଚ | ଚ+ଚ | ଉଚ୍ଚ |
| ୨. | ଚ୍ଛ | ଚ+ଛ | ଇଚ୍ଛା |
| ୩. | ଟ୍ଟ | ଟ+ଟ | ଅଟ୍ଟହାସ |
| ୪. | ତ୍ତ | ତ+ତ | ଉତ୍ତର |
| ୫. | ଦ୍ଦ | ଦ+ଦ | ଉଦ୍ଦାତ |
| ୬. | ଦ୍ଧ | ଦ+ଧ | ବୃଦ୍ଧ |
| ୭. | ବ୍ବ | ବ+ବ | ରବ୍ବର ରବର |

ଓଡ଼ିଆରେ କ୍ଳ, ଜ୍ଞ, ଣ୍ଟ, ନ୍ନ, ଲ୍ଲ, ସ୍ପ, ତ୍ତ, ପରି କେତେକ ବର୍ଣ୍ଣ ପ୍ରଚଳିତ; ଯେଉଁଥିରେ ଦୁଇଗୋଟି ସମବ୍ୟଞ୍ଜନ ବର୍ଣ୍ଣର ସଂଯୋଗ ଘଟିଅଛି; କିନ୍ତୁ ଏଗୁଡ଼ିକ ଏହି ଦ୍ୱିତ୍ୱ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣର ଅନ୍ତର୍ଭୁକ୍ତ ହୋଇପାରିବ ନାହିଁ। କାରଣ ଏଗୁଡ଼ିକ ସ୍ୱତନ୍ତ୍ର (ଗୋଟିକିଆ) ବର୍ଣ୍ଣ ନୁହନ୍ତି, ମୂଳବର୍ଣ୍ଣ ସହିତ ଫଳା ସଂଯୋଗରେ ଅଥବା ଗୋଟିଏ ବଡ଼ବର୍ଣ୍ଣ ସହିତ (ତଳେ) ସାନବର୍ଣ୍ଣଟିଏ ହୋଇ ବା ନୂତନ ବର୍ଣ୍ଣ ସଂଯୋଗ ବିଧିରେ ଏଗୁଡ଼ିକ ଗଠିତ।

**ରୂପାନ୍ତରିତ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ :**

ଯେଉଁଠି ଦୁଇଟି ଅସମ ବ୍ୟଞ୍ଜନ ବର୍ଣ୍ଣ (ଉଚ୍ଚାରଣ ସ୍ଥାନ ବା ଉଚ୍ଚାରଣ ବିଧି ଦୃଷ୍ଟିରୁ)ର ସଂଯୋଗରେ ଗୋଟିଏ ସ୍ୱତନ୍ତ୍ର (ଗୋଟିକିଆ) ବର୍ଣ୍ଣ ସୃଷ୍ଟି ହୁଏ, ଯାହା କୌଣସି ବର୍ଣ୍ଣର ସାଂକେତିକ ଚିହ୍ନ (ଫଳା) ବା ଦୁଇଗୋଟି ବର୍ଣ୍ଣର ବର୍ଣ୍ଣାଂଶକୁ ନେଇ ଗଠିତ ନୁହେଁ, ତାହାକୁ ରୂପାନ୍ତରିତ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ କୁହାଯାଏ। ଓଡ଼ିଆରେ ସମୁଦାୟ ଦୁଇଗୋଟି ରୂପାନ୍ତରିତ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ ରହିଅଛି। ସେଦୁଇଟି ହେଉଛି 'କ୍ଷ' ଓ 'ଜ୍ଞ'। ଏଦୁଇଟି ଗଠନ ବିଧି ନିମ୍ନରେ ପ୍ରଦାନ କରାଗଲା।

| କ.ସଂ | ସଂଯୁକ୍ତ ବର୍ଣ୍ଣ | ସଂଯୋଜିତ ବର୍ଣ୍ଣ | ଦୃଷ୍ଟାନ୍ତ |
|---|---|---|---|
| ୧. | କ୍ଷ | କ+ଷ | କ୍ଷମା, ଦକ୍ଷିଣା, ଦକ୍ଷ |
| ୨. | ଜ୍ଞ | ଜ+ଞ | ଜ୍ଞାନ, ବିଜ୍ଞାନ, ଜ୍ଞ |

ଏହି ଦୁଇଗୋଟି ବର୍ଣ୍ଣର ଯଥାର୍ଥ ଉଚ୍ଚାରଣ ଓଡ଼ିଆରେ ହୁଏନାହିଁ; କିନ୍ତୁ ଅତି ସହଜରେ ଏଗୁଡ଼ିକୁ ଉଚ୍ଚାରଣ କରାଯାଇପାରିବ।

**(୩) ଦ୍ୱିତଳ ନୂତନ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ :**

ଯଦି ଗୋଟିଏ ବଡ଼ ବ୍ୟଞ୍ଜନ ବର୍ଣ୍ଣ ତଳେ ଅପେକ୍ଷାକୃତ ଛୋଟ ବ୍ୟଞ୍ଜନ ବର୍ଣ୍ଣଟିଏ ରହେ, ଦୁହେଁ ଗୋଟିଏ ସିଲେବ୍ଲ ଭାବରେ ଉଚ୍ଚାରିତ ହୁଅନ୍ତି, ତେବେ ତାହାକୁ ଦ୍ୱିତଳ ସଂଯୁକ୍ତ ବ୍ୟଞ୍ଜନ ବର୍ଣ୍ଣ କୁହାଯାଏ। ଓଡ଼ିଆରେ ଯୁକ୍ତାକ୍ଷର ନାମରେ ପ୍ରଚଳିତ ଅନେକ ବର୍ଣ୍ଣକୁ ଏହି ବର୍ଗରେ ଅନ୍ତର୍ଭୁକ୍ତ କରାଯାଇ ପାରିବ ଓ ଅନେକ ବୈଦେଶିକ ଶବ୍ଦକୁ ଏହି ପ୍ରଣାଳୀରେ ଅତି ସହଜରେ ଲେଖିହେବ। ଯଥା -

କ୍ର (ଉକ୍ରର), କ୍ଲ (ନକ୍ଲଲ); ଗ୍ଧ (ଦୁଗ୍ଧ), ଣ୍ଡ (କେଣ୍ଡ), ଣ୍ଟ (କଣ୍ଟ), ଦ୍ଘ (ଉଦ୍ଘାଟନ), ପ୍ସ (ଅପ୍ସରା), ପ୍ପ (ପିପ୍ପଳି), ଦ୍ଧ (ଲୁବ୍ଧକ), ଚ୍ଛ (ଅଚ୍ଛ), ଲ୍ଟ (ବେଲ୍ଟ), ଣ୍ଠ (ପଣ୍ଠ), ଷ୍ଟ (କଷ୍ଟ), ଷ୍ଠ (ପ୍ରତିଷ୍ଠା), ସ୍ପ (ସ୍ପର୍ଶ), ସ୍ଖ (ସ୍ଖଳନ), ସ୍ଫ (ସ୍ଫଟିକ) ଇତ୍ୟାଦି।

ଓଡ଼ିଆ ଭାଷାରେ ବର୍ଣ ସଂଖ୍ୟା କେତେ ? ଏହି ପ୍ରଶ୍ନ ବା ସମସ୍ୟାର ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ ଯେ, ଓଡ଼ିଆରେ ସମୁଦାୟ ୫୪ ଗୋଟି ବର୍ଣର ଆବଶ୍ୟକତା ରହିଛି। ସେଗୁଡ଼ିକ ନିମ୍ନମତେ ବିଭକ୍ତ କରାଯାଇପାରେ -

ସ୍ୱରବର୍ଣ ୧୦ ଗୋଟି।

ମୌଳିକ ସ୍ୱରବର୍ଣ ୮ଟି : ଅ, ଆ, ଇ, ଈ, ଉ, ଊ, ଏ, ଓ

ସଂଯୁକ୍ତ ସ୍ୱରବର୍ଣ୍ଣ ୨ଟି : ଐ, ଔ

ବ୍ୟଞ୍ଜନ ବର୍ଣ (ମୌଳିକ) ୩୫ ଗୋଟି। ଯଥା- କ, ଖ, ଗ, ଘ, ଙ, / ଚ, ଛ, ଜ, ଝ, ଞ, / ଟ, ଠ, ଡ, ଢ, ଣ, / ତ, ଥ, ଦ, ଧ, ନ,/ ପ, ଫ, ବ, ଭ,ମ,/ ଯ, ର, ଳ, ୟ, ଲ, ୱ, ଶ, ଷ, ସ, ହ

ସଂଯୁକ୍ତ ବ୍ୟଞ୍ଜନ ବର୍ଣ ୯ ଗୋଟି। ଏହା ଦ୍ୱିବିଧ : ଦ୍ୱିତ୍ୱ ସଂଯୁକ୍ତ ବ୍ୟଞ୍ଜନ ବର୍ଣ ୭ ଗୋଟି। ଯଥା- ଙ୍କ, ଞ୍ଚ, ଞ୍ଜ, ଣ୍ଡ, ନ୍ଦ, ମ୍ବ, ମ୍ଭ। ସ୍ୱତନ୍ତ୍ର ସଂଯୁକ୍ତ ବ୍ୟଞ୍ଜନ ବର୍ଣ ୨ ଗୋଟି। ଯଥା- କ୍ଷ ଏବଂ ଜ୍ଞ।

ଏହା ସହିତ ୯ ଗୋଟି ମାତ୍ରା ଓ ୧୭ ଗୋଟି ଫଳା ସମେତ ଆଲୋଚିତ ସଂଯୁକ୍ତ ବ୍ୟଞ୍ଜନ ବର୍ଣ ଗଠନର ବିଧିଗୁଡ଼ିକୁ ଅନୁସରଣ କଲେ କେବଳ ଓଡ଼ିଆ ବା ଭାରତୀୟ ଭାଷା ନୁହେଁ, ପୃଥିବୀର ଯେକୌଣସି ଭାଷାକୁ ଓଡ଼ିଆ ବର୍ଣମାଳାରେ (ଅବିକଳ ନ ହେଲେ ବି ପାଖାପାଖି) ଲେଖାଯାଇପାରିବ।

ତାଳପତ୍ର-ଲିଖନ ନମୂନା



ସୌଜନ୍ୟ : ଇଣ୍ଟରନେଟ୍



# ଅକ୍ଷର ସହ ସମ୍ପର୍କ

## ଚିନ୍ମୟ କୁମାର ହୋତା

ସେଦିନ ସକାଳେ ଯେତେବେଳେ ପାଣ୍ଡୁଲିପିଟିକୁ କମ୍ପ୍ୟୁଟରରେ ଓଡ଼ିଆରେ ଟାଇପ୍ କରିସାରିଲି ମନେ ମନେ ଖୁବ୍ ଖୁସି ହେଲି। ଯା' ହେଉ, ଆରମ୍ଭ କରିବା ପୂର୍ବରୁ ଏତେ କଠିନ ଭଳି ଲାଗୁଥିବା କାମଟି ଏଡ଼େ ସୁରୁଖୁରୁରେ ସରିଗଲା। ଇଣ୍ଟରନେଟ୍‌ରେ ତ ଆଜିକାଲି ସବୁ ସୁବିଧା ଉପଲବ୍ଧ, ଓଡ଼ିଆ ଲିପି ଡାଉନଲୋଡ଼ କରିସାରି ଟିକିଏ ଅଭ୍ୟାସ କରିନେଲା ପରେ ସବୁକିଛି ସହଜ ଲାଗିଲା। ଚାହୁଁ ଚାହୁଁ ପାଞ୍ଚଶହ ଶବ୍ଦର ଲେଖାଟି ବି ସମ୍ପୂର୍ଣ୍ଣ ହୋଇଗଲା। ଯା'ପରେ ଲେଖାଟିକୁ ଇମେଲ୍‌ରେ ପଠାଇଦେଲେ କାମ ଶେଷ। ଆଗକୁ ଏଇ ଓଡ଼ିଆ ଟାଇପ୍ କାମ ଆହୁରି ସହଜ ଲାଗିବ ବୋଲି ଭାବି ଆତ୍ମସନ୍ତୋଷ ଲାଭ କଲି। ପୂର୍ବରୁ ମୁଁ ଓଡ଼ିଆ ପାଣ୍ଡୁଲିପିକୁ କାଗଜରେ ଲେଖି, ଲଫାପାରେ ଭର୍ତ୍ତି କରି ପୋଷ୍ଟ ଅଫିସ୍ ବା କୋରିୟର ମାଧ୍ୟମରେ ସମ୍ପାଦକମାନଙ୍କ ପାଖକୁ ପଠାଉଥିଲି। ହାତ ଲେଖାରେ ଥିଲା ଆହୁରି କେତେ ଛୋଟ ଛୋଟ ଅସୁବିଧା। ଏଇ ଯେମିତି ବନାନ ଅଶୁଦ୍ଧ ହୋଇଯିବା ବା ଉତାରୁଥିବାବେଳେ ଶବ୍ଦ କିମ୍ବା ଧାଡ଼ି ଛାଡ଼ିଯିବାର ସମ୍ଭାବନା। ଏସବୁ ହେଲେ ଆପଣଙ୍କ ପରିଚ୍ଛନ୍ନ ପାଣ୍ଡୁଲିପିଟିଏ ତିଆରି କରିବାର ଆଶାର ସେଇଠି ଅନ୍ତ।

ଲାଗିଲା କମ୍ପ୍ୟୁଟରରେ ଟାଇପ୍ ହୋଇଥିବା ପାଣ୍ଡୁଲିପି ସତେ ଯେମିତି ଏମିତି ଛୋଟବଡ଼ ସମସ୍ୟାର ଏକମାତ୍ର ସମାଧାନ। ଲେଖାର ଦୈର୍ଘ୍ୟ ଆକଳନ ପାଇଁ ଗୋଟିଗୋଟି କରି ଶବ୍ଦ ଗଣିବା ଦରକାର ନାହିଁ। ଟାଇପ୍ କରୁଥିବାବେଳେ ହିଁ ଶବ୍ଦ ସଂଖ୍ୟା ଆପଣାଛାଏଁ ଲେଖି ହୋଇଯାଉଥିବ। ଲେଖା ଭିତରୁ କୌଣସି ଶବ୍ଦ ଖୋଜିବାକୁ ହେଲେ କେତୋଟି ବୋତାମ ଟିପିଲେ ହେଲା। ଲେଖାଟିକୁ ପ୍ରକାଶ କରିବାକୁ ଯାଉଥିବା ଖବରକାଗଜ ବା ପତ୍ରିକା କାର୍ଯ୍ୟାଳୟର କାମ ମଧ୍ୟ ସହଜ ହୋଇଗଲା, କାରଣ ଲେଖାଟିକୁ ପୁଣି ଥରେ ଟାଇପ୍ କରିବା ଦରକାର ନାହିଁ। ସବୁଠୁ ବଡ଼କଥା ହେଲା ଆପଣଙ୍କ ପ୍ରିୟ ଲେଖାଟି ଡାକରେ ବା ପତ୍ରିକା ଅଫିସରେ ହଜିଯିବାର ସମ୍ଭାବନା ନାହିଁ। ଏଇ ନୂଆ କୌଶଳଟି ଅକ୍ତିଆର କରି ମୋର ନିଜର, ସମ୍ପାଦକଙ୍କର ଓ ଡାକବାଲାର କାମକୁ ସହଜ କରିବା ସଙ୍ଗେ ସଙ୍ଗେ କାଗଜ ଖର୍ଚ୍ଚ ବଞ୍ଚାଇ ପରିବେଶର ଚାପ କମାଇ ପାରିଥିବାରୁ ମୁଁ ସେଦିନ ଆନନ୍ଦ ଅନୁଭବ କରୁଥିଲି। ହଠାତ୍ ଅନୁଭବ କଲି କେଉଁଠି ଯେମିତି କିଛି ଖାପଛଡ଼ା ଭାବ ମୋ' ମନକୁ କବଳିତ କରିବାକୁ ଚେଷ୍ଟା କରୁଛି, ମୋତେ ନିରୋଳା ସୁଖ ଉପଭୋଗ

କରିବାକୁ ଯେମିତି ରୋକୁଛି। ସେଦିଗକୁ ଟିକେ ନିରେଖି ଦେଖିବାରୁ ଜାଣିଲି ମୋର ବିଷାଦ ଯେମିତି ମୋତେ କହୁଛି, 'ଓଡ଼ିଆ ଭାଷା ସହ ତୋର ସମ୍ପର୍କର ଆଉ ଏକ ଡ଼ୋରି ଆଜି ଛିଣ୍ଡିଲା, ସେଥିରେ ଏତେ ଖୁସି କ'ଣ ପାଇଁ ?'

ମନ ମୋର ଟାଣି ହୋଇଗଲା ଓଡ଼ିଆ ଅକ୍ଷର ସହ ମୋର ସମ୍ପର୍କର ସ୍ମୃତି ବିଜଡ଼ିତ ବାଲ୍ୟକାଳକୁ। ପ୍ରଥମ କରି ବର୍ଣ୍ଣମାଳା ଶିଖିବା ଓ ଅଭ୍ୟାସ କରିବାବେଳର ରୋମାଞ୍ଚ ଓ ପୁଲକ ପୁନର୍ଜୀବିତ ହୋଇ ଉଠିଲା ଆପଣାଛାଏଁ। 'ଅ', 'ଆ' ଶିଖିବାପାଇଁ ହାତ ସଲଖିବାକୁ ସ୍ଲେଟ୍‌ରେ ବାରମ୍ବାର ମଡ଼ାଇ ଲେଖିବା ଠାରୁ ଆରମ୍ଭ ହୋଇଥିଲା ସେହି ସମ୍ପର୍କ। ସେହି ପିଲାଦିନେ କୌଣସି ଅକ୍ଷର ଲେଖାକୁ କବଳିତ କରି ପାରିଲେ ମନରେ ଯେଉଁ ଆନନ୍ଦ ଅନୁଭବ ହେଉଥିଲା ତାହା ହୁଏତ ଆଜିର କମ୍ପ୍ୟୁଟରରେ ଓଡ଼ିଆ ଟାଇପ୍ କରି ପାରିବାର ଆନନ୍ଦଠୁଁ ଥିଲା ଢେର ଗୁଣ ଅଧିକ। ପୁଣି ମୋ କାନରେ ବାଜିଲା ମୋତେ ଅକ୍ଷର ଶିଖାଇଲାବେଳେ ମୋ ବାପା ବ୍ୟବହାର କରିଥିବା କେତେଗୁଡ଼ିଏ ଶବ୍ଦ। 'ପ'ର 'ପେଟ କଟାହେଲେ' 'ଷ', ପୁଣି 'ଚ' ତଳେ ଗାଇ ଛନ୍ଦା ଦେଲେ 'ଛ' ଇତ୍ୟାଦି। ବ୍ୟଞ୍ଜନ ବର୍ଣ୍ଣ ଶିଖିବା ବେଳେ 'କଚଟତପ' ସୂତ୍ରର ପ୍ରୟୋଗ କରିବାର ଉପଦେଶ ବାପାଙ୍କଠାରୁ ପାଇଥିଲି। ଆଉ ସବାଶେଷରେ ଅନୁସ୍ୱାର, ବିସର୍ଗ, ଚନ୍ଦ୍ରବିନ୍ଦୁ ଲେଖି ସାରିଲାବେଳେ ମୁଁ ଅନୁଭବ କରୁଥିଲି ମୁଁ ଯେମିତି ଗଡ଼ ଜିତିଯାଇଛି, ମୋ' ପାଇଁ ଶିଖିବାର ଆଉ କିଛି ବାକି ନାହିଁ।

ସ୍ମୃତିର ଦୃଶ୍ୟପଟକୁ ପୁଣି ଟାଣି ହୋଇ ଆସିଗଲେ ମଧୁବାବୁଙ୍କର 'ବର୍ଣ୍ଣବୋଧ' ଆଉ ସ୍କୁଲ୍‌ରେ ବ୍ୟବହୃତ ହେଉଥିବା ରଙ୍ଗୀନ 'ମୋ ଛବି ବହି'। ମନ ଗାଇବାକୁ ଲାଗିଲା ଅକ୍ଷର ଶିଖା ସମ୍ବନ୍ଧୀୟ ଏଇ ଦୁଇ ବହିର ଢଗ ଓ କବିତା। ପୁଣି ମନେ ପଡ଼ିଗଲା ଅକ୍ଷର ସୁନ୍ଦର କରିବା ପାଇଁ ହସ୍ତାକ୍ଷର ଲିଖନର ଅଭ୍ୟାସ। ଏଥିପାଇଁ ସ୍କୁଲ୍‌ରେ ସ୍ୱତନ୍ତ୍ର ପିରିୟଡ଼ ରଖାଯାଇଥିଲା। ଗତ ଥର ଅପେକ୍ଷା ଭଲ ଅକ୍ଷର ଲେଖି ଶିକ୍ଷକଙ୍କ ପାଖରୁ ଅଧିକ ନମ୍ବର ପାଇବା ପାଇଁ ଆମମାନଙ୍କ ଭିତରେ ହେଉଥିଲା ତୀବ୍ର ପ୍ରତିଯୋଗିତା। ସମସ୍ତ ପ୍ରଚେଷ୍ଟା ପରେ ମୋର ହାତଲେଖା ଏକ ଗ୍ରହଣୀୟ ସ୍ତରରେ ପହଞ୍ଚି ଯାଇଥିଲା। ହାତରେ ପେନ୍ ଧରି କାଗଜ ଉପରେ ମୁଁ ଆଜିଯାଏଁ ଲେଖି ଚାଲିଥିଲି ସେହି ଅକ୍ଷରକୁ ପୃଷ୍ଠା ପରେ ପୃଷ୍ଠା। ଆଜିର କମ୍ପ୍ୟୁଟରରେ ଲେଖିବାର ପ୍ରକ୍ରିୟା ଯେ ଓଡ଼ିଆକୁ ହାତରେ ଲେଖିବାର ସୁଦୀର୍ଘ ଅଭିଜ୍ଞତାର ଶେଷ ପର୍ଯ୍ୟାୟର ଅୟମାରମ୍ଭ ସେ ବିଷୟରେ ସନ୍ଦେହ ରହିଲା ନାହିଁ। ସହଜ ବିକଳ୍ପଟିଏ ଉପଲବ୍ଧ ଥିଲେ ସେ ଆଡ଼କୁ ଟାଣି ହୋଇଯିବା ମଣିଷର ସହଜାତ ପ୍ରକୃତି। ମୁଁ ବା ସେଥିରୁ ବାଦ୍ ପଡ଼ନ୍ତି କିପରି ?



# ଓଡ଼ିଆରେ ଅଫିସ କାର୍ଯ୍ୟ

## ସୁଧୀର ଚନ୍ଦ୍ର ମହାନ୍ତି

ଅତ୍ୟନ୍ତ ସୁଖର କଥା ଏବେ ଓଡ଼ିଶା ସରକାର ଓଡ଼ିଆ ଭାଷା ମାଧ୍ୟମରେ ଅଫିସ୍ କାର୍ଯ୍ୟ କରିବାକୁ ସ୍ଥିର କରିଛନ୍ତି ଓ ଏଥିପାଇଁ ଦୃଢ଼ପରିକର ଅଛନ୍ତି। ଯାହାହେଉ ଏବେ ଗାଁରେ ବର୍ଣ୍ଣବୋଧର ଭାଲୁ ପର୍ଯ୍ୟନ୍ତ ପଢ଼ିଥିବା ଲୋକଟି ଆଉ ସରକାରୀ ପରୱାନା ଧରି ସ୍କୁଲ ମାଷ୍ଟରଙ୍କ ପାଖକୁ ପଢ଼ି ବୁଝିବା ପାଇଁ ବା ଇଂରାଜୀ ଶିକ୍ଷିତ ଲୋକଙ୍କୁ ତା'ର ଉତ୍ତର ଲେଖିଦେବା ପାଇଁ ଅନୁରୋଧ କରିବ ନାହିଁ। ନିଜେ ପଢ଼ି ବୁଝିପାରିବ ଯେ ଚିଠିଟି ତା' ପାଖକୁ ଆସିଛି ଏବଂ ସେ ନିଜ ହାତରେ ସରକାର ବାହାଦୁରଙ୍କ ହସ୍ତାକ୍ଷର ଦେଖି ପାରୁଛି ଓ ବୁଝିପାରୁଛି। ଏବେ ସେ ଗ୍ରାମସାଟ୍ ବା ଇ-ଗଭର୍ଣ୍ଣେସ୍ ଜରିଆରେ ସରକାର ସହ ନିଜେ ବାର୍ତ୍ତାଳାପ କରିପାରିବ।

ଲୋକଙ୍କ ମଧ୍ୟରେ ଗୋଟିଏ ସନ୍ଦେହ ଯେ ସରକାରୀ ଅମଲାମାନେ କ'ଣ ଓଡ଼ିଆରେ ଚିଠି ଲେଖିପାରିବେ ? ମାତ୍ର ଏଭଳି ଭ୍ରାନ୍ତ ଧାରଣା ସେମାନଙ୍କ ମଧ୍ୟରେ ରହିବା ଉଚିତ୍ ନୁହେଁ। ପିଲା ଦିନରୁ ଅ,ଆ,କ,ଖ ମୁଣ୍ଡଳା ବୁଲାଇଥିବା ଆମ ଶିକ୍ଷିତ ବର୍ଗ ଏତେ ଅକର୍ମା ନୁହନ୍ତି ଯେ ତାଙ୍କ ମନର ଭାବନାକୁ ଓଡ଼ିଆରେ ଲିପିବଦ୍ଧ କରିପାରିବେ ନାହିଁ; କିନ୍ତୁ ଗୋଟିଏ କଥା ସେମାନେ ଯଦି ଇଂରାଜୀରେ ଭାବିବେ ତେବେ କେତେଟା ଝୁଣ୍ଟିପଡ଼ିବାର ସମ୍ଭାବନା ରହିଛି। ଏଣୁ ପ୍ରଥମ କଥା ଯେଉଁ ଭାଷାରେ ଲେଖିବେ ସେଇ ଭାଷାରେ ଭାବନ୍ତୁ। ଭାବନାକୁ ଅକ୍ଷରରେ ରୂପ ଦିଅନ୍ତୁ। ତା'ଛଡ଼ା ଆମ ଚିଠି ଭିତରେ ଅନେକ ଚିଠି ଏକ ଗଡ୍ଡାଳିକା ପ୍ରବାହରେ ଚାଲେ। ଥରେ ଧାରାରେ ପଡ଼ିଗଲେ ଆଉ ଅସୁବିଧା ରହିବ ନାହିଁ।

ମାତ୍ର ପ୍ରଶ୍ନ ହେଉଛି ସେମାନେ ଚିଠିକୁ କେଉଁଥିରେ ଟାଇପ୍ କରିବେ। ଆଉ ମାନ୍ଧତା ଅମଳର ରେମିଙ୍ଗ୍‌ଟନ୍ କଥା ଭୁଲିଯାଆନ୍ତୁ। ଏବେ ଆଇ-ଥ୍ରି ବା ଆଇ ଫାଇ କଥା ଭାବନ୍ତୁ। ମୁଁ କମ୍ପ୍ୟୁଟର କଥା କହୁଛି। ପୁଣି ଅଫିସ୍ କାମ କଲାବେଳେ ଶ୍ରୀଲିପି ବା ଆକୃତିକୁ କେବେ ମନେ ପକାଇବା ନାହିଁ। କାରଣ ସେମାନେ ହେଉଛନ୍ତି ପ୍ରକାଶନ ସଫ୍ଟୱେର। ବହିପତ୍ର ଖବରକାଗଜ ପାଇଁ ଏହା ଆବଶ୍ୟକ; ମାତ୍ର ଅଫିସ୍ ପାଇଁ ଏହା

ମୋଟେ ଉପଯୁକ୍ତ ନୁହେଁ। କାରଣ ଆପଣ ଚିଠିଟିଏ ସିନା ଟାଇପ୍ କରିଦେବେ, ଏଥିରେ ହିସାବପତ୍ର (ଦରମା, ଅନ୍ୟାନ୍ୟ ଦେୟ) କରିବା ସମ୍ଭବ ନୁହେଁ। କାରଣ ଏହା ହିସାବପତ୍ର ପାଇଁ ଉପଯୁକ୍ତ ନୁହେଁ। ପୁଣି ଏହା ଏକ୍ସେଲ୍ ଏକ୍ସେସ୍ ପ୍ରଭୃତିରେ ଠିକ୍ ଭାବେ କାର୍ଯ୍ୟ କରିବ ନାହିଁ।

ଏଥିପାଇଁ ଆପଣଙ୍କୁ ମାଇକ୍ରୋସଫ୍ଟ ଉପରେ ନିର୍ଭର କରିବାକୁ ପଡ଼ିବ। କାରଣ 'ମାଇକ୍ରୋସଫ୍ଟ ଅଫିସ୍-୭' ଅଫିସର୍ ସବୁ କାର୍ଯ୍ୟ କରିବା ପାଇଁ ସକ୍ଷମ।ଏଥିରେ ଚିଠି ଟାଇପ୍ କରିହେବ, ଗୋଟିଏ ଚିଠିକୁ ଏକ ସମୟରେ ଅନେକ ଗ୍ରାହକଙ୍କ ପାଖକୁ (Mail Marge / Message) ପଠାଇ ହେବ। ନାନା ପ୍ରକାର ହିସାବ ଓ ପରିସଂଖ୍ୟାନ କାର୍ଯ୍ୟ, ତଥ୍ୟଭିତ୍ତିକ ତାଲିକା ଓ ଆନୁଷଙ୍ଗିକ ତଥ୍ୟ ପ୍ରସ୍ତୁତ କରି ତାକୁ ବ୍ୟବହାର କରିପାରିବେ। ଏଥିରେ ଟୁଇଟ୍ କରିହେବ, ଇ-ମେଲ୍ ଓ ଏସ୍ଏମ୍ଏସ୍ ପଠାଇହେବ। ନାନାପ୍ରକାର ରୈଖିକ ଚିତ୍ର ପ୍ରସ୍ତୁତ କରିହେବ। କେବଳ ଏତିକି ନୁହେଁ, ଏହା ବିଶ୍ୱଜନୀନ ବିପଣନରେ ସହାୟକ ହେବ। ଦୂର ବିଦେଶରେ ଥିବା ବ୍ୟକ୍ତି ସହ ତଥ୍ୟ ଆଦାନପ୍ରଦାନ କରିହେବ ଯାହା ଆକୃତି ବା ଶ୍ରୀଲିପିରେ କେବେ ସମ୍ଭବ ନୁହେଁ। ଏତଦ୍ ବ୍ୟତୀତ-

୧) ଆକୃତି ଓ ଶ୍ରୀଲିପି ପରସ୍ପର ପ୍ରତି ଅସ୍ପୃଶ୍ୟ।

୨) ଜଣକ ପାଖରେ ଆକୃତି ସଫ୍ଟୱେର ଥିଲେ ଶ୍ରୀଲିପିରେ ପ୍ରସାରିତ ତଥ୍ୟ ତା' ପାଇଁ ପଠନକ୍ଷମ ନୁହେଁ।

୩) ଏହି ସଫ୍ଟୱେରକୁ ପଇସା ଦେଇ କିଣିବାକୁ ହୁଏ।

୪) ଏହି ସଫ୍ଟୱେରରେ ପିଡିଏଫ୍ (PDF) ଫାଇଲ୍ ପ୍ରସ୍ତୁତ କଲେ କେତେକ କ୍ଷେତ୍ରରେ ଅପଠନୀୟ ହେବ।

୫) ଏହି ସଫ୍ଟୱେର ମାନକ ନୁହେଁ।

୬) ଏହି ସଫ୍ଟୱେରର ବିଭିନ୍ନ ସଂସ୍କରଣ ମଧ୍ୟରେ ଆତ୍ୟନ୍ତିକ ଭେଦ ରହିଛି।

ଏସବୁ ଦୃଷ୍ଟିରୁ କେବଳ ୟୁନିକୋଡ୍ ଅକ୍ଷରମାଳା ସର୍ବଜନଗ୍ରାହ୍ୟ ଏବଂ ସର୍ବଜନାଦୃତ। ଆପଣ ଘରେ ବସି ଲକ୍ଷ୍ୟ କରୁଥିବେ ଯେ ଆଇଲିପିର ଅକ୍ଷରମାଳାରେ ପ୍ରସ୍ତୁତ ଆପଣଙ୍କ ଜମିପଟ୍ଟାରେ ନାମ କେତେ ବିକୃତ ଓ ଅପଠନୀୟ। ୟୁନିକୋଡ୍ ଅକ୍ଷରମାଳା ପ୍ରଥମେ ମାଇକ୍ରୋସଫ୍ଟର ଭିଷ୍ଟା ସଂସ୍କରଣରେ ଚଳିତ ଶତାବ୍ଦୀରେ ଉପଲବ୍ଧ ହେଉଥିଲା। ମାତ୍ର ଭିଷ୍ଟା ସଂସ୍କରଣ ସର୍ବଜନାଦୃତ ହେଲାନାହିଁ। ଫଳରେ ମାଇକ୍ରୋସଫ୍ଟ ଉଇଣ୍ଡୋସ୍-୨୦୦୭ (Microsoft Windows-2007) ପ୍ରକାଶ କଲେ। ଏଥିରେ

ମଧ୍ୟ ୟୁନିକୋଡ଼ ଅକ୍ଷରମାଳା ଉପଲବ୍ଧ। ଏଥିରେ ବିଶ୍ୱର ଅନେକ ମାନକ ଭାଷାର ଅକ୍ଷରମାଳା ଗଚ୍ଛିତ ହୋଇରହିଛି। କେବଳ ଆପଣ କାର୍ଯ୍ୟକ୍ଷମ କରୁଥିବା ଭାଷା ଏଥିରେ ବ୍ୟବହାର କରିପାରିବେ। ଏଥିପାଇଁ ଆପଣଙ୍କୁ ନିମ୍ନ କେତୋଟି କାର୍ଯ୍ୟ ପର୍ଯ୍ୟାୟକ୍ରମେ କରିବାକୁ ହେବ-

୧) ନିଜେ ବ୍ୟବହାର କରୁଥିବା କମ୍ପ୍ୟୁଟରରେ ଉଇଣ୍ଡୋସ୍-୨୦୦୭ ଏବଂ ମାଇକ୍ରୋସଫ୍ଟ ଅଫିସ୍-୨୦୦୭ ପ୍ରବେଶ କରାନ୍ତୁ।

୨) ସଚରାଚର ସବୁ କମ୍ପ୍ୟୁଟରରେ ଏହାର ଭାଷା ଆମେରିକୀୟ ଇଂରାଜୀ ହୋଇଥାଏ।

୩) ଏହାକୁ ବହୁଭାଷୀ କରିବା ପାଇଁ ନିମ୍ନ କେତୋଟି ପଦ୍ଧତି ଗ୍ରହଣ କରିବାକୁ ହେବ-

କ) ପ୍ରଥମେ ଷ୍ଟାର୍ଟ ବୋତାମରେ କ୍ଲିକ୍ କରନ୍ତୁ।

ଖ) ଏଥିରେ ଆସୁଥିବା ମେନୁ ତାଲିକାର ଡାହାଣ କଡ଼ରେ କଣ୍ଟ୍ରୋଲ ପ୍ୟାନେଲ୍ ଅଛି।

ଗ) ଏଥିରେ କ୍ଲିକ୍ କରନ୍ତୁ। ଆପଣଙ୍କ ଆଗରେ କମ୍ପ୍ୟୁଟରରେ ଥିବା ସମସ୍ତ ମେନୁର ଏକ ବାକ୍ସ ଦେଖାଯିବ।

ଘ) ଏଥିରେ ଥିବା ପୃଥିବୀ ଚିତ୍ର ଓ ଘଣ୍ଟାଥିବା (Clock, language and region) କ୍ଲକ୍, ଲାଙ୍ଗୁଏଜ୍ ଆଣ୍ଡ୍ ରିଜିଅନ୍ ମେନୁରେ କ୍ଲିକ୍ କରନ୍ତୁ। ଆସିଥିବା ତାଲିକାର ତଳେ ଥିବା ଲାଙ୍ଗୁଏଜ୍ ଆଣ୍ଡ୍ ରିଜିଅନରେ କ୍ଲିକ୍ କରନ୍ତୁ।

ଙ) ଆପଣଙ୍କ ସମ୍ମୁଖରେ ଆସିଥିବା ଏକ ବାକ୍ସର ଦ୍ୱିତୀୟ ମେନୁ ରିଜିଅନ୍‌ରେ କ୍ଲିକ୍ କରି ତଳେଥିବା ତଳମୁହାଁ ତୀରରୁ ଇଣ୍ଡିଆ ବାଛନ୍ତୁ।

ଚ) ଏହାପରେ ୩ୟ ମେନୁ କି-ବୋର୍ଡ ଏବଂ ଭାଷା (Keyboard and Language)କୁ ବାଛନ୍ତୁ। ଏଥିରେ ମଧ୍ୟ ଏକ ତଳମୁହାଁ ତୀରରୁ ବିଶ୍ୱର ଅନେକ ମାନକ ଭାଷାର ତାଲିକା ପାଇବେ। ସେଥିରୁ ଓଡ଼ିଆ ଭାଷା ବାଛନ୍ତୁ ଏବଂ ଚେଞ୍ଜ୍ କି-ବୋର୍ଡ଼ ବାଛନ୍ତୁ। ଏଥିରେ ଥିବା + ଚିହ୍ନରେ କ୍ଲିକ୍ କରି ଓଡ଼ିଆ ବୋତାମ ପଟ୍ଟି ଓଡ଼ିଆ କି-ବୋର୍ଡ (Odia Keyboad)କୁ ସଂଯୋଗ କରନ୍ତୁ। ବର୍ତ୍ତମାନ ଏକ ନୂଆ ଫାଇଲ ଖୋଲି ଲକ୍ଷ୍ୟ କରିବେ ତଳେ କାର୍ଯ୍ୟ ଦଣ୍ଡିକାର ଡାହାଣପଟେ EN ଲେଖାଥିବ। ଏହା ଅର୍ଥ ଆପଣ ବର୍ତ୍ତମାନ କେବଳ ଇଂରାଜୀରେ କାର୍ଯ୍ୟ କରିପାରିବେ। ଓଡ଼ିଆରେ କାର୍ଯ୍ୟ କରିବା ପାଇଁ ପ୍ରଥମେ ବୋତାମ ପଟ୍ଟିର ବାଁ

ପଟେ ତଳକୁ ଥିବା ସିଫ୍ଟ + ଅଲଟ୍ (Shift+Alt)ବୋତାମ ଦୁଇଟିକୁ ଏକ ସଙ୍ଗେ ଚାପନ୍ତୁ। ତଳେ EN ଲେଖାଥିବା ସ୍ଥାନରେ OR ହୋଇଯାଇଛି। ଏହାର ଅର୍ଥ କମ୍ପ୍ୟୁଟର ଓଡ଼ିଆରେ କାର୍ଯ୍ୟ କରିବାକୁ ସକ୍ଷମ। ଏବେ ଆପଣ ଓଡ଼ିଆ ଅକ୍ଷରରେ ଟାଇପ୍ କରିବାକୁ ସମର୍ଥ ହେବେ। ଆପଣଙ୍କ ବୋତାମ ପଟ୍ଟିରେ ଅକ୍ଷର ସଜ୍ଜା କି-ବୋର୍ଡ ଲେଆଉଟ (Keyboard Layout) ଦେଖିବା ପାଇଁ ନିମ୍ନ କେତୋଟି କାର୍ଯ୍ୟ କରନ୍ତୁ।

All programmes →Accssosories→Ease of access→On-screen Keyboard.

ମାତ୍ର ଲକ୍ଷ୍ୟ କରିବେ ଲୋକେ ଯେଉଁ ବୋତାମ ସାରଣୀରେ ଟାଇପ୍ କରୁଛନ୍ତି ଏହା ତା'ଠାରୁ ଭିନ୍ନ। ଏଥିରେ ବୋତାମ ପଟ୍ଟିର ବାଁ ପଟ ବୋତାମରେ ସ୍ୱରବର୍ଣ୍ଣ ଏବଂ ଡାହାଣପଟରେ ବ୍ୟଞ୍ଜନବର୍ଣ୍ଣ ଆସେ। ନବାଗତମାନେ ଏହି ବୋତାମ ପଟ୍ଟିରେ କାମ ଆରମ୍ଭ କଲେ ଅଭ୍ୟାସରେ ପଡ଼ିଯିବେ। ଏହି ବୋତାମ ସାରଣୀରେ କେତୋଟି ତ୍ରୁଟି ରହିଛି ଯଥା-

୧) ଏଥିରେ ପୂର୍ଣ୍ଣଚ୍ଛେଦ ନାହିଁ।

୨) ଏଥିରେ ଅଙ୍କଗୁଡ଼ିକ ଇଂରାଜୀରେ ରହିଛି।

୩) ଏଥିରେ ୰ ଚିହ୍ନ ନାହିଁ।

ମାତ୍ର ଯେଉଁମାନେ ପୂର୍ବରୁ ଶ୍ରୀଲିପି ବୋତାମ ସାରଣୀରେ କାମ କରିଛନ୍ତି ତାଙ୍କୁ ଅସୁବିଧା ହେବ। ୟୁନିକୋଡ଼ର ଶ୍ରୀଲିପି ସାରଣୀ କାହାକାହା ପାଖରେ ମିଳୁଛି। ଅପ୍ରାନ୍ତ ନାମକ କମ୍ପାନୀ ଏପରି ବୋତାମ ପଟ୍ଟି ତିଆରି କରିଛି। ତେବେ ଜଣକର ଯଦି କମ୍ପ୍ୟୁଟର ହାର୍ଡୱେର ଏବଂ ସଫ୍ଟୱେର ଉପରେ କିଛି ଜ୍ଞାନ ଅଛି ସେ ନିଜେ ଏଭଳି ବୋତାମ ସାରଣୀ ପ୍ରସ୍ତୁତ କରି ବ୍ୟବହାର କରିପାରିବ ଏବଂ ସାଙ୍ଗମାନଙ୍କୁ ଦେଇପାରିବ। ଏହି ବୋତାମ ସାରଣୀ ପ୍ରସ୍ତୁତ ପ୍ରଣାଳୀ ମୋର ପୁସ୍ତକ 'ଓଡ଼ିଆ ଭାଷାର କମ୍ପ୍ୟୁଟରୀକରଣ' (ଏ.କେ.ମିଶ୍ର, କଟକ)ର ଆଶ୍ରୟ ନେଇପାରିବେ। ଓଡ଼ିଆରେ ଅନ୍ୟ କାର୍ଯ୍ୟ କରିବା ପାଇଁ ଏହି ପୁସ୍ତକରେ ଚିତ୍ର ସହ ବିସ୍ତୃତ ଆଲୋଚନା କରାଯାଇଛି। ଶ୍ରୀଲିପି ସାରଣୀଠାରୁ ଏହାର ନିମ୍ନ କେତୋଟି ଭିନ୍ନତା ରହିଛି-

୧) ଏଥିରେ 'ଆ' ପାଇଁ ଏକ ସ୍ୱତନ୍ତ୍ର ବୋତାମ ରହିଛି 'ଅ'ରେ ଆକାର ଦେଲେ 'ଆ' ହେବ ନାହିଁ। କାରଣ 'ଆ' ଏକ ସ୍ୱରବର୍ଣ୍ଣ ସେ କିପରି ଆ କାର ନେବ?

୨) ଏଥିରେ 'ଆ' କାରରୁ 'ଔ'କାର ପର୍ଯ୍ୟନ୍ତ ମାତ୍ରା ବ୍ୟଞ୍ଜନ ବର୍ଣ୍ଣ ପରେ ଦିଆଯାଏ। ଯେପରି 'କ' ଲେଖି 'ଏ' କାର ଦେବାକୁ ପଡ଼ିବ। ପ୍ରଥମେ 'ଏ'କାର ଲେଖିଲେ ଏହା ହେବନାହିଁ।

୩) ଏଥିରେ ପ୍ରଥମେ ରେଫ୍ ଲେଖି ପରେ ବର୍ଣ୍ଣ ଦେବାକୁ ପଡ଼େ।

୪) ଏଥିରେ 'ୟ'ଫଳା ପାଇଁ ପ୍ରଥମେ 'ତି' ବର୍ଣ୍ଣ ଚାପି ପରେ 'ୟ'ଫଳା ଦେବାକୁ ହୁଏ।

୫) ଏଥିରେ ଖ,ଥ,ଧ ପ୍ରଭୃତି ଅକ୍ଷରରେ 'ଇ'କାର ଦେଲେ ତାହା ଆମ ଲେଖାଭଳି ତଳକୁ ଚାଲିଆସେ।

୬) ଏକ୍ସେଲରେ ନାମ ତାଲିକାକୁ 'ଅ' ଠାରୁ 'ହ' ପର୍ଯ୍ୟନ୍ତ ସଜାଇ ପାରିବେ।

୭) ଏଥିରେ ଓଡ଼ିଆ ଅକ୍ଷରରେ ମେଲ୍ ମର୍ଜ କରିପାରନ୍ତି।

୮) ଚିତ୍ର ତଳେ ଓଡ଼ିଆରେ ନାମ ଲେଖିପାରିବେ।

On screen keyboard




Microsoft Office 2007






# ଇଣ୍ଟରନେଟ୍‌ରେ ଓଡ଼ିଆ ଲିପି ଓ ଭାଷା

## ପ୍ରଦୀପ ମହାପାତ୍ର

ଏକବିଂଶ ଶତାବ୍ଦୀରେ ଯୋଗାଯୋଗ କ୍ଷେତ୍ରରେ କାରିଗରୀ କୌଶଳର ଯୁଗାନ୍ତକାରୀ ପ୍ରୟୋଗ ଏବଂ ଅର୍ଥନୀତି କ୍ଷେତ୍ରରେ ଜଗତ୍‌କରଣର ଧାରା ପୃଥିବୀର ଛୋଟ-ବଡ଼ ସମସ୍ତ ଭାଷା ପାଇଁ ନୂତନ ସମ୍ଭାବନା ସୃଷ୍ଟି କରିଛି । ଏକ ପକ୍ଷରେ ସମକାଳୀନ ଯୋଗାଯୋଗ ମାଧ୍ୟମ ଭୌଗୋଳିକ ତାରତମ୍ୟ ଭେଦକରି ବିଶ୍ୱବାସୀଙ୍କ ମଧ୍ୟରେ ନିରନ୍ତର ସମ୍ପର୍କ ସ୍ଥାପନ ପାଇଁ ସୁଯୋଗ ସୃଷ୍ଟି କରିପାରିଛି। ଅପରପକ୍ଷରେ ଯେଉଁ ଭାଷାଗୁଡ଼ିକ ଏହି ପ୍ରକ୍ରିୟାରେ ସାମିଲ ହୋଇପାରୁନାହାନ୍ତି, ସମୟକ୍ରମେ ସେଗୁଡ଼ିକ ବିଲୟର ସତର୍କ ଘଣ୍ଟି ଶୁଣୁଥିବା ଚର୍ଚ୍ଚାରେ ।

ଉଦାହରଣ ସ୍ୱରୂପ ବିଶ୍ୱର କୋଣ-ଅନୁକୋଣରେ କ୍ରମଶଃ ଇଣ୍ଟରନେଟ୍ ସୁବିଧା ମିଳୁଥିବା ବେଳେ, ସେଥିରେ ସହଜରେ ଓଡ଼ିଆ ଲିପି ଓ ଭାଷା ବ୍ୟବହୃତ ହେଉ ନଥିବା ହେତୁ ସମକାଳୀନ ଭାଷା ପ୍ରସାର ଜନିତ ଦୌଡ଼ରେ ଆମେ ପଛରେ ପଡ଼ିଯାଉଛେ। ଇଣ୍ଟରନେଟ୍‌ରେ ଓଡ଼ିଆ ଲିପି ଓ ଭାଷା ବ୍ୟବହାର ଏଯାଏ ସୁଲଭ ହୋଇପାରିନାହିଁ। ଭବିଷ୍ୟତରେ ଓଡ଼ିଆ ଲିପି ନିଶ୍ଚିତ ଭାବେ ଇଣ୍ଟରନେଟ୍ ମଞ୍ଚରେ ସାମିଲ ହେବ। ଆମ ଦେଶରେ ଗତ ଦଶ ବର୍ଷ ହେଲା ଇଣ୍ଟରନେଟ୍‌ର ବହୁଳ ବ୍ୟବହାର ପରିପ୍ରେକ୍ଷୀରେ, ଓଡ଼ିଆମାନେ ଏଥିରେ ନିଜ ମାତୃଭାଷା ବ୍ୟବହାରରୁ ବିରତ ରହିବା ଦ୍ୱାରା ଓଡ଼ିଆ ଭାଷା ଯେତିକି ପରିମାଣରେ କ୍ଷତି ସହିଲାଣି, ପଡ଼ୋଶୀ ଭାଷାଗୁଡ଼ିକ ସହ ସମକକ୍ଷ ହେବା ପାଇଁ ଦୀର୍ଘ ସମୟ ଲାଗିବ।

ଓଡ଼ିଆ ଭାଷାଭାଷୀ ଲୋକସଂଖ୍ୟା କମ୍, ରାଜ୍ୟର ଅର୍ଥନୀତିକ ସ୍ଥିତି ଦୁର୍ବଳ ତଥା ଶିକ୍ଷାର ପ୍ରସାର ସୀମିତ ଥିବା କାରଣରୁ ଓଡ଼ିଆ ଭାଷାର ଆଦର ପ୍ରତିବେଶୀ ଭାଷାଗୁଡ଼ିକ ତୁଳନାରେ କମ୍। ଇଣ୍ଟରନେଟ୍ ମଞ୍ଚରେ ଅବହେଳା ଓଡ଼ିଆ ଭାଷାର ବିକାଶରେ ବାଧକ ସାଜିଛି। ସାମାଜିକ ଓ ପ୍ରଶାସନିକ ସ୍ତରରେ ଓଡ଼ିଆ ଲିପିକୁ ପୂର୍ଣ୍ଣ ରୂପେ ଇଣ୍ଟରନେଟ୍ ବ୍ୟବହାରଯୋଗ୍ୟ କରାଇବା ପାଇଁ ପ୍ରାଥମିକତା ଦେବା ଲାଗି ଯେଉଁ ଉଦ୍ୟମ କରାଯିବା

କଥା, ତାହା ଏ ଯାଏ ସମ୍ଭବପର ହୋଇପାରିନାହିଁ। ଏଥି ଲାଗି ରାଜ୍ୟର ସାଂସ୍କୃତିକ ଓ ରାଜନୀତିକ ନେତୃତ୍ୱକୁ ଦାୟୀ କରାଯାଇପାରେ।

ବର୍ତ୍ତମାନ ବିଶ୍ୱବ୍ୟାପୀ ଇଣ୍ଟରନେଟ୍ ପରଦା କ୍ରମଶଃ ସଂବାଦ, ଶିକ୍ଷା, ସ୍ୱାସ୍ଥ୍ୟ, ଅର୍ଥନୀତି ଓ ମନୋରଞ୍ଜନର ଏକକ ମଞ୍ଚ ରୂପେ ଗଢ଼ି ଉଠୁଥିବା ଅବସରରେ ସେଥିରେ ଓଡ଼ିଆ ଲିପିର ଉପସ୍ଥିତି ଅନିବାର୍ଯ୍ୟ। ଆନ୍ତର୍ଜାତିକ ଇଣ୍ଟରନେଟ୍ ସେବା ନିୟନ୍ତ୍ରଣକାରୀ ସଂସ୍ଥାଗୁଡ଼ିକ ଏ ଯାଏ ଓଡ଼ିଆ ଲିପିକୁ ସେମାନଙ୍କ ସେବା ପରିଧିରେ ସାମିଲ ନ କରିପାରିଥିବା ବେଳେ ଯଦି ଯୋଜନାବଦ୍ଧ ଭାବେ ସେମାନଙ୍କୁ ଏଥିଲାଗି ପ୍ରଭାବିତ କରିବା ପାଇଁ ଉଦ୍ୟମ ହୁଅନ୍ତା, ତେବେ ସମସ୍ୟାର ସମାଧାନ ହୋଇପାରନ୍ତା।

ଇଣ୍ଟରନେଟ୍‌ରେ ଓଡ଼ିଆ ଉପଭୋକ୍ତାଙ୍କ ସଂଖ୍ୟା କମ୍ କାରଣରୁ ଓଡ଼ିଆ ଲିପି ବ୍ୟବହାର ବ୍ୟବସାୟିକ ଦୃଷ୍ଟିକୋଣରୁ ପଛୁଆ। ସରକାରୀ ସ୍ତରରେ ଦ୍ୱିପାକ୍ଷିକ ବୁଝାମଣା ଓ ଚାପ ପ୍ରୟୋଗ ଦ୍ୱାରା ହିଁ ଓଡ଼ିଆ ଲିପିକୁ ଇଣ୍ଟରନେଟ୍ ମଞ୍ଚରେ ବ୍ୟବହାରଯୋଗ୍ୟ କରାଯାଇପାରିବ।

ଇଣ୍ଟରନେଟ୍‌ରେ ଓଡ଼ିଆ ଭାଷାର ସମ୍ଭାବ୍ୟ ପ୍ରସାର ସମ୍ପର୍କରେ କେତେକ ସ୍ୱତଃପ୍ରବୃତ୍ତ ଅନୁକୂଳ ଘଟଣାକ୍ରମ ନଜରକୁ ଆସିଥାଏ। ଭାରତରେ ଇଣ୍ଟରନେଟ୍‌ର ଭବିଷ୍ୟତ ପ୍ରସାର ଆକଳନ କରି ନିକଟ ଅତୀତରେ କେତେକ ରିପୋର୍ଟ ପ୍ରକାଶିତ ହୋଇଛି। ଏଗୁଡ଼ିକରେ ଇଣ୍ଟରନେଟ୍‌ରେ ଆଞ୍ଚଳିକ ଭାଷାଗୁଡ଼ିକର ଗୁରୁତ୍ୱ ବଢ଼ିବ ବୋଲି ଦର୍ଶାଯାଇଛି । ୨୦୧୬ ଅଗଷ୍ଟରେ 'ନାସକମ୍' ଦ୍ୱାରା ପ୍ରକାଶିତ ରିପୋର୍ଟ ଅନୁଯାୟୀ ୨୦୧୫ ସୁଦ୍ଧା ଦେଶରେ ଇଣ୍ଟରନେଟ୍ ଉପଭୋକ୍ତାଙ୍କ ସଂଖ୍ୟା ୩୩ କୋଟି ଥିବା ବେଳେ ୨୦୨୦ ବେଳକୁ ଏହା ୭୩ କୋଟିରେ ପହଞ୍ଚିବ। ଆଗାମୀ ଚାରି ବର୍ଷ ମଧ୍ୟରେ ଯେଉଁ ୪୦ କୋଟି ଉପଭୋକ୍ତା ଇଣ୍ଟରନେଟ୍ ମଞ୍ଚରେ ସାମିଲ ହେବେ, ସେମାନଙ୍କ ମଧ୍ୟରେ ୩୦ କୋଟି ଗ୍ରାମାଞ୍ଚଳ ବାସିନ୍ଦା ଥିବେ ଏବଂ ସେମାନେ ଆଞ୍ଚଳିକ ଭାଷାରେ ଇଣ୍ଟରନେଟ୍‌ରେ ତଥ୍ୟ ଓ ଚିତ୍ର ବ୍ୟବହାର କରିବେ। ଏହି ପରିସଂଖ୍ୟାନରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଗ୍ରାମବହୁଳ ଓଡ଼ିଶାରେ ଇଣ୍ଟରନେଟ ଉପଭୋକ୍ତା ସଂଖ୍ୟା ବଢ଼ିବ ଏବଂ ସେମାନେ ଓଡ଼ିଆ ଭାଷାରେ ତଥ୍ୟ ଓ ଚିତ୍ର ଖୋଜିବେ। ଠିକଣା ସମୟରେ ଓଡ଼ିଆ ଭାଷାରେ ସେହି ସୁବିଧା ନ ମିଳିଲେ, ଅନ୍ୟ ଭାଷାକୁ ଆପଣେଇବେ ଏବଂ ଏହା ଫଳରେ ଓଡ଼ିଆ ଭାଷା ଓ ସଂସ୍କୃତି ଅବକ୍ଷୟର ସମ୍ମୁଖୀନ ହେବ।

ଦେଶରେ ଆଞ୍ଚଳିକ ଭାଷାଗୁଡ଼ିକରେ ୱେବସାଇଟ୍ ପ୍ରସ୍ତୁତ କରିବା ନିମନ୍ତେ 'ଗୋ ଡାଡି ଡଟ୍ କମ୍' ନାମକ ଏକ ବହୁଦେଶୀୟ ବ୍ୟବସାୟୀ ଗତ ଜୁଲାଇ ମାସରେ ଉଦ୍ୟମ ଆରମ୍ଭ କରିଛି। ଏହି ସଂସ୍ଥା ବିଶ୍ୱର ୫୩ଟି ରାଷ୍ଟ୍ରରେ ୨୫ଟି ଭାଷାରେ ସେବା ପ୍ରଦାନ କରୁଛି। ପ୍ରାଥମିକ ଅବସ୍ଥାରେ କେବଳ ହିନ୍ଦୀ, ତାମିଲ ଓ ମରାଠୀ ଭାଷାରେ ଏହାର ବ୍ୟବସାୟ ଆରମ୍ଭ ହୋଇଛି। ଆଗାମୀ ଦିନରେ ଓଡ଼ିଆ ସେଥିରେ ସାମିଲ ହୋଇପାରେ। ଏହି ଭଳି ବଡ଼ ବଡ଼ ବ୍ୟବସାୟିକ ସଂସ୍ଥାମାନଙ୍କ ଯୋଜନାବଦ୍ଧ ଉଦ୍ୟମ ସଂପୃକ୍ତ ଭାଷାଗୁଡ଼ିକର ପ୍ରସାରରେ ସହାୟକ ହୋଇଥାଏ।

ସମକାଳୀନ ମୋବାଇଲ୍ ଇଣ୍ଟରନେଟ୍ କ୍ଷେତ୍ରରେ ଆଧିପତ୍ୟ ବିସ୍ତାର କରୁଥିବା ରିଲାଏନ୍‌ସ ଏଣ୍ଟରଟେନ୍‌ମେଣ୍ଟ ପକ୍ଷରୁ ଚଳିତ ନଭେମ୍ବର ପ୍ରଥମ ସପ୍ତାହରେ 'ଜିଓଏକ୍‌ସ' ନାମକ ଆଣ୍ଡ୍ରୋଏଡ୍ ଆପ୍ଲିକେସନ୍ ସେବା ଘୋଷଣା କରିଛି। ଏଥିରେ ଦଶଟି ଆଞ୍ଚଳିକ ଭାଷାରେ ମନୋରଞ୍ଜନ କାର୍ଯ୍ୟକ୍ରମ ଯଥା- ଚଳଚ୍ଚିତ୍ର, ସଂକ୍ଷିପ୍ତ ଚିତ୍ରକଥା ବା 'ସର୍ଟ-ଫର୍ମ-କଣ୍ଟେଣ୍ଟ' ଖେଳ ସନ୍ନିବେଶିତ ହେବ, ଯଦିଓ ବର୍ତ୍ତମାନ ଏଥିରେ ଓଡ଼ିଆ ସାମିଲ ହୋଇନାହିଁ, ଭବିଷ୍ୟତରେ ପାଳି ପଡ଼ିବ । ଆଞ୍ଚଳିକ ଭାଷାରେ କ୍ରମଶଃ ଅଧିକରୁ ଅଧିକ ଏଭଳି ଭିଡ଼ିଓ ଷ୍ଟ୍ରିମିଂ ଯୋଜନା କାର୍ଯ୍ୟକାରୀ ହେବ ଏବଂ ଓଡ଼ିଆ ଭାଷାର କାର୍ଯ୍ୟକ୍ରମ ସେଥିରେ ସାମିଲ ହେବା ଆଶା କରାଯାଇପାରେ ।

ଓଡ଼ିଶା ଅର୍ଥନୈତିକ ସର୍ଭେ ୨୦୧୫-୧୬ରେ ଦର୍ଶାଯାଇଛି ଯେ, ରାଜ୍ୟରେ ପ୍ରାୟ ଦୁଇ କୋଟି ୮୦ ଲକ୍ଷ ମୋବାଇଲ ଉପଭୋକ୍ତା ଅଛନ୍ତି । ଏଥିରୁ ପ୍ରାୟ ୩୦ ପ୍ରତିଶତ ସ୍ମାର୍ଟଫୋନ୍ ବ୍ୟବହାର କରୁଥିବା ଏବଂ ଅନ୍ୟମାନେ ସେ ଦିଗରେ ଆଗଭର ହେଉଥିବା ବିଶ୍ୱାସ କରାଯାଇପାରେ। ଅତଏବ ରାଜ୍ୟର ୮୪ ଲକ୍ଷରୁ କୋଟିଏ ସାକ୍ଷର ଇଣ୍ଟରନେଟ୍ ପରିସରଭୁକ୍ତ ହେଉଥିବା ହିସାବ ଅତିରଞ୍ଜିତ ତଥ୍ୟ ନୁହେଁ। ତେବେ ସବୁ ମୋବାଇଲ୍ ଫୋନ୍ ଅପରେଟିଂ ସିଷ୍ଟମ୍‌ରେ ଓଡ଼ିଆ ଲିପି ବ୍ୟବହାରର ସୁଯୋଗ ନାହିଁ । ସୁଖର କଥା ଏହି ଯେ କେନ୍ଦ୍ରସରକାରଙ୍କ ଇଲେକ୍‌ଟ୍ରୋନିକ୍‌ସ ଓ ଇନ୍‌ଫରମେସନ୍ ଟେକ୍ନୋଲଜି ମନ୍ତ୍ରଣାଳୟ ପକ୍ଷରୁ ସମସ୍ତ ମୋବାଇଲ୍ ଫୋନ୍ ନିର୍ମାତାଙ୍କୁ ସେମାନଙ୍କ ଉତ୍ପାଦରେ ଆଞ୍ଚଳିକ ଭାଷା ବ୍ୟବହାରର ସୁବିଧା ଦେବା ନିମନ୍ତେ ନିର୍ଦ୍ଦେଶ ଦିଆଯାଇଛି ଏବଂ ୨୦୧୭ ଜୁଲାଇ ପହିଲାରୁ ଏହି ନିୟମ କାର୍ଯ୍ୟକାରୀ ହେବ। କେନ୍ଦ୍ର ଓ ବିଭିନ୍ନ ରାଜ୍ୟ ସରକାରଙ୍କ ପକ୍ଷରୁ ମୋବାଇଲ ପ୍ରଶାସନ କାର୍ଯ୍ୟକ୍ରମ ଲାଗୁ କରାଯାଉଥିବା ଅବସରରେ ମୋବାଇଲ୍ ଫୋନ୍‌ରେ ଆଞ୍ଚଳିକ ଭାଷାର ବ୍ୟବହାର ସୁଯୋଗ ଅପରିହାର୍ଯ୍ୟ

ହୋଇପଡ଼ିଛି । ଏହି ନିଷ୍ପତ୍ତି ଇଣ୍ଟରନେଟ୍‌ରେ ଓଡ଼ିଆ ଭାଷାର ପ୍ରସାର ନିମନ୍ତେ ପ୍ରଶସ୍ତ ସୁଯୋଗ ସୃଷ୍ଟି କରିବ ।

ଭାରତରେ ଇଣ୍ଟରନେଟ୍ ପ୍ରସାର କ୍ଷେତ୍ରରେ ମୋବାଇଲ୍ ଟେକ୍ନୋଲଜି ହିଁ ପ୍ରମୁଖ ସ୍ଥାନ ଅଧିକାର କରିଛି । ଆମ ରାଜ୍ୟର ୧୭,୭୨୩ ଗ୍ରାମରେ ମୋବାଇଲ ସେବା ନାହିଁ। ବର୍ତ୍ତମାନ ସମୁଦାୟ ଜନସଂଖ୍ୟାର ୪୮ ପ୍ରତିଶତ ୨୫ ବର୍ଷରୁ କମ୍ ବୟସ୍କ ଥିବା ଏବଂ ମୋବାଇଲ୍ ଇଣ୍ଟରନେଟ୍ ସେମାନଙ୍କ ଆକର୍ଷଣର କେନ୍ଦ୍ରବିନ୍ଦୁ ପାଲଟୁଥିବା ପରିପ୍ରେକ୍ଷୀରେ ମୋବାଇଲ ସେବାକୁ ଅଗ୍ରାଧିକାର ଦେବା ସମୟ ଆସିପହଞ୍ଚିଛି ।

ଇଣ୍ଟରନେଟ୍ ମଞ୍ଚରେ ଓଡ଼ିଆ ଭାଷାର ପ୍ରଚଳନକୁ ତ୍ୱରାନ୍ୱିତ କରିବା ପାଇଁ ବିଭିନ୍ନ ସ୍ତରରେ ଚାପ ପ୍ରୟୋଗ ନିମନ୍ତେ 'ଓଡ଼ିଶା ସାହିତ୍ୟ ଏକାଡ଼େମୀ', 'ଓଡ଼ିଆ ଭାଷା ପ୍ରତିଷ୍ଠାନ' ଓ ବିଶ୍ୱବିଦ୍ୟାଳୟଗୁଡ଼ିକ ପକ୍ଷରୁ ଉଦ୍ୟମ ଆଶା କରାଯାଇପାରେ । ଓଡ଼ିଆ ଭାଷାର ଭବିଷ୍ୟତ ଗଠନ ଲାଗି ଏଭଳି ଅନୁଷ୍ଠାନଗୁଡ଼ିକ ନିଜ ନିଜ ଗୁରୁଦାୟିତ୍ୱ ନିର୍ବାହ କରିବା ଆବଶ୍ୟକ। ରାଜ୍ୟ ସରକାରଙ୍କ ସଂସ୍କୃତି ବିଭାଗ ତଥା ନବଗଠିତ 'ଇନ୍‌ଫର୍‌ମେସନ ଟେକ୍ନୋଲଜି ମିସନ୍' ପକ୍ଷରୁ ଏଥି ନିମନ୍ତେ ଖସଡ଼ା ପ୍ରସ୍ତୁତ କରି ନିର୍ଦ୍ଧାରିତ ସମୟସୀମାରେ କାର୍ଯ୍ୟକାରିତା ତଦାରଖ କଲେ ସୁଫଳ ମିଳିପାରିବ। ନ'ଅଙ୍କ ଦୁର୍ଭିକ୍ଷ ପରବର୍ତ୍ତୀ ଅବସ୍ଥାରେ ଓଡ଼ିଆ ଭାଷାର ସୁରକ୍ଷା ନିମନ୍ତେ ମୁଦ୍ରଣ ଯନ୍ତ୍ର ସ୍ଥାପନ ଯେପରି ଅପରିହାର୍ଯ୍ୟ ହୋଇପଡ଼ିଥିଲା, ବର୍ତ୍ତମାନ ସ୍ୱତନ୍ତ୍ର ପ୍ରଦେଶ ଗଠନର ଆଠ ଦଶନ୍ଧି ପରେ ଇଣ୍ଟରନେଟ୍ ମଞ୍ଚର ବିକାଶ ସେହିପରି ଗୁରୁତ୍ୱ ଦାବି କରୁଛି ।

ତାଳପତ୍ର ପୋଥିରେ ଲିଖିତ ଅକ୍ଷର ନମୁନା



ସୌଜନ୍ୟ : ଇଣ୍ଟରନେଟ୍



# ଲିପିହୀନ ଭାଷା ପାଇଁ ଲିପି

## ବିଜୟଲକ୍ଷ୍ମୀ ମହାନ୍ତି

ଭାଷାର ଲିପି ବିଷୟରେ କିଛି କହିବା ପୂର୍ବରୁ ଭାରତର ଭାଷା ସମସ୍ୟା ବିଷୟ ବିଚାରକୁ ନେବା ଆବଶ୍ୟକ। ୧୯୭୧ ଜନଗଣନା ଅନୁସାରେ ଭାରତରେ ମାତୃଭାଷା ସଂଖ୍ୟା ୧୬୫୨। ଏହା ମଧ୍ୟରୁ ପୁଣି ଆଦିବାସୀ ଭାଷା ସଂଖ୍ୟା ପ୍ରାୟ ୪୦୦। ପୁଣି ପ୍ରତ୍ୟେକ ଭାଷାକୁ ୫୦,୦୦୦ରୁ ଅଧିକ ଲୋକ କହୁଥିବା ଆଦିବାସୀ ଭାଷା ସଂଖ୍ୟା ପ୍ରାୟ ୨୫। ସର୍ବମୋଟ୍ ମାତୃଭାଷା ସଂଖ୍ୟା ୧୬୫୨ ହେଲେ ମଧ ୧୯୬୭ ସଂଶୋଧନ ଅନୁସାରେ ସମ୍ବିଧାନ ସମ୍ମତ ପ୍ରଧାନ ଭାଷା ସଂଖ୍ୟା ମାତ୍ର ୧୫। ଏହି ୧୫ଟି ଭାଷା ଭିତରୁ ପୁଣି ୧୨ଟି ଭାଷା ଏକ ବା ଏକାଧିକ ପ୍ରଦେଶର ଏକକ ଭାଷା ଭାବରେ ଗୃହୀତ। ସେଗୁଡ଼ିକ ମଧ୍ୟରୁ ହିନ୍ଦୀ ଭାଷାକୁ ଛାଡ଼ିଦେଲେ ଆଉ ରହୁଥିବା ୧୧ଟି ଭାଷାରୁ ଓଡ଼ିଆ, ଅସମୀୟା, ବଙ୍ଗଳା ପୂର୍ବାଞ୍ଚଳର, ମରାଠୀ, ଗୁଜୁରାଟି ପଶ୍ଚିମାଞ୍ଚଳର, ପଞ୍ଜାବୀ, କାଶ୍ମୀରୀ ଉତ୍ତରାଞ୍ଚଳର ଓ ତେଲୁଗୁ, ତାମିଲ, କନ୍ନଡ଼, ମାଲାୟାଲମ ଦକ୍ଷିଣାଞ୍ଚଳର ଭାଷା। ହିନ୍ଦୀ ଏକ ମୁଖ୍ୟ ଭାଷା ଭାବରେ ଭାରତର ଛ'ଟି ରାଜ୍ୟର ମାତୃଭାଷା। ସେ ରାଜ୍ୟଗୁଡ଼ିକ ହେଲେ ହିମାଚଳ ପ୍ରଦେଶ, ହରିଆନା, ରାଜସ୍ଥାନ, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ ଓ ବିହାର। ଅନ୍ୟ ୩ଟି ମଧ୍ୟରୁ ସିନ୍ଧି ଓ ଉର୍ଦ୍ଦୁ ଦୁଇଟି ଭାଷା କୌଣସି ନିର୍ଦ୍ଦିଷ୍ଟ ପ୍ରଦେଶାନ୍ତର୍ଗତ ନୁହନ୍ତି ଏବଂ ଅନ୍ୟଟି ପ୍ରାଚୀନ ସଂସ୍କୃତ, ଯେଉଁଥିରୁ ସବୁ ଭାରତୀୟ ଭାଷାଗୁଡ଼ିକର ସୃଷ୍ଟି ବୋଲି କୁହାଯାଉଛି। ଭାରତର ଏଇ ଭାଷାମାନଙ୍କ ସହିତ ଇଂରାଜୀ ଭାଷାର ବ୍ୟବହାର ଓ ପ୍ରଭାବକୁ ବାଦ୍ ଦେଇ ହେବନି। ଇଂରାଜୀ ବୁଦ୍ଧିଜୀବୀମାନଙ୍କର ଭାଷା ହେଲେ ମଧ ଏହାର ପ୍ରସାର 'ତୁଣ୍ଡବାଇଦ' ପରି ବର୍ତ୍ତମାନ ଭାରତର ସବୁ ଅଞ୍ଚଳରେ ଅନୁଭୂତ।

ଆଞ୍ଚଳିକ ଭାଷାଗୁଡ଼ିକ ନିର୍ଦ୍ଦିଷ୍ଟ ଅଞ୍ଚଳର ଅଧିବାସୀମାନଙ୍କର ପ୍ରଧାନ କଥିତ ଓ ବ୍ୟବହୃତ ଭାଷା ହେଲେ ମଧ ସେହି ଅଞ୍ଚଳମାନଙ୍କରେ ଅନ୍ୟ ଭାଷାଭାଷୀମାନଙ୍କ ସଂଖ୍ୟା କିଛି କମ୍ ନୁହେଁ। ଏମାନେ ବ୍ୟବସାୟିକ ଉଦ୍ଦେଶ୍ୟରେ ବା ସ୍ଥାୟୀ ବା ବହିରାଗତ ବାସିନ୍ଦା ଭାବରେ ଏହି ଅଞ୍ଚଳମାନଙ୍କରେ ବାସ କରି ନିର୍ଦ୍ଦିଷ୍ଟ ଆଞ୍ଚଳିକ ଭାଷା ଦ୍ୱାରା ଯେପରି ପ୍ରଭାବିତ ହୁଅନ୍ତି, ସେହିପରି ସେମାନଙ୍କ ନିଜ ମାତୃଭାଷା ଦ୍ୱାରା ପ୍ରଧାନ କଥିତ

ଭାଷାକୁ ମଧ୍ୟ ପ୍ରଭାବିତ କରନ୍ତି। ଏହାଛଡ଼ା ଭାରତର ପ୍ରାୟ ସବୁ ଅଞ୍ଚଳରେ ଇଂରାଜୀ ବି ଏକ ମୁଖ୍ୟ ଭାଷା ଭାବରେ ବ୍ୟବହାର ହେଉଛି।

ପ୍ରଧାନ ଭାଷା ଭାବରେ ଗ୍ରହଣ କରାଯାଇଥିବା ପ୍ରତ୍ୟେକ ଭାଷାର ସ୍ୱତନ୍ତ୍ର ଲିପି ଅଛି। କେବଳ ସଂସ୍କୃତ ଭାଷାକୁ ଛାଡ଼ିଦେଲେ ଅନ୍ୟ ପ୍ରଧାନ ଭାଷାମାନଙ୍କ କଥା ବିଚାରକୁ ନେଲେ ପ୍ରଥମେ ସେହି ଭାଷାର ଚେହେରା ବା ଲିପି ଆମ ଆଖି ଆଗରେ ସ୍ପଷ୍ଟ ହୁଏ ଓ ପରେ ସେ ଭାଷା ଆମ ଆଲୋଚନାର ବିଷୟବସ୍ତୁ ହୁଏ। ପ୍ରାଚୀନ ସଂସ୍କୃତ ଭାଷାର ଲିପି ଥିଲା ବ୍ରାହ୍ମୀ ଏବଂ ବ୍ରାହ୍ମୀ ଲିପିକୁ କାଳକ୍ରମେ ଭୌଗୋଳିକ ସୀମା ବିଚ୍ଛିନ୍ନତା ଦୃଷ୍ଟିରୁ ଅନ୍ୟାନ୍ୟ ପ୍ରଚଳିତ ଭାଷାଗୁଡ଼ିକ କ୍ରମବିକଶିତ ରୂପରେ ଆଜି ନିଜର ସ୍ୱତନ୍ତ୍ରତା ଲାଭ କରି ବିକଶିତ ଓ ଉନ୍ନତ ହୋଇଛନ୍ତି। ବ୍ରାହ୍ମୀ ଲିପିର ବ୍ୟବହାର ଲୁପ୍ତ ହେବା ପରେ ସଂସ୍କୃତ ଭାଷାକୁ ଦେବନାଗରୀ ଲିପିରେ ଲେଖାଯାଉଥିଲେ ମଧ୍ୟ ଭାଷା-ନିର୍ଦ୍ଦିଷ୍ଟ ଅଞ୍ଚଳମାନଙ୍କରେ ଏହାକୁ ବର୍ତ୍ତମାନ ସେହି ଅଞ୍ଚଳର ପ୍ରଧାନ ଭାଷାର ଲିପିରେ ବି ଲେଖାଯାଉଛି। ଏଣୁ କୁହାଯାଇପାରେ ଯେ ସଂସ୍କୃତ ଭାଷାର ଲିପି ଦେବନାଗରୀ ହେଲେ ବି ଏହା ବର୍ତ୍ତମାନ କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳର କଥିତ ଭାଷା ବା ମାତୃଭାଷା ନୁହଁ।

ଭାରତରେ ଆଞ୍ଚଳିକ ଲିପିଗତ ଲିଖିତ ଭାଷା ସହିତ ବହୁ ଲିପିହୀନ, ଅଲିଖିତ କଥିତ ଭାଷା ରହିଛି। ବହୁ ଭାଷାର ଦେଶ ଭାରତରେ ଏହାର ଭାଷା ସମସ୍ୟା ଓ ଆଞ୍ଚଳିକ ଲିଖିତ ଭାଷାର ଲିପି ସମସ୍ୟା ଅପେକ୍ଷା ଲିପିହୀନ, ଅଲିଖିତ ଭାଷାର ସମସ୍ୟା ଅଧିକ ଜଟିଳ ବୋଲି ମନେ ହୁଏ। ପୁଣି ବହୁ ଭାଷାର ଦେଶ ହୋଇଥିବାରୁ ଭାରତରେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଭାଷାକୁ ପ୍ରାଧାନ୍ୟ ଦେବା ଯେପରି ଦୁଃସାଧ୍ୟ ହୋଇପଡ଼ିଛି ସେହିପରି ଏକ ସ୍ୱତନ୍ତ୍ର ରାଷ୍ଟ୍ରଭାଷାର ନିଷ୍ପତ୍ତି ମଧ୍ୟ ଏପର୍ଯ୍ୟନ୍ତ ବହୁ ବିବାଦିତ।

ବର୍ତ୍ତମାନ ଭାରତରେ ପ୍ରଚଳିତ ହେଉଥିବା ଲପି – ପ୍ରଧାନ ଭାଷା ଗୁଡ଼ିକ ହେଲେ- ନାଗରୀ, ଗୁରୁମୁଖୀ, ଗୁଜୁରାଟି, ଓଡ଼ିଆ, ପ୍ରତ୍ୟେକ ଭାଷାର ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଲିପି ଓ ତାମିଲ୍, ମାଲାୟାଲମ, ତେଲଗୁ ଓ କନ୍ନଡ଼ ଭାଷା ପାଇଁ ଗୋଟିଏ ଲିପି, ପୁଣି ବଙ୍ଗଳା, ଅସମିୟା ଓ ମଣିପୁରୀ ଭାଷା ପାଇଁ ଗୋଟିଏ ଲିପି। ଏସବୁ ଭାଷାର ଲିପି ବ୍ରାହ୍ମୀ ଲିପିରୁ ସୃଷ୍ଟ ଓ କ୍ରମବିକଶିତ। ଏହାଛଡ଼ା ଉର୍ଦ୍ଦୁ ଭାଷାର ଲିପି ପରସିଆନ-ଆରବିକ୍ ଲିପିରୁ ସୃଷ୍ଟ ଓ ଇଂରାଜୀ ଭାଷାରେ ବ୍ୟବହୃତ ହେଉଥିବା ରୋମାନ୍ ଲିପିକୁ ମଧ୍ୟ ଭାରତର ଅନ୍ୟ କେତେକ ଭାଷା ଗ୍ରହଣ କରିଛନ୍ତି।

ଯଦି ଭାରତରେ ବହୁ ଭାଷା ଥାଇ ମଧ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ଲିପିକୁ ଗ୍ରହଣ କରାଯାଉଥାନ୍ତା ତେବେ ଏହାର ସମସ୍ୟା ଏତେ ଜଟିଳ ହୋଇ ନଥାନ୍ତା। ଲିପିହୀନ ବା

ଅଲିଖିତ ଭାଷା ସଂଖ୍ୟା ବର୍ତ୍ତମାନ ବି ଲିଖିତ ଭାଷା ସଂଖ୍ୟାଠାରୁ ଢେର ଅଧିକ। କିନ୍ତୁ ଯେଉଁ କେତୋଟି ଭାଷାର ଲିପି ତିଆରି ହୋଇଯାଇଛି ଓ ସେଗୁଡ଼ିକର ଯେଉଁ ଇତିହାସ ରହିଛି ଏବଂ ସେହି ଭାଷାମାନଙ୍କରେ ଯେଉଁ ଉନ୍ନତ ସାହିତ୍ୟ ରହିଛି, ସେହି ଭାଷାଗୁଡ଼ିକୁ ଲିପିହୀନ ଭାଷାର ଲିପି ସୃଷ୍ଟି ପାଇଁ ବାଦଦେଇ ହେବନି। ସେମାନଙ୍କ ଉପସ୍ଥିତିକୁ ବିଚାରକୁ ନିଆଯାଇ ଲିପିହୀନ ଭାଷାର ଲିପି ତିଆରି ପାଇଁ ଦୃଷ୍ଟି ଦେବାକୁ ହେବ।

ବର୍ତ୍ତମାନ ପ୍ରଶ୍ନ ଉଠେ ଭାଷା ପାଇଁ ଲିପିର ଆବଶ୍ୟକତା ବା କ'ଣ ? ଲିପି ନଥାଇ ଭାଷା ତ ଅଛି। ଆଧୁନିକ ଭାଷାବିଜ୍ଞାନ ବର୍ତ୍ତମାନ କଥିତ ଭାଷାକୁ ହିଁ ପ୍ରାଧାନ୍ୟ ଦେଉଛି। କଥିତ ଭାଷା ଭାବ ବିନିମୟ ପାଇଁ ଯଥେଷ୍ଟ। ତେବେ ଲିଖିତ ଭାଷା ଆବଶ୍ୟକ ହେବ କାହିଁକି ?

ଭାଷାବିତ୍‌ମାନେ କହନ୍ତି ଯେ ଲିପି ହେଉଛି ଭାଷାର 'ବାହ୍ୟ ପୋଷାକ'। ପୋଷାକ ବଦଳାଇଲା ପରି ଭାଷାର ଲିପିକୁ ବଦଳାଯାଇପାରେ। ଜଣେ ଲୋକ ନାଲି ରଙ୍ଗର ପୋଷାକ କାଢ଼ି ଛିଟ ରଙ୍ଗର ପୋଷାକ ପିନ୍ଧି ପାରେ। ପୁଣି ଛିଟ ରଙ୍ଗର ପୋଷାକ ବଦଳାଇ ଦି' ରଙ୍ଗର ପୋଷାକ ପିନ୍ଧି ପାରେ। ପୋଷାକକୁ ଛୋଟ ବା ବଡ଼ ଆକାରରେ ବି ପିନ୍ଧିପାରେ। ଭାଷାବିତ୍‌ମାନଙ୍କ କଥା ସତ। କିନ୍ତୁ ତା' ବୋଲି ବର୍ତ୍ତମାନର ସାମାଜିକ ସ୍ଥିତିରେ ସେ ତାର ପୋଷାକକୁ ସମ୍ପୂର୍ଣ୍ଣ କାଢ଼ି କେବେହେଲେ ଫୋପାଡ଼ି ଦେଇ ନ ପାରେ। ସେହିପରି ଭାଷାର ଆଭରଣ ଲିପିକୁ ଆମେ ଯେତେଥର ଇଚ୍ଛା ସେତେଥର ବଦଳାଇଲେ ମଧ୍ୟ ପୂରାପୂରି କାଢ଼ି ପଦାକୁ ଫୋପାଡ଼ି ଦେଇ ନ ପାରୁ। ପୁନଶ୍ଚ ପୋଷାକ ପୁରୁଣା ହେଲେ ଏହାକୁ ବଦଳାଇବାକୁ ପଡ଼ିବ, ନଚେତ ଏହା ଆପେ ଦେହରୁ ବାହାରିଯିବ। କିନ୍ତୁ ଭାଷାର ପୋଷାକରେ ଏଇଠାରେ ପାର୍ଥକ୍ୟ। ଯଦି ଭାଷା ବ୍ୟବହାରରେ ଅଛି ତାହାର ପୋଷାକ 'ଲିପି' ଯେତେ ପୁରାତନ ହେଉଥିବ ତାହା ସେତେ ମାର୍ଜିତ, ବିକଶିତ ଓ ଉନ୍ନତ ହେଉଥିବ। ଏହାକୁ କାଢ଼ି ଫୋପାଡ଼ି ଦେବା ବା ବଦଳାଇବା ସମୀଚୀନ ହେବ ନାହିଁ। ତେଣୁ ଭାଷାର ଲିପିର ବଦଳ ମଣିଷର ପୋଷାକ ବଦଳାଇବା ପରି ସହଜ ନୁହେଁ। ଦ୍ୱିତୀୟରେ ଭାଷାର ଲିପି ସୃଷ୍ଟି ହେବା ପରେ ଏହାକୁ ବ୍ୟବହାର କରୁଥିବା ଲୋକମାନଙ୍କର ଏହା ସହିତ ଆନ୍ତରିକତା ଏତେ ବଢ଼ିଯାଏ ଯେ ସେ ଆନ୍ତରିକତାକୁ ଉପେକ୍ଷା କରିବା ମଧ୍ୟ କଷ୍ଟସାଧ୍ୟ।

ତେବେ ଲିପି କ'ଣ ? ଏହା କ'ଣ ଖାଲି ଭାଷାର ବାହ୍ୟ ଆଭରଣ ନା ତା'ଠାରୁ ଆହୁରି କିଛି ବେଶି ? ବାହାରେ ପବନ ବହିଲେ ସେ ପବନ ଆମ ଆଖିକୁ ଦେଖାଯାଏ ନାହିଁ କିନ୍ତୁ ସେ ପବନ ଦେହ ସ୍ପର୍ଶ କଲେ ତାକୁ ଅନୁଭବ କରିହୁଏ। ଏଇ ସ୍ପର୍ଶ ଅନୁଭବ

ହିଁ ପବନର ସ୍ଥୁଳ ରୂପ। ଭାଷା ମଣିଷ ମୁହଁରୁ ନିଃସୃତ ହେଉଥିବା ବା ବାହାରୁଥିବା ପବନ। ଏଇ ପବନ ସହିତ ନିର୍ଗତ ଧ୍ୱନିକୁ ଆମେ ଶୁଣୁ, ଅନୁଭବ କରୁ କିନ୍ତୁ ଦେଖିପାରୁ ନାହିଁ। ଲିପି ଏଇ ଅଦେଖା ଧ୍ୱନି ଅନୁଭବର ସ୍ଥୁଳ ରୂପ। ଭାଷାକୁ ଲିପିରେ ହିଁ ଦେଖିହୁଏ, ଶବ୍ଦରେ ବା ଧ୍ୱନିରେ ନୁହେଁ। ଏହା କାନରେ ବାଜିବା ମାତ୍ରେ ମନରେ କିଛି ସମୟ ପାଇଁ ସ୍ଥାୟୀ ହୋଇ କ୍ରମେ ବିଲୁପ୍ତ ହୁଏ। କିନ୍ତୁ ଏହାକୁ ଚିରସ୍ଥାୟୀ ବା ବହୁ ଅଧିକକାଳ ସ୍ଥାୟୀ କରିବା ପାଇଁ ଲିପି ହିଁ ଏକମାତ୍ର ସହଜ ମାଧ୍ୟମ। ଅବଶ୍ୟ ବର୍ତ୍ତମାନ କେତେକ ମେସିନ୍ ଯେପରି ରେକର୍ଡ଼ ଓ ଟେପ୍‌ରେକର୍ଡ଼ର ପ୍ରଭୃତି ସୃଷ୍ଟି ହୋଇଛି, ସେ ସବୁରେ ଏହାକୁ ଧ୍ୱନି ଆକାରରେ ଧରି ରଖାଯାଉଛି। କିନ୍ତୁ ଏହା ସତ୍ତ୍ୱେ ଲିପି ହିଁ ଭାଷାର ସ୍ଥୁଳ, ସ୍ଥାୟୀ ଓ ସହଜ ରୂପ। ଏହାକୁ ହାତ ସାହାଯ୍ୟରେ କେତେକ ବାହ୍ୟ ପଦାର୍ଥ ଯେପରି କଲମ ଓ କାଳି, ପେନ୍‌ସିଲ୍ ବା ଅନ୍ୟ କୌଣସି ଅବଲମ୍ବନ ଓ ଟାଇପ୍ ମେସିନ୍‌ର ଅକ୍ଷର ଲେଖା ପ୍ରଣାଳୀ ଦ୍ୱାରା ବା ଛାପା ଅକ୍ଷରରେ ବର୍ତ୍ତମାନ ସ୍ଥାୟୀ ଭାବରେ କାଗଜ ଉପରେ ଧରି ରଖିହେଉଛି। ସେଥିପାଇଁ କେତେ ପ୍ରକାର ନୂତନ ପଦ୍ଧତି ଦିନକୁ ଦିନ ପରିବର୍ତ୍ତିତ ଓ ପରିମାର୍ଜିତ ହୋଇ ବାହାର କରାଯାଉଛି।

ଅନ୍ୟ ପକ୍ଷରେ ବିଭିନ୍ନ ଆକାରରେ ପ୍ରକାଶ କରାଯାଉଥିବା ସାଙ୍କେତକ ଚିହ୍ନ ହିଁ ଭାଷାର ଲିପି। ଏହି ସାଙ୍କେତକ ଚିହ୍ନ ଦ୍ୱାରା ଧ୍ୱନିକୁ ଚିହ୍ନିତ କରାଯାଏ। ଗୋଟିଏ ନିର୍ଦ୍ଦିଷ୍ଟ ଧ୍ୱନି ଗୋଟିଏ ନିର୍ଦ୍ଦିଷ୍ଟ ସାଙ୍କେତିକ ଚିହ୍ନ ଦ୍ୱାରା ପ୍ରକାଶିତ ହୁଏ। ବିଭିନ୍ନ ଭାଷାରେ ବିଭିନ୍ନ ପ୍ରକାରର ସାଙ୍କେତିକ ଚିହ୍ନ ଗ୍ରହଣ କରାଯାଇଛି। କିନ୍ତୁ ଟିକିଏ ତଳେଇ ଦେଖିଲେ ଜଣାଯିବ ଯେ ଯେତେ ଚିହ୍ନ ତିଆରି ହୋଇଛି ତା ମୂଳରେ ସେଇ ଗୋଟିଏ ଉଦ୍ଦେଶ୍ୟ ରହିଛି - ଧ୍ୱନିକୁ ସ୍ଥୁଳ ରୂପ ଦେବା।

ଯଦି ଲିପି ନ ଥାନ୍ତା ତେବେ ଭାଷାରେ ପ୍ରକାଶିତ ସାହିତ୍ୟ ଓ ଇତିହାସ ବା କୌଣସି ଜାତିର ଇତିହାସ ବା ସଂସ୍କୃତି ବା ଅନ୍ୟାନ୍ୟ ବହୁ ବିବରଣୀର ରେକର୍ଡ଼ ଭାଷାରେ ପ୍ରକାଶ ହୋଇପାରି ନଥାନ୍ତା। ଯେଉଁ ଭାଷାର ଲିପି ତିଆରି ହୋଇନାହିଁ ଏବଂ ସେମାନେ କେବଳ କଥିତ ରୂପରେ ରହିଛନ୍ତି, ସେମାନଙ୍କର କ୍ରମବିକାଶ ଆଜି ଅଜଣା। ସେମାନଙ୍କର ଇତିହାସ ବି ସେହିପରି ଅଜ୍ଞାତ। ଏହିପରି କେତେକ ଅଲିଖିତ ଭାଷା ମଧ୍ୟ ଆଜି ସମ୍ପୂର୍ଣ୍ଣ ବିଲୁପ୍ତ ହେଲେଣି। ଏହିସବୁ ଦୃଷ୍ଟିକୋଣରୁ ବିଚାର କଲେ ଭାଷାର ଲିପି ରହିବା ଆବଶ୍ୟକ। ଭାବ ବିନିମୟ ପାଇଁ କଥିତ ବା ଅଲେଖା ଭାଷା ଯଥେଷ୍ଟ, କିନ୍ତୁ ସେଇ ଭାଷାକୁ ସାଇତିବା ପାଇଁ ଲିପିର ପ୍ରୟୋଜନ।

ଏଇ ପରିପ୍ରେକ୍ଷୀରେ ବର୍ତ୍ତମାନ କୁହାଯାଇପାରେ ଯେ ଭାଷା ଦୁଇପ୍ରକାର। ଗୋଟିଏ କଥିତ, ଲିପିଗତ ଭାଷା ଅନ୍ୟଟି କଥିତ ଲିପିହୀନ ଭାଷା। ଲିପି ରହିବା ଦ୍ୱାରା ଯେ ଲିପିଗତ ଭାଷା, ଲିପିହୀନ ଭାଷାଠାରୁ ଉଚ୍ଚତର ଏକଥା କୁହାଯାଇ ନପାରେ। କିନ୍ତୁ ଲିପି ଭାଷାକୁ ସ୍ଥାୟିତ୍ୱ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଭାଷାର ଅଭିବୃଦ୍ଧିରେ ସାହାଯ୍ୟ କରେ ବୋଲି ପୂର୍ବରୁ କୁହାଯାଇଛି ଓ ଏହି ଦୃଷ୍ଟିରୁ ଲିପିହୀନ ଭାଷାର ଲିପି ଭାରତ ପାଇଁ ଏକ ସମସ୍ୟା ହୋଇ ଛିଡ଼ା ହୋଇଛି।

ପ୍ରଥମତଃ ଲିପିହୀନ ଭାଷାର ସଂଖ୍ୟା ଭାରତରେ ଲିପିଗତ ଭାଷା ଅପେକ୍ଷା ବହୁତ ବେଶି। ତେବେ ଏପରି ହୋଇପାରେ ଯେ ଯେତେଗୁଡ଼ିଏ ଲିପିହୀନ ଭାଷା ଅଛି ସେସବୁ ପାଇଁ ତ ଗୋଟିଏ ଲିପି ପ୍ରଚଳନ କଲେ ଭଲ ହୁଅନ୍ତା। କିନ୍ତୁ ତା କରାଯାଇ ପାରୁନାହିଁ। କାରଣ ଅନ୍ୟ ଲିପିହୀନ ଭାଷାଗୁଡ଼ିକୁ ଛାଡ଼ିଦେଲେ ମଧ୍ୟ କେବଳ ଯେଉଁ ୪୦୦ ଆଦିବାସୀ ଭାଷା ଅଛି ବୋଲି କୁହାଯାଉଛି, ସେଇ ଆଦିବାସୀ ଭାଷା-ଭାଷୀ ଲୋକମାନେ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଲୋକ ନ ହୋଇ ସାରା ଭାରତର ବିଭିନ୍ନ ଭାଷା-ଅଞ୍ଚଳରେ ବିଛାଡ଼ି ହୋଇ ରହିଛନ୍ତି। ଏମାନେ ଅଶିକ୍ଷିତ ଏବଂ ଏମାନଙ୍କ ଭାଷା କେବଳ କଥିତ ରୂପରେ ଧ୍ୱନି ଆକାରରେ ରହିଛି। ସେମାନେ ନିଜେ ଏପର୍ଯ୍ୟନ୍ତ ଭାଷାକୁ ସ୍ଥାୟୀ ରୂପରେ ଧରି ରଖିବାକୁ ସକ୍ଷମ ହୋଇ ନାହାନ୍ତି। ଉଦାହରଣ ସ୍ୱରୂପ 'ସାନ୍ତାଳ' ଗୋଟିଏ ଆଦିବାସୀ ଭାଷା। ଏ ଭାଷା କହୁଥିବା ଲୋକେ ଆସାମ, ବିହାର, ମଧ୍ୟପ୍ରଦେଶ, ତାମିଲନାଡୁ, ମହାରାଷ୍ଟ୍ର, ଓଡ଼ିଶା, ପଞ୍ଜାବ, ଉତ୍ତରପ୍ରଦେଶ, ପଶ୍ଚିମବଙ୍ଗ, ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜ, ଦିଲ୍ଲୀ, ହିମାଚଳପ୍ରଦେଶ, ତ୍ରିପୁରା, ଅରୁଣାଚଳ ଓ ନାଗାଲାଣ୍ଡ ପ୍ରଭୃତି ସ୍ଥାନରେ ବାସ କରନ୍ତି। କିନ୍ତୁ ଏସବୁ ଭାଷା-ଅଞ୍ଚଳରେ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରଧାନ ଭାଷା ସହିତ ଅନ୍ୟ ଭାଷାର ଲୋକ ଯେପରି ଅଛନ୍ତି ସାନ୍ତାଳ ଭାଷାର ଲୋକ ମଧ୍ୟ ଭାଷାର ଲୋକେ ମଧ୍ୟ ସେହିପରି ଅଛନ୍ତି। ଏଇ ଅଞ୍ଚଳରେ ବାସ କରୁଥିବା ଅନ୍ୟାନ୍ୟ ଭାଷାର ଲୋକେ ମଧ୍ୟ ରାଜ୍ୟର ପ୍ରଧାନ ଭାଷାରେ ହିଁ ଶିକ୍ଷାଗତ ଯୋଗ୍ୟତା ଲାଭ କରନ୍ତି। ସେମାନଙ୍କ ନିଜ ମାତୃଭାଷାରେ ଶିକ୍ଷାପାଇଁ ଉତ୍କର୍ଷତା ଲାଭ କରିବା ସେମାନଙ୍କ ପକ୍ଷରେ କଷ୍ଟକର ହୋଇପଡ଼େ। ପୁଣି ସାନ୍ତାଳଭାଷୀ ଲୋକଙ୍କୁ ପ୍ରତି ଭାଷା-ଅଞ୍ଚଳରୁ ବାଛି କେବଳ ସେଇମାନଙ୍କ ଭାଷାର ଲିପି ସୃଷ୍ଟି କରି ଭାଷାର ଉତ୍କର୍ଷତା ବଢ଼ାଇବା ସରକାରୀ ଭାବରେ ଯେପରି କଷ୍ଟସାଧ୍ୟ ବେସରକାରୀ ଭାବରେ ସେହିପରି ଅସମ୍ଭବ। ସାନ୍ତାଳ ଭାଷାପରି ଆଓ (Ao), ବୋଦୋ (Bodo/Beno), କୁରୁଖ, ଲୁସାଇ, ମିକିର, ମିଲି, ତ୍ରିପୁରୀ ଓ ଆହୁରି

ଅନେକ ଲିପିହୀନ ଭାଷାର ଅବସ୍ଥା ସମାନ। ଏହା ଦେଶର ଭୌଗୋଳିକ, ସାମାଜିକ ଓ ଅର୍ଥନୈତିକ ପରିସ୍ଥିତି ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ। ତା'ଛଡ଼ା ପ୍ରତ୍ୟେକ ଲିପିହୀନ ଭାଷାର ସ୍ୱତନ୍ତ୍ର ଲିପି ତିଆରି କରିବା ଯେପରି କଷ୍ଟସାଧ୍ୟ ସେହିପରି ସମୟସାପେକ୍ଷ।

ଏହାର ବିକଳ୍ପ ଭାବରେ ଯଦି କୁହାଯାଏ ଯେ ଆଜିଠାରୁ ଭାରତରେ ବହୁ ଭାଷା ଥିଲେ ମଧ୍ୟ ସରକାର ସବୁ ଭାଷାର ଗୋଟିଏ ଲିପି ପ୍ରଚଳିତ କରାଇବେ, ତେବେ ଭାଷାର ନୂଆ ଲିପି ଆରମ୍ଭ ହେବା ଦିନଠାରୁ ହିଁ ପ୍ରତ୍ୟେକ ଭାଷାର ଲେଖା ଆରମ୍ଭ ହେବ ଓ ସେହି ଦିନଟିକୁ ଲିପିର ଆରମ୍ଭ ଦିନ ବୋଲି କହିବାକୁ ହେବ। କାରଣ ଗୋଟିଏ ଭାଷାର ଦୁଇଟି ଲିପି ରହିବାର କିଛି ଅର୍ଥ ହୁଏନାହିଁ। କିନ୍ତୁ ଯେଉଁ ଭାଷାଗୁଡ଼ିକ ଆଜିକୁ ଶହ ଶହ ବର୍ଷ ଧରି ନିଜ ନିଜ ଲିପିରେ ଲେଖା ହୋଇଆସିଛନ୍ତି, ଯେଉଁ ଲିପି ସହିତ ଭାଷାର ଓ ସେହି ଭାଷାର ଲୋକଙ୍କର ଅନ୍ତରଙ୍ଗତା ରହୁଛି ତାହା କ'ଣ ଏକାଦିନକେ ବିଲୁପ୍ତ କରିହେବ ? ନିର୍ଦ୍ଦିଷ୍ଟ-ଭାଷାଗତ, ନିର୍ଦ୍ଦିଷ୍ଟ ଲିପିରେ ଲେଖା ହୋଇ ରହିଥିବା, ପୁରାତନଠାରୁ ଆରମ୍ଭ କରି ଆଧୁନିକ ପର୍ଯ୍ୟନ୍ତ ଲେଖାଗୁଡ଼ିକୁ କ'ଣ ନୂତନ ଲିପିରେ ପ୍ରକାଶ କରିବା ସହଜ ହେବ ? 'ବିଶ୍ୱନାଗରୀ ଲିପି ପରିଷଦ'ର ଉଦ୍ୟମକୁ ଏଠାରେ ଉଦାହରଣ-ସ୍ୱରୂପ ନିଆଯାଇପାରେ। 'ବିଶ୍ୱନାଗରୀ ଲିପି ପରିଷଦ'ର ଶାଖା 'ଉତ୍କଳନାଗରୀ ଲିପି ପରିଷଦ' ନାଗରୀଲିପିରେ 'ଓଡ଼ିଆ ବିଶ୍ୱନାଗରୀ' ବୋଲି ଏକ ପତ୍ରିକା ଗତ କିଛି ବର୍ଷ ଧରି ପ୍ରକାଶ କରୁଛନ୍ତି। ଏ ପତ୍ରିକାର ଭାଷା ଓଡ଼ିଆ ଓ ଲିପି ନାଗରୀ। ଓଡ଼ିଆ ଭାଷା କହୁଥିବା ଓ ଓଡ଼ିଆ ଲିପି ବ୍ୟବହାର କରୁଥିବା ଓଡ଼ିଆ ଲୋକେ ଏହାକୁ ପଢ଼ିବାବେଳେ ଅନଭ୍ୟାସବଶତଃ ଟିକିଏ କଷ୍ଟ ଅନୁଭବ କରିବେ। ନାଗରୀ ଲିପିରେ ଓଡ଼ିଆ ପଢ଼ିଲା ବେଳେ ରହି ରହି ଅକ୍ଷର ଚିହ୍ନି ଚିହ୍ନି ପଢ଼ିବାକୁ ଭାରି ମଜା ଲାଗେ। କାରଣ ପଢ଼ା ଯେତେ ନିର୍ଭୁଲ ଓ ଦ୍ରୁତ ହେବା କଥା ତା' ହୋଇପାରେ ନାହିଁ। କିନ୍ତୁ ଏଇ ଅସୁବିଧାଟି ସାମାନ୍ୟ ଅଭ୍ୟାସ ପରେ ଓ ନିଜ ଓଡ଼ିଆ ଲିପିକୁ ମନରୁ ପାସୋରି ଦେବା ପରେ ହୁଏତ ଅତିକ୍ରମ କରିହେବ। କିନ୍ତୁ ଓଡ଼ିଆ ଭାଷାରେ ଯେତେ ଲେଖା ଅଛି ତାହାକୁ ନାଗରୀ ଲିପିରେ ପ୍ରକାଶ କରିବା କ'ଣ ଏଇ ପରୀକ୍ଷାମୂଳକ ଉଦ୍ୟମ ଦ୍ୱାରା ସମ୍ଭବ ? ଖାଲି ଓଡ଼ିଆ ଭାଷା ନୁହଁ ଭାରତର ତଥା 'ବିଶ୍ୱ ନାଗରୀଲିପି ପରିଷଦ' ନାମାନୁସାରେ ସାରା ବିଶ୍ୱର ଲିପି ସଂସ୍କାର କଥା ଭାବିଲେ ମନ ହଠାତ୍ ନିରାଶ ହୋଇପଡ଼େ।

ଭାରତର ଭାଷାଗୁଡ଼ିକୁ ନାଗରୀ ଲିପିରେ ଲେଖିବା ପରିକଳ୍ପନା ଆଜିର ନୁହେଁ। ଏହା ସ୍ୱାଧୀନତା ପୂର୍ବରୁ ମହାତ୍ମାଗାନ୍ଧୀଙ୍କ ସମୟର କଥା। 'ଓଡ଼ିଆ ବିଶ୍ୱନାଗରୀ' ବର୍ଷ ୩,

୧୯୭୯ ଅକ୍ଟୋବର, ସଂଖ୍ୟା ୧୦ରେ 'ଅଖିଳ ଭାରତୀୟ ଲିପି' ଶୀର୍ଷକ ପ୍ରବନ୍ଧରେ ସବୁ ଭାଷାର ଲିପି ନାଗରୀ ହେବା ବିଷୟରେ ମହାତ୍ମାଗାନ୍ଧୀଙ୍କ ମତକୁ ମଧ୍ୟ ଲକ୍ଷ୍ୟ କରାଯାଇପାରେ। ଏହା ଗାନ୍ଧୀ 'ରଚନାବଳୀ'ରୁ ଉଦ୍ଧୃତ, ନାଗରୀ ଲିପିରେ ଓଡ଼ିଆ ଭାଷାରେ ଲେଖା। ଗାନ୍ଧୀ କହିଛନ୍ତି- "ଭାରତରେ ଦେବନାଗରୀ ଲିପିକୁ ସାର୍ବଭୌମିକ ସ୍ୱୀକୃତି ମିଳିବ ସେତିକିବେଳେ, ଯେତେବେଳେ ଭାରତର ସବୁ ହିନ୍ଦୁ ଏହି ମତକୁ ସମର୍ଥନ କରିବେ ଯେ ସଂସ୍କୃତ ଓ ଦ୍ରାବିଡ଼ ଭାଷା-ପରିବାରର ସବୁଗୁଡ଼ିକ ଭାଷାର ଲିପି ଗୋଟିଏ ହେଉ। ବର୍ତ୍ତମାନ ବଙ୍ଗ ପ୍ରଦେଶରେ ବଙ୍ଗଳା, ପଞ୍ଜାବରେ ଗୁରୁମୁଖୀ, ସିନ୍ଧୁ ପ୍ରଦେଶରେ ସିନ୍ଧି, ଉତ୍କଳରେ ଓଡ଼ିଆ, ଗୁଜୁରାଟରେ ଗୁଜୁରାଟି, ଆନ୍ଧ୍ରପ୍ରଦେଶରେ ତେଲଗୁ ତାମିଲନାଡୁରେ ତାମିଲ, କେରଳରେ ମାଲାୟାଲମ୍, କର୍ଣ୍ଣାଟକରେ କନ୍ନଡ଼ ଲିପି ବ୍ୟବହୃତ ହେଉଛି। ବିହାରର କୈଥି ଓ ଦକ୍ଷିଣ ମୋଡ଼ି ଲିପିକୁ ଏଠାରେ ଉଲ୍ଲେଖ ନ କଲେ ନାହିଁ। ଯଦି ଆମେ ସବୁ ବ୍ୟାବହାରିକ ଓ ରାଷ୍ଟ୍ରୀୟ ପ୍ରୟୋଜନ ସକାଶେ ଏହି ଲିପିଗୁଡ଼ିକ ପରିବର୍ତ୍ତେ ଦେବନାଗରୀ ଲିପି ପ୍ରୟୋଗ କରିବା, ତେବେ ତାହା ପ୍ରକୃତରେ ବଡ଼ ପ୍ରଗତି ହେବ। ତାହା ଦ୍ୱାରା ସମଗ୍ର ଭାରତରେ ହିନ୍ଦୁମାନଙ୍କର ଏକତାକୁ ଦୃଢ଼ କରିବାରେ ସାହାଯ୍ୟ ମିଳିବ ଏବଂ ବିଭିନ୍ନ ପ୍ରଦେଶ ମଧ୍ୟରେ ଅଧିକ ନିକଟ ସମ୍ପର୍କ ସ୍ଥାପିତ ହୋଇପାରିବ। ଯେ କୌଣସି ନୂଆ ଲିପିକୁ ଭଲ ଭାବରେ ଶିଖିବା ପାଇଁ କେତେ ପରିଶ୍ରମ କରିବାକୁ ପଡ଼େ ତାହା ଭାରତର ବିଭିନ୍ନ ଭାଷା ଓ ଲିପି ସମ୍ବନ୍ଧରେ ଅଭିଜ୍ଞ ବ୍ୟକ୍ତିମାନେ ଉତ୍ତମ ରୂପେ ଜାଣନ୍ତି। କେତେଗୁଡ଼ିଏ ଲିପି ତ ଯଥାର୍ଥରେ ବଡ଼ ସୁନ୍ଦର, ପୁଣି ଦେଶପ୍ରେମ ହେତୁ କୌଣସି କାର୍ଯ୍ୟ କଷ୍ଟସାଧ୍ୟ ହୁଏ ନାହିଁ। ସେଥିପାଇଁ ବିଭିନ୍ନ ଲିପି ଶିଖିବାରେ ଯେଉଁ ସମୟ ଓ ପରିଶ୍ରମ ଲାଗେ, ତାହା ବୃଥା ହୁଏ ବୋଲି କୌଣସି ପ୍ରକାରେ କହିହେବ ନାହିଁ। ମାତ୍ର କୋଟି କୋଟି ସାଧାରଣ ଲୋକଙ୍କ ଠାରୁ ଆମେ ଏ ପ୍ରକାରର ତ୍ୟାଗ ମନୋଭାବ ଆଶା କରି ନ ପାରୁ। ସେମାନଙ୍କ ସକାଶେ ରାଷ୍ଟ୍ରନେତାମାନଙ୍କୁ ସବୁ କଥା ସହଜ କରିବାକୁ ହେବ। ସେଥିପାଇଁ ଆମର ଏପରି ଏକ ଲିପି ହେବା ଦରକାର, ଯାହାକୁ ସମଗ୍ର ଭାରତର ସମସ୍ତେ ନିଜ ନିଜ ଭାଷାର ଆବଶ୍ୟକତା ଅନୁସାରେ ସହଜରେ ଖାପ୍ ଖୁଆଇ ନିଜର କରିନେଇ ପାରିବେ। ପୁଣି ସବୁ ଭାଷାର ଆବଶ୍ୟକତା ଅନୁସାରେ ଖାପରେ ପଡ଼ିଯାଇ ପାରିବାର ଯେଉଁ ବୈଶିଷ୍ଟ୍ୟ ଦେବନାଗରୀ ଲିପିରେ ଅଛି ତାହା ଆଉ କୌଣସି ଲିପିରେ ନାହିଁ। ପୁଣି ଏହି ପ୍ରୟୋଜନୀୟତା ପାଇଁ ଅନ୍ୟ କୌଣସି ଲିପି ଦେବନାଗରୀ ଲିପି ଭଳି ସମ୍ପନ୍ନ ଓ ସମାର୍ଜିତ ନୁହେଁ।"

ମହତ୍ମାଗାନ୍ଧୀଙ୍କ ସମୟରୁ ଆଜିକୁ ପ୍ରାୟ ୪୦ ବର୍ଷ ଧରି ଦେବନାଗରୀ ଲିପିକୁ ଭାରତୀୟ ଲିପି କରିବାକୁ ଉଦ୍ୟମ ହେଉଥିଲେ ମଧ୍ୟ ସେ ଦିଗରେ ଯଥେଷ୍ଟ ଅଗ୍ରଗତି ହୋଇଛି ବୋଲି ମନେହୁଏନାହିଁ।

ଏ ପର୍ଯ୍ୟନ୍ତ ବି କେହି କେହି ଲିପିହୀନ ଭାଷାମାନଙ୍କର ଲିପି ଦେବନାଗରୀ ବା ରୋମାନ୍ ହେଲେ ଭଲ ହେବ ବୋଲି ବିଚାରୁଛନ୍ତି। ଏହାର ସପକ୍ଷରେ ଯୁକ୍ତି ଦିଆଯାଉଛି ଯେ ଯେହେତୁ ଭାରତରେ ତ୍ରିଭାଷୀ ସୂତ୍ରକୁ ଗ୍ରହଣ କରାଯାଇଛି, ପ୍ରତ୍ୟେକ ଛାତ୍ରକୁ ଅତିକମ୍‌ରେ ଅନ୍ତତଃ ୩ଟି ଭାଷା ଶିକ୍ଷା କରିବାକୁ ପଡ଼ିଥାଏ, ସେ ୩ଟି ମଧ୍ୟରେ ମାତୃଭାଷା ସହିତ ହିନ୍ଦୀ ଓ ଇଂରାଜୀ ଅନ୍ତର୍ଭୁକ୍ତ। ଏଣୁ ଲିପିହୀନ ଭାଷାମାନଙ୍କ ପାଇଁ ନୂତନ ଲିପି ବଦଳରେ ଏହି ଦୁଇଟିରୁ ଗୋଟିଏକୁ ଗ୍ରହଣ କରାଯାଇପାରେ।

ଦେବନାଗରୀ ଲିପିକୁ ଗ୍ରହଣ କରି ଏହାର ସପକ୍ଷବାଦୀମାନେ କହନ୍ତି ଯେ, ଦେବନାଗରୀ ଲିପିର ଅଧିକାଂଶ ଭାରତୀୟ ପ୍ରଧାନ ଭାଷାର ଲିପି ସହିତ ସମତା ରହିଛି। ହିନ୍ଦୀକୁ ରାଷ୍ଟ୍ରଭାଷାର ସମ୍ମାନ ଦିଆଯାଇଥିବାରୁ ଏ ଲିପି ଗ୍ରହଣ କଲେ କୌଣସି ଭାଷାଭାଷୀଙ୍କର ଆପତ୍ତି ନ ରହିପାରେ। ହିନ୍ଦୀ ଭାରତର ଛ'ଟି ରାଜ୍ୟର ମାତୃଭାଷା ଓ ଏହାର ଲିପି ମଧ୍ୟ ମରାଠୀ ଓ ସଂସ୍କୃତ ଭାଷା ଦ୍ୱାରା ଗୃହୀତ। ରୋମାନ୍ ଲିପି ଅପେକ୍ଷା ଏହା ଅଧିକ ଧ୍ୱନ୍ୟାତ୍ମକ ଓ ଛାପା ଅକ୍ଷରରେ ଏହାର ପ୍ରସାର ସହଜ। ରୋମାନ୍ ଲିପି ବିରୁଦ୍ଧରେ ଏମାନେ କହନ୍ତି ଯେ ରୋମାନ୍ ଲିପି ବିଦେଶୀ ଲିପି ଓ ଭାରତରେ ଇଂରାଜୀ ପ୍ରସାର ହିନ୍ଦୀ ଅପେକ୍ଷା କମ୍। ପୁଣି ରୋମାନ୍ ଲିପି ଧ୍ୱନ୍ୟାତ୍ମକ ନୁହେଁ ଏବଂ ଏହା ଭାରତୀୟ ଭାଷାର ଲିପିକୁ ଠିକ୍ ଭାବରେ ପ୍ରକାଶ କରିବାକୁ ଅକ୍ଷମ। ଭାଷାବିତ୍ ଗୋଲୋକ ବିହାରୀ ଧଳ କିନ୍ତୁ ଭାରତୀୟ ଭାଷାମାନଙ୍କର ଲିପି ଦେବନାଗରୀ ହେବା ସପକ୍ଷରେ ତାଙ୍କର 'ଆଧୁନିକ ଦୁନିଆରେ ଭାଷା ସମସ୍ୟା' ଆଲୋଚନା କରବାକୁ ଯାଇ ମତ ଦେଇଛନ୍ତି।

ରୋମାନ୍ ଲିପିର ସପକ୍ଷବାଦୀମାନେ ଅନ୍ୟ ପ୍ରକାର ଯୁକ୍ତି ଦେଖାନ୍ତି। ସେମାନଙ୍କ ମତରେ ରୋମାନ୍ ଲିପିର ସରଳ ରୈଖିକ ଅକ୍ଷର-ଆକାର ଶିଖିବା ପାଇଁ ସହଜ। ଏହି ଲିପି ପୃଥିବୀର ବହୁ ଭାଷାର ଲିପି ଓ ଏ ଲିପିରେ ଲେଖା ମଧ୍ୟ ବହୁତ ବେଶୀ। ଛପା ଅକ୍ଷରର ପ୍ରସାର ସହିତ ଏହା ଦେଶର ଅର୍ଥନୀତି ଦ୍ୱାରା ମଧ୍ୟ ନିୟନ୍ତ୍ରିତ ହୋଇପାରିବ। ଦେବନାଗରୀ ଲିପି ବିପକ୍ଷରେ ଏମାନେ କହନ୍ତି ଯେ, ଦେବନାଗରୀ ଲିପି ଲେଖିବାକୁ ଶିଖିବା କଷ୍ଟକର ଓ ଗୋଟିଏ ଅକ୍ଷରରୁ ଅନ୍ୟ ଅକ୍ଷରକୁ ଚିହ୍ନିବାକୁ ଅଧିକ ସମୟ ଲାଗିଥାଏ।

ପୁଣି ଯଦି କୁହାଯିବ ଯେ ବିଭିନ୍ନ ଭାଷା ଅଞ୍ଚଳରେ ବ୍ୟବହୃତ ହେଉଥିବା ପ୍ରଧାନ ଭାଷାର ଲିପିକୁ ଲିପିହୀନ ବା ଲିପି ନଥିବା ଭାଷାର ଲିପି ଭାବରେ ଗ୍ରହଣ କରାଯିବ

ତେବେ ମଧ୍ୟ ସେହି ଅଞ୍ଚଳର ଶିକ୍ଷାର ମାଧ୍ୟମ ରୂପେ ବ୍ୟବହୃତ ହେଉଥିବା ପ୍ରଧାନ ଭାଷା ସହିତ ଏକାଧିକ ଲିପିହୀନ ଭାଷା ଓ ପ୍ରଧାନ ଭାଷା ସହିତ ରହିଥିବା ଅନ୍ୟ ଗୌଣ ଭାଷାଗୁଡ଼ିକ ଏହାର ବିକାଶରେ ଅନ୍ତରାୟ ହେବେ। ଆହୁରି ମଧ୍ୟ ଗୋଟିଏ ଲିପିହୀନ ଭାଷାର ଲୋକ ବିଭିନ୍ନ ଭାଷା-ଅଞ୍ଚଳରେ ବାସ କରୁଥିବାରୁ ସେହି ଭାଷାର ଏକାଧିକ ଲିପି ତିଆରି ହେବ। ସାନ୍ତାଳ ଭାଷାର ଉଦାହରଣକୁ ପୁଣି ଥରେ ଏଠାରେ ଉଲ୍ଲେଖ କରାଯାଇପାରେ। ଏ କ୍ଷେତ୍ରରେ କୁହାଯିବ ଯେ ଏକାଧିକ ଲିପି ଥିବା ଗୋଟିଏ ଭାଷାର ଉନ୍ନତି ସମ୍ଭବ ନୁହେଁ। ଏହା ଏକ ଗଜା ମରୁଡ଼ି ଅବସ୍ଥା ସୃଷ୍ଟି କରିବ।

ପୃଥିବୀରେ ଭାଷାର ଲିପି ତଥା ଭାଷା ସମସ୍ୟାର ସମାଧାନ ପାଇଁ ବହୁ ବିଭିନ୍ନ ସମୟରେ ଅନେକ ନୂତନ ଚିନ୍ତା ସବୁ କରାଯାଇଛି। ବର୍ତ୍ତମାନ ବି ସେଥିପାଇଁ ନାନା ପରୀକ୍ଷା ହେଉଛି। ଫଳରେ ଆବାସାମା ଲିପି, ନନ୍ଦଗା ଅକ୍ଷର, ଆନ୍ତର୍ଜାତିକ ଲିପି ତଥା ଏସ୍‌ପାରେଣ୍ଟୋ, ଭୋଲାପୁକ, ଇଡ଼ୋ, ଇଣ୍ଟରଲିଙ୍ଗୁଆ ପ୍ରଭୃତି ନୂତନ ଆବିଷ୍କାରଗୁଡ଼ିକର ସୃଷ୍ଟି ହୋଇଛି। କିନ୍ତୁ ଏ ସବୁଗୁଡ଼ିକ ନୂତନ ଆବିଷ୍କାରମାନ ପୂର୍ଣ୍ଣ ସଫଳତା ହାସଲ କରିବାରେ ସକ୍ଷମ ହୋଇଛନ୍ତି ବୋଲି କହିହେବ ନାହିଁ। ବରଂ ଏଗୁଡ଼ିକ ସମସ୍ୟାର ସମାଧାନ ଦିଗରେ ସାହାଯ୍ୟ ନ କରି ସମସ୍ୟା ବୃଦ୍ଧିରେ ସାହାଯ୍ୟ କରିଛନ୍ତି। ଏସ୍‌ପାରେଣ୍ଟୋ ଭାଷା ୧୮୮୭ରୁ ଆରମ୍ଭ ହୋଇ ଆଜି ପର୍ଯ୍ୟନ୍ତ ୮୩ଟି ଦେଶରେ ୧ ଲକ୍ଷରୁ ଅଧିକ ଲୋକଙ୍କ ଦ୍ୱାରା ବ୍ୟବହୃତ ହେଉଛି। ଏ ଭାଷାରେ ପ୍ରାୟ ୧୦,୦୦୦ ବହି ଲେଖାଗଲାଣି। ୧୦୦ଟି ସାମୟିକ ପତ୍ରିକା ପ୍ରକାଶ କରାଯାଉଛି। ଏ ଭାଷାରେ ସେକ୍ସପିୟର, ଡିକେନ୍ସ, ହାନ୍ସ ଆଣ୍ଡାରସନ୍ ଗ୍ରୀମ୍, ରବୀନ୍ଦ୍ରନାଥ, ଗେଟେ, ହୋମର, ଦାନ୍ତେ ପ୍ରଭୃତିଙ୍କର ବହି ଅନୁବାଦ କରାଯାଇଛି। ବାଇବେଲ ଓ ଭଗବତ୍ ଗୀତା ମଧ୍ୟ ଏ ଭାଷାରେ ଅନୁବାଦ ହୋଇଛି। ଏସବୁ ସତ୍ତ୍ୱେ ଏ ଭାଷା ଆନ୍ତର୍ଜାତିକ ସ୍ୱୀକୃତି ଏପର୍ଯ୍ୟନ୍ତ ପାଇପାରି ନାହିଁ। ଭାଷା ବା ଲିପି ସମସ୍ୟାର ସମାଧାନ ପାଇଁ ନୂଆ ବାହାରୁଥିବା ସିଦ୍ଧାନ୍ତଗୁଡ଼ିକ ଏହିପରି ଅଧାବାଟରେ ହିଁ ଅଟକି ରହୁଛନ୍ତି।

ଭାରତର ବହୁ ଭାଷା ଓ ଲିପିହୀନ ଭାଷାର ଲିପିକୁ ଆଖି ଆଗରେ ରଖି ଏ ସମସ୍ୟାକୁ ସହାନୁଭୂତିର ସହିତ ବିଚାରକୁ ନେବା ଦରକାର। ଯେକୌଣସି ଗୋଟିଏ ସମାଧାନ ଆଣିବାକୁ ଚେଷ୍ଟା କଲେ ତାହାର ଭଲ ଓ ମନ୍ଦ ଦୁଇଟି ଦିଗ ରହିଛି। ତେଣୁ ଖାଲି ଦୋଷ ଦେଖିଲେ ସମସ୍ୟାର କୌଣସି ସମାଧାନ ହୋଇ ନ ପାରେ। ଆଜି ଯେତେଗୁଡ଼ିଏ ପ୍ରଧାନ ଭାଷାର ଲିପି ରହିଛି, ସେ ଲିପିଗୁଡ଼ିକର ଇତିହାସ ହଜାର ହଜାର

ବର୍ଷର ପୁରୁଣା। ଏହା ଏକାଦିନକେ ହୋଇନାହିଁ। କେତେ ଘଷି ମାଜି ହୋଇ କେତେ ବାଧାବିଘ୍ନ ଅତକ୍ରମ କରି ଆମ ଲିପିଟି ଆଜି ଆମ ପାଖରେ ପହଞ୍ଚିଛି। ସବୁ ଭାଷାର ଲିପି ପାଇଁ ଏ ପରିଣତି ସମାନ। ନିର୍ଦ୍ଦିଷ୍ଟ ଭାଷାର ଲୋକେ ସେ ଲିପି ବିଷୟରେ ସଚେତନ ହେବା ପୂର୍ବରୁ ହିଁ ତାକୁ ନିଜର କରିସାରିଥାନ୍ତି। କିନ୍ତୁ ଆଜି ଯେତେବେଳେ ଆମେ ସଚେତନ ଭାବରେ କୌଣସି ଭାଷାର ଲିପି ଏକାଦିନକେ ତିଆରି କରିବାକୁ ବା ବାଛିବାକୁ ଯାଉଛେ ସେତେବେଳେ ଆମକୁ ଏକାଧିକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲେ ମଧ ଅସୁବିଧା ଭିତରୁ ସୁବିଧା ଓ ସହଜ ଉପାୟଟିକୁ ଆବିଷ୍କାର କରିବାକୁ ପଡ଼ିବ।

ଭାରତରେ ଭାଷାର ଲିପି ସମସ୍ୟାର ଏହି ପୃଷ୍ଠଭୂମି ଉପରେ ନୂତନ ଲିପି ସୃଷ୍ଟି କରିବା ପାଇଁ ଚେଷ୍ଟା କରିବା ଅପେକ୍ଷା ନିର୍ଦ୍ଦିଷ୍ଟ ଭାଷା-ଅଞ୍ଚଳର ଲିପିକୁ ସେଇ ଅଞ୍ଚଳର ଲିପିହୀନ ଭାଷାଗୁଡ଼ିକର ଲିପି ଭାବରେ ଗ୍ରହଣ କରାଯାଇପାରେ। କିନ୍ତୁ ଏହି ସିଦ୍ଧାନ୍ତର ଅସୁବିଧା ବିଷୟରେ ପୂର୍ବରୁ ସୂଚନା ଦିଆଯାଇଛି। ସେହି ଅସୁବିଧାକୁ ଆଖି ଆଗରେ ରଖି ଏ ପରିକଳ୍ପନାରେ ଆଗେଇବାକୁ ହେବ। ନିର୍ଦ୍ଦିଷ୍ଟ ଅଞ୍ଚଳର ପ୍ରଧାନ ଭାଷାର ଲିପିକୁ ଗ୍ରହଣ କଲେ ନୂଆ ଛପା ଅକ୍ଷର ତିଆରି କରିବାକୁ ପଡୁ ନ ଥିବାରୁ ସେଇ ଭାଷାର ପୁସ୍ତକ ପ୍ରଣୟନ ଓ ପ୍ରକାଶନ ପାଇଁ ଅର୍ଥନୈତିକ ଦିଗରୁ ରାଜ୍ୟ ପକ୍ଷରେ ଏହା ସହଜସାଧ ହେବ। ପ୍ରଧାନ ଭାଷାର ଲିପିକୁ ଗ୍ରହଣ କରିବାକୁ ଲିପିହୀନ ଭାଷାଭାଷୀ ଲୋକଙ୍କ ମନରେ ବିରୋଧ ଭାବ କମ୍ ହେବା ସଙ୍ଗେ ସଙ୍ଗେ ପ୍ରଧାନ ଭାଷାର ପରିବେଶ ଲିପିହୀନ ଭାଷାଭାଷୀଙ୍କୁ ଭାଷାଶିକ୍ଷାରେ ସାହାଯ୍ୟ ମଧ କରିବ।

ଭାରତୀୟ ଭାଷା ବିଜ୍ଞାନୀମାନେ ମଧ ଏହି ମତପୋଷଣ କରନ୍ତି। କେହି Dominant language କଥା କହିଲାବେଳେ କେହି official language କଥା କହନ୍ତି। Dominant language ବା official language କହିଲେ ନିର୍ଦ୍ଦିଷ୍ଟ ଭାଷା ଅଞ୍ଚଳର ପ୍ରଧାନ ଭାଷାକୁ ହିଁ ବୁଝାଏ। କିନ୍ତୁ ପ୍ରଧାନ ଭାଷାକୁ official language କହିବା ପୂରାପୂରି ଠିକ୍ ନୁହଁ। କାରଣ ପ୍ରଧାନ ଭାଷା କେବେଳ ଶିକ୍ଷା ବା ସାହିତ୍ୟର ମାଧମ ହେବା ଛଡ଼ା, ସବୁ ରାଜ୍ୟରେ ସରକାରୀ ସ୍ତରରେ ଏପର୍ଯ୍ୟନ୍ତ ବ୍ୟବହାର ହୋଇପାରି ନାହିଁ। ସରକାରୀ ସ୍ତରରେ ଏପର୍ଯ୍ୟନ୍ତ ବି ସେଇ ଇଂରାଜୀ ଭାଷା ବ୍ୟବହାର ହେଉଛି। ସବୁ ଭାଷାର ଧ୍ୱନି ଏକପ୍ରକାର ହୋଇ ନଥିବାରୁ ଏବଂ ଗୋଟିଏ ଭାଷାର ଲପି କେବଳ ସେହି ଭାଷାର ଧ୍ୱନକୁ ପ୍ରକାଶ କରିବାକୁ ସକ୍ଷମ ହୋଇଥିବାରୁ ଗୋଟିଏ ଭାଷାର ଲପି ଅନ୍ୟ ଭାଷାର ଧ୍ୱନିକୁ ଠିକ୍ ଭାବରେ ପ୍ରକାଶ କରିବାକୁ ସମର୍ଥ ହୋଇ ନ ଥାଏ। ଉଦାହରଣ ସ୍ୱରୂପ ବଙ୍ଗଳା ଭାଷାର

। u । ଧ୍ୱନି କୋକୋବୋରୋକ ଭାଷାର । w । ଧ୍ୱନିକୁ ପ୍ରକାଶ କରିବାକୁ ଅସମର୍ଥ। ଯଦି ଏହାକୁ । u । ଧ୍ୱନି ଦ୍ୱାରା ପ୍ରକାଶ କରାଯାଏ, ତେବେ ତାହା ଭାଷାତତ୍ତ୍ୱର ନିୟମ, ଲିପି ଓ ଧ୍ୱନିର ଅଭେଦ୍ୟ ସମ୍ପର୍କକୁ ପୂରଣ କରିବ ନାହିଁ। ଏହା ସତ। କିନ୍ତୁ ତା ସତ୍ତ୍ୱେ ମଧ୍ୟ ଏକାଧିକ ଭାଷାର ଗୋଟିଏ ଲିପି ପ୍ରଚଳନ ଆମର କେତେକ ପ୍ରଧାନ ଭାଷା ମଧ୍ୟରେ ଯେପରି କରାଯାଇଛି ସେହିପରି ବର୍ତ୍ତମାନ ପରୀକ୍ଷାମୂଳକ ଭାବରେ କେତେକ ଲିପିହୀନ ଭାଷାର ଲିପି ଭାବରେ କେତେକ ଭାଷା-ଅଞ୍ଚଳର ପ୍ରଧାନ ଭାଷାର ଲପିକୁ ନିଆଯାଇ ପାରିଛି। ଉଦାହରଣ ସ୍ୱରୂପ ବଙ୍ଗଳା ଓ ଅସମୀୟା ଭାଷାର ଲିପି ଗୋଟିଏ। ସେହିପରି ତାମିଲ ଓ ମାଲାୟାଲମ ପାଇଁ ଗୋଟିଏ ଏବଂ ହିନ୍ଦୀ ଓ ମରାଠୀ ପାଇଁ ଗୋଟିଏ ଲିପି ପ୍ରଚଳନ ହୋଇଛି। ଲିପି ଏକ ହେବାଦ୍ୱାରା ଭାଷାର କିଛି ଅସୁବିଧା ହେଉନାହିଁ। ଦେଶରେ ଥିବା ଲିପିହୀନ ଭାଷା ପାଇଁ ଲିପି ତିଆରି କରବାରେ ନୂଆଲିପି ତିଆରି ନ କରି ପ୍ରଧାନ ଭାଷାର ଲିପିକୁ ଗ୍ରହଣ କଲେ ଏହାର ସମସ୍ୟା କ୍ରମଶଃ ଦୂର ହୋଇପାରିବ ବୋଲି ଆଶା କରାଯାଉଛି। ଏହା ଦ୍ୱାରା ଅଧିକ ଲିପି ସୃଷ୍ଟି ନ ହୋଇ ଯେଉଁ ୧୫ଟି ପ୍ରଧାନ ଭାଷାର ଲିପି ରହିଛି ସେଗୁଡ଼ିକୁ ଆବଶ୍ୟକତା ଅନୁଯାୟୀ ବ୍ୟବହାର କରି ହେବ। ଲିପିହୀନ ଭାଷା ପାଇଁ ଲିପି ତିଆରି କରିବାରେ ପ୍ରଧାନ ଭାଷାର ଲିପିର ସାହାଯ୍ୟ ନେବା କ୍ଷେତ୍ରରେ ଭାରତରେ ମହୀଶୂର ସ୍ଥିତ 'କେନ୍ଦ୍ରୀୟ ଭାଷା ସଂସ୍ଥାନ'ର ଉଦ୍ୟମ ପ୍ରଶଂସନୀୟ। ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମର ଯୋଜନା ଅନୁଯାୟୀ ବର୍ତ୍ତମାନ ସୁଦ୍ଧା ୩ଟି ଭାଷାର, ଯଥା- ବଙ୍ଗଳା ବା ଅସମୀୟା ଲିପିରେ 'ମଣିପୁରୀ' ଭାଷାକୁ, ଓଡ଼ିଆ ଲିପିରେ 'କୁଭି' ଭାଷାକୁ ଓ ରୋମାନ ଲିପିରେ 'ଆଜମି' ଭାଷାକୁ ଲେଖାଯାଇଛି। ଓଡ଼ିଶାର ଆଦିବାସୀ 'ଜୁଆଙ୍ଗ' ଭାଷାକୁ ମଧ୍ୟ ଓଡ଼ିଆ ଲିପିରେ ଲେଖିବାକୁ ଉଦ୍ୟମ ହେଉଛି। ଯୋଜନାରେ ଅନୁସୃତ ହେଉଥିବା ଲପିହୀନ ଭାଷାର ଲିପିରେ କେତେକ ଧ୍ୱନିଗତ ବୈଶିଷ୍ଟ୍ୟ ପାଇଁ ପ୍ରଧାନ ଭାଷାର ଲିପିରେ ପରିବର୍ତ୍ତନ କରାଯାଇ ସେ ଭାଷାର ଲିପି ତିଆରି ହୋଇଛି। କିନ୍ତୁ ଏହି ଲିପି ଗ୍ରହଣ କରାଯିବା ସଙ୍ଗେ ସଙ୍ଗେ ଏହାକୁ ମଧ୍ୟ ଆଖି ଆଗରେ ରଖାଯାଇଛି ଯେ, ଲିପିହୀନ ଭାଷାରେ ଲୋକେ ପ୍ରଧାନ ଭାଷାର ଲିପିରେ ନିଜ ଭାଷାକୁ ଶିଖି ସାରିବା ପରେ କ୍ରମେ ପ୍ରଧାନ ଭାଷାକୁ ମଧ୍ୟ ଭବିଷ୍ୟତରେ  କରିବେ। ମନେହୁଏ ଏହାର ଉଦ୍ଦେଶ୍ୟ ଏପରି ହୋଇପାରେ ଯେ ସେମାନେ ଭବିଷ୍ୟତରେ ନିଜ ଭାଷାର ଗୌରବକୁ କାଳକ୍ରମେ ପ୍ରଧାନ ଭାଷାରେ ହିଁ ପ୍ରକାଶ କରିବେ, ହୁଏତ ଅନୁବାଦ ଦ୍ୱାରା ବା ନିଜସ୍ୱ ନୂତନ ସୃଷ୍ଟି ଦ୍ୱାରା ବା ଏପରି ମଧ୍ୟ ହୋଇପାରେ ଯେ ପ୍ରଧାନ ଭାଷାର ଲିପିକୁ ଗ୍ରହଣ କରି ନିଜର ଲିପିହୀନ ଭାଷାକୁ ଲେଖିବାର ମାଧ୍ୟମ ରୂପେ ଆୟତ୍ତ କରିବେ। ପରେ ସେଇ ଭାଷାଭାଷୀର ଲୋକେ ନିଜ ଭାଷାକୁ ସାଇତିବା ପାଇଁ ଓ

ନିଜ ଭାଷାର ବିକାଶ ପାଇଁ ସ୍ୱତନ୍ତ୍ର ଉଦ୍ୟମ କରି ପାରିବେ। ଏକ୍ଷେତ୍ରରେ ଏଥିପାଇଁ ଯଥେଷ୍ଟ ଉତ୍ସାହ ଓ ଉଦ୍ୟମ ସରକାରୀ ବା ବେସରକାରୀ ଉଭୟ ସ୍ତରରେ ହେବା ଉଚିତ। ଓଡ଼ିଶାର କେତେଜଣ ପ୍ରସିଦ୍ଧ ଲେଖକ ଓ କବି ଓଡ଼ିଶାର କେତେକ ଆଦବାସୀ ଭାଷାକୁ ଓଡ଼ିଆ ଲିପିରେ ଲେଖି ତାହାର ଓଡ଼ିଆ ଅନୁବାଦ କଲେଣି।

ବର୍ତ୍ତମାନ ସୁଦ୍ଧା ପ୍ରଧାନ ଭାଷାର ଲିପିମାନଙ୍କର ସଂସ୍କାର କାମ ଶେଷ ହୋଇ ନ ଥିବାରୁ ଲିପିହୀନ ଭାଷା ପାଇଁ ନୂତନ ଲିପି ପ୍ରଚଳନ ନ କରି ଯେଉଁ ଲିପି ରହିଛି ସେଗୁଡ଼ିକୁ ଲିପିହୀନ ଭାଷାର ଧ୍ୱନି ଓ ଅନ୍ୟାନ୍ୟ ଆବଶ୍ୟକତା ପୂରଣ ପାଇଁ, ଯେପରି ଧ୍ୱନିର କମ୍ ବେଶୀ ତାରତମ୍ୟ ଦର୍ଶାଇବାକୁ, ନାସିକ୍ୟ ଧ୍ୱନିକୁ ଠିକ୍ ଭାବରେ ପ୍ରକାଶ କରିବାକୁ, ଲେଖାରେ କମା, ପୂର୍ଣ୍ଣଚ୍ଛେଦ ଓ ପାରାଗ୍ରାଫ ପ୍ରଭୃତିକୁ ନିୟମ ଅନୁସାରେ ଅନୁସରଣ କରିବାକୁ ଓ ନୂଆ ଧ୍ୱନିର ଲିପି ପାଇଁ ନିର୍ଦ୍ଦିଷ୍ଟ ଲିପିର ଆବଶ୍ୟକୀୟ ସାହାଯ୍ୟ ଓ ସୁଯୋଗ ନେବା ସଙ୍ଗେ ସଙ୍ଗେ ପ୍ରଧାନ ଭାଷାର ଲିପିରେ ସୀମିତ ଆବଶ୍ୟକୀୟ ପରିବର୍ତ୍ତନ କରିବାକୁ ଉଦ୍ୟମ ହେବା ଉଚିତ।

ଭାରତ ପରି ଏକ ବିକାଶଶୀଳ ରାଷ୍ଟ୍ରର ବହୁ ସମସ୍ୟା ଭିତରେ ନିରକ୍ଷରତା ଓ ତଜ୍ଜନିତ ଶିକ୍ଷାହୀନତା ଏକ ପ୍ରଧାନ ସମସ୍ୟା। ଏହି ସମସ୍ୟାର ଦୂରୀକରଣ ପାଇଁ ବିଭିନ୍ନ ଚିନ୍ତାଧାରା ଭିତରେ ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ଆରମ୍ଭ କରିବା ପ୍ରସ୍ତାବ ଅନ୍ୟତମ। ଆମର ଏତେଗୁଡ଼ିଏ ମାତୃଭାଷା ଥିଲେ ମଧ୍ୟ ମାତୃଲିପି ବୋଲି ତ କିଛି ନାହିଁ। ତେଣୁ ଲିପି କଥା ବିଚାରକଲା ବେଳେ ନୂତନ ଲିପି ସୃଷ୍ଟି କରିବା ଅପେକ୍ଷା ବରଂ ପ୍ରଚଳିତ ଲିପିର ସାହାଯ୍ୟ ନେବା ବାଞ୍ଛନୀୟ। ଲିପି ସମସ୍ୟାର ସମାଧାନ ଭାଷାରେ ରହିଥିବା ଅଭାବ ଓ ଆବଶ୍ୟକତାକୁ ଆଖି ଆଗରେ ରଖି ଅତି ସାବଧାନତାର ସହିତ କରିବାକୁ ପଡ଼ିବ ଓ ରହିଥିବା ସୀମିତ ସମ୍ବଳ ମଧ୍ୟରେ ପ୍ରସ୍ତାବିତ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରିବାକୁ ହେବ।

ଆଜି ଆମେ ଏକବିଂଶ ଶତାବ୍ଦୀରେ ଉପନୀତ। ଉନବିଂଶ ଶତାବ୍ଦୀରେ ଓଡ଼ିଆ ଭାଷାର ଅସ୍ତିତ୍ୱ ପ୍ରତି ଦେଖା ଦେଇଥିବା ବିପଦ ଏବେ ଅପସାରିତ। ତେଣୁ ଆଶା କରାଯିବା କଥା ଯେ ଓଡ଼ିଆ ଭାଷାର ସ୍ଥିତି ସୁଦୃଢ଼ ଭିତ୍ତିଭୂମି ଉପରେ ଅବସ୍ଥାପିତ। ବର୍ତ୍ତମାନ ଭାରତବର୍ଷରେ ପୂର୍ବର ସଂବିଧାନ ସ୍ୱୀକୃତ ୧୫ଟି ପରିବର୍ତ୍ତେ ୨୨ଟି ଭାରତୀୟ ଭାଷା ସଂବିଧାନ ଦ୍ୱାରା ସ୍ୱୀକୃତି ପ୍ରାପ୍ତ। ସେଗୁଡ଼ିକ ହେଲା ପୂର୍ବ ବର୍ଣ୍ଣିତ ୧୫ଟି ଭାଷାର ସହିତ ମୈଥିଳୀ, ବିହାର ପ୍ରଦେଶର; କୋଙ୍କଣୀ ଗୋଆ ଓ ମହାରାଷ୍ଟ୍ରର, ଡୋଗ୍ରୀ, ଜାମ୍ମୁ ଓ କାଶ୍ମୀର ପ୍ରଦେଶାନ୍ତର୍ଗତ, ମଣିପୁରୀ, ମଣିପୁର ପ୍ରଦେଶର; ନେପାଳି, ସିକିମ ପ୍ରଦେଶର; ବୋଡ଼ୋ, ଆସାମ ଓ ମେଘାଳୟ ପ୍ରଦେଶର; ଏବଂ ସାନ୍ତାଳି, ଛତିଶଗଡ଼, ଝାଡ଼ଖଣ୍ଡ ଓ

ଓଡ଼ିଶା ପ୍ରଦେଶର ଏବଂ ହିନ୍ଦୀ ବର୍ତ୍ତମାନ ଭାରତର ୬ଟି ପରିବର୍ତ୍ତେ ୧୧ଟି ରାଜ୍ୟ , ଯଥା- ହିମାଚଳ ପ୍ରଦେଶ, ବିହାର, ଝାଡ଼ଖଣ୍ଡ, ଛତିଶଗଡ଼ ଓ ଆଣ୍ଡାମାନ୍ ନିକୋବର ଦ୍ୱୀପପୁଞ୍ଜ, ଦିଲ୍ଲୀ, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ, ହରିୟାନା, ଉତ୍ତରାଖଣ୍ଡ ଓ ରାଜସ୍ଥାନର ପ୍ରଧାନ ଭାଷା। ନିକଟରେ ଏହି ଏକବିଂଶ ଶତାବ୍ଦୀରେ ଓଡ଼ିଆ ଭାଷା ଶାସ୍ତ୍ରୀୟ ମାନ୍ୟତା ପାଇବାର ସୌଭାଗ୍ୟ ଲାଭ କରିବା ଓଡ଼ିଆଭାଷୀମାନଙ୍କ ପାଇଁ ଗୌରବର ବିଷୟ ନିଶ୍ଚୟ। ଲିପିହୀନ କଥିତ ଆଦିବାସୀ ଭାଷାଗୁଡ଼ିକ ପ୍ରତି ମଧ୍ୟ ବିଶେଷ ଧ୍ୟାନ ଦିଆଯାଇ ଉଭୟ ସରକାରୀ ଓ ବେସରକାରୀ ସ୍ତରରେ ଯଥାସମ୍ଭବ ବୈଜ୍ଞାନିକ ପଦ୍ଧତି ଅନୁସରଣ କରି ବର୍ଣ୍ଣମାଳା ପ୍ରସ୍ତୁତିକରଣ ପ୍ରକ୍ରିୟା ଜାରି ରହିଛି। ଏହି ସଂକଳନରେ ତାହାର କେତୋଟି ସୂଚନା ରହିଛି।

କିନ୍ତୁ ପରିତାପର ବିଷୟ ଏହି ଯେ ଯେଉଁ ଭାଷାର ପ୍ରାଚୀନତା ଦୁଇ ହଜାର ବର୍ଷରୁ ଅଧିକ ଓ ଯାହାର ଅସ୍ତିତ୍ୱ ଆଜି ସୁରକ୍ଷିତ ହେବା କଥା ସେହି ଭାଷାର ଭବିଷ୍ୟତ ପ୍ରତି ପୁଣି ବିପଦ ଦେଖାଦେଇଛି। ସର୍ବପ୍ରାଚୀନ ଓଡ଼ିଆ ଭାଷାର ପ୍ରାଚୀନତା ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀଠାରୁ ଆରମ୍ଭ ହୋଇଥିବାର ପ୍ରମାଣ ପ୍ରାପ୍ତ ହୋଇଥିଲେ ମଧ୍ୟ ଆଜି ପର୍ଯ୍ୟନ୍ତ ଏହି ଭାଷାର ବର୍ଣ୍ଣମାଳା ଏକବିଂଶ ଶତାବ୍ଦୀରେ ମଧ୍ୟ ସ୍ଥିରୀକୃତ ହୋଇପାରିନାହିଁ। ଆମର ପରିଚିତ ଇଂରାଜୀ ଭାଷାର ବହୁ ଦୁର୍ବଳତା ସତ୍ତ୍ୱେ ବର୍ଣ୍ଣମାଳାର ଲିପି ବା alphabet ସଂଖ୍ୟା ମାତ୍ର ୨୬। କିନ୍ତୁ ଓଡ଼ିଆ ଭାଷାର ଉଚ୍ଚାରଣ ପଦ୍ଧତି ସ୍ୱଚ୍ଛ, ଉନ୍ନତ ଓ ଅଧିକ ବୈଜ୍ଞାନିକ ହୋଇଥିବା ସତ୍ତ୍ୱେ ଏବଂ ଉନ୍ନବିଂଶ ଶତାବ୍ଦୀଠାରୁ ଏଥିପ୍ରତି ବିଶେଷ ଗୁରୁତ୍ୱ ଦିଆଯାଇ 'ଲିପି ସଂସ୍କାର' ପାଇଁ ପ୍ରୟାସ ଜାରି ରହିଥିବା ସତ୍ତ୍ୱେ ଆଜି ବି ଏହାର ବର୍ଣ୍ଣମାଳାର ସଂଖ୍ୟା ସ୍ଥିରୀକୃତ ହୋଇ ପାରିନି କିମ୍ବା ଅକ୍ଷର ଗଠନ ପଦ୍ଧତିର ସରଳୀକରଣ ସ୍ଥିରନିଶ୍ଚିତ ହୋଇପାରିନି। ଆଜି ବି ବର୍ଣ୍ଣମାଳାର ଗଠନ ପଦ୍ଧତି ନାନା ସମସ୍ୟା ଜର୍ଜରିତ। ସେଥି ସହିତ ଓଡ଼ିଶାର ଆଦିବାସୀ ଭାଷାଗୁଡ଼ିକର ଲିପି ସମସ୍ୟା ତ ରହିଛି। ପୁଣି ଆଧୁନିକ ଯୁଗରେ କମ୍ପ୍ୟୁଟରର ପ୍ରଚଳନ ଓ ବର୍ଣ୍ଣମାଳାର କମ୍ପ୍ୟୁଟରୀକରଣ ମଧ୍ୟ ଲିପି ସମସ୍ୟାକୁ ଅଧିକ ଜଟିଳ କରିଛି। ଭାଷା ଓ ଲିପି ସଂବନ୍ଧୀୟ ସମସ୍ତ ଜଟିଳତାକୁ ବିଚାରକୁ ନେଇ ସମାଧାନର ସୂତ୍ର ନିର୍ଦ୍ଧାରଣ ହେଉଛି ଆଜିର ଆହ୍ୱାନ।



## ରଘୁନାଥଙ୍କ ଜୀବନ ଦର୍ଶନ :

# ଅଲଚିକି

### ଅର୍ଜୁନ ଚରଣ ହେମ୍ବ୍ରମ୍

ସମୟ ସହିତ ତାଳଦେଇ ମଣିଷର ସୃଜନଶୀଳତାର ବିକାଶ ଘଟିଥାଏ ଯାହା ଘଟିଥିଲା ରଘୁନାଥଙ୍କ ଜୀବନରେ। ପଣ୍ଡିତ ରଘୁନାଥ ମୁର୍ମୁଙ୍କର ମାତୃଭାଷା ସାନ୍ତାଳୀ; ମାତ୍ର ପ୍ରାଥମିକ ଶିକ୍ଷାରମ୍ଭ ବେଳକୁ ସେ ଓଡ଼ିଆ ଭାଷା ଜାଣି ନଥିଲେ। ପ୍ରାଥମିକ ଶିକ୍ଷାର ମାଧ୍ୟମ ଓଡ଼ିଆ ହୋଇଥିବାରୁ ଓଡ଼ିଆ ମାଧ୍ୟମରେ ଶିକ୍ଷାକୁ ପସନ୍ଦ କରୁନଥିଲେ। ସାନ୍ତାଳୀ ଭାଷାରେ ପଢ଼ିବାକୁ ପିତାମାତାଙ୍କ ନିକଟରେ ସବୁବେଳେ ଅଳି କରୁଥିଲେ। ସାନ୍ତାଳୀ ଭାଷାର ଲିପି ନାହିଁ; ତେଣୁ ପାଠପଢ଼ା ସମ୍ଭବ ନୁହେଁ ବୋଲି ବୁଝାଇ ମୁର୍ମୁଙ୍କୁ ବାପା ମା' ସ୍କୁଲ୍ ପଠାଉଥିଲେ, କିନ୍ତୁ ସାନ୍ତାଳୀ ଭାଷାର ଲିପିର ଅଭାବ ତାଙ୍କ ମନକୁ ଆନ୍ଦୋଳିତ କରିଥିଲା। ଅନେକ ସମୟରେ ଏକାକୀ ବସି ଲିପି କଥା ହିଁ ସେ ଭାବୁଥିଲେ।

ପଣ୍ଡିତ ରଘୁନାଥ ମୁର୍ମୁ ନିଜର ସୃଜନଶୀଳତା ଓ ଅକ୍ଲାନ୍ତ ଚେଷ୍ଟା ବଳରେ ୧୯୨୫ ମସିହାରେ ସାନ୍ତାଳୀ ଭାଷାର ଲିଖନ ପ୍ରଣାଳୀ ବାହାର କଲେ। 'ଅଲ' ମାନେ ଲେଖିବା, 'ଚିକି'ମାନେ ଚିହ୍ନ - ଏହି ଲିଖନ ପ୍ରଣାଳୀକୁ 'ଅଲଚିକି' ନାମ ଦେଲେ ସେ। ଲିଖନ ପ୍ରଣାଳୀରେ ୩୦ଟି ଅକ୍ଷର ଓ ୬ଟି ସାଂକେତିକ ଚିହ୍ନ ରହିଛି। ଏହା ହିଁ ସାନ୍ତାଳୀ ଜାତିକୁ ପଣ୍ଡିତ ରଘୁନାଥ ମୁର୍ମୁଙ୍କର ସବୁଠୁ ବଡ଼ ଅବଦାନ। ପ୍ରତ୍ୟେକ ଅକ୍ଷର ଓ ସାଂକେତିକ ଚିହ୍ନକୁ କାଠ ଦେହରେ ଖୋଦେଇକରି ଏକ ହସ୍ତଚାଳିତ ମେସିନ ତିଆରି କରିଥିଲେ। ତାହା ୧୯୩୯ ମସିହା ମୟୂରଭଞ୍ଜ ରାଜ୍ୟର ରାଜ୍ୟସ୍ତରୀୟ ଶିଳ୍ପ ପ୍ରଦର୍ଶନୀରେ ପ୍ରଦର୍ଶିତ ହୋଇଥିଲା। କିନ୍ତୁ ଏହାର ପ୍ରଚାର ଓ ପ୍ରସାର ପାଇଁ ମୟୂରଭଞ୍ଜ ମହାରାଜା ମନ ବଳାଇ ନ ଥିଲେ। ୧୯୪୬ ମସିହାରେ ପଣ୍ଡିତ ମୁର୍ମୁ ସ୍ୱଇଚ୍ଛାରେ ଚାକିରି ଛାଡ଼ି ସ୍ୱଦେଶୀ ଟାଇପ୍ ଫାଉଣ୍ଡାରୀ କଲିକତାରେ ଅଲିଚିକିର ଟାଇପ୍ ତିଆରି କରାଇଲେ। ଲୋକଙ୍କର ସହଯୋଗ ନେଇ ଟାଇପ୍ ଆଉ ଛାପାକଳ ଆଣି ୧୯୪୬ ମସିହାରେ ଜାମସେଦପୁରଠାରେ ଚାନ୍ଦାନ ପ୍ରେସ୍ ପ୍ରତିଷ୍ଠା କଲେ ଓ ଅଲଚିକିରେ ପତ୍ରିକା ଓ ପୁସ୍ତକ ପ୍ରକାଶନ ଆରମ୍ଭ କଲେ।

୧୯୬୪ ମସିହାରେ ଅଲ ସମିତି ଅର୍ଥାତ୍ ଆଦିବାସୀ ସୋସିଓ ଏଜୁକେସ୍‌ନାଲ ଆଣ୍ଡ କଲଚରାଲ ଆସୋସିଏସନ (ଆସେକା) ନାମରେ ରେଜିଷ୍ଟ୍ରଭୁକ୍ତ କରି ସମିତିକୁ ଅଲିଚିକିର ପ୍ରଚାର ପ୍ରସାର ଦାୟିତ୍ୱ ଦେଲେ। ୧୯୯୦ ମସିହାରେ ଭୁବନେଶ୍ୱର ସ୍ଥିତ 'ଟାଇଟମ୍ପା ସାହିତ୍ୟ ଏକାଡ଼େମୀ' ନାମକ ଏକ ସାହିତ୍ୟ ଓ ସଂସ୍କୃତି ଅନୁଷ୍ଠାନ ଅଲଚିକିକୁ ପ୍ରଥମେ କମ୍ପ୍ୟୁଟରୀକରଣ କରାଇଲା। 'ଅଲଚିକି' ହେଉଛି ଏକମାତ୍ର ଉଦ୍‌ଭାବିତ ଆଦିବାସୀ ଲିଖନ ପ୍ରଣାଳୀ, ଯାହା କମ୍ପ୍ୟୁଟର ଭିତ୍ତିଭୂମିରେ ପ୍ରଚଳନ ହୋଇଛି। ୨୦୦୩ ମସିହାରେ ସାନ୍ତାଳୀ ଭାଷା ସମ୍ବିଧାନର ଅଷ୍ଟମ ଅନୁଚ୍ଛେଦରେ ସ୍ଥାନ ପାଇବା ପରେ ଅଲିଚିକି ଆଜି ଭାରତର ଜାତୀୟ ଲିପିରେ ପରିଣତ ହୋଇଛି। 'ଅଲଚିକି' ହିଁ ପଣ୍ଡିତ ରଘୁନାଥ ମୁର୍ମୁଙ୍କର ଜୀବନଦର୍ଶନ। ତାଙ୍କର ସମସ୍ତ ସାହିତ୍ୟ କୃତୀକୁ ସେ ଏହାର ପ୍ରଚାର ପ୍ରସାର ଉଦ୍ଦେଶ୍ୟରେ ରଚନା କରିଥିଲେ। 'ଅଲଚିକି'ରେ ଲୋକଙ୍କ ଆଗ୍ରହସୃଷ୍ଟି କରିବା ପାଇଁ ପ୍ରଥମେ "ଝେଲ ଇଂ ଲାଗିଦ ଅଲ" ଏକ ଲିପି ଶିକ୍ଷା ପୁସ୍ତକ ୧୯୪୬ ମସିହାରେ ଛାପିଥିଲେ। ଭାଷାର ବନାନ ପ୍ରଣାଳୀ ଶିଖିବା ପାଇଁ ତା' ପରେ ପରେ ସେ 'ଅଲ ଚେମେଦ' ନାମକ ପୁସ୍ତକ ୧୯୫୨ ମସିହାରେ ପ୍ରକାଶ କରିଥିଲେ। ଫଳରେ 'ଅଲଚିକି' ଶିଖିବାର ପଥ ପରିଷ୍କାର ହୋଇଥିଲା। ପଣ୍ଡିତ ରଘୁନାଥ ମୁର୍ମୁଙ୍କର ସାହିତ୍ୟକୃତି ସାହିତ୍ୟ ପାଇଁ ଉଦ୍ଦିଷ୍ଟ ନ ଥିଲା। ସାହିତ୍ୟ ଓ ସଂସ୍କୃତିର ପ୍ରସାର ସହିତ ସାନ୍ତାଳୀ ଭାଷାଭାଷୀ ଲୋକମାନଙ୍କ ଭିତରେ ଜାଗରଣ ସୃଷ୍ଟି କରିବା ପାଇଁ ସେ ସାନ୍ତାଳୀ ଲିପି ଲେଖିଥିଲେ। ତାଙ୍କର ଅମର କୃତୀ ମଧ୍ୟରେ ଚାରୋଟି ନାଟକ ପୁସ୍ତକ ଅନ୍ୟତମ। 'ଅଲଚିକି' ଲିପିକୁ ପରିଚିତ କରାଇବା ଏବଂ ଏହାର ଉପାଦେୟତା ଆଲୋଚନା କରିବା ଉଦ୍ଦେଶ୍ୟରେ ସେ 'ବିଦୁଚାନ୍ଦାନ' ନାଟକ ଲେଖିଥିଲେ। ୧୯୫୨ ମସିହାରେ ଆଉ ଏକ ଜନପ୍ରିୟ ନାଟକ 'ଖେରୱାଲ ବିର' ବଙ୍ଗଳା ଲିପିରେ ଛାପିଥିଲେ। ୧୯୭୦ ଦଶକ ବେଳକୁ 'ଅଲଚିକି' ପ୍ରେସ୍ ସମ୍ପୂର୍ଣ୍ଣଭାବେ କାର୍ଯ୍ୟକ୍ଷମ ହୋଇସାରିଥିଲା। ତେଣୁ ୧୯୭୬ରେ 'ଜାଲଗେ ଧନ' ନାମକ ନାଟକ ଅଲଚିକିରେ ଛାପିଲେ। ତାଙ୍କର ଶେଷ ନାଟକ ତାଙ୍କର ମହାପ୍ରୟାଣର ଅନେକ ଦିନ ପରେ ୧୯୯୬ ମସିହାରେ ପ୍ରକାଶ ପାଇଛି। ନାଟକଗୁଡ଼ିକ ଅଲଚିକି ପ୍ରଚାର ଓ ପ୍ରସାର ପାଇଁ ଲେଖାଯାଇଥିଲେ ମଧ୍ୟ, ଏଥିରେ ମୁର୍ମୁଙ୍କର ଅତି ଉଚ୍ଚକୋଟୀର ସାହିତ୍ୟ ପ୍ରତିଭାର ପରିଚୟ ମିଳେ। ବେସରକାରୀ ସଂସ୍ଥା ଓ ବ୍ୟକ୍ତିବିଶେଷ ତାଙ୍କୁ ଅନେକ ସମ୍ମାନ ଉପାଧି ପ୍ରଦାନ କରିଛନ୍ତି କିନ୍ତୁ କେନ୍ଦ୍ର ବା କୌଣସି ରାଜ୍ୟ ସରକାର ଏପର୍ଯ୍ୟନ୍ତ ତାଙ୍କୁ କୌଣସି ସମ୍ମାନ ବା ଉପାଧିରେ ଭୂଷିତ କରିନାହାନ୍ତି। ତତ୍କାଳୀନ ଜନନାୟକ ଜୟପାଲ ସିଂହ

ତାଙ୍କୁ 'ପଣ୍ଡିତ' ଉପାଧି ଦେଇଥିଲେ। ବାରିପଦା ମେଡ଼ିକାଲ କଲେଜକୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶିଳାନ୍ୟାସ କରି 'ପଣ୍ଡିତ ରଘୁନାଥ ମୁର୍ମୁ ମେଡ଼ିକାଲ କଲେଜ' ନାମରେ ନାମିତ କରିଛନ୍ତି; ଏହାହିଁ ପଣ୍ଡିତ ମୁର୍ମୁଙ୍କର ସର୍ବୋଚ୍ଚ ରାଷ୍ଟ୍ରୀୟ ସମ୍ମାନ। ବିଶ୍ୱରେ ପଣ୍ଡିତ ମୁର୍ମୁଙ୍କର 'ଅଲଚିକି' ଏକ ଅନବଦ୍ୟ ସୃଷ୍ଟି ଓ ଭାରତୀୟ ଜାତୀୟ ଭାଷା ସାନ୍ତାଳୀର ଲିଖନ ପ୍ରଣାଳୀ।

**ଆଲ୍ ଚିକି (SANTALI)**
**ᱚᱞ ᱪᱤᱠᱤ**

| | | | | |
|---|---|---|---|---|
| ᱚ ଅ | ᱛ ତ୍ | ᱜ ଗ୍ | ᱝ ଙ | ᱞ ଲ୍ |
| ᱟ ଆ | ᱠ କ୍ | ᱡ ଜ୍ | ᱢ ମ୍ | ᱣ ଓ |
| ᱤ ଇ | ᱥ ସ୍ | ᱦ ହ୍ | ᱧ ଞ୍ | ᱨ ର୍ |
| ᱩ ଉ | ᱪ ଚ୍ | ᱫ ଦ୍ | ᱬ ଣ(ଡଁ) | ᱭ ଯ୍ |
| ᱮ ଏ | ᱯ ପ୍ | ᱰ ଡ୍ | ᱱ ନ୍ | ᱲ ଡ଼୍(ଢ) |
| ᱳ ଓ | ᱴ ଟ୍ | ᱵ ବ୍ | ᱶ v (ଉମ୍) | ᱷ +ହ୍ |
| · | . | ~ | ୨ | – |

| | | | | | | | | | |
|---|---|---|---|---|---|---|---|---|---|
| ᱑ | ᱒ | ᱓ | ᱔ | ᱕ | ᱖ | ᱗ | ᱘ | ᱙ | ᱐ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୦ |



# ହୋ ଜନଜାତି

## ସୁଶାନ୍ତ ମିଶ୍ର

ଭାରତରେ ବସବାସ କରୁଥିବା ଆଦିବାସୀଙ୍କ ମଧ୍ୟରୁ 'ହୋ' ଜନଜାତି ଏକ ପୁରାତନ ଜନଜାତି। ସଂପ୍ରତି ରାଜ୍ୟରେ ବିଭିନ୍ନ ଅଞ୍ଚଳର ୬୨ ପ୍ରକାର ଆଦିବାସୀ, ୧୩ ପ୍ରକାର ଆଦିମ ଅଧିବାସୀ ବାସ କରୁଛନ୍ତି। ଏମାନଙ୍କ ସଂଖ୍ୟା ମୋଟ ଜନସଂଖ୍ୟାର ୨୨ ପ୍ରତିଶତ। ମୟୂରଭଂଜରେ କୋହ୍ଲ, କେନ୍ଦୁଝର ଓ ଯାଜପୁର ଜିଲ୍ଲାରେ ମୁଣ୍ଡା, ଅନୁଗୁଳ ଜିଲ୍ଲାରେ ହୋ, ଦେବଗଡ଼ ଜିଲ୍ଲାରେ କୋଲ୍ ଓ ଅନ୍ୟ ଜିଲ୍ଲାଗୁଡ଼ିକରେ ହୋ, କୋଲ୍, କୋହ୍ଲ, ମୁଣ୍ଡା ଏହିଭଳି ଜନଜାତି ବାସ କରନ୍ତି। ଏମାନଙ୍କର ଜାତି ହୋ, ଭାଷା ହୋ। ଏମାନେ ପରସ୍ପର ଅଭିନ୍ନ। ଓଡ଼ିଶାରେ ଏମାନଙ୍କ ସଂଖ୍ୟା ୧୩ଲକ୍ଷରୁ ଉର୍ଦ୍ଧ୍ୱ। ୧୮୨୧ରୁ ୧୮୩୨ ମଧ୍ୟରେ ହୋମାନେ ଝାଡଖଣ୍ଡ ରାଜ୍ୟର ସିଂହଭୂମି ଅଞ୍ଚଳରୁ ଆସି ଓଡ଼ିଶାରେ ବିଭିନ୍ନ ଜିଲ୍ଲାରେ ବସବାସ କରୁଥିବା କୁହାଯାଏ।

ହୋ ସଂପ୍ରଦାୟର ଅତୀତ ଗୌରବମୟ। ଏହି ଜାତିର ନିଜସ୍ୱ ଲିପି ୱାରାଂଚିତିକୁ ପଣ୍ଡିତ ଲାକ ଭଦ୍ରା ଆବିଷ୍କାର କରିଥିଲେ। ୧୯୮୪ ମସିହାରେ ରାଞ୍ଚି ବିଶ୍ୱବିଦ୍ୟାଳୟରେ ଏବଂ ୨୦୧୧ ମସିହାରେ କୋହ୍ଲାନ ବିଶ୍ୱବିଦ୍ୟାଳୟରେ ହୋ ଭାଷାରେ ସ୍ନାତକୋତ୍ତର ପାଠ୍ୟକ୍ରମ ଖୋଲା ଯାଇଥିଲା ବେଳେ ଝାଡ଼ଖଣ୍ଡ ସରକାର ହୋ ଭାଷାକୁ ଦ୍ୱିତୀୟ ରାଜ୍ୟଭାଷା ମାନ୍ୟତା ଦେଇଛନ୍ତି। କେବଳ ସେତିକି ନୁହେଁ; ଓଡ଼ିଶା ସରକାରଙ୍କ ତଫସିଲଭୁକ୍ତ ଜାତି ଓ ଜନଜାତି ବିଭାଗ ତରଫରୁ ହୋ ଭାଷା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ କାଜରା ସିଂ ବାନ୍ଧିଆ ଓ ମନୋରଂଜନ ତିରିଆଙ୍କୁ ଆଦିବାସୀ ପ୍ରତିଭା ସମ୍ମାନ ପ୍ରଦାନ କରାଯାଇଛି। ତେବେ ଯେଉଁ ଜାତିର ଏଭଳି ମହାନ୍ ସଂସ୍କୃତି ରହିଛି ସେ ଜାତି ଆଜି ସମାଜର ମୁଖ୍ୟସ୍ରୋତଠାରୁ ବହୁ ପଛରେ। ସେମାନଙ୍କର ଲିପି ୱାରାଂଚିତିକୁ ସାମ୍ବିଧାନିକ ସ୍ୱୀକୃତି ମିଳିନାହିଁ। ହୋ ଭାଷାଭାଷୀଙ୍କୁ ସମାଜର ମୁଖ୍ୟସ୍ରୋତରେ ସାମିଲ କରିବା ପାଇଁ ଓଡ଼ିଶା ସରକାର ୱାରାଂଚିତି ଲିପିକୁ ସଂବିଧାନର ଅଷ୍ଟମ ସୂଚୀରେ ସାମିଲ୍ ପାଇଁ ସୁପାରିଶ କରିଥିଲେ ମଧ୍ୟ କେନ୍ଦ୍ର ସରକାର ଏ ପର୍ଯ୍ୟନ୍ତ ଏହି ଲିପିକୁ ସାମ୍ବିଧାନିକ ସ୍ୱୀକୃତି ଦେଇନାହାନ୍ତି। ଏହି ଜନଜାତିର ବିଭିନ୍ନ ପର୍ବପର୍ବାଣି ମଧ୍ୟରେ 'ମାଗେ ପରବ'ବା ସୃଷ୍ଟିର ପର୍ବ, 'ବାଆ ପରବ'ବା ପ୍ରକୃତିର ପର୍ବ, 'ହେରଅ ପରବ'ବା କୃଷିର ପର୍ବ,

'ଯମନାମା ପରବ' ବା ନୂଆଖାଇ ପରବ ପ୍ରମୁଖ। ଏହି ସଂପ୍ରଦାୟର ମୁଖ୍ୟ ପରବ 'ମାଗେ ପରବ' ବା ସୃଷ୍ଟିର ପର୍ବ ମାର୍ଗଶିର ଶୁକ୍ଳ ଅଷ୍ଟମୀଠାରୁ କୃଷ୍ଣ ପ୍ରତିପଦ ପର୍ଯ୍ୟନ୍ତ ପାଳନ କରାଯାଏ। ଏହି ପର୍ବରେ ଆଦିପୁରୁଷ, ଆଦିମାତା, ଦେସାଉଲି ପାଉଁଇ, ଗଣ୍ଡାବଙ୍ଗା, ମାଗେ ବିନ୍ଦିଏରା, ଜାନସାରି ପ୍ରକୃତି ଦେବଦେବୀଙ୍କୁ ପୂଜା କରିଥାନ୍ତି। ପର୍ବପର୍ବାଣି ପାଳନରେ ଶିଆଳିପତ୍ର, ଶାଳପତ୍ର, ଭାଲିଆପତ୍ର, ଗର୍ଭଣା ପତ୍ର, ଆମ୍ବ, ମହୁଲ ଓ ବିଭିନ୍ନ ଫୁଲଫଳଙ୍କୁ ପୂଜା କରାଯାଇ ପ୍ରକୃତିର ଦେବଦେବୀଙ୍କୁ ଅର୍ପଣ କରାଯାଇଥାଏ। ଏମାନଙ୍କ ଧର୍ମକୁ ଦୁପୁକ୍ କୁହାଯାଏ। ଏମାନଙ୍କ ମୃତ୍ୟୁ ସଂସ୍କାର ସଂପୂର୍ଣ୍ଣ ନିଆରା। ଆଦିମ ପରମ୍ପରା ଅନୁଯାୟୀ ପୁରୁଷମାନଙ୍କୁ ପୋତି ଦିଆଯାଉଥିବା ବେଳେ ମହିଳାମାନଙ୍କ ମୃତ୍ୟୁ ହେଲେ ଶବ ସତ୍କାର କରାଯାଇଥାଏ। ମୃତକଙ୍କ ଆତ୍ମାକୁ ଆମନ୍ତ୍ରଣ କରି ଈଶାଣରେ ସ୍ଥାପନ କରି ପୂଜା କରିଥାନ୍ତି ହୋ ମାନେ। ତାହା ପରବର୍ତ୍ତୀ କାଳରେ ତାଙ୍କ ବଂଶରେ ଜନ୍ମ ନେଇଥାଏ ବୋଲି ସେମାନେ ବିଶ୍ୱାସ କରନ୍ତି। ଏମାନଙ୍କର ବିବାହ ସଂସ୍କାରରେ ଏକ ସ୍ୱତନ୍ତ୍ରତା ରହିଛି। ୯ ଦିନ ପୂର୍ବରୁ ବରକନ୍ୟାଙ୍କୁ ତେଲହଳଦୀ ମଖାଯାଏ। ପ୍ରତ୍ୟହ ଗୋଧୂଳି ବେଳାରେ ସପ୍ତକନ୍ୟାଙ୍କ ଦ୍ୱାରା ତେଲହଳଦୀ ମଖାଯାଇ ବନ୍ଦାପନା କରାଯାଇଥାଏ।

| | | | | | |
|---|---|---|---|---|---|
| ଁ | ଅ | ଇ | ଉ | ? | ଯ |
| | ଈ | ଊ | ଏ | ଔ | |
| ଙ୍ | ଗ୍ | କ୍ | ଞ | ଜ୍ | ଚ |
| ଶ୍ | ତ୍ | ଟ୍ | ନ୍ | ଦ୍ | ଡ୍ |
| ମ୍ | ବ୍ | ପ୍ | ହ୍ | ନ୍ | ଡ଼୍ |
| | ର | ଥ | ସ | | |

୧ ୨ ୩ ୪ ୫ ୬ ୭ ୮ ୯ ୧୦

ସାମାଜିକ ପରମ୍ପରା, ପର୍ବପର୍ବାଣି, ଭାଷା, ସଂସ୍କୃତି ଓ ଜୀବନ ଶୈଳୀରେ ହୋ ଜନଜାତିର ସ୍ୱତନ୍ତ୍ରତା ରହିଛି। ପ୍ରାକୃତିକ ପରିବେଶ ମଧ୍ୟରେ ବଢ଼ି ଆସିଥିବା ଏହି ଜନଜାତି ଆଧୁନିକ ସଭ୍ୟତାଠାରୁ ବହୁ ଦୂରରେ। ଜଙ୍ଗଲ ମଧ୍ୟରେ ଏମାନଙ୍କର ଯେତେବେଳେ ନୃତ୍ୟର ଆସର ଜମେ, ସେତେବେଳେ ପକ୍ଷୀର କାକଳି, ଝରଣାର କୁଳୁକୁଳୁ ନାଦ ମଧ୍ୟ ସ୍ତବ୍ଧ ହୋଇଯାଏ।



# ରୋମାନ୍ ଲିପିରେ ମୌଖିକ ଆଦିବାସୀ ଭାଷା

## କ୍ଷେତ୍ରବାସୀ ମାନ୍‌ସେଠ୍

ଆମକୁ ସ୍ୱୀକାର କରିବାକୁ ହେବ, ଇଂରାଜୀ ଭାଷା ଆଜି ବିଶ୍ୱଭାଷାର ମର୍ଯ୍ୟାଦା ପାଇସାରିଛି। ଏହାର ଶବ୍ଦସଂଖ୍ୟା ଓଡ଼ିଆ ଭାଷାଠାରୁ ବହୁଗୁଣରେ ଅଧିକ (ତାରିଖ-୧୦-୧୦-୨୦୧୦ ସୁଦ୍ଧା ଶବ୍ଦ ସଂଖ୍ୟା-ଦଶଲକ୍ଷ)। କିନ୍ତୁ ଭାଷାବିଜ୍ଞାନ ଦୃଷ୍ଟିରୁ ଦେଖିବାକୁ ଗଲେ ଇଂରାଜୀଭାଷା ଓଡ଼ିଆଭାଷା ଠାରୁ କୌଣସି ଗୁଣରେ ଉତ୍କୃଷ୍ଟ ବୋଲି କହି ହେବନି। ଏହାର ଉଚ୍ଚାରଣ ଶୈଳୀରେ କୌଣସି ଧରାବନ୍ଧା ନିୟମ ନାହିଁ। 'A' କେଉଁଠି 'ଅ'ଭଳିତ କେଉଁଠି 'ଆ' ଭଳି ଉଚ୍ଚାରିତ ହୋଇଥାଏ। 'T' 'ଟ', 'ତ', 'ଚ' ଓ 'ସ' ଭଳି ବହୁବିଧ ଧ୍ୱନିର ପ୍ରତିନିଧିତ୍ୱ କରୁଥିବାର ଦେଖାଯାଏ। 'PUT' 'ପୁଟ୍' ଉଚ୍ଚାରିତ ହେଉଥିବା ବେଳେ 'BUT' 'ବଟ୍' ହୋଇଥାଏ। 'Rough' (ରଫ୍) ଶବ୍ଦରେ ଶେଷ ଦୁଇବର୍ଣ୍ଣ ଯଥା- 'G' ଓ 'H' ମିଶି 'ଫ' ଧ୍ୱନି ସ୍ଥାନରେ ବ୍ୟବହୃତ ହୋଇଥିବା ଅଦ୍‌ଭୂତ ଦୃଷ୍ଟାନ୍ତମାନ ଦେଖିବାକୁ ମିଳିଥାଏ। ଏହାର ପରିଣାମ ସ୍ୱରୂପ କୋରାପୁଟ ଜିଲ୍ଲାର ଦୁରୁଆ ଜନଜାତିଙ୍କୁ ଇଂରାଜୀରେ 'Dharua' ଲେଖିବା ଫଳରେ ପରବର୍ତ୍ତୀ ସମୟରେ ତାହା 'ଧରୁଆ' ଓ ଶେଷରେ 'ଧାରୁଆ', 'ଡିଡ଼ାୟୀ'କୁ 'Didayi' 'ଦିଦାୟୀ' ଭାବରେ 'ମୁରିଆ' (Muria) କୁ 'ମାଡ଼ିଆ'/ 'ମାରିଆ' ଏବଂ 'ଭତ୍ରା' (Bhatra) କୁ 'ଭତଡ଼ା' / 'ଭତ୍‌ଡ଼ା' ଭାବରେ ଉଚ୍ଚାରଣ କରିବା ଫଳରେ ସେମାନଙ୍କୁ ନାହିଁ ନ ଥିବା ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଛି। କନ୍ଧମାଳର ଅନ୍ୟତମ ଦେଶଭକ୍ତ 'ରିନ୍ଦୋ ମାଝି' (କନ୍ଧମାଳ ମାଟିରେ ଜନ୍ମ ଓ କଳାହାଣ୍ଡି ମାଟିରେ ଶହୀଦ)ଙ୍କ ନାମ ଇଂରାଜୀରେ (Rendo Majhi) ଲେଖାଯାଇଥିବା ହେତୁ ଆଜି ତାଙ୍କୁ ଲୋକେ 'ରିଣ୍ଡୋ ମାଝି' ବୋଲି ହିଁ ଜାଣନ୍ତି। ଆଗାମୀ ଦିନରେ ଅନ୍ୟତମ ସ୍ୱାଧୀନତା ସଂଗ୍ରାମୀ 'Birsha Munda' ଙ୍କୁ କେହି ଯେ 'ବିର୍ସା ମନ୍ଦ' ନ କହିବେ ଏକଥା କହିହେବ ନାହିଁ। ଏଭଳି ଅନିୟମିତତା ଓଡ଼ିଆ ଭାଷାରେ ଦେଖିବାକୁ ମିଳେ ନାହିଁ। ଯେଭଳି ଉଚ୍ଚାରଣ କରାଯାଏ ସେହିଭଳି ଲେଖାଯିବା ଓଡ଼ିଆ ଭାଷାର ବିଶେଷତ୍ୱ।

ପୃଥିବୀରେ ମୋଟ ୭୦୦୦ରୁ ଅଧିକ ସଂଖ୍ୟକ ଭାଷା ମଧ୍ୟରୁ ତାହାର କେବଳ ଚାରି ପ୍ରତିଶତ ଭାଷାକୁ ୯୬ ପ୍ରତିଶତ ଲୋକେ କହୁଥିବା ବେଳେ ୯୬ ପ୍ରତିଶତ ଭାଷା

ମାତ୍ର ଶତକଡ଼ା ଚାରି ସଂଖ୍ୟକ ଲୋକଙ୍କ ବ୍ୟବହାର ମଧ୍ୟରେ ସୀମିତ ହୋଇରହିଯାଇଛି। ପୁଣି ଏହି ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କ ଦ୍ୱାରା ବ୍ୟବହୃତ ଭାଷାରେ ଗୋଟିଏ ପରେ ଗୋଟିଏ ଭାଷାର ଚାପ ସର୍ବଦା ରହିଆସିଛି। ଏହାକୁ ବିଦ୍ୱାନମାନେ ଭାଷାତାତ୍ତ୍ୱିକ ସାମ୍ରାଜ୍ୟବାଦ ବା 'Linguistic imperialism ଆଖ୍ୟା ଦେଇଥାନ୍ତି। ଏଭଳି ଉଦ୍‌ବେଗଜନକ ପରିସ୍ଥିତିରେ ଆଦିବାସୀ ଭାଷା ସାହିତ୍ୟ ଯେ କେତେଦୂର ସଙ୍କଟାପନ୍ନ ତାହା ସହଜରେ ଅନୁମାନ କରାଯାଇପାରେ। ଏହି ଧାରଣାର ବଶବର୍ତ୍ତୀ ହୋଇ ଆଦିବାସୀ ଭାଷାଭାଷୀ ଲୋକେ ଆଞ୍ଚଳିକ ଭାବରେ ବିକଶିତ ଭାଷା / ଇଂରାଜୀ ଭାଷାକୁ ଆବୋରି ନେଉଥିବା ଦେଖିବାକୁ ମିଳୁଛି।

ଓଡ଼ିଆ ବା ଅନ୍ୟାନ୍ୟ ଲିପିବିହୀନ କଥିତ ଭାଷାକୁ ଇଂରାଜୀ ଅକ୍ଷର ବ୍ୟବହାରକରି କେଉଁପରି ଭାବରେ ଲେଖିଲେ ତାହାର ଉଚ୍ଚାରଣ ଠିକ୍ ଭାବେ କରାଯାଇପାରିବ ଏକଥା ମୋ' ମୁଣ୍ଡକୁ ୧୯୯୫-୯୬ ମସିହାରୁ ଜୁଟିଲାଣି। ସେ ସମୟରେ ମୁଁ ସ୍ଥାନୀୟ (କନ୍ଧମାଳ) କୁଟିଆକନ୍ଧ ଭାଷାରେ ବୋଲା ହେଉଥିବା ସୃଷ୍ଟି ରହସ୍ୟ ଗାଥାର ସଂଗ୍ରହ/ଅନୁଧ୍ୟାନ କାମ ଆରମ୍ଭ କରିଥାଏ। ଦେଖିଲି କୁଟିଆ କନ୍ଧ ଭାଷାକୁ ଓଡ଼ିଆ ଅକ୍ଷରରେ ଲେଖିବାରେ ସେପରି କିଛି ଅସୁବିଧା ହେଉନାହିଁ। କିନ୍ତୁ ଇଂରାଜୀ ଭାଷାନ୍ତର କରିବାକୁ ଯାଇ ଦେଖିଲି ଭାଷାଟିର ଅନେକ ଶବ୍ଦ ଓ ବିଷୟ ଅନ୍ତର୍ଗତ ନାମଧାମ ଗୁଡ଼ିକର ଉଚ୍ଚାରଣଗତ ବିଶେଷତ୍ୱକୁ ଅକ୍ଷୁଣ୍ଣ ରଖା ଯାଇପାରୁନାହିଁ। ମୋର ପରିକଳ୍ପନାରେ ଏହା ଏକ ମୁଖ୍ୟ ପ୍ରତିବନ୍ଧକ ହୋଇ ଦେଖାଦେଲା। ଏହା ଉପରେ ଅନେକଦିନ ଚିନ୍ତାକରିବା ପରେ ମୁଁ କିଛି ସଂକେତ ଚିହ୍ନ (CIPHER) ନିର୍ଣ୍ଣୟ କଲି। ତାହାକୁ ମୋର କାମରେ ଆଜିଯାଏଁ ସଫଳତାର ସହିତ ପ୍ରୟୋଗ କରିଚାଲିଛି।

ଭାଷା ଭାବବ୍ୟକ୍ତ କରିବାର ଏକ ବଳିଷ୍ଠ ଅବଲମ୍ବନ ହୋଇଥିବା ବେଳେ ଲିପି ତାହାକୁ ପୋଥିକୃତ କରିବାର ଏକ ମାଧ୍ୟମ ମାତ୍ର। ଆଦିବାସୀ ଭାଷା ମଧ୍ୟରୁ ଏ ଯାଏଁ ସାନ୍ତାଳ, କୁଇ ଓ ଶବର ପ୍ରଭୃତି କେତୋଟି ଭାଷାରେ ଅବଶ୍ୟ ନିଜସ୍ୱ ଲିପି ସୃଷ୍ଟି କରଯାଇଛି। କିନ୍ତୁ ସେଗୁଡ଼ିକ ସମ୍ପୃକ୍ତ ଭାଷା ପରିବାରର ସମସ୍ତଙ୍କ ଦ୍ୱାରା ଆଦୃତ ହୋଇପାରି ନାହିଁ। କାରଣ କୌଣସି ଏକ ନିର୍ଦ୍ଦିଷ୍ଟ ଲିପିକୁ ସମସ୍ତେ ସର୍ବସମ୍ମତିକ୍ରମେ ଗ୍ରହଣ କରିବା ସପକ୍ଷରେ ନାହାନ୍ତି। ଫଳରେ ଏସ୍.ପି. ମାଙ୍କାଇଙ୍କର ମାତାର୍ ବନମ୍ ନାମରେ ଶବର ଲିପି ଥିବା ସତ୍ତ୍ୱେ ରୋମାନ୍ (ଇଂରାଜୀ) ଲିପି ଆଧାରରେ ଅନ୍ୟ ଏକ ଲିପିକୁ ବ୍ୟବହାର କରାଯାଉଥିବାର ଦେଖାଯାଉଛି। ସାନ୍ତାଳୀ ଭାଷା କ୍ଷେତ୍ରରେ ରଘୁନାଥ ମୁର୍ମୁଙ୍କର ଅଲଚିକି

ସମ୍ବିଧାନର ଅଷ୍ଟମ ତାଲିକା ଅନ୍ତର୍ଭୁକ୍ତ ହୋଇସାରିଥିଲେ ହେଁ କେତେକ ରୋମାନ୍ ଲିପି ଆଦିକୁ ନେଇ ସଉରା ଭାଷା ସାହିତ୍ୟକୁ ଲେଖିବାର ଉଦ୍ୟମ କରୁଥିବା ଦୃଷ୍ଟାନ୍ତମାନ ଦୃଷ୍ଟିଗୋଚର ହୋଇଛି। ଓଡ଼ିଶାର ଅନ୍ୟତମ ପ୍ରମୁଖ ଜନଜାତି 'ହୋ' ଭାଷାରେ ମଧ ଡ. ଲାକ ବଦରାଙ୍କ ଦ୍ୱାରା ୧୯୩୯ ମସିହାରୁ 'ୱାରଁଚିତି' ନାମରେ 'ହୋ ଲିପି' ପ୍ରଣୟନ କରାଯାଇସାରିଛି। ସେଥିରେ ମୋଟ ୧୦ଟି ସ୍ୱରବର୍ଣ୍ଣ (ବିସର୍ଗ, ଚନ୍ଦ୍ରବିନ୍ଦୁ ସହିତ) ଓ ୨୧ଟି ବ୍ୟଞ୍ଜନ ବର୍ଣ୍ଣ (ଅନୁସ୍ୱାର ସହିତ) ନିର୍ଦ୍ଧାରିତ ହୋଇଛି। ସାମାନ୍ୟ ଆଞ୍ଚଳିକ ତାରତମ୍ୟ ଛଡ଼ା କୁଇ (କନ୍ଧମାଳ) ଏବଂ କୁଭି (କୋରାପୁଟ, ଗଜପତି) ଦେଖିବାକୁ ଗଲେ ଗୋଟିଏ ଭାଷା। ଏ ଭାଷାଟିରେ ଏଯାବତ୍ ମୋଟ ଚାରି ପ୍ରକାର ଲିପି ଉଦ୍ଭାବିତ ହୋଇଥିବା କଥା ଜାଣିବାକୁ ମିଳେ। ତାହାର ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦାନ କରାଗଲା-

୧. ଦୟାନିଧି ମଳିକ- ବେଟିକଲା, କନ୍ଧମାଳ-କୁଇଲିପି
୨. ଦୀନବନ୍ଧୁ କହଁର- ଫିରିଙ୍ଗିଆ, କନ୍ଧମାଳ-କୁଇଲିପି
୩. ବିଶ୍ୱନାଥ ପ୍ରଧାନ- ସାର୍ତ୍ତାଗୁଡ଼ା, କନ୍ଧମାଳ-କୁଇଲିପି
୪. ଦାସୁରାମ ମାଲେକା- ଗଜପତି-କୁଇଲିପି (କୁଇଅରା)

ଉପରୋକ୍ତ ଚାରିଗୋଟି କୁଇଲିପି ଗୁଡ଼ିକୁ ଅନୁଧ୍ୟାନ କଲେ ଦୟାନିଧି ମଳିକଙ୍କର ଲିପି ଦେବନାଗରୀ ଲିପି ଢାଞ୍ଚାରେ, ଦୀନବନ୍ଧୁ କହଁରଙ୍କର ତାମିଲ୍ ଲିପି ଶୈଳୀରେ ଏବଂ ଦାସୁରାମ ମାଲେକାଙ୍କର ତେଲୁଗୁ ଲିପିର ଛାପ ପଡ଼ିଥିବା ଭଳି ଅନୁମିତ ହୋଇଥାଏ। ଅନ୍ୟପକ୍ଷରେ ବିଶ୍ୱନାଥ ପ୍ରଧାନଙ୍କ ଲିପିଟି କୁଇ ଜନଜୀବନରେ ବ୍ୟବହୃତ ଉପକରଣ ତଥା ଫଳମୂଳ ଇତ୍ୟାଦି ଉପରେ ଆଧାରିତ ବୋଲି ସେ ଦାବି କରିଥାନ୍ତି।

ଏହା ସେସବୁ ଭାଷାଭାଷୀ ଅଞ୍ଚଳର ଭାଇଭଉଣୀଙ୍କୁ ଏକ ସ୍ୱତନ୍ତ୍ର ପରିଚିତି ପ୍ରଦାନ କରିଥିଲେ ହେଁ ସମ୍ପୃକ୍ତ ଜନଗୋଷ୍ଠୀ ବହିର୍ଭୂତ ପାଠକଙ୍କୁ ଆକର୍ଷିତ କରିବାରେ ସଫଳ ହୋଇପାରି ନାହିଁ। ଅତଏବ ଏଭଳି ପରିସ୍ଥିତିରେ ଆମକୁ ଆଦିବାସୀ ଭାଷା ଓ ତନ୍ମଧସ୍ଥ ମୌଖିକ ସାହିତ୍ୟକୁ ସାର୍ବଜନୀନ କରିବାକୁ ହେଲେ ଏକ ଲୋକପ୍ରିୟ ଲିପିର ଆଶ୍ରୟ ନେବା ନିହାତି ଜରୁରୀ। ଓଡ଼ିଆ ଲିପିକୁ ବ୍ୟବହାର କରି ଓଡ଼ିଶାର ସମସ୍ତ ଆଦିବାସୀ ଭାଷାକୁ ଲେଖି ପ୍ରାୟ ନିଖୁଣ ଉଚ୍ଚାରଣ କରାଯାଇପାରେ। କିନ୍ତୁ ଏହାଦ୍ୱାରା ଆଦିବାସୀ ମୌଖିକ ପରମ୍ପରା ମଧ୍ୟରେ ପ୍ରଚଳିତ ଲୋକଜ୍ଞାନ ଓଡ଼ିଆ ପାଠକ ମହଲରେ ହିଁ ସୀମିତ ହୋଇରହିଯିବ। ଏଣୁ ଏ ପରିପ୍ରେକ୍ଷୀରେ ଆମକୁ ଆଜିର ଜଗତିକରଣ ଯୁଗରେ ବିଶ୍ୱଦରବାରରେ ପହଞ୍ଚିବାକୁ ହେଲେ ରୋମାନ୍ ଲିପିର ଆଶ୍ରୟ ନେବା ଆବଶ୍ୟକ। କିନ୍ତୁ

ସେ ଲିପି ମଧ୍ୟରେ ଥିବା ଉଚ୍ଚାରଣଗତ ଅନିୟମିତତାକୁ ଦୂର କରିବାକୁ ହେଲେ ତା' ସହିତ କିଛି ସାଂକେତିକ ଚିହ୍ନ ବ୍ୟବହାର କରିବା ଅପରିହାର୍ଯ୍ୟ ମନେହୁଏ। ଏଠାରେ କୁଟିଆ କନ୍ଧ ଜନଜାତି ଦ୍ୱାରା ବ୍ୟବହୃତ ସ୍ୱର ଏବଂ ବ୍ୟଞ୍ଜନ ଧ୍ୱନି ଆଦିକୁ ରୋମାନ୍ ଲିପିଦ୍ୱାରା କିପରି ଲେଖାଯାଇପାରେ ଓଡ଼ିଆ ବର୍ଣ୍ଣମାଳା ଅନୁସରଣରେ ତାହାର ଏକ ତାଲିକା ପ୍ରସ୍ତୁତ କରାଯାଇଅଛି। ଯଥା -

| | | | |
|---|---|---|---|
| ଅ | ଆ | ଇ | ଈ |
| A | A | I | EE |
| ଉ | ଊ | ଏ | ଓ |
| U | OO | E | O |

ଆବଶ୍ୟକ ସ୍ଥଳେ 'ଐ' = AI ଏବଂ 'ଔ' = OU ଲେଖାଯାଇପାରେ। 'ଅ', 'ଆ' ଏବଂ 'ଏ' ଇତ୍ୟାଦି ସ୍ୱରଧ୍ୱନିର ଦୀର୍ଘ ଉଚ୍ଚାରଣ ଆଦିବାସୀ ଭାଷାମାନଙ୍କରେ ବ୍ୟବହୃତ। ଏହା ଅବଶ୍ୟ ଓଡ଼ିଆ ଭାଷା ମଧ୍ୟରେ ଦେଖାଯାଏ ନାହିଁ। ଏଣୁ ଏସବୁ ଉଚ୍ଚାରଣ ପାଇବାକୁ ହେଲେ, ସମ୍ପୃକ୍ତ ସ୍ୱର ଧ୍ୱନି ଉପରେ (ଡାହାଣ ପାର୍ଶ୍ୱରେ) ଏକ ଉଦ୍ଧୃତି ଚିହ୍ନ ବ୍ୟବହାର କରାଯାଇପାରେ।

**ଓଡ଼ିଆ ରୋମାନ୍ ଆଦର୍ଶରେ କୁଇ ଲିପି :**

| | | | | |
|---|---|---|---|---|
| କ | ଖ | ଗ | ଘ | ଙ |
| Ka | XX | Ga | Xx | Xx |
| ଚ | ଛ | ଜ | ଝ | ଞ |
| Cha | xx | Ja | xx | xx |
| ଟ | ଠ | ଡ/ଡ଼ | ଢ/ଢ଼ | ଣ |
| Ta | xx | Da/D.a | xx | N.a |
| ତ | ଥ | ଦ | ଧ | ନ |
| Ta | XX | Da | xx | Na |
| ପ | ଫ | ବ | ଭ | ମ |
| Pa | xx | Ba | xx | Ma |
| ର | ଲ/ଳ | ୱ | ହ | ସ |
| Ra | La/xx | wa | Ha | Sa |

ସମସ୍ତ ମହାପ୍ରାଣ ଧ୍ୱନି ସମେତ 'ଯ', 'ୟ', 'ଶ' ଏବଂ 'ଷ'ର ବ୍ୟବହାର ଆଦିବାସୀ ଭାଷା ମଧ୍ୟରେ ପ୍ରାୟ ଦେଖିବାକୁ ମିଳେ ନାହିଁ। କଥିତ ଭାଷା ହେତୁ 'ଯ'-'ଇ' ଭଳି, 'ୟ'-'ଇଅ' ଏବଂ 'ଶ' / 'ଷ'-'ସ' ଭଳି ଉଚ୍ଚାରିତ ହୋଇଥାଏ। ପ୍ରଦତ୍ତ ତାଲିକା ମଧ୍ୟରେ କୁଟିଆକନ୍ଧ ଭାଷା ମଧ୍ୟରେ ବ୍ୟବହୃତ ହେଉନଥିବା ଧ୍ୱନି ଗୁଡ଼ିକ ତଳେ 'xx' ସଂକେତ ଦ୍ୱାରା ଚିହ୍ନିତ କରାଯାଇଅଛି।

ଏହାଦ୍ୱାରା ଓଡ଼ିଆ ବର୍ଣ୍ଣମାଳା ମଧ୍ୟରୁ 'ନ' ଓ 'ଣ', 'ଲ' ଓ 'ଳ', 'ଡ' ଓ 'ଦ', 'ଣ୍ଡ' ଓ 'ନ୍ଦ', 'ଟ' ଓ 'ତ' ଇତ୍ୟାଦି ଧ୍ୱନିଗୁଡ଼ିକ ଇଂରାଜୀ ବର୍ଣ୍ଣଦ୍ୱାରା ଲେଖି ନିର୍ଭୁଲ ଭାବେ ଉଚ୍ଚାରଣ କରିବାରେ କୌଣସି ଅସୁବିଧା ରହୁନାହିଁ। ମୋର ନିର୍ଦ୍ଧାରିତ ସଂକେତଚିହ୍ନ ଦେଖିବାକୁ ଗଲେ ଅତି ସରଳ। ଏହା ସ୍ଥଳଭେଦରେ ଗୋଟିଏ ବା ଦୁଇଟି ବିନ୍ଦୁ ମାତ୍ର। କେବଳ ଭିନ୍ନ ଭିନ୍ନ ଇଂରାଜୀ ବର୍ଣ୍ଣରେ ସେଗୁଡ଼ିକର ପ୍ରୟୋଗ ବିଧିକୁ ଲକ୍ଷ୍ୟ କରି ମନେ ରଖିବା ଦରକାର। କୌଣସି ବର୍ଣ୍ଣର ପ୍ରଥମ ବିକଳ୍ପ ଉଚ୍ଚାରଣ ପାଇବା ପାଇଁ ସେହି ବର୍ଣ୍ଣର ଡାହାଣ ପାର୍ଶ୍ୱରେ ଗୋଟିଏ ବିନ୍ଦୁ ଦେବାକୁ ହୋଇଥାଏ, ଯଥା- A = ଆ, D.a = ଡ଼, L.a = ଳ, N.a = ଣ, T.a = ତ। ଠିକ୍ ସେହିପରି ଦ୍ୱିତୀୟ ବିକଳ୍ପ ପାଇବା ପାଇଁ ବର୍ଣ୍ଣର ଡାହାଣରେ ଯଥା ଚିହ୍ନ ଭଳି ଦୁଇଟି ବିନ୍ଦୁ ବ୍ୟବହାର କରିବାକୁ ହେବ ଯଥା- D.a ଦ N : = ˚ (ଅନୁସ୍ୱାର)। ଇଂରାଜୀ ବର୍ଣ୍ଣମାଳାରେ N ଗୋଟିଏ ମାତ୍ର ବର୍ଣ୍ଣ ଯାହା 'ନ', 'ଣ' 'ଂ' (ଅନୁସ୍ୱାର), ଓ ' ଁ ' (ଚନ୍ଦ୍ରବିନ୍ଦୁ) ଭଳି ସର୍ବାଧିକ ଚାରୋଟି ଧ୍ୱନିର ପ୍ରତିନିଧିତ୍ୱ କରୁଥିବା ଦେଖିବାକୁ ମିଳେ। ଏ ଦୃଷ୍ଟିରୁ ଚନ୍ଦ୍ରବିନ୍ଦୁ ଚିହ୍ନ ଏହାର ତୃତୀୟ ବିକଳ୍ପ। ଚନ୍ଦ୍ରବିନ୍ଦୁର ଉଚ୍ଚାରଣ ପାଇଁ N ର ଡାହାଣକୁ କ୍ରମାନ୍ୱୟରେ ଦୁଇଟି ବିନ୍ଦୁ ବ୍ୟବହାର କରିବା କଥା ସ୍ଥିର କରାଯାଇଛି। ଯଥା- 'D:i- an... = ଦିଅଁ। ଏହା ବ୍ୟତୀତ 'ସ', 'ଶ' ଓ 'ଷ'; 'ଜ' ଓ 'ଯ'; 'ଗ୍ୟ' ଓ 'ଜ୍ଞ', ମଧ୍ୟରେ ଉଚ୍ଚାରଣଗତ ତାରତମ୍ୟ ଉପରେ କେହି ଗୁରୁତ୍ୱାରୋପ କରୁନଥିବା ଦେଖାଯାଉଛି। ତଥାପି ଶୁଦ୍ଧ ବନାନ ଲେଖିବା ପାଇଁ 'ସ' = Sa, 'ଶ'= S.a ଓ 'ଷ' = Sh.a, 'ଜ' = 'Ja' ଓ 'ଯ' = J.a 'ଗ୍ୟ' = Gya ଓ 'ଜ୍ଞ' = G.ya ଲେଖିବା ଉଚିତ। ଦୀର୍ଘ 'ଇ' (ୀ) କାର ଏବଂ ଦୀର୍ଘ 'ଉ' ( ୂ)କାର ବ୍ୟତୀତ ଅନ୍ୟାନ୍ୟ ସ୍ୱରବର୍ଣ୍ଣ ସଂଯୁକ୍ତ ବ୍ୟଞ୍ଜନବର୍ଣ୍ଣାଦିର ଦୀର୍ଘ ଉଚ୍ଚାରଣ ପାଇବା ପାଇଁ ଗୋଟିଏ ଉଦ୍ଧୃତ ଚିହ୍ନ ବ୍ୟବହାର କରାଯାଇପାରେ। ଏ ସଂକ୍ରାନ୍ତରେ ସବିଶେଷ ଅବଧାରଣା ନିମନ୍ତେ ସଂଯୁକ୍ତ ଶବ୍ଦ ଗଠନ ତାଲିକାଟିକୁ ଅନୁଧ୍ୟାନ କରି ଦେଖନ୍ତୁ।

ଏତଦ୍‌ବ୍ୟତୀତ ନିଶ୍ଚିତ ଶୁଦ୍ଧ ଉଚ୍ଚାରଣ ପାଇବା ପାଇଁ ଅନୁସରଣ କରିବାକୁ ଥିବା ଅନ୍ୟ କେତୋଟି ନିୟମ ନିମ୍ନରେ ପ୍ରଦତ୍ତ :

୧. ଅକାରାନ୍ତ ଶବ୍ଦ ପାଇଁ ଶେଷରେ A ବ୍ୟବହାର କରନ୍ତୁ। କିନ୍ତୁ ଶବ୍ଦର ଶେଷ ବର୍ଣ୍ଣରେ ହଳନ୍ତ ଥିଲେ ଆଦୌ A ବ୍ୟବହାର କରନ୍ତୁ ନାହିଁ।

୨. କୌଣସି ଶବ୍ଦରେ କ୍ରମାନ୍ୱୟରେ ଲାଗିଲାଗି ଥିବା ଦୁଇ ବା ତତୋଧିକ ସ୍ୱରବର୍ଣ୍ଣ (Vowel) ଭିନ୍ନ ଭିନ୍ନ ଦୁଇଟି ଧ୍ୱନି (Syllable)କୁ ପ୍ରତିନିଧିତ୍ୱ କରୁଥିଲେ ସେ ଦୁଇବର୍ଣ୍ଣ ମଧ୍ୟରେ ଗୋଟିଏ ସଂଯୋଜକ ଆଭୂମିରେଖ (Hypen) ଦିଅନ୍ତୁ। ଏହାଦ୍ୱାରା 'ଐ'କାର ଓ 'ଔ' କାର ଜନିତ ଉଚ୍ଚାରଣ ଭ୍ରମ ଉପୁଜିବା ଆଶଙ୍କା ରହିବ ନାହିଁ। ପ୍ରଦତ୍ତ ଶବ୍ଦ ଗଠନ ତାଲିକାରେ ନମୁନା ମଧ୍ୟରୁ 'କାଉ' = (Ka.-u), 'କାଇଁଚ' = (Ka.-...n..cha) ଇତ୍ୟାଦିକୁ ଲକ୍ଷ୍ୟ କରନ୍ତୁ।

୩. 'ବ' ସ୍ଥାନରେ 'Ba' ଓ V ଉଭୟକୁ ବ୍ୟବହାର କରିପାରିବେ। କିନ୍ତୁ 'ଭ' ସ୍ଥାନରେ Bha ଛଡ଼ା ମୂଳ ଇଂରାଜୀ ଶବ୍ଦ ହୋଇନଥିଲେ Va ବ୍ୟବହାର କରନ୍ତୁ ନାହିଁ।

୪. ମୂଳ ଇଂରାଜୀ ଭାଷାରେ ଥିବା ଉଚ୍ଚାରଣଗତ ବୈଶିଷ୍ଟ୍ୟ/ବ୍ୟତିକ୍ରମ ଗୁଡ଼ିକୁ ଆଖିଆଗରେ ନରଖି ନିର୍ଦ୍ଦେଶିତ / ସଂକେତିତ ବର୍ଣ୍ଣଗୁଡ଼ିକୁ ଠିକ୍ ବିନିଯୋଗ ଦ୍ୱାରା ହିଁ ସଠିକ୍ ଉଚ୍ଚାରଣ ପାଇବା ସମ୍ଭବପର ହୋଇପାରିବ।

୫. ନିର୍ଦ୍ଧାରିତ ସଂକେତ ଚିହ୍ନଟି ବିନ୍ଦୁ ଉପରେ ଆଧାରିତ ହୋଇଥିବା ହେତୁ ଇଂରାଜୀ ପୂର୍ଣ୍ଣଚ୍ଛେଦ ଓ ସଂକେତ ଚିହ୍ନ ମଧ୍ୟରେ ଦ୍ୱିଧା ଉପୁଜିବା ସ୍ୱାଭାବିକ। ଏଣୁ ସଂକେତ ଚିହ୍ନ ବ୍ୟବହାର କରି ଲେଖିଥିବା ଯେ କୌଣସି ବାକ୍ୟର ଶେଷରେ ପୂର୍ଣ୍ଣଚ୍ଛେଦର ସଂକେତ ସ୍ୱରୂପ ଗୋଟିଏ ଗୁଣନ ଚିହ୍ନ (xx) ବ୍ୟବହାର କରନ୍ତୁ।

ଉପରୋକ୍ତ ଦୃଷ୍ଟିକୋଣରୁ ମୁଁ ଆଶା କରୁଛି, ମୋର ସ୍ଥିର କରିଥିବା ସଂକେତ / ନିର୍ଦ୍ଦେଶ ଗୁଡ଼ିକୁ ଅଭ୍ୟାସ କରି ଯେ କେହି ବ୍ୟକ୍ତି ମାତ୍ର କିଛି ସମୟ ଭିତରେ ଆଦିବାସୀ ଭାଷାର ଯେ କୌଣସି ଶବ୍ଦକୁ ଇଂରାଜୀ ଅକ୍ଷରରେ ଲେଖି ନିର୍ଭୁଲ ଭାବରେ ଉଚ୍ଚାରଣ କରିପାରିବେ। କେବଳ ସେତିକି ନୁହେଁ, ଆବଶ୍ୟକ ସ୍ଥଳେ ସାମାନ୍ୟ ପରିବର୍ତ୍ତନ କରି ସଂକେତ ଚିହ୍ନଗୁଡ଼ିକୁ ପ୍ରୟୋଗ କରିବା ଦ୍ୱାରା ପୃଥିବୀର ଯେକୌଣସି ଭାଷାକୁ ଇଂରାଜୀ ଲିପିରେ ଲେଖି ତାହାର ଅଭିନ୍ନ, ଅକ୍ଷୁଣ୍ଣ ତଥା ତ୍ରୁଟିଶୂନ୍ୟ ଉଚ୍ଚାରଣ କରାଯାଇ ପାରିବ। ସଂକେତ ଚିହ୍ନଗୁଡ଼ିକୁ ପ୍ରଥମେ ବର୍ଣ୍ଣମାନଙ୍କର ଉପର ଓ ତଳେ ଦେବାର ପରିକଳ୍ପନା କରାଯାଇଥିଲା, କିନ୍ତୁ ତଦ୍ୱାରା କମ୍ପ୍ୟୁଟରରେ ଡିଟିପି ଯୋଗେ ଲେଖିବାର ଅନେକ

ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା। ତେଣୁ ଶେଷରେ ସେଗୁଡ଼ିକୁ ସମ୍ପୃକ୍ତ ବର୍ଣ୍ଣର ପରେ ଡାହାଣ ପାର୍ଶ୍ୱରେ ହିଁ ବ୍ୟବହୃତ ହେବ ବୋଲି ସ୍ଥିର କରାଯାଇଛି। ଅତଏବ ଏହା କମ୍ପ୍ୟୁଟର ମଧ୍ୟରେ ଉପଲବ୍ଧ ବିଧି ବ୍ୟବସ୍ଥାର ସମ୍ପୂର୍ଣ୍ଣ ଅନୁକୂଳ। ଆଲୋଚିତ କୌଶଳ ଅବଲମ୍ବନ କରି ବିଶ୍ୱର ସମସ୍ତ ଆଦିବାସୀ ସମ୍ପ୍ରଦାୟ ଦ୍ୱାରା ବ୍ୟବହୃତ କଥିତ ଭାଷାଗୁଡ଼ିକ ମଧ୍ୟରେ ପ୍ରଚଳିତ ଲୋକସାହିତ୍ୟ ଭଣ୍ଡାରକୁ ରୋମାନ୍ ଲିପି (ଇଂରାଜୀବର୍ଣ୍ଣ) ବ୍ୟବହାର କରି ଯେ କୌଣସି ଅନାଲୋଚିତ ଭାଷା ତଥା ସଂସ୍କୃତି ପ୍ରାନ୍ତରେ ଅଚିରେ ପହଞ୍ଚାଯାଇପାରିବ।

| ଓଡ଼ିଆ ବର୍ଣ୍ଣ | ସଂକେତ ଚିହ୍ନ ସହିତ / ରହିତ ଅନୁରୂପ ଧ୍ୱନିକୁ ପ୍ରତିନିଧିତ୍ୱ କରୁଥବା ବର୍ଣ୍ଣ/ବର୍ଣ୍ଣାବଳୀ | ଶବ୍ଦ ରଚନାର ଉଦାହରଣ |
|---|---|---|
| କ | Ka | କବାଟ = kaba.ta, କାଉ = Ka.u |
| ଖ | Kha | ଖବର = Khabara, ଅଖା = Akha. |
| ଗ | Ga | ଗଜ = Gaja, ଗୀତା = Geet.a. |
| ଗ୍ୟ | Gya | ଭାଗ୍ୟ = Bha.gya |
| ଜ୍ଞ | G.a | ଜ୍ଞାନ = G.a.na |
| ଘ | Gha | ଘର = Ghara |
| ଚ | Cha | ଆଚାର = A.cha.ra |
| ଛ | Chha | ଛତା = Chhata.a. |
| ଜ | Ja | ଜଗା = Jaga |
| ଜ୍ୟ | Jya | ଜ୍ୟାମିତି = Jya.mit.i |
| ଯ | J.a | ଯମୁନା = J.amuna. |
| ଯ୍ୟ | J.ya | ଶଯ୍ୟା = Saj.ya. |
| ଝ | Jha | ଝରକା = Jharaka. |
| ଟ | Ta | ଟଗର = Tagara |
| ତ | T.a | ତରାଟ = T.ara.ta |
| ଥ | T.ha | ରଥ = Rat.ha |
| ଠ | Tha | ଠାକୁର = Tha.kura |

| | | |
|---|---|---|
| ଡ | Da | ଡୁମ୍‌ଡୁମା = Dumduma. |
| ଡ଼ | D.a | ପଇଡ଼ = Pa-id.a |
| ଢ | Dha | ଢାବା = Dha.ba. |
| ଢ଼ | D.ha | ବୁଢ଼ା = Bud.ha (BUD.HA.) |
| ଦ | D.a | ଦାନବ = D:a.naba |
| ଧ | D:ha | ପ୍ରଧାନ = Prad:hana |
| ନ | Na | କାନ = Ka.na (KA.NA) |
| ଣ | N.a | ଗୁଣ = GuN.a |
| ପ | Pa | ପତର = Pat.ara |
| ଫ | Pha | ଫଗୁଣ = PhaguN.a |
| ବ | Ba | ବତକ = Bat.aka ('ବ' ସ୍ଥାନରେ 'Va' ଲେଖିପାରନ୍ତି) |
| ଭ | Bha | ଭାରତ = Bha.rat.a ('ଭ' ସ୍ଥାନରେ Va ଲେଖିବା ଅନୁଚିତ) |
| ମ | Ma | ମକର = Makara (ସ୍ୱଷ୍ଟ 'ମ' ଲେଖାଥିବା ଶବ୍ଦ ଛଡ଼ା 'M'କୁ ଅନୁସ୍ୱାର କିମ୍ୱା ଚନ୍ଦ୍ରବିନ୍ଦୁ ସ୍ଥାନରେ ବ୍ୟବହାର କରନ୍ତୁ ନାହିଁ।) |
| ର | Ra | ରାତି = Ra.t.i |
| ଲ | La | ଲାଲ = La.l |
| ଳ | L.a | ଫଳ = Phal.a (ଆବଶ୍ୟକ ସ୍ଥଳେ 'ଫ' ସ୍ଥାନରେ 'Fa' ବ୍ୟବହାର କରିପାରିବେ) |
| ସ | Sa | ସରଳ = Saral.a |
| ଶ | S.a | ଶକୁନ୍ତଳା = S.Kunt.al.a. |
| ଶ୍ୟ | S.ya | ଶ୍ୟାମ = S.ya.ma |
| ଷ | Sha | ଶିଷ୍ୟ = S.ishya |

(ପ୍ରଦତ୍ତ ତାଲିକା ବର୍ହିଭୂତ ଅନ୍ୟାନ୍ୟ ବନାନ / ଯୁକ୍ତାକ୍ଷର ପାଇଁ ପ୍ରଚଳିତ ନିୟମ ଅନୁସରଣ କରିବାରେ କୌଣସି ଅସୁବିଧା ନାହିଁ।)



# ନାଇଲ ଭାଷା : ଏକ ପ୍ରୟାସ

## ରଙ୍ଗାଧର ମହାପାତ୍ର

ଟ୍ରେନ୍‌ରେ ଯାତ୍ରା କରିବା ସମୟରେ ଅନେକ ସମୟରେ ମୁଁ ଚିନ୍ତା କରୁଥିଲି ଯେ ଇଂରାଜୀ ପରି ଏମିତି ଆଉ ଗୋଟିଏ ଭାଷା ହୁଅନ୍ତା ଯାହା ଶିକ୍ଷିତ ଅଶିକ୍ଷିତ ସମସ୍ତଙ୍କ ପାଇଁ କହିବା ବା ବୁଝିବାକୁ ସହଜ ହୁଅନ୍ତା। କାରଣ ପ୍ରାୟତଃ ଟ୍ରେନ୍‌ରେ ଯାତ୍ରା କରିବା ସମୟରେ ଭିନ୍ନ ଭିନ୍ନ ଅଞ୍ଚଳର ଲୋକେ ବିଭିନ୍ନ ଭାଷାକୁ ନେଇ ବହୁ ସମସ୍ୟାର ସମ୍ମୁଖୀନ ହେଉଥିବାର ମୁଁ ଦେଖୁଥିଲି। ଟ୍ରେନ୍‌ଯାତ୍ରାରୁ ହିଁ ଏକ ନୂଆ ଭାଷାର ପରିକଳ୍ପନା ପାଇଁ ପ୍ରେରଣା ମୁଁ ପାଇଥିଲି। ସେହି ପ୍ରେରଣାର ପରିଣତି ହେଉଛି 'ନାଇଲ'(NIEL) ଭାଷା, ବା New Indian Easy Language.

ପ୍ରଥମରୁ କହି ରଖେ ନାଇଲ୍ ଏକ କୃତ୍ରିମ ଭାଷା, ଯାହାର ଅକ୍ଷର ସଂଖ୍ୟା ମାତ୍ର ୨୧। ସ୍ୱରବର୍ଣ୍ଣ ୫ ଓ ବ୍ୟଞ୍ଜନ ବର୍ଣ୍ଣ ୧୬। ୧୯୯୫-୨୦୦୩, ଦୀର୍ଘ ୮/୯ବର୍ଷର ଅବିରତ ଉଦ୍ୟମ ଫଳରେ ଏଇ ଭାଷାର ଜନ୍ମ। ନାଇଲ ଭାଷା କହିବାକୁ, ପଢ଼ିବାକୁ, ଲେଖିବାକୁ ଓ ବୁଝିବାକୁ ସହଜ। ଆବଶ୍ୟକ ହେଲେ ଏହାକୁ ଏକ ପୂର୍ଣ୍ଣାଙ୍ଗ ଭାଷା ରୂପରେ ଅବା ଅଲିଖିତ କଥିତ ଭାଷାର ଲିପି ବା ବର୍ଣ୍ଣମାଳା ଭାବରେ ଗ୍ରହଣ କରି ପ୍ରୟୋଗ କରାଯାଇପାରିବ। ଅନ୍ୟ କଥାରେ କହିଲେ 'ନାଇଲ' ସେଇମାନଙ୍କ ପାଇଁ ସମର୍ପିତ ଯେଉଁମାନଙ୍କର କଥିତ ଭାଷା ଅଛି କିନ୍ତୁ ଲିପି ନାହିଁ। ଏହାର ବର୍ଣ୍ଣମାଳାର ଲିଖନ ପଦ୍ଧତି ଖୁବ୍ ସହଜ। ଶବ୍ଦାବଳୀ ଓ ବ୍ୟାକରଣ ମଧ୍ୟ ସହଜ। ଯୁକ୍ତାକ୍ଷର ଓ ଯୁଗ୍ମଶବ୍ଦ ବିବର୍ଜିତ। କିନ୍ତୁ ଯୁକ୍ତାକ୍ଷର ବା ଜଟିଳ ଶବ୍ଦ ମଧ୍ୟ ଏହି ଲିପିରେ ଲେଖିବା ସମ୍ଭବ। ନାଇଲ ପୁସ୍ତକର ଶେଷ ଭାଗରେ ଏହା ପ୍ରଦର୍ଶିତ।

ବହୁ ଭାଷାଭାଷୀ ଦେଶ ଭାରତବର୍ଷରେ ସହସ୍ରାଧିକ ମାତୃଭାଷା ପ୍ରଚଳିତ ହେଉଥିଲେ ମଧ୍ୟ ମାତ୍ର ୨୨ଟି ଭାଷାକୁ ସାମ୍ବିଧାନିକ ସ୍ୱୀକୃତି ମିଳିଛି ଏବଂ ଏହି ଭାଷାଗୁଡ଼ିକର ନିଜସ୍ୱ ସ୍ୱତନ୍ତ୍ର ଲିପି ରହିଛି। କିନ୍ତୁ ଆହୁରି ବହୁ ଭାଷା ଅଛି ଯେଉଁଗୁଡ଼ିକର ନିଜସ୍ୱ ଲିପି ନାହିଁ ଏବଂ ସେଗୁଡ଼ିକ କଥିତ ରୂପରେ ହିଁ ପ୍ରଚଳିତ। ଏପରି ପରିସ୍ଥିତିରେ ଭାରତବର୍ଷରେ ଇଂରାଜୀର ସ୍ଥାନ ସ୍ୱତନ୍ତ୍ର। ଏକ ପ୍ରମୁଖ ଯୋଗସୂତ୍ରକାରୀ ଭାଷା ରୂପେ

ଇଂରାଜୀର ସ୍ଥାନ ଆମ ଦେଶରେ ଅନସ୍ୱୀକାର୍ଯ୍ୟ। ବିଜ୍ଞାନ, ସଫ୍ଟଓୟାର, ଇଣ୍ଟରନେଟ୍ ପରି ସବୁ ପ୍ରକାର ପ୍ରଯୁକ୍ତି ବିଦ୍ୟାର ଆଧାର ଇଂରାଜୀ। ତେଣୁ ଆଜି ସର୍ବଭାରତୀୟ ସ୍ତରରେ ଆମ ପାଖରେ ଇଂରାଜୀ ପରି ଏକ ଉତ୍ତମ ସଂଯୋଗକାରୀ ଲିପିର ଆବଶ୍ୟକତା ରହିଛି, ଯାହାକୁ ଉପଯୋଗ କରି ନିରକ୍ଷରତା ଦୂରୀକରଣ ସହିତ ଶିକ୍ଷିତ ସାକ୍ଷରଙ୍କ ସଂଖ୍ୟା ବୃଦ୍ଧି କରିବା କଥା ଭାରତବର୍ଷରେ ପରିକଳ୍ପନା କରାଯାଇପାରେ।

ଆମର ପ୍ରଚଳିତ ଭାଷାମାନଙ୍କର ଲିପି ବା ବର୍ଣ୍ଣମାଳା ସଂଖ୍ୟାଧିକ ଏବଂ ଅନ୍ୟାନ୍ୟ ପଡ଼ୋଶୀମାନଙ୍କ ଭାଷାର ଲିପି ବା ଅକ୍ଷର ପଢ଼ିବାକୁ ଆମେ ସକ୍ଷମ ନୋହୁଁ। ଏପରି ପରିସ୍ଥିତିରେ ଏକ ସମାଧାନରେ ସୂତ୍ର ସ୍ୱରୂପ 'ନାଇଲ' ଲିପିର ଉଦ୍ଭାବନ। ଏହା କୃତ୍ରିମ କିନ୍ତୁ ବାସ୍ତବଧର୍ମୀ। ଏହାର ଅଳ୍ପସଂଖ୍ୟକ ଲିପି ବା ଅକ୍ଷରକୁ ନେଇ ଏକ ଭାଷା ପ୍ରୟୋଗର ପରିକଳ୍ପନା ସମ୍ଭବ।

'ନାଇଲ' ଭାଷାର ତୁଳନା ପୃଥିବୀର ପ୍ରଥମ କୃତ୍ରିମ ଉଦ୍ଭାବିତ ଭାଷା 'ଏସପେରାଣ୍ଟୋ' (Esperanto) ସହିତ ହୋଇପାରେ । ସାରା ପୃଥିବୀରେ ସାର୍ବଜନୀନ ଭାବରେ ବ୍ୟବହୃତ ହୋଇପାରିବା ଭଳି ଏକ କୃତ୍ରିମ ଉଦ୍ଭାବିତ ଭାଷା ହେଉଛି ଏସପେରାଣ୍ଟୋ । ଏହାକୁ ପୋଲାଣ୍ଡ ନିବାସୀ ଲଡଉଇଗ ଲାଜାରସ ଯାମେନହଫ ପ୍ରଥମେ ପ୍ରସ୍ତୁତ କରିଥିଲେ ରୁଷୀୟ ଭାଷାରେ । ୧୯୦୫ ମସିହାରୁ ଏହି ଭାଷା 'ଡକ୍ଟୋରୋ ଏସପେରାଣ୍ଟୋ' ଛଦ୍ମନାମରେ ପ୍ରଚଳିତ ହୋଇଆସୁଛି । ଇଉନିଭରସାଲ୍ ଏସପେରାଣ୍ଟୋ ଆସୋସିଏସନ୍ (Universal Esperanto Association) ଦ୍ୱାରା ଏହି ଭାଷାର ପ୍ରସାର ଓ ପ୍ରଚାର ହେଉଥିବା ବେଳେ ଆନ୍ତର୍ଜାତିକ ସ୍ତରରେ ଏସପେରାଣ୍ଟୋର ବ୍ୟବହାର ପ୍ରାୟ ୧୦ ରୁ ୧୫ ଲକ୍ଷ ଲୋକଙ୍କ ଦ୍ୱାରା ସମ୍ଭବ ହୋଇଛି । ମୋର ମନେହୁଏ 'ନାଇଲ' ହେଉଛି ପୃଥିବୀର ଦ୍ୱିତୀୟ କୃତ୍ରିମ ଭାଷା ଓ ଭାରତରେ ପ୍ରଥମ । ଭାରତ କିମ୍ବା ପୃଥିବୀର କୌଣସି ଜନଜାତି ଏହି ଲିପି ଓ ଭାଷାକୁ ଗ୍ରହଣ କରିଲେ ମୋର ଶ୍ରମ ଓ ସାଧନା ସାର୍ଥକ ହେବ । Link - India - Mission ମାଧ୍ୟମରେ ନାଇଲ ଲିପିର ଆବଶ୍ୟକତା ଅନୁଭୂତ ହୁଏ ।

ଦୀର୍ଘ ୩୦ ବର୍ଷ ତଳୁ ଆଚ୍ଛନ୍ନ କରି ରଖିଥିବା ଏହି ଭାଷାର କଳ୍ପନା ରୂପ ନିଏ ୧୯୯୫ରେ । ତାପରେ ନିରନ୍ତର ଉଦ୍ୟମର ୮ ବର୍ଷ ପରେ ୨୦୦୩ରେ ପୂର୍ଣ୍ଣାଙ୍ଗ ରୂପ ନିଏ 'ନାଇଲ' । ମୋ ପାଇଁ ଆନନ୍ଦର କଥା ଯେ, ନିକଟରେ ୨୦୧୬ ମସିହାରେ ନାଇଲ ପୁସ୍ତକର ୨ୟ ସଂସ୍କରଣର ପ୍ରକାଶ ପାଠକୀୟ ଆଦୃତି ଲାଭର ସୂଚନା ଦିଏ।

"ସୁଦେଷ୍ଣା, ପାର୍ବଣ ବିଶେଷାଙ୍କ - ୨୦୦୯, ଭିନ୍ନ ଏକ ବର୍ଣ୍ଣମାଳାର ସଂଧାନରେ: ନାଇଲ" ବିଷୟରେ ଅଭିମତ ଦେଇ ଲେଖିଛନ୍ତି "ଭାଷାର ଦୃଶ୍ୟମାନ ବିଗ୍ରହ ହେଲା ଲିପି ।... ମାନବ ସଭ୍ୟତାର ବିକାଶ ସତ୍ତ୍ୱେ ଏବେ ବି ଅନେକ କଥିତ ଭାଷା ଅଛି, ଯାହାର ଲିପି ନାହିଁ । ଯାହା ଲୋକମୁଖରେ ପିଢ଼ିରୁ ପିଢ଼ିକୁ ସଂକ୍ରମିତ ହୋଇ ବଞ୍ଚି ଆସିଛି । ଉଦାହରଣ ସ୍ୱରୂପ ବହୁ ଆଦିବାସୀ ଭାଷା ରହିଛି, ଯାହା କେବଳ କଥନ ସର୍ବସ୍ୱ ହୋଇରହିଛି । ଏହାକୁ ଉଜ୍ଜୀବିତ କରି ରଖିବାର ଏକ ପ୍ରୟାସ ହେଉଛି- ପଣ୍ଡିତ ରଘୁନାଥ ମୁର୍ମୁଙ୍କ ସାନ୍ତାଳୀ ଭାଷାର 'ଆଲଚିକି' ଲିପି । ସେହିପରି ଏକବିଂଶ ଶତକରେ ୨୧ଟି ଲିପିକୁ ନେଇ NIELର ପ୍ରବର୍ତ୍ତନ ପାଇଁ ଡ. ରଙ୍ଗାଧର ମହାପାତ୍ରଙ୍କର ସାଧୁ ଉଦ୍ୟମ ପ୍ରାୟ ଅନନ୍ୟ ଓ ଅତୁଳନୀୟ । NIELର ଅର୍ଥ New Indian Easy Language ବା ନୂତନ ଭାରତୀୟ ସହଜ ଭାଷା । 'ନାଇଲ' ଭାଷାର ଦୁଇଟି ଲିପି- ବିଭାଗକୁ ବ୍ୟାକରଣର ପ୍ରଥମ ପ୍ରାୟୋଗିକ ଧାରା ବାନ୍ଧିବାକୁ ଯାଇ ତାହାକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି । ଯଥା : ସ୍ୱରଲିପି (୫ଟି) ଓ ବରଲିପି (୧୬ଟି) । ଦ୍ୱିତୀୟ ପର୍ଯ୍ୟାୟରେ 'ମାତ୍ରା' ବା 'ଫଳା'ର ପ୍ରୟୋଗ ବିଧି ସଂପର୍କରେ ଆଲୋକପାତ କରାଯାଇଛି । ପ୍ରତ୍ୟେକ ବରଲିପି ସହିତ ୫ଟି ସ୍ୱରଲିପିର ଅର୍ଦ୍ଧାକାର ଡାହାଣ ପାର୍ଶ୍ୱରେ ସଂଯୋଗ କରି 'ମାତ୍ରା'ର ପ୍ରୟୋଗ ହୋଇଛି । ଯଥା : (କ + ଆ = କା) ପରି ନାଇଲ ଭାଷାରେ K + I = KI । ଏତଦ୍ ଭିନ୍ନ କେତେକ ସହଲିପିର ମଧ୍ୟ ପ୍ରଣୟନ କରାଯାଇଛି ଓ ତାହା ସ୍ୱରଲିପିର ସହାୟତାରେ ନିଷ୍ପନ୍ନ ହୋଇଛି ।... ଭାଷା ଯଦି ଭାବର ଆଦାନ ପ୍ରଦାନ ନିମନ୍ତେ ଅଭିପ୍ରେତ, ତେବେ ତା ମଧ୍ୟରେ କ୍ଲିଷ୍ଟତା ପ୍ରତିବନ୍ଧକ ସୃଷ୍ଟି କରୁଥିବାରୁ ନାଇଲ୍‌ରେ ଏହାକୁ ସରଳୀକୃତ କରିବାର ପ୍ରଚେଷ୍ଟା କରାଯାଇଛି ।

ବାସ୍ତବିକ ଡ. ରଙ୍ଗାଧର ମହାପାତ୍ର ୨୧ଟି ଅଧ୍ୟାୟରେ ନାଇଲ ଭାଷାକୁ ପ୍ରତିଷ୍ଠିତ କରିବା ପାଇଁ ଯେଉଁ ଉଦ୍ୟମ ଆରମ୍ଭ କରିଛନ୍ତି ତାହା ଯଥେଷ୍ଟ ଗବେଷଣାତ୍ମକ ଓ ଶ୍ରମସାପେକ୍ଷ ଏକ ଫଳପ୍ରସୂ ଉଦ୍ୟମ ଯାହା ବ୍ୟାପକ ଆଲୋଚନାର ପ୍ରତୀକ୍ଷା ରଖେ ।"

ନାଇଲ ପୁସ୍ତକର ମୁଖବନ୍ଧରେ ଭାଷାବିଦ୍ ଡ. ଖଗେଶ୍ୱର ମହାପାତ୍ର ନିଜ ଅଭିମତରେ କହନ୍ତି : "ଶ୍ରୀ ମହାପାତ୍ରଙ୍କ ପରିକଳ୍ପିତ ଲିପି ଯଦି ପ୍ରବର୍ତ୍ତିତ ହୋଇପାରେ ତାହା ଅଲିଖିତ ଆଦିବାସୀ ଭାଷା ସମୂହ ପାଇଁ ସହାୟକ ହେବ ।"

ମୋର ଆଶା କୃତ୍ରିମ ଭାବରେ ଉଦ୍ଭାବିତ ନାଇଲ ଭାଷା ଭାରତବର୍ଷର ଭାଷା ଓ ଲିପି ସମସ୍ୟା ସମାଧାନ କ୍ଷେତ୍ରରେ ଉପଯୋଗୀ ହୋଇପାରିବ।

ନାଇଲ ଲିପିର ସ୍ୱରୂପ :

ଓଁ ଔଁ ॐ

ଏକ ବିଂଶ ଶତାବ୍ଦୀର ନୂତନ ଉପହାର ମାନବ ସମାଜକୁ

# ନାଇଲ ଭାଷା

## ଏକ ବିଂଶ ଲିପିରେ ଗଠିତ NIEL ବା ନାଇଲ ଭାଷା

नाइल भाषा • ନାଇଲ ଭାଷା • NIEL • NI∩ω ЫѠЅ

## NEW INDIAN EASY LANGUAGE

## NIEL ଲିପି ପରିଚୟ

NIEL ବା 'ନାଇଲ' ଏକ ନୂତନ ସହଜ ଓ ସୁବୋଧ ଭାଷା । ଏହାର ସର୍ବମୋଟ ଲିପି ସଂଖ୍ୟାମାତ୍ର ୨୧ । ତନ୍ମଧ୍ୟରୁ ସ୍ୱରବର୍ଣ୍ଣ ମାତ୍ର ୫ ଏବଂ ବ୍ୟଞ୍ଜନବର୍ଣ୍ଣ ମାତ୍ର ୧୬ଟି । ନିମ୍ନରେ ପ୍ରଦତ୍ତ ହେଲା ।

### ସ୍ୱରବର୍ଣ୍ଣ ବା ସ୍ୱରଲିପି

ନାଇଲ ଭାଷାରେ ସ୍ୱରବର୍ଣ୍ଣ ସଂଖ୍ୟା ମାତ୍ର ୫ଟି ଲିପିକୁ ନେଇ ଗଠିତ । ସେଗୁଡ଼ିକ ହେଲା ଯଥାକ୍ରମେ—ଅ,ଇ,ଉ,ଏ,ଓ ।

| I | ∩ | U | ( | ) |
|---|---|---|---|---|
| ଅ | ଇ | ଉ | ଏ | ଓ |

### ବ୍ୟଞ୍ଜନବର୍ଣ୍ଣ ବା ବ୍ୟଞ୍ଜନଲିପି

| K | Λ | 8 | V | S | d |
|---|---|---|---|---|---|
| କ | ଗ | ଚ | ଜ | ଟ | ଡ |
| N | Ɛ | И | P | b | ጠ |
| ନ | ତ | ଦ | ପ | ବ | ମ |
| ϒ | ω | ୪ | X | | |
| ର | ଲ | ସ | ହ | | |

| ରଂଗାଧର | ϒ'ΛИϒ | रंगाधर | RANGADHAR |
|---|---|---|---|

# ଲୁଇ ବ୍ରେଲ ଓ ଓଡ଼ିଆ ଭାରତୀ ବ୍ରେଲ

## (ସଂଗୃହୀତ)



ଏକ ଅସମର୍ଥିତ ପରିସଂଖ୍ୟାନରୁ ଜଣାଯାଏ ଯେ ଭାରତବର୍ଷର ସାମଗ୍ରିକ ଜନସଂଖ୍ୟା ହେଉଛି ୧୧୮ କୋଟି ଓ ପ୍ରତିଦିନର ମୃତ୍ୟୁସଂଖ୍ୟା ୬୨୩୮୯ ଏବଂ ଜନ୍ମ ସଂଖ୍ୟା ୮୬୮୫୩। ପୁଣି ସେହି ଆକଳନ ଅନୁସାରେ ସମଗ୍ର ଭାରତ ବର୍ଷରେ ଦୃଷ୍ଟିହୀନଙ୍କ ସଂଖ୍ୟା ୬୮୨୪୯୭। କଳନା କରାଯାଏ ଯେ ଯଦି ପ୍ରତିଦିନ ମୃତ୍ୟୁ ବରଣ କରୁଥିବା ଲୋକେ ନିଜର ଚକ୍ଷୁଦାନ କରିବେ ତେବେ ୧୧ଦିନ ଭିତରେ ସବୁ ଦୃଷ୍ଟିହୀନ ଲୋକେ ଏହି ସୁନ୍ଦର ପୃଥିବୀକୁ ଦେଖି ପାରିବେ ଏବଂ ଭାରତବର୍ଷ ସଂପୂର୍ଣ୍ଣ ଦୃଷ୍ଟୀହୀନ ମୁକ୍ତ ଦେଶରେ ପରିଣତ ହେବ। ଏହା କେବଳ ଏକ କଳ୍ପନା। ଏହି କଳ୍ପନାକୁ ଅନ୍ୟ ଭାବରେ ବାସ୍ତବ ରୂପ ଦେବାକୁ ଚେଷ୍ଟା କରିଥିଲେ ଲୁଇବ୍ରେଲ।

ସମାଜରେ ବାସ କରୁଥିବା ଦୃଷ୍ଟିହୀନମାନଙ୍କର ଦର୍ଶନ ସମସ୍ୟାକୁ ଅନୁଧ୍ୟାନ କରି ସାର୍ବଜନୀନ ଭାବରେ ଏକ ବିଶେଷ ଲିଖନ ପଦ୍ଧତି ପ୍ରସ୍ତୁତ ହୋଇଛି ବ୍ରେଲ ଲିପି। ଏହି ପଦ୍ଧତିର ଉଦ୍ଭାବକ ହେଉଛନ୍ତି ଫ୍ରେଞ୍ଚ ଭାଷାର ଶିକ୍ଷକ ଲୁଇ ବ୍ରେଲ, ଯିଏକି ନିଜେ ଶିଶୁ ଅବସ୍ଥାରେ ୩ବର୍ଷ ବୟସରେ ଦୃଷ୍ଟିହୀନ ହୋଇଯାଇଥିଲେ। ବ୍ରେଲ୍ ୧୮୦୯ ମସିହା ଜାନୁଆରୀ ୪ ତାରିଖରେ ଜନ୍ମ ଗ୍ରହଣ କରିଥିଲେ ଏବଂ ପିଲାବିଳେ ଏକ ଦୁର୍ଘଟଣାରେ ଦୁଇଟିଯାକ ଆଖିର ଦୃଷ୍ଟିଶକ୍ତି ହରାଇଥିଲେ। ଦୃଷ୍ଟିଶକ୍ତି ହରାଇ ଥିଲେ ବି ସେ ଫ୍ରାନ୍ସର ରୟାଲ ଇନ୍‌ଷ୍ଟିଚ୍ୟୁଟ ଫର ବ୍ଲାଇଣ୍ଡ ୟୁଥର ମେଧାବୃତ୍ତି ପାଇଥିଲେ ଓ ସେହି ଇନ୍‌ଷ୍ଟିଚ୍ୟୁଟ୍‌ରେ ପ୍ରଫେସର ଭାବେ କାମ କରିଥିଲେ। ବ୍ରେଲ ପ୍ୟାରିସ୍‌ରେ ୧୮୨୪ ମସିହାରେ ୧୬ ବର୍ଷ ବୟସରେ ଏହି ଲିଖନ ପଦ୍ଧତିକୁ ଉଦ୍ଭାବନ କରିଥିଲେ। ହାତରେ ସ୍ପର୍ଶ କରିପାରିବା ଭଳି ଉଚ୍ଚା ଉଚ୍ଚା ବିନ୍ଦୁର ସାହାଯ୍ୟ ନେଇ ପ୍ରସ୍ତୁତ ହୋଇଛି ବ୍ରେଲ ଲିପି ବା ବର୍ଣ୍ଣମାଳା। ଇଂଲଣ୍ଡରେ ୧୯୩୨ ମସିହାରେ ବିଲାତ ଓ ଆମେରିକାରେ କେତେକ ବିଶେଷଜ୍ଞ ଏକତ୍ର ହୋଇ ଏକ 'ସାର୍ବଜନୀନ ବ୍ରେଲ୍ ପଦ୍ଧତି'କୁ (a universal Braille code) ସାରା ପୃଥିବୀର ଇଂରେଜୀ ଭାଷା କହୁଥିବା ଦୃଷ୍ଟିହୀନ

ଲୋକଙ୍କ ପାଇଁ ସ୍ଥିର କରିଥିଲେ ଏବଂ ଏହାକୁ ସେମାନେ Standard English Braille system ନାମରେ ପ୍ରଚଳନ କରିଥିଲେ। ଇଂରାଜୀ ଟାଇପ୍ ରାଇଟର ମେସିନ୍ ଭଳି ଏକ ବ୍ରେଲ୍ ରାଇଟର (Braillearitter) ବା ବ୍ରେଲର (Brailler) ମେସିନର ପ୍ରଚଳନ କରାଯାଇଛି। ଏହା ବ୍ରେଲ ପାଠ୍ୟପୁସ୍ତକ ଟାଇପ୍ କରିବା ପାଇଁ ୧୮୯୨ ମସିହାରୁ ବ୍ୟବହୃତ ହୋଇଆସୁଛି।

ହାତରେ ସ୍ପର୍ଶକରିବା ଭଳି ଉଚ୍ଚା ବିନ୍ଦୁର ସାହାଯ୍ୟ ନେଇ ପ୍ରସ୍ତୁତ ହୋଇଥିବା ବ୍ରେଲ ବର୍ଣ୍ଣମାଳାରେ କ୍ଷୁଦ୍ର ବର୍ଗାକାର କୋଠରୀ ମଧ୍ୟରେ ଆବଦ୍ଧ ହୋଇ ଉଚ୍ଚା ଉଚ୍ଚା ୬ଟି ବିନ୍ଦୁ ରହିଥାଏ। ୬ଟି ବିନ୍ଦୁକୁ ବିଭିନ୍ନ ଭାବରେ ସଂଯୁକ୍ତ କରି ଗଠିତ ହୁଏ ବ୍ରେଲ ବର୍ଣ୍ଣମାଳା ଏବଂସେହି ସଂଯୁକ୍ତ ବିନ୍ଦୁ ପ୍ରୟୋଗ କରି ବିଭିନ୍ନ ଭାଷାର ଅକ୍ଷର, ଶବ୍ଦ,ସଂଖ୍ୟା ପ୍ରଭୃତିକୁ ଚିହ୍ନଟ କରାଯାଇଥାଏ। ବାସ୍ତବରେ ସଂଯୁକ୍ତ ବିନ୍ଦୁଗୁଡ଼ିକ ଦ୍ୱାରା ପ୍ରସ୍ତୁତ ଅକ୍ଷର,ଶବ୍ଦ, ସଂଖ୍ୟା ପ୍ରଭୃତି ଭାଷାରେ ବିଭିନ୍ନ ପ୍ରକାର ସଂକେତ ଚିହ୍ନର ପ୍ରତିନିଧିତ୍ୱ କରନ୍ତି ଯାହା ବ୍ରେଲ ବର୍ଣ୍ଣମାଳାର ବୈଶିଷ୍ଟ୍ୟ। ବର୍ଗାକାର କୋଠରୀଗୁଡ଼ିକୁ ଇଂରାଜୀରେ କୁହାଯାଏ ସେଲ (Cell) ।

ବ୍ରେଲ୍ ସେଲ ଭିତରର ୬ଟି ବିନ୍ଦୁ ବିଭିନ୍ନ ଭାବରେ ସଂଯୁକ୍ତ ହୋଇ ବର୍ଣ୍ଣମାଳା ବା ଅକ୍ଷର ପରିଚିତିକୁ ଚିହ୍ନିତ କରିଥାନ୍ତି। ୬ବିନ୍ଦୁ ବିଶିଷ୍ଟ ବ୍ରେଲ ସେଲକୁ ପଠନ ଓ ଲିଖନ ନିମନ୍ତେ ନିମ୍ନଲିଖିତ ଭାବରେ ପ୍ରଦର୍ଶିତ କରାଯାଇଛି। ଏହି ସେଲର ପ୍ରତ୍ୟେକ ବିନ୍ଦୁକୁ ବାମ ପାଖରେ ଉପରୁ ତଳକୁ ୧/୨/୩ ଓ ଡାହାଣ ପାଖରେ ଉପରୁ ତଳକୁ ୪/୫/୬ କ୍ରମରେ ସଜ୍ଜିତ କରି ସେଗୁଡ଼ିକର ବିଭିନ୍ନ ମିଶ୍ରଣରେ ବ୍ରେଲ ଅକ୍ଷରଗୁଡ଼ିକୁ ଗଠନ ଓ ଚିହ୍ନଟ କରାଯାଏ। ମିଶ୍ରିତ ବ୍ରେଲ ଅକ୍ଷରମାଳା ବା ବର୍ଣ୍ଣମାଳାରୁ ଯେ କୌଣସି ଭାଷାର ବର୍ଣ୍ଣ ବା ଅକ୍ଷର ଓ ସଂଖ୍ୟାଗୁଡ଼ିକ ସହଜରେ ଗଠିତ ହୋଇ ଭାଷାର ବ୍ୟବହାର ହୋଇପାରେ।

ବ୍ରେଲ ସେଲ

| | | | |
|---|---|---|---|
| ୧ | ● | ● | ୪ |
| ୨ | ● | ● | ୫ |
| ୩ | ● | ● | ୬ |

ଇଂରାଜୀ ବ୍ରେଲ୍ ଲିପି ପଦ୍ଧତିରେ ୬ଟି ବିନ୍ଦୁକୁ ନେଇ ସର୍ବାଧିକ ୬୩ଟି ବିନ୍ଦୁ ସଂଯୋଗ ବା ସଂଯୁକ୍ତ ବର୍ଣ୍ଣ ସମ୍ଭବ। ଇଂରାଜୀ ଭାଷାରେ ପ୍ରଥମେ ବ୍ରେଲ ଲିପିର ପ୍ରଚଳନ ହେବା ପରେ ଅନ୍ୟାନ୍ୟ ଭାଷାରେ ବ୍ରେଲ ଲିପି ପଦ୍ଧତିକୁ ଗ୍ରହଣ କରାଯାଇଛି। ବ୍ରେଲ୍ ଲିପିରେ ଭାଷାର ଧ୍ୱନି ବା ଉଚ୍ଚାରଣକୁ ପ୍ରାଧାନ୍ୟ ଦିଆଯାଇଥାଏ। ଇଂରାଜୀ ବ୍ରେଲର୍ ୬୩ଟି ବିନ୍ଦୁ ସଂଯୋଗରେ ୭ଟି ପ୍ରଣାଳୀ ଅନ୍ତର୍ଭୁକ୍ତ। ପ୍ରଥମ ୫ଟି ପ୍ରଣାଳୀରେ ୧୦ଟି ବିନ୍ଦୁ ସଂଯୋଗ ରହିଥିବା ବେଳେ ୬ଷ୍ଠ ପ୍ରଣାଳୀରେ ୬ଟି ଏବଂ ୭ମ ପ୍ରଣାଳୀରେ ଅବଶିଷ୍ଟ ୭ଟି ବିନ୍ଦୁ ସଂଯୋଗ ରହିଥାଏ। ପ୍ରଥମ ୫ଟି ପ୍ରଣାଳୀରେ ମୁଖ୍ୟତଃ ବିରାମ

ଚିହ୍ନ ସୂଚକ ସଂଯୋଗ ରହିଛି । ଇଂରାଜୀ ବ୍ରେଲ ଲିପି ଗ୍ରେଡ-୧ ଓ ଗ୍ରେଡ-୨ ଭାବରେ ଦୁଇଟି ବିଭାଗରେ ବିଭକ୍ତ । ଗ୍ରେଡ-୧ ଇଂରାଜୀ ବ୍ରେଲରେ କୌଣସି ପ୍ରକାର 'ସଂକୋଚନ' (contraction) ବ୍ୟବସ୍ଥା ନଥିବା ବେଳେ ଗ୍ରେଡ-୨ରେ କେତେକ 'ସଂକୋଚନ' ବ୍ୟବସ୍ଥା ରହିଛି । ଇଂରାଜୀ ବ୍ରେଲର ଗଠନ ଓ ଲିଖନ ପଦ୍ଧତିକୁ ସହଜ ସରଳ କରିବାକୁ ଏବଂ ବ୍ରେଲ ପୁସ୍ତକ ପ୍ରକାଶନର ସମୟ ଶକ୍ତି, ଓ ସୁଲଭ ମୂଲ୍ୟକୁ ଦୃଷ୍ଟିରେ ରଖି ସଂକୋଚନ ବ୍ୟବସ୍ଥାକୁ ଗ୍ରେଡ-୨ ପୁସ୍ତକରେ ଗ୍ରହଣ କରାଯାଇଛି ।

ଇଂରାଜୀ ବ୍ରେଲ ପଦ୍ଧତିକୁ ଅନୁସରଣ କରି ଭାରତୀ ବ୍ରେଲ୍ ପଦ୍ଧତିରେ ଓଡ଼ିଆ ଭାଷାର ଲିପି ବା ବର୍ଣ୍ଣମାଳା ଶିକ୍ଷଣ ପ୍ରଣାଳୀରେ ଭାଷାର ଧ୍ୱନି ବା ଉଚ୍ଚାରଣକୁ ପ୍ରାଧାନ୍ୟ ଦେଇ କେତେକ ପରିବର୍ତ୍ତନ କରାଯାଇଛି । ଯେପରି ଇଂରାଜୀ b ଅକ୍ଷର ଓଡ଼ିଆରେ 'ବ' ଏବଂ ଇଂରାଜୀ K ଅକ୍ଷର ଓଡ଼ିଆରେ 'କ' ଭାବରେ ସ୍ୱୀକୃତ । କିନ୍ତୁ ଇଂରାଜୀ w ଓଡ଼ିଆରେ 'ଠ' ଏବଂ ଇଂରାଜୀ q ଓଡ଼ିଆରେ 'କ୍ଷ' ଭାବରେ ପ୍ରଚଳିତ ।

ଜଣେ ଦୃଷ୍ଟିହୀନ ବ୍ୟକ୍ତିକୁ ବ୍ରେଲ ଲିପି ଶିଖିବା ସମୟରେ ବା ଲେଖିବା ସମୟରେ ବ୍ରେଲ୍ ସ୍ଲେଟ ଓ ବ୍ରେଲ୍ ଲେଖନୀ ବା ବ୍ରେଲର (Systems) ବ୍ୟବହାର ସହିତ ଗାଇଡ୍ ବୁକ୍ ବା ଶିକ୍ଷଣ-ନିର୍ଦ୍ଦେଶାବଳୀ ପୁସ୍ତିକାର ସାହାଯ୍ୟ ନେବାକୁ ପଡ଼େ । କାଗଜର ଓଲଟା ପାଖରେ ଖୋଦିତ ହୋଇଥିବା ଉଚ୍ଚା ବିନ୍ଦୁରେ ବ୍ରେଲ୍ ଲେଖନୀରେ ଲେଖିବା ସମୟରେ ଲେଖୁଥିବା ଲୋକକୁ ଡାହାଣରୁ ବାମକୁ ଲେଖିବାକୁ ହୁଏ । ଯାହା ଫଳରେ କାଗଜର ସିଧା ପାଖରେ ଏହା ବାମରୁ ଡାହାଣକୁ ଦୃଶ୍ୟ ବା ସ୍ପର୍ଶ ଦ୍ୱାରା ଅନୁଭୂତ ହୋଇଥାଏ । ବ୍ରେଲ୍ ଲିପିର ପ୍ରଧାନ ମାଧ୍ୟମ ହେଉଛି ହାତର ସ୍ପର୍ଶ । ସ୍ପର୍ଶ କରି ବ୍ରେଲ୍ ଲିପିକୁ ଚିହ୍ନଟ କରିବା ହିଁ ଶିକ୍ଷଣର ଉପାୟ ।

ବ୍ରେଲ୍ ଲିପି ବା ବର୍ଣ୍ଣମାଳାର ଲିଖିତ ରୂପକୁ ନିମ୍ନଲିଖିତ ଭାବରେ ପ୍ରଦର୍ଶିତ କରାଯାଇପାରେ ।

କାଗଜର ଓଲଟା ପାଖରେ ଖୋଦିତ ବ୍ରେଲ ସେଲ :

୪ ● ● ୧

୫ ● ● ୨

୬ ● ● ୩

କାଗଜକୁ ପୁଣି ଓଲଟାଇ ସିଧା ପଟରେ ଦେଖିଲେ ପଠନ ଯୋଗ୍ୟ ବ୍ରେଲ୍ ଅକ୍ଷର ସମ୍ମୁଖକୁ ଆସେ ।

ଇଂରାଜୀ ବ୍ରେଲ୍‌କୁ ଅବଲମ୍ବନ କରି ଓଡ଼ିଆ ଭାରତୀ ବ୍ରେଲ ପ୍ରସ୍ତୁତ ଓ ବିକଶିତ। ଶିକ୍ଷାର୍ଥୀମାନେ ଅସୀମ ଧୈର୍ଯ୍ୟର ସହିତ ବ୍ରେଲ ବର୍ଣ୍ଣମାଳାକୁ ବାରମ୍ବାର ପଠନ ଓ ଲିଖନ ପ୍ରକ୍ରିୟା ମାଧ୍ୟମରେ ଆୟତ୍ତ କରିଥାନ୍ତି।

ଓଡ଼ିଆ ଭାରତୀ ବ୍ରେଲର ଶିକ୍ଷଣ ଚାର୍ଟ ନିମ୍ନରେ ପ୍ରଦତ୍ତ।

୧. ଭାରତୀ ବ୍ରେଲ- ଓଡ଼ିଆ ବର୍ଣ୍ଣମାଳା

୨. ଭାରତୀ ବ୍ରେଲ- ଓଡ଼ିଆ ସଂଖ୍ୟା

('ଭାରତୀ ବ୍ରେଲ'ର Learning Braille ପୁସ୍ତିକାରୁ ଏହି ସମସ୍ତ ତଥ୍ୟ ସଂଗୃହୀତ)

## ଭାରତୀ ବ୍ରେଲ-ଓଡ଼ିଆ ବର୍ଣ୍ଣମାଳା

| | | | | | | | | | |
|---|---|---|---|---|---|---|---|---|---|
| ଅ | ଆ | ଇ | ଈ | ଉ | ଊ | ଋ | | ୠ | |
| ⠁ | ⠜ | ⠊ | ⠔ | ⠥ | ⠳ | ⠐ | ⠗ | ⠠ | ⠗ |
| ଏ | ଐ | ଓ | ଔ | କ | ଖ | ଗ | ଘ | ଙ | ଚ |
| ⠑ | ⠌ | ⠕ | ⠪ | ⠅ | ⠨ | ⠛ | ⠣ | ⠬ | ⠉ |
| ଛ | ଜ | ଝ | ଞ | ଟ | ଠ | ଡ | ଢ | ଣ | ତ |
| ⠡ | ⠚ | ⠴ | ⠒ | ⠾ | ⠺ | ⠫ | ⠿ | ⠼ | ⠞ |
| ଥ | ଦ | ଧ | ନ | ପ | ଫ | ବ | ଭ | ମ | ଯ |
| ⠹ | ⠙ | ⠮ | ⠝ | ⠏ | ⠖ | ⠃ | ⠘ | ⠍ | ⠽ |
| ର | ଲ | ଵ / ବ | ଶ | ଷ | ସ | ହ | କ୍ଷ | ୟ | ଳ |
| ⠗ | ⠸ | ⠧ | ⠩ | ⠯ | ⠎ | ⠓ | ⠟ | ⠢ | ⠇ |
| ଡ଼ | ଢ଼ | | ଂ | ଃ | ଁ | ଜ୍ଞ | .(ହଳନ୍ତ) | | |
| ⠻ | ⠐ | ⠻ | ⠰ | ⠠ | ⠄ | ⠱ | ⠈ | | |
| ୧ | | ୨ | | ୩ | | ୪ | | ୫ | |
| ⠼ | ⠁ | ⠼ | ⠃ | ⠼ | ⠉ | ⠼ | ⠙ | ⠼ | ⠑ |
| ୬ | | ୭ | | ୮ | | ୯ | | ୦ | |
| ⠼ | ⠋ | ⠼ | ⠛ | ⠼ | ⠓ | ⠼ | ⠊ | ⠼ | ⠚ |

## ଭାରତୀ ବ୍ରେଲ-ଓଡ଼ିଆ ସଂଖ୍ୟା

| Braille Symbol | Dot Numbers | Numerical | Odia |
|---|---|---|---|
| ⠼⠚ | 3,4,5,6-2,4,5 | 0 | ୦ |
| ⠼⠁ | 3,4,5,6-1 | 1 | ୧ |
| ⠼⠃ | 3,4,5,6-1,2 | 2 | ୨ |
| ⠼⠉ | 3,4,5,6-1,4 | 3 | ୩ |
| ⠼⠙ | 3,4,5,6-1,4,5 | 4 | ୪ |
| ⠼⠑ | 3,4,5,6-1,5 | 5 | ୫ |
| ⠼⠋ | 3,4,5,6-1,2,4 | 6 | ୬ |
| ⠼⠛ | 3,4,5,6-1,2,4,5 | 7 | ୭ |
| ⠼⠓ | 3,4,5,6-1,2,5 | 8 | ୮ |
| ⠼⠊ | 3,4,5,6-2,4 | 9 | ୯ |
| ⠼⠁⠚ | 3,4,5,6-1-2,4,5 | 10 | ୧୦ |

"Never bend your head, hold in high
Look the world straight in the eye"

ହେଲେନ୍ କେଲର୍





